# ଶ୍ରେଷ୍ଠ ଷାଠିଏ

ବିଜୟ ନାୟକ



ବିଦ୍ୟାପୁରୀ



## ବିଜୟ ନାୟକ

ଜନ୍ମ : ୧୬ ଅକ୍ଟୋବର, ୧୯୬୦

ସମକାଳ ଓଡ଼ିଆ ସାହିତ୍ୟରେ ଅଗ୍ରଣୀ କଥାଶିଳ୍ପୀ ଭାବରେ ସୁପରିଚିତ ବିଜୟ ନାୟକ । ପ୍ରେମପ୍ରଣୟ, ଆଧୁନିକ ମଣିଷର ସ୍ୱପ୍ନ ଓ ସ୍ୱପ୍ନଭଙ୍ଗ, ମାଟିମନସ୍କତା, ଜୀବନ ପ୍ରତି ଆସ୍ଥା ଓ ଅନୁରାଗ ଏବଂ ମନୋବିଶ୍ଳେଷଣ ତାଙ୍କ ଗଳ୍ପର ଆଧାରଶିଳା । ତାଙ୍କ ଗଳ୍ପର ଅଧିକାଂଶ ଚରିତ୍ର ପୁଣି ସମାଜର ସବାତଳ ପାହାଚର ମଣିଷ । ପରିଚ୍ଛନ୍ନ ଆରମ୍ଭ, ଉତ୍କଣ୍ଠାପୂର୍ଣ୍ଣ ଅଗ୍ରଗତି ଏବଂ ନାଟକୀୟ ପରିସମାପ୍ତି ସାଙ୍ଗକୁ ଭାଷାର ଲାଳିତ୍ୟ ତାଙ୍କ ଗଳ୍ପଗୁଡ଼ିକୁ ସୁଖପାଠ୍ୟ କରିଥାଏ ।

ଭାରତୀୟ ପ୍ରଶାସନିକ ସେବାର ବରିଷ୍ଠ ଅଧିକାରୀ ଶ୍ରୀ ନାୟକ ଅଧୁନା ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ବିଭାଗର ନିର୍ଦ୍ଦେଶକ ଭାବରେ କର୍ତ୍ତବ୍ୟରତ ।

ତାଙ୍କର ସ୍ୱନିର୍ବାଚିତ ଷାଠିଏଟି ଗଳ୍ପ ଏହି ଗଳ୍ପଗୁଚ୍ଛରେ ଗ୍ରଥିତ ।

SRESHTHA SHĀTHIE
[A Collection of Short Stories]
by Bijay Nayak
Published by Vidyapuri, Balubazar, Cuttack 753 002

ISBN 978-81-945531-6-8

ପ୍ରଥମ ପ୍ରକାଶ
ସେପ୍ଟେମ୍ବର ୨୦୨୦

ପ୍ରକାଶକ
ଜୀବାନନ୍ଦ ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩ ୦୦୨

ଲିପି ସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩ ୦୦୨

ମୁଦ୍ରଣ
ବିଶ୍ୱନାଥ ଏଣ୍ଟରପ୍ରାଇଜେସ୍
ପ୍ଲଟ ନଂ. ୪/E, ଚନ୍ଦକା ଇଣ୍ଡଷ୍ଟ୍ରିଆଲ ଏରିଆ
ଭୁବନେଶ୍ୱର ୭୫୧ ୦୨୪

ମୂଲ୍ୟ ଟ ୩୪୦-୦୦

# କୃତଜ୍ଞତା

'ଶ୍ରେଷ୍ଠଷାଠିଏ' ବିଗତତିନିଦଶନ୍ଧିରୁଊର୍ଦ୍ଧ୍ୱସମୟମଧ୍ୟରେଲିଖିତଗଳ୍ପଗୁଡ଼ିକର ସମାହାର । ଗଳ୍ପଗୁଡ଼ିକ ବିଭିନ୍ନ ସମୟରେ ଓଡ଼ିଶାର ଅଗ୍ରଣୀ ପତ୍ରପତ୍ରିକା, ଯଥା– 'ଝଙ୍କାର', 'କଥା', 'ନବଲିପି', 'ଇସ୍ତାହାର', 'କାଦମ୍ବିନୀ', 'ଚନ୍ଦ୍ରଭାଗା', 'ସମ୍ବାଦ' ବାର୍ଷିକ ସଂଖ୍ୟା, 'ଧରିତ୍ରୀ' ବାର୍ଷିକ ସଂଖ୍ୟା 'ସ୍ୱର୍ଣ୍ଣ', 'ପ୍ରତିବେଶୀ' ଆଦିରେ ସ୍ଥାନିତ ହୋଇଥିଲା । ଏହି ବୃହତ୍ ସଂକଳନଟି ପ୍ରକାଶିତ ହେବାଅବସରରେମୁଁସେହିପତ୍ରପତ୍ରିକାରସୁଯୋଗ୍ୟସମ୍ପାଦକ-ସମ୍ପାଦିକାମାନଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି । କୃତଜ୍ଞତା ଜ୍ଞାପନ କରୁଛି ଶୁଭାକାଂକ୍ଷୀ ପାଠକ-ପାଠିକାମାନଙ୍କଠାରେ ବିଭିନ୍ନ ସମୟରେ ସେମାନଙ୍କର ଅନୁକୂଳ ଓ ପ୍ରତିକୂଳ ମତାମତ ପାଇଁ ।

କତିପୟ ସାହିତ୍ୟ ସମାଲୋଚକ ମୋ ଗଳ୍ପ ସମ୍ପର୍କରେ ଟୀକାଟିପ୍ପଣୀ ସମ୍ବଳିତ ଲେଖାମାନ ପ୍ରକାଶ କରି ମୋତେ କୃତାର୍ଥ କରିଛନ୍ତି । ସେମାନଙ୍କ ମଧ୍ୟରେ କବି ସୌରୀନ୍ଦ୍ର ବାରିକ, ଡକ୍ଟର ଶିରୀଶ ଚନ୍ଦ୍ର ଜେନା, ବାଞ୍ଛାନିଧି ଦାସ, ପବିତ୍ର ପାଣିଗ୍ରାହୀ, ଡକ୍ଟର ହରିଶ୍ଚନ୍ଦ୍ର ବେହେରା, ଡକ୍ଟର ବାଳକୃଷ୍ଣ ବେହେରା, ଡକ୍ଟର ଆଲୋକ ବରାଳ, ଦେବେନ୍ଦ୍ର କୁମାର ପତି, ଡକ୍ଟର କ୍ଷୀରୋଦ ଚନ୍ଦ୍ର ବେହେରା ପ୍ରମୁଖ ଅଗ୍ରଗଣ୍ୟ । ମୁଁ ସ୍ୱର୍ଗତ ସୌରୀନ୍ଦ୍ର ବାରିକଙ୍କୁ ସଶ୍ରଦ୍ଧ ସ୍ମରଣ କରୁଛି ଏବଂ ଅନ୍ୟମାନଙ୍କୁ ଧନ୍ୟବାଦ ଅର୍ପଣ କରୁଛି ।

ଏହି ଗଳ୍ପଗ୍ରନ୍ଥ ସମ୍ପର୍କରେ ସଂକ୍ଷିପ୍ତ ଅଥଚ ମାର୍ମିକ ମନ୍ତବ୍ୟ ପ୍ରଦାନ କରି ମୋତେ ଅନୁଗୃହୀତ କରିଛନ୍ତି ଓଡ଼ିଆ ଗଳ୍ପର ଏବଂ ପ୍ରକାରାନ୍ତରେ ଭାରତୀୟ କଥାର ମୁର୍ଦ୍ଧନ୍ୟ ସ୍ରଷ୍ଟାଗଣ– ଡକ୍ଟର ପ୍ରତିଭା ରାୟ, ଡକ୍ଟର ବିଭୂତି ପଟ୍ଟନାୟକ, ଡକ୍ଟର ରାମଚନ୍ଦ୍ର ବେହେରା, ଶ୍ରୀ ଦାଶ ବେନ୍‌ହୁର ଏବଂ ଶ୍ରୀ ତରୁଣକାନ୍ତି ମିଶ୍ର । ଏହି ବିଶିଷ୍ଟ ଓ ବରେଣ୍ୟମାନଙ୍କ ନିକଟରେ ମୁଁ ଚିର ଋଣୀ ।

ଓଡ଼ିଶାର ଲବ୍ଧପ୍ରତିଷ୍ଠ ପ୍ରକାଶନ ସଂସ୍ଥା 'ବିଦ୍ୟାପୁରୀ', କଟକଙ୍କ ବିନା ସହୃଦୟତାରେ ଗଳ୍ପଗୁଚ୍ଛଟି ମନୋଜ୍ଞ ରୂପରେ ପ୍ରତିଭାତ ହୋଇପାରି ନ ଥା'ନ୍ତା । ବିଦ୍ୟାପୁରୀର ସ୍ୱତ୍ୱାଧିକାରୀ ଶ୍ରଦ୍ଧେୟ ଶ୍ରୀ ଜୀବାନନ୍ଦ ମିଶ୍ରଙ୍କ ନିକଟରେ ତେଣୁ ମୁଁ କୃତଜ୍ଞ ।

ସର୍ବୋପରି ନିରନ୍ତର ସଦିଚ୍ଛା ଓ ସହଯୋଗ ନିମନ୍ତେ ମୋର ଦୁଇ ପୁତ୍ର ଶ୍ରୀମାନ୍ ବିଭାବସୁ ଓ ପୁନର୍ବସୁ, ପୁତ୍ରବଧୂ ଇତିଶ୍ରୀ ଏବଂ ପତ୍ନୀ ତପସ୍ୱିନୀ ଧନ୍ୟବାଦାର୍ହ । ପାଠକ-ପାଠିକାମାନଙ୍କ ଆନ୍ତରିକତା କାମନା ସହ :

ଶ୍ରୀଗୁଣ୍ଡିଚା, ୨୦୨୦
ଭୁବନେଶ୍ୱର

**ବିଜୟ ନାୟକ**

# ସୂଚୀପତ୍ର


| | |
|---|---|
| ୧. ନଈ | ୦୧ |
| ୨. ଭରାନଈ | ୧୧ |
| ୩. ଅକାଳ | ୨୦ |
| ୪. ଆଦ୍ୟ-ଆଷାଢ଼ | ୨୮ |
| ୫. ଏକ ନିରୋଳା ମୁହୂର୍ତ୍ତରେ ଅତନ୍ଦ୍ରର ନିଜ ସହ ବାତ୍‌ଚିତ୍ | ୩୫ |
| ୬. ଗୋଟିଏ ରୋମାଣ୍ଟିକ୍ ଦୁର୍ଘଟଣା | ୩୯ |
| ୭. ନିଷିଦ୍ଧ ଜହ୍ନର ଗଜଲ | ୪୪ |
| ୮. ସକାଳର ଜହ୍ନ | ୫୦ |
| ୯. ମହାଶୂନ୍ୟରେ ଗୋଟେ ଘରର ନକ୍ସା | ୫୭ |
| ୧୦. କୁଆ | ୫୯ |
| ୧୧. ପାଠିକା | ୬୨ |
| ୧୨. ଦୂର ପାହାଡ଼ | ୬୫ |
| ୧୩. ଉତ୍ତର ମଧ୍ୟାହ୍ନ | ୭୧ |
| ୧୪. ଲିଭିଂ ଟୁଗେଦର୍ | ୭୫ |
| ୧୫. ରାଣ୍ଡୀପୁଅ ଅନନ୍ତା | ୮୪ |
| ୧୬. ମାଙ୍କଡ଼ ଦିଆଶି | ୯୨ |
| ୧୭. ଅପେକ୍ଷାରେ ବନ୍ଦନା ବରାଳ | ୧୦୧ |
| ୧୮. ମାଟି କଣ୍ଢେଇ | ୧୦୯ |
| ୧୯. କେବେ ଠାରୁ କବିତା ଲେଖୁଲ, କୁମାରେଶ ? | ୧୧୬ |
| ୨୦. ସାହାଡ଼ା ସୁନ୍ଦରୀ | ୧୨୨ |
| ୨୧. ଭାରି ମେଘରାତି | ୧୩୩ |
| ୨୨. ବୌଉ ମରୁନି | ୧୪୩ |
| ୨୩. ଆଖି ଖୋଲିଲେ ସକାଳ | ୧୫୦ |
| ୨୪. ନାରଙ୍ଗୀ | ୧୬୦ |
| ୨୫. ସେତୁ | ୧୭୧ |
| ୨୬. ଚାରା | ୧୭୭ |
| ୨୭. କାନ୍ଧ | ୧୮୮ |
| ୨୮. ଅନେକ ଦିନ ପରେ ବର୍ଷା | ୧୯୫ |

୨୯. ଅଥଚ ଅନ୍ତରଙ୍ଗ ୨୦୨
୩୦. ଅନ୍ଧାର ୨୦୯
୩୧. ଚେର ୨୧୫
୩୨. ବିପ୍ରଲବ୍ଧ ୨୨୨
୩୩. ସାନସାଆନ୍ତେ ୨୨୯
୩୪. ନୀଡ଼ ନିବିଡ଼ ୨୩୭
୩୫. ଉତ୍ତାରାଧିକାର ୨୪୬
୩୬. ଆଉ ଥରକୁ ୨୫୭
୩୭. ଚିଠି ୨୬୫
୩୮. ସ୍ୱର୍ଗସୀମା ୨୭୫
୩୯. ଦର ଆଉଜା ୨୮୭
୪୦. ଦାମ୍ପତ୍ୟ ୨୯୫
୪୧. ସାକ୍ଷୀ ୩୦୫
୪୨. ଉଚ୍ଛଳ ଅବତରଣ ୩୧୪
୪୩. ଏବେ କେମିତି ଅଛି ବୋଉ ୩୨୧
୪୪. କଲିକତାରେ ଶେଷ ବର୍ଷା ୩୨୮
୪୫. ବିକ୍ରମାଦିତ୍ୟ ୩୩୫
୪୬. ବୁଦ୍ଧଦ୍ୱ ଆଡ଼କୁ ୩୪୩
୪୭. ପୁନଶ୍ଚ ବସନ୍ତ ୩୫୦
୪୮. ସ୍ୱରାଜ୍ୟ ୩୫୩
୪୯. ସଂପର୍କ ୩୬୧
୫୦. ଶୂନ୍ୟ ସଂହିତା ୩୬୯
୫୧. ଜନ୍ମଦିନ ୩୭୫
୫୨. ଗାନ୍ଧୀ ବଟ ୩୮୧
୫୩. ଧୂଳିଫୁଲର ମହକ ୩୯୧
୫୪. ଉହାଡ଼ ୩୯୭
୫୫. ଝାପ୍‌ସା ଆଲୁଅ ୪୦୩
୫୬. ଗୋଟେ ଘରପୋଡ଼ିର ଦୃଶ୍ୟ ୪୦୬
୫୭. ଷ୍ଟାଚ୍ୟୁ ୪୧୩
୫୮. ମକରାମାଝୀର ପ୍ରେମକଥା ୪୨୧
୫୯. ଟ୍ରାପ୍ ୪୩୧
୬୦. ମୁଗ୍ଧ ଗୋଧୂଳି ୪୪୩

# ନଈ

ବଢ଼ି ଛାଡ଼ି ଯାଇଥିଲା ।

ବାଲିବିଛଣାରେ ଅଳସେଇ ହଉଥିଲା ନଈ । କଡ଼ ଲେଉଟାଇଲାବେଳେ ଯେମିତି ରୁଣୁଝୁଣୁ ହେଉଥିଲା ତା' ପାଦର ନୂପୁର । ଲାଜରା ମୁହଁରେ ତା'ର ଚିକ୍‌ଚିକ୍ ସଫା ହସ; ନଇଁଲା ନଇଁଲା ଆଖିପତା ।

ଗୋବରାକୁ ନଈର ଏ ଚେହେରା ଭାରି ଭଲଲାଗେ । ଏଥର କିନ୍ତୁ ନଈ ଉପରେ ଅସମ୍ଭବ ଭାବରେ ଚିଡ଼ିଯାଇଥିଲା ସେ । ମନେ ମନେ କହିହେଲା, ''ହଇଲୋ ଅଲାକ୍ଷୁଣୀ, ଛ'ଦିନ ତଳେ ତୋ'ର ଏ ଚେହେରାକୁ କୋଉଠି ଲୁଚେଇ ରଖିଥିଲୁ ? ଲାଜସରମ ପୋଡ଼ି ଖାଇଥିଲୁ ନା ! ଆଲୋ ଫୁଲେଈ, ଏମିତି ଚଣ୍ଡୀ ହବାକୁ ବେଳେ ବେଳେ କାହିଁକି ତୋ' ମନ ହୁଏ ?'' ନଈ କିନ୍ତୁ କିଛି ବୋଧେ ଶୁଣୁ ନ ଥିଲା । ଗୋବରା ଆହୁରି ରାଗିଲା । ନଈକୁ ଚାହିଁ ଚୁ.....ଚୁ କଲା । ନିଜକୁ ନିଜେ କହିହେଲା, ''ଆହା...ପୋତାମୁହାଁ, ଯେମିତି କିଛି ଜାଣିନି !''

ଏବେ ନୁହେଁ, ପିଲାଦିନଠୁଁ, ଏମିତି ନଈ ସହ ଗୋବରାର କଥାବାର୍ତ୍ତା, ଭାବ ଦିଆନିଆ ।

ଗାଆଁ ଲୋକେ କୁହନ୍ତି, ଗୋବରାଟା ମୂଳରୁ ଏମିତିକା, ଆଡ଼ବାୟାଟା ! ନଈନାଳ, ଗଛପତର ସହ କଥାହୁଏ, ସାପ ବେଙ୍ଗ ସଙ୍ଗେ ଖେଳେ, ମାଟିକାଦୁଅକୁ ଗେଲକରେ ।

ସତରେ ଗୋବରାକୁ ଲୋକବାକ, ହାଟବଜାର ଏପରିକି ଘରଦୁଆର ସେତେ ଭଲ ଲାଗେ ନାହିଁ, ଯେମିତି ଭଲ ଲାଗେ ନଈ । ସେ ସକାଳେ ସଂଜେ ନଈରୁ ମାଛଧରେ, ଖରାବେଳେ ନଈକୂଳ ଜମି ଚଷେ । ରାତିରେ ନଈବାଲିରେ ଶୁଏ, ଯେମିତିକି ନଈସହ ଗୋଟେ ବିଛଣାରେ । ରାତି ଯେତେଯେତେ ବଢ଼େ, ସେ ସେତେ ପାଖେଇ ପାଖେଇ ଯାଏ ନଈ ପାଖକୁ । ସତେ କି ସେ ନଈକୁ ଭିଡ଼ି ଧରେ ନିଜ ବାହୁରେ ! ବଡ଼ି ଭୋ'ରୁ ଉଠି ଦେଖେ, ନଈ ଅବା ତାକୁ ଆଖିରେ କ'ଣ କହୁଚି ! ମନେ ପକେଇ ଦଉଚି କି ଆଉ ଗତ ରାତିର କଥା ! ଗୋବରା ହସିଦିଏ ।

ନଈ ସହ ଏ ଭାବକୁ କେବେ କ'ଣ ଅଭାବ କରିପାରିବ ଗୋବରା ? ନଈଠୁଁ ପରା ଦିନେ ଓଳିଏ ଦୂରେଇଗଲେ ତା' ଛାତି ଫାଟିଯାଏ ! ଯୁଆଡ଼େ ଗଲେ ବି ନଈକଥା ତା'ର ମନେ ପଡ଼େ । ତା' ଦିହସାରା, ତା' ମନସାରା ଯେମିତି ଗୁଡ଼େଇଗୁଡ଼େଇ ହୋଇଯାଏ ନଈ । ଆଉ ନଈର ଭୁଆସୁଣୀ ବେଶ ତା' ଆଖି ଆଗରେ ରହି ରହି ନାଚିଉଠେ; ତାକୁ ଅଥୟ କରେ ।

ନରହରି ମାଷ୍ଟରଙ୍କ ପୁଅ ଭାଗବତ କୋଉ ଗୋଟେ ବଡ଼ କାରଖାନାର ଅଫିସର୍ ଯେ ମଝିରେ ମଝିରେ ଗାଆଁକୁ ଆସେ । ପିଲାଟା ଭାରି ସୁଧାର । ଇସ୍କୁଲରେ ପଢୁଥିଲାବେଳେ କେତେଥର ମାଛ ନେଇଥିବ ତା'ଠାରୁ । ଆଗଥର ଆସିଲାବେଳେ କହୁଥିଲା, ''ଏଠି ପାଣିକାଦୁଅରେ ଘାଣ୍ଟିହେଇ କେତେ ପଇସା କମଉଚୁ ? ତୋ ପରି ମର୍ଦ୍ଦ କାରଖାନାରେ କାମକଲେ ଟଙ୍କା-ପଇସାର ଅଭାବ ରହିବ ନାହିଁ । ତୁ ଦି' ହଜାରରୁ ଅଧିକ ହପ୍ତା ପାଇବୁ । ହଁ ମାରିଲେ ତତେ ସାଙ୍ଗରେ ନେଇଯିବି ।'' ଗୋବରା କହିଲା, ''ସାନବାବୁ, ତମର ଶରଧା ଇମିତି ମୋ'ଉପରେ ଥାଉ । ହେଲେ ଏ ନଈକୂଳ, ଏ ଗାଆଁମାଟି ଛାଡ଼ି ମୁଁ ଆଉ କୁଆଡ଼େ ଯାଇପାରିବି ନାଇଁ । ନଈ ମାଛ ଦେବାରେ ଊଣା କରୁଚି ନା ଜମି ଫସଲ ଦେବାରେ ହେଳା କରୁଚି ?'' ତା' ବା' କହିଥିଲା, ''ଗୋବରା, ତୁ ଏ ଢିପ ଛାଡ଼ି କୁଆଡ଼େ ଯିବୁନିରେ, ମୁଁ ଚାଷ କରୁଥିବି, ପେଟ ଅପୋଷା ରହିବନି ।''

ବା' କଥା ମନେ ପଡ଼ିଲାକ୍ଷଣି ଗୋବରାର ଆଖି ଜକେଇ ଆସିଲା । ପିଲାବେଳୁ ସେ ମା' କି ଚିଜ ଜାଣିନି । ବା'ଥିଲା ତା'ପାଇଁ ସବୁ କିଛି । ବା' ବେଳେବେଳେ ମା'କଥା କହି କାନ୍ଦିପକାଏ । କୁହେ, ''ଗୋବରାରେ, ତୁ ତୋ ମା'ପେଟରେ ଥିଲାବେଳେ ବି ମୁଗୁର ପରି ହୃଷ୍ଟପୁଷ୍ଟ ଥିଲୁ । ମା' କିନ୍ତୁ ଥିଲା ଲାଉନାଡ଼ି ପରି ନହନହକା । ତୁ ପେଟରେ ରହିବା ଦିନୁଁ ଜାଣ ତା' ରକତ ଶୋଷିଲୁରେ । ତଥାପି ତତେ ସେ ଦଶମାସ ପେଟରେ ରଖିଲା । ଛୁତିକା ବେଳକୁ ସାତଦିନ ସାତରାତି ସେ ଦୁଃଖ ପାଇଥିଲାରେ ଧନ । ଏତେ କଷ୍ଟ ପାଇ ତତେ ଜନମ ଦେଲା, ଆଉ ଜନମ ଦଉଦଉ ମଲାରେ ! ତତେ ଆଖି ପୂରେଇ ଦେଖିପାରିଲାନି ବିଚାରୀ !''

ବା' ଏ କଥା କହୁ କହୁ ଗାମୁଛାରେ ଆଖି ପୋଛେ । ପୁଣି ତାକୁ କୁଣ୍ଢେଇ ଧରି କୁହେ, ''ମ' ଆଖିରୁ ଅନ୍ତର ହବୁନିରେ କେବେ । ମ ଶବକୁ କାନ୍ଧରେ ନେଇ ନଈବାଲିରେ ପୋଡ଼ିବୁ । ମ ଅସ୍ଥି ଯାଇ ଗଙ୍ଗା-ସାଗରରେ ମିଶିବରେ ।''

କିନ୍ତୁ ବା'କୁ ସେ କୋଉ କାନ୍ଧରେ ବହିପାରିଲା ? ସେ ବେମାର ଆମାର ପଡ଼ିଲା ନାଇଁ କି ସେବାଯତନ କରିବାର ସୁଯୋଗ ଦେଲା ନାଇଁ । ଦିନେ ପରିଆ ମଳିକ କଥାରେ ପଡ଼ି ଡଙ୍ଗାରେ ମାଛ ମାରି ଗଲା ଦରିଆକୁ । ଗୋବରା କହିଥିଲା, ''ବା'ଲୋ, ତୁ ବୁଢ଼ା ହେଲୁଣି ; ଦରିଆକୁ ଯା'ନା । ଆମକୁ କ'ଣ ଦାନାକନା ନିଅଁଟ ହଉଛି ? ତ'ର ଯଦି ଟଙ୍କା ଦରକାର କହ, ମୁଁ ହେଲେ ନଈ ଡେଇଁ ଦରିଆକୁ ଯିମି ।'' ବା' କହିଲା, ''ଚୁପ୍, ମ' ଦିହରୁ କ'ଣ ବଳ ହଟିଲାଣି । ବାପ ଥାଉଁ ଥାଉଁ ପୁଅ ଯିବ ଦରିଆକୁ ?''

ବା'ତ ଭାରି ଅବୁଝା ମଣିଷ । ତାକୁ କ'ଣ ବୁଝେଇ ହେଇଥା'ନ୍ତା ? ପରିଆ ମଳିକ ସାଙ୍ଗେରେ ସେଇ ଯୋଉ ଦରିଆକୁ ଗଲା ଯେ ଗଲା ଆଉ ଫେରିଲା ନାଇଁ ।

ତା' ଦରିଆ ଯିବାକୁ ଝଡ଼ବରଷା ଯେମିତି ଚାହିଁ ବସିଥିଲା ! ବହିଲା ବତାସ ଅଣଚାଶ । ଆକାଶରେ କୋଡ଼ିକଚାଡ଼ି ହେଲା ମେଘ । ବର୍ଷିଲା ମୂଷଳ ଧାରାରେ । ଉଦ୍ଦଣ୍ଡ ନାଚିଲେ ବିଜୁଳି-ଘଡ଼ଘଡ଼ି । ପରିଆ ମଳିକ ଅଧାମଲା ହେଇ ଫେରିଲା ଦି'ଚାରିଦିନ ପରେ । ହେଲେ ତା' ବା'ର ଦେଖା ନ ଥିଲା । ତା' ଇଚ୍ଛା ମୁତାବକ ସେ ଯେମିତି ଗଙ୍ଗା-ସାଗରରେ ମିଶିଗଲା ।

ପରିଆ ଦୁଆରେ ଗୋବରା ମୁଣ୍ଡ ବାଡ଼େଇ କାନ୍ଦିଲା । 'ପରିଆଦା', ମୋ ବା'କୁ କାହିଁକି ଦରିଆକୁ ନଉଥିଲୁ ଲୋ । ମତେ କ'ଣ ଛେଉଣ୍ଡ କରିବା ନାଗି ?'' ସେ ବିକଳ ହେଇ କହିଲା । ପରିଆ କ୍ଷୀଣ ଗଳାରେ ଉତ୍ତରଦେଲା, ''ମୋର କିଛି ଗଲ୍‌ତି ନାଇଁରେ ଗୋବରା, ତୋ ବା' ତ ଖାଲି ଟଙ୍କା ଟଙ୍କା ହେଲାରେ । ମୋ ସାଙ୍ଗେରେ ତେଣୁ ଦରିଆକୁ ଯିବା ଲାଗି ଜିଦ୍ ଧରିଲା । ତୋ ବା' ଘର ନାଗି ସେ ଟଙ୍କା ଯୋଗାଡ଼ରେ ଥିଲାରେ... ।'' ଗୋବରା ଏକଥା ଶୁଣି ଆହୁରି ବାହୁନିଲା । ଗାଆଁଯାକର ଲୋକେ ତାକୁ ବୁଝାଶୁଝା କଲେ । କେତେ ସମୟ ପରେ ସେ ଯାଇ ତୁନିତାନି ହେଲା ।

ଦି'ଗୁଣ୍ଠ ନଈକୂଳିଆ ଜମି ବିକିଦେଲା ଗୋବରା । କହିଲା, ବା'ତ ଗଲା, ତା' ଜମି ବି ଯାଉ । ସାତଗୁଣ୍ଠକୁ ଖାଇ ଖାଇ ଆଉ ଦି'ଗୁଣ୍ଠ ରଖିଥିଲା ସବାଖାଈ ନଈ । ସେ ଗଲା; ଯାଉ । ହେଲେ ସେ ଭଲକରି ବା' କାମ କଲା । ସାଇପଡ଼ିଶାଙ୍କୁ ପଙ୍ଗତରେ ବସେଇଲା । ପାଞ୍ଚମୂର୍ତ୍ତି ବଇଷମ ଗୋସେଇଁଙ୍କୁ ଦାନ-ଦକ୍ଷିଣା ଦେଲା । ଭାବିଲା, ବା'ତ ତା' ଜୀବନସାରା ସୁଖ କ'ଣ ଜାଣିଲା ନାଇଁ ! ତା' ଆତ୍ମା ହେଲେ ଶାନ୍ତି ପାଉ । ବଇଷମ ଗୋସେଇଁଏ ଦାନ-ଦକ୍ଷିଣା ଗାମୁଛାରେ ବାନ୍ଧି ଲମ୍ବା ଆଶୀର୍ବାଦ ଶ୍ଳୋକ ପଢ଼ିଲେ ଓ କହିଲେ, ''ଚିନ୍ତା କରନାରେ ଗୋବରା, ତୋ ବାପ ଆକାଶର ଆଉରି ଉପରକୁ ଚାଲିଯାଇଚି, ବୈକୁଣ୍ଠଧାମକୁ, କାଶୀର କଂସେଇ ପରି ।''

ବଇଷମ ଗୋସେଇଁମାନଙ୍କ ସଂସ୍କୃତମିଶା କଥା ଗୋବରା ମଗଜରେ ପଶିଲା ନାହିଁ । ତେବେ 'ବୈକୁଣ୍ଠ' ନାଆଁଟା ଶୁଣି ସେ ଖୁସି ହେଲା – ''ଯା'ହଉ, ତା' ବା'ର ଆତ୍ମା ଯମପୁରରେ କଲବଲ ହଉ ନ ଥିବ ।

ବା' ଅନ୍ତେ ଗୋବରା କିନ୍ତୁ ଭାରି କଲବଲ ହେ'ଲା ।

ବା' ସିନା ବିଲବାଡ଼ିରୁ ଫେରି ତା'ପାଇଁ ରନ୍ଧାବଢ଼ା କରୁଥିଲା । ଚାହିଁ ବସୁଥିଲା, ସେ ନଈରୁ ନ ଫେରିବା ଯାଏଁ । ଉଛୁର ହେଲେ ଡାକ ପକାଉଥିଲା, ''ଗୋବରାରେ...ଏ...ଗୋବରା...ଆ... ।'' ଜାଲ ଛାଟୁ ଛାଟୁ ଗୋବରା ଓ' କରୁଥିଲା, ''ଯାଉଚି...ଇ...ଲୋ...ଓ...ବା...ଆ.... ।'' ଏବେ ବା'ର ଡାକ ନାହିଁ । କିନ୍ତୁ କେବେ କେବେ ସେ ଡାକ ଉଡ଼ିଆସେ ପବନରେ । ସେତେବେଳେ ତା'ର ଭାରି ମନେ ପଡ଼େ ବା'କଥା । ସେ ଅନ୍ୟମନସ୍କ ହୋଇଯାଏ । ପୁଣି ତା' ଚେତା ଫେରିଲା ବେଳକୁ ଧୂର୍ତ୍ତ ବାଳିଆ ତା' ବନିଶୀର ଥୋପ ଗିଳି ଖସିଯାଇଥାଏ ।

ପଞ୍ଚାୟତ ସେକ୍ରେଟାରୀ ଗଦାନ୍ନା ବା' ହବାଲାଗି ଥରେ ଦୁଇଥର କହିସାରିଥିଲା ଗୋବରାକୁ । ଲୋକଟା ଭାରି ଟାଉଟର୍ ହେଲେ ବି କରିତ୍‌କର୍ମା । କହୁଥିଲା, ବା' କୁଆଡ଼େ ତା' ମାର୍ଫତରେ କନିଆଁ ଯୋଗାଡ଼ କରିଥିଲା । ପଥରବନ୍ଧର ସର ମାଝୀ ଝିଅ ସାଙ୍ଗେରେ ତା' ବା'ଘର କଥା ଏକପ୍ରକାର ଛିଡ଼ିଥିଲା । ଆଉ ବା' ମଲାପରେ ପ୍ରସ୍ତାବଟା ଆଗେଇପାରୁ ନ ଥିଲା । ଗଦାନ୍ନା ଆଉରି କହୁଥିଲା, ସେ ଝିଅ କୁଆଡ଼େ ଏ ଯାଏଁ ବା' ହେଇନି । ଗୋବରା ରାଜିହେଲେ ଆଉ ଟଙ୍କା ପଇସା ଆୟୋଜନ କଲେ, ଅନ୍ୟ ସବୁ ଭାର ତା'ର । ଗୋବରା ଗଦାନ୍ନା କଥାରେ ଅରାଜି ନ ଥିଲା ସତ, ହେଲେ ପଇସା ପାଇଁ କୁନ୍ଥୁ କୁନ୍ଥୁ ହଉଥିଲା । ଟଙ୍କା ପାଞ୍ଚହଜାର ସେ ଏଡ଼େ ସହଳ କାହୁଁ ପାଇବ ? ଗଦାନ୍ନା ସାହସ ଦେଲା ଓ ଟଙ୍କା ଯୋଗାଡ଼ କରିବାର ଉପାୟ ବତେଇଲା । କହିଲା, ''ବ୍ଲକ୍‌ରୁ ଋଣ ମିଳିବ, ତୁ ଖାଲି କାଗଜରେ ସଇ କଲେ ହେଲା । ତୁ ତ ଗରିବ ଲୋକ, ପୁଣି ଜାତିରେ କୈବର୍ତ୍ତ । ଜାଲପାଇଁ ତତେ ଋଣ ମିଳିବ ।'' ଏ କଥା ଶୁଣି ଗୋବରା ବୋକାଙ୍କ ପରି ଖାଲି ଗଦାନ୍ନା ମୁହଁକୁ ଚାହିଁ ରହିଲା । ଗଦାନ୍ନା ତ ମହା ଚାଲାକ ଲୋକ; ଗୋବରା ମୁହଁର ଭାଷା ଯେମିତି ପଢ଼ି ପକେଇଲା । କହିଲା, ''ବେ ବୁଦ୍‌ବକ୍, ଜାଲପାଇଁ ପଇସା ଆଣିବୁ ଆଉ ଜାଲ ନ କିଣି ସେଇ ପଇସାରେ ବା'ହବୁ ।''

ଗୋବରା କଥାଟା ବୁଝିପାରି ହସିଲା । ଋଣ ପାଇଁ ଗଦାନ୍ନା ସାଙ୍ଗେରେ ବ୍ଲକ୍ ଅଫିସକୁ ଦୌଡ଼ିଲା । ମାସେ ଦୁଇ ମାସ ପରେ ତାକୁ ଋଣ ମିଳିଗଲା । ଗଦାନ୍ନା କହିଲା, ''ପାଞ୍ଚ ଶହ ଟଙ୍କା ନେଇ ତୋ ଘର ମରାମତି କର ।'' ଆଉ ସବୁ ଟଙ୍କାକୁ ସେ ପାଖରେ ରଖିଲା । ବା'ଘର ଖର୍ଚ୍ଚ ବାଦ୍ ବଳକା ଟଙ୍କା ଫେରାଇଦବ ବୋଲି କହିଲା । ଗୋବରା ଗଦାନ୍ନା କଥାରେ ହଁ ମାରିଲା ।

ଗଦାନ୍ନାଠାରୁ ପୁଣି ଦି'ପଣ ଛଣ କିଣି ଗୋବରା ଘର ଛପର କଲା । ଝାଟିମାଟି କାନ୍ଥ ମରାମତି କଲା । ଲୋକ ଲଗେଇ ଘର ଲିପେଇଲା । ଗଦାନ୍ନା ସାଙ୍ଗେରେ ପଥରବନ୍ଧ ଗାଆଁକୁ ଯାଇ କନିଆଁ ଦେଖି ଆସିଲା ଓ କନିଆଁ ବି ତା'ର ପସନ୍ଦ ହେଲା । କନିଆଁ ବାପ କହିଲା, ''ମୁଁ ଗରିବ ଲୋକ, କିଛି ଦେବି ନାଇଁ କି ନେବି ନାଇଁ । କନିଆଁ ସମରପଣ କରିମି ଯା' । ଗହଣାଗାଣ୍ଠି ବି ତମେ ନିଜେ ଦେଇ ଚଳେଇବ ।'' ଏଥିରେ ରାଜି ହେଇଯିବାପାଇଁ ଗୋବରା କାନରେ ଫୁଙ୍କିଲା ଗଦାନ୍ନା । ଗୋବରା ସବୁ କଥାରେ ହଁ ଭରିଲା । ତା'ପରେ ଦିନବାର ଠିକ୍ ହେଲା । କଥା ହେଲା ପଥରବନ୍ଧ ଗାଆଁର ଗ୍ରାମଦେବତୀ କଳାଶୁଣୀ ମନ୍ଦିରରେ ବା'ଘର ହବ । ସାଇପଡ଼ିଶା ଲଗାୟତ ପାଞ୍ଚସାତ ଜଣରୁ ଅଧିକ ବରଯାତ୍ରୀ ଯିବେ ନାହିଁ ।

ଫଗୁଣ ମାସ ତିନି ଦିନ ବୁଧବାର ଗୋବରା ସରମାଝୀ ଝିଅ କନକର ହାତ ଧରିଲା ।

କନକର କନକନ ଚାହାଣି, କନିଅର ଫୁଲପରି ତା' ଦିହ, ଭାରି ଭଲ ଲାଗୁଥିଲା ଗୋବରାକୁ । ସହଳ ଉଠି କନକ କଂସେ ଚା'ଆଉ ମାଣେ ଭୁଜା ଥୋଇ ଦଉଥିଲା ତା' ଆଗରେ । ଚା'ରେ ଭୁଜା ଭସେଇ ସେ ଢକଢକ କରି ପିଇଯାଉଥିଲା ଓ ଜାଲଧରି ବାହାରି ପଡୁଥିଲା ନଈଆଡ଼େ । ଖରାବେଳେ ସେମିତି ମାଛ କଂକଡ଼ା କି ତିନି ତିଅଣ କରୁଥିଲା କନକ । ଗୋବରା ମହାଆନନ୍ଦରେ ଖାଉଥିଲାବେଳେ, ତା'ର ବା' କଥା ମନେ ପଡ଼ିଯାଉଥିଲା । ଆହା...ବା' ବଞ୍ଚିଥିଲେ ବହୂ ପରଷା ଖାଇ କେତେ ଖୁସି ହଉ ନ ଥାନ୍ତା !

ରାତିରେ ନୂଆ ହେଁସ ଉପରେ କନ୍ଥା ପାରି ଦେଉଥିଲା କନକ । ପୁଣି ତା' ପାଖକୁ ଲାଗି ଶୋଉଥିଲା, ଲସିଘଷି ହଉଥିଲା ତା' ଦିହରେ । ସେ କେତେଥର କୋଳେଇ ଆଣି କନକକୁ ବୋକ ଦେଇଚି । ତା' ମୁହଁରେ ମୁହଁ ଘଷିଚି । ଖୁବ୍ ରାତିହେଲେ ଗୋବରାକୁ ଆଉ ଘର ଭିତରେ ଭଲ ଲାଗେ ନାହିଁ । ନଈ ଯେମିତି ତାକୁ ଡାକେ । ସେ ଅତର୍ଛା ଉଠି ନଈକୁ ଧାଏଁ ଓ ବାଲିରେ ଶୁଏ । କନକ ଏହା ଦେଖି କେତେଥର ଗରଗର ହେଲାଣି, ''ତମର ଭଲା ଏ କି ଗୁଣ, ଘର ଛାଡ଼ି ନଈବାଲିରେ ଶୋଇବାକୁ ସୁଖ ମଣୁଚ ।'' ଗୋବରା କହେ, ''ପିଲାଦିନରୁ ମୋର ଏ ଅଭ୍ୟାସ । ଏତେ ସହଳ କ'ଣ ଛାଡ଼ିହେବ ?''

ଏ କଥା ଶୁଣି କନକ ଆଉରି ସକସକ ହୁଏ । ମୁହଁ ଶୁଖେଇ କହେ, ''ହଉ ତମର ନଈ ହେଲା, ମୁଁ ଯା'ହେଲି ନାଇଁ ।'' ଗୋବରା କନକକୁ ଭିଡ଼ିଧରେ ତା' ସକସକ ବନ୍ଦ ହେବାଯାଏ ।

ଗୋବରା ଠେଇଁ କନକର ମନ ଥିଲା କି ନାଇଁ କେଜାଣି ସେ ସବୁବେଳେ ଏଣୁ ତେଣୁ କଥା କହୁଥିଲା । ବାପଘରକୁ ଚାଲିଯିବ ବୋଲି ଅଡ଼ି ବସୁଥିଲା । ଖିଡ଼ିକି ଫାଙ୍କରୁ ବାଟଗଲା ଟୋକାଟାକଳାଙ୍କୁ ନିରେଖୁଥିଲା । ଏ ସବୁ ବଡ଼ ରାଗ ଲାଗୁଥିଲା ଗୋବରାକୁ । ''ମାଇପିଟାର ଇଏ କି ଖୋଇ ? ହ୍ୟାପ୍ ସେ ଶାଳୀ ପାଖରେ କ'ଣ ଦିନରାତି ଚବିଶଘଣ୍ଟା ଉଜାଗର ହେଇ ବସିମି ।'' ଗୋବରା ବିଳିବିଳେଇ ହଉଥିଲା ; ଅଥଚ କନକକୁ କିଛି କହୁ ନ ଥିଲା ।

ବା'ଘର ତିନି ମାସ ପୂରିଚି କି ନାଇଁ, ହଠାତ୍ ଦିନେ ଶଶୁର ଆସି ହାଜର ହେଲା ତା' ଘରେ । କନକକୁ ପନ୍ଦର ଦିନ ପାଇଁ ତାଙ୍କ ଗାଆଁକୁ ନବ ବୋଲି କହିଲା । ଝିଅକୁ ଦେଖିବା ପାଇଁ ତା' ମା' ମନ କୁଆଡ଼େ ଥ'ହଉନି । ପୁଣି ତାଙ୍କ ଗାଆଁରେ ଠାକୁରାଣୀ ଯାତରା ବି ଦେଖି ଆସିବ । ଗୋବରା ମନା କଲା ନାହିଁ । ଝିଅ ନ ଯିବ କି ଆଉ ବାପ ଘରକୁ ?

କିନ୍ତୁ ପନ୍ଦର ଦିନ ଗଲା, ମାସେ ଗଲା ଅଥଚ କିଛି ଖବର ଅନ୍ତର ଆସିଲା ନାଇଁ ଶଶୁର ଘରୁ । କନକର ଆଉ ଦିହପା' କ'ଣ ହେଲା କି ଭାବି ଗୋବରା ମନଦୁଃଖ

କଲା । ଭାବିଲା, ପଥରବନ୍ଧ ଯାଇ ବୁଲିଆସିବ । ଦିନେ ବେଶି ରାତି ପର୍ଯ୍ୟନ୍ତ ନଈରେ ମାଛ ଧରିଲା ଓ ମାଛବିକା ପଇସାରେ ଫଳମୂଳ ମିଠା ଆଦି କିଣି ବାହାରିଲା ଶଶୁରଘର । ପଥରବନ୍ଧ ତ କିଛି କମ୍ ବାଟ ନୁହେଁ ? ଦି' ମାଇଲ୍ ଚାଲିବା ପରେ ପାଞ୍ଚକୋଶ ଟ୍ରେକର୍‌ରେ ଯାଇ ପୁଣି ଡଙ୍ଗା ପାରି ହେଲା ଗୋବରା । ବେଳ ଗଡ଼ାଣିକୁ ସେ ଶଶୁରଘର ଦୁଆରେ ପହଞ୍ଚିଲା । ସେତେବେଳକୁ ଭୋକରେ ତା' ହଁସା ଉଡ଼ିଲାଣି । ଶଶୁରଘର ପିଣ୍ଡାରେ ପହଞ୍ଚିଚି କି ନାଇଁ, ଶଶୁରବୁଢ଼ା ତାକୁ ଦେଖି ନ ଦେଖିଲା ପରି ହେଲା । ଏକେ ତ ଉପାସିଆ ପେଟ, ଗୋବରା ମୁଣ୍ଡକୁ ପିତ୍ତ ଚଢ଼ିଗଲା । ସେ ମାରିବ କି ମରିବ ହେଲା । କହିଲା, ''କାଇଁ କନକ, ଇକ୍ଷିଣିକା ତାକୁ ନେଇକି ଯିମି ।'' ଗୋବରା ମୁହଁରୁ କଥା ଛିଡ଼ିଚି କି ନାଇଁ, ଶଶୁର ହେଣ୍ଡାକିଲା, ''ଯା'ବେ, ଟୋକା ମର୍ଦ୍ଦଗିରି କାଢୁଚି । ମାଇପକୁ ସମ୍ଭାଳିବାକୁ ତାକତ ନାଇଁ, ଘଇତାପଣ ଦେଖେଇବାକୁ ଚାଲିଆସିଲା ଏଠିକି ।'' ଘର ଭିତରୁ ମାଇପି କଣ୍ଠରୁ ଶୁଭୁଥାଏ, ''କାହିଁକି ଆଇଚି ଏ ଅଲପେଇଷା ? ମୋ ଝିଅର କୋଉ ସୁଖରେ ତ' ଠେଇଁ ଅଣପୁରୁଷା......ଯା...ଯା ପଳା ଏଠୁ, ତ' ସାଙ୍ଗେ ଝିଅକୁ ପଠେଇମି ଯାହା, ତା'ବେକରେ ବାଲିକଳସୀ ବାନ୍ଧି ତାକୁ ନଈରେ ଭସେଇ ନ ଦେବି କାହିଁକିରେ.... ।''

ଗୋବରା କାନରେ ହାତଦେଲା । ମନେ ମନେ ଭାବିଲା, ୟେ ଶାଶୂ ନା ଚାଣ୍ଡାଳୁଣୀ ! କିନ୍ତୁ ସେ କନକକୁ ଦେଖିବାକୁ ପାଇଲା ନାହିଁ କି ତା' କଥା ଶୁଣିପାରିଲା ନାହିଁ । ସେ ଘରେ ଥିଲା କି ନ ଥିଲା କେଜାଣି ! ଶାଶୂକୁ ଆଗରେ ପାଇଥିଲେ ଦି'ଧକ୍କା ଦେଇଥାନ୍ତା ବୋଲି ଭାବିଲା ଗୋବରା । ହେଲେ ପାଟି ଫିଟେଇଲା ନାହିଁ । 'ତ ଝିଅ ବାଂଝ ନା ମୁଁ ଅଣପୁରୁଷା ଲୋ ଛିଣ୍ଡାଳୀ' ସେ ମନକୁ ମନ କହିଲା ଓ ଫେରିଲା । ଗାଆଁ ଦାଣ୍ଡରେ ଫେରୁଛି, ଦଳେ ଟୋକା ତାକୁ ଛିଗୁଲେଇଲେ । ଜଣେ କହିଲା, 'କଟକ ନଗର, ଧବଳ ଟଗର' ତ ଆଉ ଜଣେ କହିଲା, 'କନକର ବର ହେଲା ହରବର ।' ସବୁଠୁ ଲଫଙ୍ଗା ଟୋକାଟା କହୁଥିଲା, ''କନକର କୋଡ଼ି ପୂରିଥିଲା ୟାରି ଠେଇଁ ।'' ଗୋବରା ସବୁ ଶୁଣି କିଛି ଶୁଣୁ ନ ଥିଲା ।

ଘରକୁ ଫେରି ସେ ଢେର କାନ୍ଦିଲା ଏକା ଏକା ।

ପରେ, କୋଉ ମେଦିନୀପୁରିଆ ବଙ୍ଗାଳୀ କେଉଟ ସାଙ୍ଗରେ କନକ ଇଚ୍ଛାରେ ପଳେଇଚି ବୋଲି ଉଡ଼ା ଖବରଟା ତା' କାନରେ ବାଜିଲା । ସେତେବେଳକୁ ସେ କନକକୁ ଭୁଲିସାରିଥିଲା ।

ଦିନେ ସଂଜସଂଜିଆ ବେଳ । ସେ ନଈରେ ବନିଶୀ ପକାଉଥିଲା । ନଈ ସେପାରିରେ ଦେଖିଲା ଝିଅଟେ । ସଂଜବେଳେ ଏକୁଟିଆ ଝିଅଟା କ'ଣ କରୁଚି ନଈକୂଳରେ ? ସେ ଭାବିଲା ଓ ସେଇ ଆଡ଼କୁ ଚାହିଁ ରହିଲା । ଦେଖୁ ଦେଖୁ ଝିଅଟା ନଈଭିତରକୁ ମାରିଲା

ଡିଆଁ । ଗୋବରା ନିମିଷେ ଡେରି ନ କରି ଏ କୂଳରୁ ଡେଇଁଲା ନଈକୁ ଓ ନଈରେ ବୁଡ଼ି ଉଠି ଝିଅଟାକୁ ଖୋଜିଲା । ଆକ୍ରମାକ୍ରା ଅବସ୍ଥାରେ ସେ ଝିଅଟାକୁ ପାଇଲା ଓ ଟେକିଆଣିଲା କୂଳକୁ । ତାକୁ ପଠାରେ ପେଟେଇ ଶୁଏଇଦେଲା ଓ ତା'ପିଠିକୁ ଚାପି ମୁହଁ ବାଟେ ପାଣି ବାହାର କଲା । ପରେ ପରେ ତାକୁ କାନ୍ଧରେ ପକେଇ ଚାଲିଲା ତା'ଘରକୁ ।

ରାତି ଅଧ ହେବ, ଝିଅ ସାଷ୍ଟମ ହେଲା ଓ ସାଷ୍ଟମ ହେଲାକ୍ଷଣି ମୁଣ୍ଡ କୋଡ଼ି କାନ୍ଦିଲା । ଗୋବରାର ବୁଦ୍ଧି ବଣା ହୋଇଗଲା । ସେ କ'ଣ କରିବ ଜାଣିପାରିଲା ନାହିଁ । ଥଙ୍ଗେଇ ଥଙ୍ଗେଇ କହିଲା, ''ତ' ଘର କୋଉଠି କହ, ମୁଁ ନେଇ ଛାଡ଼ି ଦେମି । ଆଖି ଆଗରେ ତ' ମରିବା କେମିତି ଦେଖିଥାନ୍ତି ।'' ତା'ପରେ ଝିଅଟି କହିଲା, ''ସେ ନଈ ଆର ପାରି ମୁକୁନ୍ଦପୁରର ସଦାକେନା ଝିଅ ଗେହ୍ଲୀ । ଯଉତୁକ ଲାଗି ବର ଫେରିଯିବାରୁ ସେ ନଈକୁ ଡେଇଁପଡ଼ିଲା ।'' ଗୋବରା କହିଲା, ''ହଉ ଚାଲ, ତତେ ତମ ଘରେ ପହଞ୍ଚାଇ ଦେମି ।'' ଝିଅଟିର ବନ୍ଦ ହେଇଯାଉଥିବା କାନ୍ଦ ପୁଣି ଉପୁଚି ଉଠିଲା ଓ ସେ ଘରକୁ ଫେରିବାପାଇଁ ଅମଙ୍ଗ ହେଲା । ବାପା-ଭାଇ, ସାହିପଡ଼ିଶାଙ୍କୁ କୋଉ ମୁହଁ ଦେଖେଇମି କହି ସେ ବାହୁନିବାକୁ ଲାଗିଲା ।

ସାରା ରାତି ଝିଅଟି କି ମନ୍ତ୍ର ଫୁଙ୍କିଲା କେଜାଣି ଗୋବରା କାନରେ, ପାହାନ୍ତାକୁ ଗୋବରା ତାକୁ ସାଙ୍ଗରେ ଧରି ବାଟବାଶୁଳୀଙ୍କ ଆସ୍ଥାନକୁ ଗଲା ଓ ତା'ମୁଣ୍ଡରେ ଠାକୁରାଣୀ ସିନ୍ଦୂର ଲେପି ତାକୁ ବାହା ହୋଇପଡ଼ିଲା ।

ସକାଳ ହେଲାରୁ ସାରା ଗାଆଁରେ କିନ୍ତୁ ଧେଣ୍ଡୁରା ବାଜିଲା, ''ଶଳା, ଗୋବରା ମଳିକ, ଗୋଟେ ବାଡୁଅଝିଅ କୋଉଠୁ ଉଠେଇ ଆଣି ରାତେରାତ ବାହାହୋଇ ପଡ଼ିଚି ।'' ଗୋବରା କାନରେ ଆଉରି ବାଜିଲା ''ଗାଆଁ ଲୋକେ କୁହାକୁହି ହଉଛନ୍ତି ଯେ ଗାଆଁର ମାନ ଇଜ୍ଜତକୁ ମଳିକ ଟୋକାଟା ମାଟିରେ ମିଶେଇଦେଲା । ତା' ନାଆଁରେ ନିଶାପ ଡାକ । କେହି କେହି କୁଆଡ଼େ କହିଲେ ସେ କେଦାରଗଉରୀଙ୍କୁ ହାଜତକୁ ପଠାଇଦିଅ ।'' ଏ ସବୁ ଶୁଣି ଗୋବରା ଛାତି ଥରିଲା । ସେ ଯାଇ ଗଦାନ୍ନା ପାଖରେ ଶରଣ ପଶିଲା, ''ମୋତେ ପାରିକର ଗଦାନ୍ନା, ମୋ ବା' ରାଣ, ମୋର କିଛି ଦୋଷ ନାଇଁ । ସେ ବାଉରୀ ଟୋକୀଟା ମତେ କିମିଆଁ କରିଦେଲା ।''

ଗଦାନ୍ନା ଗୋବରାକୁ ହିମ୍ମତ ଦେଲା –''ସରପଞ୍ଚ ପଞ୍ଚୁ ନାୟକ ମୋ ପକେଟରେ ; ତୁ ଚିନ୍ତା କରନା ଗୋବରା ।'' ଗଦାନ୍ନା ଗାଆଁ ଲୋକଙ୍କୁ ବୁଝେଇଲା,''ଖବରଦାର, ଗୋବରା ପିଛା ଛାଡ଼, ସେ ପଛୁଆ ଜାତିର ଲୋକ, ତମେ ଫେର ବନ୍ଧା ହୋଇ ଫାଣ୍ଡିକୁ ଯିବ ।'' ଗାଆଁବାଲାଏ ଭାବିଲେ କିଏ କାହିଁକି ଦାସେଙ୍କ ପରି ଫାଣ୍ଡିକି ଯିବ... ଆଜିକାଲି କ'ଣ ନାଇଁ କ'ଣ ହେଉଚି । ସେ ହରି ଶତପଥୀ ଝିଅ ପୁଣି

ବନା ଧାମୁଡ଼ିଆ ପୁଅ ସାଥିରେ କେମିତି ଛୁ ମାରିଲା... । ସମସ୍ତେ ଚୁପ୍ ହେଲେ । ପଞ୍ଚୁ ନାୟକକୁ କିନ୍ତୁ ଅନ୍ୟ କଥା କହି ମନେଇଲା ଗଦାନ୍ନା । "ବୁଝିଲେ ନାହାକେ, ଗୋବରାଟା ଏଥର ବାଟକୁ ଆଇଲା ଜାଣ । ପାର୍ଟିରେ ମିଶିବାପାଇଁ ନାହିଁ ନାହିଁ କରୁଥିଲା । ଏଥର ବଙ୍ଗା ଯିବ କୁଆଡ଼େ ?" ଗଦାନ୍ନା କହିବାରୁ କୁଆଡ଼େ ପଞ୍ଚୁ ନାୟକ ମଗଜ ଅଣ୍ଡା ହୋଇଗଲା ।

ଗୋବରା ଶାନ୍ତିରେ ନିଃଶ୍ୱାସ ମାଇଲା ।

କନକଠାରୁ ଗେହ୍ଲୀ ଥିଲା ଢେର ଫରକ । ଗୋବରା ତାକୁ ଭାରି ଗେଲ କରୁଥିଲା । ଗେହ୍ଲୀ ବି ଗୋବରା ପଛେପଛେ ଲାଗି ରହୁଥିଲା ଛାଇପରି ।

ଦିନେ ଦି'ପହରେ ଗୋବରା ଖାଇବଇଚି, ଦି'ତିନିଟା ସରକାରୀ ଜିପ୍ ଆସି ଆଡ଼ିବନ୍ଧ ଉପରେ ଠିଆ ହେଲା । ହୁଦାପକା ପିଆଦା ଆସି ତାକୁ ଡାକିଲା ଗାଡ଼ି ପାଖକୁ । ଗୋବରା ଛାତିରେ ଛନକା ପଶିଲା । ତହସିଲଦାର, ବି.ଡ଼ି.ଓ. ଯେ କାହିଁକି ତାକୁ ଡାକୁଚନ୍ତି, ସେ ବୁଝିପାରିଲା ନାଇଁ । ଗାଡ଼ି ପାଖରେ ସେ ହାଜର ହେବାରୁ ବୁଢ଼ା ତହସିଲଦାର ଆଖି ନଚେଇ କହିଲା, "ତୋ ନାଆଁ ଗୋବରା ମଳିକ ? ହଇବେ, ତୁ ଏକା କାହିଁକି ଆଡ଼ିବନ୍ଧ ଭିତରେ ଘର କରିଚୁ ? ଅନ୍ୟ ସମସ୍ତଙ୍କ ଘର ତ ବନ୍ଧ ବାହାରେ, ବନ୍ୟା ଆସିଲେ ସେମାନଙ୍କର ହଠାତ୍ କିଛି ହବ ନାହିଁ । ଖାଲି ତମ ଦି'ଟାଙ୍କ ପାଇଁ ଆମେ ସରକାରକୁ ହଜାରେ କୈଫିୟତ୍ ଦେଇପାରିବୁ ନାହିଁ । ତୁ ଶୀଘ୍ର ଏ ଜାଗା ଛାଡ଼ ।" ଗୋବରା ବଡ଼ କାକୁତି ମିନତି ହେଇ କହିଲା, "ସାର୍, ଆଜ୍ଞା, ନଈ ମୋ ପରାଣ । ତାକୁ ଛାଡ଼ି ମୁଁ କୁଆଡ଼େ ଯିମି ନାଇଁ ।" "ଧେତ୍, ଯିବୁ ନାହିଁ କ'ଣ ବେ, ସରକାର ତରଫରୁ ତତେ ସେ ଅନାବାଦୀ ପଡ଼ିଆରୁ ଚାରି ଡେସିମିଲ ଜମି ଦିଆଯିବ । ସେଠି ପୁଣି ବି.ଡି.ଓ. ତୋ ପାଇଁ ଘର କରିଦେବେ । ତମ ମଳିକସାଇଆ ସମସ୍ତେ ଏଥିରେ ରାଜି । ଏକା ତୋ ଲାଗି କ'ଣ ସରକାରର ନୀତି ବଦଳିଯିବ ?"

ତହସିଲଦାର ଖୁଂକାରିଲା ।

ଗୋବରା କାନ୍ଦକାନ୍ଦ ହେଇଗଲା । ଭାବିଲା, ନଈଠୁଁ ତାକୁ ଦୂର କରିବାପାଇଁ ଏ ହାକିମବାବୁଙ୍କର ଏତେ ଅଦଉତି କାହିଁକି ? ଆମେ ଯୋ'ଠି ରହିଲୁ, ଯେମିତି ରହିଲୁ, ୟାଙ୍କର କାହିଁକି ମୁଣ୍ଡ ବଥଉଚି ନା ? ହେଲେ ସେ କିଛି କହିପାରିଲା ନାହିଁ । ତହସିଲଦାର ଗୋଡ଼ତଳେ ଲଥମତ ହେଇ ପଡ଼ିଗଲା, ତହସିଲଦାର କିନ୍ତୁ ନଛୋଡ଼ବନ୍ଦା । "ତୋତେ ଏଠୁ ଅଲବତ୍ ହଟିବାକୁ ପଡ଼ିବ ।" ତହସିଲଦାର କହିଲେ ଓ ଜିପ୍‌ରେ ବସିଲେ । ତହସିଲଦାର ଫେରିବା ବାଟକୁ ଗୋବରା ଖାଲି ବୋକାଙ୍କ ପରି ଚାହିଁ ରହିଲା ଓ ନଈ କଥା ଭାବି କାନ୍ଦି ପକେଇଲା ।

ରାତିରେ ଗେହ୍ଲୀ ତାକୁ ଯେତେ ଯାହା ପଚାରିଲେ ବି ସେ କିଛି କହିଲା ନାହିଁ । ସାରାରାତି ଭାବିଭାବି ଠିକ୍ କଲା, ଆଉ କିଏ ବି ତାକୁ ଜାଗା ଛାଡ଼ିବାକୁ କହିଲେ, ସେ ଜବାବ ଦେବ ଠେଙ୍ଗାରେ; ତେଣିକି ସଜ୍ଜା ହେଉ କି ଫାଶୀ !

ତହସିଲଦାରବାବୁର କିନ୍ତୁ ଆଉ ଦେଖା ମିଳିଲା ନାହିଁ ଗୋବରା ଘର ପାଖରେ । ସବୁ ବର୍ଷ ପରି ସେଥର ଆସିଲା ବର୍ଷାଋତୁ । ଆକାଶ ଛାତିରେ ଛାଇ ହୋଇଗଲା କଳା ବାଦଲ । ଝିପି ଝିପି ବର୍ଷାରେ ନଈ ଦେହରେ ଫୁଲ ଫୁଟିଲା । ଫୁଲି ଫୁଲି ସେ ଯେମିତି ଫାଟି ପଡ଼ିଲା । ‘‘କମ୍ ଫୁଲେଇ କି ଏଇ ନଈ, ଶିରାବଣ ହେଲେ ଯେତେସବୁ ଛଇ ବାହାର କରିବ,’’ ଗୋବରା ଭାବିଲା ଓ ମନେ ମନେ ହସିଲା ।

ସେଦିନ ସକାଳୁ କଳସୀ ମାଠିଆରୁ ପାଣି ଅଜାଡ଼ିଲା ପରି ହେଲା ଯେ ନାହିଁ ନ ଥିବା ବର୍ଷା, ଆଉ ଛାଡ଼ିଲା ନାହିଁ । ବିଲବାଡ଼ିରେ ଆଣ୍ଠୁଏ ବହଳର ପାଣି ଜମିଗଲା । ଗୋବରା ସକାଳୁ ସକାଳୁ ଭୁଜା ମୁଠେ ପାଟିରେ ଦେଇ ବାହାରିଗଲା ନଈକୁ ଜାଲନେଇ । ଦେଖିଲା, ନଈରେ ପାଣି କ୍ରମେ ଢାଉଆ ପଡ଼ି ଆସୁଚି । ଭଉଁରି ବଢୁଚି । ସୁଅର ତେଜ ବି । ତା’ ମନ ଭା’ରି ଖୁସି ହୋଇଗଲା । ସେ ନିଶ୍ଚିତ ହେଇଗଲା ଯେ ବର୍ଷଯାକର ମାଛ ସେ ଦିନକରେ ଧରିବ । ନିଆଁକୁ ଡେଇଁ ପୋକମାଛି ମଲା ପରି ମାଛ ସବୁ ଛାଏଁ ଛାଏଁ ଧରା ଦେଲେ ତା’ ଜାଲରେ । ସେ ଖାଇବା ଲାଗି ଘରକୁ ବି ଗଲା ନାହିଁ । କଂସାଏ ଭାତ, ବେସରଦିଆ ମହୁରାଳି ମାଛ ଗିନାଏ ଶାଢ଼ି କାନିରେ ବାନ୍ଧି ନଈପଠାରେ ହାଜର ହେଇଥିଲା ଗେହ୍ଲୀ । ଭାତ କଂସାକ ନାକରେ କାନରେ ପୂରେଇ ଗୋବରା ପୁଣି ମଜ୍ଜିଗଲା ମାଛ ଧରାରେ ।

ବେଳ ଉତରଉତ ହେଉଥାଏ, ଗୋବରା ଦେଖିଲା ତା’ ଖଳେଇ, ଦଣ୍ଡୁରି, ପାଛିଆ ନାନା କିସମର ମାଛରେ ଭରପୂର । ମାଛକୁ ଦେଖି ଗୋବରା ଭାବିଲା ରାତି ବେଳକୁ ତା’ ଅଣ୍ଟିକୁ ନିଶ୍ଚେ ହଜାରେ ଟଙ୍କାରୁ କମ୍ ଆସିବ ନାଇଁ । ସେଥିରେ ଗେହ୍ଲୀ ପାଇଁ ନୂଆ ଶାଢ଼ିଟେ ହେଇଯିବ ।

ଗୋବରା ଘରକୁ ଫେରି ଭାର ଯୋଖିଲା ଓ ପଖିଆ ଘୋଡ଼ିହୋଇ ସିଧା ଚାଲିଲା ଖାଂକିହାଟ । ନାଆଁ ତା’ ଖାଂକିହାଟ, ହେଲେ କାହିଁରେ କେତେ ବାଟ ! ସଂଜ ଗଡ଼ିଲାଣି, ଗୋବରା ହାଟରେ ପହଞ୍ଚିଲା । ଝଡ଼ିପାଗ ଯୋଗୁଁ ହାଟରେ ଲୋକବାକ ଊଣା ପଡ଼ିଆସିଲେଣି ସେତେବେଳକୁ । ତଥାପି ଗୋବରାର ତଟକା ମାଛ ଦେଖି ଶାଗୁଣା ବିଲୁଆ ପରି ଘେରିଗଲେ ଗରାଖମାନେ । ଦି’ଘଣ୍ଟା ଭିତରେ ଗୋବରାର ପସରା ଫାଙ୍କା ହୋଇଗଲା ଓ ମୋଟା ଟଙ୍କା ସିଏ ଅଣ୍ଟିରେ ଖୋସିଲା । ତା’ପରେ ସିଧା ଚାଲିଲା ନଖିଆ ସାହୁ ଲୁଗା ଦୋକାନକୁ ।

ସାହୁ ବୁଢ଼ା ଦୋକାନରେ ଭିଡ଼ ନ ଥିଲା ଜମା । ସେ ଦୋକାନ ବନ୍ଦ କରିବାକୁ ଯାଉଥିଲା । ଗୋବରାକୁ ଦେଖି କହିଲା, କିରେ ଲୁଙ୍ଗି ନା ଗାମୁଛା ? ଗୋବରା କହିଲା,

''ନାଇଁ ଆଜ୍ଞା, ଶାଢ଼ିଖଣ୍ଡେ ନେମି ।'' ସାହୁ ବୁଢ଼ା କିସମ କିସମ ଶାଢ଼ି ଦେଖେଇଲା ଗୋବରାକୁ । ଗୋବରା ଖଣ୍ଡେ ନାଲିଶାଢ଼ି ପସନ୍ଦ କଲା ଓ ସାହୁ ବୁଢ଼ାକୁ ପାଞ୍ଚଶ' ଜାଗାରେ ତିନିଶ' ଧରେଇଲା । ବୁଢ଼ା କାଟି ହବାରୁ ଆଉ ଦଶଟଙ୍କା ତା' ହାତରେ ଗୁଂଜି ଦେଇ ସେ ନାକସଳଖ ଘରମୁହାଁ ଧାଇଁଲା ।

ପବନ ସାଙ୍ଗକୁ ତୁହାକୁ ତୁହା ବର୍ଷା କଚାଡ଼ି ହେଇ ପଡୁଥିଲା । ବରଡ଼ା ପଖିଆଟା ବାଆ କି ବର୍ଷା ସମ୍ଭାଳିବ ? ଗୋବରା ପୂରା ଭିଜିଯାଉଥିଲା । ତେଣେ ଦିନସାରା ପାଣିରେ ପଡ଼ି ପଡ଼ି ତା' ଦିହ ଶିଠା ପଡ଼ି ଯାଇଥିଲା । ତେଣୁ ମଝିରେ ମଝିରେ ତାକୁ ଖୁବ୍ ଶୀତ ଲାଗୁଥିଲା ଓ ଦାନ୍ତରେ ଦାନ୍ତ ବାଜୁଥିଲା । ତଥାପି, ନାଲି ଶାଢ଼ି ପିନ୍ଧିଲେ ଗେହ୍ଲୀ କେମିତି ଦେଖାଯିବ, ସେଇକଥା ଭାବିଭାବି ସେ ବିଲବାଡ଼ ନ ମାନି ସଳଖେଇଥିଲା ଗାଆଁ ଆଡ଼େ । ଗାଆଁ ପାଖେଇ ଆସିଲାବେଳକୁ ସେ ଦେଖିଲା ହିଡ଼ବାଡ଼ କିଛି କୁଆଡ଼େ ଜଣାପଡୁ ନାହିଁ । ''ଇରେ ଇଏତ କେବଳ ବର୍ଷା ପାଣି ନୁହେଁ, ନଈ ବଢ଼ିଲା ନା କ'ଣ ?'' ସେ ନିଜକୁ ନିଜେ କହି ଶଙ୍କିଗଲା । ସେତେବେଳକୁ ରାତି ଢେର ହେଲାଣି ।

ଗାଆଁ ଦାଣ୍ଡରେ ଅଣ୍ଟେ ପାଣି ଦେଖି ତା' ମୁଣ୍ଡ ବିଗିଡ଼ିଗଲା ଯେମିତି । ଆଡ଼ିବନ୍ଧ ଭିତରେ ତ ତା' ଘର । କ'ଣ ହେଇଥିବ ସେ ନିର୍ଜୀବ ଚାଳଖଣ୍ଡକର ଅବସ୍ଥା ? କୋଉଠି ଥିବ ଗେହ୍ଲୀ ? ଭାବିଲାକ୍ଷଣି ତାକୁ ସବୁ ଅନ୍ଧାର ଦିଶିଲା ଓ ସେ କୁହାଟ ଛାଡ଼ି ଅଣ୍ଟେ ପାଣିରେ ଦୌଡ଼ିଲା ।

ଆଡ଼ିବନ୍ଧ ଉପରେ ହାତେ ପାଣି ଚାଲୁଥିଲା । ଅନ୍ଧାର ଭିତରେ ପାଣିର ଲହଡ଼ି ବିଜୁଳି ପରି ଚିକ୍ ଚିକ୍ କରୁଥିଲା ମଝିରେ ମଝିରେ । ସାରା ଗାଆଁଟା ଯେମିତି ମଶାଣି ! ସୋରଶବଦ ନ ଥିଲା । କୋଉଠି କେମିତି ଆକୁଳ କଣ୍ଠରୁ 'ହରିବୋଲ' ଶବ୍ଦ ଭାସି ଆସୁଥିଲା । ଆଡ଼ିବନ୍ଧରେ ଠିଆ ହୋଇ, କୋଉଟା ନଈ କୋଉଟା ପଠା ଆଉ କୋଉଟା ତା' ଘର ବାରିପାରିଲା ନାହିଁ ଗୋବରା । ସେ ହାଉଲୁ ମାଉଲୁ ହେଲା ଓ ତା' ମୁଣ୍ଡ ଚକ୍‌କର କାଟିଲା । ସେ ଲଥ୍ କରି ପଡ଼ିଗଲା ଆଡ଼ିବନ୍ଧ ଉପରେ ।

ଚେତା ଫେରିଲାବେଳକୁ ଗୋବରା ଜାଣିଲା ସେ ଡାକ୍ତରଖାନାରେ । ତାକୁ କୁଆଡ଼େ ସରକାରୀ ଲୋକେ ଉଦ୍ଧାର କରିଥିଲେ । ହେଲେ ତା' ଗେହ୍ଲୀ ଓ ଦୁଇବଖରା ଚାଳଘର–ସବୁ ଚାପି ହୋଇଯାଇଥିଲା ନଈର ଜିଭତଳେ ।

ବଢ଼ି ଛାଡ଼ିବା ଆଠ ଦିନ ବିତିଗଲାଣି, ଗେହ୍ଲୀର ଶବ ମିଳି ନାହିଁ ।

ଗୋବରା ନଈବାଲିରେ କଡ଼ ଲେଉଟାଇଲା । ନଈକୁ ଦଣ୍ଡେ ଚାହିଁଲା । ''ଆଲୋ, ଗୋଟେ ମାଇପକୁ ତ ତଡ଼ିଦେଲୁ, ଗେହ୍ଲୀକୁ ଖାଇଲୁ, ତ' ଠି ଏତେ ସଉତୁଣୀପଣ ଥିଲା ଲୋ ମଉନମୁହାଁ,'' ଗୋବରା ଗୁଣୁଗୁଣେଇ ହଉ ହଉ କାନ୍ଦି ପକେଇଲା ।

ନଈ କଣେଇଁ କଣେଇଁ ହସୁଥିଲା, ଓଢ଼ଣା ତଳୁ ନୂଆବୋହୂଟେ ଯେମିତି !



# ଭରାନଈ

ଲିଜା କହିବ କହିବ ହୋଇ କହିପାରୁ ନ ଥିଲା କିଛି । କେମିତି କହିବ ? କାହାକୁ କହିବ ? ବୋଉକୁ ନା ଦେଈକୁ ? ବୋଉ ଆଗରେ କ'ଣ ଏସବୁ କଥା କେବେ ବି କହିହେବ ? ଦେଈ ପାଖରେ ତ କିଛି କହିବାକୁ ବି ଜିଭ ଲେଉଟୁ ନାହିଁ, ଅଧାରୁ ରହିଯାଉଛି କଥା । ହୁଏତ ସବୁକଥା କହି ହୋଇଥାନ୍ତା ସହପାଠିନୀ ଝୁନୁକୁ । କିନ୍ତୁ ସେ ବର୍ଷେ ହେଲା ଯେ ବାହା ହୋଇଗଲାଣି । ଏବେ କେଉଁ ଏକ ଦୂର ଗାଁରେ ଥିବ ତା' ବର ସାଙ୍ଗରେ ।

ଲମ୍ବା ଖରାଛୁଟି ସରି ସରି ଆସୁଥିଲା । ତା'ପରେ ଲିଜା ଚାଲିଯିବ କଲେଜକୁ । ପ୍ଲସ୍ ଥ୍ରିରେ ନାଁ ଲେଖାଇବ । ରହିବ ହଷ୍ଟେଲରେ ଓ ହଜିଯିବ ପଢ଼ାପଢ଼ିରେ । ତା' ମନର କଥା ସବୁ ସେମିତି ଅକୁହା ରହିଯିବ ।

ବୋଉକୁ ନିରୋଳାରେ ପାଇ ସେଦିନ ଲିଜା ଅକସ୍ମାତ୍ କହିପକେଇଥିଲା, ''ବୋଉ, ତୋତେ ଗୋଟେ କଥା କହିବି ବୋଲି କେବେଠୁଁ ଭାବିଲିଣି, କହିପାରିନି ।'' ଏତିକି କଥା ତା' ପାଟିରୁ ବାହାରିଛି କି ନାହିଁ, ସେ ନିଜେ ନିଜ ଜିଭକୁ ଜୋର୍‌ରେ କାମୁଡ଼ି ପକେଇଲା । ବୋଉ ଯାହାହେଉ ସେତେବେଳେ ଅନ୍ୟମନସ୍କ ଥିଲା । ଲିଜାର କିଛି କଥା ସେ ଠିକ୍ ଶୁଣିପାରିଲା ନାହିଁ । ଓଲଟି ପଚାରିଲା, ''କ'ଣ କହିବୁ କି ଲୋ ମା' ?'' ଲିଜା ସୁଯୋଗ ଖୋଜୁଥିଲା । କଥାଟାକୁ ବାଆଁରେଇ ଦେଲା ।

ପୁଣି ଏହି ପହିଲି ରଜର ଦି'ଦିନ ଆଗର କଥା । ସଞ୍ଜବେଳେ ଦେଈ ସହିତ ବସି ଏଣ୍ଡୁତେଣ୍ଡୁ ଗପ କରୁକରୁ ଲିଜା କହିଦେଲା, ''ଦେଈ, ତୋତେ ଗୋଟେ ପ୍ରଶ୍ନ ପଚାରିବି, ଭାବୁଛି ତୋ ପାଖରେ ତା'ର ଉତ୍ତର ଅଛି ।'' ଦେଈ କହିଲା, କ'ଣ ପଚାରିବୁ, ପଚାରୁନୁ ଏଇନେ । ଲିଜା କିନ୍ତୁ ନିରବିଗଲା ନିଜ ଭିତରେ । କହିବ କି ନାହିଁ ଭାବିହେଲା । ହଠାତ୍ ତା' ଓଠ ଅଠା ଅଠା ଲାଗିଲା । ସେହିକ୍ଷଣି କେଉଁଠି ଥିଲା କେଜାଣି, ଅଦିନିଆ ବାଆ ଯେ ବହିଲା ଗାଁ'ଛାତି ଥରେଇ, ବରଷା ଚାଟିରି ଖେଳିଲା ଦାଣ୍ଡଘାଟରେ । କଥା ସେଇଠୁ ରହିଲା । ଲିଜା ତ୍ରାହି ପାଇଗଲା ସେଦିନ । ଦେଈ ଆଉ ସେକଥା ଉଠାଇଲା ନାହିଁ ।

ଦେଈକୁ କ'ଣ କହିହେବ ଯେ ଢେର ଦିନ ହେଲା ଜଣେ ସୁନ୍ଦର ରାଜକୁମାର ତା' ପାଖକୁ ଆସୁଛନ୍ତି । ପ୍ରଥମେ ପ୍ରଥମେ ଭାରି ଅସ୍ପଷ୍ଟ ଲାଗୁଥିଲା ତାଙ୍କ ଚେହେରା ।

ଲିଜା ପୁଣି ଖୁବ୍ ଲାଜ କରୁଥିଲା ତାଙ୍କୁ । ଏବେ କିନ୍ତୁ ବାରମ୍ବାର ଆସୁଛନ୍ତି ସେହି ଦିବ୍ୟ-ତରୁଣ । ଲିଜା ତାଙ୍କୁ ଦେଖି ଗୋଟାପଣେ ବତୁରିଯାଉଛି ଭିଜାମାଟି ପରି ।

ଲିଜା ନବମ ଶ୍ରେଣୀରେ ପଢୁଥିଲା; ତା' ଭିତରେ କ'ଣ ଗୋଟେ ଘଟୁଛି ବୋଲି ସେ ଧୀରେ ଧୀରେ ଅନୁଭବ କଲା । ଭାରୀ ଭାରୀ ଲାଗିଲା ତା'ଦେହ, ଅଥଚ ଟିକି ଚଢ଼େଇଟେ ପରି ତା' ମନଟା ଯେମିତି ଉଡ଼ି ବୁଲିବାକୁ ଉଚ୍ଚାଟ ହେଲା ! ବଦଳି ଯାଉଥିବା ନିଜ ଦେହ ତାକୁ କେତେ ଆତ୍ମହରା କଲା ନାହିଁ, ନୀଳ ଆକାଶକୁ ହାତପାହାନ୍ତାରେ ଧରି ରଖିବା ଲାଗି ତା' ମନର ବ୍ୟାକୁଳତା ତାକୁ ତା'ଠୁ ବଳି ଚକିତ କଲା । ଅବଶ୍ୟ ହଠାତ୍ ଦିନେ ତାକୁ ଲାଗିଲା ଯେ ଗୋଟେ କଢ଼ିପରି ସେ ଫୁଟିଯାଇଛି ନିଜ ଅଜାଣତରେ । ସେ ହତ୍‌ବଡ଼େଇଗଲା ତତ୍‌କ୍ଷଣାତ୍ । କିନ୍ତୁ ପରେ ପରେ ସେ ବୁଝିଗଲା ଯେ ନଈ ନିଜେ ଜାଣି ନ ଥାଏ, କେବେ ବନ୍ୟା ଆସିବ ତା'ଦେହରେ, ଜଣା ନ ଥାଏ ସେମିତି ବି ସହକାରକୁ, ମୁକୁଳିତ ହେବାର ମୁହୂର୍ତ୍ତ ।

ଅଦିନରେ ଲିଜା ବଉଳଫୁଲର ବାସ୍ନାରେ ବିମୋହିତ ହେଲା । ବିଭୋର ହେଲା ଅସୁମାରି ସ୍ୱପ୍ନରେ । ତା' ଦେହରେ ଫୁଟିଲା କଦମ୍ବ; ଚମ୍ପାଫୁଲ ମହକରେ ଯେମିତି ବାଟ ହୁଡ଼ିଲା ତା' ମନ । ଠିକ୍ ସେହି ସମୟରେ ଗୋଟେ ଝାପ୍‌ସା ମୁହଁ ତାକୁ ଅଥୟ କଲା ମୁହୁର୍ମୁହୁଃ । ସେଦିନ ସେ ଦେଇ ପାଖରେ ଶୋଇଥିଲା ଗୋଟିଏ ବିଛଣାରେ । ଦେଇ କହିଲା, ''ଲିଜା, ନିଦରେ ଏମିତି ବାଉଳି ହଉଛୁ ଯେ ? ସ୍ୱପ୍ନ ଦେଖିଲୁ ନା କ'ଣ ? ଏମିତି ଥରୁଛୁ କାହିଁକି ? ଭୂତ ସ୍ୱପ୍ନ ଦେଖିଲୁ କି ?'' ଦେଇର ପାଟି ଶୁଣି ଲିଜାର ନିଦ ଭାଙ୍ଗିଯାଇଥିଲା । ଆଉ ନିଦ ଭାଙ୍ଗିଲାକ୍ଷଣି ଚିତ୍ରପ୍ରତିମାପରାୟ ରାଜକୁମାର ସ୍ମୃତିରେ ନ ଥିଲେ । ଅଥଚ ଝାଳେଇ ଯାଇଥିଲା ଲିଜାର ତମାମ ଶରୀର । କିନ୍ତୁ ସେ କିଛି କହିଲା ନାହିଁ । କଡ଼ ଲେଉଟାଇ ଶୋଇପଡ଼ିଲା ପୁଣି ।

ସେହିଦିନଠୁଁ ରାଜକୁମାରଙ୍କ ଆସିବାଯିବା ଲାଗିରହିଛି । କେତେବେଳେ ସେ ପକ୍ଷିରାଜ ଘୋଡ଼ା ଚଢ଼ି ଧାଁସନ୍ତି ତ କେତେବେଳେ ଓହ୍ଲେଇ ଆସନ୍ତି ମେଘରୁ, ବିଜୁଳିପରି । ପୁଣି କେତେବେଳେ ଜହ୍ନଆଲୁଅର ରୁପା ନଈରେ ଭାସିଭାସି ଆସନ୍ତି ସୁନାର ନଉକା ଚଢ଼ି । ତାଙ୍କ କଥାରେ ବାନ୍ଧି ହୋଇଯାଏ ଲିଜା । କିନ୍ତୁ ସେ କେଉଁ ଦେଶର ରାଜପୁତ୍ର ବୋଲି ପଚାରିଲାବେଳକୁ ସେ ଅନ୍ତର୍ଦ୍ଧାନ ହୋଇସାରିଥାନ୍ତି । ଲିଜା ଚାରିଆଡ଼କୁ ଚାହେଁ, ଖୋଜେ ପ୍ରିୟ ରାଜପୁତ୍ରଙ୍କୁ । ପୁଣି ତାଙ୍କୁ ନ ପାଇବା ଦୁଃଖରେ ଭୋ'କରି କାନ୍ଦିପକାଏ । ତା'ପରେ ତା' ନିଦ ଭାଙ୍ଗିଲାବେଳକୁ ସେ ଦେଖେ, ଦେଇ ଉଠିସାରିଛି ଓ ପଚାରୁଛି, ''କି ସ୍ୱପ୍ନ ଦେଖିଲୁ ଯେ ଏମିତି କଇଁକଇଁ ହୋଇ କାନ୍ଦୁଛୁ ?'' ଲିଜା ଲାଜେଇଯାଏ, କହେ କିଛି ନାହିଁ ।

ବେଳେବେଳେ ରାଜକୁମାର ଆସନ୍ତି ଫଗୁଣର ଦଲକାଏ ବାତୁଳ ପବନ ପରି । ଆହା...ମହଣେ ମଲ୍ଲୀର ବାସ୍ନାରେ ଲିଜାର ନାକ ପୋତିପଡ଼େ ।

ଲିଜା ଦେଖିଲାବେଳକୁ, କୁମାର ଧରିଥାନ୍ତି କୁନିକୁନି ନକ୍ଷତ୍ରର ମାଳାଟିଏ । କହନ୍ତି, ''ନିଅ ରାଜନନ୍ଦିନୀ, ଏ ମାଳାଟି- ମୁଁ ତୁମଲାଗି ନିଜ ହାତରେ ଗୁନ୍ଥିଛି ।''

''ମୁଁ କିପରି ରାଜନନ୍ଦିନୀ ହେଲି ? ମୁଁ ଯେ କୃଷକକନ୍ୟା !'' କହେ ଲିଜା ।

ସେ କହନ୍ତି, ''ତୁମେ ବୁଝିପାରିବ ନାହିଁ ସେକଥା, ନିଅ, ନିଅ, ଏ ପାରିଜାତ ଫୁଲର ମାଳାଟି । ତୁମକୁ ବେଶ୍ ମାନିବ ।''

''ପାରିଜାତ ଫୁଲ !'' ବିଶ୍ୱାସ କରିପାରେ ନାହିଁ ଲିଜା । କିନ୍ତୁ କୁମାର ନିଜେ ତାକୁ ପିନ୍ଧାଇ ଦିଅନ୍ତି ମାଳାଟି । ତା'ପରେ କୁମାରଙ୍କ ବଳିଷ୍ଠହାତର ଆଉଁଶାରେ ସେ ଶିହରିତ ହୁଏ । ବେଳେବେଳେ ଲିଜାର ଘନକୃଷ୍ଣ କବରୀର ଗହନବନରେ ବାଟବଣା ହୁଅନ୍ତି ନିଜେ ରାଜପୁତ୍ର । ଲିଜା ହସିଦିଏ, ମନଖୋଲା ହସ । ତା'ପରେ ସେ ଧଡ଼ପଡ଼ ହୋଇଉଠେ । ଦେଖିଲାବେଳକୁ ଦେଈ ତା'ର ମୁଣ୍ଡ ଆଉଁଶୁଛି । କହୁଛି, ''ଆଜି କି ସ୍ୱପ୍ନ ଦେଖିଲୁ କି ଲୋ, ଖିଲିଖିଲି ହୋଇ ହସୁଛୁ ?'' ଲିଜା ଛାତିରୁ ଶୀତ୍କାର ସେତେବେଳଯାଏଁ କମି ନ ଥାଏ । ସେ ଶୋଇଯିବାର ଅଭିନୟ କରେ ।

ଏମିତି ସବୁ ରାତିରେ ସ୍ୱପ୍ନ, ସବୁ ସ୍ୱପ୍ନରେ ରାତି ।

ଦେଈ କହିଲା, ''ଲିଜା, ତୁ ଏମିତି ବାରବାର ସ୍ୱପ୍ନ ଦେଖିବା, ସ୍ୱପ୍ନରେ କଥାବାର୍ତ୍ତା କରିବାଟା ମୋଟେ ଭଲ ନୁହେଁ । ଏହା ଗୋଟେ ସାଇକୋଲଜିକାଲ୍ ଡିଜିଜ୍ ହୋଇଥାଇପାରେ । ଦେଖିବା, ମୁଁ କଲେଜ ଗଲେ ସାଇକୋଲଜିର କୌଣସି ଜଣାଶୁଣା ସାର୍‌ଙ୍କୁ ଏକଥା ପଚାରିବି ।'' ଲିଜା ସାଇକୋଲଜିକାଲ ଡିଜିଜ୍ କ'ଣ ଜାଣି ନ ଥିଲା । ଏକଥା ଶୁଣି ସେ ଭାରି ଡରିଗଲା । ଦେଈକୁ କିଛି ବି କହିଲା ନାହିଁ । କାରଣ ସେ ଜାଣିଥିଲା ଯେ ଦେଈର କଲେଜ ଖୋଲିବ ଖୁବ୍ ଶୀଘ୍ର । ସେ ତା'ପରେ କଲେଜ ହଷ୍ଟେଲ୍‌ରେ ଯାଇ ରହିବ । ଫେରିବ ଯାଇ ମାସେ କି ଦି'ମାସ ପରେ । ସେତେବେଳକୁ ତା'ର ଏସବୁ କଥା କିଛି ବି ମନେ ନ ଥିବ ।

ସତକୁ ସତ ଦେଈ କଲେଜ ପଳେଇଲା । ଲିଜା ପାଠପଢ଼ାରେ ମନଦେଲା । ଚାହୁଁଚାହୁଁ ନବମ ଡେଇଁ ଦଶମରେ ପଢ଼ିଲା । ହାଇସ୍କୁଲ୍ ପରୀକ୍ଷା ଦେଇ ପାସ୍ କଲା ଏକା ଚାନ୍‌ସରେ । ଏସବୁ ଭିତରେ କିନ୍ତୁ ତା'ର ରାଜକୁମାରଙ୍କ ସହିତ ବରାବର ଦେଖା ହେଉଥିଲା ଓ ସେମାନେ ଦୀର୍ଘ ସମୟ ଧରି ଗପସପ କରୁଥିଲେ ।

ଯା'ଭିତରେ ଅବଶ୍ୟ କୁମାରଙ୍କ ଫାଜିଲାମି ବେଶ୍ ବଢ଼ିଯାଇଥିଲା । ଏଇ ଯେମିତି ସେ ଲିଜାର ହାତ ଧରୁଥିଲେ ଯେ ଧରୁଥିଲେ, ଆଉ ଛାଡୁ ନ ଥିଲେ ଜମା । ତାକୁ ଚାହିଁ କ'ଣ ସବୁ ଭାବୁଥିଲେ ଯେ ଭାବୁଥିଲେ, ଅନ୍ୟମନସ୍କତା ଭିତରୁ ଫେରିବାକୁ ତାଙ୍କୁ ଲାଗୁଥିଲା ଅବା ଗୋଟେ ବର୍ଷ । ବେଳେବେଳେ ପୁଣି ତାକୁ ସେ ତାଙ୍କ ବାହୁବନ୍ଧନରେ ବାନ୍ଧି ରଖୁଥିଲେ ଯେ ରଖୁଥିଲେ, ଯେମିତି ଗୋଟେ ଯୁଗ ଶେଷ ନ ହେବା ପର୍ଯ୍ୟନ୍ତ ।

ଲିଜା ଅବଶ୍ୟ ବେଳେବେଳେ କୃତ୍ରିମ ବିରକ୍ତି ପ୍ରକାଶ କରୁଥିଲା ତାଙ୍କ ଉପରେ । ଥମଥମ ହେଉଥିଲା ରାଗରେ । ତାଙ୍କଠାରୁ ଦୂରେଇଯାଉଥିଲା ଯୋଜନେ ଅଭିମାନରେ ।

କିନ୍ତୁ ଲିଜା ରାଜପୁତ୍ରଙ୍କୁ ସତରେ ଭୁଲିପାରୁ ନ ଥିଲା । ଏକ ତୀବ୍ର ଆକର୍ଷଣରେ ସେ ଯେମିତି ହୋଇଥିଲା ଆତ୍ମବିସ୍ମୃତ । ଇଚ୍ଛା କରି ବି ତାଙ୍କୁ କେବେ ନାହିଁ କରିପାରୁ ନ ଥିଲା କୌଣସି କଥାରେ । ବାରମ୍ବାର ମନେପଡୁଥିଲା ଲିଜାର, କୁମାର କିପରି ତା'ମନରେ ଭରିଦିଅନ୍ତି ବିକଚ ଶତଦଳର ଶିହରଣ । ତା' ସର୍ବାଙ୍ଗରେ କିପରି ଆଙ୍କିଦିଅନ୍ତି ସହସ୍ର ତାରାର ଆକାଶ । ପୁଣି ତା' ନିତମ୍ବଚୁମ୍ବୀ କୁନ୍ତଳରେ ବେଳେବେଳେ ସୃଜନ୍ତି ନୀଳନଦୀର ବର୍ଣ୍ଣବିଭା ।

ସେତେବେଳେ ଲିଜାର ସଂଜ୍ଞାହୀନ ଅବସ୍ଥା ।

ଲିଜା କଲେଜରେ ଭର୍ତ୍ତି ହେଲାବେଳକୁ ତା'ଦେଈ ଚାଲିଯାଇଥିଲା ଆଉ ଏକ ସହରକୁ ବି.ଏଡ୍. କରିବାପାଇଁ । ଲିଜା ରହିଲା ହଷ୍ଟେଲ୍‌ରେ । ତା' ଗେଲବସର ଜୀବନରେ ଯବନିକା ପଡ଼ିଲା ସେଇଠୁ । ନୂଆ ନୂଆ କଲେଜ ଜୀବନ ତାକୁ କେମିତି ବେଖାପ ଲାଗୁଥିଲା । ସେ ଅନ୍ୟ ସହପାଠିନୀମାନଙ୍କ ସହିତ ନିଜକୁ ଏତେଶୀଘ୍ର ଖାପ୍ ଖୁଆଇପାରୁ ନ ଥିଲା । ତା'ର ବେଶି ବେଶି ଘରକଥା ମନେପଡୁଥିଲା କଲେଜରେ । ବାରମ୍ବାର ଦିଶିଯାଉଥିଲା ବୋଉର ମୁହଁ । କୁମାର ବୋଧେ ଲିଜାର ନୂଆ ଠିକଣା ପାଇ ନ ଥିଲେ । ତାଙ୍କ ଦେଖା ମିଳିଲାନି କିଛିଦିନ । ଲିଜା ଅସ୍ଥିର ହେଉଥିଲା ମନେମନେ । କଲେଜ ଆସିବା ପୂର୍ବରୁ କୁମାରଙ୍କୁ ଠିକଣାଟା ଦେବା କ'ଣ ତା'ର ଉଚିତ ନ ଥିଲା ?

ଲିଜା ଭାବୁଥିଲା, କୁମାରଙ୍କୁ ଆଉ ବେଉରା ଦେବ କି ? ତା'ପରେ ସେ ମନେମନେ ହସୁଥିଲା । କୁମାରଙ୍କ ଠିକଣା କୋଉ ବା ତାକୁ ଜଣା ଅଛି ? ଯେତେଥର ତାଙ୍କୁ ପଚାରିଛି ଲିଜା, କେଉଁ ଦେଶର ତୁମେ ରାଜକୁମାର, ସେ ସେତେଥର ହସିଦେଇଛନ୍ତି । କେବେକେବେ ହୋଇଛନ୍ତି ମୂକବତ୍ ନିରବ । ଏଥର ଦେଖାହେଲେ ସେ ଆଗ ତାଙ୍କ ଠିକଣାଟା ରଖିନେବ, ଭାବୁଥିଲା ଲିଜା । କିନ୍ତୁ ସେ ଏଠିକି ଆସିଲେ ତ ?

କୁମାର ଲିଜାକୁ ଛାଡ଼ି ବେଶିଦିନ ରହିପାରିଥା'ନ୍ତେ କି ଏକା ଏକା ? ସେ ଆସିଲେ ପୁନଶ୍ଚ । ଏଥର ଲିଜା ଲାଜେଇଗଲା ଖୁବ୍, ଦେଖିଲାକ୍ଷଣି ତାଙ୍କୁ । ସଳଖି ଚାହିଁପାରିଲା ନାହିଁ ତାଙ୍କ ମୁହଁକୁ । କିନ୍ତୁ କେତେ ସମୟ ଅବା ପାଖରେ ପାଇ ବି ନ ଦେଖି ତାଙ୍କୁ ସେ ରହି ପାରିଥା'ନ୍ତା ? ''ଅୟି, ରାଜନନ୍ଦିନୀ', ଏହି କୋମଳ ଉଚ୍ଚାରଣ ପୁନର୍ବାର ଲିଜା ଶୁଣିଲାକ୍ଷଣି ବାଲିବନ୍ଧ ପରି ଭାଙ୍ଗିଗଲା ତା'. ମନର ଆକଟ । ଏଥର ରାଜକୁମାର ଆସିଲେ ନାହିଁ ନିଜେ, ଦୂରକୁ ଡାକିଲେ 'ଆସ, ଆସ' ବୋଲି । ଲିଜା ବିଛଣାରୁ ଉଠିଲା ଧଡ଼ପଡ଼ ହୋଇ । ତା' ତୀକ୍ଷ୍ଣ ଚାହାଣିରେ ଅବା ଖୋଲିଗଲା ହଷ୍ଟେଲ୍‌ର ସବୁ ଦ୍ୱାର, ଦ୍ୱାରାନ୍ତର । ସେ ଚାଲିଲା କୁମାରଙ୍କ ପଛେପଛେ, ବେଶ୍ କିଛି ଦୂର । ତା'ପରେ ଯେମିତି ହଜିଗଲା ତାଙ୍କ ଗାଢ଼ ଆଶ୍ଲେଷରେ, ସମ୍ମୋହନରେ ।

ଅସରନ୍ତି ଗପ, ଅସରନ୍ତି ରାତି । ସବୁ ଲାଗେ କିନ୍ତୁ ମୁହୂର୍ତ୍ତଟିଏ ପରି । ଶୀତଳ ପବନର ମଧୁର ଚୁମ୍ବନ ଅବା କେବେକେବେ କେଉଁ ଅଜଣା ଚଢ଼େଇର ଲଳିତ ରାଗିଣୀ, ରାତି ପାହିଆସିବାର ସଂକେତ ଦିଅନ୍ତି । ଦିଗନ୍ତର ନୀଳିମାରେ ମିଶିଯାଆନ୍ତି କୁମାର, ଫେରିଆସେ ଲିଜା, ହଷ୍ଟେଲକୁ ।

ବିଜ୍ଞାନ ପଢୁଥିବା ଲିଜାର ରୁମ୍‌ମେଟ୍ ରୁବି ଥରେ ଲିଜାକୁ କହିଲା ଏକାନ୍ତରେ –''ଅନେକ ଦିନ ପରେ ମୁଁ ଭାବିଲି, ତୋ'ଠୁ କଥାଟି ଲୁଚେଇ ରଖିବିନି, କେମିତି ଲୁଚେଇବି ଯେ ?'' କଥା କ'ଣ କହୁନୁ ବୋଲି ଲିଜା ନିଜ ସନ୍ତର୍ପଣ ଭାବଟିକୁ ଗୋପନ ରଖି କହିବାରୁ ରୁବି ଫିଟେଇଲା ପେଡ଼ି – ''ଲିଜା, ତୁ ରାତି ଅଧରେ ନିଦ ବାଉଳାରେ ଉଠିପଡ଼ି କେଉଁଆଡ଼େ ଚାଲିଯାଉଛୁ ଅକସ୍ମାତ୍ ? କିଛି ସମୟପରେ ପୁଣି ଫେରିଆସୁଛୁ– ତୋ' ଆଖିରେ ସେତେବେଳେ ବି ସେମିତି ବହଳ ନିଦର ଲେପ, ଢଳଢ଼ଳ ପାଦ ।''

''ମୋ'ର କିନ୍ତୁ କିଛି ମନେପଡୁନି ।'' ଲିଜା ଉତ୍ତର ଦେଲା । ରୁବି ସେଇଠୁ କହିଲା, ''ତୁ ଜାଣିପାରୁ ନ ଥିବୁ... । ମୁଁ କିନ୍ତୁ ଅନେକ ଥର ତୋତେ ଏମିତି ଅବସ୍ଥାରେ ଦେଖିଛି । ମୁଁ ତ ପ୍ରଥମେ ଆଶ୍ଚର୍ଯ୍ୟ ହେଲି । ତୋତେ ପୁଣି ସନ୍ଦେହ କଲି ।''

''ଆଚ୍ଛା ?'' ଲିଜା ଏତକ କହି ହସିଦେଲା । ରୁବି କିନ୍ତୁ କହିଚାଲିଥିଲା–''ଦିନେ ପୁଣି ମୁଁ ସାହସ ବାନ୍ଧି ତୋ'ପଛେପଛେ ଗଲି । ହଷ୍ଟେଲ୍ ପଛର ସେ ପଡ଼ିଆ ଆଡ଼କୁ ତୁ ଯାଉଥିଲୁ, ଯନ୍ତ୍ରଚାଳିତ କଣ୍ଢେଇଟେ ପରି । କିନ୍ତୁ ଏତେ ତୋଫା ଜହ୍ନରାତିରେ ତୁ କୁଆଡ଼େ ହଜିଗଲୁ କି ଲୋ ? ମୁଁ ତୋତେ ଖୋଜିଖୋଜି ନୟାନ୍ତ ହେଲି, କିନ୍ତୁ ପାଇଲି ନାହିଁ । ଭାରି ଡରମାଡ଼ିଲା ମୋତେ । ଧଇଁସଇଁ ହୋଇ ଦୌଡ଼ି ପଳାଇ ଆସିଲି ହଷ୍ଟେଲ୍‌କୁ ।''

''ତା'ପରେ ।'' ଲିଜା ମୁହଁରେ ପ୍ରଶ୍ନବାଚୀ ।

''ତୁ ଢେର୍ ସମୟ ପରେ ଫେରିଲୁ ସେଦିନ, ମଦାଳସା ମୂର୍ତ୍ତିଟେ ପରି ।'' ରୁବିର କଥା କିନ୍ତୁ ଏଇଠୁ ସରିଲା ନାହିଁ । ଲିଜାର ଅନାଗ୍ରହ ସତ୍ତ୍ୱେ, ସେ ଗପି ଚାଲିଲା– ''ନିଦରେ ଏମିତି ଚାଲିବାଟା ଭଲ ଲକ୍ଷଣ ନୁହେଁ । ଏଟା ଗୋଟେ ବେମାରି, ବୁଝିଲୁ ? ସୋମ୍‌ନାବୋଲିଜିମ୍ । ଜଣେ ସାଇକିଆଟ୍ରିଷ୍ଟ ପାଖକୁ ଯିବା । ଏକଥା ଯେମିତି କେହି ନ ଜାଣନ୍ତି ।'' ଲିଜା ମୁଣ୍ଡ ହଲେଇଲା । ରୁବି ବୁଝିଲା, ଲିଜା ରାଜି ତା'କଥାରେ ।

ସାଇକିଆଟ୍ରିଷ୍ଟ ପାଖକୁ କିନ୍ତୁ ଯିବା ଦରକାର ପଡ଼ିଲା ନାହିଁ । ସେତେବେଳକୁ ପରୀକ୍ଷା ପାଖେଇ ଆସିଥିଲା । ପାଠର ଭାର ଲଦି ହୋଇଯାଇଥିଲା ସଭିଙ୍କ ମୁଣ୍ଡରେ । ସାରା ରାତି ପାଠପଢ଼ା ; ହଷ୍ଟେଲରୁ ରାତି ହଜିଗଲା । ସାଇକିଆଟ୍ରିଷ୍ଟ ପାଖକୁ ଯିବାକଥା ବୋଧେ ରୁବିର ଆଉ ମନେପଡ଼ିଲା ନାହିଁ । ଲିଜାକୁ ଆଉ ନିଦରୁ ଉଠାଇଲେ ନାହିଁ ରାଜକୁମାର, 'ଆସ ଆସ' ବୋଲି ଡାକିଲେ ବି ନାହିଁ ।

ଦୀର୍ଘ ପାରିଧିରେ ଥିଲେ କି ଆଉ ଯୁବରାଜ ?

ପରୀକ୍ଷା ଦେଇସାରି ଲିଜା ଗାଁକୁ ଫେରିବା ଆଉ ଯୁବରାଜଙ୍କର ପାରିଧିରୁ ପ୍ରତ୍ୟାବର୍ତ୍ତନ ଏକକାଳୀନ ଘଟିଥିଲା ସମ୍ଭବତଃ । ନ ହେଲେ ସେ ଗାଁରେ ପହଞ୍ଚୁ ପହଞ୍ଚୁ ରାଜକୁମାରଙ୍କ ଦେଖାପାଇଥା'ନ୍ତା କିପରି ?

ଲିଜା କିନ୍ତୁ ଏଥର ବଡ଼େ ଅଭିମାନ କଲା କୁମାରଙ୍କ ଉପରେ । କଥା ହେବ ନାହିଁ ବୋଲି କହିଲା । କୁମାର କହିଲେ, କଥା ତ ହୋଇସାରିଲଣି, ପୁଣି କଥା ହେବନି କିପରି ?'' ନିଜ ମୂଢ଼ପଣ ବୁଝିବାପାଇଁ ଲିଜାକୁ ସମୟ ଲାଗିଲା ନାହିଁ । ସେ ଫିକ୍ କରି ହସିଦେଲା ଯେ ଚନ୍ଦ୍ରଉଦିଆରେ ଝଲସି ଉଠିଲେ ରାଜପୁତ୍ର । ଲିଜା ପୁଣି କହିଲା, ''ଏଥର ତମେ କେଉଁ ଦେଶର ରାଜକୁମାର ବୋଲି ନ କହିଲେ, ମୁଁ ଆଉ ଜମା କଥା ହେବିନି ତୁମ ସାଙ୍ଗରେ ।'' କୁମାର କେଉଁ ଛାଡ଼ିବା ଲୋକ କି ? ସେ କହିଲେ, ''ମୋ ସାଙ୍ଗରେ ଯିବ ଯଦି ସିନା, ମୁଁ ଦେବି ମୋ ଠିକଣା ।'' କୁମାରଙ୍କ କଥା ନ ସରୁଣୁ, ଲିଜା ହଁ ମାରିଦେଲା ଓ ତା'ପରେ ଲାଜକୁଳୀ ଲତାପରି ଝାଉଁଳି ପଡ଼ିଲା ହଠାତ୍ ।

କୁମାର କିନ୍ତୁ କହିଚାଲିଲେ, ''ଏଇ ନୀଳ ଆକାଶ ଯେଉଁଠି ସରିଛି, ସେଇଠୁ ଆରମ୍ଭ ଗୋଟେ ରାଜ୍ୟର ସୀମାରେଖା । ସେହି ରାଜ୍ୟ ମଝିରେ ଗୋଟେ ମନୋରମ ନଗର । ନଗର ମଝିରେ ପୁଣି ସୁନ୍ଦର ନଅର । ରାଜନଅର । ସୁନାରେ ତିଆରି ତା' କାନ୍ଥବାଡ଼ । ହୀରା, ମୋତି, ମାଣିକ୍ୟରେ ଗଢ଼ା ତା'ର ଦ୍ୱାର ଓ ଗବାକ୍ଷ । ଜରା, ବ୍ୟାଧି ଓ ମରଣରୁ ମୁକ୍ତ ସେ ସାମ୍ରାଜ୍ୟ । ସେଠି ନା ଦିନ ଅଛି, ନା ରାତି । ସେଠି କ୍ଷୁଧା ନାହିଁ କି ନାହିଁ ତୃଷ୍ଣା । ସେଠି ଋତୁର ନାମ ବସନ୍ତ । ପବନର ନାମ ପୁଣି ମଳୟ । ମୋ ସାଥିରେ କ'ଣ ତୁମେ ଯିବ ନାହିଁ ସେଠାକୁ ?''

''ନା ବାବା, ନା– ମୁଁ ଏ ମେଘବର୍ଷା, ନଈନାଳ, ଧୂଳିମାଟି, ହସକାନ୍ଦ ଓ ସୋହାଗ– ଶିହରଣର ପୃଥିବୀକୁ ଛାଡ଼ିପାରିବି ନାହିଁ ।'' ଲିଜା କିଛି ଭାବିବା ଆଗରୁ ଯେମିତି ଶବ୍ଦସବୁ ଝରିପଡ଼ିଲେ ତା' ଓଠତଳୁ ।

''ମାଟି ମୋହରେ କେବେଠାରୁ ଏମିତି ଲିପ୍ତ ହେଲ ଜେମାମଣି ?'' ପ୍ରଶ୍ନ କଲେ କୁମାର । ଲିଜା ପ୍ରସଙ୍ଗ ବଦଳାଇ କହିଲା, ''ମୁଁ କେମିତି ଜେମା ହେଲି, କହିବ କହିବ ବୋଲି କହିଲ ନାହିଁ ତ ?'' ରାଜକୁମାର ଉତ୍ତର ଦେଲେ, ''ତୁମେ ପ୍ରବାଳ ଦ୍ୱୀପର ଅଲିଅଳ ରାଜତନୟା । ଭୁଲିଯାଇଛ ପଛ କଥାସବୁ । ସମୁଦ୍ର ସୀମାନ୍ତରେ ଅଛି ଗୋଟେ ପ୍ରବାଳ ପ୍ରାଚୀର । ପ୍ରାଚୀର ଡେଇଁଲେ ଏକ ଦ୍ୱୀପ– ଚିରଲୋହିତ–ଅସ୍ତଗାମୀ ସୂର୍ଯ୍ୟ ସେଠି ଆକାଶର କାନ୍‌ଭାସ୍‌ରେ ଚିତ୍ରଟିଏ ପରି ଲାଖି ରହିଥା'ନ୍ତି ସବୁବେଳେ । ତୁମର କିଛି ବି ମନେପଡୁନି ?''

ଗଭୀର ଅତୀତ ତଳୁ କିଛି ଖୋଜିବାପାଇଁ ଚେଷ୍ଟା କରୁଥିଲା ଲିଜା । ରାଜକୁମାର କିନ୍ତୁ ସ୍ୱଦେଶ ବାହୁଡ଼ି ସାରିଥିଲେ ।

ଆସ୍ତେ ଆସ୍ତେ ଲିଜାର ହୃଦ୍‌ବୋଧ ହେଲା ଯେ ସେ କଦାପି କୁମାରଙ୍କ କୁହା ନ ମାନି ରହିପାରିବ ନାହିଁ । ତେଣୁ ସେ ଭାବୁଥିଲା, କାହାକୁ କହିବ ବୋଉକୁ ନା ଦେଇକୁ, କୁମାରଙ୍କ କଥା । ଦେଈ ଏକଥା ଶୁଣିଲାକ୍ଷଣି ସେଇ ପୁରୁଣା ପାଠକୁ ଦୋହରାଇବ । ସାଇକୋଲଜିକାଲ୍ ଡିଜିଜ୍ କଥା ଉଠେଇବ । ମନୋବିଜ୍ଞାନ ବିଷୟରେ ଗପିବ ବେଜାଏ । ଆଉ ବୋଉକୁ କହିଲେ ? ସେ ସିଧା ଡାକିବ କୁଦୁଗୁମୁରାର ଗୁଣିଆ ଶମ୍ଭୁନାଥ ବାବାଜିଙ୍କୁ । ଅନୁନୟ ହୋଇ କହିବ ତାଙ୍କୁ, ''ମୋ' ଝିଅ ଦେହରୁ ଭୂତ ଛଡ଼ାଅ, ବାବା ।''

ଲିଜାର ଭାବିବା ବନ୍ଦ ହେଉ ନ ଥିଲା, ବନ୍ଦ ହେଉ ନ ଥିଲା ବର୍ଷାର ନିକ୍ୱଣ ।

ବର୍ଷା ବଢୁଥିଲା । ଅଳସ ଅପରାହ୍ଣ ସୃଷ୍ଟି କରୁଥିଲା ଗୋଧୂଳିର ଭ୍ରମ । ଲିଜା ଦେଖିଲା ଅଦୂର ପାହାଡ଼ ବୁକୁରେ ମେଘର ଅଭିସାର । ମେଘ ବନ୍ଧନରେ ପାହାଡ଼ ନା ପାହାଡ଼ର ଆଶ୍ଲେଷରେ ମେଘ, ବୁଝି ହେଉ ନ ଥିଲା କିଛି । ପ୍ରେମ ଏମିତି ସବୁବେଳେ ଅବୁଝା, ଅସ୍ପଷ୍ଟ ବୋଧେ । ବର୍ଷାଧୁଆ ଗଛବୃଛ, ଗାଁ ଗୋହିରିରେ ଚବରଚବର ପାଣି, ବାଡ଼ରେ ଜହ୍ନିଫୁଲ, ନୁଆଁଣିଆ ଚାଳ ଉପରେ କଖାରୁଲଟା– ଲିଜାର ସ୍ୱପ୍ନକୁ ଉଖୁରେଇ ଦେଉଥିଲେ ଯେମିତି ! ସେ ଭାବୁଥିଲା, ତାଙ୍କ ଗାଁ ନଈ ବି ବେଶ୍ ଫୁଲେଇ ହଉଥିବ, ମେଘ ଦେଖି ।

ଲିଜା କିନ୍ତୁ ସତକୁ ସତ ଫୁଲିପଡ଼ିଲା ନଈପରି, ମେଘକୁ ଦେଖି । ତାକୁ ଲାଗିଲା, ସେ ନିଜେ ଯେମିତି ଗୋଟେ ବର୍ଷାଋତୁ । ବର୍ଷାଋତୁ ପରି ସ୍ନିଗ୍ଧା, ବିପୁଳା ।

କୁମାରଙ୍କ କୋମଳ ସମ୍ବୋଧନରେ ଲିଜାର ଦେହମନ ସବୁ ତରଳିଗଲା । ସେତେବେଳକୁ ରାତି ହେବ କାହିଁରେ କେତେ । ବର୍ଷା ଛାଡ଼ି ଯାଇଥିଲା । ମେଘ ଲୁଚି ଯାଇଥିଲା ପାହାଡ଼ ପଛରେ । ଜହ୍ନ ଆଲୁଅର ବନ୍ୟାରେ ଏକାକାର ହୋଇଥିଲା ଆକାଶ ଓ ପୃଥିବୀ । 'ଉଠ ଉଠ ସଖୀ' ବୋଲି ଆଉଥରେ କୁମାର ଡାକିଦେଲା ବେଳକୁ ଲିଜା ନ ଥିଲା ନିଜ ଆୟତ୍ତରେ । ରୁଦ୍ଧ କୋଠରିର ବନ୍ଧନ ଡେଇଁ ସେ ମିଶି ଯାଇଥିଲା ପବନରେ ।

କୁମାରଙ୍କ ହାତର ମିଠା ପରଶରେ ଲିଜା ଜଳୁଥିଲା ହୁତୁହୁତୁ । ବାଧା ଦେବାପାଇଁ ତା'ର ଶକ୍ତି ନ ଥିଲା । ମନା କରିବାପାଇଁ ନ ଥିଲା ଭାଷା । କୁମାର ତା' ହାତଧରି ଟାଣି ନେଉଥିଲେ ଆଗକୁ ଆଗକୁ । ଅନିଚ୍ଛାସତ୍ତ୍ୱେ ଲିଜା କହିଲା, ''ମୋତେ କେଉଁଆଡ଼େ ନେଇଯାଉଛ ପ୍ରାଣପ୍ରିୟ ?'' କୁମାର ହସିଦେଲେ । କହିଲେ, ''ଯିବା ଆମେ ବହୁଦୂର । ନଈ ଆରପାରିରେ ଅପେକ୍ଷା କରିଛି ପକ୍ଷିରାଜ ଘୋଡ଼ା ।''

'କୁମାର', ଚିତ୍କାର କଲା ଲିଜା, ''ଏଇ ଯେ ଆଗରେ ନଈ ! ବନ୍ୟାରେ ଉବୁଟୁବୁ ! ଯିବା କେମିତି ?'' କୁମାର କିଛି ବୋଧେ ଶୁଣିପାରୁ ନ ଥିଲେ । ଲିଜା ଆଶ୍ଚର୍ଯ୍ୟ ହେଲା । ପାଣି ଉପରେ ନିର୍ବିଘ୍ନରେ ଚାଲୁଛନ୍ତି କୁମାର । କିନ୍ତୁ ସେ ଅନୁଭବ କଲା, ତା' ପାଦ ଯେମିତି ବୁଡ଼ିବୁଡ଼ି ଯାଉଛି ପାଣି ଭିତରେ । ସେ କାନ୍ଦକାନ୍ଦ ହୋଇଗଲା । କହିଲା, ''କୁମାର, ମୁଁ ଯେ କ୍ରମଶଃ ଗଭୀର ନଈ ଭିତରକୁ ଚାଲିଯାଉଛି ! ଏହି ତ, ମୋ କଟି ବୁଡ଼ିଯାଉଛି ପାଣିରେ । ଏବେ ମୋର ବକ୍ଷ ଓ ବକ୍ଷୋଜ, ପୁଣି ମୋର ଗ୍ରୀବା । ମୁଁ ଯେ ଅଣନିଃଶ୍ୱାସୀ ହୋଇପଡୁଛି । ସମ୍ପୂର୍ଣ୍ଣ ବୁଡ଼ିଗଲି ମୁଁ ଅଥଳ ଜଳରେ । ମୋତେ ଉଦ୍ଧାର କର କୁମାର । ତୁମେ କେଉଁଠି କୁମାର ?'' ଲିଜାର ବିଳାପ ଅସ୍ପଷ୍ଟରୁ ଅସ୍ପଷ୍ଟତର ହେଲା ।

ତା'ପରେ ଲିଜା ଅନୁଭବ କଲା କୁମାର ତା' ହାତ ଧରିଛନ୍ତି ଓ ସେ ଦୁହେଁ ନଈ ଉପରେ ଚାଲୁଛନ୍ତି । ତା'ର ମନେହେଲା ସେ ଯେମିତି ଫୁଲପରି ହାଲୁକା ପାଲଟିଯାଇଛି ଅକସ୍ମାତ୍ ।

ଆଉ ଅବସାଦ ନ ଥିଲା ଲିଜା ମନରେ । ''ଆହା, ଜହ୍ନ ଆଲୁଅରେ ଥାଏ ପୁଣି ଏତେ ଉନ୍ମାଦନା । କୁମାରଙ୍କ ହାତ ଧରି ସେ କ'ଣ ଅନ୍ତରୀକ୍ଷରେ ଚାଲି ଚାଲି ଯାଉଛି !'' ଲିଜା ସ୍ୱଗତୋକ୍ତି କଲା ।

କୁମାର କହିଲେ, ''ଦେଖ, ଆଗରେ ଚାଲିଛି ପକ୍ଷିରାଜ ଘୋଡ଼ା ।''

''ବସିବ ।'' ସେ ପୁଣି ପଚାରିଲେ ।

ପକ୍ଷିରାଜ ଘୋଡ଼ାରେ ଚଢ଼ିବାକୁ ଡରମାଡ଼ିବ ବୋଲି କହିଲା ଲିଜା । ତାକୁ କିନ୍ତୁ ସବୁ କିଛି ମନେହେଲା ଛାୟାଚ୍ଛନ୍ନ । କୁମାର ବୋଧେ ଲିଜା ମନର ଭାଷା ବୁଝିଗଲେ । କହିଲେ, ''ଜାଣ ପ୍ରିୟତମା, ଆମେ ଏବେ ଜହ୍ନରାଇଜରେ । ତମ ମାଟିର ଧରିତ୍ରୀଠାରୁ ବହୁ ଉର୍ଦ୍ଧ୍ୱରେ ।''

''ତା'ପରେ ଆମେ କେଉଁ ଆଡ଼କୁ ଯିବା ।'' ଲିଜା ପଚାରିଲା ।

''ଜହ୍ନ ଡେଇଁଗଲେ ଆମ ଉଆସ ଦିଶିବ ଅଳପ ଅଳପ । ସେଠି ପହଞ୍ଚିଲେ ଯାଇ ଦିଶିବ ପ୍ରବାଳ ଦ୍ୱୀପ ।'' ଲିଜା କୁମାରଙ୍କ କଥାର ବିନ୍ଦୁବିସର୍ଗ ବୁଝିପାରୁ ନ ଥିଲା ।

× × × ×

ଲିଜାର ଦେଈ ବଡ଼ି ଭୋରରୁ ଉଠି ଦେଖିଲା, କବାଟ ମୁକୁଳା, ଲିଜା ନାହିଁ ବିଛଣାରେ । ସେ ଆଶ୍ଚର୍ଯ୍ୟ ହେଲା । ଆଜି ସୂର୍ଯ୍ୟ କେଉଁଆଡୁ ଉଇଁଲେ କି ବୋଲି ପଚାରିଲା ନିଜକୁ । ଏତେ ସକାଳୁ ଲିଜା ଉଠିବା ତାକୁ ଠିକ୍ ଲାଗିଲା ନାହିଁ ।

ଲିଜା ତା' ଜୀବନରେ ପ୍ରଥମ କରି ହୁଏତ ଆଜି ସକାଳ ଦେଖିଥିବ, ସେ ଭାବିଲା, କିନ୍ତୁ କାହାକୁ କିଛି କହିଲା ନାହିଁ । ଏତେ ସକାଳୁ ବାପା ବୋଉ କେହି କାହିଁକି ବା ଲୋଡ଼ନ୍ତେ ଲିଜାକୁ । ଯେତେବେଳେ ସକାଳ ଗଡ଼ି ଦିନ ହେଲା ଓ ଲିଜା ଘରକୁ ଫେରିଲା ନାହିଁ, ସେତେବେଳେ ସମସ୍ତଙ୍କ ଛାତିରେ ଛନକା ପଶିଲା । କାହାରି ମୁହଁରୁ ଭାଷା ଫୁଟିଲା ନାହିଁ । ବାଡୁଅ ଝିଅ ରାତାରାତି ଫେରାର୍ କଥାଟା ଘରୁ ଆଉ ପ୍ରଘଟ ହେବ କି ?

ପରେ ପରେ ଘର ଭିତରୁ ଲିଜାବୋଉର ବାହୁନା ଶୁଭିଲା । ଲିଜାବାପା ଦୌଡ଼ିଲେ ନଈଆଡ଼କୁ ଅତର୍ଛା, ପଛେପଛେ ତା' ଦେଇ ।

ନଈକୂଳରେ ପହଞ୍ଚିଲେ ବାପଝିଅ ଦୁହେଁ । ଉଛୁଳା ନଈ, ଆଗକୁ ଯିବାର ବାଟ ବନ୍ଦ । ଆଖପାଖରେ ଦିଶୁ ନ ଥିଲେ ଜଣେ ଅଧେ କେହି ଲୋକ । ଆଖି ପାଇଲା ପର୍ଯ୍ୟନ୍ତ ଖାଲି ସବୁଜ ଧାନବିଲ । କ'ଣ ଭାବିଲେ କେଜାଣି ଲିଜାର ବାପା, ନଈର ତଳ ମୁଣ୍ଡକୁ ଧାଇଁଲେ । କିଛିବାଟ ଗଲାପରେ ହଠାତ୍ ତାଙ୍କ ପାଦ ଦି'ଟା ଛାଏଁ ଅଟକିଗଲା ।

ଯେଉଁଠି ଅଣ୍ଟା ଭାଙ୍ଗି ଶୋଇଥିଲା ଭରାନଈ, ଠିକ୍ ସେହିପରି ପଡ଼ିରହିଥିଲା ଲିଜାର ଅସାଡ଼ ଦେହ । ଚହଟ ଚମ୍ପା । ଆଉ ଗୋଟେ ଭରାନଈ ଯେମିତି !



# ଅକାଳ

## ମରୁଡ଼ିର ମନ୍ଦ୍ର ପଦଧ୍ୱନି

ଗୌରୀପାଟଣା, ତା ୨୬/୬ (ନି.ପ୍ର.) – ଉପରେ ମେଘମୁକ୍ତ ଆକାଶ, ତଳେ ଫଟାଭୂଇଁ । ଗଡ଼ିଆ ପୋଖରୀ, ନଈନାଳ ଶୁଷ୍କ; ଆଷାଢ଼ ଅଧାଅଧି ହେଲାଣି ଅଥଚ ବର୍ଷାର ଦେଖା ନାହିଁ । ସମଗ୍ର ପିଟାହାଣ୍ଡି ଜିଲ୍ଲାରେ ଆତଂକ ଖେଳିଗଲାଣି । ଏଥର କ'ଣ ସତରେ ଚାଷ ହବ ? ଚାଷୀମାନେ କୁହାକୁହି ହେଲେଣି । କ୍ଷେତକୁ ପାଣି ନାହିଁ ତ ହାତକୁ କାମ ଆସିବ କେଉଁଠୁ ? ମୂଲିଆ-ମଜୁରିଆଙ୍କ ଭାଳେଣି କହିଲେ ନ ସରେ । ଏଥର ଠିକ୍ ସମୟରେ ମୌସୁମୀ ପ୍ରବାହିତ ହେବ ବୋଲି ସରକାରୀ ଭାବରେ କୁହାଯାଇଥିଲେ ବି ବର୍ଷା ଆଗମନର ସମ୍ଭାବନା ଦେଖାଯାଉ ନାହିଁ । ଅବିରତ ବର୍ଷା ନ ହେଲେ କି ଟାଙ୍ଗରା ଭୂଇଁରେ ଚାଷ ହୁଏ ?

ଜିଲ୍ଲା ପ୍ରଶାସନ, ରାଜ୍ୟ ସରକାର-କାହାରି ନିଦ ଭାଙ୍ଗି ନାହିଁ ଏପର୍ଯ୍ୟନ୍ତ । ବେଳହୁଁ ସାବଧାନ ନ ହେଲେ ଅକାଳ ଚରିଯିବ ଚାରିଆଡ଼େ, ଯାଦୁ ପରି ।

## ଜଳ ବିହୁନେ ସୃଷ୍ଟିନାଶ

ଗୌରୀପାଟଣା, ତା ୧୮/୭ (ନି.ପ୍ର.) ଆଷାଢ଼ ଯାଇ ଶ୍ରାବଣ ହେଲାଣି; ବାଦଲ କାହିଁ ନା ବର୍ଷା କାହିଁ । ଗତ ସପ୍ତାହରେ ଅସ୍ରାଏ ବର୍ଷା ଯାହା ହୋଇଥିଲା । ତା'ପରଠୁଁ ବର୍ଷା ଯେମିତି କୁଆଡ଼େ ନିଖୋଜ ହୋଇଯାଇଛି । ଧାରା ଶ୍ରାବଣରେ ଧାରା ବରଷିବା କଥା । କିନ୍ତୁ କାହିଁ ? ଝିପିଝିପି ବର୍ଷା ବି ସାତମହରଗ ହେଲାଣି ।

ଗତ ସପ୍ତାହର ବର୍ଷାଯୋଗୁଁ ଚାଷୀ ମହଲରେ କିଛିଟା ଆନନ୍ଦ ଦେଖାଦେଇଥିଲା । କିଏ କେମନ୍ତେ ହଳବଳ କରି ତଳି ପକେଇଥିଲେ । କେଉଁଠି କେମିତି ବୁଣାବୁଣି ବି ଆରମ୍ଭ ହୋଇଥିଲା । ଏବେ କିନ୍ତୁ ଜିଲ୍ଲାର ହଜାର ହଜାର ଏକର ଚାଷ ଜମିରେ ଗଜାମରୁଡ଼ି ଦେଖାଦେଇଛି । ଚାଷୀମାନେ ମୁଣ୍ଡରେ ହାତଦେଲେଣି । ଦିନ ମଜୁରିଆଙ୍କ ଘରେ ଚୁଲି ଜଳିବା ବନ୍ଦ ।

ଜୁଲାଇ ମାସରେ ଜିଲ୍ଲାର ସ୍ୱାଭାବିକ ବର୍ଷା ୫୧୫ ମିଲିମିଟର ଥିବା ସ୍ଥଳେ, ଏଯାବତ୍ ପ୍ରକୃତ ବର୍ଷା ମାତ୍ର ୧୦୭ ମିଲିମିଟର ହୋଇଥିବା ଜିଲ୍ଲା କାର୍ଯ୍ୟାଳୟ ସୂତ୍ରରୁ ଜଣାପଡ଼ିଛି । ଏହି ପ୍ରତିନିଧି ଜିଲ୍ଲାପାଳଙ୍କୁ ସାକ୍ଷାତ କରି ମରୁଡ଼ି ପରିସ୍ଥିତିର

ପ୍ରତିକାରପାଇଁ ଜିଲ୍ଲା ପ୍ରଶାସନ ତରଫରୁ କି ପ୍ରକାର ପଦକ୍ଷେପମାନ ନିଆଯାଇଛି ବୋଲି ପଚାରିଥିଲେ । ଆଡ଼ିବନ୍ଧ ଓ ଉଠାଜଳସେଚନ ମାଧ୍ୟମରେ ଜମିକୁ ଜଳ ଯୋଗାଇଦବାର ବନ୍ଦୋବସ୍ତ କରାଯାଉଛି ବୋଲି ଜିଲ୍ଲାପାଳ ଉତ୍ତର ଦେଇଥିଲେ । କିନ୍ତୁ ଏପର୍ଯ୍ୟନ୍ତ ଜିଲ୍ଲାର କୌଣସି ଅଞ୍ଚଳରେ ଆଡ଼ିବନ୍ଧ କରାଯାଇ ନାହିଁ କି ଜିଲ୍ଲାରେ ଯେଉଁ କେତୋଟି ଉଠାଜଳସେଚନ ପଏଣ୍ଟ ରହିଚି, ସେଗୁଡ଼ିକୁ ଚାଲୁ କରାଯାଇ ନାହିଁ । ବିଭିନ୍ନ କାରଣରୁ ଅଚଳ ହୋଇପଡ଼ିଥିବା ଉଠାଜଳସେଚନ ପଏଣ୍ଟଗୁଡ଼ିକୁ ମଧ୍ୟ ପୁନରୁଦ୍ଧାର କରାଯାଇ ନାହିଁ ।

## ପାବନୀ ବେଓ୍ୱାର ମୃତ୍ୟୁ କ'ଣ ଅନାହାରଜନିତ ?

ଗୌରୀପାଟଣା ତା ୧୮/୮(ନି.ପ୍ର.) ଏଠାରୁ ପନ୍ଦର କିଲୋମିଟର ଦୂର ହାତୀପଡ଼ା ଗାଁର ଅସହାୟ ବୃଦ୍ଧା ପାବନୀ ବେଓ୍ୱାର ଗତ ଦୁଇ ଦିନ ତଳେ ମୃତ୍ୟୁ ଘଟିଛି । ଖବର ନେବାରେ ଜଣାଯାଇଛି ଯେ ମୃତ୍ୟୁ ବେଳକୁ ପାବନୀ ବେଓ୍ୱାକୁ ସତଷଠି ବର୍ଷ ବୟସ ହୋଇଥିଲା । ଗାଁରେ ତା'ର କେହି ଆତ୍ମୀୟସ୍ୱଜନ ନ ଥିଲେ ଓ ସେ ଭିକ୍ଷାବୃତ୍ତି କରି ଚଳୁଥିଲା । ଗାଁର ମୂଲିଆ ଶ୍ରେଣୀର ଲୋକେ କାମ ଅନ୍ୱେଷଣରେ ଅନ୍ୟତ୍ର ଚାଲିଯାଇଥିଲେ ଓ ଧନୀ ଗୌନ୍ତିଆମାନଙ୍କଠାରୁ ଭିଖ ମୁଠାଏ ବି ମିଳୁ ନ ଥିଲା । ଗାଁ ମୁଣ୍ଡ ବରଗଛ ମୂଳରେ ପାଞ୍ଚଦିନ କାଳ ଓପାସରେ ପଡ଼ିରହି ପାବନୀ ବେଓ୍ୱାର ମୃତ୍ୟୁ ଘଟିଛି ବୋଲି ଗାଁର ଓ୍ୱାର୍ଡ଼ମେମ୍ବର ରଙ୍କ ବେହେରାଙ୍କଠାରୁ ପ୍ରକାଶ । କିନ୍ତୁ ସରକାରୀ ଭାବରେ ଏହାକୁ ଅସ୍ୱୀକାର କରାଯାଇଛି । ପେଟରୋଗ ଯୋଗୁଁ ପାବନୀ ବେଓ୍ୱାର ମୃତ୍ୟୁ ଘଟିଛି ବୋଲି ମେଡ଼ିକାଲ ସୂତ୍ରରୁ ଜଣାଯାଇଛି ।

ଅନୁସନ୍ଧାନ କଲେ ଏମିତି ଅନେକ ପାବନୀ ବେଓ୍ୱାଙ୍କ ମୃତଦେହ ମାଟିତଳୁ ମିଳିପାରେ ।

## ନିଶ୍ଚିତ କର୍ମଯୋଗାଣ ଯୋଜନାରେ ଅନିଶ୍ଚୟତା

ଗୌରୀପାଟଣା, ତା ୧୯/୮ (ନି.ପ୍ର.) ନିଶ୍ଚିତ କର୍ମଯୋଗାଣ ଯୋଜନା, ଜବାହର ରୋଜଗାର ଯୋଜନା ଆଦି ମାଧ୍ୟମରେ ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଜନସାଧାରଣଙ୍କୁ କାମ ଯୋଗାଇ ଦିଆଯାଉଛି ବୋଲି କୁହାଯାଉଥିଲେ ହେଁ ବାସ୍ତବରେ ତାହା କାର୍ଯ୍ୟକାରୀ ହେଉ ନାହିଁ । ଶ୍ରମଭିତ୍ତିକ କାର୍ଯ୍ୟ ନାଆଁରେ ବ୍ଲକକୁ ଆସୁଥିବା ଲକ୍ଷ ଲକ୍ଷ ଟଙ୍କା ବାଟମାରଣା ହେଉଥିବାର ଅଭିଯୋଗ ହେଉଛି । ଦିନମଜୁରିଆମାନେ ମାସରେ ଦୁଇ ତିନି ଦିନ କାମ ପାଉଛନ୍ତି କି ନା ସନ୍ଦେହ ! କିନ୍ତୁ ଠିକାଦାର ଓ ସରକାରୀ କର୍ମଚାରୀମାନଙ୍କପାଇଁ ମରୁଡ଼ି ସମୟ ପୁଷମାସ ପାଲଟିଛି । ସାଧାରଣ ଲୋକଙ୍କ ସର୍ବନାଶ ସେମାନଙ୍କ ଦୃଷ୍ଟିକୁ ଆସୁ ନାହିଁ । ଜନ-ପ୍ରତିନିଧିମାନଙ୍କର ବି ମୁହଁ ବନ୍ଦ । ସେମାନେ ବି ବାଟମାରଣର ଭାଗୀଦାର ବୋଲି କୁହାଯାଉଛି ।

ଏତଦ୍ ଅଞ୍ଚଳର ଲୋକମାନେ ଖାଦ୍ୟବିନା ଅଖାଦ୍ୟ ଗ୍ରାସ କରିବାରେ ଲାଗିଛନ୍ତି । ଗଛବୃଛର ପତ୍ରଖାଇ ଲୋକେ କେତେଦିନ ବା ବଞ୍ଚିରହିପାରିବେ ? ଅଖାଦ୍ୟ ଭକ୍ଷଣ ହେତୁ ଲୋକମାନେ ନାନା ବ୍ୟାଧିରେ ପୀଡ଼ିତ ହେଉଛନ୍ତି । ଏଠାରୁ ପ୍ରାୟ ଆଠ କିଲୋମିଟର ଦୂର ଅରେଇଁ ଗାଁରେ ଭୟାନକ ହଇଜା ବ୍ୟାପିଥିବାର ସମ୍ବାଦ ମିଳିଛି । ଲୋକମାନେ ପୋକ ମାଛି ପରି ମରୁଥିବା କୁହାଯାଉଥିଲେ ବି ଏପର୍ଯ୍ୟନ୍ତ ଗୋଟିଏ ବି ମେଡିକାଲ୍ ଟିମ୍ ସଂପୃକ୍ତ ଗାଁରେ ପହଞ୍ଚି ନାହାନ୍ତି ।

## ପେଟ ବିକଳରେ ଶ... ଶହ ଲୋକ ଗାଁ ଛାଡ଼ିଲେ

(ଆମର ଭ୍ରାମ୍ୟମ... ପ୍ରତିନିଧି ସଂଜୟ ମହାରଣାଙ୍କ ପ୍ରତ୍ୟକ୍ଷଦର୍ଶୀ ରିପୋର୍ଟ)

ଗୌରୀପାଟଣା, ... ୩୦/୧୦, ଗାଁ-ଗଣ୍ଡାରେ କାମଧନ୍ଦା ମିଳୁ ନ ଥିବାରୁ ଲୋକମାନେ ଶହ ଶହ ସଂଖ୍ୟାରେ ଘରଦ୍ୱାର ଛାଡ଼ି ପଡ଼ୋଶୀ ରାଜ୍ୟକୁ କାମ ଅନ୍ୱେଷଣରେ ଚାଲିଯାଉଛନ୍ତି । ଗୌରୀପାଟଣାର ଆଖପାଖ ଦଶଖଣ୍ଡ ମୌଜା ଜନଶୂନ୍ୟ ହୋଇଗଲାଣି ବୋଲି କୁହାଯାଉଛି । ଖବର ପାଇ ଏହି ପ୍ରତିନିଧି ଗୌରୀପାଟଣା ରେଳ ଷ୍ଟେସନ୍‌ରେ ଗାଁ ଛାଡ଼ି ଚାଲିଯାଉଥିବା କେତେଜଣ ଶ୍ରମିକ ଶ୍ରେଣୀର ଲୋକଙ୍କୁ ଭେଟିଥିଲେ ।

ଶିମିଳିପଦର ଗାଁର ମହିଆ ମାଝି ତା' ସ୍ତ୍ରୀ ମେନୀ ଓ ଚଉଦ ବର୍ଷର ଝିଅ ମାଳତୀ ସହ ବିଶାଖାପାଟଣା ଯିବାପାଇଁ ଟ୍ରେନ୍‌କୁ ଅପେକ୍ଷା କରି ରେଳଷ୍ଟେସନ୍‌ରେ ପଡ଼ି ରହିଥିଲା । ତା' କହିବା ଅନୁଯାୟୀ ଗୌରୀପାଟଣା ମହାନ୍ତିପଡ଼ାରୁ ରାଜୁ ପଟ୍ଟନାୟକ ଗାଡ଼ି ଭଡ଼ା ଦେଇ ତାକୁ ବିଶାଖାପାଟଣା ନେଇଯାଉଛି । ସେଠାରେ ସେ ଇଟା ଭାଟିରେ କାମ କରିବ ।

ଶିମିଳିପଦରର ମହିଆ ମାଝିର ବୟସ ଚାଳିଶ ଟପିବ ନାହିଁ । ଅଥଚ ସେ ଷାଠିଏ ବର୍ଷର ବୁଢ଼ାପରି ଦେଖାଯାଉଥିଲା । ତା' ସ୍ତ୍ରୀ ଦେହରେ ପୁଳାଏ ବି ମାଂସ ନ ଥିଲା । ଚଉଦ ବର୍ଷୀୟା ମାଳତୀର ଛାତି ଥିଲା ସମତଳ । ମହିଆ ମାଝି ଏହି ପ୍ରତିନିଧି ନିକଟରେ ନିଜ ଦୁର୍ଦ୍ଦଶା କହୁ କହୁ ମଝିରେ ମଝିରେ କାନ୍ଦି ପକାଉଥିଲା ।

ମହିଆ ମାଝି ଭୂମିହୀନ । ଗୋଚର ଜାଗାରେ ତା'ର ଖଣ୍ଡେ ଚାଳିଆ ଥିଲା । ସେଥିଲାଗି ଆର୍.ଆଇ. ତା'ଠୁଁ ମଝିରେ ମଝିରେ ଗୋଟେ ଲେଖାଏଁ କୁକୁଡ଼ା ନେଉଥିଲା ଓ ବର୍ଷକ ଭିତରେ ଜମି ତା' ନାଆଁରେ କରିଦେବ ବୋଲି କହୁଥିଲା । ଅଥଚ ତାକୁ ଜମିର ପଟ୍ଟା ମିଳୁ ନ ଥିଲା । ଇନ୍ଦିରା ଆବାସ ଯୋଜନାରେ ଘରଟିଏ ପାଇବାପାଇଁ ସେ ଗୌନ୍ତିଆର ବଡ଼ପୁଅ ସରପଞ୍ଚବାବୁ ନିକଟରେ କାହିଁ କେତେଥର ଗୁହାରି କରିଥିଲା । ଘର ମିଳିଯିବ ବୋଲି ସରପଞ୍ଚଠାରୁ ବାରମ୍ବାର ପ୍ରତିଶ୍ରୁତି ପାଉଥିଲେ ହେଁ ଶେଷ ପର୍ଯ୍ୟନ୍ତ ସେ ଘର ଖଣ୍ଡିକରୁ ବଞ୍ଚିତ ଥିଲା ।

ରାସ୍ତା ତିଆରି ଓ ପୋଖରୀ ଖୋଳା କାମରେ ସେ ଓ ତା' ସ୍ତ୍ରୀ କେତେଥର ମୂଲ ଲାଗିଥିଲେ, ହେଲେ ମାତ୍ର ପାଞ୍ଚ ଛ'ଦିନ ଭିତରେ ରାସ୍ତା ତିଆରି ସରି ନ ଥିଲେ ବି କାମ ବନ୍ଦ ହୋଇଯାଇଥିଲା । ଠିକାଦାର ପଚିଶ ଜାଗାରେ ପାଞ୍ଚ ମଜୁରି ଦେଉଥିଲା ଓ ଅଧିକ ମଜୁରି ମାଗିଲେ, 'ନ ପୋଷଉଛି ଯଦି କାମକୁ ନ ଆ,' ବୋଲି ନାଲିଆଖି ଦେଖେଇ କହୁଥିଲା । ସରପଞ୍ଚକୁ ଏହା ଜଣାଇଲେ, ସେ କଥାଟାକୁ ଟାଳି ଦେଉଥିଲା ।

ବାଛୁରୀ, ବତକ, କୁକୁଡ଼ା – ସବୁ ବିକି ସାରିବାପରେ ମହିଆ ମାଝିର ଆଉ କିଛି ସମ୍ବଳ ନ ଥିଲା । ସେ ତେଣୁ ଗୌନ୍ତିଆ ଘରେ କାମ କରିବାଲାଗି ମାଳତୀକୁ ପଠେଇଥିଲା । ମାଳତୀ ଗୌନ୍ତିଆ ଘରେ ଲୁଗା ସଫା କରିବା, ବାସନ ମାଜିବା, ଧାନ ଉଷେଁଇବା ଆଦି କାମ କରି ସଂଜକୁ ପାଏ-ପୋଷେ ଚାଉଳ ଘରକୁ ଆଣୁଥିଲା । ଦିନେ ମୁହଁ ସଂଜବେଳେ କ'ଣ ହେଲାନା ମାଳତୀ ଧଇଁସଇଁ ହୋଇ ଘରେ ଆସି କଚାଡ଼ି ହୋଇ ପଡ଼ିଲା । ସେତେବେଳେ ତା' ଦେହରୁ ଗମ୍‌ଗମ ହୋଇ ଝାଳ ବହୁଥିଲା ଓ ସେ ଶୁଖିଲା ପତ୍ର ପରି ଥରୁଥିଲା । ମାଳତୀର ମା' ତାକୁ ଏକୁଟିଆ ଡାକି କ'ଣ ହୋଇଛି ବୋଲି ପଚାରିଲାରୁ ମାଳତୀ କାନ୍ଦି କାନ୍ଦି ଯାହା କହିଲା, ତାହା କାନ ଶୁଣିବ ନାହିଁ, ଛାତି ଫାଟିଯିବ ।

ମହିଆ ମାଝିକୁ ଦମ୍ଭ ଦେବାରୁ ସେ ଛେପଢୋକି କହିଲା, ଗୌନ୍ତିଆ ବୁଢ଼ା ସଂଜବେଳକୁ ମାଳତୀକୁ ତା' ଶୋଇବାଘରକୁ ଡାକିଲା ଓ ଗୋଡ଼ ଘଷିବାପାଇଁ କହିଲା । ମାଳତୀ ବୁଢ଼ାର ଗୋଡ଼ ଘଷୁଥିବାବେଳେ ବୁଢ଼ା ତାକୁ ଟାଣିନେଇ ଜାବ ପକେଇଦେଲା । ମାଳତୀ ହାଉଳୁ ମାଉଳୁ ହେଲେ ବି ସେ ପୁଟରେ କେହି ନ ଥିବାରୁ ମାଳତୀ କାନ୍ଦଣା କାହାକୁ ଶୁଭିଲା ନାହିଁ । ମାଳତୀ ବୁଢ଼ା ହାତକୁ କାମୁଡ଼ି ଦେଇ ଦୌଡ଼ି ଦୌଡ଼ି ଆସି ଘରେ ପହଞ୍ଚିଲା । ସେହିଦିନୁଁ ମାଳତୀର ଗୌନ୍ତିଆଘରକୁ ଯିବା ବନ୍ଦ ହେଲା, ତା' ସାଙ୍ଗକୁ ଘରେ ଚୁଲି ଜଳିବା ବି ବନ୍ଦ ହେଲା ।

ଏଇ ବେଳକୁ ରାଜୁ ପଟ୍ଟନାୟକଙ୍କ ଲୋକସହ ଭେଟହେଲା ମହିଆର । ସେ କ'ଣ ଆଉ ଏ ସୁଯୋଗ ହାତଛଡ଼ା କରନ୍ତା ? ବିଶାଖାପାଟଣା ଯିବାଲାଗି ତେଣୁ ବାହାରିଛି ।

ଏମିତି ଶହ ଶହ ମହିଆ, ପରବା, ଭାଦୁ, ଭିକାରୀ, ସଗରାମ, ସହରାଇ, ସନିଆମାନେ ଗାଁକୁ ପଛକରି କିଏ କୁଆଡ଼େ ପଳଉଛନ୍ତି ।

## ମାଳତୀ ମାଝି ଏବେ କେଉଁଠି ?

ଭୁବନେଶ୍ୱର, ତା ୧୧/୧୨(ନି.ପ୍ର.) ଦୁଇ ମାସ ତଳେ ଇଟାଭାଟିରେ କାମ କରିବାପାଇଁ ବିଶାଖାପାଟଣା ଯାଇଥିବା ପିଟାହାଣ୍ଡି ଜିଲ୍ଲା ଅନ୍ତର୍ଗତ ଶିମିଳିପଦର ଗାଁର ମହିଆ ମାଝି ଏବେ ଗାଁକୁ ଫେରିଆସିଛି । ସାଥିରେ ତା'ର ସ୍ତ୍ରୀ ଫେରିଥିଲେ ହେଁ ଝିଅ ମାଳତୀ ଫେରି ନାହିଁ ।

ଆମ ଗୌରୀପାଟଣା ସମ୍ବାଦଦାତା ଜଣାଇଛନ୍ତି ଯେ ଭଣ୍ଡ ରାଜୁ ପଟ୍ଟନାୟକ ମହିଆ ମାଝି ଓ ଅନ୍ୟ ନିରୀହ ଲୋକମାନଙ୍କୁ ଗୋଟେ ଠକ ଠିକାଦାର ହାବୁଡ଼ରେ ଛାଡ଼ିଦେଇ ଗାୟବ ହୋଇଯାଇଥିଲା । ମହିଆ, ତା'ସ୍ତ୍ରୀ ଓ ଝିଅ କମ୍ ମଜୁରି ପାଉଥିଲେ ବି ଅନନ୍ୟୋପାୟ ହୋଇ ଇଟାଭାଟିରେ କାମ କରୁଥିଲେ ଓ ନଈକୂଳର ଏକ ଅସ୍ଥାୟୀ କୁଡ଼ିଆରେ ରହୁଥିଲେ । କିଛିଦିନ ପରେ ଠିକାଦାର ଏସ୍. ବୀରଭଦ୍ରନ୍‌ର ପୁଅ କୁଟିପଙ୍କୁ ତା' ପୋଷା: ଗୁଣ୍ଡାମାନଙ୍କ ସହ ରାତି ଅଧରେ ଅସ୍ଥାୟୀ ବସ୍ତି ଅଞ୍ଚଳରେ ପହଞ୍ଚି ଜବରଦସ୍ତ ମାଳତୀକୁ ଉଠେଇ ନେଇଥିଲା । ବସ୍ତିବାଲା ଭୟରେ ପାଟି ଫିଟେଇ ନ ଥିଲେ । ମହିଆ ଠିକାଦାରର ଗୋଡ଼ହାତ ଧରି ସବୁ କଥା କହିଥିଲା ଓ ତା' ଝିଅକୁ ଫେରାଇଦେବାପାଇଁ ଗୁହାରି କରିଥିଲା । ଠିକାଦାର ନିଜ ପୁଅର ଦୋଷକୁ ଢାଙ୍କିବାପାଇଁ ନିରବ ରହିଲା ଓ ଖାଲି ହଁ ହାଁ ମାରିଲା । ପରେ ମହିଆ ତା' ସ୍ତ୍ରୀ ସହ ନିକଟ ଥାନାରେ ଏତାଲା ଦେଇ ଲୁଚି ଲୁଚି ଓଡ଼ିଶା ଚାଲିଆସିଲା ।

## ଶୂନ୍ୟକାଳରେ ବିଧାନସଭା ହୁଲସ୍ଥୂଲ

ଭୁବନେଶ୍ୱର ତା ୧୨/୧୨ (ନି.ପ୍ର.) ବିଧାନସଭାର ଶୀତ ଅଧିବେଶନ ଆରମ୍ଭ ହେବାମାତ୍ରେ ଗତକାଲି ଏହି ସମ୍ବାଦପତ୍ର ପୃଷ୍ଠାରେ ପ୍ରକାଶିତ ମାଳତୀ ମାଝି ଏବେ କେଉଁଠି(?), ଶୀର୍ଷକ ସମ୍ବାଦ ପ୍ରତି ବାଚସ୍ପତିଙ୍କ ଦୃଷ୍ଟି ଆକର୍ଷଣ କରି ବିରୋଧୀ ଦଳର ଏକାଧିକ ସଦସ୍ୟ ପାଟିତୁଣ୍ଡ କରିଥିଲେ । ଗୃହର ସ୍ୱାଭାବିକ କାର୍ଯ୍ୟରେ ବାଧା ଉପୁଜିବାରୁ ବାଚସ୍ପତି ଗୃହକୁ ଆଶ୍ୱାସନା ଦେଇ କହିଥିଲେ ଯେ ଓଡ଼ିଶା ପୋଲିସ୍ ଆନ୍ଧ୍ର ପୋଲିସ୍ ସହ ଯୋଗସୂତ୍ର ରକ୍ଷା କରିଛନ୍ତି ଏବଂ ଦିନେ ଦୁଇଦିନ ମଧ୍ୟରେ ଯେନତେନ ପ୍ରକାରେଣ ମାଳତୀ ମାଝିକୁ ଖୋଜି ବାହାର କରାଯିବ ।

## ମାଳତୀ ମାଝିକୁ ମୁକ୍ତକର

ଭୁବନେଶ୍ୱର, ତା ୧୪/୧୨ (ନି.ପ୍ର., ଦି ନ୍ୟୁଜ୍) ମାଳତୀ ମାଝିକୁ ତୁରନ୍ତ ମୁକ୍ତ କରିବା ଦାବିରେ ରାଜଧାନୀର ଅଗ୍ରଣୀ ମହିଳା ସଂଗଠନ 'ଭରସା' ତରଫରୁ ବିଧାନସଭା ସମ୍ମୁଖରେ ଏକ ବିକ୍ଷୋଭର ଆୟୋଜନ କରାଯାଇଥିଲା । ଗତକାଲି ଅପରାହ୍ନ ୨ ଘଟିକା ସମୟରେ ଅନ୍ୟୁନ ଦେଢ଼ଶହ ମହିଳା 'ମାଳତୀ ମାଝିକୁ ମୁକ୍ତକର', 'ନାରୀଶକ୍ତି, ରାଷ୍ଟ୍ରଶକ୍ତି' ଆଦି ସ୍ଲୋଗାନମାନ ଦେଇ ମାଷ୍ଟର କ୍ୟାଣ୍ଟିନ୍ ଛକରୁ ଏକ ଶୋଭାଯାତ୍ରାରେ ବାହାରି ଅପରାହ୍ନ ୩ଘଟିକା ବେଳକୁ ବିଧାନସଭା ସାମ୍ନାରେ ପହଞ୍ଚିଥିଲେ । ସେଠାରେ ଆୟୋଜିତ ଏକ ପଥପ୍ରାନ୍ତ ସଭାରେ ନାରୀନେତ୍ରୀମାନେ ମାଳତୀ ମାଝିର ଦୁର୍ଦ୍ଦଶା ଓ ନାରୀଜାତି ପ୍ରତି ପୁରୁଷପ୍ରଧାନ ସମାଜର ଅବମାନନା ସଂକ୍ରାନ୍ତରେ ଭାଷଣ ପ୍ରଦାନ କରିଥିଲେ । କେତେଜଣ ତରୁଣୀନେତ୍ରୀ ପ୍ରସଙ୍ଗ ଭୁଲି କେବଳ ସରକାରଙ୍କ ବିରୋଧରେ ବିଷବର୍ଷଣ କରିଥିଲେ ।

ସଭାସ୍ଥଳକୁ ଲାଠି ଓ ବନ୍ଧୁକଧାରୀ ପୋଲିସ୍ ଘେରି ରହିଥିଲେ ହେଁ କୌଣସି ଅଘଟଣ ଘଟି ନ ଥିବା ଜଣାଯାଇଛି ।

## ପୋଲିସ୍ ସହାୟତାରେ ମାଳତୀ ମାଝି ଗାଁକୁ ଫେରିଲା

ମାଳତୀକୁ ଦେଖିବାପାଇଁ ଗାଁ ଦାଣ୍ଡରେ ଯାତରା (ଆମର ସ୍ୱତନ୍ତ୍ର ପ୍ରତିନିଧି ଦିବ୍ୟଲୋଚନ ଦେବଙ୍କ ରିପୋର୍ଟ)

ଗୌରୀପାଟଣା ତା ୧୮/୧୨ –ଏଠାରୁ ଦଶ କିଲୋମିଟର ଦୂର ଶିମିଳିପଦର ଗାଁର ମହିଆ ମାଝିର ଝିଅ ମାଳତୀ ପୋଲିସ୍ ହେପାଜତରେ ଗାଁକୁ ଫେରିଆସିଛି । ଦୀର୍ଘ ଦଶଦିନ ପରେ ହାଇଦ୍ରାବାଦର ଏକ ହୋଟେଲରୁ, ଆନ୍ଧ୍ର ପୋଲିସ୍ ଓ ଓଡ଼ିଶା ପୋଲିସ୍‌ର ମିଳିତ ଉଦ୍ୟମରେ ମାଳତୀକୁ ଉଦ୍ଧାର କରାଯାଇଛି । ଅପହରଣର ମୁଖ୍ୟ ନାୟକ ଇଟାଭାଟି ମାଲିକ ତଥା ଠିକାଦାର ବୀରଭଦ୍ରନ୍‌ର ପୁଅ କୁଟିପଙ୍କୁକୁ ଗିରଫ କରାଯାଇ ହାଜତକୁ ପଠାଯାଇଛି ବୋଲି ଓଡ଼ିଶା ପୋଲିସ୍ ସୂତ୍ରରୁ ପ୍ରକାଶ ।

ଗୌରୀପାଟଣା ରେଳଷ୍ଟେସନ୍‌ରେ ମାଳତୀ ମାଝି ପୋଲିସ୍ ସହ ଟ୍ରେନ୍‌ରୁ ଓହ୍ଲାଇବା ପରେ ଏହି ପ୍ରତିନିଧି ଉଭୟ ମାଳତୀ ମାଝି ଏବଂ ପୋଲିସ୍ ଇନ୍ସପେକ୍ଟର ନନ୍ଦ ବେହେରାଙ୍କୁ ଭେଟି ନାନା ତଥ୍ୟ ସଂଗ୍ରହ କରିଥିଲେ । ମାଳତୀର କହିବା ଅନୁସାରେ କୁଟିପଙ୍କୁ ତାକୁ କାର୍‌ରେ ନେବାବେଳେ ତା' ମୁହଁରେ କନାପଟି ବାନ୍ଧିଥିବାରୁ ସେ ପାଟି କରିପାରି ନ ଥିଲା । ପ୍ରାୟ ପାଞ୍ଚ/ସାତ ଘଣ୍ଟା ପରେ ଗୋଟେ ବଡ଼ ହୋଟେଲ ସାମ୍ନାରେ ତାଙ୍କ ଗାଡ଼ି ଠିଆ ହେଲା । ଗାଡ଼ିରୁ ଓହ୍ଲେଇବା ପୂର୍ବରୁ କୁଟିପଙ୍କୁ ମାଳତୀକୁ ବଂଧୁକ ଦେଖାଇ ପାଟି ନ ଫିଟାଇବାକୁ ତାଗିଦ୍ କରିଥିଲା । ତା' ପରେ ତାକୁ ହୋଟେଲର ସବା ଉପର ମହଲାକୁ ନିଆଯାଇଥିଲା । ସେଠାରେ ଗୋଟେ ମାତ୍ର ରୁମ୍ ଥିଲା ଓ ସେହି ସବା ଉପର ମହଲାକୁ ଆଉ କାହାର ଗତାଗତ ନ ଥିଲା ।

କାର୍‌ରେ ଆସିଲାବେଳେ କୁଟିପଙ୍କୁ ମାଳତୀର ବିଭିନ୍ନ ଅଙ୍ଗରେ ବାରମ୍ବାର ହାତ ବୁଲାଉଥିଲା ଅନ୍ଧାରରେ । କିନ୍ତୁ ହୋଟେଲର ସେହି ନିର୍ଜନ ରୁମ୍‌ରେ ପହଞ୍ଚିଲାକ୍ଷଣି ଗୋଟେ ବାଘପରି ମାଳତୀ ଉପରକୁ କୁଦାମାରିଥିଲା କୁଟିପଙ୍କୁ । ଦାନ୍ତରେ କାମୁଡ଼ି ମଦବୋତଲ ଫିଟେଇ ଢକ ଢକ କରି ପିଇଯିବା ପରେ ସେ ମାଳତୀର ଲୁଗାପଟାକୁ ଚିରି ଗୋଟେ କୋଣକୁ ଫିଙ୍ଗିଦେଲା । କୁଟିପଙ୍କୁର ମେଦବହୁଳ ଦେହର ଓଜନ ସମ୍ଭାଳିପାରୁ ନ ଥିଲା ମାଳତୀ । ତା'ର ସମଗ୍ର ଶରୀର ପ୍ରାୟ କ୍ଷତାକ୍ତ ହୋଇଯାଇଥିଲା, କୁଟିପଙ୍କୁର ବନ୍ୟ ଦଂଶନରେ ।

ତା'ପରଦିନ...ତା'ପରଦିନ, ସେଇସବୁ ଘଟଣାର ପୁନରାବୃତ୍ତି ଘଟୁଥିଲା ହୋଟେଲରେ । ତାକୁ ଅବଶ୍ୟ ଶାଢ଼ି ଶାୟା, ସାବୁନ୍, ଅତର ଆଦି ଯୋଗାଇ ଦିଆଯାଇଥିଲା । ଜଣେ ମଧ୍ୟବୟସ୍କ ନିଶୁଆ ଦରୱାନ ବଂଧୁକ ଧରି ତା' ରୁମ୍‌କୁ

ଦିନବେଳେ ଜଗୁଥିଲା । ସେତେବେଳେ କୁଟିପଙ୍କୁର ଦେଖା ମିଳୁ ନ ଥିଲା । ସେ ପ୍ରତିଦିନ ରାତି ଅଧକୁ ମାତାଲ୍ ହୋଇ ଆସୁଥିଲା ଓ ମାଳତୀକୁ ଗୋଟେ ଖେଳନା ପରି ଯା'ଚ୍ଛା'ତା' ଢଙ୍ଗରେ ବ୍ୟବହାର କରୁଥିଲା । ମାଳତୀ ଦେହରେ ଅସଂଖ୍ୟ କ୍ଷତଚିହ୍ନ ସୃଷ୍ଟି ହୋଇଥିଲେ ବି କୁଟିପଙ୍କୁର ସେଥିପ୍ରତି ଦୃଷ୍ଟି ନ ଥିଲା । ଦିନେ ରାତିରେ କୁଟିପଙ୍କୁ ସହ ଅନ୍ୟଜଣେ ମୋଟା ଲୋକ ଆସିଥିଲା ଓ ଉଭୟ ମାଳତୀକୁ ରାତି ଶେଷ ପର୍ଯ୍ୟନ୍ତ ଶୋଇବାକୁ ଦେଇ ନ ଥିଲେ ।

ହାଇଦ୍ରାବାଦରେ ଡାକ୍ତରୀ ଚିକିତ୍ସା ପରେ ଏବେ ମାଳତୀ ସୁସ୍ଥ ମନେ ହେଉଥିଲା । କିନ୍ତୁ ସମଗ୍ର ପୃଥିବୀ ପ୍ରତି ତା' ମନ ଭିତରେ ଯେମିତି ଗୋଟେ ଅଦମ୍ୟ ଘୃଣା ବସା ବାନ୍ଧିଥିଲା !

ମାଳତୀ ଓ ପୋଲିସ୍ ସହ ଏହି ପ୍ରତିନିଧି ଶିମିଳିପଦର ଗାଁ ପର୍ଯ୍ୟନ୍ତ ବି ଯାଇଥିଲା ।

ମାଳତୀ ଗାଁରେ ପହଞ୍ଚିଲା କ୍ଷଣି ଗାଁର ଆବାଳବୃଦ୍ଧବନିତା ଗାଁ ଦାଣ୍ଡର ଦୁଇ ପାଖରେ ଭିଡ଼ ଜମେଇଦେଲେ । ମାଳତୀକୁ ଚାହିଁ ଦେଇ ପ୍ରାୟ ସମସ୍ତେ ମୁହଁ ତଳକୁ କରିଥିଲେ । ଆହା ପଦଟେ ଉଚ୍ଚାରିବା ସମସ୍ତେ ଭୁଲିଯାଇଥିଲେ ଯେମିତି ! ମହିଆ ମାଝିର ଘରବୋଲି କୁହାଯାଉଥିବା କେତୋଟି ତାଳବରଡ଼ା ଢଙ୍କା ଗୋଟେ ନୁଆଁଣିଆ କୁଡ଼ିଆ ନିକଟରେ ମାଳତୀ ପହଞ୍ଚିଲା କ୍ଷଣି ମହିଆ ମାଝି ଗୋଟେ ପଥର ମୂର୍ତ୍ତି ପରି ଥମ୍ ହୋଇଗଲା ତତ୍କ୍ଷଣାତ୍ । ତା' ଆଖିରୁ ଲୁହ ନିଗିଡ଼ି ପଡୁଥିଲେ ବି ତୁଣ୍ଡରୁ ଭାଷା ବାହାରୁ ନ ଥିଲା । ମହିଆ ମାଝିର ସ୍ତ୍ରୀ ମେନୀ ଝିଅକୁ ଦେଖି ଉଚ୍ଚ ସ୍ୱରରେ ବାହୁନିଲା । ମାଳତୀର କିନ୍ତୁ ପାଟି ଫିଟୁ ନ ଥିଲା । ତା' ଆଖି ଦୁଇଟିରୁ ଝରଝର ହୋଇ ଲୁହ ବର୍ଷିଯାଉଥିଲା ଯାହା !

ମାଳତୀ ପରି ଏଡ଼େ ଟିକେ ଝିଅର କଇଁପାଖୁଡ଼ା ପରି ଛୋଟ ଦୁଇଟି ଆଖିକୁ ଏତେ ଲୁହ ଆସିଲା କୋଉଁଠୁ ? ତା'ର ଗୋଟେ ଦିନର ଲୁହ ତମାମବର୍ଷର ମରୁଡ଼ିକୁ ଘୁଞ୍ଚେଇ ଦେବାପାଇଁ ବୋଧେ ଯଥେଷ୍ଟ ଥିଲା ।

## ଆଷାଢ଼ସ୍ୟ ପ୍ରଥମ ଦିବସେ

ଗୌରୀପାଟଣା, ୧୫/୬ (ନି.ପ୍ର.) ବର୍ଷାର ଅଭିସାରରେ ଏବେ ମସ୍‌ଗୁଲ ସମଗ୍ର ଜିଲ୍ଲା । ଆକାଶରେ, 'ଛିନ୍ନଭିନ୍ନ, ବିଶୃଙ୍ଖଳ, ଅସଂଯତ ବଉଦର ସୁଅ' । ଅବିରତ ବାରିପାତରେ ସିକ୍ତ ମାଟି ବିଭୋର ଯେମିତି ସଜଳ ସ୍ୱପ୍ନରେ । ବେଶ୍ କମନୀୟ ବର୍ଷାଧୁଆ ଗଛବୃଛ, ପାହାଡ଼ ଓ ଅଦୂରଦିଗନ୍ତ । ରତ୍ନମତୀ କି ଆଉ ବସୁନ୍ଧରା । ଶିଶୁଶସ୍ୟର ଫାଳ୍‌ଲାମିରେ ବିଦୀର୍ଣ୍ଣ ମରୁଡ଼ି ।

ଶିମିଳିପଦର ଗାଁକୁ ଯାଇ ଏହି ପ୍ରତିନିଧି ଜାଣିବାକୁ ପାଇଛି ଯେ ଛ'ମାସ ତଳେ ବିଶାଖାପାଟଣାର ଗୋଟେ ଇଟାଭାଟି ମାଲିକ ପୁଅର ପାଶବିକତାର ଶିକାର

ହୋଇଥିବା ମାଳତୀ ମାଝି ଏବେ କ୍ଷେତରେ କାମ କରୁଛି ବେଶ୍ ମନଖୁସିରେ, ତା' ବା' ସାଙ୍ଗରେ । ତା' ଦେହରେ, ମନରେ ଯେମିତି ଭିଜାମାଟିର ମାଦକତା ! ପଚରା ଯିବାରୁ ମାଳତୀ କହିଲା ଯେ, ସେ ଆସ୍ତେ ଆସ୍ତେ ଭୁଲିଗଲାଣି ଗଲାଦିନର ବିଷାକ୍ତ ସ୍ମୃତିକୁ । କୁଟିପଙ୍କୁର ଚେହେରା ଆଉ ତା'ର ମନେ ପଡୁନି । ମେଘ ଯେମିତି ମାଟିକୁ ଦଗା ଦେଇପାରେନି ଚିରଦିନ, ଶଉରା ସେମିତି ତା'ଠୁଁ ଦୂରେଇ ରହିପାରିବନି ସବୁଦିନ । ତା' ମନ ଚୋରେଇଥିବା ଓ ତାକୁ ସ୍ୱପ୍ନ ଚଖେଇଥିବା ଶଉରା 'ଗୋଟି'ରୁ ଫେରିବ ନିଶ୍ଚେ !

ମାଳତୀ ଅପେକ୍ଷା କରିଛି ସେଇଦିନକୁ । ଆକାଶରେ ଏବେ ଖାଲି ମେଘ ଆଉ ମେଘ ; ମାଟି ଭର୍ତ୍ତି ଖାଲି ସ୍ୱପ୍ନ ଆଉ ସ୍ୱପ୍ନ !



# ଆଦ୍ୟ-ଆଷାଢ଼

'ଚୋରା ପୀରତିର ଗୋପନ ଚିଠି' ପଢ଼ିବା ପରଠାରୁ ଅନୁବିଂଦ୍ୟଙ୍କୁ ପିଥାଗୋରାସଙ୍କ 'ଉପପାଦ୍ୟ', ନ୍ୟୁଟନଙ୍କ 'ଥାର୍ଡ଼ ଲ' ବା ବେନ୍ ଜନସନ୍‌ଙ୍କ 'ନୋବଲ ନେଚର' କବିତା କିଛି ବି ଭଲ ଲାଗିବ ନାହିଁ । ଆଗର ଓ ଆଉ କ୍ଲାସ୍‌ର ଆଗ ସିଟ୍‌ରେ ବସି ଅରବିନ୍ଦ ସାର୍‌ଙ୍କୁ ଇଂରାଜୀ ଗ୍ରାମାର ବିଷୟରେ ଅନ୍ଦିକନ୍ଦି ପ୍ରଶ୍ନ ପଚାରିବ ନାହିଁ ବା ଗଣିତ ପଢ଼ାଉଥିବା ବିରୂପାକ୍ଷ ସାର୍‌ଙ୍କୁ ଏଲଜାବ୍ରା ସମ୍ପର୍କିତ ଅତିରିକ୍ତ ପ୍ରଶ୍ନ ପଚାରି ବିବ୍ରତ କରିବ ନାହିଁ । ତା'ଠାରୁ ମାତ୍ର ୩ ନମ୍ବର ଅଧିକ ରଖି କ୍ଲାସ୍‌ରେ ଫାଷ୍ଟ ହୋଇଥିବା ସୁବ୍ରତ ସହ ତ୍ରିଗୋନୋମେଟ୍ରି ବିଷୟରେ ଯୁକ୍ତି କରିବ ନାହିଁ କିମ୍ବା ସ୍କୁଲ ସାପ୍ତାହିକ ତର୍କସଭାରେ ଭାଷଣ ଦେବାପାଇଁ ଆଗଭର ହେବ ନାହିଁ ।

ନବମ ଶ୍ରେଣୀରେ ତିନି ବର୍ଷ ଅଟକି ରହିଥିବା ଅମରେଶ ନାମଧାରୀ କିଶୋରଟି ସହ ଗଢ଼ି ଉଠିଥିବ ତା'ର ଘନିଷ୍ଠ ସଂପର୍କ । ଅମରେଶ କର୍ତ୍ତୃକ ପ୍ରାପ୍ତ ନାଲିଜରିଦ୍ୱାରା ସୁସଂରକ୍ଷିତ ବହିଗୁଡ଼ିକ ପଢ଼ି ଅନୁବିନ୍ଦ୍ୟ ନିଜ ଭିତରେ ଅସମ୍ଭବ ଶିହରଣ ଅନୁଭବ କରୁଥିବ । ଭୟଭୀତ ହେଉଥିବ ମଧ୍ୟ ।

ଇତିହାସ, ଭୂଗୋଳ ବା ସାହିତ୍ୟ ବହିର ପଞ୍ଜୁରି ଭିତରେ ନିଜକୁ ବାନ୍ଧି ରଖିବାକୁ ଶତଚେଷ୍ଟା କରି ସେ ବିଫଳ ହେଉଥିବ । କ୍ଲାସ୍ ରୁମ୍‌ର ସମସ୍ତ ଶୃଙ୍ଖଳାସତ୍ତ୍ୱେ କୋଉ ଦୂର ଦିଗ୍‌ବଳୟକୁ ଉଡ଼ିଯାଉଥିବ ତା'ର ଅବୁଝାମନ । ଆଗ ସିଟ୍‌ରେ ବସିଥିବା ଝିଅମାନଙ୍କ ବିମୁକ୍ତ କେଶଗୁଚ୍ଛରେ କେତେବେଳେ ତା' ଦୃଷ୍ଟି ପିଟି ହୋଇଯାଉଥିବ ତ ଆଉ କେତେବେଳେ ଲେସି ହାରି ଯାଉଥିବ ସୁରୁଚି ଦିଦୀଙ୍କ ବିପୁଳ ଅଙ୍ଗଲତାରେ ।

ହସଖୁସି ଗହଳ ଚହଳ ଅପେକ୍ଷା ନିଛକ ନିରବତା ଆଜିକାଲି ଅଧିକ ଆକର୍ଷିତ କରୁଥିବ ଅନୁବିନ୍ଦ୍ୟକୁ । ଆଗତପ୍ରାୟ ବସନ୍ତର ଚୋରାମଳୟ ତାକୁ ଚିହ୍ନା ଚିହ୍ନା ଲାଗୁଥିବ । ଆପଣାର ମନେ ହେଉଥିବ ଆଦ୍ୟ ଆଷାଢ଼ର ଭିଜାମାଟିର ବାସ୍ନା । ସମୁଦ୍ରର ନୀଳ ଉତ୍ତାଳ ଛାତି ଉପରେ ଫୁଲେଇ ନଈର ଛଇ, କଳାମେଘର ଶକ୍ତ ବାହୁବନ୍ଧନରେ ନିଟୋଳ ଜହ୍ନର ସରୁହସ, ଶରଦର ଧୂଆଁଳିଆ କୁହୁଡ଼ି ଚଦର ତଳେ ଜୀର୍ଣ୍ଣ ଚାଳ ସହ କଖାରୁଲଟାର ନିବିଡ଼ ଆଶ୍ଳେଷ– ସବୁକିଛି ଆସ୍ତେ ଆସ୍ତେ ଅର୍ଥପୂର୍ଣ୍ଣ ବୋଧହେବ ତାକୁ ।

'ତୁ ଇମିତି ବିମର୍ଷ କାହିଁକି ଦିଶୁଛୁ (?)' ବୋଲି ବୋଉର ଉକ୍ତି, 'ତୁ କାହିଁକି ଆଜିକାଲି ଅନ୍ୟମନସ୍କ ରହୁଛୁ' ବୋଲି ବାପାଙ୍କ ତାଗିଦା, 'ତମେ କାହିଁକି ଆସ୍ତେ ଆସ୍ତେ ଡଲ୍ ହୋଇଯାଉଚ', ବୋଲି ଅରବିନ୍ଦ ସାର୍‌ଙ୍କ ସତର୍କତା – ସବୁ ଘାରି ବି ଘାରୁ ନ ଥିବ ଅନୁବିନ୍ଦ୍ୟକୁ । କାଲିର 'ସେ' ଓ ଆଜିର 'ସେ' ଭିତରେ କାହିଁ କେତେ ତଫାତ୍– ସେ ବୁଝି ବି ବୁଝିପାରୁ ନ ଥିବ । ନିଜ ଅଜାଣତରେ ଦୂରେଇ ଯାଉଥିବ ନିଜ ଠାରୁ ନିଜେ ।

ପଢ଼ିବସିଲା କ୍ଷଣି କେଉଁ ଦୂର ନଈକୂଳର କାଶତଣ୍ଡୀ ଅରଣ୍ୟର ଶଙ୍ଖଧବଳ କାନ୍ତି ଭାସିଯାଉଥିବ ତା'ଆଖି ସାମ୍ନାରେ । ଗଣିତ କଷିବାକୁ ଉଦ୍ୟତ ହେବା ମୁହୂର୍ତ୍ତରେ ହିଁ ନାକରେ ବାଜୁଥିବ କୋଉ ଅଜଣାଫୁଲର ଆମୋଦିତ ବାସ୍ନା, ଛାତି ଭିତରେ ଗୁଞ୍ଜରି ଉଠୁଥିବ କେବେ କୋଉଠି ଶୁଣିଥିବା କୋଉ ଉନ୍ମାଦ ସଙ୍ଗୀତର ଆବେଗଭରା ମୂର୍ଚ୍ଛନା । ପଢ଼ାଘରେ ଆଲୁଅ ଲିଭାଇ ଜହ୍ନରାତିର ଶ୍ୱେତ ସମୁଦ୍ରରେ ଲହଡ଼ି ଭାଙ୍ଗିବାକୁ ଇଚ୍ଛା ହେଉଥିବ ତା'ର, ମନ ହଉଥିବ ଦିଗନ୍ତର ସବୁ ନୀଳିମାକୁ ଆମୁଷ୍ଠ କରିବାପାଇଁ ମୁହୂର୍ତ୍ତକ ମଧ୍ୟରେ ।

ଆଜିକାଲି ନିଜର ପୋଷାକ-ପରିଚ୍ଛଦ ବିଷୟରେ ସେ ଅଧିକ ସଚେତନ ହୋଇପଡୁଥିବ । ବାରମ୍ୱାର ପୋଷାକ ବଦଳାଇ ସହପାଠିନୀମାନଙ୍କ ସାମ୍ନାରେ ବେପରୱା ଭାବରେ ଚାଲିଯିବାକୁ ସେ ବେଶ୍ ପସନ୍ଦ କରୁଥିବ । ନିଜ ମୁହଁରେ ଲଗାଇଥିବା ସୁଗନ୍ଧିତ ପ୍ରସାଧନର ଗୁରୁମହକରେ ତମାମ୍ ସ୍କୁଲକୁ ଚହଲେଇ ଦବା ପାଇଁ ସେ ସୁଖ ମଣୁଥିବ । ନିରୋଳା ମୁହୂର୍ତ୍ତରେ ଲାଇଫ୍‌ସାଇଜ୍ ଦର୍ପଣ ସାମ୍ନାରେ ଠିଆହୋଇ ବେଶ୍ କିଛି ସମୟ ଧରି ମୁଣ୍ଡ କୁଣ୍ଡାଉଥିବ । ଦର୍ପଣରେ ପ୍ରତିବିମ୍ୱିତ ନିଜର କ୍ରମବର୍ଦ୍ଧିଷ୍ଣୁ ଛାତି, ସ୍ଫୀତ ଜଘନ, ମୁହଁରେ ଗଜରୁଥିବା ସ୍ୱଳ୍ପ ନିଶ ଆଦିକୁ ନେଇ ଶିହରିତ ହେଉଥିବ ନିଜ ଭିତରେ ।

ସେ ପଢୁ ପଢୁ ଶୋଉଥିବ, ଶୋଉ ଶୋଉ ସ୍ୱପ୍ନ ଦେଖୁଥିବ, ପୁଣି ସ୍ୱପ୍ନ ଦେଖୁ ଦେଖୁ ଚେଇଁ ଉଠୁଥିବ ରାତି ଅଧରେ । ସୁନ୍ଦର ସ୍ୱପ୍ନଟିଏ ଅକସ୍ମାତ୍ ହଜିଯିବାର ଦୁଃଖରେ ମ୍ରିୟମାଣ ହୋଇପଡୁଥିବ ଓ ଅସ୍ପଷ୍ଟ ସ୍ୱପ୍ନର ପୃଷ୍ଠା ଲେଉଟାଉଥିବ ଚଦରରେ ମୁହଁ ଢାଙ୍କି ନିରବରେ– "ବେଗବାନ୍ ଘୋଡ଼ା ଉପରେ ଜର୍କେଟ୍ ପୋଷାକ ପରିହିତ ସେ । ପବନର ଗତିପରି ଘୋଡ଼ାର ଦୌଡ଼ । ବିଲବଣ ନଈ ଡେଇଁ କୋଉ ଅଜଣା ରାଇଜରେ ପହଞ୍ଚୁଥିବ ଘୋଡ଼ା । ସାମ୍ନାରେ ପଦ୍ମ-ବିମଣ୍ଡିତ ସରୋବର । ଘୋଡ଼ା ହ୍ରେଷାରବ କରି ସରୋବର ଭିତରକୁ ଲମ୍ଫଦେଲାବେଳେ ଦୁଇଭାଗ ହୋଇଯାଉଥିବ ସରୋବରର ନିଥର କାଚକେନ୍ଦୁ ଜଳ । ସରୋବର ଭିତରେ ସୁରମ୍ୟ ପ୍ରାସାଦ । ପ୍ରାସାଦକୁ ଆବୋରି ରହିଥିବେ ସଶସ୍ତ୍ର ସାମନ୍ତ । ବେଶ୍ କିଛି ସମୟ ଘମାଘୋଟ ଲଢ଼େଇ ପରେ, ପରାଜିତ ସାମନ୍ତମାନେ ପାଛୋଟି ନେଉଥିବେ ତାକୁ ଅନ୍ତଃପୁରକୁ । ଅନ୍ତଃପୁର ରାସ୍ତାର ଉଭୟ

ପାର୍ଶ୍ୱରେ ଠିଆହୋଇ ପୁଷ୍ପବୃଷ୍ଟି କରୁଥିବେ ପ୍ରାସାଦ ଲଳନାଗଣ । ଅନ୍ତଃପୁରରୁ ପୁଷ୍ପମାଲ୍ୟ ଧରି ବାହାରି ଆସୁଥିବେ ଅବଗୁଣ୍ଠନବତୀ ଅବନତା ରାଜପୁତ୍ରୀ–''

ବାସ୍, ସେଇଠିହିଁ ଅଟକି ଯାଉଥିବ ଅନୁବିନ୍ଦ୍ୟର ସ୍ୱପ୍ନବିଳାସ ! କଡ଼ ଲେଉଟାଇ ସେ ବାରମ୍ବାର ମନେ ପକାଇବାକୁ ଚେଷ୍ଟା କରୁଥିବ ସ୍ୱପ୍ନର ସେହି ଅବଗୁଣ୍ଠନବତୀ ରାଜପୁତ୍ରୀର ଅନିନ୍ଦ୍ୟ ମୁଖମଣ୍ଡଳ । ଓଃ.... ଭାରି ଚିହ୍ନା ଚିହ୍ନା ସେ ମୁହଁ, ଭାରି ଆତ୍ମୀୟ । ଅସ୍ଥିର ଅନୁବିନ୍ଦ୍ୟ ନିବିଡ଼ ଭାବରେ ମନେ ପକାଇବାକୁ ଚେଷ୍ଟା କରୁଥିବ ପୁଣି ଥରେ....ପୁଣି ଥରେ । ଅଥଚ ଚୈତ୍ରର ଘୂମନ୍ତ ଦିଗ୍‌ବଳୟ ପରି ଘୁଞ୍ଚି ଘୁଞ୍ଚି ଯାଉଥିବ ସେ ମୁହଁର ଭୂଗୋଳ । ଆଃ...ଏମିତି ଅନେକ ଚେଷ୍ଟା ପରେ ଅବଗୁଣ୍ଠନ ଭେଦି ଫୁଟିଉଠିବ ସେ ନିଖୁଣ ମୁହଁଟି– ରବିସାର୍‌ଙ୍କ ସାନ ଝିଅ ତା'ର ସହପାଠିନୀ ତନ୍ଦ୍ରାର ସେ ତନ୍ଦ୍ରାଳସା ମୁହଁ; ଲାଜେଇ ଯିବ ଅନୁବିନ୍ଦ୍ୟ ।

ଏମିତି ସବୁ ରାତିରେ ସ୍ୱପ୍ନ, ସବୁ ସ୍ୱପ୍ନରେ ରାତି ।

ସେଥର ବାର୍ଷିକ ପରୀକ୍ଷାରେ ଅନୁବିନ୍ଦ୍ୟର ରେଜଲ୍‌ଟ ତା'ର ବାପା ବୋଉ ଓ ସ୍କୁଲର ସବୁ ଶିକ୍ଷକଙ୍କୁ ବେଶ୍ ଆଘାତ ଦେବ । ଗଣିତରେ କ୍ରମାଗତ ଭାବରେ ଅନେଶତ ରଖୁଥିବା ଅନୁବିନ୍ଦ୍ୟ ସେଥର ରଖିଥିବ ସଇଁତ୍ରିଶ । ଇଂରାଜୀରେ ମାର୍କ ସତଷଠିରୁ ଖସି ଆସିଥିବ ବତିଶକୁ । ଆଉ ସାଇନ୍‌ସରେ ଫେଲ୍– ସତେଇଶ ।

ଅନୁବିନ୍ଦ୍ୟକୁ ଅବଶ୍ୟ ବେଶ୍ କିଛି ଦିନ ଘାରିବ ପରୀକ୍ଷାର ଫଳାଫଳ । କିନ୍ତୁ ସେଥିଲାଗି ସେ ନିଜ ଅପେକ୍ଷା ଅଧିକ ଦୋଷୀ କରୁଥିବ ତନ୍ଦ୍ରାକୁ । ତନ୍ଦ୍ରା କାହିଁକି ତା' ପାଖକୁ ବାରମ୍ବାର ଆସୁଥିଲା ବହିନେବାପାଇଁ ? ଗଣିତ ବୁଝିବା ବାହାନାରେ ଆସି ଦ୍ୱିପ୍ରହରଟା କାହିଁକି କାଟୁଥିଲା ତା' ରୁମ୍‌ରେ ? କାହିଁକି ଅନେକ ସମୟରେ ହସୁଥିଲା, କୌଣସି ବି କାରଣ ନ ଥାଇ । ଦିନେ କାହିଁକି ମୁଣ୍ଡରୁ ଧୂଳି ଝାଡ଼ିଦେବା ବାହାନାରେ ସେ ନିଜକୁ ପୂରାପୂରି ଅଜାଡ଼ି ଦେଇଥିଲା ଅନୁବିନ୍ଦ୍ୟ ଉପରେ ଓ ତା'ର ମାଂସଳ ଛାତିର ସ୍ପର୍ଶରେ ହଠାତ୍ ଚେଇଁଉଠିଥିଲା ଅନୁବିନ୍ଦ୍ୟ ଭିତରେ ବହୁ ଦିନୁଁ ଦିକ୍ ଦିକ୍ ହୋଇ ଜଳୁଥିବା ଅଜଣା ନିଆଁର ଧାପଟିଏ । ଦିନେ ସଞ୍ଜରେ ପଢ଼ାଘରେ ବିଜୁଳି ଚାଲିଗଲା ପରେ ଅନୁବିନ୍ଦ୍ୟ ଯେତେବେଳେ ତା'ମସୃଣ ଗାଲରେ ଚୁମାଟିଏ ଦେଲା, ସେ କାହିଁକି ପ୍ରତିବାଦ କରିବା ପରିବର୍ତ୍ତେ ଖୁସି ହେଲା ? ସେ କାହିଁକି ବାରମ୍ବାର କହି ହୁଏ ପୁଅମାନେ ଭାରି ବୋକା ? କାହିଁକି ?

ତନ୍ଦ୍ରାକୁ ମନେ ମନେ ଘୃଣାକରିବା ଆରମ୍ଭ କରିଥିବ ଅନୁବିନ୍ଦ୍ୟ । କିନ୍ତୁ ଅନ୍ଧ ରାତିର ପ୍ରଲୁବ୍ଧ ଅନ୍ଧାରରେ ତନ୍ଦ୍ରା ତାକୁ ଘାରୁଥିବ ତନ୍ଦ୍ରା ପରି ।

ସେଇ ବର୍ଷ ଖରାଛୁଟିରେ ଅନୁବିନ୍ଦ୍ୟକୁ ତା'ର ବାପା ବୋଉ ପଠେଇଦେବେ ଅନ୍ୟ ଏକ ସହରକୁ ଯୋଉଠି ତା' ଭିଣୋଇ କୌଣସି ଏକ ହାଇସ୍କୁଲରେ ଗଣିତ

ଶିକ୍ଷକ । ଅନ୍ୟ ସହରକୁ ଯିବା ପୂର୍ବଦିନ ଅନୁବିନ୍ଧ୍ୟ ତନ୍ଦ୍ରାକୁ ନିରୋଳାରେ ସାକ୍ଷାତ କରିବ ଓ ତାକୁ ଅନ୍ୟ ସହରକୁ ଯିବା ବିଷୟରେ କହି ମନ ଦୁଃଖ କରିବ । ତନ୍ଦ୍ରା ବି କାନ୍ଦ କାନ୍ଦ ହୋଇଯିବ ଓ ଚିଠିଦବା ପାଇଁ ଅଳି କରିବ । ଅନୁବିନ୍ଧ୍ୟ ଅନୁଚ୍ଚ ହଁଟିଏ ଭରି ଫେରିବାକୁ ଉଦ୍ୟତ ହେଉଥିବାବେଳେ ତନ୍ଦ୍ରା ତାକୁ କୋଳେଇ ନେଇ ତା' ମୁହଁରେ ଅସଂଖ୍ୟ ତାରାର ଆକାଶ ଆଙ୍କିଦେବ । ଅନୁବିନ୍ଧ୍ୟର ସର୍ବାଙ୍ଗ ଶୀତେଇ ଉଠିବ ଓ ଏକ ଅସାଧାରଣ ଆତଙ୍କର ଭୂକମ୍ପରେ ଦୁଲୁକି ଉଠିବ, ତା' ସମଗ୍ର ଛାତିର ଅଭ୍ୟନ୍ତର ।

ଅନ୍ୟ ସହରରେ ରହିବାର ବେଶ୍ କିଛିଦିନ ପର୍ଯ୍ୟନ୍ତ ଅନୁବିନ୍ଧ୍ୟର ଘର କଥା ଓ ତନ୍ଦ୍ରା କଥା ଭାରି ମନେ ପଡ଼ିବ । ଅମରେଶ ଓ ତା'ର ନାଲିଜରିମୁଦା ବହିକୁ ବି ସେ ଏତେ ଶୀଘ୍ର ପାସୋରି ପାରିବ ନାହିଁ ।

ଆଗପରି, ତା'ର ପ୍ରତିଟି ଭାବନା ବାଟବଣା ହେଉଥିବ ମୋହଗ୍ରସ୍ତ କଦମ୍ବ ବନରେ । ପ୍ରତିଟି ରାତିରେ ପର୍ଯ୍ୟାପ୍ତ ସ୍ୱପ୍ନର ନୀଳକଇଁ ଉଙ୍କିମାରୁଥିବେ ତା' ମନଗୋହିରିର ଅଥୟ ଢେଉରେ । କିନ୍ତୁ ସ୍ୱପ୍ନର ବଳୟ ଭିତରୁ ଗୋଧୂଳିର ସୂର୍ଯ୍ୟପରି ଆସ୍ତେ ଅପସରିଯାଉଥିବ ତନ୍ଦ୍ରା । ଢେଉଢେଉଆ ରୋମାଞ୍ଚର ଦୂର ଆକାଶରେ ଝଟକୁଥିବ ନୂଆ ମୁହଁଟିଏ– ରୁନିଅପାଙ୍କର – ନୂଆ ଜହ୍ନଟିଏ ଯେମିତି !

ରୁନିଅପା ତା' ଭିଣୋଇଙ୍କ ସାନଭଉଣୀ– ପ୍ଲସ୍ ଟୁ ଛାତ୍ରୀ । ରୁନିଅପା ତାକୁ ଭଲ ଲାଗୁଥିବେ ଭାରି ।

ଭିଣୋଇଙ୍କ ଦୁଇ ବଖୁରିଆ ଘରେ, ପ୍ରଥମଟି ଭଉଣୀ ଭିଣୋଇଙ୍କ ଶୋଇବା ଘର, ଅନ୍ୟଟିରେ ସେ ଓ ରୁନିଅପା । ସେଇଠି ସେ ଦୁହେଁ ପଢୁଥିବେ ଓ ଶୋଉଥିବେ ବି ସେଇଠି ଅଦୂରବର୍ତ୍ତୀ ଦୁଇଟି ଖଟରେ । ପ୍ରାୟ ସଞ୍ଜରେ ଭିଣୋଇ ଗଣିତ ବୁଝାଉଥିବେ ଓ ତାଗିଦା କରୁଥିବେ ମନଦେଇ ପଢ଼ିବାପାଇଁ । ରୁନିଅପା ବି ବେଳେବେଳେ ପାଠ କହି ଦେଉଥିବେ ପଚାରିଲେ । ସେ ଯେତେବେଳେ ମୋଟା ମୋଟା ବହିର ଆବର୍ତ୍ତ ଭିତରେ ନିବିଷ୍ଟ ଥିବେ, ଅନୁବିନ୍ଧ୍ୟ ଟେବୁଲ୍ ଉପରେ ଭୂଗୋଳ ବହି ଥୋଇ, ରୁନିଅପାଙ୍କ ଭୂଗୋଳକୁ ମୁଖସ୍ଥ କରୁଥିବ ମନେ ମନେ । ରୁନିଅପାଙ୍କ ବହିର ପୃଷ୍ଠା ଓଲଟାଇବାର ଶବ୍ଦ ବା ଚୁଡ଼ିର ମୃଦୁ ଆବାଜ୍‌ରେ ବି ଚିହିଁକି ପଡୁଥିବ ସେ । ରୁନିଅପାଙ୍କ ମୁକୁଳା କେଶରେ ସେ ଖୋଜୁଥିବ ସମୁଦ୍ରର ଉଷ୍ଣ କଲ୍ଲୋଳ, ତାଙ୍କର ପ୍ରତିଟି ହସରେ ଦେଖୁଥିବ ଜହ୍ନ ରାତିର ଝର୍ଣ୍ଣା ଓ ପ୍ରତିଟି କଥାରେ ଅନୁଭବ କରୁଥିବ ଝିପିଝିପି ବର୍ଷାର ମାଦକତା ।

ପ୍ରତିଟି ସକାଳପରି ରୁନିଅପା ତାକୁ ଲାଗୁଥିବେ ନୂଆ ନୂଆ । ଭିଣୋଇଙ୍କ ଘରେ କୋଳାହଳମୟ ଦୈନନ୍ଦିନୀ ଭିତରେ ମିଶି ବି ମିଶିପାରୁ ନ ଥିବ ସେ, ଭିନ୍ନ କେଉଁ ଅନ୍ତରୀକ୍ଷର ନିର୍ଲିପ୍ତ ନକ୍ଷତ୍ର ପରି । ତା'ର ପୃଥିବୀ ଫଗୁଣର ଲମ୍ବା ଦ୍ୱିପ୍ରହର ପରି ଏକ ସ୍ୱପ୍ନାବିଷ୍ଟ ନିରବତା, ଯାହା ଯୁଗପତ୍ ମୁଖରିତ ହେଉଥିବ ରୁନିଅପାଙ୍କ ନିଃଶବ୍ଦ ଭାଷାମୟତାରେ ।

ମନ ଭିତରେ ସେ ରୁନିଅପାଙ୍କୁ ଯେତେ ପାଖେଇ ଆଣୁଥିବ, ସେତେ ଦୂରେଇ ଯାଉଥିବ ତାଙ୍କ ସହ ମିଳାମିଶାରେ । ଇଂରାଜୀ କବିତା ବିଷୟରେ ତାଙ୍କୁ ପଚାରିବା ବେଳେ ତାଙ୍କଠାରୁ ଦୂରେଇ ଠିଆହେଉଥିବ, ଯଦିଓ ତା' ମନ ହେଉଥିବ ତାଙ୍କ ସର୍ବାଙ୍ଗରେ ଲେପି ହୋଇଯିବାପାଇଁ ଚାରୁଚନ୍ଦନ ପରି । ହସଖୁସି ଗପସପ ବେଳେ ସେ ତାଙ୍କର ପାଖ ପଶୁ ନ ଥିବ, ଯଦିଓ ତାଙ୍କ ନିଃଶ୍ୱାସର ନିବିଡ଼ତାରେ ସେ ଗୋଟାପଣେ ବୁଡୁବୁଡୁ ହେବାକୁ ଇଚ୍ଛା କରୁଥିବ । ତାଙ୍କ ଶାଢ଼ି ଶାୟା ବ୍ଲାଉଜ୍ ଆଦିକୁ ସ୍ପର୍ଶ କରିବାରୁ ସେ ନିବୃତ୍ତ ରହୁଥିବ, ଯଦିଓ ରୁନିଅପାଙ୍କର ସେହି ସବୁ ଏକାନ୍ତ ବ୍ୟକ୍ତିଗତ ବସ୍ତୁସବୁ ପ୍ରତି ତା' ମନରେ ଥିବ ଏକ ଅଦମ୍ୟ ଆତ୍ମୀୟତା ।

ଦିନେ ରୁନିଅପା ଗାଧୋଉଥିବା ବେଳେ ହଠାତ୍ ଗାଧୁଆଘର ଭିତରକୁ ପଶିଯିବ ଅନୁବିନ୍ଧ୍ୟ । ପଛଆଡୁ ରୁନିଅପାଙ୍କୁ ଦେଖି ତା'ର ସମ୍ମୁଖ ସତ୍ତ ବରଫଖଣ୍ଡଟିଏ ପାଲଟିଯିବ ଓ ମୁହୂର୍ତ୍ତକ ଭିତରେ ସେ ଫେରିଆସିବ ସେଠୁ । ତା'ର ପରବର୍ତ୍ତୀ ସେଦିନର ସମସ୍ତ ଘଟଣା ଅତି ସାଧାରଣ ଥିଲେ ବି ; ଅବିରତ ନିଃଶବ୍ଦ ବିସ୍ଫୋରଣରେ ଦୋହଲି ଯାଉଥିବ ତା' କଅଁଳ ଛାତିର ଦୁର୍ବଳ ପରିଧି । ସେଦିନ କ୍ଲାସରେ ସେ ଅସମ୍ଭବ ଭାବରେ ଅନ୍ୟମନସ୍କ ରହିବ । ତା' ଆଖି ସାମ୍ନାରେ ବାରମ୍ବାର ଝୁଲିପଡୁଥିବ ରୁନି ଅପାଙ୍କ ବ୍ଲାଉଜବିହୀନ ଭିଜା ପିଠିର ଚମ୍ପାଗୋରା ଚୌହଦି, ଅଦୂରର ଯୁଗ୍ମ ଧୂମାଭ ପାହାଡ଼ ପରି ଓଦାଲୁଗା ବିଜଡ଼ିତ ତାଙ୍କର ଗୁରୁ ନିତମ୍ବ ଏବଂ ତାଙ୍କ ଆର୍ଦ୍ର କେଶର ମେଘମଲ୍ଲାର !

ସ୍କୁଲରୁ ଫେରିବାବେଳେ ଅନୁବିନ୍ଧ୍ୟ ଭୟରେ ଥରି ଥରି ଆସୁଥିବ । ଝାଳେଇ ଯାଉଥିବ ତା'ର ଦେହ, ହେମାଳି ଯାଉଥିବ ମନ । ତା'ର ମନେ ପଡୁଥିବା ସମସ୍ତ ଦେବଦେବୀଙ୍କୁ ସେ ସ୍ମରଣ କରୁଥିବ ଓ ନଡ଼ିଆ କଦଳୀଠାରୁ କଳାବୋଦା ପର୍ଯ୍ୟନ୍ତ ସବୁ କିଛି ମାନସିକ ରଖୁଥିବ ତାଙ୍କ ପାଖରେ । ତା'ର ଏକମାତ୍ର ଗୁହାରି ଥିବ, ରୁନିଅପା ସକାଳର ଦୁର୍ଘଟଣାକୁ ଯେପରି କାହା ପାଖରେ ନ କହନ୍ତୁ କି ତାକୁ କିଛି ନ ପଚାରନ୍ତୁ ବା ସେ କଲେଜରୁ ନ ଫେରନ୍ତୁ ବା କଲେଜରୁ ଫେରି ଏହି ସଞ୍ଜରେ କୌଣସି ଜରୁରୀ କାର୍ଯ୍ୟ ପାଇଁ ସେ ଗାଁକୁ ପଳାନ୍ତୁ ।

କିନ୍ତୁ ପରମୁହୂର୍ତ୍ତରେ ସେ ପୁଣି ନିଜର ମତ ପରିବର୍ତ୍ତନ କରୁଥିବ ଓ ଭାବୁଥିବ, ବିଜ୍ଞାନ ଯୁଗରେ ଦେବଦେବୀମାନଙ୍କର ପ୍ରତାପ ଯଥେଷ୍ଟ ହ୍ରାସ ପାଇଥିବାରୁ ତା'ର ପ୍ରାର୍ଥନାମତେ କୌଣସି ଘଟଣା ହୁଏତ ଘଟି ନ ପାରେ । ତେଣୁ ନିଜ ଘରକୁ ବାଟେ ବାଟେ ପଳାଇଯିବାପାଇଁ ସେ ଚିନ୍ତା କରୁଥିବ । କିନ୍ତୁ ଘରକୁ ଗଲେ, ସେ କାହିଁକି ଅକସ୍ମାତ୍ ଆସିଲା ବୋଲି ବାପା ବୋଉ ହୁଏତ ଓଲଟି ପ୍ରଶ୍ନ କରିବେ । ଏଣେ ଭଉଣୀ ଭିଣୋଇ ବ୍ୟସ୍ତ ହୋଇ ସକାଳୁ ସକାଳୁ ଯାଇ ଘରେ ହାଜର ହୋଇଯିବେ । ଏଣୁତେଣୁ

ଗୁଡ଼ାଏ ପ୍ରଶ୍ନର ସାମ୍ନା କରିବାକୁ ପଡ଼ିବ । ତା' ଭିତରେ ହୁଏତ ଦୁର୍ଘଟଣାଟି ପଦାରେ ପଡ଼ି ଯାଇପାରେ । ତେଣୁ ଅନୁବିନ୍ଦ୍ୟ ଅସ୍ଥିର ହୋଇପଡୁଥିବ ଓ କୌଣସି ସିଦ୍ଧାନ୍ତରେ ପହଞ୍ଚିପାରୁ ନ ଥିବ ।

କିଛି ସମୟ ପରେ ଅନୁବିନ୍ଦ୍ୟ ମନକୁ ଦୃଢ଼ କରିବାକୁ ଚେଷ୍ଟା କରିବ ଓ ସେ ବିଷୟରେ ତାକୁ ପ୍ରଶ୍ନ କରାଗଲେ, ସେ ନ ଜାଣି ଗାଧୁଆଘର ଭିତରକୁ ପଶିଯାଇଥିଲା ବୋଲି କୈଫିୟତ ଦେବାକୁ ସ୍ଥିର କରିବ ।

ଘର ସାମ୍ନାରେ ପହଞ୍ଚିଲାବେଳକୁ ତାକୁ ଲାଗିବ ସେ ଯେମିତି କୌଣସି ପ୍ରକାରେ ଚାଲିପାରୁଥିବା ନିର୍ଜୀବ ବସ୍ତୁଟିଏ । ସ୍କ୍ରିନ ଠେଲି ଘର ଭିତରକୁ ପଶିବାକ୍ଷଣି ସେ ରୁନିଅପାଙ୍କୁ ଦେଖି ଅନ୍ଧାର ରାତିରେ ଭୂତ ଦେଖିଲା ପରି ଚିହିଁକି ପଡ଼ିବ ଓ ତାଙ୍କୁ କିଛି ନ କହି ଟେବୁଲ୍ ଉପରେ ବହିପତ୍ର ଥୋଇବ । ତା'ପରେ କଣେଇ କଣେଇ ରୁନିଅପାଙ୍କୁ ଲକ୍ଷ୍ୟ କରିବ ଓ ସେ ହସୁଥିବାର ଦେଖି ସାମାନ୍ୟ ଦମ୍ଭ ଫେରିପାଇବ । ଗୋଡ଼ ହାତ ଧୋଇ ଖାଇଲାବେଳେ ସେ ବାରମ୍ବାର ତା' ଭଉଣୀଙ୍କୁ ଚାହୁଁଥିବ ଓ ସେ କାଳେ ସକାଳର ଦୁର୍ଘଟଣା ବିଷୟରେ ପଚାରିଦେବେ, ସେଇ ଆଶଙ୍କାରେ ତାଙ୍କର ପ୍ରତିଟି ଉଚ୍ଚାରଣରେ ଚମକି ଉଠୁଥିବ ।

ସେଦିନ ସଞ୍ଜରେ ତା' ଭିଣୋଇ ତାକୁ ଗଣିତ ବୁଝାଇବାକୁ ଆସୁଥିବା ବେଳେ, ଜେରା ପାଇଁ ଉଦ୍ୟତ ପ୍ରତିପକ୍ଷ ଓକିଲର ସାମ୍ନାସାମ୍ନି ହେଉଥିବା ନୂଆ ଆସାମୀଟି ଏପରି ସେ କାକୁସ୍ଥ ହୋଇପଡ଼ିବ । କିନ୍ତୁ ଭିଣୋଇ ଯେତେବେଳେ ମେନ୍ସୁରେସନ୍ ବହି ଖୋଲିବାକୁ କହିବେ, ସେ ଏକ ନିଶ୍ଚିତ ଦୁର୍ଘଟଣାରୁ ବର୍ତ୍ତିଯାଇଥିବା ଲୋକଟେ ପରି ମନେ ମନେ ଖୁସି ହବ ଓ ଭିଣୋଇଙ୍କ ପଢ଼ା ମନଧ୍ୟାନ ଦେଇ ଶୁଣିବ । କିନ୍ତୁ ଅଳ୍ପ ସମୟ ପରେ ସେ ପୁଣି ଅନ୍ୟମନସ୍କ ହୋଇପଡ଼ିବ ଓ ଭିଣୋଇଙ୍କ ଦୃଷ୍ଟି ଉପରେ ସାମାନ୍ୟ ପ୍ରତିବନ୍ଧକ ସୃଷ୍ଟି ହେବା ସୁଯୋଗରେ ରୁନିଅପାଙ୍କ ଉପରେ ଆଖି ପହଁରେଇ ନବ ।

ସେଦିନ ରାତିରେ ଅନୁବିନ୍ଦ୍ୟ ଆଖିକୁ ଜମା ନିଦ ଆସିବ ନାହିଁ । ସକାଳର ସେ ଅଭାବନୀୟ ଦୃଶ୍ୟଟି ତଥାପି ନାଚୁଥିବ ତା' ଆଖିସାମ୍ନାରେ । ଆସ୍ତେ ଆସ୍ତେ ଗମ୍ଭୀର ହେଉଥିବ ରାତି, ଉଚ୍ଚାଟ ହେଉଥିବ ଅନୁବିନ୍ଦ୍ୟର ମନ ।

'ରୁନିଅପାଙ୍କ ମାଂସଳ ଦେହକୁ ଛୁଇଁଲେ କେମିତି ଲାଗନ୍ତା (?)' ବିଛଣାରେ ପଡ଼ିରହି ଭାବୁଥିବ ଅନୁବିନ୍ଦ୍ୟ । ଏହା ଭାବିବା କ୍ଷଣି ହିଁ ତା'ର ସର୍ବାଙ୍ଗ ଶିହରିତ ହୋଇଉଠୁଥିବ କଦମ୍ବ ଫୁଲପରି । ପରମୁହୂର୍ତ୍ତରେ 'ଏମିତି ଭାବିବା ପାପ' ବୋଲି ମନେକରି ସେ ଆଖିବୁଜି ଶୋଇପଡୁଥିବ ଓ ଏମିତି ଆଉ କେବେବି ଭାବିବ ନାହିଁ ବୋଲି ପ୍ରତିଜ୍ଞା କରୁଥିବ । କିନ୍ତୁ ପୁଣି ଅଳ୍ପ ସମୟ ପରେ ତା'ର ପାପ ପୁଣ୍ୟର ଚେତନା କେଉଁ ଆଡ଼େ ଉଭେଇ ଯାଉଥିବ ଓ ରୁନିଅପା ଧସେଇ ପଶୁଥିବେ ତା' ଭିତରକୁ ।

ଅନୁବିନ୍ଦ୍ୟ ମଶାରି ଭିତରୁ ବେକ ଟେକି ରୁନିଅପାଙ୍କ ବିଛଣାକୁ ଚାହିଁବ । ଫାଙ୍କା ଝର୍କା ଦେଇ ଗଙ୍ଗଶିଉଳି ପରି ଝରିପଡୁଥିବା ଜହ୍ନାଲୋକ ରୁନିଅପାଙ୍କୁ ଗୋଟାପଣେ ଭିଜେଇ ଦେଇଥିବ । ଅନୁବିନ୍ଦ୍ୟ ଧୀରେ ଧୀରେ ଉଠିବ ଓ ରୁନିଅପା ବିଛଣା ପାଖରେ ଯାଇ ଠିଆହବ । ହଠାତ୍ ରୁନିଅପା କଡ଼ ଲେଉଟାଇବେ ଓ ଚିତ୍ ହୋଇ ଶୋଇଯିବେ । ରୁନିଅପା ଉଠିପଡ଼ିଲେ ବୋଲି ଭାବି ଅନୁବିନ୍ଦ୍ୟ ଭୟ ପାଇଯିବ ଓ ରୁନିଅପାଙ୍କ ଖଟକୁ ଲାଗି ବସିପଡ଼ିବ । କିନ୍ତୁ ରୁନିଅପାଙ୍କ ନିଦ ଅକ୍ଷୁଣ୍ଣ ଥିବାର ଜାଣି ସେ ପୁଣି ତାଙ୍କ ବିଛଣା ପାଖରେ ଠିଆ ହେବ ଓ ତିର୍ଯ୍ୟକ ଦୃଷ୍ଟି ଫିଙ୍ଗିବ ତାଙ୍କର ନିଦ୍ରିତ ଶରୀର ଉପରକୁ ।

ଜହ୍ନଭିଜା ରୁନିଅପାଙ୍କ ଦେହ ମନେ ହେଉଥିବ ଆଉ ଏକ ଜହ୍ନ ରାତିପରି ଲୋଭନୀୟ, ରହସ୍ୟାବୃତ । ସକାଳର କଇଁପରି ରୁନିଅପାଙ୍କ ଗୋରା ଏବଂ ନରମ ମୁହଁରେ ଚୁମା ଦେବାକୁ ଭାରି ଇଚ୍ଛାହେବ ଅନୁବିନ୍ଦ୍ୟର । କିନ୍ତୁ ଚୁମା ଦେଲେ ରୁନିଅପା କାଳେ ଉଠିପଡ଼ିବେ ଭାବି ସେ ଏଥିରୁ ନିବୃତ୍ତ ରହିବ । ରୁନିଅପାଙ୍କ ଶାଢ଼ି ଓ ବ୍ଲାଉଜର ମଧ୍ୟବର୍ତ୍ତୀ ଅନାବୃତ ଅଂଶଟି ଭାରି ଭଲ ଲାଗୁଥିବ ଅନୁବିନ୍ଦ୍ୟକୁ । ତା'ଠୁଁ ଭଲ ଲାଗୁଥିବ ରୁନିଅପାଙ୍କ ପଦ୍ମକେଶର ନିମ୍ନନାଭି । ତାଙ୍କ ନିମ୍ନନାଭିର ନିମ୍ନଭୂମି ଓ ଖରଶ୍ୱାସ ହେତୁ ପୂର୍ଣ୍ଣିମାର ଢେଉ ପରି ହିଲ୍ଲୋଳିତ ବକ୍ଷୋଜଦ୍ୱୟ କଥା ଭାବିଲା କ୍ଷଣି, ଏକ ଅନନ୍ୟ ଅନୁଭବରେ ଆତ୍ମ-ବିସ୍ମୃତ ହୋଇପଡ଼ିବ ଅନୁବିନ୍ଦ୍ୟ ।

ସେ ସେଇଠି ସେମିତି ଠିଆ ହୋଇ ରହିବ ସିନେମାର ସ୍ଥିର ଚିତ୍ରପରି ।



# ଏକ ନିରୋଳା ମୁହୂର୍ତ୍ତରେ
# ଅତନ୍ଦ୍ରର ନିଜ ସହ ବାତ୍‌ଚିତ୍‌

ଅତନ୍ଦ୍ର, ଅତନ୍ଦ୍ରରେ ! ପ୍ୟାକେଟ୍ ପ୍ୟାକେଟ୍ ସିଗାରେଟ୍‌ର ନିକୋଟିନ୍ ଗରଳ ପିଇ ନିଜ ସୀମିତ ଜୀବନରୁ ଆୟୁ କ୍ଷୟ କରି କି ଲାଭ ପାଉଛୁ ? ଫାଙ୍କା ଆକାଶକୁ ଘଣ୍ଟା ଘଣ୍ଟା ଚାହିଁ ରହି ଜୀବନର କେଉଁ ସଂଜ୍ଞା ନିରୂପଣ କରିବାକୁ ବ୍ୟାକୁଳ ହଉଚୁ ? ଜୀବନ କ'ଣ ସୂତ୍ରାବଦ୍ଧ ଗଣିତ ଯେ ଯୋଗ-ବିଯୋଗର ବନ୍ଧନୀ ଭିତରେ ଅକାଟ୍ୟ ଉତ୍ତରକୁ ବାନ୍ଧି ରଖିବୁ ?

କାହିଁକି ଆକାଶକୁ ହାତ ବଢ଼ାଇବାକୁ ପ୍ରୟାସ କରୁରେ ଅତନ୍ଦ୍ର ! ରକେଟ୍ ପରି ତୋ ହାତ ଆକାଶକୁ ଲମ୍ବିଯିବ ନା କୋଉ ରୂପକଥାର ପ୍ରହେଳି ପରି ଆକାଶ ନଇଁ ଆସିବ ତୋ ହାତ ପାହାନ୍ତାକୁ ।

ସେଇଠି ତ ତୋ ଦୁଃଖର ଶେଷ ଓ ଆରମ୍ଭ !

ତୁ ପ୍ରଶସ୍ତ ଆକାଶରେ କେଉଁ ଏକ ଅନାମିକା ନକ୍ଷତ୍ରରେ । ତୋର ସ୍ଥିତି କାହିଁ ? କାହିଁ ତୋର ସ୍ୱାତନ୍ତ୍ର୍ୟ ? କାହିଁ ତୋର ସ୍ୱୀକୃତି ?

ତୁ କ୍ରିକେଟିୟର୍‌ଟିଏ ହେଲୁନି । ଅସଂଖ୍ୟ ଦର୍ଶକଙ୍କ କରତାଳିର ସ୍ୱାଗତ ଭିତରେ ବ୍ୟାଟ୍ ଧରି ଫିଲ୍‌ଡକୁ ପଶିଥାନ୍ତୁ ହୀରୋ ପରି । କେତେ ଯେ ତରୁଣୀଙ୍କ ହୃଦୟରେ ନିଆଁ ଜାଳି ଦେଇଥା'ନ୍ତୁ । ଖେଳସାରି ମୋଟାଅଙ୍କର ଚେକ୍ ପାଇଥା'ନ୍ତୁ ଆଉ ବଡ଼ ବଡ଼ କମ୍ପାନୀର ଭିଡ଼ ଜମିଥା'ନ୍ତା ତୋ' ଦୁଆରରେ ବିଜ୍ଞାପନପାଇଁ । ନଚେତ୍ ତୁ ହେଲୁନି ଫିଲ୍ମ ଷ୍ଟାର୍‌ଟିଏ । ଗାଁ, ସହର, ଗଳିକନ୍ଦି, ଢେଙ୍କିଶାଳ, ଢେଙ୍କାନାଳ ସବୁଠି ତୋ ଚିତ୍ରାଙ୍କିତ ପୋଷ୍ଟର ଝୁଲିଥାନ୍ତା । ତୋ ରୋମାନ୍‌ସକୁ ନେଇ ତର୍କବିତର୍କ ଚାଲିଥାନ୍ତା, ତୋ ହୀରୋତ୍ୱ ପାଲଟି ଯାଇଥାନ୍ତା କାବ୍ୟ-କବିତାର ମିଥ୍ ।

ଅନ୍ତତଃ ତୁ ତ ହୋଇପାରିଥା'ନ୍ତୁ ଶାସକଦଳର ନେତାଟିଏ ବା କୋଉ ଦପ୍ତରର ପଦସ୍ଥ ଅଫିସର୍‌ଟିଏ । ଟାଣୁଆ ନେତା ବୋଲି ବହଳ ଫୁଲହାରରେ ତୋ ଗ୍ରୀବା ନଇଁ ଯାଇଥା'ନ୍ତା, ତୋ ବିବୃତି ମାଡ଼ି ବସିଥାନ୍ତା ସମ୍ଭ୍ରାନ୍ତ ସମ୍ବାଦପତ୍ରର ପ୍ରଥମ ପୃଷ୍ଠା । ଆଉ ଅଫିସର ହୋଇଥିଲେ, ନାଲି ଆଖି, ନାଲିଫିତା, କାର, କ୍ୱାର୍ଟର୍ସ, ଭାଷ୍ୟକାର, ଚାଟୁକାର ଆଦିର ଚୌହଦି ଭିତରେ ନିଜକୁ ଜାହିର କରିଥା'ନ୍ତୁ ।

ଅତନ୍ଦ୍ର, ତୁ ସେସବୁ କିଛି ହୋଇପାରିଲୁ ନାହିଁରେ । କୋଉ ଅନାମଧେୟ ଦପ୍ତରର କିରାଣିଟିଏ ହେଲୁ ଯେ କିଏ ତୋତେ ଚିହ୍ନିବ !

ତୋ ସଙ୍ଗରେ ପଢୁଥିବା ବିକାଶ ମହାପାତ୍ର । 'ଏ ପ୍ଲସ୍ ବି'ର ହୋଲ୍ ସ୍କୋୟାର କହିପାରୁ ନ ଥିଲା କି ସେକ୍ସପିୟର୍ ବନାନ୍ କରିପାରୁ ନ ଥିଲା । ସେ ଆଜି ଏନ୍.ଏ.ସି. ଚେୟାରମ୍ୟାନ୍ । ସର୍କାରୀ ଦଳର ଟାଣୁଆ ଯୁବନେତା । ତୋ ହାକିମର ହାକିମ । ଦୁଇଟି ଫାର୍ମର ମାଲିକ ! କଟକରେ ହୋଟେଲ ତୋଳୁଚି – ଫାଇଭ୍ ଷ୍ଟାର୍ ହୋଟେଲ । ଆଉ ସମରେନ୍ଦ୍ର ମଲ୍ଲିକ ? କୌଣସି ପ୍ରକାରେ ବି.ଏ. ଟା ପାସ୍ କଲା ବିନା ଅନର୍ସରେ । ଏବେ ସପ୍ଲାଇ ଅଫିସର୍ ! ବର୍ଷଟିଏ ଭିତରେ ବେଶ୍ ଫୁଲିଗଲାଣି । ଭୁବନେଶ୍ୱରରେ ପ୍ଲଟ୍ କିଣିଚି । ଥରେ ଦେଖା ହୋଇଥିଲା ବାଦାମବାଡ଼ିରେ । ସୋଫିଷ୍ଟିକେଟେଡ଼୍ ଲାଗୁଥିଲା । କୋଉ ବିଜିନେସ୍‌ମ୍ୟାନର ଝିଅକୁ ବାହା ହେଇଚି । ବହୁତ ଯୌତୁକ ପାଇଚି । ପାଞ୍ଚବର୍ଷ ଭିତରେ ମାରୁତି ଚଢ଼ିବ ବୋଲି ତା'ର ଯୋଜନା । ସବୁଠୁ ଲକିଏଷ୍ଟ୍ କିନ୍ତୁ ସୂର୍ଯ୍ୟ ତ୍ରିପାଠୀ । ପ୍ରଥମ ଚାନ୍ସରେ ଆଇ.ଏ.ଏସ୍. । ଅବଶ୍ୟ ସିଏ ଖରାପ ଷ୍ଟୁଡେଣ୍ଟ ନ ଥିଲା । ହେଲେ କୋଉ ଏତେ ଏକ୍ସ୍ଟ୍ରାଅର୍ଡ଼ିନାରୀ ଥିଲା ଯେ ?

ତୁ କିନ୍ତୁ ହାରିଗଲୁ ଯେ ଅତନ୍ଦ୍ର ।

ବିକାଶ ମହାପାତ୍ର ପାଞ୍ଚବର୍ଷ ବଡ଼ନେତାଙ୍କର ବୋଳଚା ବୋହିଲା । ମାଇକ୍ ଆଗରେ ତଣ୍ଟି ଫଟାଇ 'ଜିନ୍ଦାବାଦ' ସ୍ଲୋଗାନ୍ ଦେଲା । ସମରେନ୍ଦ୍ର ମଲ୍ଲିକ ତା' ବାପାଙ୍କର କିଳାପୋଡେଇ ଅର୍ଥ ଲାଞ୍ଚ ଦେଲା । ମନ୍ତ୍ରୀଙ୍କ କ୍ୱାର୍ଟର୍ସରେ ଧାରଣା ଦେଲା ମାସ ମାସ । ସୂର୍ଯ୍ୟ ତ୍ରିପାଠୀ ଦିଲ୍ଲୀ ଗଲା । କୋଚିଂ ନେଲା । ରାଜ୍ୟ ରାଜଧାନୀର ନାଁ ଘୋଷିଲା ।

ତୁ ଆଦର୍ଶକୁ ଜଗିଲୁ । ତୋ ବାପାଙ୍କର କିଳାପୋଡେଇ ଅର୍ଥ ନ ଥିଲା । ତୁ ତୋର ନଲେଜ୍‌କୁ ଇନ୍‌ଫରମେଶନ୍‌ରେ ପରିଣତ କରିବାକୁ ପସନ୍ଦ କଲୁନି ।

ତେଣୁ ତୁ ଗ୍ରୀନ୍ ମଡେଲ୍ ହୀରୋ ସାଇକେଲ୍ ଚଢ଼ି ଅଫିସ୍ ଯାଉଚୁ । ବଡ଼ ହାକିମଙ୍କ ନାଲି ଆଖିକୁ ଆଦରି ନେଉଚୁ । ଅଫିସ୍‌ରେ ଭିଡ଼ ଜମଉଥିବା ବାବୁମାନଙ୍କର ବିରକ୍ତି ଓ କଟୂକ୍ତିକୁ ସହି ଯାଉଚୁ ନୀରବରେ ।

ତୋ ଡିଗ୍ରୀର ମୂଲ୍ୟ କେହି ବୁଝିଲେ ନାହିଁରେ ଅତନ୍ଦ୍ର । ୱେଷ୍ଟ ପେପର୍ ବକ୍ସକୁ ସେସବୁ ଅଦରକାରୀ କାଗଜକୁ ଫିଙ୍ଗିଦେଉନୁ ? ଆରିଷ୍ଟୋଟଲ, ମାର୍କ୍ସ, ଏଲିଅଟ, ସାର୍ତ୍ତ କାହାରି ଦର୍ଶନ ତୋର କିଛି କାମରେ ଲାଗିଲା ନାହିଁରେ । ର୍‍ୟାକ୍ ଉପରେ ସଯତ୍ନରେ ସାଇତା ସେଇ ମୂଲ୍ୟହୀନ ବହି ସବୁକୁ ଦେଇଦଉନୁ କୋଉ ଚେନାଚୂରବାଲାକୁ ?

କୌଣସି ସୁନ୍ଦରୀ ଝିଅକୁ ଦେଖିଲେ ତୁ ଆଜିକାଲି ଚିଡ଼ିଉଠୁଚୁ ନା ? କାହିଁକି ? ସବୁ ଝିଅ କ'ଣ ଲରା ସାମନ୍ତରାୟ ହୋଇଚନ୍ତି ?

ଲରାର ଫଟୋ ଏବେ ବି ଶୋଭା ପାଉଚି ତୋ ଆଲବମ୍‌ରେ । ପି.ଜି. ପରେ ତୁ ଯୋଉ କେତେଦିନ ଜଗତ୍‌ସିଂହପୁରର ଏକ ଘରୋଇ କଲେଜରେ ଅଧ୍ୟାପନା କରୁଥିଲୁ, ସେଇଠି ପଢୁଥିଲା ଲରା ସାମନ୍ତରାୟ । ତୁ ମାର୍କ୍ସ ପଢ଼ାଇଲାବେଳେ ବିଦଗ୍ଧ ହୋଇ ଚାହୁଁଥିଲା । ମିଛେ ମିଛେ ତୋତେ ବହି ମାଗୁଥିଲା । ନୋଟ୍ ନବାପାଇଁ ଅଳି କରୁଥିଲା । ଅଯଥା ପ୍ରଶଂସା କରୁଥିଲା । ଖାସ୍ ତୋରି ପାଇଁ ନିତି ନିତି ଶାଢ଼ି ବଦଳେଇ କଲେଜ ଆସୁଥିଲା । ତୋ ସହ ଘଣ୍ଟା ଘଣ୍ଟା ଧରି ଅର୍ଥହୀନ ଗପ କରୁଥିଲା କଲେଜ ଲାଇବ୍ରେରୀର ନିଛାଟିଆ ବାରଣ୍ଡାରେ । ତା'ପରେ ବେଶ୍ ସମ୍ପର୍କ ଜମି ଯାଇଥିଲା ତା' ସାଥିରେ । ସେଇ କଲେଜର ଗଭର୍ଣ୍ଣିଙ୍ଗ୍‌ବଡି ସେକ୍ରେଟାରୀଙ୍କ ଝିଅ ସେ । ଖୁବ୍ ସୁନ୍ଦରୀ ।

ଅତନ୍ଦ୍ର, ତୁ କ'ଣ ଝିଅମାନଙ୍କ ମନସ୍ତତ୍ତ୍ୱ ବୁଝିପାରିଲୁ ନାହିଁ ? ମେଟିରିଆଲିଷ୍ଟ, ଇଗୋସେଣ୍ଟ୍ରିକ୍ । ଲରା ଭାବିଥିଲା । ତା' ବାପାର କ'ଣ ପଇସା ନ ଥିଲା ଅଫିସର୍ ବର କିଣିବାପାଇଁ ଯେ ସେ ତୋତେ ଆଦରି ନେଇଥା'ନ୍ତା ?

ତୁ କିନ୍ତୁ ନିର୍ବୋଧଟାଏରେ ଅତନ୍ଦ୍ର । ପ୍ଲୁଟୋନିକ୍ ଲଭ୍‌ର କ'ଣ କିଛି ଅର୍ଥ ଅଛି ଆଜିକାଲି ? ଆଦର୍ଶର ନିକିତିରେ ପ୍ରେମକୁ ତଉଲୁଥିବାରେ ଠକିଗଲୁ । ଲରାର ସୁସଜ୍ଜିତ ପଦ୍ମବନ ବିଧ୍ୱଂସୀ ଦେଲୁନି । ଲୁଟି ନେଲୁନି ତା'ର ବାଉନୁ ଭଣ୍ଡାର ? କିଏ ତୋତେ ମନା କରିଥିଲା ? ନା, ତୁ କିନ୍ତୁ ପାରିଲୁନି । ନିମ୍ନ ମଧ୍ୟବିତ୍ତ ଶୃଙ୍ଖଳାର ପଘା ଛିଡ଼େଇ ପାରିଲୁନି ।

ଏବେ ତୁ କ'ଣ କରିବୁରେ ଅତନ୍ଦ୍ର ? କ୍ରମାଗତ ଦୀର୍ଘଶ୍ୱାସମାନଙ୍କୁ ଚାପିରଖି ବଞ୍ଚିପାରିବୁ ତ ?

ଆତ୍ମହତ୍ୟା କରିବୁ ?

କି ଲାଭ ପାଇବୁ ଆତ୍ମହତ୍ୟା କରି ? ଆକ୍ସିଡେଣ୍ଟର ରିକୋମିଆରେ, ରକ୍ତଚାପରେ ଦୈନିକ ମରୁଛନ୍ତି ଅସଂଖ୍ୟ ଲୋକ । ସେମିତି ତୁ ବି ମରିଯିବୁ । ଗଛରେ ଫୁଲଫୁଟିବା ବନ୍ଦ ହୋଇଯିବ ନା ପ୍ରସୂତି ଭବନ ଫାଙ୍କା ପଡ଼ିବ ? ତୋ ଲାଗି ଶୋକସଭା ହବ ନା ତୋ ମୃତ୍ୟୁର ବିବରଣୀ ଛପାଯିବ କୋଉ ଖବରକାଗଜର ନିଷ୍ଠୁର ପୃଷ୍ଠାରେ ।

କାମନାର ବିନାଶ ଲାଗି ବୁଦ୍ଧ ହୋଇଯିବୁ କିରେ ?

ହୁଃ....ବୁଦ୍ଧ ହେଲେ ନିରଞ୍ଜନା ତଟରେ ତୋର ସମସ୍ତ ଜୀବନ ବିତିଯିବ ସିନା କୋଉ ଅଶୋକ ଆଉ ଜନ୍ମ ହବନି ତୋ ବାଣୀ ପ୍ରଚାର କରିବାପାଇଁ । ମେଟେରିଆଲିଜିମ୍‌ର ଧାବମାନ ଘୋଟକର ଦୃଷ୍ଟି ଉହାଡ଼ରେ ତୁ ରହିଯିବୁ ଉଇହୁଙ୍କାଟିଏ ପରି ସବୁଦିନ ପାଇଁ ।

ଅତନ୍ଦ୍ର, ତୁ ଗୋଟେ କାମ କରିପାରିବୁ ?

ଅଫିସ୍ ତହବିଲ୍‌ରୁ ଅର୍ଥ ତୋସରପାତ କରି ସ୍ପେଶାଲ କ୍ଲାସ କଣ୍ଟ୍ରାକ୍ଟରଟିଏ ହୋଇପାରିବୁ ? ବର୍ଷଟିଏ ଭିତରେ ତୋର ଅର୍ଥ ଦ୍ୱିଗୁଣିତ ହୋଇଯିବ ? ରାଜଧାନୀରେ ପେଲେସିଆଲ୍ ବିଲ୍‌ଡ଼ିଂ କରିପାରିବୁ । କାର୍ ଚଢ଼ି ପାରିବୁ । ମନ୍ତ୍ରୀ, ଏମ୍.ଏଲ୍.ଏ.ମାନେ ଚାନ୍ଦାପାଇଁ ତୋ ପଛରେ ଦୌଡ଼ିବେ । ଇଣ୍ଡଷ୍ଟ୍ରିଟାଏ ବି କରିପାରିବୁ ବର୍ଷ କେତୋଟି ଭିତରେ । ଚାକିରିରୁ ସସ୍‌ପେଣ୍ଡ୍ ହେବାପରେ ଯୋଉ ହାଇକୋର୍ଟ ଚାଲିଥିବ, ସେଥିରେ ତୁ ନିଶ୍ଚୟ ଜିତିବୁ । ପୁନର୍ନିଯୁକ୍ତିର ପତ୍ର ପାଇବୁ । ନିଜର ସାଧୁତା ଜାହିର୍ କରି ନିଯୁକ୍ତିକୁ ଅଗ୍ରାହ୍ୟ କରିବୁ । ସମାଜରେ ତୋର ପ୍ରତିପତ୍ତି ବଢ଼ିଯିବ । ତୋତେ ଆଉ କେହି ନାଲି ଆଖି ଦେଖେଇ ପାରିବେନିରେ । ବରଂ ତୋ ନିର୍ଦ୍ଦେଶରେ ପରିଚାଳିତ ହେବେ ଅଗଣିତ ବେତନଭୋଗୀ ଶିକ୍ଷିତ କର୍ମଚାରୀ । ତୁ ହେବୁ ଚାମ୍ବର ଅଫ୍ କମର୍ସର ସକ୍ରିୟ ସଦସ୍ୟ । ଭୋଟ୍ ଭିକ୍ଷାର କାଙ୍ଗୁଛତାଠାରୁ ଦୂରରେ ରହି ବି ତୁ ଚିପିବୁ ରାଜନୀତି କଳର ବଟନ୍ ।

ପାରିବୁନି ?

ତା'ହେଲେ ତୋ ଅଫିସ୍‌ର ବଡ଼ ହାକିମ ପ୍ୟାରୀବାବୁଙ୍କ କଲେଜପଢୁଆ ଝିଅକୁ ସାଙ୍ଗରେ ଧରି କୁଆଡ଼େ ଗାଏବ୍ ହୋଇଯାଉନୁ । (ସତ କହିଲୁ କାଶତଣ୍ଡୀ ଫୁଲବନ ପରି ତୋଫାଦେହୀ ପ୍ୟାରୀବାବୁଙ୍କ ଝିଅକୁ ଦେଖି ତୁ କ'ଣ କେବେ ମାନସିକ ମୈଥୁନରେ ଲିପ୍ତ ହୋଇନୁ ?) ସହରରେ ଚହଳ ପଡ଼ିଯିବ । ଆଉ ଭକୁଆ ସାମ୍ବାଦିକମାନେ ଖବରକାଗଜର 'ଆଶ୍ଚର୍ଯ୍ୟ ସ୍ତମ୍ଭରେ' ସମ୍ବାଦଟି ଛାପିଦେବେ । ତୋର ସାଙ୍ଗସାଥୀମାନେ ସମ୍ବାଦଟି ପଢ଼ି ତୋର ଦୁଃସାହସିକତାକୁ ତାରିଫ୍ କରିବେ ।

ଯଦି ତା' ବି କରି ନ ପାରିବୁ, ଯୋଉ ସମୟରେ ତୁ ପ୍ରତିଦିନ ଅଫିସ୍ ଯାଉ, ଠିକ୍ ସେତିକିବେଳେ ଉଲଗ୍ନ ହୋଇ ରାଜରାସ୍ତାରେ ଦୌଡ଼ି ପାରିବୁ ??

ଏ ସମାଜ ତୋତେ ଚିହ୍ନିବ, ସ୍ୱୀକୃତି ଦବ ।



# ଗୋଟିଏ ରୋମାଣ୍ଟିକ୍ ଦୁର୍ଘଟଣା

ରେଣୁଦିଦୀ, କୌଣସି ଗ୍ରାମ୍ୟବ୍ୟାଙ୍କ୍‌ରେ କିରାଣି ଥିବା ତା' ଛାତ୍ର ବୟସର ଜନୈକ ସୁଶ୍ରୀ ଯୁବକ ଐଶ୍ୱର୍ଯ୍ୟ ମହାନ୍ତି ସହ ଅକସ୍ମାତ୍ ଅନ୍ତର୍ଦ୍ଧାନ ହୋଇଗଲା ତ କ'ଣ ବେଦ ଅଶୁଦ୍ଧ ହୋଇଗଲା ହୋ ନଗ୍ରଜନେ, ତମେ ଏମିତି ଅକଥା ଓକାଲୁଚ ରେଣୁଦିଦୀ ବିରୋଧରେ ?

ରେଣୁଦିଦୀକି ତମେ ଚିହ୍ନିଚ ? କେବେ ବୁଝିବାକୁ ଚେଷ୍ଟା କରିଚ ତା' ବିଷୟରେ ?

ତମେ ରେଣୁଦିଦୀକି ହୁଏତ ଚିହ୍ନିଚ ତମ ସହରର ଗୋଟିଏ ହାଇସ୍କୁଲରେ ଚାକିରି କରୁଥିବା ମାଷ୍ଟ୍ରାଣୀ ଭାବରେ, ଯିଏ ପ୍ରତିଦିନ ସକାଳୁ ଉଠି ତା' ଛୋଟ କ୍ୱାର୍ଟର୍ସଟିରେ ଏପଟ ସେପଟ ହୋଇ ଦାନ୍ତ ବ୍ରସ୍ କରେ, ଷ୍ଟୋଭ୍‌ରେ ଚା' ବନେଇ ପିଏ ଓ ତା'ପରେ ଅଧଘଣ୍ଟେ କାଳ ବାଥ୍‌ରୁମ୍ ଭିତରେ ପଶି ସାବୁନ୍‌ରେ ଦେହମାଜି ଚକ୍ ଚକ୍ କରି ବାହାରକୁ ବାହାରେ ; ତା'ପରେ ଡ୍ରେସିଂ ଟେବୁଲ ଆଗରେ ଦୀର୍ଘ ସମୟ ଠିଆ ହୋଇ ମୁଣ୍ଡ କୁଣ୍ଡାଏ, ଓଠରେ ଲିପ୍‌ଷ୍ଟିକ୍ ଲଗାଏ, ମୁହଁରେ କିଛି ପ୍ରସାଧନ ବୋଳିହୁଏ, ପୂର୍ବ ରାତିରେ ଆଇରନ୍ କରି ରଖିଥିବା ଶାଢ଼ିମାନଙ୍କ ଭିତରୁ ଗୋଟିଏ ଚଏସ୍ କରି ପିନ୍ଧେ ଓ ତା'ପରେ ଯେକୌଣସି କର୍ମଜୀବୀ ମହିଳା ପରି କାନ୍ଧରେ ଭେନିଟି ବ୍ୟାଗ୍ ଝୁଲାଇ ସ୍କୁଲକୁ ଯାଏ ।

ତମେ ବି ଆହୁରି ଦେଖିଥିବ ରେଣୁଦିଦୀକି କୌଣସି ସାହିତ୍ୟସଭାରେ ସେ ରୋମାଣ୍ଟିକ୍ କବିତା ପଢ଼ିଲାବେଳେ ବା ତମ ସହରର ସୌଖୀନ ନାଟ୍ୟସଂସ୍ଥା ତରଫରୁ ଆୟୋଜିତ କୌଣସି ଉଭଟ ନାଟକରେ ନାୟିକା ଭୂମିକାରେ ଠିଆ ହେଲାବେଳେ ବା କୌଣସି ସଙ୍ଗୀତ ଆସରରେ ତା' କଣ୍ଠରୁ ସ୍ନିଗ୍ଧ ରାଗିଣୀର ବର୍ଷା ଝରି ପଡୁଥିଲାବେଳେ ।

ହୁଏତ ତମେ ଆହୁରି ବି ଜାଣିଥିବ ଯେ, ରେଣୁଦିଦୀର ସେଇ ଛୋଟ କ୍ୱାର୍ଟର୍ସଟିରେ ଅନେକ ଲୋକଙ୍କର ପାଦ ପଡ଼େ । ଫ୍ରେଞ୍ଚକଟ୍ ଦାଢ଼ିରଖି ନିଜକୁ କବି ମଣୁଥିବା କୌଣସି କୌଣସି ଯୁବକ ରେଣୁଦିଦୀଙ୍କ ଡ୍ରଇଂରୁମ୍‌ରେ ବସି କାଫ୍‌କା, କାମ୍ୟୁ ବା ସାର୍ତ୍ତ ଆଦିଙ୍କ ବିଷୟରେ ଲମ୍ବା ଭାଷଣ ମାରି ଫେରନ୍ତି ଚା' ପିଇ । ଦୁଇପୃଷ୍ଠିଆ କୌଣସି ସାହିତ୍ୟ ପତ୍ରିକାର ସମ୍ପାଦକ ବି ଯା'ନ୍ତି ରେଣୁଦିଦୀର କ୍ୱାର୍ଟର୍ସକୁ କବିତାଟିଏ ମାଗିବାପାଇଁ । କେତେବେଳେ ଡ୍ରାମାବାଲା ତ କେତେବେଳେ ଗୀତବାଲା, କେତେବେଳେ ପୁଣି ସହରର ମାନ୍ୟଗଣ୍ୟ ବ୍ୟକ୍ତିଗଣ- ଏନ୍.ଏ.ସି. ଚେୟାରମ୍ୟାନ୍‌ଠାରୁ ଆରମ୍ଭ କରି

ସ୍ଥାନୀୟ ଡାକ୍ତର, ସ୍ଥାନୀୟ କଲେଜର ବିଜ୍ଞ ସାହିତ୍ୟ ଅଧ୍ୟାପକ ଓ କୌଣସି ସମ୍ଭ୍ରାନ୍ତ ଦୈନିକ ପତ୍ରର ସାମ୍ବାଦିକଙ୍କ ପର୍ଯ୍ୟନ୍ତ । କିଏ ଥଣ୍ଡା ବା ଉଷ୍ମ ପାନୀୟ ବା କିଏ ସ୍ନାକ୍ସରେ ଆପ୍ୟାୟିତ ହୋଇ ଫେରନ୍ତି ରେଣୁଦିଦୀର କ୍ୱାର୍ଟର୍ସରୁ ।

ବାସ୍ ଏତିକି ତ ତମେ ଜାଣିଚ ରେଣୁଦିଦୀ ସମ୍ପର୍କରେ । ତା'ଛଡ଼ା ରେଣୁଦିଦୀ ବିଷୟରେ ଆଉ କିଛି ଜାଣିଛ ବୋଲି ତମେ ଛାତିରେ ହାତଦେଇ କହିପାରିବ ହୋ ନଗ୍ରଜନେ !

ଚାକିରି, ଡ୍ରାମା, ଗୀତ, କବିତା, ଲିପ୍‌ଷ୍ଟିକ୍ ମଖା ଓଠ, ପ୍ରସାଧନବୋଳା ମୁହଁ ଏବଂ ଏରିଷ୍ଟୋକ୍ରେଟିକ୍ ଶାଢ଼ିପିନ୍ଧାର ( ଅନ୍ତ)ରାଳରେ ଗୋଟିଏ ରେଣୁଦିଦୀ ଅଛି, ଯିଏ ଯାନ୍ତ୍ରିକ ତ୍ରୁଟି କବଳିତ କୌଣସି ଷ୍ଟ୍ରୀଟ୍‌ଲାଇଟ୍ ପରି ଜଳେ, ଲିଭେ ଓ ପୁଣି ଜଳେ...; ସେ ରେଣୁଦିଦୀକି ତମେ କେବେ ଚିହ୍ନିଚ ?

ରାତିର ବୟସ ବଢ଼ିବାପରେ ଯେତେବେଳେ ତମର ଏଇ ପ୍ରିୟ ସହର କୁମ୍ଭକର୍ଣ୍ଣ ପରି ଶୋଇଯାଏ ନିଘୋଡ଼ ନିଦରେ, ସେତେବେଳେ ରେଣୁଦିଦୀ ତା' ଘରର କବାଟ ଖୋଲି ବାହାରକୁ ଆସେ, ନିଦୁଆ ଆଖିରେ ଆକାଶକୁ ଚାହେଁ, ତାରାମାନଙ୍କୁ ଗଣିବାର ଅପଚେଷ୍ଟା କରେ, ଆଉ ଜହ୍ନ ଦେଖି ନିଜ ଭିତରେ ଗୁଣୁଗୁଣୁ ହଉ ହଉ ହଠାତ୍ ନୀରବ ହୋଇଯାଏ ଏବଂ ଘରର କବାଟ ଝର୍କା ବନ୍ଦ କରି ଲୋଟିପଡ଼େ ବିଛଣାରେ ଓ କଇଁ କଇଁ ହୋଇ କାନ୍ଦେ ଫ୍ରକ୍‌ପିନ୍ଧା ଝିଅଟେ ପରି । ଆଉ ରେଣୁଦିଦୀର ସବୁଠୁ ବେଶି ଡର ବର୍ଷାଋତୁକୁ । ଯେତେବେଳେ ଶ୍ରାବଣ, ମେଘର ଘୁଙ୍ଗୁର ବାନ୍ଧି ନାଚେ, ପବନ ଗୀତ ଗାଏ ଉଚ୍ଚାଟ କଣ୍ଠରେ, ରେଣୁଦିଦୀର ଆପାଦମସ୍ତକ ପାଲଟିଯାଏ କଦମ୍ବର ଫୁଲଟିଏ । ଛାତି ଧୁଲୁକିଉଠେ ଘଡ଼ଘଡ଼ି ଶବ୍ଦରେ । ରେଣୁଦିଦୀ ଖାଲି ଜଳିଯାଏ ସଳିତାଟିଏ ପରି ଓ ଉଷ୍ମ ମହମ ପରି ବିଗଳିତ ହୋଇଯାଏ ତା'ର ଦେହ ଓ ମନ ।

ତିନିକୋଠରି ବିଶିଷ୍ଟ ଏକ କ୍ୱାର୍ଟର୍ସରେ ଏକା ଏକା ରହି ଆସୁଥିବା ଗୋଟେ ଝିଅର ନାଆଁ ରେଣୁଦିଦୀ । ତମେ ତାକୁ ସତରେ କ'ଣ ଚିହ୍ନିଚ ? କେବେ ବୁଝିଛ ରେଣୁଦିଦୀ କାହିଁକି ଏକା ରହେ ? କାହିଁକି ସେ ବାହା ହୋଇନି ଏଯାଏ ?

ରେଣୁଦିଦୀ କ'ଣ ଅସୁନ୍ଦରୀ ଯେ ସିଲେକ୍‌ସନ୍‌ରେ କାଟ୍ ଖାଇଗଲା ? ହାୟ...ପଇଁତ୍ରିଶ ବର୍ଷ ବୟସରେ, ଯେକୌଣସି ଦକ୍ଷିଣ ଭାରତୀୟ ଚିତ୍ରାଭିନେତ୍ରୀ ପରି ସୁନ୍ଦରୀ ରେଣୁଦିଦୀକି କ'ଣ ପାଇଁ ବର ମିଳିଲାନି, ହୋ ନଗ୍ରଜନେ, ଜାଣିଚ ? ତମ ଅଭିଜାତ ସହରରେ ସ୍କୁଟର, ଫ୍ରିଜ୍ ଓ ଟି.ଭି. ସହ ତଉଲି ହବାର ସମ୍ବଳ ନ ଥିଲା ସ୍ୱଳ୍ପବେତନଭୋଗୀ ମାଷ୍ଟ୍ରାଣୀ ରେଣୁଦିଦୀର । ତା' ବାପା ନା ଅଫିସର ନା କଣ୍ଟ୍ରାକ୍ଟର ! ତା' ଭାଇ ନା ଡାକ୍ତର ନା ଇଞ୍ଜିନିୟର !

ରେଣୁଦିଦୀର ବାପା ଗୋଟିଏ ବଳଦରେ ବଦଳି କରି ଦେଢ଼ଏକର ଜମି ଚଷୁଥିବା ନିପଟ ଚାଷୀଟିଏ ! ରେଣୁଦିଦୀକି ପଢ଼େଇବାର ତ କ୍ଷମତା ନ ଥିଲା ତା'ର, ସେ କୋଉଠି କୋଉ ବର ବା ଖୋଜିଥା'ନ୍ତା ? ରେଣୁଦିଦୀ ଆଇ.ଏ. ପାସ୍ କରିଥିଲା ତା' ମାମୁଙ୍କ ପାଖରେ ରହି । ଆଇ.ଏ.ରେ ଫାଷ୍ଟ କ୍ଲାସ୍ ପାଇଲେ କ'ଣ ହେବ, ତା'ର ବି.ଏ. ପଢ଼ିବା ଆଉ ସମ୍ଭବ ହେଲାନି । ବିଚରା କିରାଣି ମାମୁ କେତେ ବା ଆର୍ଥିକ ସାହାଯ୍ୟ କରିପାରିଥା'ନ୍ତା । ଆଇ.ଏ. ପାସ୍ କରିବାର ତିନି ବର୍ଷ ପରେ ପ୍ରାଇଭେଟ୍ ପରୀକ୍ଷା ଦେଇ ବି.ଏ. ଓ ତା'ପରେ କରେସ୍‌ପଣ୍ଡେନ୍‌ସ କୋର୍ସରେ ବି.ଏଡ୍. ।

ବି.ଏ., ବି.ଏଡ୍. ଡିଗ୍ରୀ ଥିଲେ କୋଉଠି ବା ଚାକିରି ମିଳିଯାଇଥା'ନ୍ତା ରେଣୁଦିଦୀକି ? ଗାଁର ଲେଖାଯୋଖା କକା ପୁରୁଖା କଂଗ୍ରେସନେତା ଅନାଦି ମହାପାତ୍ରଙ୍କ ସହ କେତେଥର ସେ ନ ଦୌଡ଼ିଛି ମନ୍ତ୍ରୀ, ଏମ୍.ଏଲ୍.ଏ.ଙ୍କ କ୍ୱାର୍ଟର୍ସକୁ ? ଝିଅ ହୋଇ ବି କେତେ ଲୋକଙ୍କୁ କେତେ ନେହୁରା ନ ହୋଇଛି ? ଯାହାହେଉ, ଶେଷରେ ମାଷ୍ଟ୍ରାଣୀ ହେବାର ସୌଭାଗ୍ୟ ହେଲା ରେଣୁଦିଦୀର !

ରେଣୁଦିଦୀର ଦରମା ଟଙ୍କାରେ ଘରର ଋଣ ଶୁଝାହେଲା, ସାନଭାଇକୁ ପାଠ ପଢ଼ାଗଲା, କିନ୍ତୁ ଭାଇ ବା କୋଉ ମଣିଷ ହେଲା ! ପାଞ୍ଚଥରରେ ମେଟ୍ରିକ୍ ଡେଇଁ ପାରିଲାନି । ଦିନେ ରାଗି ଘରୁ ପଳେଇଲା କଲିକତା । କଲିକତାର ଆଖପାଖରେ କୋଉ ଚଟକଳରେ ସେ କାମ କଲା । ମଝିରେ ମଝିରେ ଚିଠି ଓ ଟଙ୍କା ପଠାଉଥିଲା ଘର ଠିକଣାରେ । ବାପା କିନ୍ତୁ ସ୍ୱର୍ଗତ ହେବା ପରଠାରୁ ତା'ର ଆଉ ଘର ସହ ସମ୍ପର୍କ ନାହିଁ । କଲିକତାରେ କୋଉ ବଙ୍ଗାଳୀ ଝିଅକୁ ବାହାହେଇ ସେ ରହିଯାଇଚି ସେଇଠି ।

ଏକା ଏକା ଚାଲିବାକୁ ପ୍ରଥମେ ପ୍ରଥମେ ଅଡୁଆ ଲାଗୁଥିଲା ରେଣୁଦିଦୀକି । ତା'ପରେ ନିଃସଙ୍ଗ ନିଃସହାୟତା ଭିତରେ ବଞ୍ଚିବା ଅଭ୍ୟାସରେ ପଡ଼ିଗଲା ରେଣୁଦିଦୀର । କିନ୍ତୁ ଆମ ସମାଜରେ ଗୋଟେ ଝିଅ ଏକା ଏକା ବଞ୍ଚିବା କେଡ଼େ ଦୁର୍ବିଷହ, ତାହା କ'ଣ ତୁମ୍ଭଙ୍କୁ ଅଗୋଚର ହୋ ନଗ୍ରଜନେ ! ଏଠି କ'ଣ ମାଂସଲୋଭୀ କୁକୁରଙ୍କ ସଂଖ୍ୟା କମ୍ !

ମିଛ ନ ମଣିବ ହୋ ନଗ୍ରଜନେ, ତୁମ୍ଭ ସଭ୍ୟ ସହରର ପହିଲା ନମ୍ବର ନାଗରିକ ଅନତିବୟସ୍କ ଏନ୍.ଏ.ସି. ଚେୟାରମ୍ୟାନ ଏକଦା ରେଣୁଦିଦୀଙ୍କି ଏକାନ୍ତରେ ପାଇ ପ୍ରେମ ନିବେଦନ କରିଥିଲା । କିନ୍ତୁ ରେଣୁଦିଦୀର କ୍ରୁର କଟାକ୍ଷ ଯୋଗୁଁ ସେ ଦ୍ୱିତୀୟ ଥର ରେଣୁଦିଦୀର କ୍ୱାର୍ଟର୍ସକୁ ଯିବା ପାଇଁ ଭରସି ନ ଥିଲା ।

ରେଣୁଦିଦୀ ଚାହିଁଥିଲେ ବେଶ୍ ଉପଭୋଗ କରିପାରିଥା'ନ୍ତା ନିଜ ଜୀବନକୁ । ପୁରୀ ବା କୋଣାର୍କର କୌଣସି ଲଜ୍‌ରେ ସେ ନିର୍ଦ୍ୱନ୍ଦ୍ୱରେ ରହିପାରିଥା'ନ୍ତା, ଚେୟାରମ୍ୟାନ ମହୋଦୟଙ୍କ ସହ । ସି' ବିଚ୍‌ରେ ବୁଲିଥା'ନ୍ତା, ଜହ୍ନ ଦେଖିଥା'ନ୍ତା, ସମୁଦ୍ରର ନୀଳ

ଉଷ୍ମତାରେ ଭିଜିଥା'ନ୍ତା । ଝାଉଁବଣର ଅସ୍ପଷ୍ଟ ସଙ୍ଗୀତରେ ଆତ୍ମହରା ହୋଇଥା'ନ୍ତା । ତା'ର ଶାଢ଼ି, କସ୍‌ମେଟିକ୍‌ସ ବା ଗହଣାର ଅଭାବ ରହି ନ ଥା'ନ୍ତା । ସବୁ ପାପ ସେଇ ସମୁଦ୍ରକୁ ସଁପି ଦେଇ ସେ ଫେରିଆସିଥା'ନ୍ତା ତା'ସ୍କୁଲକୁ । ସ୍କୁଲରେ ପିଲାମାନଙ୍କର ଭଲ ଦିଦୀ ଓ ସତୀର୍ଥମାନଙ୍କର ଭଲ କଲିଗ୍ ହୋଇପାରିଥା'ନ୍ତା । 'ଆଉ କାନ୍ଥର ବି କାନ ଅଛି' ନ୍ୟାୟରେ ଯଦି କୌଣସି ଦୁଃସମ୍ବାଦ ତମ ସହରରେ ପହଞ୍ଚୁଥା'ନ୍ତା, ହେ ଭୀରୁ ନଗ୍ରଜନେ, ରେଣୁଦିଦୀର ବଳିଷ୍ଠ ସମ୍ପର୍କ ହେତୁ ତମେ ସମସ୍ତେ କାନରେ ହାତ ଦେଇ ଚୁପ୍ ରହିଥା'ନ୍ତ ।

ଆଉ ତୁମ ହାଇସ୍କୁଲର ଧର୍ମପ୍ରାଣ ପ୍ରଧାନଶିକ୍ଷକ ମହାଶୟ ଯେ ରେଣୁଦିଦୀଙ୍କ ପ୍ରତି ଲାଳାୟିତ ନ ଥିଲେ, ତା'ବି କହିହେବ ନାହିଁ । ଯୁବସୁଲଭ ଇଙ୍ଗିତ ମାଧ୍ୟମରେ ରେଣୁଦିଦୀଙ୍କି ଏକାଧିକବାର ପ୍ରଣୟଭିକ୍ଷା କରି ବି ସେ ହୋଇଥିଲେ ଭଗ୍ନ ମନୋରଥ ।

ରେଣୁଦିଦୀ ପ୍ରଧାନଶିକ୍ଷକଙ୍କ ସହ ଗୁପ୍ତପ୍ରଣୟରେ ଲିପ୍ତ ରହିଥିଲେ, ତା'ର ଛୁଟିର ଅଭାବ ହୋଇ ନ ଥା'ନ୍ତା କି ସ୍କୁଲରେ ପ୍ରତିପତ୍ତିର ଅଭାବ ହୋଇ ନ ଥା'ନ୍ତା । ନିର୍ବିଘ୍ନରେ ନିଜର ଯୌନଲାଳସା ମେଣ୍ଟେଇ ପାରିଥା'ନ୍ତା ରେଣୁଦିଦୀ । ଅନ୍ୟ ସହରରୁ ପିଲ୍ କିଣି ଓ ତାକୁ ଦୈନିକ ସେବନ କରି ସେ ନିଜର ସତୀତ୍ୱ ଜାହିର୍ କରିପାରିଥା'ନ୍ତା । ଆଉ ଦୈବାତ୍ ଏହାର ବ୍ୟତିକ୍ରମ ଘଟିଥିଲେ, ଡି.ପି.ଆଇ. ଅଫିସ ଯିବା ବାହାନାରେ ସେ କଟକ ବା ଭୁବନେଶ୍ୱରର କୌଣସି କ୍ଲିନିକ୍‌କୁ ଯାଇ, କୁକୁର ଉପରକୁ ରୁଟି ଫିଙ୍ଗିଲା ପରି ଡାକ୍ତର ହାତକୁ ଚିକ୍ ଚିକ୍ ନୋଟ କେତୋଟି ଫିଙ୍ଗି ଟେବୁଲ ଉପରେ ଚିତ୍‌ହୋଇ ଶୋଇପାରିଥା'ନ୍ତା ଓ ସତୀ ହୋଇ ଫେରିଆସିଥା'ନ୍ତା ନିଜ ସହରକୁ । ଆଉ ନଗ୍ରଜନେ ହୋ, ତୁମେ ଏସବୁ ଅଘଟଣର ବିନ୍ଦୁବିସର୍ଗ ବି ପାଇ ନ ଥା'ନ୍ତ !

ରେଣୁଦିଦୀ କିନ୍ତୁ ଜୀବନ ଚାହୁଁଥିଲା । ହେଲେ, ସେ ମହାର୍ଘ ପ୍ରତିଶ୍ରୁତି ତାକୁ କିଏ ବା ଦେଇଥା'ନ୍ତା !

ଐଶ୍ୱର୍ଯ୍ୟ ମହାନ୍ତି ଯେ ତା'ର ଐଶ୍ୱର୍ଯ୍ୟ ସବୁକୁ ନିର୍ବିକାର ଭାବରେ ଅଜାଡ଼ି ଦେଇପାରିବ ରେଣୁଦିଦୀ ଉପରେ, ଏ ବିଶ୍ୱାସ କାହିଁକି କେଜାଣି ରେଣୁଦିଦୀ ମନରେ ଗୋଟେ ବହଳ ଜମାଟ ବାନ୍ଧିଥିଲା ବେଶ୍ ଅନେକ ଦିନରୁ ।

କେବେ ଓ କୋଉଠି ଐଶ୍ୱର୍ଯ୍ୟ ମହାନ୍ତି ସହ ପ୍ରଥମେ ଦେଖା ହୋଇଥିଲା, ହୁଏତ ମନେ ନ ଥିବ ରେଣୁଦିଦୀର । ହୋଇପାରେ କୋଉ ସାହିତ୍ୟସଭାରେ ବା ଡ୍ରାମା ରିହର୍ସାଲ୍ ସମୟରେ । ସେତେବେଳେ ଐଶ୍ୱର୍ଯ୍ୟ ମହାନ୍ତି ଏ ସହରରେ ଗୋଟେ କଲେଜରେ ପଢୁଥିଲା । ବେଳେବେଳେ ସେ ରେଣୁଦିଦୀର କ୍ୱାର୍ଟର୍ସକୁ ଆସେ, ଚା' ପିଏ, ଗପ କରେ । ଐଶ୍ୱର୍ଯ୍ୟ ମହାନ୍ତିକୁ ଦେଖିଲେ କାହିଁକି କେଜାଣି ରେଣୁଦିଦୀ ଭିତରେ ଗୋଟେ କେମିତି କେମିତିକା ଭାବ ଉତୁରି ପଡ଼େ ।

ଐଶ୍ୱର୍ଯ୍ୟ ମହାନ୍ତି ଏ ସହର ଛାଡ଼ି ଚାଲିଗଲା ପରେ ବି ସମ୍ପର୍କର ସେତୁଟିଏ ଲମ୍ବିଥାଏ ତା' ସହରକୁ । ନିରୋଳା ମୁହୂର୍ତ୍ତମାନଙ୍କରେ ଐଶ୍ୱର୍ଯ୍ୟ ମହାନ୍ତିର ସ୍ମୃତିରେ ଗୋଟାପଣେ ଭିଜିଯାଏ ରେଣୁଦିଦୀ ! ଭାବେ, ଅଜବ୍ ଏ ଐଶ୍ୱର୍ଯ୍ୟ ମହାନ୍ତି । ମ୍ୟାଥ୍‌ମାଟିକ୍ସ ପରୀକ୍ଷା ପୂର୍ବରାତିରେ କାଫ୍‌କା ପଢ଼ିବସିବ ଓ ଫିଜିକ୍ସ ପରୀକ୍ଷା ପୂର୍ବଦିନ ଆରମ୍ଭ କରିବ କବିତା ଲେଖା । ଆଉ ଅଜବ୍ ବି ତା'ର ଖିଆଲ୍ ! କେତେବେଳେ କହିବ କଣ୍ଟ୍ରାକ୍ଟରୀ କରିବି ତ କେତେବେଳେ କହିବ ବନ୍ଧୁକ ଧରି ରାତେରାତ୍ ଗୁଳି କରିଦେବି ସବୁ ରାଜନୀତିବାଲାଙ୍କୁ । ପୁଣି କେତେବେଳେ ଲେଖିବ ବ୍ୟାଙ୍କ ଭଲ ଲାଗୁଚି ତ କେତେବେଳେ ଲେଖିବ ପ୍ରେସ୍ କରି ମ୍ୟାଗାଜିନ୍‌ଟେ ଏଡିଟ୍ କରିବି ।

ଏମିତିକା ଅଜବ୍ ପିଲାକୁ ନେଇ କ'ଣ ବସା ବାନ୍ଧିହୁଏ ? ରେଣୁଦିଦୀ ପ୍ରଶ୍ନଟିଏ ଫିଙ୍ଗିଦିଏ ନିଜ ଉପରକୁ ବେଳେବେଳେ । ପରମୁହୂର୍ତ୍ତରେ ଗୋଟେ ପାପବୋଧରେ ଲୁଡ୍ରୁବୁଡ୍ରୁ ହୋଇଯାଏ ତା'ର ମନ । ବୟସରେ କେତେ ସାନ ଐଶ୍ୱର୍ଯ୍ୟ ମହାନ୍ତି ! ତଥାପି ରେଣୁଦିଦୀର ମନେହୁଏ ଐଶ୍ୱର୍ଯ୍ୟ ମହାନ୍ତି ଯେମିତି ତା' ପାଇଁ ଏକମାତ୍ର ନିରାପଦ ସାମ୍ରାଜ୍ୟ ।

ସେଇ ଐଶ୍ୱର୍ଯ୍ୟ ମହାନ୍ତି ଯୋଉଦିନ ଏ ସହରକୁ ବୁଲି ଆସିଥିଲା, ରେଣୁଦିଦୀ ସହ ତା'ର କ'ଣ ସବୁ କଥାବାର୍ତ୍ତା ଚାଲିଥିଲା ରାତିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ । ତା'ପରଦିନ ସକାଳୁ ରେଣୁଦିଦୀ କ୍ୱାର୍ଟର୍ସରେ ବଡ଼ ତାଲାଟିଏ ଝୁଲୁଥିବାର ତୁମ୍ଭେ ଅବଶ୍ୟ ଦେଖିଥିବ ହୋ ନଗ୍ରଜନେ !



# ନିଷିଦ୍ଧ ଜହ୍ନର ଗଜଲ

ଅଭୀପ୍‌ସାର ଯେ ବାହାହବାକୁ ଇଚ୍ଛା ହୁଏନି, ତା' ନୁହେଁ । କିନ୍ତୁ ସହପାଠିନୀମାନେ ବାହାଘର ପ୍ରଶ୍ନ ଉଠାଇଲେ, ସେ ତୁଚ୍ଛାଟାରେ ଫଁ ଫଁ ହୁଏ ବା ଓଲଟି ପ୍ରଶ୍ନ କରେ, ଏ ଯୁଗରେ ଝିଅମାନେ ବାହାହବା କ'ଣ ନିହାତି ଦର୍କାର ? ଝିଅମାନେ ଇଣ୍ଡିପେଣ୍ଡେଣ୍ଟ ରହିବା ସପକ୍ଷରେ ସେ ପ୍ରୋଗ୍ରେସିଭ୍ ଯୁକ୍ତି ବାଢ଼ିବାରେ ବାକ୍‌ପଟୁତା ପ୍ରଦର୍ଶନ କରେ ସତ, ହେଲେ ନିରୋଳା ମୁହୂର୍ତ୍ତମାନଙ୍କରେ ନିଜ ବାହାଘର ବିଷୟ ଚିନ୍ତାକରି ସେ ଅନେକ ସମୟରେ ଆତଙ୍କିତ ହୁଏ ।

ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କଠାରୁ ମାସିକ ପାଞ୍ଚ ଶହ ଟଙ୍କା ଷ୍ଟାଇପେଣ୍ଡ ପାଇ ଭଞ୍ଜସାହିତ୍ୟରେ ଗବେଷଣା କରିବା ତା'ପାଇଁ କେବଳ ସମୟ ବିତେଇବାର ସହଜ ପନ୍ଥା ଛଡ଼ା ଅନ୍ୟ କିଛି ନୁହେଁ । ଗବେଷଣା କରିବାପାଇଁ ତା'ର କେବେ ଆଗ୍ରହ ନ ଥିଲା କି ଏବେ ବି ନାହିଁ । କିନ୍ତୁ ଓଡ଼ିଆରେ ଏମ୍.ଏ. ପାସ୍ କରିସାରିବାପରେ କୌଣସି ଘରୋଇ ମହାବିଦ୍ୟାଳୟରେ ବି ଅଧ୍ୟାପନା କରିବାର ସୁଯୋଗ ନ ପାଇ ଘରେ ବସି ବସି 'କ'ଣ କରୁଛ' ବୋଲି ପ୍ରଶ୍ନର ସହସ୍ରାଧିକ ଉତ୍ତର ଖୋଜିବା ଅପେକ୍ଷା ବାଣୀବିହାର ରିସର୍ଚ୍ଚ ହଷ୍ଟେଲ୍‌ରେ ରୁମ୍‌ଟିଏ ପାଇ ଗବେଷଣା କରିବାର ଅଭିନୟ କରିବା କ'ଣ ଶ୍ରେୟସ୍କର ନୁହେଁ ? ତେଣୁ କ୍ୟାମ୍ପସ୍‌ରେ ଛାତ୍ରଛାତ୍ରୀମାନଙ୍କର ଯିବା ଆସିବାର ପ୍ରବହମାନତା ଭିତରେ ଅଭୀପ୍‌ସା ଥାଏ ପ୍ରଚଞ୍ଚଳ, କୋଉ ଅମୁହାଁ ବେଣ୍ଟପୋଖରୀର ସ୍ଥିର ଜଳରାଶି ପରି ।

ହଷ୍ଟେଲ ଭିତରେ ହାତରେ ରୋଷେଇ କରି ଖାଇବା, ପ୍ରତ୍ୟହ ଡିପାର୍ଟମେଣ୍ଟକୁ ଯାଇ ବୃଦ୍ଧ ଗାଇଡ୍‌ଙ୍କୁ ସାକ୍ଷାତ କରିବା, ରିଡିଙ୍ଗ୍ ରୁମ୍‌ରେ ମୋଟାମୋଟା ବହି ଉପରେ ଜବରଦସ୍ତ ନଜର ଢାଳିବା, ସନ୍ଧ୍ୟାରେ ବସ୍‌ଷ୍ଟାଣ୍ଡ ଆଡ଼େ ବୁଲିଯିବା ଯେମିତି ତା'ର ଦୈନନ୍ଦିନ ଅଭ୍ୟାସ, ଶୋଇଲାବେଳେ ପ୍ରମଥ ବିଷୟରେ ଏଣୁତେଣୁ ଗୁଡ଼ାଏ କଥା ଭାବିବା ସେମିତି ତା'ପାଇଁ ଏକ ରୁଟିନ୍‌ୱାର୍କ ।

ଅବଶ୍ୟ ଆଜିକାଲି ପ୍ରମଥ ବିଷୟରେ ଭାବି ବସିଲେ ସେ ଆଗପରି ଏତେଟା ଶିହରିତ ହୁଏନି । କିନ୍ତୁ ସେ ପ୍ରଥମେ ଯେତେବେଳେ ପ୍ରମଥକୁ ଭଲ ପାଇବା ଆରମ୍ଭ କରିଥିଲା ଥାର୍ଡ ଇଅର୍‌ରେ, ସେତେବେଳେ ତା'ର ପ୍ରତିଟି ମୁହୂର୍ତ୍ତ ପ୍ରମଥ ଚିନ୍ତାରେ ହିଁ ବିତୁଥିଲା । ପ୍ରମଥ ଆସୁଥିଲା ପ୍ରମତ୍ତ ମୋହ ଭିତରେ, କଲେଜର ଅଗଣିତ ମୁକୁଳିତ

ସହକାରର ମଧୁ ମହକରେ, ପ୍ରସ୍ଫୁଟିତ କଦମ୍ବର ଶିହରଣରେ, ଭିଜାମାଟିର ବାସ୍ନାରେ, ସାଳନ୍ଦୀର ସାବଲୀଳ ସ୍ରୋତରେ, ଜହ୍ନରାତିର ଆକର୍ଷଣରେ, ପିକ୍‌ନିକ୍‌ର ଉଷ୍ଣତାରେ, ଶାରଦୀୟ ସକାଳର ଶିଶିରବିନ୍ଦୁ ପୁଣି ଖରାଛୁଟିର ଶୂନ୍ୟତା ଭିତରେ । ପ୍ରମଥକୁ ଦେଖିବାକ୍ଷଣି ଛାତି ଭିତରେ ଫୁଟିଯାଉଥିଲା ବୋମାଟିଏ, ଧମନୀରେ ଜଳୁଥିଲା ରକ୍ତର ଫୁଲଝରି, ମହଣେ ଚମ୍ପାଫୁଲରେ ପୋତିହୋଇପଡୁଥିଲା ମନର ମୁହାଣ । ଆଉ ଯୋଉଦିନ ପ୍ରମଥ ନ ଥାଏ କଲେଜରେ, ଗହଳଚହଳ କ୍ୟାମ୍ପସ୍‌ଟା ମନେହୁଏ ଖରାଦିନର ପାଟବିଲପରି ନିଛାଟିଆ, ଖାଁ ଖାଁ ।

ପ୍ରମଥ ପରି ଅମଣିଆ ପିଲାକୁ ମନେଇବା କ'ଣ ସହଜ କଥା ? ପ୍ରମଥ ବିଷୟରେ କିଏ କ'ଣ ଭାବେ, ତାକୁ ନେଇ କିଏ କେତେ ସ୍ୱପ୍ନ ଦେଖେ– ସେସବୁ ସେ କିଛି ବୁଝେନା । ବହି ଭଲ ତ ସିଏ ଭଲ । ହେଲେ ଅଭୀପ୍‌ସା କୋଉ ଛାଡ଼ିବା ଝିଅ ? ଲାଇବ୍ରେରୀ, ସେମିନାର, ପିକ୍‌ନିକ୍, ସ୍ପୋର୍ଟସ– ସବୁଠି ସେ ପ୍ରମଥର ପିଛା କରିଥାଏ । ଶେଷରେ ସେ ଜିଣିଲା । ଚହଲେଇ ଦେଲା ପ୍ରମଥର ମନ । ବହିର ମପାଚୁପା ପୃଥିବୀଠାରୁ ଭିନ୍ନ ଏକ ବିପୁଳା ପୃଥ୍ୱୀର ସଂଧାନ ପାଇଲା ପ୍ରମଥ । ତା' ପରଠୁଁ ସେ ନିତି ଆସେ ଲେଡିଜ୍ ହଷ୍ଟେଲକୁ, ଅଭୀପ୍‌ସାକୁ ଦେଖାକରିବାପାଇଁ, କଥାହବାପାଇଁ ତା'ସହ । ଈର୍ଷାରେ ଜଳିଯା'ନ୍ତି ସହପାଠିନୀମାନେ । ସ୍ୱପ୍ନରେ ବିଭୋର ହୋଇଯାଏ ଅଭୀପ୍‌ସା ।

ସେଦିନର ପ୍ରୀତି ଓ ପ୍ରତିଶ୍ରୁତିକୁ ଉପେକ୍ଷା କରିନି ପ୍ରମଥ ।

ଏବେ କିନ୍ତୁ ଭୁବନେଶ୍ୱରଠାରୁ ଅନେକ ଦୂରରେ ସେ । ମାଲ୍‌କାନଗିରି ଷ୍ଟେଟ ବ୍ୟାଙ୍କରେ । ଅବଶ୍ୟ ମାସରେ ଗୋଟେଯୋଡ଼େ ଲଫାଫା ଫିଙ୍ଗିବାରେ ସେ କେବେ ବି କାର୍ପଣ୍ୟ କରେନି । ଆଉ ପ୍ରମଥର ପ୍ରତିଟି ଲଫାଫାରୁ ଏବେ ବି ଅଜାଡ଼ି ହୋଇପଡ଼େ ଲକ୍ଷେଭାର ପଦ୍ମର ପ୍ରବଣତା, ଅୟୁତ ଅବ୍ଦ ବ୍ୟାପୀ ଯୁଗ୍ମ ଜୀବନର ସ୍ୱପ୍ନମୟ ଇସ୍ତାହାର !

ହେଲେ, ପ୍ରମଥ ଆଉ କେତେଦିନ ବା ଅପେକ୍ଷା କରିପାରିବ ? ଉଭୟଙ୍କୁ ତିରିଶ ଛୁଇଁଲାଣି । ଯୌବନର ରଙ୍ଗ ଫିକା ପଡ଼ିଆସୁଚି ଆସ୍ତେ ଆସ୍ତେ । ଏଇ ଅଳ୍ପଦିନ ତଳେ ମୁଣ୍ଡ କୁଣ୍ଡାଉଥିବା ସମୟରେ ଦୁଇଟି ଧଳାକେଶ ଆବିଷ୍କାର କରି ନିଜ ମନ ଭିତରେ ଅସମ୍ଭବ ଭାବରେ ଭୟଭୀତ ହୋଇଯାଇଥିଲା ଅଭୀପ୍‌ସା । ଆଉ ପ୍ରମଥ ମୁଣ୍ଡର ଘଞ୍ଚ ଘନ କେଶରେ ବି ଅବକ୍ଷୟର ସ୍ପଷ୍ଟ କ୍ଷତଚିହ୍ନ । ତା'ଛଡ଼ା ପ୍ରମଥ ଚାରି ବର୍ଷ ହେଲା ଚାକିରି କଲାଣି । ଅଫିସ୍‌ର ପ୍ରଲମ୍ବିତ ବ୍ୟସ୍ତତା ପରେ କ୍ୱାର୍ଟର୍ସରେ ରୋଷେଇ କରି ଖାଇବା ଅଥବା ହୋଟେଲ୍‌କୁ ଧାଇଁବା ସତରେ କେଡ଼େ ଦୁର୍ବିଷହ । ପ୍ରମଥ ନିଶ୍ଚିତ ଭାବରେ ବିରକ୍ତ ହେଉଥିବ ମନେମନେ । ତା'ଛଡ଼ା ଏବେ ପ୍ରମଥର ବାପା ରିଟାୟାର୍ଡ଼ କରିଛନ୍ତି । ତା'ର ରୁଗ୍‌ଣା ମା' ଘରର ଦାୟିତ୍ୱ ସମ୍ଭାଳିବାକୁ ଅସମର୍ଥା । ସାନଭଉଣୀର ଜିଦ୍ ଯେ

ଭାଇର ବାହାଘର ପରେ ହିଁ ସେ ବାହାହବ । ଆଉ ତା'ର ସାନଭାଇ ବର୍ଷେହେଲା ବମ୍ବେରେ, କୌଣସି କମ୍ପାନୀର ଏକ୍‌ଜିକ୍ୟୁଟିଭ୍ ପୋଷ୍ଟରେ । ସେ ପରୋକ୍ଷରେ ସୂଚେଇ ଦେଲାଣି ପ୍ରମଥକୁ, ତା'ପାଇଁ ଲାଇନ୍ କ୍ଲିଅର କରିବାକୁ ।

ପ୍ରମଥ ଅନେକବାର ଏ ସମ୍ପର୍କରେ ଲେଖିଲାଣି । ହେଲେ ଅଭୀପ୍‌ସା ସେସବୁକୁ ହଜମ କରିନେଉଥିଲା । ଅଥଚ, ଗତକାଲି ସେ ପାଇଥିବା ଚିଠିରେ ପ୍ରମଥ ସ୍ପଷ୍ଟ ଲେଖିଚି, ''ବାହାଘର ଯେମିତି ଏଥର ମାର୍ଚ୍ଚ ମାସ ନ ଡିଏଁ ।'' ସେ କୁଆଡ଼େ ତା' ବାପା ଓ ବୋଉଙ୍କୁ କନ୍‌ଭିନ୍‌ସ କରିସାରିଚି । କୌଣସି ମହିଳା କଲେଜରେ ଅଧ୍ୟାପନା କରୁଥିବା ତା' ବାପାଙ୍କର ପ୍ରାକ୍ତନ ସହକର୍ମୀଙ୍କ କନ୍ୟାର ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଚି । ସାଫ୍ ମନା କରିଦେଇଚି, ତା' ବୋଉ ଚାହୁଁଥିବା ଜଣେ ଚିଫ୍ ଇଞ୍ଜିନିୟରଙ୍କ (ଯିଏ ଭୁବନେଶ୍ୱରରେ ପ୍ଲଟ୍‌ଟିଏ ଦବାପାଇଁ ଆଗରୁ ରାଜି ହୋଇଥିଲେ) ଏକମାତ୍ର ସୁନ୍ଦରୀ ଝିଅକୁ ବାହାହବାପାଇଁ ।

ଅଭୀପ୍‌ସା ଭଲ ଭାବରେ ଜାଣିଥିଲା ଯେ ପ୍ରମଥ ତାକୁ କେବେ ବି ବିଟ୍ରେ କରିବ ନାହିଁ । ହେଲେ, ଅଭୀପ୍‌ସା ଯେ ପ୍ରମଥକୁ ବାହାହବାପାଇଁ ମନା କରିଦବ, ଏକଥା କ'ଣ ଭୁଲରେ ବି ଚିନ୍ତା କରିଥିବ ପ୍ରମଥ !

ଅଗତ୍ୟା ଅଭୀପ୍‌ସା ଭାବୁଥିଲା ଯେ ସେ ପ୍ରମଥକୁ ବାହାହବାକୁ ମନା କରିଦେବା ହିଁ ଭଲ ହେବ । ଏମିତି ଭାବନାଟିଏ ତାକୁ ଗ୍ରାସକଲା କ୍ଷଣି, ତା'ର ସର୍ବାଙ୍ଗ ଶୀତେଇ ଉଠୁଥିଲା ଏବଂ ତା'ର ମନ ଏକ ଅହେତୁକ ଆତଙ୍କରେ ମ୍ରିୟମାଣ ହୋଇପଡୁଥିଲା । ତା'ର ସମସ୍ତ ସ୍ୱପ୍ନ ଯେ ଗୋଟେ ଧୂଳିଘର ଏବଂ ସେହି ଧୂଳିଘରକୁ ଯେ ଅଝଟିଆ ପିଲାଟିଏ ପରି ସେ ନିଜ ହାତରେ ଭାଙ୍ଗିଦବ, ଏହା ଥିଲା ଅଭୀପ୍‌ସା ପାଇଁ ଅଚିନ୍ତନୀୟ । ସିଏ ତ ଭାବିଥିଲା କୌଣସି ଏକ ଫଗୁଣର ଫଗୁବୋଳା ମୁହୂର୍ତ୍ତରେ ପ୍ରମଥ ବରସାଜି ଆସିବ ତାଙ୍କ ଘରକୁ । କେତେ ଢୋଲଢମାଳ ବାଜିବ, ବାଣଫୁଟିବ, ଭୋଜିଭାତ ହବ । ନାଲିପାଟ ପିନ୍ଧି ଓଢ଼ଣା ପକାଇ ସିଏ ବେଦୀକୁ ଆସିବ ସଙ୍ଗିନୀମାନଙ୍କ ଗହଣରେ । ପ୍ରମଥ ହାତ ସହ ଯେତେବେଳେ ତା' ହାତକୁ ଯୋଡ଼ି ଦିଆଯିବ, ମୃଦୁ ଭୂମିକମ୍ପରେ ଦୁଲୁକି ଉଠିବ ତା'ର ଛାତି ଆଉ ଓଢ଼ଣାର ଆଢୁଆଳରୁ ଆଦିମତାର ସୌରଭକୁ ସେ ଆଘ୍ରାଣ କରୁଥିବ ନିର୍ବିକାର ଭାବରେ ।

କିନ୍ତୁ ସେହିପରି ମଧୁର ମୁହୂର୍ତ୍ତଟିଏ ହୁଏତ ଅଭୀପ୍‌ସା ପାଇଁ ଅପହଞ୍ଚ । ତେଣୁ ପ୍ରମଥ ଜୀବନକୁ ନେଇ ସେ ଏମିତି କେତେଦିନ ମିଛିମିଛିକିଆ ସ୍ୱପ୍ନ ଭିତରେ ମଜ୍ଜି ରହୁଥିବ !

ଏଇ ମାର୍ଚ୍ଚ କ'ଣ ଆଗାମୀ ଏମିତି କେତେ ମାର୍ଚ୍ଚ ପରେ ବି ସେ ବାହାହବା ପାଇଁ ହୁଏତ ପ୍ରସ୍ତୁତ ହୋଇପାରିବନି । ଅନିଅପାର ବାହାଘର ଏପର୍ଯ୍ୟନ୍ତ ସ୍ଥିର ହୋଇପାରି

ନାହିଁ । କେତେ ବରପାତ୍ର, କେତେ ବରପିତା ଯେ ଅନିଅପାକୁ ଦେଖି ଫେରିଗଲେଣି, ତା'ର ହିସାବ ନାହିଁ । ବାପା ବର ଖୋଜି ଖୋଜି ନୟାନ୍ତ ହେଲେଣି । ମାଷ୍ଟର ଚାକିରିରୁ ଅବସର ନେବାପରେ ତାଙ୍କର ଯତ୍‌ସାମାନ୍ୟ ଅବସରକାଳୀନ ଅର୍ଥ, ସବୁ ଏଇମିତିରେ ଖର୍ଚ୍ଚ ହୋଇଗଲାଣି । ଆଜିକାଲି ସେ ମୂକ ପାଲଟି ଯାଇଚନ୍ତି । ଦୁଇଟା ଶିକ୍ଷିତା ଝିଅଙ୍କୁ ବାହା ନ କରାଇପାରିବାର ଦୁଶ୍ଚିନ୍ତାରେ ସେ ଅହରହ ଶଢ଼ି ମରୁଚନ୍ତି । ସାଇପଡ଼ିଶା କାହାକୁ ମୁହଁ ଦେଖାଇପାରୁ ନାହାନ୍ତି । ନିଜ ଲୁହ ନିଜ କାନିରେ ପୋଛିବା ଛଡ଼ା ବୋଉ ବା ଅଧିକ କ'ଣ କରିପାରିବ ? ମଣ୍ଟୁ ତ ମଣିଷ ହେଲାନି । ବି.ଏ. ପାସ୍ କରି ଘରେ ବସିଚି । ସିଏ ତ ନିଜକୁ ରକ୍ଷା କରିବାପାଇଁ ଅସମର୍ଥ । ଆଉ କାହା କଥା କ'ଣ ବା ବୁଝିବ ?

ଅନିଅପା ସତରେ ନିହାତି ଦୁଃଖୀ ଝିଅଟେ । ବି.ଏ. ପାସ୍ କରିବାର ଦୁଇ ବର୍ଷ ପରେ ବି.ଏଡ୍. କଲା ! ଚାକିରି କରିବାପାଇଁ ଭାରି ଇଚ୍ଛା ତା'ର । ହେଲେ, ଚାକିରି କୋଉଠି ବା ମିଳୁଚି ? ସେ ଘରେ ବସି ବସି ଖାଲି ବୋର୍ ହଉଚି । ତା'ଛଡ଼ା ବରବାଲାଙ୍କ ସାମ୍ନାରେ ସର୍ବତ୍ ଗ୍ଲାସ୍ ଥୋଇ ଥୋଇ ସେ ଦିକ୍‌ଦାର ହୋଇଗଲାଣି । ସିଏ ଆଉ କ'ଣ ବା କରିବ ? ତା'ଭାଗ୍ୟ ତ ଖରାପ । କଲେଜରେ ପଢୁଥିଲାବେଳେ ସେ ବି ଗୋଟେ ପିଲାକୁ ଭଲ ପାଉଥିଲା । ହେଲେ ପିଲାଟି ଗୋଟେ ବଡ଼ ଚାକିରି ପାଇଗଲା ପରେ ଅନିଅପାକୁ ଠକିଦେଲା । କୋଉ ଗୋଟେ କଣ୍ଟ୍ରାକ୍‌ଟର୍‌ର ଝିଅକୁ ବାହାହୋଇ ଏବେ ବେଶ୍ ଭଲରେ ଅଛି ।

ଅନିଅପା ଯେ ସେ ପିଲାକଥା ଭାବୁ ନ ଥିବ ବା ତା'ର ପ୍ରେମପତ୍ର ସବୁକୁ ଲୁଚେଇ ଲୁଚେଇ ପଢୁ ନ ଥିବ, ତା'ନୁହେଁ । ହେଲେ ବୃନ୍ତରୁ ଥରେ ଝଡ଼ିପଡ଼ିଥିବା ଫୁଲକୁ ଆଉ ଯୋଖିହେବ ନା ବହିଯାଇଥିବା ସ୍ରୋତର ଗୋଡ଼ଟାଣି ଅଟକାଇ ହବ !

ଅନିଅପା ବିଷୟରେ ଭାବିଲାକ୍ଷଣି ଭାରାକ୍ରାନ୍ତ ହୋଇଯାଏ ଅଭୀପ୍‌ସାର ମନ । ଏଡ଼େ ସୁନ୍ଦରୀ ଅନିଅପା ଏବେ ପୂରା କଳାକାଠ ପଡ଼ିଯାଇଚି । ଓଃ...କେତେ ବୟସ୍କା ଦେଖାଯାଉଚି ସେ । ଆଜିକାଲି ପୁଣି ସେ ଅସମ୍ଭବ ଭାବରେ ନୀରବ । ଏଇ କେତେଦିନ ହବ ଅନିଅପା କେବେ ହସିବାର ସେ ଦେଖି ନାହିଁ । କଲେଜବେଳର ସେଇ ହସକୁରୀ ଝିଅ ଅନିଅପା, ଆଜି ଶୀତରାତିରେ ଗୋଟେ କ୍ଷୟିଷ୍ଣୁ ଜହ୍ନପରି ଭାରି ଏକା ଏକା, ଉଦାସ ।

ତଥାପି ଅନିଅପା ବଞ୍ଚିରହେ, ବଞ୍ଚିରହେ ଏଇଥିପାଇଁ ଯେ, କାଳେ କେବେ ଅବେଳରେ ମଳୟ ବହିବ, କୋଇଲିର ଗୀତ ଓ ଆମ୍ରକଷିର ବାସ୍ନା ଭିତରେ କାଳେ କିଏ ତାକୁ ଆପଣେଇ ନବ ! ଅନିଅପା ଭିତରେ ଅହରହ ଜଳୁଥିବା ଓ ଲିଭୁଥିବା ସେହି ସ୍ୱପ୍ନର ସଭାଟିକୁ କ'ଣ ଜାଣିଜାଣି ଲିଭେଇ ଦେଇପାରିବ ଅଭୀପ୍‌ସା ?

ଅଭୀପ୍‌ସା ବାହା ହୋଇଗଲା ପରେ କ'ଣ ହବ ଅନିଅପାର ଭବିଷ୍ୟତ ? ସେ କେମିତି ବଞ୍ଚିବ ? କୋଉ ଝିଅ କେବେ କ'ଣ ସ୍ୱପ୍ନକୁ ମାଇନସ୍ କରି ବଞ୍ଚିପାରେ ! ତା'ଛଡ଼ା ବାପା ବୋଉ କ'ଣ ଅଭୀପ୍‌ସାର ବାହାଘରକୁ ଗ୍ରହଣ କରିପାରିବେ ? ସାଇପଡ଼ିଶା, ବନ୍ଧୁବାନ୍ଧବ, ସାଙ୍ଗସାଥୀ କ'ଣ କହିବେ ? କ'ଣ ଭାବିବ ଅନିଅପା ନିଜେ ? ସେସବୁକୁ କ'ଣ ଅଭୀପ୍‌ସା ସାମ୍ନା କରିପାରିବ ? ଅନ୍ୟପକ୍ଷରେ ପ୍ରମଥ ସହ ବିଜଡ଼ିତ ସମସ୍ତ ସ୍ମୃତି ଓ ସମ୍ପର୍କକୁ କ'ଣ ନିର୍ଦ୍ଦୟ ଭାବରେ ଛିନ୍ନ କରିହବ ? ଏମିତି ପ୍ରଶ୍ନମାନେ ଯୁଗପତ୍ କ୍ରୁଶବିଦ୍ଧ କରୁଥିଲେ ଅଭୀପ୍‌ସାକୁ । କୋଉ ନିଶବ୍ଦ କେନ୍ଦରାର କରୁଣ ରାଗରେ ଦ୍ରବୀଭୂତ ହୋଇଯାଉଥିଲା ତା'ର ମନ ।

ଅଭୀପ୍‌ସା ଭାବୁଥିଲା ସେ ପ୍ରମଥକୁ ଭଲପାଇ ସତରେ କେତେବଡ଼ ଭୁଲ୍ କରିଚି ? ସାହିତ୍ୟର ଛାତ୍ରୀହୋଇ ବି ସେ ଉପଲବ୍‌ଧି କରିପାରି ନ ଥିଲା ଯେ ଗୋଟେ ମଧ୍ୟବିତ୍ତ ପରିବାରର ଝିଅର ଏଠି ବାହାହବାର ଅଧିକାର ନାହିଁ । ସେ ସ୍ୱପ୍ନ ଦେଖିବାପାଇଁ ବି ଏଠି ଅସୁମାରି କଟକଣା, ଅସଂଖ୍ୟ ଆକଟ !

ତଥାପି ଅଭୀପ୍‌ସା ନିଜ ମନକୁ ଦୃଢ଼ କରିବାପାଇଁ ଚେଷ୍ଟାକଲା ଓ ଆଖିରୁ ଲୁହ ପୋଛିଲା । ରୁମ୍‌ର ଝର୍କା ଖୋଲି ବାହାରକୁ ଦୃଷ୍ଟି ଢାଳିଲା । ବାହାରେ ସନ୍ଧ୍ୟାର ସ୍ୱାଭାବିକ କୋଳାହଳ । ସମସ୍ତ ସ୍ୱାଭାବିକତା ସତ୍ତ୍ୱେ ସେଦିନର ସନ୍ଧ୍ୟା କାହିଁକି କେଜାଣି ତାକୁ ଭାରି ଅସ୍ୱାଭାବିକ ବୋଧ ହେଲା ।

ଅନେକ ସମୟ ଅନ୍ଧାର ଭିତରେ ଏଣୁତେଣୁ ଭାବିଲାପରେ ସେ ପ୍ରମଥ ପାଖକୁ ଚିଠି ଲେଖିବାପାଇଁ ସ୍ଥିର କଲା । ତା'ର ହୃଦ୍‌ବୋଧ ହେଲା ଯେ, ପ୍ରମଥ ତାକୁ ବାହାହୋଇ ନ ପାରିବାର ଦୁଃଖରେ ସାମୟିକ ଯନ୍ତ୍ରଣା ପାଇବ, କିନ୍ତୁ ନୂଆ ଜୀବନର ଅରୁଣିମା ଭିତରେ ସେ ଅତୀତକୁ ଭୁଲିଯିବ, ପିଲାଦିନର କୋଉ ପାଣିଚିଆ ସ୍ୱପ୍ନର ଝାପ୍‌ସା ସ୍ମୃତିପରି !

ତା'ପରେ ଅଭୀପ୍‌ସା ଲାଇଟ୍ ଜଳେଇଲା ଓ ରୁମ୍‌ର ଝର୍କା କବାଟ ବନ୍ଦକରି ଚିଠି ଲେଖିବା ଆରମ୍ଭ କଲା । ଫର୍ଦ୍ଦଟିଏ କାଗଜ ଉପରେ କେତୋଟି ମାପଚୁପ ଅକ୍ଷରକୁ ସଜାଇ ରଖିବାପାଇଁ ବିତିଗଲା ଅନେକ ସମୟ । ଏହା ଥିଲା ଅଭୀପ୍‌ସା ପାଇଁ ବୋଧହୁଏ ସବୁଠୁଁ ସଂକ୍ଷିପ୍ତ ଅଥଚ ଦୀର୍ଘ ସମୟବ୍ୟାପୀ ଶେଷପତ୍ର ଲେଖା ।

ସେଦିନ ଆଉ ଅଭୀପ୍‌ସା ରୋଷେଇ କଲାନି । ଗ୍ଲାସଟିଏ ପାଣି ପିଇ ବିଛଣାରେ ଲୋଟିଗଲା । କିଛି ଲୁହ, କିଛି ଦୀର୍ଘଶ୍ୱାସ ଓ କିଛି ସ୍ମୃତିଚର୍ଯ୍ୟା ଭିତରେ ରାତି ସରିଗଲା, ଚାହୁଁ ଚାହୁଁ ।

ତା'ପରଦିନ ଡିପାର୍ଟମେଣ୍ଟକୁ ଯିବା ବାଟରେ ପୋଷ୍ଟଅଫିସ୍‌କୁ ଗଲା ଓ ଲଫାପାଟିଏ କିଣି ସେଥିରେ ଚିଠିଟି ଭର୍ତ୍ତିକଲା । ତା'ପରେ ପୋଷ୍ଟଅଫିସ ବାରନ୍ଦାର

ଡେସ୍କ କଡ଼ରେ ଠିଆହୋଇ ପ୍ରମଥର ଠିକଣା ଲେଖିବାକୁ ଉଦ୍ୟତ ହେଲା । କିନ୍ତୁ ହଠାତ୍ ତା'ର କ'ଣ ହେଲା ଯେ ତାକୁ ସବୁକିଛି ଅନ୍ଧାର ଦିଶିଲା ଓ ସେ କଚାଡ଼ି ହୋଇ ପଡ଼ିଲା ପକ୍କା ବାରଣ୍ଡାରେ ।

ତତ୍‌ପରବର୍ତ୍ତୀ ଦୃଶ୍ୟଟି ଥିଲା ଅତି ସ୍ୱାଭାବିକ । ସେଠାରେ ଉପସ୍ଥିତ ପ୍ରାୟ ସମସ୍ତେ କିଛିକ୍ଷଣପାଇଁ ଚଞ୍ଚଳ ହୋଇପଡ଼ିଲେ । କେତେଜଣ ଝିଅ ଅଭୀପ୍‌ସାର ମୁହଁକୁ ପାଣି ଛାଟି, କାଗଜରେ ଧୀରେ ଧୀରେ ବିଞ୍ଚିଲେ । ଅଭୀପ୍‌ସାର ଚେତା ଫେରିଲା ପରେ ସେମାନେ ତାକୁ କ୍ୟାମ୍ପସ୍ ହସ୍‌ପିଟାଲ୍‌କୁ ନବାପାଇଁ ବାହାରିଲେ । କିନ୍ତୁ ଅଭୀପ୍‌ସା ମନା କରିବାରୁ ସେମାନେ ତାକୁ ସାଙ୍ଗରେ ଧରି ରିସର୍ଚ୍ଚ ହଷ୍ଟେଲ୍ ଆଡ଼େ ମୁହାଁଇଲେ ।

ଏହି ଘଟଣାଟି ଘଟିବାର ମୁହୂର୍ତ୍ତ କେତୋଟି ଭିତରେ ସାରା କ୍ୟାମ୍ପସ୍‌ରେ ବିଛୁରି ହୋଇପଡ଼ିଲା ଚାପା ଗୁଞ୍ଜରଣଟିଏ, ଯାହାର ସାରାଂଶ ଥିଲା– 'ଓଡ଼ିଆ ବା ସାଇକୋଲୋଜି ଡିପାର୍ଟମେଣ୍ଟରେ ବେଶ୍ କିଛିଦିନ ହେବ ରିସର୍ଚ୍ଚ କରୁଥିବା ଗୋରୀ-ପାତେଳୀ ଝିଅଟି ଗୋଟେ କ୍ରନିକ୍ ହିଷ୍ଟିୟା ପେସେଣ୍ଟ' !



# ସକାଳର ଜହ୍ନ

କଲେଜଟିଏ ଥିବ । ପାଞ୍ଚ ସାତ ବର୍ଷର । ସହରଠାରୁ ଦୂରରେ । କଲେଜ କହିଲେ ଥିବ ଛୋଟ କୋଠାଘରଟିଏ, ଯାହା ଦୁଇ ଭାଗ ହୋଇଥିବ କାଠର କାନ୍ଥରେ । ଗୋଟିଏ ପାଖରେ ଅଧ୍ୟକ୍ଷଙ୍କ ଆସନ ଓ ଅନ୍ୟ ପାଖରେ ଥିବ କଲେଜ ଦପ୍ତର । ଲମ୍ବା ଦାଣ୍ଡିଆ ଆଜବେଷ୍ଟସ ଛପର କୋଠରିମାନଙ୍କରେ ଚାଲୁଥିବ କ୍ଲାସ । କଲେଜକୁ ଲାଗିଥିବ ଛୋଟ ପଡ଼ିଆଟିଏ । କଲେଜ କ୍ୟାମ୍ପସରେ ଥିବ ଦୁଇ ଚାରୋଟି ବଉଳଗଛ ଓ ସ୍ୱଳ୍ପବର୍ଦ୍ଧିତ ଝାଉଁଗଛ କେତୋଟି । କଲେଜ ସାମନାରେ ଲମ୍ବିଥିବ ନାଲିମାଟିର ରାସ୍ତାଟିଏ । ରାସ୍ତାକଡ଼ ଝାଟିମାଟି ଘର ଦୁଇଟିରୁ ଚହଟୁଥିବ ଚା'ଗନ୍ଧ ବା ବରା-ପକୋଡ଼ିର କ୍ଷୁଧାକାରୀ ବାସ୍ନା । କ୍ୟାବିନ୍ କେତୋଟିରେ ସଜା ହୋଇଥିବ ଖିଲିପାନର ସରଞ୍ଜାମ, ସିଗାରେଟ୍ ପ୍ୟାକେଟ୍, କାଚବମ୍ ଭର୍ତ୍ତି ମିକ୍ସଚର, ମଳି ଜମିଆସିଥିବା କେତୋଟି ଡଟ୍‌ପେନ୍ ଇତ୍ୟାଦି ।

ସେଇ କଲେଜରେ ଅଧ୍ୟାପକ ପଦ ପାଇଁ ନିଯୁକ୍ତି ବିଜ୍ଞାପନ ପ୍ରକାଶିତ ହୋଇଥିବ ଖବରକାଗଜମାନଙ୍କରେ । ଏମ୍.ଏ. ପାସ୍ କରିସାରିବାର ଛ'ମାସ ପରେ ମଧ୍ୟ ବାଣୀବିହାର କ୍ୟାମ୍ପସରେ ପ୍ରତ୍ୟହ ଟହଲ ମାରୁଥିବା ଯୁବକର ଦୃଷ୍ଟିକି ଆସିଥିବ ବିଜ୍ଞାପନଟି । ଧାର୍ଯ୍ୟ ତାରିଖର ବହୁ ପୂର୍ବରୁ ଅଧ୍ୟାପକ ପଦ ପାଇଁ ଆବେଦନ କରିଥିବ ଯୁବକଟି । ନିର୍ଦ୍ଦିଷ୍ଟ ସମୟରେ ଡାକରା ପାଇଥିବ ସାକ୍ଷାତ୍‌କାରପାଇଁ । କଲେଜରେ ଯେ ତାକୁ ଚାକିରି ମିଳିଯିବ ଏ ବିଶ୍ୱାସ କଦାପି ନ ଥିବ ତା'ର । ବହୁ ଦ୍ୱିଧା ଭିତରେ ସେ ଯାଇଥିବ ସାକ୍ଷାତ୍‌କାରର ସାମ୍ନା ହବା ପାଇଁ । ସାକ୍ଷାତ୍‌କାର ସମୟରେ ଖଦି ପିନ୍ଧା ଗ୍ରାମ୍ୟ ବୁଦ୍ଧିଜୀବୀମାନଙ୍କର ଅନେକ ଅସଙ୍ଗତ ପ୍ରଶ୍ନର ସେ ଯଥାସମ୍ଭବ ମାର୍ଜିତ ଉତ୍ତର ଦେଇଥିବ ।

ତା'ପରେ ସେ ଫେରିଆସିଥିବ ବାଣୀବିହାର ହଷ୍ଟେଲକୁ । ମାଗାଜିନ୍ ଭିତରେ ମୁହଁ ଗୁଞ୍ଜିଥିବ । ପୃଥିବୀର ବଡ଼ନଦୀ, ଜାପାନ ଦେଶର ମୁଦ୍ରାର ନାମ, ଫରାସୀ ରାଷ୍ଟ୍ର ବିପ୍ଳବର ତାରିଖ ଇତ୍ୟାଦି ଘୋଷିଥିବ । ଖବରକାଗଜର ବିଜ୍ଞାପନ ପୃଷ୍ଠାକୁ ଆଗ୍ରହ ସହକାରେ ପଢ଼ିଥିବ ଏବଂ ସଂପୂର୍ଣ୍ଣ ବିସ୍ମୃତ ହୋଇଥିବ କଲେଜ ବିଷୟରେ ।

ହଠାତ୍ ସିଏ ଚିଠିଟିଏ ପାଇବ ଓ ଆଶ୍ଚର୍ଯ୍ୟ ହବ ନିଯୁକ୍ତିପତ୍ରଟି ଦେଖି । ଚାରିଶହ ଟଙ୍କା ମାସିକ ବେତନରେ ଭୁବନେଶ୍ୱରଠାରୁ ଦେଢ଼ ଶହ କିଲୋମିଟର ଦୂରରେ

ଅବସ୍ଥିତ ଏଇ କଲେଜରେ ଜଏନ୍ କରିବ କି ନା, ହଠାତ୍ ସେ ସ୍ଥିର କରିପାରିବ ନାହିଁ । ସାଙ୍ଗମାନଙ୍କୁ ପଚାରିବ । କେତେକ କହିବେ ଫୁଲିସ୍‌ନେସ୍ । କେତେକ ବି କହିବେ ମନ୍ଦ ନୁହେଁ, ଷ୍ଟପ୍ ଗ୍ୟାପ୍ ଆରେଞ୍ଜ୍‌ମେଣ୍ଟ ।

ବାଣୀବିହାର କ୍ୟାମ୍ପସ୍ ଆଉ ଜମା ଭଲ ଲାଗୁ ନ ଥିବ ଯୁବକଟିକୁ । ଅଚିହ୍ନା ମୁହଁମାନଙ୍କର ଭିଡ଼ ଭିତରେ ସେ ହଜିଯାଉଥିବ ଆସ୍ତେ ଆସ୍ତେ । ବାଣୀବିହାରର ମିନି ବଜାର, ରମାଦେବୀ କଲେଜ ସାମ୍ନା ମାର୍କେଟ୍ କମ୍ପ୍ଲେକ୍ସ, ସବୁକିଛି ମନେ ହଉଥିବ ବିଷମୟ । ଏପରିକି ଲେଡିଜ୍ ହଷ୍ଟେଲ ଆଡ଼େ ଆଖି ପହଁରେଇବାକୁ ବି ଇଚ୍ଛା ହଉ ନ ଥିବ । ଏମିତି ଦ୍ୱନ୍ଦ୍ୱ ଭିତରେ ଆଉଟୁ ପାଉଟୁ ହେଉ ହେଉ କୌଣସି ଏକ ସ୍ୱଚ୍ଛ ସକାଳରେ ବେଡିଙ୍ଗ୍‌ପତ୍ର ସହ ସେ ବାଣୀବିହାର ଛାଡ଼ିଦେବ ।

ସେଦିନ ସେ କଲେଜରେ ପହଞ୍ଚିଲାବେଳକୁ ଦୁଇ ଚାରିଟି ପିରିୟଡ଼ ଅତିକ୍ରାନ୍ତ ହୋଇଯାଇଥିବ । ଲେକ୍‌ଚରରସ୍ କମନ୍‌ରୁମ୍‌ରେ ବେଡିଙ୍ଗ୍‌ପତ୍ର ଥୋଇ ସେ ଅଧ୍ୟକ୍ଷଙ୍କୁ ସାକ୍ଷାତ୍ କରିବାକୁ ଯାଇଥିବ ଓ ଜଏନିଂ ରିପୋର୍ଟ ଦେଇଥିବ । କୌଣସି ଅଧ୍ୟାପକ ବନ୍ଧୁଙ୍କ ନିକଟରେ ସପ୍ତାହବ୍ୟାପୀ ଆଡ୍‌ଜଷ୍ଟ କରି ରହିସାରିବାପରେ, ସେ ନିଜ ପାଇଁ ଘରଟେ ଠିକ୍ କରିଥିବ । ସେ ଯୋଉ ଘରେ ରହୁଥିବ, ତାହା କଲେଜଠାରୁ ଦୁଇ କିଲୋମିଟର ଦୂର ଗୋଟିଏ ଗାଁ ଭିତରେ । ଘରର ମାଲିକ ବୁଢ଼ାବୁଢ଼ୀ ଦୁଇଜଣ । ତାଙ୍କର ପୁଅ-ବୋହୂମାନେ ପ୍ରବାସରେ ରହୁଥିବେ । ମାସିକ ପଇଁତିରିଶ ଟଙ୍କା ଭଡ଼ାରେ ଦାଣ୍ଡ ପାଖ ଘରଟି ମିଳିଥିବ ତାକୁ ।

ସେ ଠିକ୍ ସମୟରେ କଲେଜ ଆସୁଥିବ ଓ ଆଗ୍ରହ ସହକାରେ କ୍ଲାସ୍ ନଉଥିବ । ଅଳ୍ପ ଦିନ ଭିତରେ ପିଲାମାନେ ତାକୁ ଆଦରିଯିବେ । ନୋଟ୍ ମାଗିବେ, ବହି ପାଇଁ କହିବେ ଓ ଘରକୁ ଯାଇ ସଞ୍ଜେ ବା ସକାଳେ ବୁଝାବୁଝି କରିବାପାଇଁ ଅନୁରୋଧ କରିବେ । ତା'ପରେ ସେ ଅଞ୍ଚଳର ଅନେକ ଲୋକ ତାକୁ ଚିହ୍ନିଯିବେ । ବଜାର ଘାଟରେ ସାର୍ ବୋଲି କହି ନମସ୍କାର କରିବେ । କୌଣସି ଗ୍ରାମ୍ୟ କ୍ଲବ୍‌ର ବାର୍ଷିକ ଉତ୍ସବ ବା ସ୍ଥାନୀୟ ମଧ୍ୟ-ଇଂରାଜୀ ବିଦ୍ୟାଳୟର ପୁରସ୍କାର ବିତରଣ ସଭାକୁ ବକ୍ତା ହୋଇ ଯିବାଲାଗି ନିମନ୍ତ୍ରଣ କରିବେ । ବାହାବ୍ରତରେ ଭୋଜିକୁ ଡାକିବେ ।

କଲେଜ ଭିତରେ ବା ବାହାରେ ଯୁବକଟିର ଖ୍ୟାତି ଯେତିକି ବଢୁଥିବ ସେତିକି ଅଧିକ ଈର୍ଷାନ୍ୱିତ ହେଉଥିବେ ସତୀର୍ଥ ଅଧ୍ୟାପକଗଣ । ଯୁବକଟିର ଅଧ୍ୟାପନାର ଢଙ୍ଗ, ଆଳାପ-ଆଲୋଚନାର ମର୍ମ, ଘରୋଇ ଉଦ୍ୟମରେ ସର୍ବୋଚ୍ଚ ଡିଗ୍ରୀପ୍ରାପ୍ତ କଲେଜଟିର ଅଧିକାଂଶ ଅଧ୍ୟାପକଙ୍କର ହେଉଥିବ ଗାତ୍ରଦାହର କାରଣ । ତଥାପି ସେମାନେ ନୀରବ ରହୁଥିବେ ଓ ଯୁବକଟିକୁ ଆଦର କରିବାର ଛଳନା କରୁଥିବେ ।

ଦିନେ ଏମିତି ଏକ ଘଟଣା ଘଟିବ ଯେ କ୍ଲାସ ଭିତରେ ଅକସ୍ମାତ୍ ଅନ୍ୟମନସ୍କ ହୋଇଯିବ ଯୁବକଟି । ସେଦିନ ନୂଆ ଝିଅଟିଏ କ୍ଲାସରେ ବସିଥିବ । ଅନ୍ୟୂନ ପାଞ୍ଚଫୁଟ ଉଚ୍ଚତା ବିଶିଷ୍ଟ ଗୋରା ଝିଅଟେ । ଶ୍ରାବଣର ନଈ ପରି ଭରା ଦେହ । ଆଖିରେ ନୀଳଢେଉ, ଓଠରେ ରକ୍ତ ଗୋଧୂଳି । କ୍ଲାସରୁ ଫେରି ଯୁବକଟିକୁ ଲାଗିବ ଯେମିତି କଲେଜ ସାରା ବିଚ୍ଛୁରି ହୋଇ ପଡ଼ିଚି ସେଇ ଝିଅଟି, ଝାଉଁବଣର ଜହ୍ନ ରାତି ପରି ।

ଝିଅଟି ବି ଅନ୍ୟମନସ୍କ ରହୁଥିବ କ୍ଲାସରେ । ସମସ୍ତଙ୍କ ଅଲକ୍ଷ୍ୟରେ ଯୁବକଟି ଉପରକୁ ଉଦ୍ଧତ ଦୃଷ୍ଟି ଫିଙ୍ଗି, କ୍ଷଣାନ୍ତରେ କ'ଣ ସବୁ ଲେଖି ଯାଉଥିବ ତା' ଖାତାରେ, ପ୍ରବୀଣା ଛାତ୍ରୀଟି ପରି ।

ସେଦିନ କଲେଜରୁ ଫେରିଲାପରେ ଯୁବକଟିକୁ କିଛି ଭଲ ଲାଗୁ ନ ଥିବ । ତଥାପି ସବୁଦିନମାନଙ୍କ ପରି ସେ ମ୍ୟାଗାଜିନ୍ ପଢ଼ିବ, ଖବରକାଗଜର ପୃଷ୍ଠା ଲେଉଟାଇବ ! କିନ୍ତୁ ବାରମ୍ବାର ତା' ଛାତି ଭିତରେ ମୃଦୁ ବିସ୍ଫୋରଣଟିଏ ହେଉଥିବ । ତାକୁ ଲାଗୁଥିବ ଯେମିତି ବାହାରେ ଜହ୍ନ ଉଇଁଚି । ଗାଁ ବାଡ଼ିରେ ଜହ୍ନିଫୁଲର ଶୋଭାଯାତ୍ରା । ସମୁଦ୍ରର ଢେଉ ଯେମିତି ଅଳସପାଦରେ ଧାଇଁଆସୁଚି ଗାଁ ଦାଣ୍ଡର ବେଳା ଉପରକୁ । ସେ ପୁଣି ସଚେତନ ହୋଇଯାଉଥିବ ନିଜ ଭିତରେ । ପ୍ରିଲିମିନାରୀ ପରୀକ୍ଷା ମୁଣ୍ଡ ଉପରେ । ପରେ ପରେ ତିନୋଟି ବ୍ୟାଙ୍କ୍‌ର ରିଟିନ୍ ଟେଷ୍ଟ । ଜି.ଆଇ.ସି.ର ଇଣ୍ଟରଭ୍ୟୁ । ତା'ର ମନେ ପଡ଼ିଯାଉଥିବ ରବର୍ଟ ଫ୍ରଷ୍ଟଙ୍କ କବିତା, 'ମାଇଲ୍‌ସ ଟୁ ଗୋ...' ।

ତା'ପରଦିନ ପୁଣି କଲେଜ ବାହାରିଥିବ ଯୁବକଟି । ଅନ୍ୟ ଦିନମାନଙ୍କ ତୁଳନାରେ ସେଦିନ ସେ ମୁଣ୍ଡ କୁଣ୍ଡେଇବାରେ ଅଧିକ ସମୟ ଖର୍ଚ୍ଚ କରିଥିବ । ଭଲ ଭାବରେ ଇନ୍ କରିଥିବ ସାର୍ଟ । ବୁଟ୍ ପାଲିସ୍ କରିଥିବ ଏକାଧିକବାର । କଲେଜରେ ପହଞ୍ଚି କ୍ଲାସ୍ ନବାକୁ ଜମା ତା'ର ଇଚ୍ଛା ହେଉ ନ ଥିବ । ତଥାପି ଗୋଟେ ଫାଷ୍ଟ୍ ଇଅର୍ କ୍ଲାସ୍‌କୁ ସେ ଯିବ ଓ ଘଣ୍ଟା ବାଜିବାର ଦଶ ମିନିଟ୍ ପୂର୍ବରୁ କ୍ଲାସ୍ ଛାଡ଼ି ଚାଲିଆସିବ । କମନ୍‌ରୁମ୍‌ରେ ପହଞ୍ଚି ବେସିନ୍ ପାଖକୁ ଯାଇ ଚକ୍‌ଗୁଣ୍ଡ ଧୋଇ ହବ ଓ ପୁଣି ମୁଣ୍ଡ କୁଣ୍ଡେଇବ । ତା'ପରେ କମନ୍‌ରୁମ୍‌ର ଗୋଟିଏ କୋଣରେ ବସି ସିଗାରେଟ୍ ପିଇବ, ସିଗାରେଟ୍‌ଟି ଅଧା ଜଳିଥିବ କି ନାହିଁ କମନ୍‌ରୁମ୍ ପିଅନ ଆସି କହିବ, ସାର୍, ଆପଣଙ୍କୁ ଝିଅ ପିଲାଟେ ଡାକୁଚି । ଯୁବକଟି କିଛି ଉତ୍ତର ଦେବ ନାହିଁ । ସାମାନ୍ୟ ବିରକ୍ତି ପ୍ରକାଶ କରିବ ଓ ସିଗାରେଟ୍ ଫୋପାଡ଼ି ବାହାରକୁ ଆସିବ ।

ବାହାରକୁ ଆସିବାକ୍ଷଣି ସେଇ ଝିଅଟି ଏକା ଠିଆ ହୋଇଥିବାର ଦେଖି ଯୁବକଟି ଟିକିଏ ବିବ୍ରତ ହବ । ଗତକାଲି ଅପେକ୍ଷା ଏବେ ଝିଅଟି ଅଧିକ ସ୍ମାର୍ଟ୍ ଦେଖାଯାଉଥିବ । ଝିଅଟି ସାମାନ୍ୟ ହସିଦବ ଓ କହିବ, "ସାର୍, କାଲି ଆପଣଙ୍କ କ୍ଲାସ୍ ବହୁତ ଭଲ ଲାଗିଲା ।" ଯୁବକଟି ନୀରବ କୃତଜ୍ଞତାଟିଏ ଫିଙ୍ଗିବ । ଝିଅଟି ପୁଣି କହିବ,

''ସାର୍, ମୁଁ ଭୁବନେଶ୍ୱର ଓମେନ୍‌ସ କଲେଜରେ ପଢୁଥିଲି । ଭାଉଜ ଏବେ ଗାଁରେ ରହିବେ ବୋଲି ଟ୍ରାନ୍‌ସଫର କରି ଆଣିଲି ଏଠାକୁ । ସେଠାକାର ମ୍ୟାଡାମ୍‌ମାନେ ଆଦୌ ଭଲ ପଢ଼ାନ୍ତିନି । ଖାଲି ନିଜ କାମରେ ବ୍ୟସ୍ତ । ସାର୍, ଆପଣ ଟିକିଏ ସାହାଯ୍ୟ କରିବେ । ମୁଁ ଯେମିତି ଅନର୍ସଟା ପାଇବି ।'' ଯୁବକଟି ମୁଣ୍ଡ ହଲେଇବ । ପ୍ରଗଲ୍‌ଭା ଝିଅଟି କହି ଚାଲିଥିବ । ''ସାର୍, ଆପଣ କ'ଣ ଏ କଲେଜରେ ବେଶି ଦିନ ରହିବେ ? ଆପଣ କେତେ ବ୍ରିଲିଆଣ୍ଟ ! କଂପିଟିଟିଭ୍ ଦଉଛନ୍ତି । କେତେବେଳେ ଯେ ଆମକୁ ଛାଡ଼ି ଚାଲିଯିବେ.... !'' ଯୁବକଟି ଟିକିଏ ହସିବ ଓ କହିବ, ''ତଥାପି କିଛି ଦିନ ଅଛି । ଅନ୍ତତଃ ତମ ବ୍ୟାଚ୍ ପରୀକ୍ଷା ଦେଲା ପର୍ଯ୍ୟନ୍ତ ।''

ତା'ପରେ ଝିଅଟି ସହ ଯୁବକଟିର ପ୍ରାୟ ପ୍ରତ୍ୟହ ଏମିତି କଥାବାର୍ତ୍ତା ଚାଲିବ ଓ ବହିପତ୍ରର ଆଦାନପ୍ରଦାନ ଘଟିବ । ପରେ ପରେ ବହିମାନେ ସୁସଜ୍ଜିତ ହସ୍ତାକ୍ଷରମାନଙ୍କର ପରିବାହକ ହେବେ । ଏମିତି ଜୀବନ୍ତ ଡ୍ରାମାଟିଏ କଲେଜ କ୍ୟାଂପସ୍‌ରେ ମଞ୍ଚସ୍ଥ ହେଉଥିବ । କିନ୍ତୁ ଏଇ ଡ୍ରାମାର ଖଳନାୟକ ଭୂମିକାରେ ଠିଆ ହେବେ ନିକଟବର୍ତ୍ତୀ ହାଇସ୍କୁଲର ପ୍ରାଜ୍ଞ ପ୍ରଧାନଶିକ୍ଷକ ମହୋଦୟ । ଅଧ୍ୟାପକ କେତେଜଣ ଅବଶ୍ୟ ତାଙ୍କୁ ସହାୟତା କରିବେ । ସେଇମାନଙ୍କ ପ୍ରରୋଚନାରେ ଦେଶର ଆଗାମୀ କର୍ଣ୍ଣଧାର ହେବାର ସମ୍ଭାବନା ବହନ କରୁଥିବା ଛାତ୍ର କେତେଜଣ ଯୁବକଟିର ନାଁ ପାଖରେ ଯୁକ୍ତ ଚିହ୍ନ ଦେଇ ଝିଅଟିର ନାଁ ଲେଖିବେ ବ୍ଲାକ୍‌ବୋର୍ଡମାନଙ୍କରେ, ପରେ ପରେ କଲେଜ କାନ୍ଥରେ ।

ତା'ପରେ ଯୁବକଟି ଲୋକପ୍ରିୟତା ଓ ଛାତ୍ରପ୍ରିୟତା ହରେଇବସିବ ଓ ଆସ୍ତେ ଆସ୍ତେ ଉଦାସ ଦେଖାଯିବ ।

ଝିଅଟି ସଂପର୍କରେ ଅନେକ କଥା ଯୁବକଟିର କାନରେ ବାଜୁଥିବ । କିନ୍ତୁ ସେ ସବୁକୁ ମିଛ ମଣୁଥିବ ଯୁବକଟି । ହଠାତ୍ ଦିନେ ସେ ବେନାମୀ ଲଫାପାଟିଏ ପାଇବ ଓ ତା' ଭିତରେ କେତୋଟି ଚିଠି ଆବିଷ୍କାର କରିବ । ସେ ଚିଠିଗୁଡ଼ିକରେ ଏକ ନିର୍ଦ୍ଦିଷ୍ଟ ସ୍ଥାନ ସହ ଦେଢ଼ ବର୍ଷ ତଳର ତାରିଖ ଲେଖାଥିବ ଓ ଜୟନ୍ତ ନାମକ କୌଣସି ଯୁବକକୁ ସମ୍ବୋଧନ କରାଯାଇଥିବ । ଚିଠିର ଅକ୍ଷର ଥିବ ଅବିକଳ ଏଇ ଝିଅଟିର ସୁସଜ୍ଜିତ ହସ୍ତାକ୍ଷର ପରି, ଯୁବକଟି ନିକଟକୁ ବିଭିନ୍ନ ସମୟରେ ପ୍ରେରିତ ଚିଠିଗୁଡ଼ିକର ବିଷୟବସ୍ତୁ ସହ ଏହି ଚିଠି କେତୋଟିର ଥିବ ଅପୂର୍ବ ସାମଞ୍ଜସ୍ୟ ଓ ଚିଠିର ପ୍ରେରିକା ସ୍ଥାନରେ ଲେଖାଥିବ ଏଇ ଝିଅଟିର ନାଁ ।

କାହାଣୀର ରାଜପୁତ୍ର ପରି ପଥର ପାଲଟି ଯାଉଥିବ ଯୁବକଟି । ଅବିଶ୍ୱାସର ଅଂଧାରରେ ଲୁଚିଯାଉଥିବ ସ୍ୱପ୍ନମୟ ଜହ୍ନରାତି, ନିର୍ବାକ୍ ଦୁଃଖରେ ଶଢ଼ି ଯାଉଥିବ ଯୁବକଟି, ଏକା ଏକା ।

ଝିଅଟି କିନ୍ତୁ ନିୟମିତ କଲେଜ ଆସୁଥିବ ଆଗପରି ଓ ଗପୁଥିବ ନିର୍ବିକାର ଭାବରେ । କ୍ଷମଣୀୟ ଅପରାଧ ପରି ଯୁବକଟି ଭୁଲିଯିବାକୁ ଚେଷ୍ଟା କରୁଥିବ ଝିଅଟିର ଦୁର୍ବଳ ଅତୀତ ।

ତା'ପରେ ସମର୍ ଭ୍ୟାକେସନ୍‌ରେ ଘରକୁ ଯିବ ଯୁବକଟି । କିନ୍ତୁ ଘରେ ତାକୁ କିଛି ଭଲ ଲାଗୁ ନ ଥିବ, କାରଣ ଝିଅଟିଠାରୁ ଚିଠି ପାଇବାର ତାରିଖ ଘୁଞ୍ଚି ଘୁଞ୍ଚି ଯାଉଥିବ । ସାରା ଖରାବେଳଟା ପଢ଼ା ଘରେ ଶୋଇ ଶୋଇ ଝିଅଟି କଥା ଭାବୁଥିବ ଯୁବକଟି । ଯୁବକଟିର ଏମିତି ଚୁପ୍‌ଚାପ୍ ଭାବଭଙ୍ଗୀ ଦେଖି ତାକୁ ସଂଦେହ କରୁଥିବେ ତା'ର ମା' ଓ ଭଉଣୀ । ବାପା ବେଳେବେଳେ ପ୍ରଶ୍ନ କରୁଥିବେ ଅନ୍ୟାନ୍ୟ ଚାକିରି ବିଷୟରେ । ଯୁବକଟି ବ୍ୟାଙ୍କ ପରୀକ୍ଷା ଦେବା ଆଳରେ ବାଣୀବିହାର ଆସିବ ଓ ସେଠୁ କଲେଜ ଆଡ଼େ ମୁହାଁଇବ । କଲେଜ ଯିବାବେଳେ ଯୁବକଟି ଭାବୁଥିବ କେମିତି ଝିଅଟି ସହ ଟିକେ ଦେଖା ହୋଇଯା'ନ୍ତା କି । ନଚେତ୍ ମୁହୂର୍ତ୍ତକ ଭିତରେ ବିତିଯା'ନ୍ତା କି ଏଇ ସପ୍ତାହଟି, କଲେଜ ଖୋଲିଯା'ନ୍ତା ଓ ସେ ଆଗପରି ଗପନ୍ତା ଝିଅଟି ସହ ।

କିନ୍ତୁ କଲେଜକୁ ନ ଯାଇ ବାଟରୁ ଫେରିଆସିବ ଯୁବକଟି ସେଦିନ । କାରଣ ବସ୍ ଭିତରେ କେତେକ ସ୍ଥାନୀୟ ପ୍ରୌଢ଼ଙ୍କ ଆଲୋଚନାରୁ ସେ ଜାଣିବ ଯେ ଝିଅଟିର ବାହାଘର ହୋଇଯାଇଛି, ଜଣେ ଇଂଜିନିୟରଙ୍କ ସହ, ଦିନେ ଦୁଇଦିନ ହବ ।

ଯୁବକଟି ଆଉ କେବେ ବି କଲେଜ ଯିବନି । ବାଣୀବିହାର ହଷ୍ଟେଲକୁ ପୁଣି ଥରେ ଆପଣାର କରିବ । ସମୟର ଲଟେରି ଉପରେ ନିଜକୁ ବାଜି ରଖି ଅନିଶ୍ଚିତତାକୁ ପ୍ରତୀକ୍ଷା କରିବ ।

× × × × ×

ବେଶ୍ କିଛି ଦିନ ପରେ ହଠାତ୍ ଯୁବକଟିର ଦେଖା ହବ ସେଇ ଝିଅଟି ସହ, ଭୁବନେଶ୍ୱର ବସ୍‌ଷ୍ଟାଣ୍ଡରେ । ଯୁବକଟି ପ୍ରଥମେ ଦୋଦୋଚିହ୍ନା କରିବ । ହେଲେ ଝିଅଟି ଭିଡ଼ ଭିତରୁ ଧାଇଁଆସିବ ଓ 'ସାର୍' ବୋଲି କହି ନମସ୍କାର କରିବ । ଝିଅଟିର କପାଳରେ ଥିବ ସିନ୍ଦୂରର ଟୋପାଟିଏ, ମ୍ଳାନ ଜହ୍ନ ପରି । କାନ୍ଧରେ ଓହଳିଥିବ ଭ୍ୟାନିଟ୍ ବ୍ୟାଗ୍ । ଝିଅଟି ଦିଶୁଥିବ କୋଉ ଶୀତାର୍ତ୍ତ ଅପରାହ୍ଣର ମହଳ ଖରାପରି ଉଦାସ ଉଦାସ । ଯୁବକଟିର ସମ୍ଭାଷଣକୁ ଅଧିକ ଅପେକ୍ଷା ନ କରି ଝିଅଟି କହିବ, ''ସାର୍, ଆପଣ ଏବେ ବି.ଜେ.ବି.ରେ ଅଛନ୍ତି ନା ? ମୁଁ ଜାଣେ । ଆପଣ ସିନା ମୋ ଖବର ରଖନ୍ତିନି, ହେଲେ.....'', ଝିଅଟି ଏମିତି କେତେକ ମାପଚୁପ କଥା ଗପିବ ଓ ସେ ଏବେ ୟୁନିଟ୍ ଆଠର ଏକ ସ୍କୁଲରେ ମିଷ୍ଟ୍ରେସ ଅଛି ବୋଲି କହିବ । ତା'ପରେ ଅନୁରୋଧ କରିବ ତା' କ୍ୱାର୍ଟର୍ସକୁ ଯିବା ପାଇଁ । ଯୁବକଟି ପ୍ରଥମେ ନାହିଁ ନାହିଁ କରୁଥିବ ଓ ପରେ ରାଜିହବ । ଦୁହେଁ ଟାଉନ୍ ବସ୍ ଚଢ଼ିବେ । ସ୍ଥାନାଭାବରୁ ଠିଆ ହେବେ ବସ୍‌ର ରେଲିଂ ଧରି ।

ପାଖାପାଖି । ଦେହରେ ଦେହ ବାଜୁଥିବ । ଭିଡ଼ ଭିତରେ ଅସ୍ୱସ୍ତି ଲାଗୁଥିବ । ଅଥଚ ସମୟ ଜଣାପଡୁ ନ ଥିବ ।

ବସ୍‌ରୁ ଓହ୍ଲେଇବାବେଳେ ଭ୍ୟାନିଟ୍ ବ୍ୟାଗ୍ ଖୋଲିବାର ଉପକ୍ରମ କରିବ ଝିଅଟି । କିନ୍ତୁ ଯୁବକଟି କଣ୍ଡକ୍‌ଟରକୁ ପଇସା ଦେଇଦେବ । ଝିଅଟି ଅବଶ୍ୟ କୌଣସି ପ୍ରତିବାଦ କରିବାର ଛଳନା ବି କରିବ ନାହିଁ । ତା'ପରେ ଦୁହେଁ ଚାଲିବା ଆରମ୍ଭ କରିବେ । ଯୁବକଟି ଭାବୁଥିବ ଅଳ୍ପ ସମୟ ପରେ ସେ ଝିଅଟିର ଫ୍ଲାଟରେ ପହଞ୍ଚିବ । ଝିଅଟିର ଇଂଜିନିୟର ସ୍ୱାମୀ ହୁଏତ ଡ୍ରଇଁ ରୁମ୍‌ରେ ବସି ଖବରକାଗଜ ପଢୁଥିବେ ବା ଫେରି ନ ଥିବେ ଅଫିସରୁ । ଝୁଲଣାରେ ହୁଏତ ଝୁଲୁଥିବ ସୁଦର୍ଶନ ଶିଶୁଟିଏ, ଆୟାର ତତ୍ତ୍ୱାବଧାନରେ । ପିଲାଟିକୁ ଯେ କ'ଣ ଉପହାର ଦବ – ସେ ବିଷୟରେ ହଠାତ୍ ଚିନ୍ତିତ ହୋଇପଡ଼ିବ ଯୁବକଟି । କିଛି ଗୋଟେ ଆଣିବାକୁ ଭୁଲିଯାଇଥିବାରୁ ନିଜ ଉପରେ କ୍ଷୁବ୍ଧ ହେଉଥିବ ।

ସଂଙ୍ଗ ନଇଁ ଆସୁଥିବ ଓ ଯୁବକଟିକୁ ଆଶ୍ଚର୍ଯ୍ୟ କରି ଝିଅଟି ଗୋଟେ ଛୋଟ କ୍ୱାର୍ଟର୍ସର ତାଲା ଫିଟେଇବ ।

ଯୁବକଟିର ମୁଣ୍ଡ ଉପରେ ବହିଯିବ ପ୍ରଶ୍ନବାଚୀର ଝଡ଼ଟିଏ, ଅଥଚ ସେ ଚୁପ୍‌ଚାପ ଡ୍ରଇଁ ରୁମ୍‌ରେ ଅପେକ୍ଷା କରି ବସିବ ଓ ଝିଅଟି ଯିବ ଚା' ତିଆରି କରିବାକୁ । ଝିଅଟିର ସ୍ୱାମୀର ଚେହେରା କିପରି, ଜାଣିବାକୁ କୌତୂହଳୀ ହବ ଯୁବକଟି । ସେ ଡ୍ରଇଁ ରୁମ୍‌ର କାନ୍ଥ ଉପରେ ଦୃଷ୍ଟି ଢାଳିବ ଅଥଚ କୌଣସି ଯୁଗଳ ଫଟୋ ନ ଦେଖି ନିରାଶ ହବ । ତା'ପରେ ସେ ଝିଅଟିର ଶୋଇବାଘରକୁ କଣେଇ କଣେଇ ଚାହିଁବ ଓ ସେଠାରେ ଦେଖିବ ଜଣିକିଆ ଖଟଟିଏ ଓ ଖଟଷ୍ଟାଣ୍ଡରେ ଓହଳିଥିବା କେତୋଟି ଶାଢ଼ି, ସାୟା, ବ୍ରେସିୟର ଇତ୍ୟାଦି । ଯୁବକଟିର ସନ୍ଦେହ ଆହୁରି ଜମାଟ ବାନ୍ଧିବ । ଝିଅଟି କ'ଣ ତ୍ୟକ୍ତଭର୍ତ୍ତୃକା(?), ଏମିତି ନିଷ୍ଠୁର ପ୍ରଶ୍ନଟିଏ ବାଟ ଓଗାଳିବ ଯୁବକଟିକୁ ।

ଝିଅଟି କିଛି ସମୟ ପରେ ଦୁଇ କପ୍ ଚା' ଧରି ଆସିବ ଓ ଦୁହେଁ ପାଖାପାଖି ବସି ଚା' ପିଇବେ । ସମବେଦନାର ଶବ୍ଦଟିଏ ଖୋଜୁଥିବ ଯୁବକଟି ଅଜାଡ଼ିଦବାପାଇଁ ଝିଅଟିର ପାଦତଳେ । ଅଥଚ ପାଟି ଖୋଲିବାକୁ ତା'ର ସାହସ ହେଉ ନ ଥିବ । ଝିଅଟି ବି ସେମିତି କ'ଣ କହିବ କହିବ ହଉଥିବ ଅଥଚ ଯୁବକଟି ଅସମ୍ଭବ ଭାବରେ ନୀରବ ରହୁଥିବାର ଦେଖି କିଛି କହିପାରୁ ନ ଥିବ ।

ଏମିତି ସେମାନେ ବସିଥିବେ ଓ ବସିଥିବେ । ଆତ୍ମହନ୍ତା ମୁହୂର୍ତ୍ତମାନେ ଖସିପଡୁଥିବେ କାନ୍ଥ ଘଣ୍ଟାର ଆଁ ଭିତରୁ, ନିର୍ଲିପ୍ତ ଭାବରେ ।

ତା'ପରେ ଯୁବକଟି ଉଠି ଠିଆହବ ଓ ଯିବାକୁ ଉଦ୍ୟତ ହେଉଥିଲାବେଳେ କହିବ, "ତମେ ଏମିତି ଏକା ଏକା କିପରି ବଞ୍ଚୁଛ ଶ୍ରଦ୍ଧାଞ୍ଜଳି ?"

ପ୍ରାକ୍-ଆଷାଢ଼ର ବିକ୍ଷିପ୍ତ ବାରିପାତ ପରି ଝିଅଟିର ଦୁଃଖ ସବୁ ବର୍ଷିଯିବ ଆଖିରେ ଆଖିରେ । ଶାଢ଼ିରେ ମୁହଁ ଲୁଚାଇ ଝିଅଟି କହିବ, ''ଏମିତି ତ ଚିରକାଳ ଏକା ଏକା ରହିବାକୁ ହବ ସାର୍ । ନିର୍ଦ୍ଦିଷ୍ଟ ଠିକଣା ଲେଖା ହୋଇଥିବା ଚିଠିଟି କାହାର କାହିଁକି ଦର୍କାର ହବ ଯେ ?''

ଗୋଟେ ନିବିଡ଼ ଆନ୍ତରିକତାରେ ପୋତି ପଡୁଥିବ ଯୁବକଟିର ମନର ମୁହାଣ । ଅଥଚ ଆଉ ଶବ୍ଦଟିଏ ବି ଉଚ୍ଚାରଣ କରିବାକୁ ଯେମିତି ତା'ର ସାମର୍ଥ୍ୟ ନ ଥିବ !

ତା'ପରେ କିଛି ସମୟ ବିତିଯିବ ନୀରବରେ । ଯୁବକଟି ଦୀର୍ଘଶ୍ୱାସଟିଏ ଛାଡ଼ି ପୁଣି ଯିବାକୁ ବାହାରିବ । ଝିଅଟି ଚିହ୍ନିଁ ପଡ଼ିବ ନିଦରୁ ଉଠିଲା ପରି ଓ ତା' କଣ୍ଠରୁ ନିଗିଡ଼ି ପଡୁଥିବ କ୍ଷୀଣତର ଶବ୍ଦ କେତୋଟି –''ଆଜି ରାତିଟା ରହିଗଲେ ହୁଅନ୍ତାନି ସାର୍ ?''



# ମହାଶୂନ୍ୟରେ ଗୋଟେ ଘରର ନକ୍ସା

ଟେବୁଲ ଭର୍ତ୍ତି ଫାଇଲ୍, ଫାଇଲ୍ ଭର୍ତ୍ତି ଆଇନ୍ । ଆଇନ୍‌ର ଆଇନାକୁ ଘଷିମାଜି ଚିକ୍‌ଚିକ୍ କରିବାପାଇଁ ଟିପ୍‌ପଣୀ ପରେ ଟିପ୍‌ପଣୀ, କୋଉଠି ପୃଷ୍ଠା ପୃଷ୍ଠା ବ୍ୟାପୀ ତ କୋଉଠି ଭାରି ସଂକ୍ଷିପ୍ତ ଯେମିତି, 'ଯଥା ପ୍ରସ୍ତାବ' । ଏହି ନିରର୍ଥକ ଟୀକା-ଟିପ୍‌ପଣୀର ପ୍ରଲମ୍ବିତ ଅର୍ଗଳି ଭିତରେ ଶ୍ୱାସରୁଦ୍ଧ ହୋଇଯାଉଥିବା ବେଳେ ସ୍ୱୟମ୍ଭୁଙ୍କର ମନେପଡ଼େ କବିତା କଥା । ଆଖି ସାମ୍ନାରେ ଝଲସିଉଠେ କାଚକେନ୍ଦୁ ଜଳଭରା ପୋଖରୀ ପରି କାଗଜର ଫର୍ଦ୍ଦଟିଏ, ଯୋଉଠି ଯୁଗପତ୍ ଫୁଟିଉଠେ ଶବ୍ଦର ଶତଦଳ ।

ଏହି ପଦ୍ମମୟ ମୁହୂର୍ତ୍ତରେ ହିଁ ସ୍ୱୟମ୍ଭୁଙ୍କ ସ୍ମୃତିରେ ଲେସି ହୋଇଯାଏ ପଦ୍ମାନନାଟିଏ ! ଷୋଡ଼ଶୀ ମୁହଁଟିଏ ! ଆଃ.... ପ୍ରାଚୀର ସେ ମୁହଁ କେଡ଼େ ପ୍ରାଚୀନ ସତେ ସ୍ୱୟମ୍ଭୁଙ୍କ ପାଇଁ । ସେ ଶିହରିତ ହୁଅନ୍ତି । ପର ମୁହୂର୍ତ୍ତରେ ଗୋଟେ ଥମ୍ ଥମ୍ ଆକାଶର ଔଦାସୀନ୍ୟ ତାଙ୍କୁ ଗ୍ରାସ କରେ । ପ୍ରାଚୀର ସେ ତାଳତମାଳ କେଶରେ ପକ୍ୱତାର ମୃଦୁ ସ୍ପର୍ଶ, ତା'ର ଉର୍ମିଚଞ୍ଚଳ ଆଖିରେ ଶିଥିଳତାର ଆସ୍ତରଣ । ସ୍ୱୟମ୍ଭୁ ମନେ ମନେ ହସନ୍ତି । ତାଙ୍କୁ ଯେତେବେଳେ ଚାଳିଶୀ ଧରିଲାଣି, ପ୍ରାଚୀ ବା କିପରି ଅବକ୍ଷୟରୁ ବର୍ତ୍ତିପାରନ୍ତା ?

ଏଇ ବୟସରେ ବି ପ୍ରାଚୀ ମୁହୁର୍ମୁହୁଃ ମନେପଡୁଛି । ଅବଶ୍ୟ ପ୍ରାଚୀର ବୟସ୍କ ରୂପକଥା କେବେ ବି ଭାବୁ ନ ଥିଲେ ସ୍ୱୟମ୍ଭୁ, ତା' ସହ ଏହି ମାସକ ତଳେ ଭୁବନେଶ୍ୱରରେ ସାକ୍ଷାତ ନ ହେବା ପର୍ଯ୍ୟନ୍ତ ।

ପ୍ରାଚୀ ସହ ସାକ୍ଷାତ କୋଡ଼ିଏ ବର୍ଷ ପରେ, ଅକସ୍ମାତ୍ ଅପ୍ରତ୍ୟାଶିତ ଭାବରେ । ପୁଣି ଏଇ ଭୁବନେଶ୍ୱରରେ । ଉତ୍ତଳା ପବନର ଦୁକୂଳରେ ପିଟି ହେଉଥିଲା ସେ ଦିନ ଗୋଧୂଳିର ରକ୍ତଛିଟା । ସ୍ୱର୍ଣ୍ଣାଭ ଆକାଶକୁ ବିଦୀର୍ଣ୍ଣ କରିବାପାଇଁ ବିଜୁଳିବତିର ଫଉଜମାନଙ୍କ ପ୍ରସ୍ତୁତିରେ ବୋଧେ ଥାଏ ସାମାନ୍ୟ ବିଳମ୍ବ । ସ୍ୱୟମ୍ଭୁଙ୍କ ସ୍କୁଟରକୁ ଆବୋରି ଠିଆ ହେଲା ହଂସଧବଳ କାର୍‌ଟାଏ । କାର୍‌ର ଦ୍ୱାର ଖୋଲି ଯୋଉ ସୌମ୍ୟଦର୍ଶନ ମହିଳା ବାହାରି ଆସିଲେ, ତାଙ୍କୁ ଦେଖି ସ୍ୱୟମ୍ଭୁ କିପରି ବା ବିସ୍ମୟବିମୂଢ଼ ହୋଇ ନ ଥା'ନ୍ତେ । ଦୀର୍ଘ କୋଡ଼ିଏ ବର୍ଷ ପରେ ନିଜର ଏଇ ପ୍ରଗଲ୍‌ଭା ପ୍ରେମିକା ସହ ଯେ ସାକ୍ଷାତ ହେବ, ଏ କଥା କ'ଣ ସ୍ୱୟମ୍ଭୁ ଭୁଲରେ ବି ଚିନ୍ତା କରିଥିଲେ ?

ସାକ୍ଷାତ ମାତ୍ରକେ ପ୍ରାଚୀ ପୁଣି ପ୍ରଗଲ୍‌ଭା ହୋଇଗଲା କୋଡ଼ିଏ ବର୍ଷ ପୂର୍ବେ ବିଶ୍ୱବିଦ୍ୟାଳୟରେ ସାହିତ୍ୟ ପଢୁଥିବା ସେଇ ବିଦଗ୍ଧା ଛାତ୍ରୀଟି ପରି । ରାଜଧାନୀର ଜଣେ ପ୍ରତିଷ୍ଠିତ ଉଦ୍ୟୋଗପତିଙ୍କର ଯେ ସେ ସହଧର୍ମିଣୀ, ଏ କଥା ବୋଧେ କିଛିକ୍ଷଣପାଇଁ

ପାସୋରି ଦେଲା ପ୍ରାଚୀ । ସେହି କାବ୍ୟମୟ ଭାଷା, ସେଇ ଅନ୍ତରଙ୍ଗ ଉଚ୍ଚାରଣ, ସେଇ ପ୍ରଗଲ୍‌ଭତା । ସ୍ୱୟମ୍ଭୁ ବି ଭୁଲିଗଲେ ଯେ, ପ୍ଲସ୍ ଟୁ ଶେଷବର୍ଷରେ ଅଧ୍ୟୟନରତା, ହୁଏତ କାହାକୁ ଭଲ ପାଉଥିବା ଗୋଟେ ସ୍ୱପ୍ନାତୁରା କନ୍ୟାର ସେ ପିତା ବୋଲି ।

ସେଦିନ କହୁଥିଲା ପ୍ରାଚୀ, ସେ ଏବେ ବି ସ୍ୱୟମ୍ଭୁଙ୍କର କବିତା ପଢ଼େ । ବିମୁଗ୍ଧା ହୁଏ କବିତାର ବିନ୍ୟାସରେ । ମିଷ୍ଟର ଚୌଧୁରୀଙ୍କର ଫ୍ୟାକ୍‌ଟ୍ରି, ବିଜିନେସ୍, ବ୍ୟାଙ୍କ୍‌ବାଲାନ୍ସ– ସେସବୁର ସେ ଧାର ଧାରେ ନାହିଁ । ନା ସେ ରାଜଧାନୀର ମହିଳାମାନଙ୍କର ନେତ୍ରୀ ହବାକୁ ଆଗଭର ହୋଇଚି, ନା କେବେ କ୍ଲବ୍ ବା ପାର୍ଟିର ପାଖ ପଶିଚି । ଏବେ ବି ସେ ତୁଟାଇ ପାରିନି ନିରୋଳା ମୁହୂର୍ତ୍ତର ମୋହ । ପୁଣି ନିଜ ପୁଅକୁ ମିଷ୍ଟର ଚୌଧୁରୀଙ୍କ ପ୍ରତିବାଦ ସତ୍ତ୍ୱେ ଇଞ୍ଜିନିୟରିଂ ପଢ଼ିବାରୁ ନିବୃତ୍ତ କରି ଇଂରାଜୀ ସାହିତ୍ୟ ପଢ଼ଉଚି । ଉଦ୍ୟୋଗପତି ନ ହୋଇ କବି ହବାପାଇଁ ପ୍ରେରଣା ଦଉଚି ।

ଆଉ ସ୍ୱୟମ୍ଭୁ ନିଜେ ବି ତ ସେମିତି ଆଜିଯାକେ– ବସ୍ତୁବାଦୀ ଜଞ୍ଜାଳଠୁ ଅନେକ ଦୂରରେ । ଭୁବନେଶ୍ୱରରେ ଉଚ୍ଚପାହ୍ୟା ଅଫିସର ହବା ଅନେକ ଦିନ ହେଲାଣି ଅଥଚ ଜାଗା ଚାଖଣ୍ଡେ କିଣା ହୋଇନି । ପତ୍ନୀଙ୍କ ସହ ଏଥିଲାଗି ମନୋମାଳିନ୍ୟ । ରାମବାବୁଙ୍କର ପ୍ଲଟ୍ ପରେ ପ୍ଲଟ୍ ତ ଶ୍ୟାମବାବୁଙ୍କର କୋଠା ଉପରେ କୋଠା । ତାଙ୍କର ପରିସର କିନ୍ତୁ ଅଫିସ ଆଉ କ୍ୱାର୍ଟର୍ସ, ଫାଇଲ୍ ଉପରେ କଲମଗାର ତ କାଗଜ ଉପରେ ସ୍ୱପ୍ନବାନ୍ତି । କବିତାରେ ଜୀବନ, ଜୀବନରେ କବିତା ।

ପ୍ରକୃତରେ ପ୍ରାଚୀ ସହ ଦେଖାହେବା ପରେ ସ୍ୱୟମ୍ଭୁଙ୍କ ମୁଣ୍ଡ ଉପରେ ଦୀର୍ଘ କୋଡ଼ିଏ ବର୍ଷ ଧରି ଚାପି ହୋଇ ରହିଥିବା ପର୍ଯ୍ୟାପ୍ତ ଅବସୋସର ଭାର କୁଆଡ଼େ ଉଭେଇଗଲା ଯେମିତି ! ସେ ଭାବୁଥିଲେ, ପ୍ରାଚୀର ରୁଣ୍ଟୁଝୁଣ୍ଟୁ ପାଉଁଜିରେ ଗୋଟେ ଛୋଟ ଘର ମୁଖରିତ ନ ହେଲା ନାହିଁ, ତା' ନିଃଶ୍ୱାସର ସ୍ନିଗ୍ଧ ମଳୟରେ ଗୋଟେ ଧୂସର ପୃଥିବୀ ପଲ୍ଲବିତ ନ ହେଲା ନାହିଁ, କିନ୍ତୁ ତା'ପରି ଗୋଟେ ନିବିଡ଼ ଆକାଶର ଉଦାର ବିସ୍ତୃତି ଭିତରେ କବିଟିଏ ବିହଙ୍ଗମ ହୋଇ ଡେଣା ଝାଡ଼ି ଉଡ଼ି ପାରିଲା ତ ! ଏତେ ଦୂରରେ ଥାଇ ପ୍ରାଚୀ ଆହା କେତେ ନିକଟରେ ସତେ ! ସେ ପତ୍ନୀ ହୋଇଯାଇଥିଲେ, ନିକଟରେ ଥାଇ ବି ଦୂରେଇ ଯାଇଥା'ନ୍ତା ସିନା । ତୈଳ-ତଣ୍ଡୁଳ ସଂସାରର ଗତାନୁଗତିକତା ଭିତରେ ହୁଏତ ସ୍ୱପ୍ନମାନେ ହୋଇଥା'ନ୍ତେ କ୍ଷତାକ୍ତ, କବିତା ହୋଇଥା'ନ୍ତା ଅପାଙ୍‌କ୍ତେୟ ।

ପ୍ରାଚୀ କିନ୍ତୁ ଆଙ୍କି ଦେଇଛି ମହାଶୂନ୍ୟରେ କମନୀୟ ଗୋଟେ ଘରର ନକ୍ସା । ଯୋଉଠି ପ୍ରାପ୍ତି ନାହିଁ, ଅପ୍ରାପ୍ତି ନାହିଁ, ସଂସାର ନାହିଁ କି ବୈରାଗ୍ୟ ନାହିଁ । ଅଛି ଖାଲି ଜୀବନ, ଜୀବନମୟ ଜୀବନ ।

ଟେବୁଲ ଉପରେ ଥିବା ଫାଇଲ୍‌ର ପାହାଡ଼କୁ ଭାଙ୍ଗି ବୂରମାର କରିଦେଲେ ସ୍ୱୟମ୍ଭୁ । ସେ ବୋଧେ ମହାଶୂନ୍ୟର ସେହି ସ୍ୱପ୍ନମୟ ବଖରାକୁ ଆରୋହଣ କରୁଥିଲେ ତତ୍‌କ୍ଷଣାତ୍ ।



# କୁଆ

ସକାଳୁ ଉଠି ସ୍ନାନାଦି ନିତ୍ୟକର୍ମ ସମାପନ କଲାବେଳକୁ ମୋର କର୍ମ-ନିପୁଣା ସ୍ତ୍ରୀ ମୋ ପାଇଁ କପେ ଚା' ଏବଂ ମୋ ସହ ପ୍ରତ୍ୟହ ଖାଇବାକୁ ଆଗ୍ରହ ପ୍ରକାଶ କରୁଥିବା ମୋର ଏକମାତ୍ର କୁନିଝିଅ ରାନୁ ପାଇଁ କପେ କ୍ଷୀର ଏବଂ ଉଭୟଙ୍କପାଇଁ ଗୋଟିଏ ପ୍ଲେଟ୍‌ରେ କିଛି ବିସ୍କୁଟ୍ ଆଣି ଟି'ପୟ ଉପରେ ଥୋଇଦେଇଥିଲେ । ମୁଁ ଆସି ଟି'ପୟ ନିକଟରେ ପହଞ୍ଚିଲାବେଳକୁ ରାନୁ ଆସି ତା'ର ଆସନ ମାଡ଼ି ବସିଥିଲା । ଉଭୟ ଚା'ପର୍ବ ଶେଷ କଲୁ । ପ୍ରତିଦିନ ପରି ରାନୁର ପୁଷ୍ପକୋମଳ ଗଣ୍ଡଦେଶରେ ଚୁମ୍ବନ ଦେଇ ମୁଁ ସ୍କୁଟର ଷ୍ଟାର୍ଟ କଲି । ରାନୁ ହସିହସି ମୋ ଆଡ଼େ ଧାଇଁ ଆସିଲା ଏବଂ ନିତ୍ୟନିୟମିତ ଢଙ୍ଗରେ ମୋ ଆଡ଼େ ହାତ ହଲାଇ 'ଡ୍ୟାଡି଼ବାୟ' ବୋଲି କହିଲା । ମୁଁ ଟିକିଏ ହାତ ହଲାଇ ଚାଲିଗଲି ମୋର ଦୈନନ୍ଦିନ ବ୍ୟବସାୟ – ସାମ୍ବାଦିକତା କର୍ମରେ ।

ପ୍ରେସ୍ କ୍ଲବ୍‌କୁ ଯିବା ବାଟରେ କେହି କଥା ହେଉଥିବାର ଶୁଣିଲି ଯେ ହାଇୱେ ଉପରେ ଆକ୍‌ସିଡେଣ୍ଟ । ଠିକ୍ ସୈନିକ ସ୍କୁଲ ଛକରେ । ସ୍କୁଟର ବୁଲାଇଲି, ଆଜି ସକାଳର ପ୍ରଥମ ସମ୍ବାଦ ଆକ୍‌ସିଡେଣ୍ଟ । ଅବଶ୍ୟ ସାମ୍ବାଦିକ ଜୀବନରେ ଏସବୁ ଘଟଣା ନୂଆ ନୁହେଁ ।

ସୈନିକ ସ୍କୁଲ ଛକରେ ପହଞ୍ଚି ଦେଖିଲି ସତକୁ ସତ ଆକ୍‌ସିଡେଣ୍ଟ । ରକ୍ତାକ୍ତ ଶବଟିଏ ପଡ଼ିଚି ରାସ୍ତା ମଝିରେ । ଅଥଚ କୌଣସି ଗୋଟିଏ ହେଲେ ବି ଯାନ ଘଟଣା ସ୍ଥଳରେ ନାହିଁ । ଆକ୍‌ସିଡେଣ୍ଟ ପରେ କୌଣସି ଯାନଚାଳକ ଯେ ସମସ୍ତଙ୍କ ଆଖିରେ ଧୂଳି ଦେଇ ଫେରାର ହୋଇଯାଇଚି, ଏଥିରେ ମୋର ସନ୍ଦେହ ରହିଲା ନାହିଁ ।

ବିକୃତ ଦେଖାଯାଉଥିଲା ଶବଟି । ମୁଣ୍ଡ ଉପରେ ହୁଏତ ଚକ ମାଡ଼ିଯାଇଚି । ଚିହ୍ନା ପଡୁ ନାହିଁ କିଛି । ସେଥିରେ ପୁଣି ମାଛି ଭଣଭଣ । ପିଚୁରାସ୍ତା ଉପରେ ରକ୍ତ ପଡ଼ି ଶୁଖିଯାଇଚି । ସାମାନ୍ୟ ଦୁର୍ଗନ୍ଧ ବି ଆରମ୍ଭ ହୋଇଯାଇଥାଏ । ଆକ୍‌ସିଡେଣ୍ଟ ନିଶ୍ଚୟ ରାତିରୁ ହୋଇଚି – ମୁଁ ମନେ ମନେ ଚିନ୍ତାକଲି ।

ଆକ୍‌ସିଡେଣ୍ଟ ସ୍ଥାନରେ କିଛି କିଛି ଲୋକ ଜମୁଥିଲେ ଏବଂ କେହି କେହି କୌଣସି ବେପରୱା ମନ୍ତବ୍ୟ ଦେଇ ଚାଲିଯାଉଥିଲେ । "ହୁଏତ ଲୋକଟି ରସୁଲଗଡ଼ରୁ ପିଆପିଇ କରି ଫେରୁଥିବାବେଳେ ଗାଡ଼ି ଆଗରେ ପଡ଼ିଯାଇଚି"– କେହି କେହି କହୁଥିବାର ଶୁଣିଲି । କେହି ପୁଣି କହୁଥିଲେ, "ରାତି ସମୟରେ ହାଇୱେ ଉପରେ ମଦ୍ୟପ ଟ୍ରକ୍ ଡ୍ରାଇଭରମାନଙ୍କର ଯେଉଁ ଉତ୍ପାତ ନା, ଯିବା ପାଇଁ ଭୟ ଲାଗୁଚି ।"

ସାଇକେଲରେ ଯାଉଥିବା କେହି କେହି ହିପ୍‌ପୀଯୁବକ ବେଳେବେଳେ ଅନ୍ୟମନସ୍କ ଭାବରେ ପଚାରୁଥିଲେ, ‘‘ଏହା ଆକ୍‌ସିଡେଣ୍ଟ ନା ମର୍ଡ଼ର ? ହୁଏତ ଆକ୍‌ସିଡେଣ୍ଟ ନାଁରେ ମର୍ଡ଼ର କରାଯାଇପାରିଥାଏ । ଆଜିକାଲି କଟକ ଭୁବନେଶ୍ୱରର ଅବସ୍ଥା ବମ୍ବେ ବା କଲିକତା ଆଦି ମେଟ୍ରୋପଲିଟାନ୍ ସହରକୁ ବି ବଳିଗଲାଣି ।’’ ସେମାନଙ୍କ ପ୍ରଶ୍ନର କେହି ଉତ୍ତର ଦେଉ ନ ଥିଲେ ଏବଂ ସେମାନଙ୍କ ମନ୍ତବ୍ୟ କେହି କେହି ଶୁଣୁଥିଲେ ଆଉ କେହି କେହି ସେଥିପ୍ରତି ଆଦୌ କର୍ଣ୍ଣପାତ କରୁ ନ ଥିଲେ ।

ମୋଟରସାଇକେଲ୍ ବା ସ୍କୁଟରରେ ଯାଉଥିବା କେହି ଭଦ୍ରଲୋକ ଟିକିଏ ବ୍ରେକ୍ ଦେଇ ପଚାରୁଥିଲେ, ‘‘ଏ ଆକ୍‌ସିଡେଣ୍ଟ କ’ଣ ଫ୍ରେସ୍ ?’’

କ୍ୱଚିତ୍ କେହି ପଚାରୁଥିଲେ, ‘‘ଏ ଲୋକଟି ଭୁବନେଶ୍ୱରର ନା ଅନ୍ୟ କେଉଁଠିକାର ? ଏହାର ଘର ଲୋକ ଖବର ପାଇଲେଣି କି ?’’

କେହି କେହି ଅସମ୍ଭବ ଭାବରେ ଚିଡ଼ି ଉଠୁଥିଲେ ପୋଲିସ୍‌ବାଲାଙ୍କ ଉପରେ । ‘‘ପୋଲିସ କ’ଣ ଏଯାବତ୍ ଏ ସମ୍ବାଦ ପାଇ ନାହାନ୍ତି ? କେତେ ପର୍ଯ୍ୟନ୍ତ ଶବ ଏମିତି ପଡ଼ି ରହିଥିବ ରାସ୍ତା ମଝିରେ ?’’ ଏ ଉକ୍ତି ସହ ଯୋଗଦେଇ ନେତା ଢଙ୍ଗରେ କେହି କେହି ଶାସନ କଳର ଅପାରଗତା ବର୍ଣ୍ଣନା କରିବାକୁ ମଧ୍ୟ ଭୁଲୁ ନ ଥିଲେ ।

ନୀରବରେ ଠିଆ ହୋଇ ମୁଁ ସବୁ ଶୁଣୁଥିଲି ଏବଂ ଦେଖୁଥିଲି । ଆସ୍ତେ ଆସ୍ତେ ଗହଳି କମି ଆସୁଥିଲା । ହାଇୱେ ଉପରେ ଗତିଶୀଳ ଯାନମାନେ ସାମାନ୍ୟ ବ୍ରେକ୍ ଦେଇ ଚାଲିଯାଉଥିଲେ । ଯାତ୍ରୀମାନେ ଯାନ ଭିତରୁ କୌତୂହଳ ସହ ମୁହଁ ବୁଲାଇ ପୁଣି ମୁହଁ ଫେରାଇ ନେଉଥିଲେ ।

ମୁଁ ସାମାନ୍ୟ ଅନ୍ୟମନସ୍କ ହୋଇଯାଇଥିଲି ନିଛକ କବିଟିଏ ପରି । ଅବଶ୍ୟ ଏହା ସାମ୍ବାଦିକର କର୍ତ୍ତବ୍ୟବୋଧ ନୁହେଁ । ଇତ୍ୟବସରରେ ସେଠି ପୋଲିସବାଲାଟିଏ ଟହଲୁଥିବାର ଦେଖିଲି । ଏ ଆକ୍‌ସିଡେଣ୍ଟ କେତେବେଳର ବୋଲି ପ୍ରଶ୍ନ କଲି ତାଙ୍କୁ । ଆକ୍‌ସିଡେଣ୍ଟ ଗତକାଲିର ବୋଲି ଉତ୍ତର ଦେଲେ ସେ । ଏହାର ପୋଷ୍ଟମର୍ଟମ କିଛି ସମୟ ପରେ ହେବ ଏବଂ ଇନ୍‌ସପେକ୍‌ଟର ସାହେବ ଏହାର ତଦନ୍ତ କରୁଛନ୍ତି ବୋଲି ସେ ବିନା ପ୍ରଶ୍ନରେ ମୋତେ ଜଣାଇଲେ ।

ଶବଟିର ପ୍ୟାଣ୍ଟ ବା ସାର୍ଟ ପକେଟ୍‌ରୁ କୌଣସି ଦରକାରୀ କାଗଜପତ୍ର ବା ଟଙ୍କାପଇସା ମିଳିଛି କି ବୋଲି ମୁଁ ପ୍ରଶ୍ନ କରିବାରୁ ପୋଲିସବାଲା ଜଣକ ସାମାନ୍ୟ ବିବ୍ରତ ହେବା ପରି ଆଚରଣ କଲେ । ମୁଁ ଜଣେ ସାମ୍ବାଦିକ ବୋଲି ପରିଚୟ ଦେବାରୁ ସେ କହିଲେ ଯେ ସେପରି କୌଣସି କାଗଜପତ୍ର ମିଳି ନାହିଁ । କେବଳ ଗୋଟିଏ ଫାଙ୍କା ପର୍ସ ମିଳିଚି । ପୋଲିସବାଲାଟି ସହ ମୋର ବାକ୍ୟାଳାପବେଳେ ଘଟଣା ସ୍ଥଳରେ ପ୍ରାୟ କେହି ନ ଥିଲେ । ଯିଏ ଯେମନ୍ତେ ଦୃଶ୍ୟଟି ଦେଖୁଥିଲେ ଓ ନିଜ ନିଜ କାର୍ଯ୍ୟରେ ଚାଲି ଯାଉଥିଲେ ।

ଦିନର ବୟସ ବହୁତ ବଢ଼ି ଯାଇଥିଲା । ମୁଁ ଫେରିଆସିଲି ମୋର କ୍ୱାର୍ଟର୍ସକୁ ରିପୋର୍ଟ ଲେଖିବାପାଇଁ ।

କ୍ୱାର୍ଟର୍ସ ସାମନାରେ ପହଞ୍ଚିଲାବେଳକୁ ଅନେକ କୁଆଙ୍କର କା-କା ଶବ୍ଦରେ ମୋ କାନ ଅତଡ଼ା ପଡ଼ିଗଲା । ମୋ କ୍ୱାର୍ଟର୍ସ ତଥା ଅନ୍ୟ ପଡ଼ୋଶୀମାନଙ୍କ କ୍ୱାର୍ଟର୍ସ ସାମନା ଗଛରେ କୁଆମାନେ ଧାଡ଼ି ଧରି ବସି ଯୁଗପତ୍ ରଡ଼ି ଆରମ୍ଭ କରିଦେଇଥିଲେ । ମୁଁ ମନେ ମନେ ଭାବିଲି କିଛି ଗୋଟେ ଘଟିଛି ନିଶ୍ଚୟ !

ରାନୁ ଆସି ଠିଆ ହୋଇସାରିଥିଲା ମୋ ନିକଟରେ । ତା' ମୁହଁରେ ପ୍ରଶ୍ନବାଚୀର ଚିହ୍ନ ବେଶ୍ ଫୁଟି ଉଠୁଥିଲା । ସେ ମୋତେ ପ୍ରଶ୍ନ କଲା, ''ଡ୍ୟାଡି, ଆଜି କୁଆମାନେ କାହିଁକି ଏମିତି କା-କା ହେଉଛନ୍ତି ?'' ମୁଁ ହଠାତ୍ ତା' ପ୍ରଶ୍ନର ଉତ୍ତର ଦେବାକୁ ସକ୍ଷମ ହେଲି ନାହିଁ । ତା' ପିଠିରେ ହାତ ବୁଲାଉ ବୁଲାଉ ମୁଁ ଚାରିଆଡ଼କୁ ଦୃଷ୍ଟି ନିକ୍ଷେପ କଲି କୁଆମାନଙ୍କର ଏ ଅବୁଝା ଶବ୍ଦାବଳୀର କାରଣ ଜାଣିବାପାଇଁ । ହଠାତ୍ ଆବିଷ୍କାର କଲି ଯେ ମୋ କ୍ୱାର୍ଟର୍ସ ସାମନା ଇଲେକ୍ଟ୍ରିକ୍ ତାର ଉପରେ ମୃତ କୁଆଟିଏ ଝୁଲୁଚି । ମୁଁ ଚମକି ଉଠିଲି ନିଜ ଭିତରେ । ଏଠି ବି ଗୋଟେ ଆକ୍ସିଡେଣ୍ଟ !

ରାନୁ ପୁଣି ମୋତେ ପ୍ରଶ୍ନ କଲା, ''ଡ୍ୟାଡି କୁହ, କାହିଁକି ଏ କୁଆମାନେ ଏମିତି କା-କା ହେଉଚନ୍ତି ଅନେକ ସମୟ ହେଲା ?''

ହାତ ଠାରି ରାନୁକୁ ଦେଖାଇଦେଲି ମୃତ କୁଆଟିକୁ ଏବଂ ହାଲ୍କା ଭାବରେ କହିଲି, ''କୁଆଟିଏ ମରିଯାଇଚି ତ, ତେଣୁ କୁଆମାନେ ଏମିତି କା-କା ହେଉଚନ୍ତି ।''

ରାନୁ ପୁଣି ମୋତେ ପଚାରିଲା, ''କୁଆମାନେ କ'ଣ କାନ୍ଦୁଚନ୍ତି ଡ୍ୟାଡି ?'' ମୁଁ ଆଉଥରେ ଚମକି ଉଠିଲି ନିଜ ଭିତରେ । ସଂକ୍ଷେପରେ ରାନୁକୁ ଉତ୍ତର ଦେଲି ''ହଁ ।''

ରାନୁ ମୋତେ ଜାବୁଡ଼ି ଧରିଲା । ମୁଁ ବୁଝିପାରୁ ନ ଥିଲି ଭୟରେ ନା ସମ୍ବେଦନଶୀଳତାରେ !

ମୁଁ ରାନୁକୁ ମୋର ଛାତି ଉପରକୁ ଟେକିନେଲି । ମୋର ହୃତ୍‌କମ୍ପନ ବଢ଼ି ଯାଉଥିଲା । ରାନୁର ବି । ମୁଁ ମନେ ମନେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲି, 'ହେ ପ୍ରଭୁ, ମୋତେ ଏବଂ ରାନୁ ମା'କୁ ଆର ଜନ୍ମରେ କୁଆ କରି ଜନ୍ମ ଦିଅ' । ଘର ଭିତରୁ ସ୍ତ୍ରୀ ଡାକ ଛାଡୁଥିଲେ, 'କୁଆମାନଙ୍କୁ ଦେଖି କ'ଣ ଏମିତି ବାପ ଝିଅ କଥା ହଉଚ ? ଖାଇବ ଆସ । ଢେଲା ଫିଙ୍ଗି କୁଆମାନଙ୍କୁ ଘଉଡ଼େଇ ଦେଇପାରୁନ । ସକାଳ ପ୍ରହରୁ ଏ ସତ୍ୟାନାଶିଆ କୁଆଗୁଡ଼ାକ ବାସ କରେଇ ଦେଉ ନାହାନ୍ତି ।' ମୁଁ ସମ୍ବିତ୍ ଫେରିପାଇଲି । କ'ଣ ଏମିତି ଗୁଡ଼ାଏ ଭାବିଯାଉଛି ମୁଁ, ରାଜଧାନୀର ନାମଜାଦା ସାମ୍ବାଦିକ ଶ୍ରୀ ରାୟ... ?



# ପାଠିକା

ହୃଦୟରଞ୍ଜନ ଗୋଲେଇ ଛକରେ ଓହ୍ଲେଇଲାବେଳକୁ ଅପରାହ୍ନର ରକ୍ତିମ ସୂର୍ଯ୍ୟାଲୋକରେ ଭିଜାଭିଜା ଲାଗୁଥିବ ବାଲେଶ୍ୱର । ସାମାନ୍ୟ ଭିଡ଼ିମୋଡ଼ି ହୋଇ ସୁଦୀର୍ଘ ବସ୍ ଜର୍ଣ୍ଣିର କ୍ଳାନ୍ତି ମେଣ୍ଟାଉ ମେଣ୍ଟାଉ ସେ ଗୋଟେ ରିକ୍ସା ପାଖରେ ଅଟକି ଯାଇଥିବ ଓ ତାକୁ ଗୋପାଳଗାଁରେ ପହଞ୍ଚାଇ ଦବାପାଇଁ ରିକ୍ସାବାଲାଟିକି ନିର୍ଦ୍ଦେଶ ଦେଇଥିବ ।

ବାଲେଶ୍ୱର ଗୋପାଳଗାଁ ବିଷୟରେ ହୃଦୟରଞ୍ଜନର ଆଗରୁ କୌଣସି ଧାରଣା ନ ଥିବାରୁ, ରିକ୍ସା ଯୋଉ ଜାଗାରେ ରହିବ ସେଇଠି ଓହ୍ଲେଇ ପଡ଼ିବ ଓ ରିକ୍ସାବାଲାକୁ ଦୁଇ ଟଙ୍କା ବଢ଼େଇଦେବ । ଗୋଟେ ନୂଆ ଜାଗାରେ, ପୁଣି ଗୋଟେ ଝିଅର ଘର ଖୋଜିବା– କେମିତି ଅଡୁଆ ଅଡୁଆ ଲାଗୁଥିବ ହୃଦୟରଞ୍ଜନକୁ । ସେ ଗୋଟେ କଲଭର୍ଟ ଉପରେ ବସି କାହାକୁ କ'ଣ ପଚାରିବ ନ ପଚାରିବ, ଏମିତି ଭାବୁଥିବାବେଳେ ସେଇ ବାଟଦେଇ ସ୍କୁଲ ପିଲାଟିଏ ଯାଉଥିବାର ଦେଖି, ତାକୁ ଡାକିବ ଓ ଗୋପାଳଗାଁରେ ଗୀତାଞ୍ଜଳି ବିଶ୍ୱାଳର ଘର କେଉଁଠି, ସେ ଜାଣେକି ବୋଲି ପଚାରିବ । ପିଲାଟି ହଁ କି ନା କିଛି ନ କହି ପଳେଇଯିବ । ହୃଦୟରଞ୍ଜନ ପିଲାଟି ଉପରେ ଭୀଷଣ ରାଗିଯିବ ଓ ପିଲାଟି ପଢୁଥିବା ସ୍କୁଲରେ ସେ ମାଷ୍ଟର ହୋଇଥିଲେ ତା' ପ୍ୟାଣ୍ଟ ଖୋଲି ପଚାଶ ବେତ ପିଟିଥାନ୍ତା ବୋଲି ମନେ ମନେ ଭାବିବ ।

ତା'ପରେ ସେଇବାଟେ ଗୋଟେ ଆଇସ୍କ୍ରିମ୍‌ବାଲା ଯାଉଥିବାର ଦେଖି ହୃଦୟରଞ୍ଜନ ତାକୁ ହାତ ଠାରିବ ଅଥଚ ଆଇସ୍‌କ୍ରିମ୍‌ବାଲାଟି ସାଇକେଲରୁ ନ ଓହ୍ଲାଇ, ତା'ର ଆଇସ୍କ୍ରିମ୍ ସରିଗଲାଣି ବୋଲି ଇଙ୍ଗିତ ଦେଇ ଚାଲିଯିବ । ହୃଦୟରଞ୍ଜନକୁ ଗାଲରେ ଚାପୁଡ଼ା ବାଜିଲା ପରି ଲାଗିବ । ସେ ଜଣେ ଅଧ୍ୟାପକ ଓ କବି ହୋଇଥିବାସ୍ଥଳେ ତାକୁ ସ୍କୁଲ ପିଲାଟେ ବା ଆଇସ୍କ୍ରିମ୍‌ବାଲାଟେ ଖାତିର ନ କରିବା ଅତ୍ୟନ୍ତ ଦୁଃଖଦାୟକ ଘଟଣା ବୋଲି ସେ ଭାବିବ ଓ ଏମିତି ଭାବୁ ଭାବୁ ପକେଟ୍‌ରେ ହାତ ପୂରେଇ ସିଗାରେଟ୍‌ଟିଏ ବାହାର କରିବ ଓ ତହିଁରେ ଅଗ୍ନିସଂଯୋଗ କରି ତୃପ୍ତିରେ ସେବନ କରିବ ।

ଦୁଇଜଣ ଯୁବକ ବ୍ୟାଟ୍ ଧରି ଯାଉଥିବାର ଦେଖି ସେମାନଙ୍କୁ ଗୀତାଞ୍ଜଳିର ଠିକଣା ପଚାରିବାକୁ ଉଦ୍ୟତ ହେଉଥିଲାବେଳେ, କାଳେ ସେମାନେ ଗୀତାଞ୍ଜଳି ତା'ର କ'ଣ ହେବ ବୋଲି ଓଲଟି ପ୍ରଶ୍ନ କରିବେ, ତେଣୁ ତଳକୁ ମୁହଁ ପୋତି ସେମାନଙ୍କୁ ନ ଦେଖିଲା ପରି ବ୍ୟବହାର କରିବ ।

ପ୍ରକୃତରେ ଗୀତାଞ୍ଜଳି ତା'ର କ'ଣ ହବ(?) ଏମିତି ପ୍ରଶ୍ନଟିଏ ନିଜକୁ ପଚାରି ସେ ହଡ଼ବଡ଼େଇ ଯିବ । ତା'ଛଡ଼ା ଗୀତାଞ୍ଜଳିର ଘର ଲୋକେ ଏମିତିକା ପ୍ରଶ୍ନ ପଚାରିଲେ, ସେ କି ଉତ୍ତର ଦେବ ଭାବୁ ଭାବୁ, ତା' ସାରା ଦେହଟା ଝାଳେଇ ଯିବ । କଲଭର୍ଟ ଉପରୁ ଉଠି ସେ ଆଗକୁ ଚାଲିବ ଓ ସାମ୍ନା ଆଡୁ କେତେଜଣ ଝିଅ ଆସୁଥିବାର ଲକ୍ଷ୍ୟ କରିବ । ସେ ଝିଅମାନଙ୍କର ନିକଟତର ହୋଇ ସେମାନଙ୍କର ନିର୍ଦ୍ଦିଷ୍ଟ ଅଙ୍ଗ ଉପରେ ଦୃଷ୍ଟି ଢାଳିବ ଅଥଚ ଝିଅମାନେ ବିନା ସଙ୍କୋଚରେ ଚାଲିଯାଉଥିବେ । ଝିଅମାନେ ଚାଲିଗଲା ପରେ, ସେମାନଙ୍କୁ ଗୀତାଞ୍ଜଳି ବିଷୟରେ ପଚାରିଥିଲେ ଭଲ ହୋଇଥା'ନ୍ତା ବୋଲି ଭାବିବ ଓ କାହିଁକି ନ ପଚାରିଲା, ସେଥିଲାଗି ନିଜ ଉପରେ ରାଗିବ ।

ଅଗତ୍ୟା ଷ୍ଟ୍ରିଟ୍‌ଲାଇଟ୍‌ମାନେ ଜଳିଉଠି ଗଳିଟିରୁ ଅନ୍ଧାର ଚୋରେଇ ନେବେ । ହୃଦୟରଞ୍ଜନ ସାମାନ୍ୟ ଚଞ୍ଚଳ ହୋଇପଡ଼ିବ । ଗୀତାଞ୍ଜଳିକୁ ସେ ଆଗରୁ କେବେ ଦେଖି ନ ଥିବାରୁ ଏବଂ ତା' ଠିକଣା ଗୋପାଳଗାଁ ଛଡ଼ା ଆଉ କିଛି ଜାଣି ନ ଥିବାରୁ ତଥା ବାଲେଶ୍ୱରର ଲୋକମାନେ ସେତେଟା କୋ-ଅପରେଟିଭ୍ ଜଣାପଡୁ ନ ଥିବାରୁ, ସେ ରାତିରେ ଗୀତାଞ୍ଜଳିକୁ ଖୋଜି ପାଇବା ଉତ୍ତରମେରୁ ଆବିଷ୍କାର ପରି କଷ୍ଟକର ବ୍ୟାପାର ବୋଲି ଆଶଂକା କରିବ ।

ବାଲେଶ୍ୱର ନ ଆସି ଏହି ସମୟରେ ପୁରୀ ସମୁଦ୍ର କୂଳରେ ବୁଲି ବୁଲି ଶ୍ୱେତାଙ୍ଗିନୀମାନଙ୍କ ସମୁଦ୍ରସ୍ନାନର ନଗ୍ନ ଦୃଶ୍ୟ ଦେଖିଥିଲେ କେମିତି ହୋଇଥା'ନ୍ତା, ଭାବି ଆଗକୁ ଚାଲୁ ଚାଲୁ ଗୋଟେ ଘରେ ଝିଅଟିଏ ପଢୁଥିବାର ଦେଖି, ସିଏ ଗୀତାଞ୍ଜଳି ହୋଇପାରେ ବୋଲି ମନେକରି ସେଇ ଆଡ଼କୁ ଆଗେଇବ । ଏଇ ଝିଅଟି ନିଶ୍ଚିତ ଭାବରେ ଗୀତାଞ୍ଜଳି ହୋଇଥିବ ବା ଏଇପରି ଝିଅଟେ ହୋଇଥିବ ପ୍ଲସ୍ ଟୁ ସେକେଣ୍ଡ ଇୟର ବା ପ୍ଲସ୍ ଥ୍ରି ଫାଷ୍ଟ ଇୟର ପଢ଼ିଲା ପରି ବୟସର । ଝିଅଟି ଅବଶ୍ୟ ରୋମାଣ୍ଟିକ୍ ରୋମାଣ୍ଟିକ୍ ଲାଗୁଥିବ ତାକୁ । ଗୀତାଞ୍ଜଳି ତ ଭାରି ରୋମାଣ୍ଟିକ୍, ଯାହା ତା' ଚିଠିରୁ ଜଣାପଡ଼େ– ଏମିତି ଭାବୁ ଭାବୁ ସେ ଆସି ଘର ପାଖରେ ପହଞ୍ଚି ଯାଇଥିବ ଓ ଯନ୍ତ୍ରପରି କଲିଂ ବେଲ୍ ଉପରେ ହାତ ପକେଇଥିବ । ପଢ଼ା ଛାଡ଼ି ଝିଅଟି ବାହାରି ଆସିବ ଓ ଡ୍ୟାଡି ଘରେ ନାହାଁନ୍ତି ବୋଲି କହି ଫେରିଯାଉଥିବାବେଳେ ହୃଦୟରଞ୍ଜନ, ଗୀତାଞ୍ଜଳି ବିଶ୍ୱାଳର ଘର କେଉଁଠି ବୋଲି ପଚାରିବ । ଝିଅଟି ଟିକିଏ ଚିନ୍ତାକରି, ଏଇ ସିଧାରେ ଗଲେ ଯୋଉଠି ପାଣି ଟେପ୍‌ଟାଏ ଥିବ, ତା'ର ଡାହାଣ ଘରଟା ତାଙ୍କର ବୋଲି କହିବ । ଗୀତାଞ୍ଜଳି ଘରର ସନ୍ଧାନ ମିଳିଯାଇଥିବାରୁ 'ୟୁରେକା ୟୁରେକା' ବୋଲି ନିଜ ଭିତରେ ଗୁଣୁଗୁଣୁ ହୋଇ ସେ ଫେରିଆସିବ ଓ ରାସ୍ତାରେ ପହଞ୍ଚି, ଝିଅଟିକୁ ଧନ୍ୟବାଦ ଦବାକୁ ଭୁଲିଯାଇଥିବାରୁ ନିଜକୁ ଦୋଷୀ ମଣି ଆଗକୁ ଚାଲିବ ।

ଆଚ୍ଛା, ଗୀତାଞ୍ଜଳି ଏଇ ସମୟରେ କ'ଣ କରୁଥିବ ? ବୋଧେ ତା' ପଢ଼ାଘରେ ବସି ଚିତ୍ର ଆଙ୍କୁଥିବ ବା ମୋଟା ଅନର୍ସ ବହି ଉପରେ ମୁହଁ ଗୁଂଜିଥିବ । ସିଏ ନିଶ୍ଚିତ

ଭାବରେ ପିଙ୍କ୍ କଲର୍‌ର ସେଲଓ୍ୱାର ପଞ୍ଜାବି ବା ନୀଳ ରଙ୍ଗର ଶାଢ଼ି ପିନ୍ଧିଥିବ । ତାକୁ ବୋଧେ ସେଲଓ୍ୱାର ପଞ୍ଜାବି ଅପେକ୍ଷା ଶାଢ଼ି ଅଧିକ ମାନୁଥିବ ଯଦିଓ ନୂଆକରି ଶାଢ଼ି ପିନ୍ଧିଥିବା ହେତୁ ସେ ଛନ୍ଦି ପଡୁଥିବ । ସେ ନିଶ୍ଚିତ ଭାବରେ ବାଳ ମୁକୁଳା କରିଥିବ ଏବଂ ନେଲପଲିସ୍ ମଖା ବର୍ଦ୍ଧିତ ନଖଗୁଡ଼ିକ ତା' ଗୋରା ଆଙ୍ଗୁଳିକୁ ବେଶ୍ ମାନୁଥିବ । ସେ ହୁଏତ ମୁହଁରେ ସାମାନ୍ୟ ପ୍ରସାଧନ ବୋଳି ହୋଇଥିବ ଏବଂ କଥା କହିଲାବେଳେ ତା'ର ଶଙ୍ଖପରି ଦାନ୍ତଗୁଡ଼ିକ ଲୁଚକାଳି ଖେଳୁଥିବେ । ଏମିତି ଭାବୁ ଭାବୁ ହୃଦୟରଞ୍ଜନ ପାଣି ଟେପ୍ ନିକଟରେ ପହଞ୍ଚି ଯାଇଥିବ ଓ ଡାହାଣ ଆଡ଼କୁ ଦୃଷ୍ଟି ଢାଳି ସେଇଠି ଠିଆ ହୋଇଯାଇଥିବ । ସେଇ ଘରଟି ଯେକୌଣସି ଘର ପରି ନିହାତି ମାମୁଲି ହୋଇଥିଲେ ବି ହୃଦୟରଂଜନକୁ କେମିତି ଭିନ୍ନ ଭିନ୍ନ ଲାଗୁଥିବ ।

ସେ ପକେଟ୍‌ରୁ ରୁମାଲ ବାହାର କରି ମୁହଁ ପୋଛି ହୋଇଥିବ ଓ ମୁଣ୍ଡରେ ହାତ ମାରି ବାଳ ଠିକ୍ ଅଛି କି ନା ପରୀକ୍ଷା କରିନେବାପରେ ସେଇ ଆଡ଼କୁ ମୁହେଁଇଥିବ । ଏବଂ ଗୀତାଞ୍ଜଳି ସହ ତା'ର ପରିଚୟକୁ ନାଟକୀୟ କରିବାପାଇଁ ସେ ସ୍ଥିର କରିଥିବ– ସେ କିଏ, ଏଠି ତା'ର କ'ଣ କାମ ଇତ୍ୟାଦି ଅନେକ ପ୍ରଶ୍ନ ଭିତରେ ଅନେକ ସମୟ ଛନ୍ଦି ହୋଇ, ବିସ୍ମୟର ଚରମରେ ପହଞ୍ଚି, ଗୀତାଞ୍ଜଳି ଯେତେବେଳେ ତାକୁ ହାରିଲା ହାରିଲା ଭାବନେଇ ଚାହିଁବ, ସେତେବେଳେ ଯାଇ ସେ କହିବ, ମୁଁ କବି ହୃଦୟରଞ୍ଜନ, ଯାହାର କବିତା ପଢ଼ି ତମେ ପାଞ୍ଚ ସାତଟା ଚିଠି ପଠେଇଚ ଓ ଶେଷ ଚିଠିରେ ଲେଖିଚ ବାଲେଶ୍ୱର ଆସିଲେ ତୁମ ଘର ଆଡ଼େ ଆସିବାକୁ ଭୁଲି ନ ଯିବା ପାଇଁ.... ।

ଏମିତି ଏକ ନାଟକୀୟତା ପରିବେଷଣର ଚିନ୍ତାରେ ଭାସୁଭାସୁ ସେ ଆସି ଘର ଦୁଆରେ ପହଞ୍ଚି ଯାଇଥିବ ଓ ସେଠି ମିନିଟ୍‌ଟିଏ ଠିଆହୋଇ କଲିଂବେଲ ଅଭାବରୁ କବାଟରେ ମୃଦୁ ଆଘାତ କରିଥିବ ।

କବାଟ ଖୋଲିଯାଉଥିବାବେଳେ ହୃଦୟରଞ୍ଜନର ଛାତିରେ ହାତୁଡ଼ିଟିଏ ପିଟି ହୋଇଯାଇଥିବ ।

ଏବଂ କବାଟ ଖୋଲିଯିବ । ଧାଡ଼ିଏ ପିଲାଙ୍କ ଗହଣରେ ବସିଥିବା ଜନୈକା ପ୍ରୌଢ଼ା (ଶିକ୍ଷୟିତ୍ରୀ ହେବେ ନିଶ୍ଚେ) ବାହାରି ଆସିବେ ଓ ମାଷ୍ଟ୍ରାଣୀ ସୁଲଭ ଗମ୍ଭୀର ଭାଷାରେ କହିବେ, କାହାକୁ ଖୋଜୁଛନ୍ତି ?

ଗୀତାଞ୍ଜଳି ବିଶ୍ୱାଳଙ୍କୁ– ଅନ୍ୟମନସ୍କ ଭାବରେ ଘର ଭିତରକୁ ଦୃଷ୍ଟି ଲମ୍ବାଇ ଅନୁଚ୍ଚ ଉଚ୍ଚାରଣଟିଏ ଫିଙ୍ଗିବ ହୃଦୟରଞ୍ଜନ ।

: କ'ଣ କାମ ? ମୁଁ ତ ଗୀତାଞ୍ଜଳି ବିଶ୍ୱାଳ, ସେହି ପ୍ରୌଢ଼ା ମାଷ୍ଟ୍ରାଣୀ ଅବିଳମ୍ବେ ଉତ୍ତର ଦେବେ ।



# ଦୂର ପାହାଡ଼

କଲିକତା ଯିବ ବୋଲି ମକୁର ଗୋଡ଼ ତଳେ ଲାଗୁ ନ ଥିଲା । ବହୁଦିନ ହେବ ଦେଖିଆସୁଥିବା ସ୍ୱପ୍ନଟିଏ ସାକାର ହବାର ବିଭୋରତାରେ ସେ ହଜି ଯାଉଥିଲା ଯେମିତି !

କଲିକତା ଯିବା ପାଇଁ ସେ କେତେ ଅଝଟ ନ କରିଚି ବାପାଙ୍କ ପାଖରେ ? ବୋଉ କାନି ଧରି କେତେଥର ନ କାନ୍ଦିଚି ? ହେଲେ ବାପାଙ୍କର ଚଢ଼ାଗଳାରେ ସେହି ଗୋଟିଏ ଉତ୍ତର, ''ପଢ଼ା ମଝିରେ କ'ଣ କଲିକତା ଯିବୁ ? ମେଟ୍ରିକ୍ ପରୀକ୍ଷା ଦେଇସାର, ଖରାଛୁଟିରେ କଲିକତା ଯାଇ ବୁଲିଆସିବୁ ।'' ତଥାପି ବାପା କଲିକତା ଯିବାଦିନ ସେ କାନ୍ଦେ, ରାଗରେ ତମତମ ହୁଏ, କିଛି ବୁଝେ ନାହିଁ, ତା'ର ଏକାଜିଦ୍ ସେ କଲିକତା ଯିବ । ବାପା କିନ୍ତୁ ନଛୋଡ଼ବନ୍ଦା । ଶେଷରେ ବାପା ଯିବାବେଳେ କାନ୍ଦିବା ଠିକ୍ ନୁହେଁ ବୋଲି କହି ବୋଉ ବହୁତ ବୁଝାଏ । ବାପା ହାତରେ ଗୁଞ୍ଜିଦିଅନ୍ତି ପାଞ୍ଚ ଦଶଟଙ୍କିଆ ନୋଟ୍ । ଅଇଲା ସନକୁ ଆସିଲାବେଳେ ନୂଆ ପୋଷାକପତ୍ର ଆଣିବାର ପ୍ରତିଶ୍ରୁତି ବି ଅଜାଡ଼ି ଦିଅନ୍ତି । ମକୁ ବୋଧ ହୋଇଯାଏ ।

ବାପା ପୁଣିଥରେ ଆସିଲାବେଳକୁ ବିତି ଯାଇଥାଏ ବର୍ଷଟିଏ । ମକୁର ସେଇ ପୁରୁଣା ଅଝଟ ଓ ବାପାଙ୍କର ସେଇ ପୁରୁଣା ପ୍ରବୋଧନା !

ଏଥର ମେଟ୍ରିକ୍ ପରୀକ୍ଷା ସରିବା ଦିନଠୁଁ କିନ୍ତୁ କଲିକତା ଯିବା କାଳିଶି ଲାଗିଚି ମକୁକୁ । ହେଲେ ଏକା ଏକା ସେ କେମିତି ବା କଲିକତା ଯାଇପାରନ୍ତା । କାହିଁ କେତେବାଟ କଲିକତା ମହାନଗରୀ । କାହିଁ କେତେ ବଡ଼ ସେ ଜାଗାଟା ! ବାପାଙ୍କ ଠାରୁ ସେ କେତେଥର ଶୁଣିଚି, ପଚାଶଟା କଟକ ବି ପଶିଯିବ କଲିକତାର ବିରାଟ ଆଁ ଭିତରେ । ପୁଣି ସେଠିକା ଲୋକେ ଓଡ଼ିଆ ବୁଝନ୍ତି ନାହିଁ । ଓଡ଼ିଆରେ କଥାହେଲେ କୁଆଡ଼େ ଟାହିଟାପରା କରନ୍ତି । ନାକ ଟେକନ୍ତି । ଶାଲେ ଓଡ଼େ ବୋଲି କହନ୍ତି । ଏକା ଯିବାଲାଗି ତେଣୁ ସାହସ ହେଉ ନ ଥିଲା ମକୁର । ବୋଉ ବା କୋଉ ଏକା ଛାଡ଼ନ୍ତା !

ବିଲେଇ ଭାଗ୍ୟକୁ ଶିକା ଛିଡ଼ିଲା ପରି ଏଥର ଖରାଟିଆକୁ ରାମକକାଙ୍କର ଆବିର୍ଭାବ ହୋଇଥିଲା ଗାଁରେ । ସେ ବି କଲିକତାରେ ଚାକିରି କରନ୍ତି । ପୁଣି ବାପାଙ୍କ ବସା ପାଖରେ କୁଆଡ଼େ ତାଙ୍କ ବସା । ମକୁ ତେଣୁ ବୋଉକୁ ସାଫ୍ ବତେଇଦେଲା, ସେ ଏଥର ନିଶ୍ଚେ କଲିକତା ଯିବ । ରାମକକାଙ୍କୁ କହିଲେ ସେ ତାକୁ ସାଙ୍ଗରେ ନେଇଯିବେ । ଆଉ ସେ ବେଶ୍ ସୁବିଧାରେ ପହଞ୍ଚିଯିବ ବାପାଙ୍କ ପାଖରେ ।

ବୋଉ ବି ଏଥିରେ ହଁ ଭରିଲା । ରାମକକାଙ୍କ ଘରକୁ ଯାଇ ବୋଉ ଡକେଇଚି ବୋଲି କହିଆସିଲା ମକୁ । ରାମକକା ବି ଆସିଲେ । ବୋଉ କହିବା ଅନୁସାରେ ମକୁକୁ କଲିକତା ନେଇଯିବାର ଦାୟିତ୍ୱ ବି ନେଲେ ।

ମକୁ ମନେ ମନେ ଦିନ ଗଣୁଥାଏ, ରାମକକାଙ୍କର କେବେ ଛୁଟି ପୂରିବ ଆଉ ସେ ତାଙ୍କ ସାଙ୍ଗରେ କଲିକତା ଯିବ । ବୋଉ ବି ବ୍ୟସ୍ତ ରହୁଥାଏ ବିଭିନ୍ନ କାମରେ– ଚୁଡ଼ା ଭାଜିବା, ବଡ଼ି ପାରିବା, କରମଂଗା ଆଚାର ବନେଇବା ଇତ୍ୟାଦି ଇତ୍ୟାଦି ।

କଲିକତା ଯିବା ଦିନ ସକାଳେ ସବୁ ଜିନିଷପତ୍ର ବନ୍ଧାହୋଇ ବାପା କଲିକତାରୁ ଆଣିଥିବା ଗୋଟେ ମସ୍ତବଡ଼ ଝୋଲାରେ ଭର୍ତ୍ତି କରାଗଲା । ମକୁ ବି ସେ ଝୋଲା ଭିତରେ ତଉଲିଆଟାଏ ଓ ହଳେ ପେଣ୍ଟସାର୍ଟ ଭର୍ତ୍ତି କଲା । ନ'ଟା ବେଳକୁ ମକୁର ଗାଧୁଆପାଧୁଆ ଶେଷ ତ ବୋଉର ରୋଷେଇବାସ ରେଡ଼ି । ମକୁ ପେଟରେ ଜମା ଭୋକ ନ ଥାଏ । ତଥାପି ବୋଉର ତାଗିଦା ଅନୁଯାୟୀ ବଳେଇ ବଳେଇ ସେ ଗଣ୍ଡେ ଭାତ ଖାଇଦେଲା । ସପ୍ତମରେ ପଢୁଥିବା ସାନଭାଇ ବିକୁ ହଠାତ୍ ବାହାରିଲା କଲିକତା ଯିବା ପାଇଁ । ତା' ଦେଖାଦେଖିରେ ସାନଭଉଣୀ କୁନି । ସେ ସେମାନଙ୍କୁ ବହୁତ ବୁଝାଇଲା । ଗାଁର ବୁଢ଼ାବୁଢ଼ୀମାନେ ଆସି କଲିକତାର ଡକେଇତି, ଗାଡ଼ିଘୋଡ଼ା, ଭୂତପ୍ରେତ ଆଦି ବିଷୟରେ ନାନାଦି ମନଗଢ଼ା କଥାମାନ କହି ପିଲାଦ୍ୱୟଙ୍କୁ କୌଣସିମତେ ଅକ୍ତିଆରକୁ ଆଣିଲେ ।

ବଉଳାଙ୍ଗ ଛକରୁ ଇସ୍ତିକରି ଆଣିଥିବା ହାଫ୍ ପେଣ୍ଟ ଓ ସାର୍ଟ ଅତି ଯତ୍ନ ସହକାରେ ପିନ୍ଧିଲା ମକୁ । ସାର୍ଟ କଲର୍‌ରେ ଟିକିଏ ପାଉଡର ପକେଇଦେଲା । ଦୁଇ ତିନି ବା ତତୋଽଧିକ ଥର ଆଇନା ଦେଖି ମୁଣ୍ଡ କୁଣ୍ଡେଇଲା । ଆପାତତଃ ଛୋଟ ହେଉଥିବା ଚପଲଟି ପିନ୍ଧି ଅଗଣାରେ ଏପଟ ସେପଟ ହେଲା ।

ଇତିମଧ୍ୟରେ ରାମକକା ଆସି ପହଞ୍ଚିଗଲେ । ସେତେବେଳକୁ ଛୁଆପିଲା ମରଦ ମାଇପେ ଗାଁ ଦାଣ୍ଡରେ ଜମା ହୋଇଗଲେଣି । ବାଉରି ସାହିର ନନ୍ଥୁ ଜେନା ପୂର୍ବ ବରାଦି ଅନୁସାରେ ରିକ୍ସା ଧରି ବି ପହଞ୍ଚିଗଲା । ଜିନିଷପତ୍ର ସହ ରାମକକା ଓ ସେ ରିକ୍ସାରେ ବସିଲେ । ଗାଁର ମୁରବି କେତେଜଣ ରାମକକାଙ୍କୁ ସତର୍କ କରାଇଦେବା ଭଙ୍ଗୀରେ କହିଲେ, ''ମକୁ ପିଲାଲୋକ, ପୁଣି ଭାରି ଚଗଲା । ତା' ଉପରେ ସବୁବେଳେ କଡ଼ା ନଜର ରଖିଥିବୁ । ଟେ'ସନ୍‌ରେ ଗାଡ଼ି ରହିଲେ ତାକୁ ଜମା ବାହାରକୁ ଛାଡ଼ିବୁ ନାହିଁ ।'' ରାମକକା ମୁରୁକି ହସିଲେ, ମୁରବିମାନଙ୍କ କଥାରେ ରାଜି ହେଲାପରି । ଆଉ କେତେକ ମାଇପେ ମକୁକୁ ବାରମ୍ୱାର କହୁଥା'ନ୍ତି, ''ଖବରଦାର୍, ଗାଡ଼ିରେ ଚଗଲାମି କରିବୁ ନାହିଁ । ରାମକକା ସାଙ୍ଗେ ସାଙ୍ଗେ ସବୁବେଳେ ଥିବୁ ।'' ବୋଉ ବି ସେମିତି କେତେ କ'ଣ କହୁଥାଏ ମକୁ କାନରେ ।

ତେବେ ମକୁ ଓ ତା'ର ରାମକକାଙ୍କ ଏହିପରି ବିଦାୟ ସମ୍ବର୍ଦ୍ଧନା ଜ୍ଞାପିତ ହେବା ପରେ ନନ୍ଥୁ ଜେନା ରିକ୍ସା ଗଡ଼େଇଲା ।

ରିକ୍ସା ବଉଳାଙ୍ଗ ଛକ ନିକଟରେ ପହଞ୍ଚିଲାବେଳକୁ ଦିନ ବହୁତ ହୋଇଯାଇଥାଏ । ବଉଳାଙ୍ଗ ଛକରେ କିଛି ସମୟ ଅପେକ୍ଷା କଲାପରେ କୟାଁଗୋଲା-ଯାଜପୁର ରୋଡ୍ ବସ୍ ଆସିଲା ଓ ସେମାନେ ବସ୍ ଚଢ଼ିଲେ । ଯାଜପୁର ରୋଡ୍ ଷ୍ଟେସନ୍‌ରେ ବସ୍ ପହଞ୍ଚିଲା ବେଳକୁ ପ୍ରାୟ ଅପରାହ୍ଣ । ବୈଶାଖ ସୂର୍ଯ୍ୟର ତେଜ କମି ଯାଇଥିଲେ ବି ଗରମ ପବନର ପ୍ରକୋପ କମି ନ ଥାଏ । ଝାଳେଇ ଯାଇଥାଏ ଦେହ । ମୁହଁ ପୋଡ଼ିଗଲା ପରି ଲାଗୁଥାଏ ।

ମକୁକୁ ଟିକିଏ ଦୂରରେ ବସାଇ ରାମକକା ବୁକିଂ କାଉଣ୍ଟର୍ ସାମନା କ୍ୟୁରେ ଠିଆ ହେଲେ । କିଛି ସମୟ ପରେ ଟିକେଟ୍ ନେଇ ଫେରିଲେ ଓ ତା'ପରେ ଦୁହେଁ ପ୍ଲାଟ୍‌ଫର୍ମ ଭିତରେ ପଶିଲେ । ହାଓଡ଼ା ଏକ୍ସପ୍ରେସ୍ ଆସିବା ଡେରି ଥାଏ । ସିମେଣ୍ଟ ଚଉକି ଉପରେ ବସି ମକୁ ଚାହିଁଥାଏ ରେଳଧାରଣାକୁ । ଦୂରରେ ରେଳଧାରଣା ସବୁ ମିଶିଗଲା ପରି ଲାଗୁଥା'ନ୍ତି । ଝଲମଲ ହେଉଥାଏ ଖରା । କେମିତି ଗୋଟେ ଅଜଣା ଅନୁଭୂତିରେ ଦୁଲୁକି ଉଠୁଥାଏ ମକୁର ଛାତି ।

ପଇଡ଼, ବାଦାମ, ଦହିବରା, ଗୁନ୍‌ପାଂପୁଡ଼ି ଆଦି ପାନାହାରର ପର୍ଯ୍ୟାୟ ଭିତରେ ଦିନର ଆୟୁଷ କ୍ଷୟ ହେଉଥାଏ ଅଲକ୍ଷ୍ୟରେ । ତା'ପରେ ସ୍କୁଲ୍‌ର ଛୁଟି ଘଣ୍ଟା ପରି ଷ୍ଟେସନ୍‌ର ଘଣ୍ଟି ବାଜିଲା । କିଛି ବୁଝିହେଉ ନ ଥିବା ଭାଷାରେ କ'ଣ ସବୁ ଘୋଷଣା କରାଗଲା । ଦୋଳଯାତ୍ରା ପରି କୋଳାହଳ ସଂଚରିଗଲା ପ୍ଲାଟଫର୍ମ ସାରା । ଏବଂ ତା'ପରେ ବୁଢ଼ୀମା କାହାଣୀର କୋଉ ରାଜନଅରର ଉଞ୍ଚା ପାଚେରି ପରି ଷ୍ଟେସନ୍‌କୁ ଆବୋରି ଠିଆ ହୋଇଗଲା ଟ୍ରେନ୍ ।

ଦୁଇ ହାତରେ ଦୁଇଟି ଝୁଲା ଧରି ଟ୍ରେନ୍‌ର ଡବାକୁ ଲକ୍ଷ୍ୟ କରି କରି ଅଧା ଦୌଡୁଥା'ନ୍ତି ରାମକକା । ପଛେ ପଛେ ମକୁ । ଅନ୍‌ରିଜର୍ଭଡ୍ କଂପାର୍ଟମେଣ୍ଟ୍‌ରେ ଯୋଉ ଭିଡ଼ । ଯାହାହେଉ ଟ୍ରେନ୍ ଛାଡ଼ିବା ପୂର୍ବରୁ ମକୁ ଓ ରାମକକା ଡବା ଭିତରକୁ ପଶି ଦୁଇଟି ସ୍ଥାନ ମାଡ଼ି ବସିଲେ ।

ଗଛବୃଛ, ନଈନାଳ ସବୁକୁ ପଛରେ ପକାଇ ଟ୍ରେନ୍ ଆଗକୁ ଧାଉଁଥିଲାବେଳେ ଭାବନାତିଶଯ୍ୟରେ ନାଚିଉଠୁଥିଲା ମକୁର ମନ ! ତା' ସ୍ୱପ୍ନର କଲିକତା ଯେମିତି ଏବେ ହାତପାହାନ୍ତାରେ । କଲିକତା ମହାନଗରୀର କଳ୍ପନା ପ୍ରସୂତ ଦୃଶ୍ୟଦୃଶ୍ୟାନ୍ତର ସବୁ ଭାସି ଉଠୁଥା'ନ୍ତି ଆଖି ଆଗରେ । କୋଉ ଛବି ବହିରେ ଦେଖିଥିବା ହାବଡ଼ା ପୋଲ, କୋଉ ମେଳା-ମଉଛବର ଜନଗହଳି, କାଳ୍ପନିକ ଦୋକାନ ବଜାର ଓ କୋଠାବାଡ଼ି ଆଦି ଚରକି ପରି ଘୂରୁଥିଲେ ମକୁର ମଗଜରେ ।

ମକୁ ଭାବୁଥାଏ ମନେ ମନେ, ଲମ୍ବା ଖରାଛୁଟି ପଡ଼ିଚି । ସେ ବେଶ୍ କିଛିଦିନ ବିତେଇଦବ କଲିକତାରେ । ହାବଡ଼ା ପୋଲ, ଦମ୍‌ଦମ ଘାଟି, ଅଲିପୁର ଜୁ ସବୁ ଦେଖିବ । ଟ୍ରାମ୍ ଚଢ଼ିବ । ନିତି ନିତି କଲିକତି ମିଠେଇ ଖାଇବ । ଆଉ କ'ଣ କ'ଣ ସବୁ କଲିକତାରୁ କିଣାଯିବ, ସେ ବିଷୟରେ ବି ଲମ୍ବା ଲିଷ୍ଟ ପ୍ରସ୍ତୁତ କରୁଥାଏ ମକୁ । ପେଣ୍ଟସାର୍ଟ କନା, ବ୍ୟାନିୟନ୍, ବୁଟ୍, ଚଷମା, ଆଟାଚି ଇତ୍ୟାଦି ଇତ୍ୟାଦି । ତା'ସାଙ୍ଗକୁ କିଣିଥିବ ଗୋଟେ ଦାମୀ ସେଣ୍ଟ୍ । ଗାଁକୁ ଫେରିବାଦିନ ସେ ନୂଆ ପେଣ୍ଟସାର୍ଟ ଉପରେ ଏ... ତ ସେଣ୍ଟ୍ ସ୍ପ୍ରେ କରିଥିବ ଯେ, ବଉଳାଙ୍ଗ ଛକରୁ ଗାଁ ପର୍ଯ୍ୟନ୍ତ ରାସ୍ତାଘାଟ ଯେମିତି ମହକି ଯାଉଥିବ ।

ସୁରିଆ, ମଧୁ, ...ଣା ଆଦି ତା'ର ସାଙ୍ଗମାନେ ପାଖକୁ ଆସିଲାକ୍ଷଣି ସେ ତାଙ୍କୁ କଲିକତା ବିଷୟରେ କେତେ କ'ଣ ବଖାଣିବ । ସେମାନେ ଯେମିତି ଚାହିଁରହିବେ ତାଟକା ହୋଇ । ସବୁ ଜିନିଷପତ୍ର ବି ଗୋଟିଗୋଟି କରି ତାଙ୍କୁ ଦେଖାଇବ । ସତେ ଯେମିତି ସେ ଖରିଦ୍ କରି ଆଣିଚି ସାରା କଲିକତାଟାକୁ !

କ'ଣ ଗୋଟେ କୋଳାହଳରେ ମକୁ ପ୍ରକୃତିସ୍ଥ ହେଲା । ବଡ଼ ଷ୍ଟେସନ୍‌ଟେ ବୋଧେ । ଟ୍ରେନ୍ ଠିଆହେଲା । ରାମକକା କହିଲେ, "ଏଟା ବାଲେଶ୍ୱର ଷ୍ଟେସନ୍ । ଗାଡ଼ି ଏଠି ପନ୍ଦର ମିନିଟ୍ ରହିବ । ମୁଁ ପୁରି ଆଳୁଦମ୍ ଧରି ଆସୁଚି । ତୁ ଏଇଠି ବସିଥା । ଜିନିଷପତ୍ର ଉପରେ ନଜର ରଖ ।"

ବାଲେଶ୍ୱର ଷ୍ଟେସନ୍‌ର ପୁରି ଆଳୁଦମ୍ ହିଁ ଥିଲା ସେଦିନ ରାତ୍ରିଭୋଜନର ଉପାଦାନ । ଟ୍ରେନ୍‌ର ଶେଷ ହୁଇସିଲ୍ ବେଳକୁ ଖିଆ ସରିଥାଏ । ରାମକକା ବିଡ଼ି ଧରିଲେ । ଡବା ଭିତରର ମୃଦୁ କୋଳାହଳ କମି ଆସୁଥାଏ । ବଢୁଥାଏ ଟ୍ରେନ୍‌ର ଗତି । ଟ୍ରେନ୍ ଭିତରୁ ବାହାର ପୃଥିବୀ ଦିଶୁଥାଏ ଅସ୍ପଷ୍ଟ, ନିଦ୍ରାଚ୍ଛନ୍ନ ଯାତ୍ରୀମାନେ ଢୋଳେଇବା ଆରମ୍ଭ କରିଦେଇଥାନ୍ତି । ରାମକକାଙ୍କ ବିଡ଼ି ଲିଭିଲାଣି ଅନେକ ବେଳୁ । ଟ୍ରେନ୍‌ର ସ୍ୱାଭାବିକ ଗର୍ଜନ ଉର୍ଦ୍ଧ୍ୱରେ ଶୁଭୁଥାଏ ସମବେତ ଘୁଙ୍ଗୁଡ଼ିର ସ୍ୱରଲିପି ।

ତା'ପରେ ମକୁର ଯୋଉଠି ନିଦ ଭାଙ୍ଗିଲା ତା'ର ଦୃଶ୍ୟ ଥିଲା ଅନନ୍ୟ ସାଧାରଣ । ରାମକକାଙ୍କ ସହ ସେ ଟ୍ରେନ୍‌ରୁ ଓହ୍ଲାଇଲା ଓ ତାଙ୍କ ହାତ ଧରି ଭିଡ଼ ଭିତରେ ଧସେଇ ଚାଲିଲା । ତା'ପରେ କେତୋଟି ପାହାଚ ଚଢ଼ି ସେ ସଂକୀର୍ଣ୍ଣ ଦ୍ୱାରଟିଏ ପାରିହୋଇ ସାମ୍ନାରେ ଯାହା ଦେଖିଲା, ତାହା ଯେ 'ହାବୁଡ଼ା' ପୋଲ ଏଥିରେ ମକୁର ସନ୍ଦେହ ରହିଲା ନାହିଁ ।

ସକାଳ ହେବାକୁ ହୁଏତ ଅଳ୍ପ ସମୟ ବାକି ଥାଏ । ରାସ୍ତାରେ ମାଳମାଳ ଗାଡ଼ିମୋଟର । ଆଲୋକର ବନ୍ୟା । ମକୁ ଭାବିଲା କଲିକତାରେ ରାତି ନାହିଁ ବୋଲି ଯାହା କୁହାଯାଏ, ତାହା ସତ । ଅଦୂରରେ ଯାଉଥିବା ଦୁଇଡବା ବିଶିଷ୍ଟ ଅଣଓସାରିଆ

ଟ୍ରେନ୍‌ଟି ଆଡ଼େ ହାତ ଦେଖାଇ ରାମକକା ମକୁକୁ କହିଲେ, ''ଏଇ ଦେଖ ଟ୍ରାମ୍ ।'' କଲିକତାରେ ସେ ଟ୍ରାମ୍ ମକୁକୁ ଲାଗୁଥିଲା ନନ୍ଦନକାନନର ଟୟ୍ ଟ୍ରେନ୍ ପରି ।

ସେମାନେ ଗୋଟେ ବସ୍‌ରେ ଚଢ଼ି ଯୋଉଠି ଓହ୍ଲାଇଲେ, ତାହା ଥିଲା ଆଉ ଏକ ଷ୍ଟେସନ୍ ।

ନାଲିବତିରେ ଜଳୁଥିଲା ଓ ଲିଭୁଥିଲା ଷ୍ଟେସନ୍‌ଟିର ନାଁ । ମକୁ କିଛି ସମୟ ପରେ ପଢ଼ି ଜାଣିଲା ଯେ ସେଇଟି ସିଆଲ୍‌ଦା ଷ୍ଟେସନ୍ । ରାମକକା ସେଠୁ ବି ଟିକେଟ୍ କିଣିଲେ ଓ ସେ ଦୁହେଁ ଟ୍ରେନ୍‌ରେ ବସିଲେ । ଭୋରର ଫର୍ଚ୍ଚା ଆଲୁଅରେ ଯୋଉ ଷ୍ଟେସନ୍‌ଟିରେ ଗାଡ଼ି ରହିଲା, ସେଇଠି ଓହ୍ଲେଇବାକୁ ନିର୍ଦ୍ଦେଶ ଦେଲେ ରାମକକା । ଓହ୍ଲେଇପଡ଼ି ମକୁ ଦେଖେତ ଷ୍ଟେସନ୍‌ଟି ଯାଜପୁରରୋଡ୍‌ଠାରୁ ବି ସାନ । କଲିକତାର ଏ କୋଉ ଅପନ୍ତରା ଅଞ୍ଚଳ, ନିଜ ଭିତରେ କହି ହେଉଥିଲା ମକୁ । ସେ କିନ୍ତୁ ରାମକକାଙ୍କୁ କିଛି କହିଲା ନାହିଁ । ନୀରବରେ ରାମକକାଙ୍କୁ ଅନୁସରଣ କଲା ।

ଗଳିକନ୍ଦି ଛକମୋଡ଼ ପାରି ହୋଇ ରାମକକା ଯୋଉ ଘର ସାମନାରେ ଠିଆ ହେଲେ, ତାହା ଥିଲା ଏକ ନୁଆଁଣିଆ ଖପରଲି ଘର ।

ରାମକକାଙ୍କ ସହ ସେ ଘର ଭିତରକୁ ପଶିଲା । ଭିତରେ ଛୋଟ ଅଗଣା । ଅଗଣାର ଚାରିପାଖରେ ଛୋଟ ଛୋଟ କୋଠରି । ରାମକକା ଗୋଟେ ନିର୍ଦ୍ଦିଷ୍ଟ କୋଠରିର ଦ୍ୱାରପାଖରେ ପହଞ୍ଚି, ଏକ ସମ୍ପୃକ୍ତ ସ୍ଥାନରୁ ଚାବି ବାହାର କଲେ ଓ ଦ୍ୱାର ଫିଟେଇଲେ । ''ତୋ ବାପାଙ୍କର ନାଇଟ୍ ସିଫ୍‌ଟ ଥିଲା । ସେ ଏଇ ଆସିଯିବେ,'' ବୋଲି କହି ରାମକକା ଚାଲିଗଲେ । ଛୋଟ କୋଠରିଟି ଭିତରେ ଏକା ଏକା ବସି ରହିଲା ମକୁ ।

ଏତେ ଛୋଟ ଘରେ ବାପା କେମିତି ରହନ୍ତି । ଏତେ ଅପରିଷ୍କାର ଜାଗାରେ ଚଳନ୍ତି କିପରି । ଏମିତି କେତୋଟି ନୀରବ ପ୍ରଶ୍ନବାଚୀ ଲହଡ଼ି ଭାଙ୍ଗୁଥିଲେ ମକୁ ଭିତରେ । ତଥାପି ସେ ନିଦୁଆ ଆଖିରେ ଚାହିଁ ରହିଥାଏ ବାପାଙ୍କ ଆସିବାକୁ । ବର୍ଷକ ତଳେ ବାପାଙ୍କର ଗାଁକୁ ଆସିବା ଦିନର ଚେହେରାଟି ମନେ ପଡ଼ିଯାଉଥାଏ ମକୁର । ଗୋରା ଚେହେରା । କଡ଼ା ଇସ୍ତ୍ରିକରା କଇଁଫୁଲିଆ ଧୋତି ପଞ୍ଜାବି । ଦାମୀ ଚପଲ । ମକୁ ଅନେକ ସମୟରେ ଭାବେ, ତା' ବାପାଙ୍କ ପରି ଏତେ ଦାମୀ ପୋଷାକ ପିନ୍ଧୁଥିବା ଲୋକ ତାଙ୍କ ଗାଁରେ ଆଉ କିଏ ବା ଅଛି ? କିଏ ବା ଏତେ ପଇସା ରୋଜଗାର କରେ ତାଙ୍କ ପରି । କିଏ ବା ତାଙ୍କ ପରି ଏମିତି ପଇସା ଖର୍ଚ୍ଚ କରେ । ଗାଁରେ ରହୁଥିବାବେଳେ ବାପା ତ ଦିନରେ ଦଶଥର ଚା' ପିଅନ୍ତି । ପୁଣି ନିତି ମାଛମାଂସ । ଆଉ ସାରା ଗାଁରେ ତ ତାଙ୍କ ଘର ନିଆରା । କାହାର ବା ଏମିତି ଘରତଳି ପକ୍କା ହୋଇଚି, କୋଟୀକମକରା ଯାଉଁଳି କବାଟ ଲାଗିଚି ଦାଣ୍ଡ ଦୁଆରରେ ?

ଦ୍ୱାରରେ ପାଦଶବ୍ଦ ଶୁଣି ସେ ବାହାରକୁ ଚାହିଁଲା । ବାପା ? ଚମକି ପଡ଼ିଲା ମକୁ । ମାଟିଆ ହାଫ୍ ପ୍ୟାଣ୍ଟ, ମଇଳା ଗଞ୍ଜି, ନିଦୁଆ ଆଖି, କଳାଦିଶୁଥିବା ମୁହଁ, ଏମିତି ବେଶରେ ସେ କେବେ ବି ବାପାଙ୍କୁ ଦେଖି ନ ଥିଲା ! ସେ ଯନ୍ତ୍ରପରି ଉଠି ଠିଆହେଲା ଓ ବାପାଙ୍କୁ ପ୍ରଣାମ କଲା । ମକୁକୁ ଦେଖି ବାପାଙ୍କ ମୁହଁରେ ହସଖୁସିଆ ଭାବଟିଏ ଚରି ଯାଉଥିଲା ଯେମିତି !

ତା'ପରେ ବାପାଙ୍କ କହିବା ଅନୁସାରେ ମକୁ ପ୍ୟାଣ୍ଟ ବଦଳାଇଲା ଓ ଅଗଣାର ଗୋଟିଏ କଡ଼ରେ ଥିବା ଟେପ୍ ପାଖରେ ଯାଇ ଗାଧୋଇ ଆସିଲା । ମକୁ ଗାଧୋଇ ସାରିଲା ବେଳକୁ ଗୋଟେ ମାଟି ସରାରେ କିଛି ମିଠା ଥୁଆ ହୋଇଥାଏ । ବାପା କାହାକୁ ବଜାର ପଠାଇ ମିଠା ଅଣେଇଥିଲେ ବୋଧହୁଏ । ବାପା ପ୍ରଥମ ମିଠାଟି ମକୁକୁ ଖୋଇଦେଲେ ଓ ଅନ୍ୟଗୁଡ଼ିକୁ ଖାଇବାପାଇଁ କହିଲେ । ମକୁ ଦୁଇ ତିନିଟି ମିଠା ଖାଇ ହାତ ଧୋଇଲା ।

ଗାଁ, ଘର, ବିକୁ, କୁନି, ପରୀକ୍ଷା ଆଦି ବିଷୟରେ ବାପାଙ୍କ ପ୍ରଶ୍ନର ଯଥାସମ୍ଭବ ସଂକ୍ଷିପ୍ତ ଉତ୍ତର ଦେଲା ମକୁ । ତା'ପରେ ଘରେ ଗୋଟିଏ ପାର୍ଶ୍ୱରେ ସପ ପାରିଦେଇ ବାପା କହିଲେ, ''ମକୁ, କାଲି ରାତିସାରା ଅନିଦ୍ରା ହୋଇଥିବୁ । ଗାଡ଼ି ଥକ୍କା । ଏବେ ଶୋଇଯା । କାଲିଠୁ କଲିକତାରେ ବୁଲାବୁଲି କରିବୁ ।''

ମକୁ କିନ୍ତୁ ଅକସ୍ମାତ୍ କହିଉଠିଲା, ''ନା ବାପା, ଆଜି ମୁଁ ଗାଁକୁ ଫେରିଯିବି ।''

ଏ ଅପ୍ରତ୍ୟାଶିତ ଉତ୍ତରର ଆଦି ଅନ୍ତ ପାଉ ନ ଥିଲେ ମକୁର ବାପା । ମକୁର ପିଠି ଥାପୁଡ଼େଇ ସେ କହିଲେ, ''ଆରେ ତୁ ଏତେ ବାଟ କଷ୍ଟ କରି ଆସିଚୁ । କିଛି ନ ଦେଖିଲେ ବି ଅଲିପୁର କୁ ନ ଦେଖି ଫେରିଯିବୁ ? ସେଠି ପରା ଚମରୀ ଗାଈ, ସିଂହ, ଧଳାହାତୀ, କଂଗାରୁ– ଏମିତି କେତେ କିସମର ପଶୁପକ୍ଷୀ ଅଛନ୍ତି ।''

''ନନ୍ଦନକାନନରେ ସେସବୁ ଅଛନ୍ତି ବାପା । ଗତ ପୂଜା ଛୁଟିରେ ଆମେ ସ୍କୁଲରୁ ସେଠାକୁ ପିକ୍‌ନିକ୍ କରି ଯାଇଥିଲୁ'' – ମକୁ ଉତ୍ତର ଦେଲା ।

ଆହୁରି ଅବାକ୍ ହେଲେ ମକୁର ବାପା ।

ସେ ପୁଣି ଗେହ୍ଲାକଲା ସ୍ୱରରେ କହିଲେ, ''ଆରେ ମକୁ, ତୁ କଲିକତାରୁ ନୂଆ ପ୍ୟାଣ୍ଟସାର୍ଟ, ବ୍ୟାନିୟନ୍, ଜୋତା, କିଛି ନ କିଣି ଦିନକରେ ଗାଁକୁ ଫେରିଯିବୁ ! ଏବେ ପରା ଖରା ଛୁଟି ।

ମକୁର ଉତ୍ତର କିନ୍ତୁ ଥିଲା ପୂର୍ବବତ୍ ସଂକ୍ଷିପ୍ତ, ''ସେ ସବୁ ତ ଆମ ବଉଳାଙ୍ଗ ଛକରେ ବି ମିଳୁଚି ।''



# ଉତ୍ତର ମଧ୍ୟାହ୍ନ

ସନାତନଙ୍କ କାନରେ ଯେତେବେଳେ ଯୋଉ ପ୍ରସ୍ତାବ ପଡ଼େ, ସେ ପ୍ରଥମେ ପଚାରି ଦିଅନ୍ତି, ''ପିଲାର ବୟସ କେତେ ?'' କେମିତି ବା ନ ପଚାରନ୍ତେ ପିଲାର ବୟସ ? ଲିଲିକି ପରା ତିରିଶ ଟପିଲାଣି ।

ରିଟାୟାର୍‌ମେଣ୍ଟ ପରେ ସନାତନଙ୍କର ଏକମାତ୍ର ଲାୟବିଲିଟି – ଲିଲିର ବାହାଘର । ଉତ୍ତର ଷାଠିଏରେ ଏଇ ପାରିବାରିକ ଗୁରୁଭାର ଯେମିତି ସନାତନଙ୍କର ଅଫିସ୍ ସୁଲଭ ସକଳ ଦାୟିତ୍ୱକତାକୁ ପ୍ରତିହତ କରିଚି । ମୁଣ୍ଡ ଉପରେ ଭାରାକ୍ରାନ୍ତ ଆକାଶ, ବାମନର ତୃତୀୟ ପାଦପରି ବା ତାଙ୍କୁ ଚାପି ଦେଉଚି ପାତାଳକୁ । ପାଦରେ ତାଙ୍କର ଶତାବ୍ଦୀର କ୍ଳାନ୍ତି, ସାମ୍ନାରେ ଅଳନ୍ଧୁମଗ୍ନ ଦିଗ୍‌ବଳୟ । ତଥାପି ସେ ହାରିବାର ମଣିଷ ନୁହନ୍ତି । ଉଣେଇଶ ବର୍ଷ ବୟସରେ ପିତୃହରା ହୋଇ କିରାଣି ଚାକିରିରେ ଭର୍ତ୍ତି ହୋଇଥିଲେ, ରିଟାୟାର୍ଡ଼ କଲେ ଅଣ୍ଡର୍ ସେକ୍ରେଟାରୀ ଭାବରେ । ଜୀବନର ପ୍ରତି ପାହାଚରେ ସେ ଯୁଝିଛନ୍ତି । ମୁକାବିଲା କରି ଶିଖିଛନ୍ତି ସମୟ ସାଥିରେ ।

କିନ୍ତୁ ରିଟାୟାର୍ଡ଼ ହେବା ପରଠୁଁ ଯାହା ସବୁ କାମ, ତାଙ୍କୁ ଏକା ଏକା ହିଁ କରିବାକୁ ପଡୁଚି । ଆଉ କେହି ବିଶ୍ୱସ୍ତ ଅଧସ୍ତନ ନାହିଁ ଯେ ଯାହା ପିଠିରେ ଭାର ବୋହି ହବ ସହଜରେ ।

ଅବଶ୍ୟ ଅନେକ ଦୃଷ୍ଟିରୁ ସେ ନିଜକୁ ଭାଗ୍ୟବାନ୍ ମନେ କରନ୍ତି । କାରଣ ରିଟାୟାର୍‌ମେଣ୍ଟ ପୂର୍ବରୁ ଭୁବନେଶ୍ୱରରେ କୌଣସିମତେ ତ ଘରଟିଏ ଠିଆ କରେଇପାରିଚନ୍ତି । ତା'ଛଡ଼ା ପୁଅ ଦୁଇଟି ବି ଏନ୍‌ଗେଜ୍‌ଡ଼୍ । ବଡ଼ପୁଅ ସୁମନ୍ତ ପଠାଣକୋଟ୍‌ରେ ମିଲିଟାରୀ ଡାକ୍ତର । ସେ ତା' ପିଲାପିଲି ସହ ସେଇଠି ରହେ । ସାନପୁଅ ସୁଲଗ୍ନ ଆସିଷ୍ଟାଣ୍ଟ ଇଂଜିନିୟର୍ । ଏଇ ଗତବର୍ଷ ତା' ବାହାଘର ହେଲା । ସ୍ତ୍ରୀ ସହ ସେ ଏବେ କଳାହାଣ୍ଡିର ଧର୍ମଗଡ଼ରେ । ଆଉ ଲିଲି ବି ତା' ଭାଇମାନଙ୍କ ପରି ବ୍ରିଲିଆଣ୍ଟ । ଆନ୍ଥ୍ରୋପଲୋଜିରେ ଟପ୍ କରିଥିଲା ୟୁନିଭର୍‌ସିଟିରେ । ସେ ଅଧ୍ୟାପନା କରୁଚି ବି.ଜେ.ବି.ରେ । ଦେଖିବାକୁ ଖୁବ୍ ସୁନ୍ଦର । ସ୍ମାର୍ଟ ବି । ପାଞ୍ଚ ବର୍ଷ ପୂର୍ବରୁ ସେ ହୁଏତ ସନାତନଙ୍କର ଲାୟବିଲିଟି ହୋଇ ନ ଥିଲା । ହେଲେ ଅତିକ୍ରାନ୍ତ ବୟସରେ ଯେକୌଣସି ଶିକ୍ଷିତା ଆଉ ସୁନ୍ଦରୀ ଝିଅ ବି ବାପା ଓ ମା'ଙ୍କର ଲାୟବିଲିଟି ହବାକୁ ବାଧ୍ୟ ।

ସେ ଯେ ଲିଲିର ବାହାଘର ଲାଗି ଆଗରୁ ଚେଷ୍ଟା କରି ନ ଥିଲେ, ତା' ନୁହେଁ । ହେଲେ କୋଉଠି ତାଙ୍କ ମନ ମାନିଲାନି ତ କୋଉ ଜାଗା ଭାରି ନାପସନ୍ଦ ହେଲା ସୁଚିତ୍ରାଙ୍କର । କୋଉଠି ଜାତକ ପଡ଼ିଲା ତ ପିଲା ମନ ମାନିଲା ନାହିଁ । ପୁଣି କୋଉଠି ପିଲା ପସନ୍ଦ ହେଲାବେଳକୁ ଘରଦ୍ୱାର, ଆଭିଜାତ୍ୟ ମନକୁ ପାଇଲା ନାହିଁ । ଯେତେହେଲେ ଲିଲି ସେମାନଙ୍କର ଏକମାତ୍ର ଝିଅ । କେତେ ଅୟସରେ ବଢ଼ିଚି । ସେମିତି ମନଲାଖି ପାତ୍ରଟିଏ ନ ହେଲେ ବାପା ମା' ବା କେମିତି ରାଜି ହୋଇଯା'ନ୍ତେ । କିନ୍ତୁ ବୟସ କ'ଣ କାହାର ରାଜି ଅରାଜିକି ଅପେକ୍ଷା କରେ ? ଯୋଉ ଲିଲି ପାଇଁ ଦିନେ ବରପକ୍ଷରୁ ପ୍ରସ୍ତାବମାନ ଆସୁଥିଲା, ସେଇ ଲିଲି ପାଇଁ ଆଜି କେତେ ଯେ ଲୋକଙ୍କର ଦ୍ୱାରସ୍ଥ ହବାକୁ ପଡୁଚି, ତା'ର ହିସାବ ନାହିଁ । ଆଜିକାଲି ସନାତନଙ୍କ ଡାଏରିରେ ଖାଲି ବରପିତାମାନଙ୍କର ଠିକଣା ଭର୍ତ୍ତି । ସକାଳୁ କ'ଣ ଟିକେ ଜଳଖିଆ ଖାଇ ଦେଇ ସନାତନ ବାହାରି ଯା'ନ୍ତି, ଡାଏରିଟିକୁ ସାଥିକରି । ଫେରନ୍ତି ବିଳମ୍ବିତ ସନ୍ଧ୍ୟାରେ । ସୁଚିତ୍ରା ଉତ୍କଣ୍ଠାର ସହ ପଚାରନ୍ତି, ''କ'ଣ ହେଲା ଆଜି ?'' ଆଉ ସନାତନଙ୍କର ପ୍ରାୟ ପ୍ରତ୍ୟହ ଉତ୍ତର ଥାଏ ଏକାପରି – ନୀରବ ଦୀର୍ଘଶ୍ୱାସଟିଏ ।

ସନାତନ ଓ ସୁଚିତ୍ରାଙ୍କର ବାର୍ତ୍ତାଳାପରୁ କିୟଦଂଶ ନିଶ୍ଚୟ ବାଜୁଥିବ ଲିଲିର କାନରେ, କାରଣ ସେ ତା' ପଢ଼ାଘରେ ବସି କ୍ଲାସ୍‌ପାଇଁ ପ୍ରିପେୟାର୍ କରୁଥାଏ ଠିକ୍ ଏଇ ସମୟରେ ପ୍ରତିଦିନ । କ'ଣ ଲିଲି ଭାବୁଥିବ ମନେ ମନେ ? ଏମିତି ପ୍ରଶ୍ନଟିଏ ଅଧିକାଂଶ ସମୟରେ ଅସ୍ଥିର କରେ ସନାତନଙ୍କୁ । ସେ କ'ଣ କୋଉ ଗାଁଗହଳିର ଝିଅ ହେଇଚି ଯେ ଏଥିଲାଗି ନିଜ ଭାଗ୍ୟକୁ ନିନ୍ଦା କରୁଥିବ । ବରଂ ସେ ତା'ର ବାପା ମା'ଙ୍କର ନୀରବତା, ଭାଇମାନଙ୍କର ଦାୟିତ୍ୱହୀନତାକୁ ଭର୍ତ୍ସନା କରୁଥିବ । ଭର୍ତ୍ସନା କରୁଥିବ ତା' ଉଚ୍ଚଶିକ୍ଷାର ମାନ-ମର୍ଯ୍ୟାଦାକୁ ।

ଗୋଟେ ନିଚ୍ଛକ ଅପରାଧବୋଧରେ ମ୍ରିୟମାଣ ହୋଇପଡୁଥିଲେ ସନାତନ । ନୀରବ ନିଃସହାୟତାରେ ସତେ ଅବା ତରଳି ଯାଉଥିଲା ତାଙ୍କ ମନରେ କୋଉ କାଳରୁ ଜମାଟ ବାନ୍ଧିଥିବା ଦୁଃଖର ତୁଷାର ବଳୟ !

ଖବରକାଗଜ ପୃଷ୍ଠାରୁ କାନ୍ଥ ଘଣ୍ଟା ପୁଣି କାନ୍ଥ ଘଣ୍ଟାରୁ ଖବରକାଗଜ ପୃଷ୍ଠା– ମୁହୁର୍ମୁହୁଃ ଦୃଷ୍ଟି ଅଦଳ ବଦଳ କରୁଥିଲେ ସନାତନ । ଗୋପ କହିଥିଲା ଆସିବାପାଇଁ ଯେ ଏ ପର୍ଯ୍ୟନ୍ତ ତା'ର ଦେଖା ନାହିଁ । କ'ଣ ହେଲା କେଜାଣି ? ବିଳମ୍ବ ହେଲେ ବି ସେ ଯେ ନିଶ୍ଚୟ ଆସିବ, ଏ ବିଷୟରେ କିନ୍ତୁ ସନାତନ ଥିଲେ ନିଃସନ୍ଦେହ । ଚାକିରି ଜୀବନରେ ସେ ଯେତେ ଲୋକଙ୍କ ସଂସ୍ପର୍ଶରେ ଆସିଚନ୍ତି, ଗୋପ କଥା ନିଆରା ! ଲୋକଟା ଏକବାର ବିଶ୍ୱସ୍ତ । ରିଟାୟାର୍‌ମେଣ୍ଟ ପରେ ଅନ୍ୟମାନେ ତ ମୁହଁ ବୁଲେଇ ଚାଲି ଯାଉଚନ୍ତି । ନମସ୍କାରଟେ ଫିଙ୍ଗିବାକୁ ବି କୁଣ୍ଠିତ । ହେଲେ ଗୋପକୁ ଯୋଉ କଥା କହିଲେ ସେ ମାନେ । କାମଟିଏ ବତେଇଲେ ସେ ହେଳା କରେନି । କୋଉ କାଳରେ

ସିନା ସନାତନ ଥିଲେ ତା'ର ହାକିମ, ହେଲେ ଗୋପ ଏପର୍ଯ୍ୟନ୍ତ ବି ତାଙ୍କୁ ହାକିମର ଖାତିର ଦିଏ, ହୁକୁମ ତଳେ ପକାଏ ନାହିଁ । କେବେ ଥରେ କଲମ ଗାରରେ ବିଚରା ଏଲ୍.ଡି.ରୁ ୟୁ.ଡି. ହୋଇଥିଲା ଯେ ସେହି କୃପା କାଣିଚାକ ଏଯାଏ ଶୁଝୁଛି ଲଙ୍କାଗଛ ପରି । ସେ କ'ଣ କମ୍ ପ୍ରସ୍ତାବ ଦେଲାଣି ଲିଲି ପାଇଁ ।

ସେଇ ଗୋପ ଜରିଆରେ ତ କଟକ ପ୍ରସ୍ତାବଟା ବେଶ୍ ଆଗେଇ ଯାଇଥିଲା । ପିଲା, ଘର– ସବୁ ମନ ମାନିଥିଲା । ପିଲାଟି ରିଜର୍ଭ ବ୍ୟାଙ୍କରେ 'ଗ୍ରେଡ୍ ବି' । ସମ୍ଭ୍ରାନ୍ତ ପରିବାର । ତା' ବାପା ଜଣେ ନାମଜାଦା ଶିକ୍ଷକ । ବାଖରାବାଦ୍‌ରେ ଘର । ତାଙ୍କର ବି ଝିଅ ମନ ମାନିଥିଲା, ହେଲେ ଶେଷରେ ଦେଖିଲାବେଳକୁ ପିଲାର ବୟସ କମ୍ । ୟୁନିଟ୍ ନ'ର ମହାପାତ୍ରବାବୁଙ୍କ ପ୍ରସ୍ତାବଟା ସେମିତି ଭାଙ୍ଗିଲା ବୟସ ଅମେଳ ହେତୁ । ଆଉ ଖୋର୍ଦ୍ଧାର ପଟ୍ଟନାୟକବାବୁଙ୍କ ପ୍ରସ୍ତାବ କଥା ଛାଡ଼ । ସେଦିନ ସକାଳୁ ସକାଳୁ ପଟ୍ଟନାୟକବାବୁଙ୍କ ଘରେ ପହଞ୍ଚି ପୁରୁଣା ବନ୍ଧୁ ଭାବରେ ଗୁଡ଼ାଏ ଏଣୁତେଣୁ କଥା ଚାଲିଲା । ଚା' ଧରି ମିସେସ୍ ପଟ୍ଟନାୟକ ଆସି ଡ୍ରଇଂରୁମ୍‌ରେ ପହଞ୍ଚିଲେ ଓ କହୁ କହୁ କହିଲେ, ''ଇଏତ ତମ ଘରକୁ ଯିବାପାଇଁ ବାହାରିଥିଲେ । ବୁବୁନ୍‌ର ବାହାଘର ପରା ଆର ମାସ ସାତ ତାରିଖ ।'' ସନାତନ ଆଉ କରନ୍ତେ ବା କ'ଣ ? ଗୁଡ଼ାଏ ମିଛ କଥାରେ ନିଜକୁ ଲୁଚେଇ ଫେରିଥିଲେ ତାଙ୍କ ଘରୁ ।

ଏମିତି କଟକ, ଭୁବନେଶ୍ୱର, ଖୋର୍ଦ୍ଧା, ପୁରୀ ଏପରି କି ବଡ଼ମ୍ବା ଆଠଗଡ଼ ପର୍ଯ୍ୟନ୍ତ ଡାଏରିଟି ସାଥିରେ ଧରି ଘୂରି ବୁଲିଚନ୍ତି ସନାତନ । ରାଶି ରାଶି ଚିଠି ଲେଖିଚନ୍ତି ବାଲେଶ୍ୱରରୁ ପାରଳାଖେମୁଣ୍ଡି ପୁଣି କେନ୍ଦ୍ରାପଡ଼ାରୁ କରଞ୍ଜିଆ । ଶିକ୍ଷିତ ସମ୍ଭ୍ରାନ୍ତ କରଣ ପିଲାଙ୍କର ଅଭାବ ନାହିଁ କୋଉଠି । ହେଲେ ସବୁ ଅଟକିଯାଉଚି ସେଇ ବୟସ ପାଖରେ । ପାଠପଢ଼ା ସାରି ଚାକିରିବାକିରି କଲା ପରେ କିଏ କାହିଁକି ତିରିଶ ପଇଁତ୍ରିଶ ବର୍ଷ ପର୍ଯ୍ୟନ୍ତ ଅବିବାହିତ ରହିବ । ଭଲ ପିଲାଟିଏ ଆଖିରେ ପଡ଼ିଲେ ପଢ଼ା ନ ସରୁଣୁ ପରା କନ୍ୟା ପିତାମାନେ ଭିଡ଼ ଜମଉଚନ୍ତି !

ଆଜିକାଲି ତେଣୁ ବର ଖୋଜିଲାବେଳେ ବୟସ ବିଷୟରେ ସେ ବେଶ୍ ସଚେତନ । ଯାହାକୁ ଯୋଉଠି ବା ସିଏ ପାତ୍ରଟିଏ ଖୋଜିବାକୁ ଅନୁରୋଧ କରନ୍ତି, ପ୍ରଥମେ କହିଦିଅନ୍ତି, ''ପିଲାଟି ଟିକେ ବୟସ୍କ ହୋଇଥିବା ଦର୍କାର ।'' ଆଉ ଅନ୍ୟାନ୍ୟ ଦିଗ ପ୍ରତି ସେ ଏବେ ଆଖି ବୁଜି ଦେଇଚନ୍ତି । ରୂପ, ଗୁଣ, ବିଭବ– ଏ ସବୁର ବିଚାର ତାଙ୍କ ପାଇଁ ମୂଲ୍ୟହୀନ । କ'ଣ ମିଳିବ ସେଥିରୁ ? ତାଙ୍କ ପାଇଁ ଲୋଡ଼ା ଖାଲି ଉତ୍ତର-ଯୌବନର ଯୁବକଟିଏ, ଯାହା ହାତରେ ସେ ଲିଲିକୁ ଛନ୍ଦି ଦେଇ ଶାନ୍ତିରେ ନିଃଶ୍ୱାସ ମାରିବେ ।

''ଆରେ କିଏ ? ଗୋପ ?''– ବାହାରେ ସାଇକେଲ ଅଟକିବାର ଶବ୍ଦ ଶୁଣି ଡାକ ପାରିଲେ ସନାତନ । 'ସାର୍'– ଭିତରକୁ ପଶୁ ପଶୁ ଯଥାସମ୍ଭବ ବିନମ୍ର କଣ୍ଠରେ

ଉତ୍ତର ଦେଲା ଗୋପ । ଗୋପକୁ ସୋଫାରେ ବସିବାପାଇଁ ଇଙ୍ଗିତ ଦେଇ ଆରମ୍ଭ କଲେ ସନାତନ, ''ତମକୁ ତ ଅନେକ ସମୟ ଧରି ଅପେକ୍ଷା କରିଚି । ଆଉ ସେ ଓଲ୍ଡ଼-ଟାଉନ୍ ପ୍ରସ୍ତାବ କଥା କ'ଣ ହେଲା ?'' ''ସାର୍, ମୁଁ ତାଙ୍କ ଘରକୁ ଯାଇଥିଲି । ପିଲାକୁ ବି ଦେଖିଚି । ତାଙ୍କ ବାପା ଭାରି ଭଦ୍ରଲୋକ, ମା'ବି ! ପିଲାଟି ଏବେ ଷ୍ଟେଟ୍ ବ୍ୟାଙ୍କ୍‌ରେ ପି.ଓ. ଅଛି, ଏଇ ଭୁବନେଶ୍ୱରରେ । ତାଙ୍କର ପ୍ରକୃତ ଘର ବାଙ୍କୀ ଅଞ୍ଚଳରେ । ଏବେ ସେମାନେ ଓଲ୍ଡ଼ ଟାଉନ୍‌ରେ ଏଷ୍ଟାବ୍ଲିସ୍‌ଡ଼ । କିନ୍ତୁ....''

କହୁ କହୁ ଅଟକିଗଲା ଗୋପ ।

: ପୁଣି କିନ୍ତୁ କ'ଣ ? ତୁମେ ' କହୁଥିଲ ପିଲାର ବୟସ ପଇଁତ୍ରିଶ ହବ । –ଉତ୍କଣ୍ଠାର ସହ ପ୍ରଶ୍ନ କଲେ ସନାତନ ।

: ସାର୍, ପିଲାଟି....

: ଓଃ.....କ'ଣ ପିଲାଟି ବୟସ୍କ ଦେଖାଯାଉଛି ? ଏଇ ତ ?

ସାମାନ୍ୟ ରହିଯାଇ ସନାତନ ସୁଚିତ୍ରାଙ୍କୁ ଡାକ ପକାଇଲେ, ''ଏଇ, ଶୁଣୁଚ, ଗୋପ ଲାଗି ଟିକେ କଫି ଆଣ । ଓଲ୍‌ଡ଼ ଟାଉନ୍ ପିଲାଟା ଟିକେ ବୟସ୍କ ଦେଖାଯାଉଚି । କ'ଣ ଚଳିବନି ?''

ଗୋପ ସାମାନ୍ୟ ବିବ୍ରତ ହେଲାଭଳି କହିଲା, ''ସାର୍, କଥା କ'ଣ କି...''

: ...ନା...ମୁଁ କିଛି କଥାଫଥା ଶୁଣିବାକୁ ପ୍ରସ୍ତୁତ ନୁହଁ । ତୁମେ କହ ସେମାନେ ଆସି ଲିଲି କି ଦେଖିଯା'ନ୍ତୁ । ତାଙ୍କ ପସନ୍ଦରେ ଆମ ପସନ୍ଦ ।

ପରେ ପରେ ସୁଚିତ୍ରା ଆସି ଟି'ପୟ ଉପରେ କଫି ଦୁଇ କପ୍ ଥୋଇଦେଇ ଯାଉ ଯାଉ କହିଲେ, ''ତୁମର ତ ସେହି ହାକିମୀ ପାଟି ଗଲା ନାହିଁ । ଟିକେ ଆସ୍ତେ କଥା କୁହ । ପଢ଼ାଘରେ ପରା ଲିଲି ଅଛି ।''

ସୁଚିତ୍ରା ଡ୍ରଇଂରୁମ୍‌ରୁ ଚାଲିଗଲା ପରେ ଗୋପ ତଳକୁ ମୁହଁ ପୋତି ଅନୁଚ୍ଚ କଣ୍ଠରେ କହିଲା,

: ସାର୍, ପିଲାଟିର ସ୍ତ୍ରୀ ମରିଯାଇଚି ବାହାଘରର ବର୍ଷକ ଭିତରେ.... ।

ସନାତନ ଚିହିଁକି ପଡ଼ିଲେ । ମୁହଁରୁ ତାଙ୍କର ହସର ଶାଣ ଧାରଟି ହଠାତ୍ ଉଭେଇଗଲା, ମେଘ ଉହାଡ଼ର ଖଣ୍ଡିତ ଜହ୍ନପରି । ଚଷମାର ଉତ୍ତଳ ଯବକାଚ ଭେଦକରି ହୁଏତ ଦୃଶ୍ୟମାନ ହେଉ ନ ଥିଲା ତାଙ୍କ ଆଖିର ଆର୍ଦ୍ରତା ।

ସଦ୍ୟ ପ୍ରସ୍ତୁତ କଫି କପ୍‌ରୁ କିନ୍ତୁ ଉଷ୍ମ ଝଡ଼ ଉଠୁଥିଲା ଅବିରତ ।



# ଲିଭିଂ ଟୁଗେଦର୍

ଗହନ କଥାଟି ପହିଲେ ପ୍ରଘଟ କଲା ଜଣେ ବାବଦୂକ ସାମ୍ବାଦିକ । ରାଜ୍ୟର ଗୋଟେ ଅଗ୍ରଣୀ ଖବରକାଗଜର ବହୁଳ ଆଦୃତ 'ଗପ ନୁହଁ' ସ୍ତମ୍ଭରେ ଲେଖାଥିଲା – ''ଘଟଣାଟି ଗପପରି ମନେହେବ; କିନ୍ତୁ ଗପ ନୁହେଁ, ସତକଥା । ଉତ୍କଳ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ପ୍ରଫେସର ଡକ୍ଟର ହୃଦାନନ୍ଦ ଦାସ (ଛଦ୍ମନାମ) ତାଙ୍କର ଜଣେ ପତିପରିତ୍ୟକ୍ତା ପ୍ରାକ୍ତନ ଛାତ୍ରୀକୁ ରାଜଧାନୀ ଉପକଣ୍ଠସ୍ଥ ଏକ ଦେବୀ ମନ୍ଦିରରେ ବିବାହ କରିଛନ୍ତି । ପ୍ରଫେସର ଜଣକ ବିପତ୍ନୀକ । ତାଙ୍କର ଏକମାତ୍ର ସୁପୁତ୍ର ଜଣେ ସଫ୍ଟୱେର ଇଞ୍ଜିନିୟର ଓ ସେ ସପରିବାର ଆମେରିକାରେ ଅବସ୍ଥାନ କରନ୍ତି । ତାଙ୍କ ଝିଅ ଜୋଇଁ ଉତ୍ତରପୂର୍ବାଞ୍ଚଳରେ ସୁପ୍ରତିଷ୍ଠିତ ଡାକ୍ତର ଦମ୍ପତି । ପ୍ରୌଢ଼ ପ୍ରଫେସର ଅବସର ଗ୍ରହଣ କରିବାପରେ ସମ୍ଭବତଃ ବିରହ ବେଦନାରେ କୁହୁଳିଲେ ଯକ୍ଷ ପରି । ଏକାକୀ ଜୀବନଯାପନ ତାଙ୍କୁ ହୁଏତ ମନେହେଲା ଦୁର୍ବିଷହ । ସୁତରାଂ ସେ ତରୁଣୀ ଛାତ୍ରୀଟିର ପାଣିଗ୍ରହଣ କଲେ ।''

ଶୀତ ସକାଳ ହେତୁ ଡେରିରେ ପ୍ରାତଃଭ୍ରମଣ କରିବାକୁ ଆସୁଥିବା ସେବାନିବୃତ୍ତ ଅମଲା ଓ ଅମଲା ଚୂଡ଼ାମଣିମାନଙ୍କ ଭିତରେ ଏ ସମ୍ପର୍କୀୟ ଆଲୋଚନାଟିର ସୂତ୍ରପାତ ଘଟିଲା । କାରଣ ଭ୍ରମଣରେ ଆସିବା ପୂର୍ବରୁ ଖବରକାଗଜର ଏହି ଜବର ସମ୍ବାଦଟି ତାଙ୍କ ଦୃଷ୍ଟି ଆଢୁଆଳରେ ରହିପାରି ନ ଥିଲା । ଏହି ମୁରବିମନ୍ୟ ଭଦ୍ରମଣ୍ଡଳୀ ଘଟଣାର ତୀବ୍ର ନିନ୍ଦା କରୁଥିଲେ ଯଦିଓ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହି ସମ୍ବେଦନଶୀଳ ଲେଖାଟି ପାଠକରି ନିଜ ଭିତରେ ଯୌବନକାଳୀନ ଶିହରଣ ଅନୁଭବ କରୁଥିଲେ ଅନେକ ଦିନପରେ ।

ପ୍ରଫେସର ହୃଦୟ ବଲ୍ଲଭ ଦାସଙ୍କ ଆଖିରେ ସ୍ତମ୍ଭଟି ପଡ଼ିଲାକ୍ଷଣି ସେ ରାଗରେ ପାଚିଗଲେ ରଡ଼ନିଆଁ ପରି । ତୋର ସତ୍‌ସାହସ ଯଦି ଥିଲାରେ ଭଣ୍ଡ ସାମ୍ବାଦିକ, ତୁ ନାଁଟା ବଦଳେଇ ଦେଲୁ କାହିଁକି (?), ସକାଳୁ ସକାଳୁ ପ୍ରଫେସର ବହେ ଗର୍ଜିଲେ ମନେମନେ । ବୈଦ୍ୟ ଅନୁମୋଦିତ ଗଜାମୁଗ ପରିବର୍ତ୍ତେ ରକ୍ତଚାଉଳ ଚୋବାଇଲେ । ସୁଲଗ୍ନା ଗରମ ଚା'ର ପିଆଲା ଥୋଉ ଥୋଉ କହିଲା, ''ଖବରକାଗଜରେ ଭୂତ ଦେଖିଲ ନା କ'ଣ ? ବିନା ନିଦରେ ଏମିତି ବାଉଳି ହଉଚ କାହିଁକି ?'' ପ୍ରଫେସର କିନ୍ତୁ କିଛି ଶୁଣିପାରୁ ନ ଥିଲେ । ତାଙ୍କର କାଗଜ ପଢ଼ା ସେଇଠୁ ରହିଲା । ସମ୍ପାଦକଙ୍କୁ

ପ୍ରତିବାଦ ପତ୍ର ଲେଖିବେ ନା ନାହିଁ, ଦ୍ୱନ୍ଦ୍ୱ ଭିତରେ ଆଉଟୁ ପାଉଟୁ ହେଉ ହେଉ ସେ ଟା'କପ୍‌ଟି ନିଃଶେଷ କଲେ । ସୁଦୀର୍ଘ ମାନସମନ୍ଥନ ପରେ ସମ୍ପାଦକଙ୍କୁ ପତ୍ର ନ ଲେଖିବାକୁ ସେ ସ୍ଥିର କଲେ । ତାଙ୍କର ହୃଦ୍‌ବୋଧ ହେଲା ଯେ, ନିଜକୁ ଅଧିକ ବିତର୍କ ଆଡ଼କୁ ଟାଣିଆଣିବା ଓ ଜଣେ ଅଖ୍ୟାତ ସାମ୍ବାଦିକକୁ ବିଖ୍ୟାତ କଲାଭଳି ମୂଢ଼ କାର୍ଯ୍ୟଟି ସେ କରିବା ଉଚିତ ହେବ ନାହିଁ ।

ଉଚ୍ଚ ରକ୍ତଚାପ, ଶର୍କରା ବୃଦ୍ଧି ଓ ଅଗ୍ନିମାନ୍ଦ୍ୟାଦି ଯାବତୀୟ ଜରାଜନିତ ବ୍ୟାଧି ଯୋଗୁଁ ପ୍ରଫେସରଙ୍କ କ୍ରୋଧ ପ୍ରଶମିତ ହେବାକୁ ବେଶ୍ କିଛି ସମୟ ଲାଗିଲା । ତା'ପରେ ସେ ଧୀରମତି ଓ ସ୍ଥିର ଚିତ୍ତରେ ଭାବିବାକୁ ଲାଗିଲେ, ଗତକାଲିର କଥା । ଗତକାଲି ଥିଲା ତାଙ୍କର ଜନ୍ମଦିନ, ଷାଠିଏ ପୂରିଲା ତାଙ୍କୁ । ସୁଲଗ୍ନା ଜିଦ୍ କରି ନ ଥିଲେ ସେ ହୁଏତ ମନ୍ଦିର ଫନ୍ଦିରକୁ ଯାଇ ନ ଥାନ୍ତେ । ଦର୍ଶନର ପ୍ରଫେସର ଥିଲେ ବି ପାଶ୍ଚାତ୍ୟ ଦର୍ଶନ ଦ୍ୱାରା ସେ ଅଧିକ ପ୍ରଭାବିତ ହୋଇଥିଲେ । ଡେକାର୍ଟଙ୍କ ସଂଶୟ ତତ୍ତ୍ୱର ସେ ଥିଲେ ଜଣେ ନିଷ୍ଠାପର ଗବେଷକ । ପୂଜାପାଠରେ ତେଣୁ ତାଙ୍କର କଦାପି ବିଶ୍ୱାସ ନ ଥିଲା । ତଥାପି ସୁଲଗ୍ନାଙ୍କ ମନ ରଖିବାପାଇଁ ସେ ମନ୍ଦିର ଗଲେ । ପୂଜାରେ ବସିଲେ ଚୁପ୍‌ଚାପ୍, ପାଖରେ ସୁଲଗ୍ନା । ଦୀର୍ଘ ସମୟ ଧରି ସେ ପୂଜକର ଅତ୍ୟାଚାର ସହ୍ୟ କଲେ ।

ସନ୍ଧ୍ୟାରେ ପୁଣି ସେ ଆୟୋଜନ କରିଥିଲେ ଏକ ନୈଶଭୋଜି । ନିଜର ସତୀର୍ଥ ଓ ପଡ଼ୋଶୀମାନଙ୍କ ମଧ୍ୟରୁ କତିପୟ ଅନ୍ତରଙ୍ଗ ଭୋଜିକୁ ହୋଇଥିଲେ ନିମନ୍ତ୍ରିତ । ସୁଲଗ୍ନା ସୁପ୍ ଠାରୁ ବିରିଆନି ପର୍ଯ୍ୟନ୍ତ ସବୁ ପ୍ରସ୍ତୁତ କରିଥିଲା ନିଜ ହାତରେ । ଖିଆପିଆ ସାଙ୍ଗକୁ ଗପସପର ଆସର ଜମିଥିଲା ଡେରି ରାତି ପର୍ଯ୍ୟନ୍ତ । ସୁଲଗ୍ନାଙ୍କ ହାତରନ୍ଧାକୁ ସମସ୍ତେ ତାରିଫ୍ କରିଥିଲେ । ତାଙ୍କ ସହ ସୁଲଗ୍ନା ରହୁଥିବା କଥା କାହାକୁ ବା ଅଛପା ଥିଲା ? ତେବେ ଜନ୍ମଦିନ ବାହାନାରେ ସେ ନିଜ ଜୀବନର ଅଧାଲୁଚା ଦିଗଟିକୁ ଉନ୍ମୁକ୍ତ କରିଦେବାକୁ ଚାହୁଁଥିଲେ । ସୁଲଗ୍ନା ଓ ତାଙ୍କର ଏକତ୍ର ରହଣି ସାମାଜିକ ଗ୍ରହଣୀୟତା ଲାଭକରୁ, ଏହାଥିଲା ତାଙ୍କର ଉଦ୍ଦେଶ୍ୟ । ସେହି ଉଦ୍ଦେଶ୍ୟ ମଧ୍ୟ ବେଶ୍ ସାଧିତ ହୋଇଥିଲା, ଯାହା ନୈଶଭୋଜିର ସଫଳତାରୁ ଜଣାପଡ଼ିଥିଲା । ତେବେ ସକାଳ କାଗଜରେ ସେଇ ସାମାଜିକ ଉପାଖ୍ୟାନଟିକୁ ଯେପରି ମସଲାଯୁକ୍ତ ଢାଞ୍ଚାରେ ପରିବେଷଣ କରାଯାଇଥିଲା, ତାକୁ ସେ ଆଦୌ ଗ୍ରହଣ କରିପାରୁ ନ ଥିଲେ ।

ସୁଲଗ୍ନା ଓ ସେ– ଏବେ କ'ଣ ସାଙ୍ଗ ହୋଇ ରହୁଛନ୍ତି ? ଏ ତ ବର୍ଷାଧିକ ତଳର କଥା । ସେଥିଲାଗି ତାଙ୍କୁ କମ୍ ଝଡ଼ଝଞ୍ଜା ଦେଇ ଗତି କରିବାକୁ ପଡ଼ି ନାହିଁ ! ସେତେବେଳେ ସେ ଅଧିସ୍ନାତକ ଦର୍ଶନର ବିଭାଗୀୟ ମୁଖ୍ୟ, ପୁଣି ପି.ଜି. କାଉନ୍‌ସିଲ୍‌ର ଚେୟାରମ୍ୟାନ୍ । ସେହିଦିନରୁ ସୁଲଗ୍ନା ତାଙ୍କ ସହିତ ରହିଲାଣି । ପୁଣି ୟୁନିଭରସିଟି କ୍ୱାର୍ଟର୍ସରେ; କ୍ୟାମ୍ପସ୍ ମଝିରେ । ସହକର୍ମୀମାନେ ହଠାତ୍ ତାଙ୍କ ନୂଆ ଜୀବନଧାରାକୁ

ହଜମ କରିପାରିଲେ ନାହିଁ । ମୁହଁ ମୋଡ଼ିଲେ । ଟାହିଟାପରା କଲେ କେତେଜଣ ସ୍ମାର୍ଟ ଛାତ୍ରଛାତ୍ରୀ । କୁହା ନାହିଁ ବୋଲା ନାହିଁ ହଠାତ୍ ଦିନେ ନିଜ ଚ୍ୟାମ୍ବରକୁ ଡକାଇଥିଲେ କୁଳପତି । ବିଭିନ୍ନ କଥାରେ ଖିଅ ଯୋଡ଼ି ଶେଷକୁ ଘଟଣାଟିର ସତ୍ୟାସତ୍ୟ ଜାଣିବାକୁ ଚାହିଁଥିଲେ ସେ । ପ୍ରଫେସର ବଡ଼ ଦୃଢ଼ତାର ସହିତ ସତ୍ୟକୁ ସାମ୍ନା କରିଥିଲେ । ସ୍ୱାଭାବିକ ଭାବରେ ସ୍ୱୀକାର କରିଥିଲେ ଘଟଣାଟିକୁ । କୁଳପତି ମହାଶୟ ଆଉ ସେ ପ୍ରସଙ୍ଗର ପାଖ ପଶି ନ ଥିଲେ କେବେବି ।

ପନ୍ଦର ବର୍ଷ ପୂର୍ବେ ସୁଲଗ୍ନା ପ୍ରଫେସରଙ୍କ ପାଖରେ ଦର୍ଶନରେ ଏମ୍.ଏ. ପଢୁଥିଲା । ଢେର ଦିନ ପର୍ଯ୍ୟନ୍ତ କିନ୍ତୁ ପ୍ରଫେସର୍ ତାକୁ ଚିହ୍ନି ନ ଥିଲେ । ଛାତ୍ରଛାତ୍ରୀମାନଙ୍କ ଯିବାଆସିବା ତ ଲାଗିଥାଏ । ସମସ୍ତଙ୍କୁ ଚିହ୍ନିବାର କ'ଣ ଅବକାଶ ଥାଏ ? କିନ୍ତୁ ଗୋଟେ ଯୋଡ଼େ ସେମେଷ୍ଟରରେ ପ୍ରଥମ ହେଲା ପରେ ପ୍ରଫେସର ତାକୁ ଥରେ ଡାକିଥିଲେ ଚ୍ୟାମ୍ବର୍‌କୁ । ତା' ଘରଦ୍ୱାର କଥା ପଚାରି ବୁଝିଥିଲେ । ଗୋଟେ ନିପଟ ମଫସଲରୁ ଆସି ବିଶ୍ୱବିଦ୍ୟାଳୟର ଗହଳି ଭିତରେ ହଜି ନ ଯାଇ ନିଜକୁ ଜାହିର୍ କରିବା କ'ଣ କମ୍ ବଡ଼ କଥା ! ପ୍ରଫେସର ତା' ଦାମ୍ଭିକତା ପ୍ରତି ଆକର୍ଷିତ ହୋଇଥିଲେ ସେତେବେଳେ । ପରେ ପରେ ସେହି ସମ୍ପର୍କ ହୋଇଥିଲା ଗାଢ଼ । ସୁଲଗ୍ନା ତାଙ୍କ କ୍ୱାର୍ଟର୍ସକୁ ଆସୁଥିଲା । ପିଲାମାନଙ୍କ ସହ ମିଳାମିଶା କରୁଥିଲା । ବିବେକ ମା'ଙ୍କର ଭାରି ପାଖ ହୋଇଯାଇଥିଲା, ଦିନ କେତେଟାରେ । ତା'ପରେ ପଢ଼ାସାରି ସେ ହୁଏତ ଫେରିଯାଇଥିଲା ତା' ଗାଁକୁ । ଘରେ ସମସ୍ତେ ତା'କଥା ଭୁଲି ଯାଇଥିଲେ ।

ଗୋଟେ ଲମ୍ବା ବ୍ୟବଧାନ ପରେ ପୁଣି ଦେଖା ହୋଇଥିଲା ସୁଲଗ୍ନା ସହିତ । ସେଥର ସେ ତା' ବର ସାଙ୍ଗରେ ଆସିଥିଲା । ଗୃହିଣୀ ଥିବା ସତ୍ତ୍ୱେ ପଢ଼ାପଢ଼ିର ଝୁଙ୍କ କମି ନ ଥିଲା ତା' ମନରୁ । କହିଲା, ''ସାର୍, ଇଏ ଅଫିସ୍ ଗଲାପରେ ମୁଁ ଖୁବ୍ ବୋର୍ ହେଉଛି ଏକା ଏକା । ପୁଣି ପ୍ରାଇଭେଟ୍ କମ୍ପାନିରେ ୟାଙ୍କ ଚାକିରି । ରାତିଦିନ ସମାନ । ମୋ ପାଇଁ କିନ୍ତୁ ଦିନଟିଏ ଲାଗୁଛି ଯୁଗଟିଏ ପରି । ମୁଁ ପିଏଚ୍.ଡି. କରିବାପାଇଁ ତେଣୁ ମନସ୍ଥ କରିଛି । ରାଜି କରାଇଛି ୟାଙ୍କୁ । ଆପଣଙ୍କ ସ୍କଲାର ହବାରୁ ମୋତେ କ'ଣ ବଞ୍ଚିତ କରିବେ ସାର୍ ?'' ସୁଲଗ୍ନାର କଥାବାର୍ତ୍ତା ଏମିତି ବଡ଼ ମଧୁର, ମାର୍ଜିତ । ଯେକୌଣସି ରୁକ୍ଷ ଲୋକକୁ ବି ବଶ କରିପାରିବା ପରି । ପ୍ରଫେସର ମନା କରିପାରିଲେ ନାହିଁ ଯଦିଓ ସେତେବେଳକୁ ସେ ସ୍ମୃତିର ବାହାଘର ପାଇଁ ବ୍ୟସ୍ତ ଥିଲେ ।

ପିଏଚ୍.ଡି. କଲା ସମୟରେ ସୁଲଗ୍ନା ସହିତ ପ୍ରଫେସରଙ୍କ ସମ୍ପର୍କ ସ୍ୱାଭାବିକ ଭାବରେ ବଢ଼ି ଯାଇଥିଲା । ସେ ଅଧିକାଂଶ ସମୟରେ ତାଙ୍କ କ୍ୱାର୍ଟର୍ସକୁ ଆସୁଥିଲା । ସ୍ମୃତିର ଅବର୍ତ୍ତମାନରେ ଆହୁରି ପ୍ରିୟ ହୋଇଯାଇଥିଲା ବିବେକ ମା'ଙ୍କର । ସୁଲଗ୍ନାର ରିସର୍ଚ୍ଚ କାମ ସରିଲାବେଳକୁ ବିବେକ ଗୋଟେ ସଫ୍ଟୱେର କମ୍ପାନିର ଅଫର୍‌ପାଇ ଆମେରିକା ଚାଲିଯାଇଥିଲା । ସେ ମିଆଁ ବିବି ଦୁଇଜଣ ରହୁଥିଲେ

ଏତେ ବଡ଼ କ୍ୱାର୍ଟର୍ସଟାରେ । ସାମୟିକ ହେଲେ ବି ସୁଲଗ୍ନାର ଉପସ୍ଥିତି ତାଙ୍କ ଘରକୁ ବେଳେବେଳେ ପରିପୂର୍ଣ୍ଣ କରୁଥିଲା ।

ତା'ପରେ ହଠାତ୍ ପୁଣି ଉଡାନ୍ ହୋଇଯାଇଥିଲା ସୁଲଗ୍ନା । ବୋଧହୁଏ ତା' ବରର ବଦଳି ହୋଇଥିଲା ଅନ୍ୟ କେଉଁ ସହରକୁ ।

ଇତିମଧ୍ୟରେ ପ୍ରଫେସର ଅଧ୍ୟୟନ ଓ ଗବେଷଣା ଅପେକ୍ଷା ସାଂସାରିକ ଜଞ୍ଜାଳରେ ଅଧିକ ବାନ୍ଧି ହୋଇପଡ଼ିଥିଲେ । ଗୋଟେ ପାରିବାରିକ ଝଡ଼ ତାଙ୍କୁ ଏକପ୍ରକାର ବାକ୍‌ରହିତ କରିଥିଲା । ଯାହା ସେ ସ୍ୱପ୍ନରେ ବି କଳ୍ପନା କରି ନ ଥିଲେ ସେମିତି ଗୋଟେ ଘଟଣା ଘଟିଥିଲା ତାଙ୍କ ପରିବାରରେ । ବିବେକର ବିବେକ ପାଲଟିଥିଲା ଛାଣ୍ଡୁ । ସେ ତା'ର ସହକର୍ମିଣୀ ଜଣକୁ ଚୁକ୍ତିଭିତ୍ତିକ ବିବାହ କରିସାରିବା ପରେ ହିଁ ଘରକୁ ଖବର ପଠାଇଥିଲା । ଝିଅଟିର ବାପା ମା' ଆମେରିକାର ନାଗରିକ ଯଦିଓ ଭାରତୀୟ ବଂଶୋଦ୍ଭବ । ଖ୍ରୀଷ୍ଟିଆନ ପରିବାରରେ ବିବେକର ବିବାହକୁ ସେ ଆଦୌ ବରଦାସ୍ତ କରିପାରୁ ନ ଥିଲେ । କଥାଟାକୁ ବେଶ୍ କିଛିଦିନ ଚାପି ରଖିଥିଲେ । ସତ କିନ୍ତୁ ଲୁଚିପାରିଲା ନାହିଁ ବେଶିଦିନ । ଘରକଥା ପଦାରେ ପଡ଼ିଲା । ପଡ଼ିଶା ଘରୁ କ୍ୟାମ୍ପସ୍ ସେଠୁ ପୁଣି ରାସ୍ତାଘାଟ, ବନ୍ଧୁବାନ୍ଧବଙ୍କ ଆଡ଼କୁ ବ୍ୟାପିଲା ଘଟଣାଟିର ପରିବର୍ଦ୍ଧିତ ସଂସ୍କରଣ ।

ସେତେବେଳକୁ ପ୍ରଫେସର, ବିବେକକୁ ତ୍ୟାଜ୍ୟପୁତ୍ର କରିସାରିଥିଲେ । ଏବଂ ସେଇଠୁ ଆରମ୍ଭ ହୋଇଥିଲା ବିବେକ ମା'ଙ୍କର ବେମାରି । ପ୍ରାଣଠାରୁ ଅଧିକ ସେ ଭଲ ପାଉଥିଲେ ବିବେକକୁ । ତା'ଠୁଁ ଦୂରେଇ ରହିବାର ଧକ୍‌କା ସେ ବା କିପରି ସହ୍ୟ କରିପାରିଥା'ନ୍ତେ । ଏହି ମାନସିକ ଧକ୍କା ତାଙ୍କ ନିରାମୟ ଜୀବନର ମେଘନାଦ ପାଚେରିକୁ ଭାଙ୍ଗିରୁଜି ଚୂର୍‌ମାର୍ କରିଦେଲା । ମାତ୍ର କେତୋଟି ଦିନ ଭିତରେ ସେ ରୁଗ୍‌ଣା ପାଲଟିଗଲେ । ତାଙ୍କ ସ୍ୱାସ୍ଥ୍ୟର ଦ୍ରୁତ ଅବନତି ପ୍ରଫେସରଙ୍କୁ କଲା ବ୍ୟସ୍ତବିବ୍ରତ । ବିଶେଷଜ୍ଞ ଡାକ୍ତରଙ୍କ ପରାମର୍ଶ ଅନୁସାରେ ତାଙ୍କୁ ଲମ୍ବା ଚିକିତ୍ସାରେ ରଖାଗଲା । ପିଲାଟିଦିନୁ ସଂସାର ପଦ୍ମପତ୍ରରେ ଜଳପରି ରହି ଆସୁଥିବା ପ୍ରଫେସର, ଜଞ୍ଜାଳ ଭାରରେ ଚାପି ହୋଇଯାଉଥିଲେ ପାତାଳକୁ ।

ଝିଅ ଦ୍ୱାଇଁ ଅବଶ୍ୟ ଦୌଡ଼ିଆସିଲେ ମେଘାଳୟରୁ । କିନ୍ତୁ ନିଜ ପ୍ରଫେସନ୍ ଛାଡ଼ି କେତେଦିନ ବା ସେମାନେ ମା' ପାଖରେ ରହିପାରିଥା'ନ୍ତେ ? ବିବେକମା' ବି 'ତୁମେମାନେ ଚାକିରି ଜାଗାକୁ ଯାଅ ଯାଅ' ବୋଲି ବାରବାର ତାଗିଦା କଲେ । ମା'ର ସ୍ୱାସ୍ଥ୍ୟ ବିଷୟରେ ସେ ବିବେକକୁ କିନ୍ତୁ ଖବର ଦେଲେ ନାହିଁ । ବିବେକକୁ ଦେଖିବା ଲାଗି ଅବଶ୍ୟ ତା' ମା' ଭାରି ବ୍ୟଗ୍ର ହେଉଥିଲେ ମନେମନେ । କିନ୍ତୁ ପ୍ରଫେସରଙ୍କ ଜିଦ୍‌ର ବଳୟକୁ ସେ କେବେ ବି ଡେଇଁଥିଲେ ନା ଏବେ ଡେଇଁବାକୁ ଚେଷ୍ଟା କରୁଥିଲେ ।

କିନ୍ତୁ ବିବେକ ମା'ଙ୍କର ଯେ ଆୟୁଷ ଆଉ ଲମ୍ବା ନାହିଁ, ଏକଥା ବୁଝିବାପାଇଁ ପ୍ରଫେସରଙ୍କୁ ଡେରି ଲାଗିଲା ନାହିଁ । ଡାକ୍ତରମାନେ ପରୋକ୍ଷରେ ତା'ର ସୂଚନା ଦେଲେ ବାରମ୍ବାର । ସେ ଚହଲିଗଲେ । ତାଙ୍କ ଟାଣପଣ କ୍ରମଶଃ ତରଳିବାକୁ ଆରମ୍ଭ କଲା । ସୁଦୀର୍ଘ ଯୁଗଳ ଜୀବନଯାତ୍ରାର ସମ୍ଭାବ୍ୟ ଅବସାନରେ ସେ ଭାରି ମ୍ରିୟମାଣ ହୋଇପଡ଼ିଲେ ।

ପ୍ରଫେସରଙ୍କ ମନ ଆଉ ତାଙ୍କ ଆୟତ୍ତରେ ରହିଲା ନାହିଁ । ସେ ତକିଆରେ ମୁହଁ ଜାକି କାନ୍ଦିଲେ, ଅନୂଢ଼ା କିଶୋରୀଟିଏ ପରି । ଦିନେ ହଠାତ୍ ସେ ବିବେକକୁ ଫୋନ୍ ଲଗାଇଲେ ଓ କହିଲେ, ''ଶେଷଥର ପାଇଁ ତୋ ମା'କୁ ଦେଖିବୁ କି, ଯଦି ମନ ବଳୁଛି ଚାଲି ଆ ସହଳ । ତା' ଅନ୍ତିମ ଯାତ୍ରାର ଅବଗଣନା ଆରମ୍ଭ ହେଲାଣି ।''

ବିବେକ ଆସି ପହଞ୍ଚିଲା ପରେ ପ୍ରଫେସର ତାକୁ ଆକାଶର ଅଗଣିତ ତାରାମାନଙ୍କ ଭିତରୁ ଗୋଟାକୁ ହାତଠାରି ଦେଖାଇଦେଲେ ଓ ତୋ ମା' କ'ଣ କେବେ ମରିପାରେ ବୋଲି କହୁକହୁ କାନ୍ଦି ପକେଇଲେ । ସ୍ମୃତି ଓଗେର ସେହିଦିନ ବି ଆସି ପହଞ୍ଚିଲେ ଘରେ । ବଢ଼ିଲା ପୁଅ ଝିଅମାନେ କ'ଣ ଛେଉଣ୍ଡ ହୁଅନ୍ତି ? କେଜାଣି ! ବିବେକ ଓ ସ୍ମୃତିକୁ କିଛିକ୍ଷଣପାଇଁ ହୁଏତ ଛେଉଣ୍ଡପଣ ମାଡ଼ି ବସିଥିବ । ପ୍ରଫେସର୍ ନିଜେ କିନ୍ତୁ ଛେଉଣ୍ଡ ହୋଇଯାଇଥିଲେ ସବୁଦିନପାଇଁ ।

ଦର୍ଶନଶାସ୍ତ୍ରରେ ବୁଡ଼ି ରହି ନିରବତାର ମୋହିନୀ ରୂପରେ ଏକଦା ମୁଗ୍ଧ ହେଉଥିଲେ ପ୍ରଫେସର । ଏବେ ସେହି ନିରବତା ତାଙ୍କୁ ଭୂତପରି ଡରଉଥିଲା ଯେମିତି ! ବରିଷ୍ଠ ପ୍ରଫେସରଙ୍କ ବାସଭବନ ତ ଗୋଟାଏ ଛୋଟକାଟର ଉଆସ । ତା'ଭିତରେ ସେ ଏକା । ଚପରାସୀଟି କେତେବେଳେ ଆସି ପୁଣି କେତେବେଳେ ଚାଲିଯାଏ, ପ୍ରଫେସର ଜାଣିପାରନ୍ତି ନାହିଁ । ନିଜ ପାଇଁ ନିଜେ ଚା' ତିଆରି କରନ୍ତି । ନିଜ ଖାଇବା ଅବଶ୍ୟ ପ୍ରସ୍ତୁତ କରିଦିଏ ବୃଦ୍ଧ ଚପରାସୀ । ଦିନ ଥାଉ ଥାଉ ବାହୁଡ଼ିଯାଏ ତା' ଘରକୁ । ପ୍ରଫେସର୍ଙ୍କ ସହଯୋଗୀ ଭାବରେ ଥା'ନ୍ତି ଟି.ଭି.ଟିଏ ଆଉ ଥାକ ଥାକ ବହି । ବିଶ୍ୱ ସମ୍ବାଦଠାରୁ ଆଇଗଣ ଚାଷର ତର୍ଜମା ପର୍ଯ୍ୟନ୍ତ ଯାହା ଦେଖିଲେ ବି ଆହୁରି ବଳିପଡ଼େ ଯଥେଷ୍ଟ ସମୟ । ବହିପତ୍ର ଓ ଗବେଷଣା କାମରେ ଘଣ୍ଟାଘଣ୍ଟା ଧରି ମଜ୍ଜି ରହିଲେ ବି ଆହୁରି ଲମ୍ବିଥାଏ ଅସରା ସମୟର ସୁଡ଼ଙ୍ଗ । ଆହା– ସମୟର ଗତି ପୁଣି ଏଡ଼େ ମନ୍ଥର ହୋଇପାରେ ! ହୋଇପାରେ ପୁଣି ରାତି ଏତେ ଦୀର୍ଘ ! ଆଶ୍ଚର୍ଯ୍ୟ ହେଉଥିଲେ ପ୍ରଫେସର ।

ଆହୁରି ଆଶ୍ଚର୍ଯ୍ୟ ହେଉଥିଲେ ସେ ତାଙ୍କ ଘରେ ଆଉ କେବେ କାହାର ପାଦ ନ ପଡ଼ିବା ଦେଖି । ଛାତ୍ରଛାତ୍ରୀ, ସହକର୍ମୀ, ପଡ଼ୋଶୀ– ସମସ୍ତଙ୍କର ଭିଡ଼ ଜମୁଥିଲା ଘରେ । ସେ ବେଳେବେଳେ ଚିଡ଼ି ଯାଉଥିଲେ । ନିରୋଳା ସମୟ ପାଇବାପାଇଁ

ବ୍ୟାକୁଳ ହେଉଥିଲେ । କେଉଁ ଦାର୍ଶନିକ ଦ୍ୱନ୍ଦ୍ୱର ସମାଧାନ ଅଥବା କେଉଁ ସନ୍ଦର୍ଭର ଉପସଂହାରପାଇଁ ସେ ବେଳେବେଳେ କେଉଁ ନିର୍ଜନ ସ୍ଥାନକୁ ଚାଲିଯାଉଥିଲେ କାହାକୁ କିଛି ନ କହି । କିନ୍ତୁ ଏବେ ଏତେ ନିରୋଳା ମୁହୂର୍ତ୍ତକୁ ସେ ଖର୍ଚ୍ଚ କରିବେ କିପରି ?

କାବ୍ୟରସିକ ପ୍ରଫେସର ଏହି ବ୍ୟଥା ଭିତରେ ବି ବେଳେବେଳେ ଗୁଣୁଗୁଣେଇ ହେଉଥିଲେ, 'ଓଃ ସଲିଚ୍ୟୁଡ୍ ହୋୟାର୍ ଆର୍ ଦ ଚାର୍ମ୍ସ ଦ୍ୟାଟ୍ ସେଜେସ୍ ହ୍ୟାଭ୍ ସିନ୍ ଇନ୍ ଦାଇ ଫେସ୍' । କାବ୍ୟାଂଶର ଏହି ପ୍ରଶ୍ନବାଚୀ ଏକ ଭୟଙ୍କର ପ୍ରତିଧ୍ୱନି ପରି ଫେରିଆସୁଥିଲା ତାଙ୍କ ପାଖକୁ ଅବିଳମ୍ବେ ଏବଂ ତାଙ୍କ ଅସ୍ଥିମଜ୍ଜାକୁ ଥରେଇ ଦେଉଥିଲା ।

ଏମିତି ଉଦାସ ଭିତରେ ପ୍ରଫେସର ବୁଡ଼ି ରହିଥିଲାବେଳେ ହଠାତ୍ ଦିନେ ଝଡ଼ପରି ଆସି ପହଞ୍ଚି ଯାଇଥିଲା ସୁଲଗ୍ନା । ଭାରି ବିମର୍ଷ ଦିଶୁଥିଲା ସେ । ସେ ରାଏ ମିଠାହସ, ଯାହା ତା' ଓଠରେ କି ଖରା କି ବର୍ଷା ସବୁବେଳେ ଲଟକି ରହିଥାଏ, ଯେମିତି ଉଡ଼ି ଯାଇଥିଲା ଅମାନିଆ ବାଆ-ବତାସରେ । ପ୍ରଫେସର ଠିକ୍ ବୁଝିପାରୁଥିଲେ ଯେ ଜୀବନର କେଉଁ ଝଞ୍ଜାରେ କେଜାଣି ଝାଉଁଳି ପଡ଼ିଛି ସୁଲଗ୍ନା ! କିନ୍ତୁ ସେ କିଛି ବି ତାକୁ ପଚାରିଲେ ନାହିଁ । କେମିତି ପଚାରନ୍ତେ ଯେ ? ନିଜେ ତ ଗୋଟେ ଝାଉଁଳା ଗଛରେ ସେ କେବେଠୁଁ ପରିଣତ ହୋଇସାରିଥିଲେ । ସୁଲଗ୍ନା ବି ମୁହଁ ଖୋଲିଲା ନାହିଁ ତା' ଆଡୁ ପହିଲେ ।

ପ୍ରଥମେ ପ୍ରଥମେ ଘଣ୍ଟେ ଦି'ଘଣ୍ଟା ପ୍ରଫେସରଙ୍କ କ୍ୱାର୍ଟର୍ସରେ ରହିଲା ସୁଲଗ୍ନା । ଛୋଟମୋଟ କାମଟେ କରିଦେଲା ଓ ଚାଲିଗଲା ତା' ବାଟରେ । ବେଳେବେଳେ ତା' ପ୍ରିୟ ମାଡାମ୍‌ଙ୍କ କଥା ପଚାରିଲା । ମାଡାମ୍ ପୀଡ଼ିତ ଥିବା କଥା ଜାଣିଥିଲେ ସେ ନିଶ୍ଚୟ ଆସିଥା'ନ୍ତା ବୋଲି କହିଲା । ପରେ କିନ୍ତୁ ଖବରକାଗଜରୁ ସେ ଦୁଃସମ୍ବାଦଟି ପଢ଼ିଥିଲା ଓ କୁଆଡ଼େ ଖୁବ୍ କନ୍ଦାକଟା କରିଥିଲା । ତେବେ ହଠାତ୍ ଦେଖାକରି କେଉଁ ଭାଷାରେ ସାର୍‌ଙ୍କୁ ପ୍ରବୋଧନା ଦେବ ବୋଲି ସେ ଜାଣିପାରିଲା ନାହିଁ । ତେଣୁ ଆସୁ ନ ଥିଲା ଆଗରୁ । ପ୍ରଫେସର ସବୁକଥା ଶୁଣି ବି ଶୁଣିପାରୁ ନ ଥିଲେ । ତାଙ୍କୁ ଉହାଡ଼ କରିଥିଲା ଅନ୍ୟମନସ୍କତା ।

ଦିନେ ସୁଲଗ୍ନା କହୁ କହୁ କହିଦେଲା ତା' ନିଜ ବିଷୟରେ । ସେ ଡିଭୋର୍ସଡ ହୋଇଥିବା କଥା । ପ୍ରଫେସର କଥାଟା ଶୁଣୁଶୁଣୁ କାବା ହୋଇଗଲେ । ଏପରି ସୁନ୍ଦରୀ, ସୁଶୀଳା ଓ ମେଧାବୀ ଝିଅଟିକୁ ତା' ସ୍ୱାମୀ କାହିଁକି ବା ପରିତ୍ୟାଗ କରିବ ? ଶାଶୂ, ଶ୍ୱଶୁର କାହିଁକି ବା ହତାଦର କରିବେ ? କଥାଟା ଯୌତୁକଜନିତ ନୁହେଁ ତ ? ନା ତା' ବର ସୁଲଗ୍ନାର ଚରିତ୍ରକୁ ସନ୍ଦେହ କରି ଏମିତି କାମଟେ କରିଦେଲା ତରବରିଆ ଭାବରେ ! ଆଉ କ'ଣ ବା କାରଣ ହୋଇପାରେ ଡିଭୋର୍ସର ? ଯୁବକଟି ତ ଶାନ୍ତ

ସରଳ ପରି ଜଣାପଡୁଥିଲା ? ତା'ର ଆଉ କେଉଁ ଝିଅ ସହିତ ସମ୍ପର୍କ ଥିଲା କି ବାହାଘର ପୂର୍ବରୁ ? ନା ବାହାଘର ପରେ ସେ କାହା ପ୍ରେମରେ ପଡ଼ିଯାଇଛି । ପ୍ରଫେସର୍ ଏସବୁ କଥା ଭାବୁଥିଲେ ସିନା, ସୁଲଗ୍ନାକୁ କିଛି କିନ୍ତୁ ପଚାରିବାକୁ ଭରସୁ ନ ଥିଲେ ।

ସୁଲଗ୍ନା କିନ୍ତୁ ଖୁବ୍ ଫ୍ରି ଏଣ୍ଡ୍ ଫ୍ରାଙ୍କ୍ । ତା' ବର କଥା ନିଜେ ସିଏ ବଖାଣିଲା– ପାଠପଢ଼ା ଦିନରୁ କୁଆଡ଼େ ଗୋଟେ ଝିଅ ସହ ସମ୍ପର୍କ ଥିଲା ତା' ବରର । କିନ୍ତୁ ମାଷ୍ଟର ବାପାର କଥା କାଟି ନ ପାରି ସେ ସୁଲଗ୍ନାକୁ ବାହା ହୋଇଥିଲା । ଦିନ କେତେ ବେଶ୍ ଭଲ ପଡ଼ିଲା ଦୁହିଁଙ୍କର । କେହି କାହାକୁ ନ ଦେଖିଲେ ମୁହୂର୍ତ୍ତେ ରହିପାରୁ ନ ଥିଲେ ଯେମିତି । ତା' ବରଟା ଏତେ ହିପୋକ୍ରେଟ୍ ବୋଲି ସୁଲଗ୍ନାର ଜମା ଧାରଣା ନ ଥିଲା । ତା' ଭଲ ପାଇବାଟା ଥିଲା ଗୋଟେ ଅଭିନୟ । ବିବାହ ପରେ ସେଇ ଝିଅ ସହ ସେ ନିୟମିତ ସମ୍ପର୍କ ରଖୁଥିଲା ।

ଥରେ ଦି'ଥର ସେହି ଝିଅଟିର ଫୋନ୍ ଧରିଥିଲା ସୁଲଗ୍ନା । ପ୍ରଥମଥର ଯେତେବେଳେ ଫୋନ୍ ଧରିଥିଲା, ସେ ପଚାରିଥିଲା, ''ତମେ କିଏ ? କାହିଁକି ଖୋଜୁଛ ତାଙ୍କୁ ? କ'ଣ ତମର ସମ୍ପର୍କ ତାଙ୍କ ସହ ?'' ଏମିତି ପ୍ରଶ୍ନସବୁ ଏକାବେଳକେ ଶୁଣି ଝିଅଟି ବୋଧହୁଏ ହଡ଼ବଡ଼େଇ ଗଲା । ସେଇଠୁ ସୁଲଗ୍ନା ମନରେ ସନ୍ଦେହ ହେଲା । ସେ ଝିଅଟି କିଏ ବୋଲି ସେ ଓଲଟି ପ୍ରଶ୍ନ କଲା ତା' ବରକୁ । ଏବଂ ତା' ବର ସିଏ କେହି ନୁହେଁ ବୋଲି କହିଲା ଓ ଅଯଥାରେ ବିରକ୍ତ ହେଲା ।

ସେହି ଦିନରୁ ଦୁହିଁଙ୍କ ଭିତରେ ଚାଲିଲା ମନୋମାଳିନ୍ୟ । ମନୋମାଳିନ୍ୟ କଥା କଟାକଟିର ରୂପନେଲା । ସେଠୁ ଝଗଡ଼ାଝାଟି । ଘରଲୋକଙ୍କ କାନକୁ କଥା ଗଲା । ଦୁଇ ପରିବାର ବସି ଆପୋସ ସମାଧାନର ବାଟ ଖୋଜିଲେ । ତା' ଭିତରେ ସୁଲଗ୍ନାର ବର ପ୍ରମୋଶନ ପାଇଲା ଓ ତା'ର ବଦଳି ହେଲା ବାଙ୍ଗାଲୋର୍ । ଦରମା ଏକାଥରକେ ଚାରି ଗୁଣା ବଢ଼ିଲା । ରାତାରାତି ତା'ର ଷ୍ଟାଟସ୍ ବଦଳିଗଲା, ବଦଳିଗଲା ଜୀବନଧାରା । ତହୁଁ ନିମ୍ନ ମଧ୍ୟବିତ୍ତ ସଂସ୍କୃତି ତାକୁ ହେୟ ମନେହେଲା । ପୁରୁଣା ପ୍ରେମିକାଟିକୁ ସାଙ୍ଗରେ ଧରି ସେ ବାଙ୍ଗାଲୋର ଛୁ' ମାରିଲା । ସେଠି ଯାଇ ପ୍ରେମିକା-ପତ୍ନୀର ବୁଦ୍ଧିରେ ପଡ଼ି ଗୋଟେ ଡିଭୋର୍ସ ସୁଟ୍ କଲା ।

ସୁଲଗ୍ନା ଆଉ ବେଶିଦିନ ଶାଶୂଘରେ ରହିପାରିଲା ନାହିଁ । ବାହୁଡ଼ିଲା ବାପଘରକୁ । ବାପଘରେ ବାହାହେଲା ଝିଅଟେ କେତେଦିନ ଆଉ ରହିପାରନ୍ତା । କେଉଁଠି ଗୋଟେ ଲାଗିଯିବା ଆଶାରେ ସେ ପହଞ୍ଚିଗଲା ତା' ଚିହ୍ନା ସହରରେ ।

ଚିହ୍ନା ସହରରେ କିନ୍ତୁ ମୁହଁମାନେ ଅଚିହ୍ନା ହୋଇଯାଇଥିଲେ । ଅନିଚ୍ଛାସତ୍ତ୍ୱେ ସୁଲଗ୍ନା ପହଞ୍ଚିଗଲା ସହପାଠିନୀ ରୀନା ଘରେ । ରୀନାର ବର ସହର ଆଖପାଖର ଗୋଟେ ଘରୋଇ କଲେଜର ଅଧ୍ୟାପକ । ସହର ଉପାନ୍ତରେ ତାଙ୍କର ଭଡ଼ାଘର ।

ରୀନା ମାଷ୍ଟ୍ରାଣୀ । ତାଙ୍କ ବସାଘରେ ବ୍ୟାଗ୍ ଖଣ୍ଡିକ ଥୋଇ ସେ ଚାଲିଆସିଥିଲା ପ୍ରଫେସରଙ୍କ ପାଖକୁ । ଆଶାଥିଲା, ପ୍ରଫେସର ଫୋନ୍ ଉଠେଇଲେ କେଉଁଠିନା କେଉଁଠି ଆଶ୍ରା ନ ହେଲେ ଆଶ୍ୱାସନା ମିଳିଯିବ । କିନ୍ତୁ ସେକଥା ପ୍ରଫେସରଙ୍କୁ କହିବାପାଇଁ ତା' ଜିଭ ଲେଉଟୁ ନ ଥିଲା ଯେମିତି ! ଆପଣା ଦୁଃଖରେ ଜଳୁଥିବା ଗୋଟେ ମଣିଷ କାନ୍ଧରେ କିପରି ବା ସେ ଲଦିଦିଅନ୍ତା ଆଉ ଗୋଟେ ଭାର ।

ପ୍ରଫେସରଙ୍କ ଘରକୁ ସୁଲଗ୍ନାର ଅନିୟମିତ ଆସିବାଯିବା ଖୁବ୍ କମ୍ ଦିନ ଭିତରେ ନିୟମିତ ହୋଇଗଲା । ଦିନରେ ରୋଷେଇବାସ କରି ଦେ ପରଶିଲା ପ୍ରଫେସରଙ୍କୁ । ରାତିପାଇଁ ରୁଟି କରି ହଟ୍‌କେସରେ ଥୋଇ, ତର୍କାରି ଥୋଇ ୍ରିଜ୍‌ରେ ସେ ବାହୁଡୁଥିଲା ରୀନା ଘରକୁ । ଦିନେଦିନେ ପୁଣି ରହିଗଲା ରାତିରେ । କେବେ ରୋଷେଇ ସାରୁସାରୁ ସଞ୍ଜ ଗଡ଼ିଗଲା ତ କେଉଁଦିନ ଲମ୍ବା ଗପସପ, ଶେଷ ବସ୍ ଚାଲିଯିବାର ଆଶଙ୍କା ସୃଷ୍ଟିକଲା । ଏମିତି ରହୁ ରହୁ ରହିଗଲା ସୁଲଗ୍ନା ପ୍ରଫେସରଙ୍କ କ୍ୱାର୍ଟର୍ସରେ । ଆଉ ସେହି ରହିବା ଭିତରେ ସେ ଘରସାରା ଆଚ୍ଛାଦିତ ହୋଇଗଲା ନୂଆ ମେଘପରି ।

କେତେଜଣଙ୍କୁ କହିଥିଲେ ପ୍ରଫେସର୍ ସୁଲଗ୍ନାର ଏନ୍‌ଗେଜ୍‌ମେଣ୍ଟ ପାଇଁ । ପ୍ରତିଶ୍ରୁତି ମିଳିଥିଲା । କିନ୍ତୁ ଚାକିରି ମିଳିବା ହୁଏତ ଡେରି ହେଉଥିଲା । ସୁଲଗ୍ନା ପ୍ରଫେସରଙ୍କ କ୍ୱାର୍ଟର୍ସ ଛାଡ଼ି ଯାଉ ନ ଥିଲା । ପ୍ରଫେସର୍ କିନ୍ତୁ ଧୀରେ ଧୀରେ ଘନ କୁହୁଡ଼ି ଭିତରୁ ଫିଟି ପଡୁଥିଲେ ।

ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ରେ ତାଙ୍କ ଜୀବନଯାପନକୁ ନେଇ ହୋଇଥିବା ବିତର୍କ ଝଡ଼ର ରୂପ ନେବା ପୂର୍ବରୁ ପ୍ରଫେସର ଅବସର ଗ୍ରହଣ କରିଥିଲେ ଓ ତୁରନ୍ତ ସହର ମଝିରେ ଥିବା ତାଙ୍କ ନିଜ ଘରକୁ ଚାଲିଆସିଥିଲେ । ତାଙ୍କ ସହିତ ବି ଆସିଥିଲା ସୁଲଗ୍ନା ।

ଅନେକ ଦିନ ତଳେ ବହୁ କୋଠରିବିଶିଷ୍ଟ ବଡ଼ ଘରଟେ ତୋଳାଇଥିଲେ ପ୍ରଫେସର୍ । ଏଡ଼େବଡ଼ ଘରଟା ଏଡ଼େ ଅଲୋଡ଼ା ହୋଇପଡ଼ିବ ବୋଲି କ'ଣ ସେ ଜାଣିଥିଲେ ? ନିଜ ସ୍ୱପ୍ନର ସଂକେତ ଘରଟି ହୁଏତ ତାଙ୍କୁ ଭୂତକୋଠି ପରି ଖାଁ ଖାଁ ଲାଗିଥା'ନ୍ତା, ଯଦି ସୁଲଗ୍ନା ନ ଥା'ନ୍ତା ପାଖରେ !

ଝଡ଼ଟିଏ କେବେ ଯେମିତି ପ୍ରଫେସରଙ୍କ ପାଖ ଛାଡୁ ନ ଥିଲେ । ଘରବାହାରେ ଝଡ଼ ଦାନା ବାନ୍ଧୁଥିଲା । ଅବସରପ୍ରାପ୍ତ ପ୍ରଫେସରଙ୍କର ତରୁଣୀ ଭାର୍ଯ୍ୟା ପ୍ରସଙ୍ଗ କାହାକୁ ବା ସୁସ୍ୱାଦୁ ନ ଲାଗନ୍ତା ? ଘର ଭିତରେ ବି ଝଡ଼ର ଭୟାବହତା କମ୍ ନ ଥିଲା । ଦିନେ ହଠାତ୍ ବିବେକଠାରୁ ମେସେଜ୍ ପାଇଲେ ପ୍ରଫେସର । ମେସେଜ୍‌ର ସାରାଂଶ ଥିଲା ଅତି ସରଳ– ''ତମେ ମୋତେ କାହିଁକି ତ୍ୟାଜ୍ୟପୁତ୍ର କଲ, ଏବେ ସିନା ଜଣାପଡ଼ିଲା ? ତମ ଛାତ୍ରୀ ନାଁରେ ସମସ୍ତ ସମ୍ପତ୍ତି ୱିଲ୍ କରିଦେଲେ ବି ମୋର ଆପତ୍ତି ନାହିଁ ।

ଆମ ଉଭୟଙ୍କର ଅର୍ଜନ ଆମକୁ ପ୍ରାଚୁର୍ଯ୍ୟ ଭିତରକୁ ଟାଣି ନେଇଛି ।'' ଦିନେ ନା ଦିନେ ଏମିତି ଝଡ଼ଟେ ବହିବ ବୋଲି ପ୍ରଫେସର୍‌ ହୁଏତ ଜାଣିଥିଲେ । ବିବେକର କଟୂକ୍ତି ତେଣୁ ତାଙ୍କୁ କାଟୁ କଲା ନାହିଁ ।

କିନ୍ତୁ ସ୍ମୃତିର ଚିଠିପାଇ ପ୍ରଫେସର ମୂର୍ଚ୍ଛା ଯିବାରୁ ଅଳ୍ପକେ ବର୍ତ୍ତିଗଲେ । ସ୍ମୃତିକୁ ସେ ସବୁକଥା ଖୋଲି ଲେଖିଥିଲେ, ଯାହା କହିପାରୁ ନ ଥିଲେ ଫୋନ୍‌ରେ । ସୁଲଗ୍ନା ତାଙ୍କର ଏକଲାପଣକୁ ଦୂର କରିଛି ଓ ଦେ ଆର୍‌ ଲିଭିଂ ଟୁଗେଦର୍‌ ବୋଲି ସେ ସ୍ପଷ୍ଟ ଉଲ୍ଲେଖ କରିଥିଲେ ଚିଠିରେ । ଲେଖିଥିଲେ ପୁଣି ''ଜୋଇଁଙ୍କ ସହ ଆସିବୁରେ ମା', ତୋତେ ଦେଖିବାକୁ ଅସ୍ଥିର ହେଲାଣି ମନ ।'' ସ୍ମୃତି କିନ୍ତୁ ଉତ୍ତର ଫେରେଇଥିଲା, ''ବାପା, ତମେ ଆମ ମୁହଁ ତଳକୁ କରିଦେଲ । ଆମେ ଯିବୁ କିପରି ଯେ ?'' ମା' ହୋଇସାରିଲା ପରେ ବି ତୁ ଗୋଟେ ବୁଢ଼ା ପୁଅର ଦୁଃଖ ବୁଝିପାରିଲୁ ନାହିଁ ଯାହା– ପ୍ରଫେସର ସ୍ୱଗତୋକ୍ତି କଲେ । ଜିଇଁବା ଆଗରେ ଜୀବନର ଅନ୍ୟସବୁ ବିବେଚନା କ'ଣ ତୁଚ୍ଛ ନୁହେଁ, ସେ ପୁଣି ନିଜକୁ ପଚାରୁ ପଚାରୁ କାନ୍ଦି ପକାଇଲେ ।

ସୁଲଗ୍ନା ଚାଲିଯାଆନ୍ତା କି ଭଲା ! ପ୍ରଫେସର୍‌ ନିଜକୁ ଆଶ୍ୱାସନା ଦେଉଥିଲେ । କିନ୍ତୁ ଆସିବା ଦିନଠୁଁ କେବେବି ଯିବାର ନାଁ ଧରୁ ନ ଥିଲା ସୁଲଗ୍ନା । ଆଉ ପ୍ରଫେସର୍‌ ସେମିତି କେବେ ବି କହିପାରୁ ନ ଥିଲେ, ଏପରିକି କହିବାପାଇଁ ବି ଭାବିପାରୁ ନ ଥିଲେ, 'ସୁଲଗ୍ନା, ତୁ ପଳା' ।

ରୋଷେଇ ସରିଲାଣି ବୋଲି ଯା' ଭିତରେ ଦି'ଥର କହିସାରିଥିଲା ସୁଲଗ୍ନା । ମଧ୍ୟାହ୍ନ ସୂର୍ଯ୍ୟର ଝଲକରେ ଚହଟୁଥିଲା ସହରର ତୋଫା ଗୋରା ଦେହ । ପ୍ରଫେସର୍‌ ତଥାପି ଗାଧୋଇବାକୁ ବାହାରି ନ ଥିଲେ ।



# ରାଣ୍ଡୀପୁଅ ଅନନ୍ତା

ନହୁଲୀ ନଈ ଯେଉଁଠି ଅଭିମାନରେ ମୁହଁମାଡ଼ି ଶୋଇଥିବ, ଠିକ୍ ସେଇଠି ଥିବ ଗାଁ'ଟିଏ । ଗାଁ ଆଉ ନଈ ମଝିରେ ଥିବ ଦେଢ଼ ମଣିଷ ଉଚ୍ଚାର ଘେରିବନ୍ଧ । ନଈଟା ଭାରି ଲାଜେଇ, ମଉନାବତୀ, ଗାଁକୁ ନା ଦୁଶୁଥିବ ତା'ରୂପ, ନା ଶୁଭୁଥିବ ତା' କଅଁଳ କଥା । କିନ୍ତୁ ପହିଲୁ ଆଷାଢ଼ ବେଳକୁ ଦୂରପାହାଡ଼ ସନ୍ଧିରେ ଯେତେବେଳେ ନୂଆମେଘର ଚୋରା ମୁହଁ ଦିଶିବ, ନଈ ଭାରି ଫୁଲେଇ ହବ ଧନୀ ସୌଦାଗର ଝିଅପରି । ଗଛରେ ଚଢ଼ି, ନ ହେଲେ ଘେରିବନ୍ଧ ଉପରେ ବସି, ଅନନ୍ତା ଖାଲି ନଈକୁ ଦେଖୁଥିବ ଯେ ଦେଖୁଥିବ, ରାତିଦିନ ତାକୁ ଜଣାପଡୁ ନ ଥିବ ।

ଧାରା ଶିରାବଣକୁ ନଈ ଉଦଣ୍ଡୀ ମାଇପି ପରି ଧାଇଁବ, ଲାଜ ସରମ ଭୁଲିବ । କୂଳ ଲଙ୍ଘିବ । ଘେରିବନ୍ଧରେ ଗୋଇଠା ମାରିବ । ଅନନ୍ତା ଜମା ନଈକୂଳ ଛାଡ଼ିବ ନାହିଁ । ସେ କ'ଣ ବା ଆଉ କରିବ ? ଗୁଆପୋତା କରିବ, ନ ହେଲେ ବନ୍‌ଶୀ ପକାଇ ମାଛ ଧରିବ ନଈରୁ । ବିଲବାଡ଼ି, ପାଣିକାଦୁଅ, ନଈନାଳ ସହିତ ଅନନ୍ତାର ସମ୍ପର୍କ ବଡ଼ ନିବିଡ଼, ପିଲାଟି ଦିନରୁ ।

ଅନନ୍ତା ବୋଉ ଅନନ୍ତା ଉପରେ ବର୍ଷସାରା ଖାଲି ରାଉରାଉ ହଉଥିବ । କହୁଥିବ, ''ପେଟରେ ଥିଲୁ, ବାପକୁ ଖାଇଲୁ, ମୋତେ ସବୁବେଳେ କିଲିବିଲି କରି ଖାଉଚୁ ।'' ଅନନ୍ତା କାନରେ ତା' ବୋଉ କଥା କିଛି ପଶୁ ନ ଥିବ । ମୂଳରୁ ବେପରୱା, କୌଣସି କଥାକୁ ତା'ର ଖାତିର ନ ଥିବ । ନବାବ ମୁହଁରେ ସେ ଜବାବ ଦଉଥିବ । ଆଗକୁ ପଛକୁ ଭାବୁ ନ ଥିବ । ଘରେ ଦାନା ଥିଲେ ହଁ, ନ ଥିଲେ ହଁ । ପେଜପାଣି ହେଲେ ହଁ, ତବତଭାତ ହେଲେ ହଁ । ଶାଗ ହେଲେ ହଁ, ସାଗୁଆତି ହେଲେ ହଁ । ବାୟାର କି ଯାଏ, ବା'ହେଲେ ବସା ଦୋହଲୁଥାଏ ।

ଢେରଦିନ ତଳର କଥା– ସେତେବେଳେ ସ୍କୁଲରେ ପଢୁଥିବ ଅନନ୍ତା । ତା' ସାଙ୍ଗମାନେ ଶିଡ଼ି ଡେଇଁଲା ପରି କ୍ଲାସ ପରେ କ୍ଲାସ ଡେଇଁ ଯାଉଥିବେ । ଅନନ୍ତା କିନ୍ତୁ ଡେଇଁ ପାରୁ ନ ଥିବ ସେ ବିଷମ ଶିଡ଼ି । ଲଙ୍ଗ ଜମ୍ପ, ହାଇ ଜମ୍ପ ଡେଇଁବା ତା' ପାଇଁ ଯେତିକି ସହଜ ଥିବ, କ୍ଲାସ ଡେଇଁବା ଥିବ ତା'ଠୁଁ କାହିଁ କେତେଗୁଣା ଅଧିକ କଷ୍ଟ । ପ୍ରତି କ୍ଲାସରେ ଅଟକି ଅଟକି କୌଣସି ପ୍ରକାରେ ସେ ହାଇସ୍କୁଲ ଧରିବ । ସେତେବେଳକୁ ତା'ସାଙ୍ଗମାନେ କଲେଜରେ ପଢୁଥିବେ । ହାଇସ୍କୁଲ ପାଠ ତାକୁ ଭାରି କଷ୍ଟ ଲାଗିବ ।

ବିଶେଷକରି ଅଙ୍କ କେବେ ତା' ମଗଜରେ ପଶୁ ନ ଥିବ । ଇଂରାଜୀ ଶବ୍ଦ ପାଟିକୁ ପଇଟୁ ନ ଥିବ କି 'ନରଃ ନରୌ ନରାଃ' ମନେ ରହୁ ନ ଥିବ । ତଥାପି ତା'ବୋଉର ବଡ଼ ପାଟିକୁ ଡରି ସେ ସ୍କୁଲ ଯାଉଥିବ ।

ସ୍କୁଲରେ ପାଠ ପାଇଁ ନ ହେଲେ ବି ଶାଠ ପାଇଁ ଅନନ୍ତାର ଭାରି ଖାତିର୍ ଥିବ । ଗଣେଶ ପୂଜା, ସରସ୍ୱତୀ ପୂଜାରେ ଆଗ ଡକାଯାଉଥିବ ତାକୁ । ମୂର୍ତ୍ତିକିଣା, ସାଜସଜ୍ଜାଠାରୁ ଭୋଜି ପର୍ଯ୍ୟନ୍ତ ସବୁର ଦାୟିତ୍ୱ ମୁଣ୍ଡଉଥିବ ସେ । ହେଡ଼୍‌ମାଷ୍ଟ୍ରେ ଡାକୁଥିବେ, ଅନନ୍ତା, ଅନନ୍ତା, ପଣ୍ଡିତେ ଖୋଜୁଥିବେ ଅନନ୍ତା କାହିଁ, ଅଙ୍କ ସାର୍ କହୁଥିବେ, ଆରେ ଅନନ୍ତାକୁ ଡାକ, ସେ ମାର୍କେଟିଂ କରିବ । ଅଗଷ୍ଟ ପନ୍ଦର କି ଜାନୁଆରୀ ଛବିଶକୁ ବି ଅନନ୍ତାକୁ ଖୋଜା ପଡୁଥିବ । ଡ୍ରାମାବେଳେ ବି ସେୟା । ସ୍କୁଲ ଫଙ୍କ୍‌ସନ୍ ବି ଅନନ୍ତା ବିନା ଉଠିପାରୁ ନ ଥିବ ।

ସ୍କୁଲ ଫଙ୍କ୍‌ସନ୍‌ରେ କିଏ କେତେ ପ୍ରାଇଜ୍ ପାଉଥିବେ । ମାଇକ୍‌ରେ ତାଙ୍କ ନାଁ ଡକା ଯାଉଥିବ । ଅନନ୍ତା କିନ୍ତୁ ଅତିଥିମାନଙ୍କ ଖାଇବା ପିଇବା କଥା ବୁଝୁଥିବ । ଛେନା ଆସିଲା କି ନାହିଁ, ବାଗଦା ଚିଙ୍ଗୁଡ଼ି ମିଳିଲା କି ନାହିଁ, ଗୟା ପଣ୍ଡା ରୋଷେଇ କରିବାକୁ ମଙ୍ଗିଲା କି ନାହିଁ- ସେସବୁ ଆଉ କିଏ ମୁଣ୍ଡ ଲଗେଇ ପାରିବ ତା'ଛଡ଼ା ଭଲା ? ସେ ଦଶମରେ ପଢ଼ିଲାବେଳେ ଥରେ ମନ୍ତ୍ରୀ ଆସିଥିବେ ତାଙ୍କ ସ୍କୁଲ ଫଙ୍କ୍‌ସନ୍‌କୁ । ଅନନ୍ତା ବାଜାବାଣ ପ୍ରସ୍ତୁତିରେ ବ୍ୟସ୍ତ ଥିବ । ଫୁଲମାଳ ଯୋଗାଡ଼ରେ ଲାଗିପଡ଼ିଥିବ । ହଠାତ୍ ହେଡ଼୍‌ମାଷ୍ଟ୍ରେ ତାକୁ ଡକାଇ କହିବେ, ତୁ ଏଥର ପ୍ରାଇଜ୍ ପାଇବୁ ମନ୍ତ୍ରୀଙ୍କ ହାତରୁ । ଅନନ୍ତା ଆକାଶରୁ ଖସିପଡ଼ିବ ଯେମିତି ! ସେ ତ ଡିବେଟ୍‌ରେ ଭାଗ ନେଇ ନ ଥିବ କି ରଚନା ଲେଖି ନ ଥିବ । କ'ଣ କେମିତି ପ୍ରାଇଜ୍ ପାଇବ ଯେ ? ବୁଝୁବୁଝୁ କ'ଣ ନା, ବେଷ୍ଟ ଭଲ୍ୟୁଣ୍ଟିଅର୍ ପ୍ରାଇଜ୍ ଦବାପାଇଁ ତାକୁ ବଛା ହୋଇଥିବ । ଭାରି ଖୁସି ହଉଥିବ ସେ ମନେମନେ । ସବାଶେଷ ପ୍ରାଇଜ୍‌ଟି ତାକୁ ମିଳିଲାବେଳେ ସେ ମନ୍ତ୍ରୀଙ୍କ ସହିତ ହାତ ମିଳେଇବ । ପ୍ରଥମକରି ତା'ଫଟୋ ଉଠିବ କ୍ୟାମେରାରେ ।

ଫଙ୍କ୍‌ସନ ସରିବାର ମାତ୍ର କେତେଦିନ ପରେ ପଡ଼ିବ ଟେଷ୍ଟ ପରୀକ୍ଷା । ଅନନ୍ତାର ମୁଣ୍ଡ ବିନ୍ଧିବା ଆରମ୍ଭ ହୋଇଯିବ । ଟେଷ୍ଟ ପରୀକ୍ଷାରେ ତାକୁ ଅଙ୍କ ଆସିବନି କି ସଂସ୍କୃତ ଶବ୍ଦରୂପ, ଧାତୁରୂପ ମନେ ପଡ଼ିବନି । ସେ ସେଣ୍ଟଅପ୍ ହେବ ନାହିଁ ବୋଲି ଧରି ନେଇଥିବ । କିନ୍ତୁ ଫଳ ବାହାରିଲା ବେଳକୁ ସେ ସେଣ୍ଟଅପ୍ ହୋଇଥିବ । ଏଡ଼େ ଡାଗରା ପିଲାଟାକୁ ଆଉ କେତେଦିନ ଅଟକାଯାଇପାରିବ ? ହେଡ଼୍‌ମାଷ୍ଟ୍ରେ ଦୟା ପରବଶ ହୋଇ ଷ୍ଟାଫ୍ ମିଟିଂରେ କଥା ପକାଇ ତାକୁ ସେଣ୍ଟଅପ୍ କରିଦେଇଥିବେ ।

କିନ୍ତୁ ବୋର୍ଡ଼ ପରୀକ୍ଷା ଡେଇଁପାରିବ ନାହିଁ ଅନନ୍ତା । କପି କରୁକରୁ ଧରାପଡ଼ିବ । ଏକ୍ସପେଲ୍ ହବ । ସଂସ୍କୃତ ପରୀକ୍ଷା ଦିନ ସ୍କ୍ୱାଡ୍ ଆସିଥିବେ ବୋଲି ତାକୁ ଜଣା ନ

ଥିବ । ଲତା ଶବ୍ଦର ତୃତୀୟା ବହୁବଚନ ତା'ର ମନେ ପଡ଼ିବ ନାହିଁ ପରୀକ୍ଷା ହଲ୍‌ରେ । ତହୁଁ ସେ ବ୍ୟାକରଣ ବହି ବାହାର କରି ଲତା ଶବ୍ଦ ଖୋଜୁଥିବ । ଏହି ସମୟରେ ସ୍କ୍ୱାଡ୍ ପାର୍ଟି ଆସି ତାକୁ ଧରିବେ । ଠିଆ କରାଇବେ । ତା' ଖାତା ଛଡ଼ାଇନେବେ । ସେ ରାଗି ନିଆଁବାଣ ହୋଇଯିବ । ଖାତାକୁ ଚିରିଦେଇ ବାହାରି ଆସିବ ପରୀକ୍ଷା ହଲ୍‌ରୁ ।

ପରୀକ୍ଷା ଅଧାରୁ ଫେରିଆସିବାରୁ ଅନନ୍ତାକୁ ତା' ବୋଉ ଛାଞ୍ଚୁଣିରେ ପିଟିବ ଓ ପିଟୁ ପିଟୁ ଭୋ' କରି କାନ୍ଦିପକେଇବ । ଅନନ୍ତା ଛୁ ମାରିବ ନଈକୂଳକୁ ।

ଏହି ସମୟରେ ଗାଁରେ ଚାଲିଥିବ ଇଲେକ୍‌ସନ୍ ପାଲା । ସରପଞ୍ଚ ପ୍ରାର୍ଥୀ ରାଧୁ ସାହୁ ସହିତ ଅନନ୍ତାର ଭେଟ ହୋଇଯିବ ନଈଘାଟରେ, ଝୁ'ଦସେ । ରାଧୁ ସାହୁର ପାଖ ଲୋକ ଜଣାଶୁଣା କଣ୍ଟ୍ରାକ୍ଟର ରଙ୍ଗା ବିଶ୍ୱାଳ ତା' ସାଙ୍ଗେସାଙ୍ଗେ ଥିବ ଛାଇପରି । ଦୁହେଁ ଟାଣିବେ ଅନନ୍ତାକୁ ଇଲେକ୍‌ସନ୍ ପ୍ରଚାରପାଇଁ । ଅନନ୍ତା ପ୍ରଥମେ ନାହିଁ ନାହିଁ କରିବ । କହିବ, "ଭୋଅଟ ପାଇଁ ମୁଁ କାହାକୁ ଖୋସାମଦ୍ ମରାମତ କରିପାରିବି ନାହିଁ । ତା' ଛଡ଼ା ଭୋଅଟରେ ଜିତିଲେ ତମେ ସରପଞ୍ଚ ହବ, ଆମର କି ଫାଇଦା ହବ ହୋ ।" ଅନନ୍ତାର ତ ମୂଳରୁ ଏମିତି ମୁହଁତୋଡ଼ ଜବାବ । ରାଧୁସାହୁ କିନ୍ତୁ ଭାରି ଥଣ୍ଡା, ବରଫ ପରି । ଅନନ୍ତାକୁ ଚାହିଁ ମୁରୁକିହସା ଦେଇ କହିବ, "ଆରେ ବାବା ଅନନ୍ତା, ତମ ଗାଁକୁ ରାସ୍ତା ହବ, ନଈବନ୍ଧ ଉଚ୍ଚା ହବ, ନଳକୂଅ ଖୋଳାହବ, ପ୍ରାଇମେରୀ ସ୍କୁଲ ପକ୍କା ହବ, ଲୋକଙ୍କୁ ମାଗଣା ଘର ମିଳିବ, ବଢ଼ିବେଳେ ରିଲିଫ୍‌ର ସୁଅ ଛୁଟିବ । ଖାଲି ଲାଗିପାଡି ମୋତେ ଥରେ ଜିତେଇଦେ ।" ଅନନ୍ତା ମନକୁ କଥାଟା ପାଇବ । ସେ ତା'ପରେ ରାଧୁସାହୁ ଲାଗି ଭୋଅଟ ପ୍ରଚାରରେ ମାତିଯିବ ।

ପନ୍ଦରଦିନ କାଳ ଅଖିଆ ଅପିଆ ଅନନ୍ତା ଘର ଘର ବୁଲିବ । କାହାକୁ ମାଉସୀ ବୋଲି କହି ପାରା ଚିହ୍ନରେ ଭୋଅଟ ଦବାକୁ କହିବ ତ କାହାକୁ ଖୁଡ଼ୀ ଡାକି ମୁଣ୍ଡିଆ ମାରିବ । ଟୋକା, ବୁଢ଼ା, ଦରବୁଢ଼ା– ସର୍ଭିଙ୍କୁ ମତେଇବ । ଶିଡ଼ି ଚଢ଼ି ପୋଷ୍ଟର ଲଗେଇବ ସ୍କୁଲ କାନ୍ଥରେ । ସାଇକେଲ୍ ଚଢ଼ି ଖରାତରାରେ ପାଞ୍ଚ ଗାଁ ବୁଲିବ । ସ୍ଲୋଗାନ୍ ଦେଇ ତଣ୍ଟି ଫଟେଇବ । ମା' ଜାଗୁଳେଈଙ୍କ ପାଖରେ କଳା କୁକୁଡ଼ା ମନାସିବ ।

ଯୋଗକୁ ରାଧୁ ସାହୁ ସେଥର ଭୋଅଟରେ ଜିତିଯିବ, ଅନନ୍ତାର ପାଦ ଆଉ ଭୂଇଁରେ ଲାଗିବ ନାହିଁ ।

କିନ୍ତୁ ଭୋଅଟ ସରିବାର ଦିନ କେତେଟା ଭିତରେ ଅନନ୍ତାର ମନ ଶୁଖି କାଠ ପାଲଟିଯିବ । ରାଧୁସାହୁ ପାଖକୁ ଦୌଡ଼ିଦୌଡ଼ି ଆଉ ତା'ର ଭେଟ ମିଳୁ ନ ଥିବ । ଯଦି କେବେ ବି ଭେଟ ମିଳିବ, ସେ ଗ୍ରାମସେବକ, ବିଡିଓ କି ଆଉ ଆଉମାନଙ୍କ ମେଳରେ ହାତଝାଡ଼ି କଥା କହୁଥିବ । ନିଶ ଫୁଲେଇ ବସିଥିବ । ଚଷମା ତଳକୁ ଡୋଳା ବୁଲେଇ ତାକୁ ନ ଚିହ୍ନିଲାପରି ଚାହୁଁଥିବ । ଦଶପଦ କହିଲେ ପଦେ ତା' କାନରେ ବାଜୁ ନ ଥିବ । ଅନନ୍ତା ଦିକ୍‌ଦାର ହୋଇଯିବ । ପଞ୍ଚାୟତ ଅଫିସ୍ ଦୁଆର ଆଉ ମାଡ଼ିବ ନାହିଁ ।

ଏଣେ ଗାଁ ଲୋକ ରାଉରାଉ ହଉଥିବେ । କହୁଥିବେ, ବନ୍ଧ କାହିଁ ମରାମତି ହେଲା ନାହିଁ । ସ୍କୁଲ ଘର ପକ୍‌କା ହେଲା ନାହିଁ । ରାସ୍ତାରେ ମୋରମ ଶଗଡ଼େ ପଡ଼ିଲା ନାହିଁ । ନଳକୂଅ ଖୋଳାଗଲା ନାହିଁ । ଅନନ୍ତା ଗାଁଲୋକଙ୍କୁ ଆଉ ଦେଖାଦବ ନାହିଁ । ରାଧୁ ସାହୁର ଆସିବାକୁ ତକେଇଥିବ । ଅଥଚ ରାଧୁ ସାହୁର ଛାଇ ପଡୁ ନ ଥିବ ତାଙ୍କ ଗାଁରେ ।

ଦିନେ ସଞ୍ଜବେଳେ ତାସ୍‌ପାଲିରେ ମାତିଥିବ ଅନନ୍ତା । ବରଗଛ ମୂଳ ଚଉତରାରେ ମିଞ୍ଜିମିଞ୍ଜି ଆଲୁଅ ଜଳୁଥିବ । ମଝିରେ ମଝିରେ ଚା’ ଆସୁଥିବ ଭୋଳା ଗାହାଣ ଦୋକାନରୁ । ଏହି ସମୟରେ ପରବା ଖନା ରା...ରା...ଧୁ ବୋଲି ଗୋଟେ ମୋଟରସାଇକେଲ୍ ଆଡ଼କୁ ହାତ ଦେଖାଇ କହିଉଠିବ । ସେଇଠୁ ଅନନ୍ତା ତାସ୍ ଫୋପାଡ଼ି ଧାଇଁବ ମୋଟରସାଇକେଲ୍ ପଛରେ । ଆବଡ଼ାଖାବଡ଼ା ଅଣଓସାରିଆ ଘେରିବନ୍ଧରେ କେତେ ଜୋର୍‌ରେ ବା ଗଡ଼ିପାରିବ ମୋଟରସାଇକେଲ୍ ? ଧାଁ-ଦଉଡ଼ରେ ଅନନ୍ତାକୁ କ’ଣ ମୋଟରସାଇକେଲ୍ ଟକ୍‌କର ଦେଇପାରିବ ? ମୋଟରସାଇକେଲ ଆଗରେ ଠିଆ ହୋଇଯିବ ଅନନ୍ତା । ରଙ୍ଗା ବିଶ୍ୱାଳ ମୋଟର ସାଇକେଲ୍‌ରେ କଡ଼ା ବ୍ରେକ୍ କଷିଦବ । ପଛରେ ବସିଥିବା ରାଧୁ ସାହୁ ଖିଙ୍କାରିହବ, ‘‘ହଇରେ ରାଣ୍ଡୀପୁଅ, ତୋର ଏତେ ବହପ, ମୋ ଗାଡ଼ି ଅଟକାଇଦେଲୁ ? ହାକିମହୁକୁମା ସବୁ ମୋ ହାତରେ, ମନ୍ତ୍ରୀ, ଏମ୍.ଏଲ.ଏ. ମୋ ପକେଟ୍‌ରେ । ତୁ’ଟା କିଏ ବେ ?’’ ରାଧୁ ସାହୁର ଦିମାକିଆ କଥା ଶୁଣି ଅନନ୍ତା ମୁଣ୍ଡକୁ ପିତ୍ତ ଚଢ଼ିଯିବ । ତହୁଁ ସେ ଦୁଇଟା ପାଞ୍ଚକେଜିଆ ମୁଥା ବସେଇଦବ ରାଧୁ ସାହୁ ମୁହଁରେ ଯେ ତା’ ପାନଖିଆ ଅଚକରା କଳା ଛାମୁଦାନ୍ତ ଦି’ଟା ଝଡ଼ିପଡ଼ିବ ।

ତା’ପରେ ହୋ-ହାଲ୍ଲାରେ ଗାଁ ଦାଣ୍ଡ ପଡ଼ିବ, ଉଠିବ । ରାତି ଅଧକୁ ନିଶୁଆ ଦାରୋଗା ଆସି ପହଞ୍ଚିବ ଅନନ୍ତା ଘର ଆଗରେ । ରଡ଼ି ଛାଡ଼ିବ, ‘‘ଆରେ ହେ ଅନନ୍ତା, ଚାଲ ମାମୁଘରକୁ । ବେହିପୋ’ ତୋ ପିଠି ଶୂଳେଇ ହେଲାଣି ।’’ ଅନନ୍ତା ଛତିଶ ଇଞ୍ଚର ଫୁଙ୍ଗୁଳା ଛାତି ଦେଖାଇ ଘରୁ ବାହାରିଆସିବ । ଆସୁ ଆସୁ କହିବ, ‘‘ରଙ୍ଗା ବିଶ୍ୱାଳ ତ ରାଧୁ ସାହୁର ଏକ ନମ୍ବର ଚେଲା, ତମେ ଦୁଇ ନମ୍ବର କି ?’’ ଦାରୋଗା ଆଖି ଲାଲ୍ କରି ନିଶ ମୋଡ଼ିବ । ‘ଗାଡ଼ିରେ ବସ୍ ଶଳା’ ବୋଲି କହି ଅନନ୍ତାକୁ ମାରିବ ଧକ୍‌କାଟାଏ । ଅନନ୍ତା ଗାଡ଼ିରେ ବସିବ ଚୁପ୍‌ଚାପ୍ । ତା’ପରେ ଅନନ୍ତା ବୋଉର ବାହୁନା ଆରମ୍ଭ ହେଇଯିବ ।

ତିନି ଦିନ ତିନି ରାତି ମଶା ଡାଆଁଶରେ ଥାନା ହାଜତରେ ଶୋଇ ଘରକୁ ଫେରିବ ଅନନ୍ତା । ବଡ଼ବାବୁ ଯାହା ପଚାରିଲା, ସେ ତ ହଁ ମାରିଲା, ପୁଣି ମୁକୁଳିଲା କେମିତି

ବୋଲି ସେ ନିଜକୁ ପଚାରିବ । ହେଲେ ତା' ବୋଉ ଯେ ହଳେ ଖଡୁ ଆଉ ଦି' ହଳ ବାଙ୍କିଆ ଜଗା ଖଡୁରାକୁ ବିକି ବଡ଼ବାବୁକୁ ହାତଗୁଞ୍ଜା ଦେଇ ତାକୁ ମୁକୁଳାଇଛି, ସେକଥା ତାକୁ ଜଣା ନ ଥିବ ।

ଏମିତିକା ଘଟଣା ସବୁକୁ ପାସୋରି ସାରିଥିବ ଅନନ୍ତା । ତାକୁ ଚାଷନିଶା ଘାରିଥିବ । ତା'ବୋଉର ରାଣନିୟମକୁ ଭାଙ୍ଗି ନ ପାରି ସେ କାନ୍ଧେ ବଳଦ ବାନ୍ଧିଥିବ ଗୁହାଳରେ । ହଳ ବଦଳ କରି କୂଳବିଲ ଦି'ମାଣ ଚଷୁଥିବ ଲାଗିପାତି । ମାଣେ ବିଲ ବଖରା କରୁଥିବ । ପାଞ୍ଚ ଛ' ଛେଲା ଧାନ ଫି'ବର୍ଷ ଭରୁଥିବ ଡୋଲିରେ । ଶୀତଦିନେ ପନିପରିବା ଚାଷ କରି ବେଶ୍ ଦି'ପଇ  ବଢ଼େଇ ଦଉଥିବ ତା' ବୋଉ ହାତକୁ । ତା' ବୋଉ କହୁଥିବ, ''ଅନନ୍ତାରେ, ନଈ ଆରପାରି ପଧାନଘର ଝିଅଟି ଆହା କେଡ଼େ ସୁନ୍ଦର । ଗୋଟିଏ ଚାଉଳରେ ଗଢ଼ା । ରୂପ ଯେମିତି, ଗୁଣ ବି ସେମିତି, ମାଛିକି ମ କହିବ ନାହିଁ । ପାଳିଆ ଯାତରାରେ ଦେଖିଥିଲି ସେ ସୁନାମୁହାଁକି । ତାକୁ ଇ ବୋହୂ କରି ଆଣିବି ଅଇଲା ସନକୁ ।'' ଅନନ୍ତା ବୋଉ କଥା ଶୁଣି ଛାଟିପିଟି ହଉଥିବ, ମନା କରୁଥିବ ବାହାହବାକୁ । ଏସବୁ ଖାଲି ତା' ଜିଭ ଅଗର କଥା । ପଧାନ ଘର ଝିଅକୁ ବାହାହବା ପାଇଁ ତା'ର ଷୋଳଣା ଆଶା ଥିବ । ହେଲେ ମନେମନେ ଭାବୁଥିବ, ଘର କହିଲେ ବଖରାଏ । ନୂଆବୋହୂଟେ ଚଳିବ ବା କେମିତି । ଯେଉଁ ଦି'ପଇସା ଅଣ୍ଟିକି ଆଉଚି ସେ ତ ଅଣ୍ଟିଏ ଅଣ୍ଟିଏ ଯାଉଚି । ଘରେ ହାତୀ ବାନ୍ଧିବାପାଇଁ ଦମ୍ କାହିଁ ?

କିନ୍ତୁ ହାତୀ ବାନ୍ଧିବାକୁ ଅଣ୍ଟା ଭିଡୁଥିବ ଅନନ୍ତା । ଅଧିକ କିଛି ଭାଗବଖରା କରି ଭଲ ଘରଖଣ୍ଡେ ତିଆରିବା ପାଇଁ ତା'ର ଇଚ୍ଛା ହଉଥିବ । ସେଥର ଯାହାହେଉ ଭଲ ପାଳକ ପଡ଼ିଥିବ । ଠିକ୍ ସମୟରେ ପାଣି ଲଗେଇଦବ ଇନ୍ଦ୍ରଦେବତା । ଶିରାବଣ ଶେଷକୁ କଳା ମଚମଚ ଧାନବୁଦା ଦେଖି କୁଣ୍ଢେମୋଟ ହୋଇଯିବ ତା' ମନ । ମାଘ ଫଗୁଣକୁ ଘରଟାଏ କରିବ ବୋଲି ଖସଡ଼ା କରୁଥିବ ମନ ଭିତରେ । ଭାବୁଥିବ, ବୈଶାଖବେଳକୁ ପଧାନଘର ଝିଅ ଛାଏଁ ହାଜର ହୋଇଯାଇଥିବ ତାଙ୍କ ନୂଆଘରେ । ତା' ରୁଣୁଝୁଣୁ ପାଉଁଜିରେ କମ୍ପୁଥିବ କୁନି ଅଗଣାଟି । ତା' ହସରେ ଜହ୍ନ ଦୁଶୁଥିବ ଅନ୍ଧାର ରାତିରେ । ଏମିତି ଭାବିଲାକ୍ଷଣି ତା' ଛାତି ଦୁଲୁକି ଉଠୁଥିବ । ନଈ ଆରପାରି ଗାଁକୁ ଫୁର୍‌କିନି ଉଡ଼ି ଯାଉଥିବ ତା'ମନ, ଟିକି ଚଢ଼େଇଟେ ପରି ।

ସେଥର ହଠାତ୍ ବଢ଼ିପାଣି ଆସିବ ବୋଲି କାହା ମନରେ କାହିଁକି ବା ଦକା ପଶିବ ତୁଚ୍ଛାଟାରେ । ସାରାଦିନ ପାଗ ଶୁଖିଲା ଥିବ । ଉପରବେଳା ଦି'ଅସ୍ରା କଚଡ଼ା ବର୍ଷା ହୋଇଯିବ । ଦୂର ପାହାଡ଼କୁ ହଠାତ୍ ଢାଙ୍କିଦେବେ କଳା ମେଘ ପଲେ । ଏସବୁ ତ ନିତିଦିନିଆ କଥା । ଗାଁରେ ସମସ୍ତେ ନିଶ୍ଚିନ୍ତରେ ଶୋଇ ଘୁଙ୍ଗୁଡ଼ି ମାରିବେ । ପାହାନ୍ତାକୁ ନଈବନ୍ଧ ଭାଙ୍ଗିବ ବୋଲି କିଏ ବା କାହିଁକି ସ୍ୱପ୍ନରେ ବି ଭାବିବ ।

କିନ୍ତୁ ସକାଳ ହେଲାବେଳକୁ ସାରା ଗାଁ ଜଳାର୍ଣ୍ଣବ ହୋଇଥିବ । ଦାଣ୍ଡରେ ତ ଅଣ୍ଟାଏ ପାଣି, ବିଲବାଡ଼ି କଥା ପଚାରେ ବା କିଏ? ଦିନ ଦି'ଘଡ଼ିଯାଏ ଶଙ୍ଖ ହୁଳହୁଳି ଶବ୍ଦ ସାଙ୍ଗକୁ ପିଲା ମାଇପିଙ୍କ କାନ୍ଦଣା ଶୁଭିବ । ଅନନ୍ତା ବି କାନ୍ଦ କାନ୍ଦ ହୋଇଯିବ । ପ୍ରଥମକରି ତା' ଆଖିକୋଣରେ ଦୁଇ ବୁନ୍ଦା ଲୁହ ଜକେଇ ଆସିବ ।

ବଢ଼ି ଛାଡ଼ିଲାବେଳକୁ ଅନନ୍ତାର କ୍ଷେତ ଉଜୁଡ଼ି ଯାଇଥିବ । ଚାଖଣ୍ଡେ ବହଳର ବାଲି ଚରି ଯାଇଥିବ ତା' କୂଳ ବିଲରେ । ତା'ର ସବୁ ସ୍ୱପ୍ନ କୁଆଡ଼େ ଯେମିତି ହଜିଯାଇଥିବ । ନୂଆ ଘର କରିବାର ନିଶା ମରି ଯାଇଥିବ, ମଉଳି ଯାଇଥିବ ବାହାହବାର ଆଶା । ପଧାନଘର ଝିଅକଥା ଆଉ ତା'ର ମନେ ପଡୁ ନ ଥିବ ।

ଘରଭଙ୍ଗା ଟଙ୍କା ସମସ୍ତଙ୍କୁ ମିଳିବ, ଅଥଚ ଅନନ୍ତାର ନାଁ ନ ଥିବ ତାଲିକାରେ । ଆର୍.ଆଇ.କୁ ପଚାରିଲେ କହିବ, ''ମୁଁ କ'ଣ କରିବି, ତହସିଲଦାରଙ୍କୁ ସାନି ଦରଖାସ୍ତ କର । ଆଦେଶ ତାମିଲ କରିବା ମୋ କାମ । ମୁଁ ଅଦାବେପାରୀ, ଜାହାଜ ମୂଲ କରିବାକୁ କିଏ?'' ଗ୍ରାମସେବକ କହିବ, ''ଘରଭଙ୍ଗା ଟଙ୍କା ତୋତେ ମିଳି ନାହିଁ ମାନେ ନୂଆଘର ପାଇବାକୁ ତୋର ହକ୍ ନାହିଁ ।''

ଅସଲ କଥା ବୁଝିବାପାଇଁ ଅନନ୍ତାକୁ ଡେରି ଲାଗିବ ନାହିଁ । ଏସବୁ ରାଧୁ ସାହୁର କରାମତି ବୋଲି ସେ ଜାଣିପାରିବ । ଏତେ ଅଦଉତି ଲୋକଟାର ବୋଲି ଭାବିଲାକ୍ଷଣି ସେ ରାଗରେ ପାଚିଉଠିବ । ରାଧୁ ସାହୁର ତଣ୍ଟିଚିପି ତାକୁ ନଈକୁ ଫିଙ୍ଗିଦେବାପାଇଁ ତା'ର ଇଚ୍ଛା ହେବ । କିନ୍ତୁ ସେ ଚୁପ୍ ରହିବ । ନିଜ କପାଳକୁ ନିନ୍ଦିବ । ଘରଭଙ୍ଗା ଟଙ୍କା ପାଇଁ କାହା ଆଗରେ ଗୋଡ଼ଭାଙ୍ଗି ଠିଆ ହେବ ନାହିଁ । ଭାରି ଅଭାବରେ ପଡୁଥିବ ଅନନ୍ତା । ଦିନେ ଦିନେ ଚୁଲି ଜଳୁ ନ ଥିବ ଘରେ । କାହାକୁ ଧାର ମାଗିବାପାଇଁ ତାକୁ ଲାଜ ମାଡୁଥିବ । ତାକୁ ଗାଁର କେହି କେମିତି କହିବେ, କଲିକତା ଚାଲିଯିବାପାଇଁ । ସେଠି କୁଆଡ଼େ ଇଟାଭାଟିରେ କାମ ମିଳେ । ଆଉ କେହି କେହି ଉପଦେଶ ଛଳରେ କହିବେ, ''ଗୁଜୁରାତ ପଳା, ଅନନ୍ତା ! ସୁରତର ଲୁଗାକଳରେ ଯେତେ ନାହିଁ ସେତେ କାମ ମିଳିବ ।'' ଅନନ୍ତା କିନ୍ତୁ କାହା କଥା ଶୁଣିବ ନାହିଁ । ତା' ଗାଁ ମାଟି ତାକୁ ଟାଣି ଧରିବ, ହାତ ଠାରୁଥିବ ଗେହ୍ଲେଇ ନଈ । ''ମୋତେ କୁଆଡ଼େ ଛାଡ଼ି ଯିବୁରେ ବାୟା ? ପରରାଇଜକୁ ଯାଇ ହାତକୁ ହାତୁଡ଼ି କରି କେତେ ପଇସା ବା ରୋଜଗାର କରିବୁ ? ମୁଁ ବରଷେ ଫଳିଲେ ତୋତେ ଦି' ବରଷପାଇଁ ଦାନାକନା ଯୋଗେଇ ଦେବି ରେ ।'' ଉଜୁଡ଼ା କ୍ଷେତର ଏ ଭାଷା ବେଶ୍ ପଢ଼ି ପାରୁଥିବ ଅନନ୍ତା । ଗାଁ ଓ ମା'କୁ ସେ ଛାଡ଼ିପାରିବ ନାହିଁ । ନା ଭୁଲି ପାରିବ କ୍ଷେତକୁ, ନା ନଈକୁ । ପଧାନଘର ଝିଅକୁ ପୁଣି ସ୍ୱପ୍ନ ଦେଖୁଥିବ ମନେମନେ ।

ଦିନେ ଅନନ୍ତା ହାଟକୁ ଯାଇଥିବ ଯେ ଗ୍ରାମସେବକ ସାଙ୍ଗରେ ତା'ର ଭେଟ ହୋଇଯିବ ଅକସ୍ମାତ୍ । ବାଲି ଚରିଯାଇଥିବା ଜମିରେ ବାଦାମ ଚାଷ କରିବାପାଇଁ ଗ୍ରାମସେବକ ବୁଝେଇବ ତାକୁ । ଅନନ୍ତା ମନକୁ କଥାଟା ପାଇବ । ଚାଷ ପାଇଁ ସେ ପୁଣି ଭରସିବ । ମଗୁଶିର ନ ସରୁଣୁ ହଳ ବୁଲେଇବ ତା' କୂଳ ବିଲରେ । ବ୍ଲକ୍‌ରୁ ବାଦାମ ବିହନ କିଣିଆଣିବ । ନୂଆ ନୂଆ ବାଦାମ ଚାଷରେ ସେ ହୁଡୁଥିବ । କିନ୍ତୁ ମାଘ ଶେଷ ବେଳକୁ ସବୁଜ ଲହଡ଼ିରେ ଥରିବ ତା' କ୍ଷେତର ହିଆ । ପୁଣି ଘରକରିବା ସ୍ୱପ୍ନରେ ସେ ବିଭୋର ହବ । ପଧାନଘର ଝିଅ ଚଇତି ପବନ ପରି ପଶି ଆସୁଥିବ ତା' ମନଗହନକୁ, ଖୋଜିଲା ବେଳକୁ ଆଉ ନ ଥିବ ।

ଏହି ସମୟ ଭିତରେ ଗୋଟେ ଉଡ଼ା ଖବର ବାଜିବ ଅନନ୍ତା କାନରେ । ଗତ ବଢ଼ିପାଇଁ ନଈ ଦାୟୀ ନୁହେଁ, ରାଧୁ ସାହୁ ଆଉ ରଙ୍ଗା ବିଶ୍ୱାଳ ଦାୟୀ ବୋଲି କଥାଟା ଉଡୁଥିବ ପବନରେ । ଘେରିବନ୍ଧ ନ ଭାଙ୍ଗିଲେ ରଙ୍ଗା ବିଶ୍ୱାଳ କାମ ପାଇବ ନାହିଁ, ରାଧୁ ସାହୁର ହାତ ଚିକ୍‌କଣ ହୋଇପାରିବ କାହୁଁ ? ଦୁହେଁ ଶଲାସୂତରା କରି ରାତି ଅନ୍ଧାରେ ବନ୍ଧ କାଟିଦେଇଥିଲେ ବୋଲି କୁହାକୁହି ହଉଥିବେ ପୁରୁଖାଲୋକେ । ନ ହେଲେ ଏତେ କମ୍ ବର୍ଷାରେ ନଈ ଦେହ ଫୁଲିବ କେମିତି, ପାଣି ଠେସ ସହି ନ ପାରି ବନ୍ଧ ବା ଭାଙ୍ଗିବ କେମିତି ? ଡାହାଣୀ ହୋଇ ଲାଗିବା, ଗୁଣିଆ ହୋଇ ଝାଡ଼ିବା କୁଆଡ଼େ ରାଧୁ ସାହୁର ପୁରୁଣା ଆଦତ୍ । ଅନନ୍ତା କିନ୍ତୁ କଥାଟାକୁ ହଠାତ୍ ହଜମ କରିପାରିବ ନାହିଁ ।

ପୁଣି ଆସିବ ଆଷାଢ଼ ମାସ, କଳାମେଘ ଘୋଟିବ ଚଉଦିଗ । ଅନନ୍ତା ମନରେ ଛନକା ପଶିବ । ଏଥର ପୁଣି କ'ଣ ନଈବଢ଼ି ହବ ? ତା' ଛନଛନିଆ ଧାନବିଲ କ'ଣ ଏଥର ନଈ ଅଁାରେ ପଶିବ ? ଟାଇଲ ଛପର କରା ତା' ଦି'ବଖୁରିଆ ମାଟିଘର ପୁଣି କ'ଣ ଭୂଇଁରେ ଲୋଟିବ ? ଏଥର ବି କ'ଣ ସ୍କୁଲଘର ପୁଣି ଭାଙ୍ଗିବ ଯେ ପିଲେ ଗଛମୂଳରେ ପାଠ ପଢ଼ିବେ ? ମା' ଜାଗୁଳେଇଙ୍କ ମାଟିଘୋଡ଼ା କ'ଣ ପାଣିରେ ଭାସିବ ? ଅଇଲା ଫଗୁଣକୁ ପଧାନଘର ଝିଅ କ'ଣ ହାତେ ଲମ୍ବା ଓଢ଼ଣା ଟାଣି ନଇଁନଇଁ ଆସିବ ନାହିଁ ତାଙ୍କ ଘରକୁ ? ଅନନ୍ତା ନିଜ ପ୍ରଶ୍ନର କୌଣସି ଉତ୍ତର ପାଇପାରୁ ନ ଥିବ ।

ଭୁଦମାସ ପାଖେଇ ଆସୁଥିବ । ସଫା ଆକାଶ, ଟାଇଁଟାଇଁଆ ଖରା ସାଙ୍ଗକୁ ନଈକୂଳରେ ଧୋବ ଫରଫର କାଶତଣ୍ଡୀ ଫୁଲ ଦେଖି ଅନନ୍ତା ଭାବିବ, ଯାହାହେଉ ଏଥର ଆଉ ବଢ଼ି ଆସିବ ନାହିଁ । କିନ୍ତୁ ଦିନେ ଦି'ଦିନ ଯାଇଥିବ କି ନାହିଁ, କାହୁଁ ହଠାତ୍ ମାଡ଼ିଆସିବ କଳାହାଣ୍ଡିଆ ମେଘ । ପବନ ବହିବ ଅଣଚାଶ । କିଳିକିଳା ରାବ

ଶୁଭିବ ଶୂନ୍ୟରୁ । ମୂଷଳଧାରାରେ ବରଷିବ ମେଘ । ମେଦିନୀ କମ୍ପିବ ଅହରହ । ରେଡିଓ କହିବ, ଲଘୁଚାପ ହେଲା । ଗାଁରେ ତାଟିକବାଟ ପଡ଼ିଯିବ ।

ଅନନ୍ତା ମେଘପବନକୁ ଖାତିର କରିବ ନାହିଁ । ଗାଁରେ ମେଳି ବାନ୍ଧିବ । ଟୋକାଙ୍କୁ କହିବ, ଆସ ଘେରିବନ୍ଧ ଜଗିବା ରାତିରେ । କିନ୍ତୁ ଜବର ଟୋକାମାନେ ମାଇପିମାନଙ୍କ ପଣତକାନିରେ ମୁହଁ ଲୁଚେଇବେ । ମା'ମାନେ କହିବେ, ତାଙ୍କ ଭେଣ୍ଡିଆମାନେ ଯାଇଛନ୍ତି ମାମୁଘରକୁ । ବୁଢ଼ାମାନେ ଖଣ୍ଡିକାଶ ମାରିବେ । ଅନନ୍ତା କିନ୍ତୁ ତିଳେ ହଟିବ ନାହିଁ ତା' କାମରୁ । ଅଧସେରେ ଚାଉଳର ବଗଡ଼ା ଭାତ ସାଙ୍ଗକୁ ତାଟିଏ ଶେଉଳ ମାଛ ଝୋଳ ଗେଫିଦେଇ ସେ ସିଧା ଧାଇଁବ ଘେରିବନ୍ଧ ଆଡ଼କୁ । ତା' ବୋଉର କାନ୍ଦବୋବାଳି ତାକୁ ଆକଟ କରିପାରିବ ନାହିଁ । କିଟିକିଟା ଅନ୍ଧାର ରାତି, ବର୍ଷା ଝଡ଼ି, ଘଡ଼ଘଡ଼ି– କାହାରି ଓଗାଳ ସେ ମାନିବ ନାହିଁ ।

ସାରାରାତି ବଡ଼ ଦକଦକ ହେଉଥିବେ ଗାଁ ଲୋକେ । ଅଥଚ କେହି କାହା ଘରୁ ବାହାରୁ ନ ଥିବେ ପଦାକୁ । ସିନ୍ଦୂରା ଫାଟିଲାବେଳକୁ ବୟସ୍କ ଲୋକ ଜଣେ ଦୁଇ ଜଣ ପୋଖରୀପାଣି ଯିବେ ନଈବନ୍ଧକୁ ।

ବଢ଼ିପାଣି ଉବୁଟୁବୁ ନଈବନ୍ଧରେ ଚିତ୍ ହୋଇ ପଡ଼ିଥିବ ରକ୍ତ ଜୁଡୁବୁଡୁ ଲୋକଟାଏ । ସେ ଯେ କଣ୍ଡୁକର ରଙ୍ଗା ବିଶ୍ୱାଳ, ବଇଷମ ବୁଢ଼ା ଦନେଇ ଦାସ ଚିହ୍ନିପାରି ଆଁ କରି ଚାହିଁ ରହିବ ।

ପାଞ୍ଚହାତିଆ ମର୍ଦ୍ଦ ଅନନ୍ତା ବାରହାତ ଠେଙ୍ଗା ଧରି ଟହଲୁଥିବ ବନ୍ଧ ଉପରେ । ନିଧଡ଼କ ।

ପୋଲିସ୍ ଗାଡ଼ିର କୁହାଟ ଶୁଭୁଥିବ ଦୂରରୁ ।



# ମାଙ୍କଡ଼ ଦିଆଣି

ଦୂର ପାହାଡ଼ ଆଡ଼କୁ ଝପଟୁଥିବା ଅପରାହ୍ନ ସୂର୍ଯ୍ୟର ମୁହଁ ମନେ ହେଉଥିଲା ଭାରି କରୁଣ ।

ଏମିତି କରୁଣ ଛାପଟିଏ ତାଙ୍କ ମୁହଁରେ ଲାଗିଯାଇନି ତ ? ରାଧାରମଣ ନିଜକୁ ପ୍ରଶ୍ନ କଲେ ଓ କାର୍‌ର କାଚ ଆଡୁ ମୁହଁ ଫେରେଇ ଆଣିଲେ ତତ୍‌କ୍ଷଣାତ୍ । ଆଗତପ୍ରାୟ ଶୀତୁଆ ସଞ୍ଜର ଉଦାସପଣ ସତରେ ତାଙ୍କୁ ଘାରିଥିଲା କାହିଁରେ କେତେ ! ଏହି ଦିନେ ଦୁଇ ଦିନ ହେବ, ତାଙ୍କ ନିର୍ବାଚନମଣ୍ଡଳୀର ବିଭିନ୍ନ ଆଡୁ ସେ ଯେଉଁ ଖବର ପାଉଥିଲେ, ସେଥିରେ ତାଙ୍କ ରକ୍ତଚାପ ବଢ଼ିଯିବାରେ କୌଣସି ଅସ୍ୱାଭାବିକତା ନ ଥିଲା ହୁଏତ । ସଦା ଅଥୟ ହେଉଥିଲା ତାଙ୍କ ମନ । କେଉଁ ଗୋଟେ ଅଜଣା ଆଶଙ୍କାରେ ସେ ଭିଜି ଯାଉଥିଲେ ଗୋଟାପଣେ ।

କିନ୍ତୁ ସବୁ ଆଶଙ୍କାକୁ ହଜମ କରିବାର ଅପ୍ରମିତ ଶକ୍ତି ଥିଲା ରାଧାରମଣଙ୍କର । ନିଜର ଦୁର୍ବଳତାକୁ ସେ କେବେବି ନିଜ ମୁହଁରେ ଫୁଟିବାକୁ ଦିଅନ୍ତି ନାହିଁ । ପାନଖିଆ ରକ୍ତିମ ଅଧରରେ ତାଙ୍କର ସବୁବେଳେ ଲହଡ଼ି ଭାଙ୍ଗୁଥାଏ ଦୁଇ ଝଲକା ବେପରୁଆ ହସ । ଆୟତ ଆଖିଯୋଡ଼ିକରେ ଯେମିତି ଭରି ରହିଥାଏ ଅସୁମାରି ଆସ୍ଥାର ବହଳ ପ୍ରଲେପ । ସେ ନିଜେ ଗୋଟେ ଝାଙ୍କୁଲ ଝୁଙ୍କୁଲ ବରଗଛ ଅବା ! ଆଶ୍ରାଟିକେ ପାଇଁ ସେଠି କଳରବ ଶୁଭୁଥାଏ, କି ସଞ୍ଜ କି ସକାଳ । ଏହି ଟିକେ ବୋଲି ଝଡ଼ରେ ଯଦି ସେ ନହକି ପଡ଼ିବେ, ଲୋକବାକ ତ ଦୂରର କଥା ପୋଷା କର୍ମୀଟିଏ ଝଣ୍ଡା ଧରିବାକୁ ଥିବ କି ପଛରେ ?

ରାଧାରମଣ ଖୁବ୍ ନିଦା, ନିଧଡ଼କ । ଭିତରେ ଭିତରେ ପିଳେହି ପାଣି ହେଲେ ବି ସେ ମୁହଁଟାଣ ଛାଡ଼ନ୍ତି ନାହିଁ । ତାଙ୍କର ଏ ସ୍ୱଭାବ ପିଲାଦିନରୁ ।

ପିଲାଦିନେ ପରୀକ୍ଷା ହଲ୍‌ରୁ ଫେରି ସେ କହନ୍ତି, ଗଣିତରେ ଶହେରୁ ଶହେ ନମ୍ବର ରଖିବେ ବୋଲି । କିନ୍ତୁ ରେଜଲ୍‌ଟ ବାହାରିଲାବେଳକୁ କୌଣସି ପ୍ରକାରେ ସେ ଟପିଥାନ୍ତି ତିରିଶ । ସହପାଠୀମାନେ ଟାହିଟାପରା କଲେ, ସେ ଶିକ୍ଷକଙ୍କ ମୁଣ୍ଡରେ ଦୋଷ ଲଦିଦିଅନ୍ତି ସିନା, ନିଜର ଭୁଲ୍ ସ୍ୱୀକାର କରନ୍ତି ନାହିଁ । ମେଟ୍ରିକ୍‌ରେ ଫାଷ୍ଟ ଡିଭିଜନ ପାଇବେ ବୋଲି ବାହାସ୍ଫୋଟ ମାରି ମାରି ଶେଷକୁ ଇଂରାଜୀରେ ଫେଲ୍ ହୋଇଥିଲେ । ଅବଶ୍ୟ କମ୍ପାର୍ଟମେଣ୍ଟାଲ ପାସ୍ କରି ସିଟ୍ ପାଇଯାଇଥିଲେ ସ୍ଥାନୀୟ ଗୋଟେ ନୂଆ କଲେଜରେ ।

କଲେଜରେ ପାଦ ଦେଉ ଦେଉ ନେତା ପାଲଟି ଯାଇଥିଲେ ରାଧାରମଣ । ତାଙ୍କପରି ବାହାପିଆ ଆଉ ବୋଧେ କେହି ନ ଥିଲେ ତମାମ କଲେଜରେ । ବର୍ଷେ ହୋଇଥିଲେ ସେ ଛାତ୍ର ସଂସଦର ସଭାପତି । ସେଥର ତ ଗ୍ରାମ୍ୟ କଲେଜଟି ଖାଲି ଉଠିଲା ପଡ଼ିଲା । ବାର୍ଷିକ ଉତ୍ସବରେ ରାଜ୍ୟର ଜଣେ ପ୍ରଭାବଶାଳୀ ନେତାଙ୍କୁ ବରଣ କରିଥିଲେ ରାଧାରମଣ । ନେତାଜଣକ ସାଂସଦ ବା ବିଧାୟକ ହେବାରୁ ବଞ୍ଚିତ ହୋଇ ଅଜ୍ଞାତବାସରେ ଥିଲେ ବେଶ୍ କିଛିଦିନ । ଅନେକ ଦିନର ବ୍ୟବଧାନ ପରେ ବାଜା, ବାଣ ଓ ଜିନ୍ଦାବାଦ୍‌ରେ ଆପ୍ୟାୟିତ ହୋଇ ସେ ନିଜକୁ ଗୌରବାନ୍ୱିତ ମନେକଲେ । ସେହି ସୁଯୋଗରେ ରାଧାରମଣ ପାଲଟିଗଲେ ତାଙ୍କର ଖୁବ୍ ପାଖ ଲୋକ ।

ରାଧାରମଣ ବି.ଏ. ପାସ୍ କଲେ ସିନା ତାଙ୍କର ଅନର୍ସ ରହିଲା ନାହିଁ । ସାଦା ବି.ଏ. ବାଲାଙ୍କୁ ପି.ଜି.ରେ ସିଟ୍ ମିଳନ୍ତା କାହୁଁ ? ସେ ଏଣେତେଣେ ଘୂରି ବୁଲୁଥିଲାବେଳେ ହଠାତ୍ ରାଜ୍ୟ ବିଧାନସଭା ଭଙ୍ଗର ଖବର ବାଜିଲା ତାଙ୍କ କାନରେ । ତହୁଁ ସେ ଅତର୍ଛା ଦୌଡ଼ିଲେ ଭୁବନେଶ୍ୱର ନେତାଙ୍କ ପାଖକୁ । ଟିକେଟ୍ ପାଇଁ ଆଶାୟୀ ବୋଲି ସେ ନେତାଙ୍କ ଛାମୁରେ ଜଣାକଲେ । ନେତା ହସିଲେ, ପିଠି ଥାପୁଡ଼େଇଲେ । ହଁ କି ନା କିନ୍ତୁ କିଛି କହିଲେ ନାହିଁ । ତାଙ୍କ ପଞ୍ଚାୟତ ସମିତିର ଏକ୍ସ-ଚେୟାରମ୍ୟାନ୍ ନଟ ଦାସ ସେଥର ଟିକେଟ୍ ପାଇଲେ ଓ ଭୋଟରେ ଡାହା ହାରି ଘରେ ପଶିଲେ ଯେ ପଶିଲେ ଆଉ ପଦାକୁ ବାହାରିଲେ ନାହିଁ ।

ଏମିତି ଗୋଟେ ସୁଯୋଗ ଅପେକ୍ଷାରେ ଥିଲେ ରାଧାରମଣ । ତାଙ୍କ ଭାଗ୍ୟ ଆକାଶରେ ଯେମିତି ଜହ୍ନ ଉଇଁଲା ଅବେଳରେ । ସେ ଗାଁ-ଗଣ୍ଡା ବୁଲିଲେ, ସାହି ସାହି ଘୂରିଲେ । ବିଲବାଡ଼, ବଣଖମଣ, ନଈନାଳ ମାନିଲେ ନାହିଁ । କାହା ଲାଗି ଡାକ୍ତରଖାନା ଦୌଡ଼ିଲେ ତ କାହା ପାଇଁ କଚେରି ପିଣ୍ଡାରେ ହାଜର ହେଲେ । ଥାନା ହାଜତରୁ କାହାକୁ ମୁକୁଳାଇ ଆଣିଲେ ତ କାହା ନାଁରେ ସରକାରୀ ଜମି ସେଟଲ୍ କରାଇଦେଲେ । ଗାଁ ରାସ୍ତାର ମରାମତି ଲାଗି ନିତି ଧାଇଁଲେ ବ୍ଲକ୍ ଅଫିସ୍ । ଜିଲ୍ଲାପାଳଙ୍କ ଗାଡ଼ି ଅଟକାଇ ଲୋକଙ୍କ ଦାବି ଜଣାଇଲେ ତାଙ୍କୁ । ଜଳକର ଛାଡ଼ ପାଇଁ ଘେରାଉକଲେ ଅଞ୍ଚଳ ଅଫିସ୍ । କାହା ଭାଇର ବଦଳିପାଇଁ ମନ୍ତ୍ରୀ ସିରସ୍ତାକୁ ଧାଇଁଲେ ତ କାହା ପୁଅପୁତୁରାର ଚାକିରିପାଇଁ ବୁଲିଲେ ରାଜଧାନୀର ରାଜଦାଣ୍ଡରେ । ହଉ ହଉ ଏମିତି ହେଲା ଯେ ଭୁବନେଶ୍ୱର ପାଲଟିଗଲା ତାଙ୍କ ହାଟଗଲା ବାଟ ।

କେଉଁ ଗାଁ ବିବାଦକୁ ନେଇ ନ୍ୟାୟନିଶାପ ବସିଲା ତ ଆଗ ଡକରା ହେଲା ରାଧାରମଣଙ୍କୁ । କଲେଜ ଗଭର୍ଣ୍ଣିଂବଡି ଭାଙ୍ଗିଗଲା ତ ଲୋଡ଼ାଗଲା ରାଧାରମଣଙ୍କ ପରାମର୍ଶ । ତାଙ୍କ ବିନା ଉପସ୍ଥିତିରେ ରାବଣପୋଡ଼ି ବିଳମ୍ବିତ ହେଲା ତ ମଧୁଗଣେଶ ମେଢ଼ ଭସାଣିକୁ ଯାଇପାରିଲା ନାହିଁ । ଦୋଳଯାତ ହେଉ କି ହେଉ ମହରମର ବାଡ଼ିଖେଳ, ତାଙ୍କ ଇଙ୍ଗିତ ବ୍ୟତିରେକେ ଅଚଳ ହୋଇଗଲା ସବୁ ଯେମିତି !

ଦିନ କେତେଟା ଭିତରେ ରାଧାରମଣଙ୍କ ନାଁ ଦେଢ଼ଖଣ୍ଡ ବ୍ଲକ୍‌ର ଏ ମୁଣ୍ଡରୁ ସେମୁଣ୍ଡକୁ ବ୍ୟାପିଗଲା । ରାଧାରମଣ ବି ଅକୁଣ୍ଠିତ ଭାବରେ ସବୁ ସାମାଜିକ ଓ ସାର୍ବଜନୀନ ଉତ୍ସବରେ ନିଜକୁ ସାମିଲ କଲେ । କାହା ଝିଅ ବାହାଘର, କାହା ଶାଳୀର ଲଗ୍ନଧରା ବା କାହା ନାତିର ଏକୋଇଶିଆର ତିଥି ବାର, କିଛି ବି ସେ ଭୁଲିଲେ ନାହିଁ । ବାପପୁଅ ଝଗଡ଼ା ଠାରୁ ସ୍ୱାମୀ-ସ୍ତ୍ରୀ କଳି ପର୍ଯ୍ୟନ୍ତ ସବୁଥିରେ ମୁଣ୍ଡ ପୂରେଇଲେ । ରାତି ପାହାନ୍ତିରେ ଯିଏ ବି ଡାକିଲା ଓଁ କଲେ । ଦୁଃଖୀରଙ୍କୀଙ୍କ ପେଟପାଟି କଥା ବୁଝିଲେ । ଅରକ୍ଷିତଙ୍କୁ ସାହା ହେଲେ, ରାଣ୍ଡୀଖଣ୍ଡିଙ୍କୁ ଆଶ୍ରା ଦେଲେ । ଡାହାଳ ପରି ଟୋକା ବି ପୋଷିଲେ ।

ବାହାଘର ପରେ ରାଧାରମଣ ପ୍ୟାଣ୍ଟସାର୍ଟ ଛାଡ଼ି ଟ୍ରାଉଜର୍ ପଞ୍ଜାବି ପିନ୍ଧିଲେ । ମଝିରେ ମଝିରେ ଧୋତି ପରିହିତ ହୋଇ ସଭାସମିତିକୁ ଗମ୍ଭୀର କରିବା ସଙ୍ଗେସଙ୍ଗେ ନିଜ ଓଜନକୁ କାହିଁ କେତେଗୁଣ ବଢ଼ାଇଦେଲେ ।

ଆଇଲା ଇଲେକ୍‌ସନ ଓ ଟିକେଟ୍ ପାଇବାକୁ ଆଖି ଆଗରେ ରଖି ଏସବୁ କରି ଚାଲିଥିଲେ ରାଧାରମଣ । ଆହୁରି ଅନେକ କିଛି ବି ସେ କରୁଥିଲେ । ଏହି ଯେମିତି ସେ ଟି.ଭି.ରେ ବାହାରୁଥିଲେ ଲଗାତାର ଭାଷଣ ବା ସ୍ଲୋଗାନ୍ ଦବା ଅବସ୍ଥାରେ ବା ଯେମିତି କନ୍‌ଷ୍ଟିଟ୍ୟୁଏନ୍ସିର ଅବହେଳା ବିଷୟରେ ତାଙ୍କର ଶାଣିତ ବୟାନ ଅଗ୍ରଣୀ ଖବରକାଗଜଗୁଡ଼ିକର ପୃଷ୍ଠା ମଣ୍ଡନ କରୁଥିଲା । ଅଥବା ଯେମିତି ସେ ନେତାଙ୍କର ଧର୍ମପୁତ୍ର ବୋଲି ଏକ ସ୍ୱଚ୍ଛ ଗୁଜବ ସାରା ରାଜ୍ୟକୁ କୁହୁଡ଼ି ପରି ଆଚ୍ଛନ୍ନ କରି ରଖିଥିଲା ।

ଯା'ଭିତରେ ପାଞ୍ଚ ବର୍ଷ ବିତିଗଲା । ପାଣି ପରି ସମୟ । ଜଣାପଡ଼ିଲା ନାହିଁ । ଉପଗତ ହେଲା ଇଲେକ୍ସନର ଋତୁ । ଘୁଙ୍ଗୁଡ଼ି ମାରୁଥିବା ନେତାଏ ଆଖି ମଳି ମଳି ଉଠିଲେ । କାଉ ଉଡୁଥିବା ଦଳୀୟ ଅଫିସ୍‌ଗୁଡ଼ିକରେ କର୍ମୀ ଭଣଭଣ ହେଲେ । ଖବରକାଗଜରେ ବାଘ ମାତିଲେ, ଛାତି ଫୁଲେଇ ହେଲେ ହାକିମହୁକୁମା । କାଳବିଳମ୍ବ ନ କରି ଛତା କମ୍ବଳ ଧରି ରାଜଧାନୀ ବାହାରିଗଲେ ରାଧାରମଣ । କହିଗଲେ, ଜଗିଆ, ଭଗିଆ, ଭୁଆ, ଭିକାରିଙ୍କୁ, ''ଘାଟି ଜଗି ପଡ଼ିଥାଅ । ଟିକେଟ୍ ନେଇ ଫେରିବି ।''

ନେତାଙ୍କ ଆଉଟ୍ ହାଉସ୍‌ରେ ଅଧିଆ ପଡ଼ିଲେ ରାଧାରମଣ । ନେତା ଗଲା ଆଇଲାବେଳେ ଦୌଡ଼ି ଯାଇ ମୁଣ୍ଡିଆ ମାରିଲେ, ଗୁହାରି ଜଣାଇଲେ । ଦେଖିବା, ବୁଝିବା କହି ନେତା ଗଲେ ତାଙ୍କ ବାଟରେ । ରାଧାରମଣ ଧୈର୍ଯ୍ୟ ହରାଇବା ଲୋକ ନୁହନ୍ତି । ମଶା-ଡାଆଁଶରେ ରାତି ବିତେଇଲେ । ଭାବିଲେ, ଧ୍ୟାନ, ଧାରଣା, ଆନୁଗତ୍ୟ ବଳେ, କିବା ଅସାଧ ମହୀତଳେ ? ଷଷ୍ଠ ଦିନ ବିଳମ୍ବିତ ରାତିରେ ଉପର ମହଲାକୁ ଯିବା ପାଇଁ ହୁକୁମ ଆସିଲା ନେତାଙ୍କ ପାଖରୁ । ରାଧାରମଣ ଉପର ମହଲାରେ ପାଦଦେବାକ୍ଷଣି ନେତା କହିଲେ, ''ବ୍ଲଡି, (ନେତା ଏମିତି ସସ୍ନେହ ସମ୍ବୋଧନ କରିବାରେ ଅଭ୍ୟସ୍ତ)

ଆର୍ ୟୁ ହଣ୍ଡ୍ରେଡ୍ ପର୍‌ସେଣ୍ଟ ସିଓର୍ ଅଫ୍ ୟୋର୍ ଭିକ୍ଟ୍ରି ?'' 'ଟୁ ହଣ୍ଡ୍ରେଡ ପର୍‌ସେଣ୍ଟ ସାର୍', ଦମ୍ଭର ସହିତ ଉତ୍ତର ଦେଲେ ରାଧାରମଣ । ନେତା ହସିଲେ । ଭାବିଲେ ତାଙ୍କୁ ବୋଧେ ବାହାପିଆମିରେ ଟପିଯିବ ଏ ଧୂର୍ତ୍ତ ଯୁବକ । କହିଲେ, ''ତୁ କନ୍‌ଷ୍ଟିଚ୍ୟୁଏନ୍ସିକୁ ଶୀଘ୍ର ଯା' । ତୋତେ ଅବଶ୍ୟ ଟିକେଟ୍ ଦେବି ଏଥର ।''

ରାଧାରମଣଙ୍କ ଗୋଡ଼ ଆଉ ତଳେ ଲାଗିଲା ନାହିଁ । ଚଢ଼େଇଟେ ପରି ସେ ଉଡ଼ି ଉଡ଼ି ଫେରିଆସିଲେ ନିଜ କନ୍‌ଷ୍ଟିଚ୍ୟୁଏନ୍ସିକୁ । ମନେମନେ ଭାବିଲେ, ତାଙ୍କ ଷ୍ଟ୍ରାଟେଜିଟା ଠିକ୍ କାମ ଦେଲା । ନେତା ଭାରି ଚାଲାକ । ଏହି ପାଞ୍ଚ ଦିନ ତାଙ୍କୁ ରାଜଧାନୀରେ ଅଟକାଇ, ତାଙ୍କ ୱିନେବିଲିଟି ଯାଞ୍ଚ କରୁଥିଲେ । କିନ୍ତୁ ପ୍ରତି ପଞ୍ଚାୟତରେ ସେ ଏମିତି ଲୋକ ସେଟ୍ କରିଥିଲେ ଯେ ନାଇଣ୍ଟି ନାଇନ୍ ପର୍ସେଣ୍ଟ ଲୋକ ତାଙ୍କ ସପକ୍ଷରେ ମତ ଦେଇଥିବେ ନିଶ୍ଚୟ । ଗୋଟେ ଯୋଡ଼େ ବୁଢ଼ାହଡ଼ା ହୁଏତ ନଟ ଦାସ କଥା ଉଠେଇଥିବେ । ନେତା ତେଣୁ ଭାରି ଖୁସ୍, ଏତେ ଶୀଘ୍ର ନ ହେଲେ ଟିକେଟ୍ ଦବା ପାଇଁ କ'ଣ ହଁ ମାରିଥା'ନ୍ତେ ?

ଗୃହଶତ୍ରୁ ପରାହତ ହେଲା ପରେ ବିପକ୍ଷ ଶିବିର କଥା ଚିନ୍ତା କଲେ ରାଧାରମଣ । ଧନୀ ମହାନ୍ତି ତିନି ତିନି ଥର ନିର୍ବାଚନ ଜିତିଥିଲେ । ବୟସ ତାଙ୍କର ସତୁରି ଟପିବ, କାମ କରିବାପାଇଁ ନା ତାଙ୍କର ବଳ ଥିଲା, ନା ଥିଲା ଆସ୍ପୃହା । କନ୍‌ଷ୍ଟିଚ୍ୟୁଏନ୍ସି ଲୋକମାନେ ବୁଢ଼ା ମୁହଁରେ କିଛି କହିପାରୁ ନ ଥିଲେ, ଯେତେହେଲେ ବି ବୟସର ତ ପୁଣି ଗୋଟେ ମର୍ଯ୍ୟାଦା ଅଛି ! କିନ୍ତୁ ପଛରେ ବୁଢ଼ାଟାକୁ ଥଟ୍ଟା-ପରିହାସ କରୁଥିଲେ । ଯୁବକମାନେ ଥିଲେ ଏଥିରେ ଆଗୁଆ । ମଲାପରେ ବି ବୁଢ଼ା ସ୍ୱର୍ଗରେ ଏମ୍.ଏଲ୍.ଏ. ହବାକୁ ଟାର୍ଗେଟ ରଖିଛି ବୋଲି ସେମାନେ ଟାପରା କରୁଥିଲେ । କେହି କେହି କହୁଥିଲେ, ରାଜନୀତି କ୍ଷେତ୍ରରେ ବି ଅବସରକାଳୀନ ବୟସ ଲାଗୁହବା ଦରକାର । ତା'ହେଲେ ଯାଇ ଧନୀ ମହାନ୍ତି ମନ ଘର ଧରନ୍ତା । କେବଳ ଅପାରଗପଣିଆ ନୁହେଁ, ବୁଢ଼ାର ସ୍ୱଚ୍ଛତା ଉପରେ ବି ଅନେକ ଆଙ୍ଗୁଳି ଦେଖାଉଥିଲେ ।

ଦୀର୍ଘଦିନ ପାୱାର୍‌ରେ ରହିବା ପରେ ମଧ ଗୋଟେ କିଛି ଆଖିଦୃଶିଆ କାମ କରି ନ ଥିଲେ ଧନୀ ମହାନ୍ତି । କେଉଁ ଗାଁକୁ ରାସ୍ତା ନ ଥିଲା,ରାସ୍ତା ଥିଲେ ପୋଲ ନ ଥିଲା, କେଉଁଠି ସ୍କୁଲ୍ ନ ଥିଲା, ସ୍କୁଲ ଥିଲେ କ୍ଲାସ୍‌ରୁମ୍ ନ ଥିଲା । କେଉଁଠି ପୁଣି ଡାକ୍ତରଖାନା ଥିଲେ ଡାକ୍ତର ନ ଥିଲେ ତ କେଉଁଠି ଲିଫ୍‌ଟପଏଣ୍ଟ ଥିଲେ ସେଠାକୁ ବିଜୁଳି ଯାଇ ନ ଥିଲା । ଗୋଟେ ନାହିଁ ନାହିଁର ମୂଳକ ପାଲଟି ଯାଇଥିଲା ସାରା କନ୍‌ଷ୍ଟିଚ୍ୟୁଏନ୍ସିଟା । ଅପରନ୍ତୁ ଅନେକ ଦିନ ତଳୁ ଧନୀ ମହାନ୍ତିଙ୍କ ପୈତୃକ କୁଡ଼ିଆ ଘରଟି କୋଠାରେ ରୂପାନ୍ତରିତ ହୋଇସାରିଥିଲା । ବେପାର-ବଣିଜ କରି ହୁ ହୁ ହୋଇ ବଢ଼ି ଚାଲିଥିଲେ ତାଙ୍କ ପିଲାମାନେ । ନିଜ ଭାଇବନ୍ଧୁକୁଟୁମ୍ବଙ୍କୁ ବି ସେ ଠିକ୍ ଜାଗା ଦେଖି ଥଇଥାନ କରିଦେଇଥିଲେ ।

ଏସବୁକୁ ଇସ୍ୟୁ କରି ନିର୍ବାଚନ ଲଢ଼ିବାର ଷ୍ଟ୍ରାଟେଜି ତିଆରି କରୁଥିଲେ ରାଧାରମଣ । କିନ୍ତୁ ପ୍ରାର୍ଥୀପତ୍ର ଦାଖଲର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଜାଣିପାରୁଥିଲେ ଯେ ଧନୀ ମହାନ୍ତି ନୁହନ୍ତି, ତାଙ୍କ ସବାସାନ ଅଭିନେତ୍ରୀ ଝିଅ ଅପ୍ସରା ସୁନ୍ଦରୀ ମହିଷାମର୍ଦ୍ଦିନୀ ମହାନ୍ତି ଓରଫ୍ ମମି ମହାନ୍ତି ହେବେ ଗଛ ଦଳର କ୍ୟାଣ୍ଡିଡେଟ୍ ! ତା'ପରେ ଆରମ୍ଭ ହୋଇଗଲା ଗଛ ଦଳ ଓ ମାଛ ଦଳ ମଧ୍ୟରେ ବିଧିବଦ୍ଧ ତୁରୁରୁରୁ...ତୁରୁ ରୁ ରୁ । ରାଧାରମଣ ବନାମ ମମି ମହାନ୍ତି – ରଣଭେରୀରେ ଖାଲି କମ୍ପିଲା ମେଦିନୀ !

ରାଧାରମଣ ପ୍ରମାଦ ଗଣିଲେ । ତାଙ୍କର ସବୁ ଷ୍ଟ୍ରାଟେଜି ଫସର ଫାଟିଗଲା । ବାପ୍ ସେ ବେଟୀ ଯେ ଜ୍ୟାଦା, ଏଥିରେ ତାଙ୍କ ମନରେ ତିଳେ ବି ସନ୍ଦେହ ରହିଲା ନାହିଁ । ମମି ମହାନ୍ତି ଚାରିପାଖରେ ଖାଲି ଟୋକା ସାଲୁବାଲୁ ହେଲେ । ଟୋକା ତ ଟୋକା ତାକୁ ଦେଖିବାପାଇଁ ବୁଢ଼ାମାନେ ପାଗଳପରାୟ ସଭାକୁ ଦୌଡ଼ିଲେ । ତା' ନଟୀ ରୂପ ବିମୁଗ୍ଧ କଲା ଆବାଳବୃଦ୍ଧବନିତାଙ୍କୁ । ମାଛଦଳର ଅବଗଣନା ଆରମ୍ଭ ହୋଇଗଲା ଦିନକେତେଟା ଭିତରେ । 'ଶାଳା, ବେଇମାନଗଣ', ରାଧାରମଣ ସ୍ୱଗତୋକ୍ତି କଲେ । ରାଜଦ୍ୱାରେ, ଶ୍ମଶାନେ ଚ– ଯାହା ପାଇଁ ଯେଉଁଠି ସେ ଠିଆ ହୋଇଥିଲେ– ତାଙ୍କର କାହାରି କିନ୍ତୁ ଦେଖା ନ ଥିଲା ଦାୟ-ଦରକାର ବେଳେ !

ମମି ମହାନ୍ତି ନିତମ୍ବ ହଲାଇ ଖେଳରେ ୱାକ୍‌ଓଭର୍ ନେଇଯାଉଛି ତାଙ୍କ ଆଖି ଆଗରେ, ରାଧାରମଣ ନ କାନ୍ଦି ରହିପାରନ୍ତେ କି ? ହେଲେ ସେ କାନ୍ଦ କାନ୍ଦ ହୋଇଗଲେ ସିନା କାନ୍ଦିଲେ ନାହିଁ । କର୍ମୀମାନଙ୍କୁ ଆଶ୍ୱାସନା ଦେଲେ । କହିଲେ, ''ରୁହ, ଅମୋଘ ଅସ୍ତ୍ର ଅଛି ଆମ ପାଖରେ । ଆମ ନେତା ଦି'ଟା ସଭାରେ ଭାଷଣ ଦେଇଗଲେ, ଓଲଟା ବହିବ ଅଣଚାଶ ! ମମି ମହାନ୍ତିର ସିନେମା ବଳେ ଫ୍ଲପ୍ ହୋଇଯିବନି ?''

ତରିମରି ରାଧାରମଣ ନେତାଙ୍କ ପାଖକୁ ଫୋନ୍ କଲେ । ନେତାଙ୍କ କମ୍ପ୍ୟୁଟର୍‌ରେ ତ ରାଜ୍ୟଯାକର ତାଜା ଖବର ଭର୍ତ୍ତି ! ''ବ୍ଲଡ଼ି ଫୁଲ୍, ୟୁ ଗୋ ଟୁ ହେଲ୍'', ସେ ଫୋନ୍ ଧରୁ ଧରୁ କହିଲେ ଓ କହୁ କହୁ ଫୋନ୍ ଥୋଇଦେଲେ । କିନ୍ତୁ ନର୍କର ସବୁ ଦ୍ୱାରକୁ ବନ୍ଦ କରିଦେବାପାଇଁ ତଥାପି ଷ୍ଟ୍ରାଟେଜି ତିଆରି କରୁଥିଲେ ରାଧାରମଣ ।

ମୃଦୁ କୋଳାହଳରେ ରାଧାରମଣଙ୍କ ଛାଇନିଦ ଭାଙ୍ଗିଗଲା । ସଭାସ୍ଥଳରେ ପହଞ୍ଚିଗଲେ ବୋଲି ଭାବି ସେ ଧଡ଼ପଡ଼ ହୋଇ ଉଠିପଡ଼ିଲେ । ଡ୍ରାଇଭର କହିଲା, ''ସାର୍, ଏଇଟା ସଭାପଡ଼ିଆର ପୂର୍ବଛକ ନନ୍ଦପୁର । ଏଠି ସଭାସମିତି ଆମର ନାହିଁ କି ତାଙ୍କର ନାହିଁ । ମାଙ୍କଡ଼-ଦିଆଶି ନାଚ କରୁଛି । ବାଜା ଶୁଣିପାରୁ ନାହାନ୍ତି ସାର୍ ।'' 'ମାଙ୍କଡ଼ ଦିଆଶି ?' ରାଧାରମଣ ପଚାରିଲେ । ''ହଁ ସାର୍'', ଡ୍ରାଇଭର କହିଚାଲିଲା, ''ଏହି ପାଞ୍ଚ ସାତ ଦିନ ହେବ କେନ୍ଦୁଝର କି କନ୍ଧମାଳରୁ ଆଦିବାସୀ ଟୋକାଟେ ଆସି

ମାଙ୍କଡ଼ ନଚଉଛି । ମାଙ୍କଡ଼-ଦିଆଶି ଆଗତ ଭବିଷ୍ୟ କହିଦଉଛି ପରା । ଲୋକେ ଇଲେକ୍‌ସନ ସଭା ଛାଡ଼ି ସେହି ମାଙ୍କିଡ଼ିଆ ପଛରେ ଧାଇଁଛନ୍ତି ଆଜ୍ଞା !''

''ଭଲ ଖବରଟେ ଦେଲୁ'', ରାଧାରମଣ କହିଲେ ଓ ପୁଣି ନିରୁବିଗଲେ ନିଦେଇଲା ପରି ।

ମାଙ୍କଡ଼-ଦିଆଶି କଥା ଶୁଣି ପିଲାଦିନକୁ ଫେରିଯାଇଥିଲେ ରାଧାରମଣ । ତାଙ୍କର ମନେ ପଡୁଥିଲା ଖରାଦିନିଆ ଦ୍ୱିପ୍ରହର ସବୁର କଥା । ବାପାଙ୍କ ବେତକୁ ଡରି ସେ ଖରାବେଳେ ମିଛିମିଛିକା ଶୁଅନ୍ତି ସିନା ହେଲେ କାନ ଡେରିଥା'ନ୍ତି କେତେବେଳେ ଢୋଲ ବାଜିବ ଗାଁ ଦାଣ୍ଡରେ । ମାଙ୍କିଡ଼ିଆର ଢୋଲ ବଜା ନିଆରା । ସେ ଢୋଲ ନିଦ ଚୋରେଇନବ ପିଲା ମାଇପିଙ୍କ ଆଖିରୁ । ମୁହୂର୍ତ୍ତକ ଭିତରେ ସମସ୍ତେ ଯାଇ ଗାଁ ମଝି ଓସ୍ତଗଛ ମୂଳରେ ହାଟ ବସେଇଦେବେ । ମାଙ୍କିଡ଼ିଆ ତହୁଁ ତିନୋଟି ଗାର କାଟିଦବ ଶୂନ୍ୟରେ । ଗାର ମୁତାବକ ଲୋକେ ଛାଁକୁ ଆଡ଼ ହୋଇଯିବେ । ନାଲିଜାମା ପିନ୍ଧି ବିଚିତ୍ର ଦିଶୁଥିବା ପାତିମାଙ୍କଡ଼ଟି ମାଙ୍କିଡ଼ିଆର କଥାମାନି ପ୍ରଥମେ ବହେ ନାଚିଯିବ । ତା'ପରେ ମାଙ୍କିଡ଼ିଆ ମାଙ୍କଡ଼ ବନ୍ଦନା ଗାନ କରିବ । ସୀତାମୟାର ରକ୍ଷାକାରୀ, ଲକ୍ଷ୍ମଣ ଲାଲାର ଜୀବନଦାତା, ରାମସେବକ, ପବନସୁତ, ବୀର ବଜରଙ୍ଗ ଆଦି କହି ମାଙ୍କଡ଼କୁ ଜୁହାର ହେବ । ତା' ଦେଖାଦେଖିରେ କି ବୁଢ଼ା କି ପିଲା ସମସ୍ତେ ମୁଣ୍ଡ ନୁଆଁଇବେ ମାଙ୍କଡ଼-ଦିଆଶି ଆଗରେ । ତା'ପରେ ମାଙ୍କଡ଼-ଦିଆଶିକୁ ଯେ ଯାହାର ହାରିଗୁହାରି ଜଣାଇ ପ୍ରଶ୍ନ ପଚାରିବେ । ମାଙ୍କଡ଼-ଦିଆଶି ମୁଣ୍ଡ ଟୁଙ୍ଗାରି ହଁ ନାହିଁରେ ଉତ୍ତର ଦେବ ।

ମାଙ୍କଡ଼-ଦିଆଶିର କଥା ଅନ୍ୟଥା ହୁଏ ନାହିଁ କୁଆଡ଼େ । ଏହି ଯେମିତି ରାଧାରମଣଙ୍କର ମନେପଡୁଥିଲା ତାଙ୍କ ଗାଁ ପଣ୍ଟୁ ସାହୁ ପୁଅ ହଜିବା କଥା । ପଣ୍ଟୁ ସାହୁ ପୁଅ ଅଇଁଠୁ ଚରମ୍ପା ଯାଇଥିଲା କାଳୀ ଦେଖି, ତା' ବା' ସାଙ୍ଗରେ । ପଥରକାଳୀ ପାଖରେ ଏତେ ଭିଡ଼ ହେଲା ଯେ ବାପପୁଅଙ୍କ ହାତ କେମିତି ଛଡ଼ାଛଡ଼ି ହୋଇଗଲା, କେହି ଜାଣିପାରିଲେ ନାହିଁ । ଜାଣିଲାବେଳକୁ ପଣ୍ଟୁ ସାହୁ, ଅଇଁଠୁର ହାତ ନ ଥିଲା ତା' ଜାବୁଡ଼ାରେ । ମେଳାସାରା ସେ ପୁଅକୁ ବାୟାବାଉଳ ପରି ଖୋଜିଲା । ଛୋଟ ପିଲାଟା ଆଉ ତା' ବା'କୁ ଖୋଜି ନ ଥିବ କି ? ପୁଅ କିନ୍ତୁ ମିଳିଲା ନାହିଁ । ପୋଲିସ୍‌ବାବୁମାନେ ମାଇକ୍‌ରେ ପୁଅ ନାଁ ଧରି ଡାକିଲେ । 'ଅଇଁଠୁ ସାହୁ, ଯେଉଁଠି ଅଛୁ ଅମୁକ ଜାଗାରେ ପହଞ୍ଚିଯା' ବୋଲି ତୁହାକୁତୁହା କହିଲେ । ହେଲେ କିଛି ଫଳ ହେଲା ନାହିଁ । ପଣ୍ଟୁ ସାହୁ ଏକୋଇରବଳା ବିଶିକେଶନକୁ ହଜେଇ କାନ୍ଦି କାନ୍ଦି ଗାଁକୁ ଫେରିଲା । ଘରେ ତାଙ୍କର ଅରନ୍ଧା ଅବଢ଼ା ଲାଗିରହିଲା କାହିଁ କେତେଦିନ । ସ୍ୱାମୀ ସ୍ତ୍ରୀ ଦିହେଁ ପୁଅ ପାଇଁ ବାହୁନିଲେ ଦିନରାତି । ହେଲେ ଗଲା ପୁତ୍ର ବାହୁଡୁ ନ ଥିଲା ।

ସେ ସନ ଖରାଦିନକୁ ଯେତେବେଳେ ମାଙ୍କଡ଼-ଦିଆଶି ଗାଁକୁ ଆସିଲା, ତା' ପୁଅ ଫେରିବ କି ନାହିଁ ବୋଲି ପଣ୍ଟୁ ସାହୁ ପଚାରିଲା ମାଙ୍କଡ଼-ଦିଆଶିକୁ ।

ମାଙ୍କିଡ଼ିଆ ତା' ଭାଷାରେ ମାଙ୍କଡ଼-ଦିଆଶିଙ୍କୁ କ'ଣ ସବୁ ବୁଝେଇ କହିଲା । ତା'ପରେ ପଚାରି ଚାଲିଲା, ପଣ୍ଡୁ ସାହୁ ପୁଅ ଅଇଁଠୁ ସାହୁ ଫେରିବ କି ନାହିଁ ? ଫେରିବ କି ନାହିଁ ? ଫେରିବ କି ନାହିଁ ? ମାଙ୍କଡ଼-ଦିଆଶି ମୁଣ୍ଡ ଟୁଙ୍ଗାରି ହଁ ମାରିଲା । ପଣ୍ଡୁ ସାହୁ ତା' ଦିନକର ମୂଲ ଅଜାଡ଼ି ଦେଲା ମାଙ୍କଡ଼-ଦିଆଶି ପାଦତଳେ ।

ସେଥର ରଜବେଳକୁ ଅଇଁଠୁ ଫେରିଲା ଗାଁକୁ । ଥିଲା ବର୍ଦ୍ଧମାନରେ । ମାଙ୍କଡ଼-ଦିଆଶି ସେତେବେଳେ ଗାଁରେ ବା କୋଉ ଥିଲା ? ତଥାପି 'ବୀର ବଜରଙ୍ଗ କି ଜୟ', ଧ୍ୱନିରେ ସାରା ଗାଁ ଉଚ୍ଛୁଳିଲା ସେଦିନ ।

ପିଲାଙ୍କ ପରୀକ୍ଷା ଫଳ, ଝିଅ ବାହାଘର, ଚାଷବାସ, ବା'-ବତାସ, ବଢ଼ି-ମରୁଡ଼ି- କେଉଁ କଥା ଆଉ ପଚରା ନ ଯାଏ ମାଙ୍କଡ଼-ଦିଆଶିଙ୍କୁ । ମାଙ୍କଡ଼-ଦିଆଶି ପାଖରେ ବୋଧେ ସବୁ ପ୍ରଶ୍ନର ଉତ୍ତର ଥାଏ, ଥାଏ ସବୁ ଶଙ୍କା-ଆଶଙ୍କା ଉଶ୍ୱାସ ହେବାର ବାଟ । ମାଙ୍କଡ଼-ଦିଆଶିର ପ୍ରାୟ କଥା ସତ ହୁଏ । ଅନେକଙ୍କର ଅଭୀଷ୍ଟ ପୂରଣ ହୋଇଯାଏ, ହଜିଲା ବଳଦ ଖୋଜିଲାଠେଇଁ ଆସି ଜୁଟେ । କଦବା କେମିତି ବ୍ୟତିକ୍ରମ ଯେ ନ ଥାଏ, ତା' ନୁହେଁ, ହେଲେ ଗାଁ ଲୋକେ ମାଙ୍କଡ଼-ଦିଆଶିର ଦୋଷ ଧରନ୍ତି ନାହିଁ । ଯେତେହେଲେ ବି ସେ କ୍ଷୁଦ୍ର ଜୀବଟିଏ, ପ୍ରଭୁ ଶ୍ରୀରାମଙ୍କ ସେବକ ଶିରୋମଣିଙ୍କ ବଂଶଧର କି ନା !

ଦିନେ ଖରା ମଉଳାବେଳେ କିଶୋର ରାଧାରମଣ ମାଙ୍କିଡ଼ିଆ ପଛରେ ଧାଇଁଥିଲେ ଗାଁ ମୁଣ୍ଡ ଦୋସମାଳି ପଥର ପର୍ଯ୍ୟନ୍ତ । ତାଙ୍କ ଉପରେ ମାଙ୍କିଡ଼ିଆର ନଜର ପଡ଼ିଲାକ୍ଷଣି କାନ୍ଧରୁ ମାଙ୍କଡ଼ ଓହ୍ଲେଇ ସେ ଖିଙ୍କାରିଲା, ''କିବେ ଟୋକା, ତୁ ମୋ ପଛରେ ଗୋଡ଼େଇଛୁ କିଆଁ ?'' ରାଧାରମଣ ବଡ଼ କାକୁତିମିନତି ହୋଇ କହିଥିଲେ, ''ମୁଁ ପାସ୍ କରିବି କି ନାହିଁ, ଟିକେ ମାଙ୍କଡ଼-ଦିଆଶିଙ୍କୁ ପଚାରି କୁହ ଭଲା ।'' ''ମୋତେ ଜଳଜଳ ଦିଶୁଛି, ବେଟା, ତୁ ଜମା ପାଠ ପଢୁ ନାହୁଁ, ଫେଲ୍ ହବୁ । ମାଙ୍କଡ଼-ଦିଆଶିଙ୍କୁ ଆଉ ପଚାରିବି କ'ଣ ?'' ମାଙ୍କିଡ଼ିଆ ଉତ୍ତର ଦେଇଥିଲା । ରାଧାରମଣ ଏକାନ୍ତରେ ସେଦିନ ମାଙ୍କିଡ଼ିଆର ଗୋଡ଼ ଧରି ପକାଇଥିଲେ । ପାଞ୍ଚଟି ନୂଆ ସୁଉକି ତା' ହାତରେ ବଢ଼େଇ ଦେଇ କହିଥିଲେ, ''ମୁଁ ପାସ୍ କରିଯିବି ବୋଲି ମୋ ବୋଉ ପଚାରିଲେ ମାଙ୍କଡ଼-ଦିଆଶିଙ୍କୁ ମନେଇ କୁହା କରେଇବ ଯେମିତି । ନ ହେଲେ ମୋ ବାପ ମୋ ପିଠିରୁ ଛାଲ ଉତାରିଦବ ।'' ମାଙ୍କିଡ଼ିଆଟା ଭଲ ଲୋକ, ବେଇମାନି କରି ନ ଥିଲା ।

ରାଧାରମଣ ଆର୍କିମେଡିସ୍ ହୋଇଥିଲେ ଉଧ୍ବ ନଙ୍ଗଳା ହୋଇ ଧାଇଁଥାନ୍ତେ ବିଚ୍ ରାସ୍ତାରେ । 'ୟୁରେକା ୟୁରେକା' ବୋଲି ଚିତ୍କାର କରିଥା'ନ୍ତେ । କିନ୍ତୁ ସେ ସେମିତି କିଛି କଲେ ନାହିଁ । ତାଙ୍କ ଓଠରେ ମଲ୍ଲୀମାଳଟେ କିଏ ଲଟକେଇ ଦେଲା କି ଆଉ ? ଖୁବ୍ ଉଶ୍ୱାସ ଲାଗିଲା ତାଙ୍କୁ । ଭସା ମେଘଖଣ୍ଡେ ପରି ସେ ଉଡ଼ିବାରେ ଲାଗିଲେ । ସଭାମଞ୍ଚରେ ପହଞ୍ଚିଲାବେଳକୁ ତାଙ୍କର ମନେହେଲା, ସେ ଯେମିତି ଇଲେକ୍ସନ ଜିତି ସାରିଛନ୍ତି !

ଡେରି ରାତି ପର୍ଯ୍ୟନ୍ତ ସଭା ଚାଲିଲା ସେଦିନ । ରାଧାରମଣଙ୍କ ଭାଷଣ ଶୁଣି ଲୋକେ ଉଦ୍‌ବୁଦ୍ଧ ହୁଅନ୍ତୁ ବା ନ ହୁଅନ୍ତୁ, କର୍ମୀମାନେ କିନ୍ତୁ ସିନ୍ଧୁ ଲଙ୍ଘିବାକୁ ପ୍ରସ୍ତୁତ ହୋଇଗଲେ । ସଭା ପରେ ରାଧାରମଣ ଜଗିଆ, ଭଗିଆଙ୍କୁ ସାଙ୍ଗରେ ଧରି ଚାଲିଲେ ଗୋଟେ ନିଛାଟିଆ ଡାକବଙ୍ଗଳାକୁ । ନିଭୃତରେ ଦୁହିଁଙ୍କ କାନରେ କ'ଣ ଏଣୁତେଣୁ ସବୁ ଫୋଡ଼ିଲେ । ଟଙ୍କା କିଛି ଧରେଇଦେଲେ ଉଭୟଙ୍କୁ । ତା'ପରେ ମାତିଗଲେ ଦୁଇ ଶୁମ୍ଭ, ନିଶୁମ୍ଭ ।

ଇଲେକ୍ସନର ଶେଷ ଚାରି ଦିନ ଆହାର, ନିଦ୍ରା, ଭୟ, ମୈଥୁନ – ସବୁ ତିଆଗିଲେ ରାଧାରମଣ । କେଉଁଠି କେଉଁଠି ସବୁ ବୁଲିଲେ ତାହା ତାଙ୍କୁ ହିଁ ଜଣା । ମୋଟରସାଇକେଲ୍ ପଛରେ ବସି ହିଡ଼ ରାସ୍ତା ଡେଇଁଡେଇଁ ଗାଁକୁ ଗଲେ ତ ନଈପାରି ହୋଇ ଡେରା ପକାଇଲେ କେଉଁ ତଳମାଳ ରାଇଜରେ । କେଉଁଠି କ୍ଲବ୍ ଟେକାଙ୍କ ସହ ଭୋଜିଭାତ ଖାଇଲେ ତ ପୁଣି କେଉଁ ମନ୍ଦିର ବେଢ଼ାରେ ବସି ଦେଶମାଟିରେ ନିଜ ଦେହ ମିଶେଇ ଦେବେ ବୋଲି ଶପଥ ନେଲେ ।

ଚାରି ଦିନ, ଚାରି ରାତି– ଭୋଟରର ଦୃଶ୍ୟପଟ ବଦଳେଇ ଦବାପାଇଁ ଥିଲା ଯଥେଷ୍ଟ ।

ଇଲେକ୍ସନ ଦିନ ଜିଣିଲା ଜିଣିଲା ଭାବ ଯେ କେହି ପଢ଼ିପାରୁଥିଲେ ରାଧାରମଣଙ୍କ ମୁହଁରେ । ଭୋଟ ଗଣତି ଦିନ ସେ କାଉଣ୍ଟିଂ ସେଣ୍ଟରକୁ ବି ଗଲେ ନାହିଁ । ସାନଭଉଣୀ ଘରେ ଖାଇପିଇ ଆରାମରେ ଶୋଇଲେ । ଫଳାଫଳର ଟ୍ରେଣ୍ଡ ଜାଣିବାପାଇଁ ବେଳେବେଳେ ଟି.ଭି. ଖୋଲିଲେ । ମନେମନେ ଜଗିଆ, ଭଗିଆଙ୍କ ଆସିବାକୁ ତକେଇ ରହିଲେ ।

ବେଳ ଗଡ଼ାଣିକୁ ଜଗିଆ, ଭଗିଆ ଆସି ହାଜର ହୋଇଗଲେ । ସାଙ୍ଗରେ ଆଣିଥିଲେ ମହଣେ ଓଜନର ଫୁଲମାଳ । କହିଲେ, ''ସାର୍, ବାହାରି ପଡ଼ନ୍ତୁ । ଭିକ୍ଟ୍ରି ପ୍ରଶେସନ୍ ଆରମ୍ଭ କରିଦେବା । ଆମେ ତ ପଚାଶ ହଜାରରେ ଆଗୁଆ । ଆଉ ମାତ୍ର ଦି'ରାଉଣ୍ଡ ଗଣତି ବାକି ରହିଛି ।''

''ଯିବା ତ, ଏତେ ଅସ୍ଥିର କାହିଁକି ?'' ରାଧାରମଣ ଉତ୍ତର ଦେଲେ, ସ୍ଥିରମତି, ଧୀର ଚିତ୍ତରେ ।

ଜଗିଆ କହିଲା, ''ଆଜ୍ଞା, ଆପଣଙ୍କ ବୁଦ୍ଧିକୁ·ମାନିବାକୁ ପଡ଼ିବ । ନ ହେଲେ ଶେଷ ମୁହୂର୍ତ୍ତରେ କ'ଣ ଏମିତି ସବୁ ଓଲଟ ପାଲଟ ହୋଇପାରିଥା'ନ୍ତା ?''

ଭଗିଆ କହିଲା, ''ମାଙ୍କଡ଼ିଆ ଟୋକା ଦଶ ହଜାର ଟଙ୍କା ଦେଖି ପ୍ରଥମେ ହଡ଼ବଡ଼େଇ ଗଲା । ଶଳା ଜଙ୍ଗଲିଆ ଛାତିର ତାକତ କେତେ ? ତା'ପରେ ତ

ତା’ ପାଟିରୁ ଲାଳ ଥପଥପ ହୋଇ ଗଡ଼ିଲା । ତେବେ ଯାଇ ସେ ଆମ କଥାରେ ରାଜି ହେଲା ଓ ଗାଁ ଗାଁ ବୁଲି ଖେଳ ଆରମ୍ଭ କରିଦେଲା ।’’

ଜଗିଆ ପୁଣି କହିଲା, ‘‘ସବୁ ଗାଁରେ ମୁଁ ନୂଆ ନୂଆ ଟୋକା ସେଟ୍ କରି ଦେଇଥିଲି । ସେମାନେ ପଚାରିଲେ, ମାଙ୍କଡ଼-ଦିଆଣି, ଏଥର ଭୋଅଟରେ ଗଛ ଜିତିବ ନା ମାଛ ? ଗଛ ଜିତିବ ନା ମାଛ ? ମାଛ ଶବ୍ଦ ଆମ ଟୋକାଙ୍କ ମୁହଁରୁ ଖସିଥିବ କି ନାହିଁ, ମାଙ୍କିଡ଼ିଆ ସବୁ ଦଉଡ଼ିକି ଦବ ଯେ ଟାଣି, ମାଙ୍କଡ଼-ଦିଆଣି ହଁ ମୁଦ୍ରାରେ ମୁଣ୍ଡ ଟୁଙ୍ଗାରିବେ । ଏମିତିକା ଶୋ’ ଚାରି ଛଟା ଗାଁରେ ହୋଇଗଲାପରେ, ମାଛ ମାଛ ବୋଲି ଚାରିଆଡ଼େ ତ ଖାଲି ହୁରି ପଡ଼ିଲା ।’’

‘‘ତା’ପରେ ସବୁ ଗଛ ସାଫ୍’’, ଫେଁ କରି ହସିଦେଇ କଥା ଯୋଡ଼ିଲା ଭଗିଆ ।

ଜଗିଆ ତହୁଁ କହିଲା, ‘‘ସାର୍, ସେ ମାଙ୍କିଡ଼ିଆଟାକୁ ଆଉ ହଜାରେ ଦବାକୁ ପଡ଼ିବ । ଭାରି କାକୁତି ମିନତି କରୁଥିଲା ।’’

‘‘ଚୁପ୍’’, ଏ ପର୍ଯ୍ୟନ୍ତ ନିରବରେ ସବୁ ଶୁଣୁଥିବା ରାଧାରମଣ ଗର୍ଜିଉଠିଲେ । ‘‘ତମ ଦି’ଟାଙ୍କ ମୁଣ୍ଡରେ...’’ କହୁ କହୁ ସେ ଅଟକିଗଲେ । ଦୁହିଁଙ୍କୁ ପୁଣି ଖୁବ୍ ପାଖକୁ ଡାକିଲେ ଓ ଧୀରେ ଧୀରେ କହିଲେ, ‘‘ଥାନାରେ ତୁରନ୍ତ ଏଫ୍.ଆଇ.ଆର୍. ଦେଇ, ହାଜତକୁ ପଠେଇଦିଅ ସେ ମାଙ୍କିଡ଼ିଆ ଟୋକାକୁ ।’’

ଜଗିଆ, ଭଗିଆ ନିଜ ନିଜର କାନକୁ ବିଶ୍ୱାସ କରିବାପାଇଁ ସାହସ ଖୋଜି ପାଉ ନ ଥିଲେ ।

ରାଧାରମଣ କିନ୍ତୁ କହିଚାଲିଥିଲେ, ‘‘ନିରୀହ ଜୀବ ପ୍ରତି ନିଷ୍ଠୁରତା କ’ଣ କମ୍ ବଡ଼ ଅପରାଧ ? କ୍ରୁଏଲ୍‌ଟି ଅନ୍ ଆନିମଲ୍ସ ଇଜ୍ ଏ କଗ୍ନିଜିବ୍ଲ ଅଫେନ୍ସ ।’’



# ଅପେକ୍ଷାରେ ବନ୍ଦନା ବରାଳ

ବନ୍ଦନା ବରାଳ । ବୟସ ଛବିଶ ବର୍ଷ । ଉଚ୍ଚତା ପାଞ୍ଚ ଫୁଟ ସାଢ଼େ ପାଞ୍ଚ ଇଞ୍ଚ । ଦେହର ରଙ୍ଗ ଚମ୍ପା ଗୋରା । ଆୟତ ଆଖି । କଳା ଘୁମର କେଶ । ଗୋଲ ମୁହଁ । ବାଁ ଗାଲରେ ଗୋଟେ ବ୍ରଣଚିହ୍ନ । ଡାହାଣ କଳର ଗୋଟେ ଦାନ୍ତ ବେଢେଙ୍ଗା । ସେ ହସିଲେ ଭଉଁରି ଖେଳିଯାଏ ଦୁଇ ଗାଲରେ ।

ବନ୍ଦନା ବରାଳ କେତେବେଳେ ଶାଢ଼ି ପିନ୍ଧେ ତ କେତେବେଳେ ପିନ୍ଧେ ସାଲଓ୍ୱାର, ପଞ୍ଜାବି । ତା' ନିଖୁଣ ପାଦ ଦିଓଟିକୁ ହାଇହିଲ୍ ଜୋତା ଭଲ ମାନେ । ଈଷତ୍ ଗୋଲାପି ଲିପ୍‌ଷ୍ଟିକ୍‌ରେ ସେ ମନେହୁଏ ବିମ୍ବାଧରୀ । ପୁଣି ତା' କଥା ଭାରି ମିଠା ; ଲାଗେ ଖୁବ୍ ଆତ୍ମୀୟ ।

ସକାଳ ସାତରୁ ଅପରାହ୍ଣ ତିନିଟା ପର୍ଯ୍ୟନ୍ତ ଗୋଟେ ସସୁଜ୍ଜିତ କାଚ କ୍ୟାବିନ୍ ଭିତରେ ସେ ଠିଆ ହୋଇଥାଏ । ଦୂରରୁ ମନେହୁଏ ଶାଢ଼ି ଶୋ'ରୁମ୍‌ର ପ୍ଲାଷ୍ଟିକ୍ କଣ୍ଢେଇ ପରି ।

'ନିତ୍ୟମ୍ ଗ୍ରୁପ୍ ଅଫ୍ କମ୍ପାନିଜ୍'ର ଭୁବନେଶ୍ୱର ଶାଖା କାର୍ଯ୍ୟାଳୟରେ ରିସେପ୍‌ସନିଷ୍ଟ ଭାବରେ କାମକରେ ବନ୍ଦନା ବରାଳ ।

ଏମିତି ସୁନ୍ଦରୀ ଝିଅଟେ ପ୍ରେମ କରିପାରେ ନାହିଁ କାହିଁକି ?

କର୍ମଜୀବୀ ମହିଳା ହଷ୍ଟେଲ୍‌ର ଝର୍କା ପାଖରେ ବସି ଅନେକ ସମୟରେ ଆନମନା ହୋଇପଡ଼େ ବନ୍ଦନା ବରାଳ; ଗୋଟେ ଶୀତ ସନ୍ଧ୍ୟାରେ ମଳୟ ମହାନ୍ତିଙ୍କ ପାଖରେ ବସି ସେ ସୁପ୍ ପିଉଥିବ ମ୍ୟାରିଅନ୍ ରେସ୍ତୋରାଁର ଛୋଟ କ୍ୟାବିନ୍ ଭିତରେ । ଅନ୍ୟମନସ୍କ ମଳୟଙ୍କ ସାର୍ଟରେ ହଠାତ୍ ଢାଳିହୋଇପଡ଼ିବ ଗରମ ସୁପ୍‌ରୁ ଟୋପେ ଦୁଇଟୋପା । ବନ୍ଦନା ନଇଁପଡ଼ି ନିଜ ରୁମାଲରେ ସୁପ୍ ଦାଗ ପୋଛି ଦେଉଥିଲାବେଳେ ତା' ଗହଳ କେଶର ମୃଦୁ ପରଫ୍ୟୁମ୍‌କୁ ମଳୟ ଆଘ୍ରାଣ କରୁଥିବେ ଆବିଷ୍ଟ ଭାବରେ । ନ ହେଲେ ମଳୟଙ୍କ ସ୍ପ୍ଲେଣ୍ଡର ପ୍ଲସ୍ ପଛରେ ବସି ସେ କେଉଁ ଗୋଟେ ଜାଗାକୁ ବୁଲି ବାହାରିଥିବ ଯେ ହଠାତ୍ ଆକାଶର ସବୁ ବର୍ଷା ଅଜାଡ଼ି ହୋଇପଡ଼ିବ ତୃଷିତ ମାଟି ଉପରେ । ସେ ମଳୟଙ୍କ ସହ ସେହି ବର୍ଷାରେ ଭିଜି ଆକ୍ତାମାକ୍ତା ହୋଇପଡୁଥିବ । ଅଥଚ ଅଦିନିଆ ବର୍ଷାର ଆର୍ଦ୍ରତା ଭିତରେ କେତେ ଯେ ଉଷ୍ମତା ! ବନ୍ଦନା ବିହ୍ୱଳିତ ହେଉଥିବ ମନେ ମନେ । ତା' ସାରା ଦେହ

ଫୁଲଭର୍ତ୍ତି ଗୋଟେ କଦମ୍ବ ଗଛରେ ରୂପାନ୍ତରିତ ହୋଇଯାଉଥିବ । ଅଥବା ନିଶ୍ଚଳ ସମୁଦ୍ରବେଳାରେ ଲହଡ଼ି ଭାଙ୍ଗୁଥିବାବେଳେ ଅସତର୍କତାବଶତଃ ବନ୍ଦନା ଠେଲିହୋଇ ଯାଇଥିବ ସମୁଦ୍ର ଭିତରକୁ । ମଳୟ ଅତର୍କ୍କା ତରଙ୍ଗର ବାହୁବନ୍ଧନ ଭିତରୁ ମୁକୁଳେଇ ଆଣୁଥିବେ ତାକୁ ନିଜ ବାହୁବେଷ୍ଟନୀକୁ ।

ଏମିତି କିଛି କିନ୍ତୁ ଘଟେ ନାହିଁ । ବନ୍ଦନା ବରାଳର ସବୁ ସ୍ୱପ୍ନ ସ୍ୱପ୍ନରେ ରହିଯାଏ । 'ନିତ୍ୟମ୍'ର ମାର୍କେଟିଂ ମ୍ୟାନେଜର ମଳୟ ମହାନ୍ତି ଦଲକାଏ ଚୋରା ମଳୟ ପରି ଛୁଇଁଯାଆନ୍ତି ସିନା ଧରାଦିଅନ୍ତି ନାହିଁ । ପୁରୁଷମାନେ ହିଁ ତ ଏମିତି । ପ୍ରଜାପତି ବା ଉଡ଼ନ୍ତା ଚଢ଼େଇ ପରି ।

ବନ୍ଦନା ବରାଳ କେତେଥର ଭାବିଥିବ ସେ ମଳୟଙ୍କ ଚ୍ୟାମ୍ବରକୁ ଯିବ । ତାଙ୍କ ସହ ଗପସପ କରିବ । ତାଙ୍କର ମାପଚୁପ କଥାବାର୍ତ୍ତା ଅଭ୍ୟାସକୁ ବଦଳେଇଦେବ । ନିଭୃତରେ ଚା' ପିଇବ ତାଙ୍କ ସାଙ୍ଗରେ । କେଉଁଆଡ଼େ ଗୋଟେ ଆଉଟିଂରେ ଯିବାପାଇଁ ପ୍ରସ୍ତାବ ଦେବ । ଏମିତି ନିକଟତା ବଢ଼ିଲେ ତ ଆକର୍ଷଣ ବଢ଼ିବ ! କିନ୍ତୁ ବନ୍ଦନା କେବେ ବି ଯାଇପାରିନି ମଳୟଙ୍କ ଚ୍ୟାମ୍ବରକୁ । କେତେବେଳେ କେମିତି ଦେଖା ହୋଇଗଲେ, ସେ ଏମିତି ଲାଜେଇଯାଏ ଯେ କଥାପଦେ କହିପାରେନି ତାଙ୍କୁ ।

ପ୍ରେମ ବ୍ୟାପାରରେ ମୂଳରୁ ଏମିତି ଭାରି ଅସହଜ ବନ୍ଦନା ବରାଳ ।

କାହାକୁ ପ୍ରେମ କରିବା ଯେମିତି ଖୁବ୍ ଗୋଟେ ପାପକଥା, ଏମିତି ଧାରଣାଟେ ବନ୍ଦନାର କିଶୋରୀ ମନରେ କିଏ ଯେମିତି ରୋପି ଦେଇଥିଲା ! ସେହି ନୂଆ ବୟସରେ ବି ସେ ନିଜକୁ ବେଶ୍ ସଂଯତ କରି ରଖିଥିଲା । ରେଳ ଷ୍ଟେସନଠାରୁ ପାଖାପାଖି ଶହେ କିଲୋମିଟର ଦୂର ଏକ ନିପଟ ମଫସଲ ଗାଁର ଗୋଟେ ଘରୋଇ ହାଇସ୍କୁଲରେ ଅଙ୍କ ଶିକ୍ଷକ ଥିଲେ ତା' ବାପା । ସେ ଅଞ୍ଚଳର ପିଲାମାନେ ତାଙ୍କୁ ଅବଶ୍ୟ ଭାରି ଖାତିର୍ କରୁଥିଲେ । ଅଭିଭାବକମାନେ ବି । ନୀତିନିଷ୍ଠ ଶିକ୍ଷକ ଭାବରେ ପାଞ୍ଚ ଆଠଖଣ୍ଡ ମୌଜାରେ ବେଶ୍ ପରିଚିତ ଥିଲେ ବିଦ୍ୟାବାରିଧି ବରାଳ । କିନ୍ତୁ ବନ୍ଦନା ଭାବେ, ତା' ବାପାଙ୍କ ପରି ଭୀରୁ ଲୋକ କୋଟିକରେ ଗୋଟିଏ ବୋଧେ ନ ଥିବେ । ଗୋଟେ ରକ୍ଷଣଶୀଳ ଦୁର୍ଗର ସେ ହୁଏତ ଶେଷ ଦ୍ୱାରପାଳ । ତେଣୁ ବନ୍ଦନାର ବଡ଼ ଚାରି ଭଉଣୀ ଓ ଏକମାତ୍ର ସାନଭାଇ– କେହି ବି ବାପାଙ୍କ ବିଶ୍ୱାସର ବଳୟକୁ ଡେଇଁବାପାଇଁ ଭରସି ନ ଥିଲେ ।

ବନ୍ଦନା କଲେଜରେ ଫାଷ୍ଟ ଇୟର୍ ପଢ଼ିଲାବେଳେ, ସେକେଣ୍ଡ ଇୟର୍‌ରେ ପଢୁଥିବା ଗୋଟେ ପିଲା ତାକୁ ଖୁବ୍ ଭଲ ପାଉଥିଲା । ସବୁବେଳେ ସେ ଉପରେ ପଡ଼ି ବନ୍ଦନା ସାଙ୍ଗରେ କଥା ହେଉଥିଲା । ପାଠପଢ଼ାଠାରୁ ଘରକଥା ପୁଣି ସିନେ-ତାରକାମାନଙ୍କଠାରୁ କ୍ରିକେଟ୍ ରନ୍‌ରେଟ୍ ପର୍ଯ୍ୟନ୍ତ କୌଣସି ବିଷୟ ବାଦ୍

ପଡୁ ନ ଥିଲା ତା'ଆଲୋଚନାରୁ । ପୁଅମାନେ ଯେ ଏମିତି ପ୍ରଗଳ୍‌ଭ ହୋଇପାରନ୍ତି, ପ୍ରଥମ କରି ଜାଣୁଥିଲା ବନ୍ଦନା । ଆବଶ୍ୟକତା ନ ଥାଇ ଏତେ ଗପିବାର କାରଣ କ'ଣ ? ବନ୍ଦନା ତାକୁ ବହୁ ଚେଷ୍ଟା କରି ବି ଆଭଏଡ୍ କରିପାରୁ ନ ଥିଲା । ଏକଦା ସେ କୁଆଡ଼େ ତା' ବାପାଙ୍କର ଛାତ୍ର ଥିଲା । ମ୍ୟାଟ୍ରିକ୍‌ରେ ଦୁଇ ତିନିଥର ଫେଲ୍ ହେଲାପରେ ଦୈବାତ୍ ପାସ୍‌ଟାଏ ହାସଲକରି ଭର୍ତ୍ତି ହୋଇଥିଲା କଲେଜରେ । କିନ୍ତୁ ଦେଖିବାକୁ ସୁନ୍ଦର, ସ୍ମାର୍ଟ୍ ବି ।

ଏହି ଏକତରଫା ପ୍ରେମର ଗୋଟେ ନାଟକୀୟ ଅବସାନ ଘଟିଥିଲା କିଛିଦିନପରେ । ତା'ଠାରୁ ଚିଠିଟିଏ ପାଇଥିଲା ବନ୍ଦନା । ହଷ୍ଟେଲ ଠିକଣାରେ । ଚିଠିଟିରେ ଶସ୍ତା ଉପନ୍ୟାସର ଭାଷା ଚୋରି କରାଯାଇ ଅନେକ କଥା ଲେଖାଯାଇଥିଲା । ଚିଠିଟି ସେତେବେଳେ ବନ୍ଦନା ମନରେ ଯେ କିଛି ଭାବପ୍ରବଣତା ସୃଷ୍ଟି କରି ନ ଥିଲା, ତା' ନୁହେଁ । ହେଲେ ବାପାଙ୍କର ମୁହଁ ମନେପଡ଼ିଲାକ୍ଷଣି ବନ୍ଦନାର ଉତ୍ତୁରାପଣରେ ଭଙ୍ଗା ପଡ଼ିଯାଇଥିଲା । ଦିନେ ମୁହେଁମୁହେଁ ଶୁଣେଇଦେଲା ବନ୍ଦନା ସେ ପିଲାକୁ, ''ତୁମେ ଭୁଲ୍ ଠିକଣାରେ ଚିଠି ଲେଖୁଛ । ଆଉ ଥରେ ଯେମିତି ସାହସ ନ କର ଚିଠି ଲେଖିବାକୁ ।'' ପିଲାଟି ସେଦିନ କଳାକାଠ ପଡ଼ିଯାଇଥିଲା ହଠାତ୍ । ବୋଧେ ଗୋଟେ ଆକସ୍ମିକ ଭୂମିକମ୍ପରେ ତା'ର ଅଭ୍ୟନ୍ତର ଫାଟିପଡୁଥିଲା ।

ବନ୍ଦନାର ମନ ବି ସେଦିନ ଝାଉଁଳି ପଡ଼ିଥିଲା । ତାକୁ ବଡ଼ ଗୁମ୍‌ସୁମ୍ ଲାଗିଲା ଦିନେ ଦି'ଦିନ । ଭଲ ଲାଗିଲା ନାହିଁ କିଛି ।

ସେହି ପିଲାଟି ଏବେ ବେଶ୍ ପ୍ରଭାବଶାଳୀ ଯୁବନେତା । ଜିଲ୍ଲା ପରିଷଦର ପ୍ରେସିଡେଣ୍ଟ । ଟି.ଭି. ପର୍ଦ୍ଦାରେ ତାକୁ କେତେଥର ଦେଖିଲାଣି ବନ୍ଦନା । ସେ କୁଆଡ଼େ ଭବିଷ୍ୟତର ବିଧାୟକ ପ୍ରାର୍ଥୀ ।

ସେଦିନ ଏମିତି ରୋକ୍‌ଠୋକ୍ ଜବାବ ଦେଇ ନ ଥିଲେ କ'ଣ ଚଳି ନ ଥାନ୍ତା ? ବନ୍ଦନା ଏବେ ବେଳେବେଳେ ନିଜକୁ ପଚାରେ । ପରମୁହୂର୍ତ୍ତରେ ପୁଣି ସେସବୁକୁ ଭୁଲିଯିବାପାଇଁ ଚେଷ୍ଟା କରେ । ହେଲେ ଅତୀତ ଉଖୁରଉଥାଏ ତା' ମନଗହନର କ୍ଷତକୁ ନିରନ୍ତର ।

ମଳୟମନସ୍କ ହେଲେ ବନ୍ଦନା ବରାଳ ମନର କ୍ଷତଚିହ୍ନ ଲିଭି ଲିଭି ଆସେ । କିନ୍ତୁ କେମିତି ସେ ତାଙ୍କର ନିକଟତର ହେବ ? ଲେଖିବ କି ଚିଠି ଖଣ୍ଡେ ? ନା ତାଙ୍କ ଚ୍ୟାମ୍ବରକୁ ଯାଇ କହିବ ଖୁବ୍ ଧୀରେ, ''ଆଇ ଲଭ୍ ୟୁ ମଳୟ ।'' ଧେତ୍, ଏମିତି ସେ କହିପାରିବ ନାହିଁ । କେମିତି କହିବ ଯେ ? ଯେତେ ଚେଷ୍ଟା କଲେ ବି ତା' ଜିଭ ଲେଉଟିବ କି ଏମିତି କଥା ପଦେ କହିବାପାଇଁ ? ହୁଏତ କୁହାଯାଇପାରେ ଫୋନ୍‌ରେ, ଯେଉଁଠି ସାମ୍ନାସାମ୍ନି ହେବାର ଦୁର୍ଯୋଗ ନ ଥିବ । ତା'ଛଡ଼ା ତାଙ୍କ ମନ

ଭିତରେ କ'ଣ ଅଛି, କିଏ ଜାଣେ ? ଏମିତିରେ ତ ସିଏ ଭାରି ଚୁପ୍‌ଚାପ ମଣିଷ । ଆଧୁନିକ କବିତା ପରି ଦୁର୍ବୋଧ । ବେଳେବେଳେ ଲାଗନ୍ତି ଭାରି ରହସ୍ୟମୟ, ଅସ୍ପଷ୍ଟ ଜହ୍ନରାତି ପରି । ତା'ଛଡ଼ା ଉଚ୍ଚବର୍ଗର କେତେ ଝିଅ ହୁଏତ ତାଙ୍କ ପଛରେ ଲାଇନ୍ ଲଗେଇଥିବେ । ଅନେକ କନ୍ୟାପିତା ବି କ୍ୟୁ'ରେ ଥିବେ । ଖୁବ୍‌ଶୀଘ୍ର କୁଆଡ଼େ ମଳୟ ନ୍ୟୁୟର୍କ ଯାଉଛନ୍ତି । ଅବଶ୍ୟ ବର୍ଷକପାଇଁ ।

ମଳୟ ମହାନ୍ତିଠାରୁ କେଉଁ ଗୁଣରେ କମ୍ ଥିଲେ କି ଶ୍ରୀକାନ୍ତ ସାର୍ । ସେତେବେଳେ ବନ୍ଦନା ବରାଳ ଅନର୍ସର ଛାତ୍ରୀ । ସାଇକୋଲୋଜି ଅନର୍ସ ରଖିଥିଲା ସେ । ଠିକ୍ ଖରାଛୁଟି ପରେ ଯେତେବେଳେ ଆ`ମିସନ୍ ସରିଆସିଥିଲା, ଅଧ୍ୟାପକମାନଙ୍କର ବଦଳି ପର୍ବ ସରି ନ ଥିଲା ଆହୁରି । ସେଥର ନୂଆକରି ସାଇକୋଲୋଜି ଅଧ୍ୟାପକ ଭାବରେ ଯୋଗ ଦେଇଥିଲେ ଶ୍ରୀକାନ୍ତ ଦାସ । ବାଣୀବିହାରରୁ ପି.ଜି. ପାସ୍ କରିଥା'ନ୍ତି ବର୍ଷକ ଆଗରୁ । ତାଙ୍କ ବ୍ୟାଚ୍‌ରେ ସେ ଥିଲେ ଫାଷ୍ଟକ୍ଲାସ୍ ଫାଷ୍ଟ । ବର୍ଷକ ଭିତରେ ତାଙ୍କୁ ଆଡ୍‌ହକ୍ ପୋଷ୍ଟିଂ ମିଳିଥିଲା । ବୟସ ତାଙ୍କର ଖୁବ୍ କମ୍ ଥିଲା କି ନା, ସେଥିପାଇଁ ସେ ଅଧ୍ୟାପକ ପରି ଆଦୌ ଜଣାପଡୁ ନ ଥିଲେ । କିନ୍ତୁ ତାଙ୍କ ଅଧ୍ୟାପନାର ଶୈଳୀ ଥିଲା ନିଆରା । ଛାତ୍ରଛାତ୍ରୀମାନେ ମନ୍ତ୍ରମୁଗ୍ଧ ହୋଇପଡୁଥିଲେ ତାଙ୍କ କ୍ଲାସ୍‌ରେ ।

ଶ୍ରୀକାନ୍ତ ସାର୍‌ଙ୍କ ପ୍ରଥମ କ୍ଲାସ୍ କଥା ଏଯାଏ ଭୁଲି ନାହିଁ ବନ୍ଦନା । ସାଇକୋଲୋଜିର ବ୍ୟାପ୍ତି ଓ ପରିସର ବିଷୟରେ ସୁନ୍ଦର ଅଭିଭାଷଣ ସେ ରଖିଥିଲେ ସେଦିନ । ମନସ୍ତତ୍ତ୍ୱର ଗୂଢ଼କଥା ସୁନ୍ଦର ଗପ ମାଧ୍ୟମରେ ପ୍ରାଞ୍ଜଳ ଭାବରେ ସେ ବୁଝେଇ ଚାଲିଥିଲେ ଯେ କ୍ଲାସ କେତେବେଳେ ସରିଗଲା, ଜଣାପଡ଼ି ନ ଥିଲା ଜମା । କିନ୍ତୁ ବନ୍ଦନା ଆଶ୍ଚର୍ଯ୍ୟ ହୋଇଥିଲା, ପରବର୍ତ୍ତୀ କ୍ଲାସରେ ସେ ତା' ନାଁ ଧରି ଡାକିଲେ ଯେତେବେଳେ । ବନ୍ଦନା ଭାରି ଖୁସି ହୋଇଥିଲା ମନେମନେ । ହେଲେ ସହପାଠିନୀମାନଙ୍କର ମୃଦୁ ପରିହାସ ତାକୁ ଆଶଙ୍କା କୁତୁକୁତୁ କରିଥିଲା । ଯୁବ ଅଧ୍ୟାପକ ଯେ ପ୍ରଥମ ସାକ୍ଷାତରେ ତାକୁ ପ୍ରେମ କରିସାରିଛନ୍ତି, ଏକଥା ସେ ବୁଝି ବି ବୁଝିପାରି ନ ଥିଲା ।

ବନ୍ଦନା ବରାଳର ଆଶଙ୍କା କିନ୍ତୁ ଅମୂଳକ ନ ଥିଲା । ଶ୍ରୀକାନ୍ତ ସାର୍ ସତରେ ତାକୁ ଭଲପାଇ ବସିଥିଲେ । ମାସକ ଭିତରେ ଗୋଟେ ନିରବ ଝଡ଼ ବହିବା ଆରମ୍ଭ କରିଥିଲା ସାରା କ୍ୟାମ୍ପସ୍‌ରେ । ଜଣେ ଅଧ୍ୟାପକ ଛାତ୍ରୀକୁ ପ୍ରେମକରିବାର ଦୃଷ୍ଟାନ୍ତ ସେ କଲେଜର ନିକଟ ଇତିହାସରେ କୁଆଡ଼େ ନ ଥିଲା । ନିରବ ଝଡ଼ ବେଳେବେଳେ କୁତ୍ସିତ ରୂପ ଧାରଣ କରୁଥିଲା । ବ୍ଲାକବୋର୍ଡ୍‌ରେ ଅଶାଳୀନ ଶବ୍ଦସବୁ ମଝିରେ ମଝିରେ ଆତ୍ମପ୍ରକାଶ କରୁଥିଲେ ।

ସେତେବେଳେ ଲୁଚିଲୁଚି କାନ୍ଦୁଥିଲା ବନ୍ଦନା ବରାଳ ।

ଏସବୁ କଥା କେମିତି ତା' ବାପାଙ୍କ କାନରେ ବାଜିଲା । ପବନ ନା ମେଘମାଳା, କିଏ ସାଜିଥିଲା ବାର୍ତ୍ତାବହ କେଜାଣି !

ବାପା ସେତେବେଳେ କାମ ଚପଟରେ ଭାରି ଘାଣ୍ଟି ହେଉଥିଲେ । ସ୍କୁଲରେ ପାଠ ପଢ଼େଇବା ସାଙ୍ଗକୁ ସକାଳସଞ୍ଜେ ଦି'ଓଳି ଡଜନେ ଲେଖାଏଁ ପିଲାଙ୍କୁ ଟିଉସନ୍ କରୁଥିଲେ । ନନୀଦେଇ ବାହାଘର ତ ସରିଥିଲା ଆଗରୁ । ହେଲେ ଗୁନିଦେଇ ବାହାଘରପାଇଁ ତାଙ୍କୁ ଦୌଡ଼ାଦୌଡ଼ି କରିବାକୁ ପଡୁଥିଲା । କେତେବେଳେ ମଧ୍ୟସ୍ଥ ପାଖକୁ ଦୌଡୁଥିଲେ ତ କେତେବେଳେ ଜ୍ୟୋତିଷ ପାଖକୁ । ଯେଉଁଦିନ ବରପକ୍ଷ ଲୋକମାନଙ୍କର ଆସିବାର ଥାଏ, ସେଦିନ ଏକୁଟିଆ ମଣିଷ ବାପା ରୁନ୍ଧି ହୋଇ ଯାଉଥିଲେ ନିଜ ଭିତରେ । ଏହିପରି ଗୋଟେ ସମୟରେ ତାଙ୍କ ସବା ସାନଝିଅର ପ୍ରେମକାହାଣୀ ତାଙ୍କ କାନରେ ବାଜିଲାକ୍ଷଣି ସେ ନିଆଁବାଣ ପାଲଟିଯିବାରେ କିଛି ଅସ୍ୱାଭାବିକତା ନ ଥିଲା ହୁଏତ !

ତା'ପରଠୁଁ ବନ୍ଦନା ବରାଳ ଶ୍ରୀକାନ୍ତ ସାର୍‌ଙ୍କ ଛାଇ ମାଡ଼ି ନ ଥିଲା । ଅନର୍ସ କ୍ଲାସକୁ ଯାଇ ନ ଥିଲା ବେଶ୍ କିଛିଦିନ । କ'ଣ କରିବ ବୋଲି ଭାବୁ ଭାବୁ ସେ ଜାଣିବାକୁ ପାଇଲା ଯେ ଇତିହାସ ଅନର୍ସରେ ସିଟ୍ ଗୋଟେ ଯୋଡ଼େ ଖାଲିପଡ଼ିଛି । ଅଧ୍ୟକ୍ଷଙ୍କୁ ସେ ଆବେଦନ କଲା ଅନର୍ସ ବଦଳାଇବାପାଇଁ । ତା'ପରେ ହଠାତ୍ ଦିନେ ସେ ଅଧ୍ୟକ୍ଷଙ୍କ ଅନୁମତିପତ୍ର ପାଇଲା ଓ ଇତିହାସ ଅନର୍ସ କ୍ଲାସ୍‌ରେ ଯାଇ ବସିଲା । ସେହିଦିନଠାରୁ ମନତଳର ବେଗ ଓ ଆବେଗ ଜାଣିବାର ଇଚ୍ଛା ତା'ର ମଉଳିଗଲା ଏବଂ ସେ ବାବର ଓ ଆକବରଙ୍କ ବଂଶାବଳୀ ଘୋଷିବାରେ ଲାଗିଲା ।

ଶ୍ରୀକାନ୍ତ ସାର୍ ବି ଆଉ ବେଶିଦିନ କଲେଜରେ ରହି ନ ଥିଲେ । ସେ କ'ଣ ନାବାର୍ଡ଼ରେ ଗୋଟେ ବଡ଼ ଚାକିରି ପାଇଗଲେ । ସିଧା ଗଲେ ବମ୍ବେ ।

ଶ୍ରୀକାନ୍ତ ସାର୍ ଏବେ କେଉଁଠି ? ବମ୍ବେରେ ନା ଦିଲ୍ଲୀରେ ? ନା ଆଉ କେଉଁଠି ? ଓଡ଼ିଶାରେ ନାହାନ୍ତି କଦାପି । ଥିଲେ ତ ଏଇଠି କେଉଁଠି ଥା'ନ୍ତେ ଭୁବନେଶ୍ୱରରେ । ଦେଖାସାକ୍ଷାତ ନ ହେଲେ ବି ଖବର ମିଳନ୍ତା ତ !

କର୍ମଜୀବୀ ମହିଳା ହଷ୍ଟେଲ୍‌ର ଅଣଓସାରିଆ ରୁମ୍ ଆଉ ଭଲ ଲାଗୁ ନ ଥିଲା ବନ୍ଦନାକୁ । ଅଫିସ୍‌ରୁ ଫେରିଲାପରେ ଅବଶିଷ୍ଟ ସମୟ ଯେମିତି ସ୍ଥିର ହୋଇଯାଉଥିଲା ତା'ରି ପାଖରେ । ମୁହୂର୍ତ୍ତଟିଏ ଲାଗୁଥିଲା ଯୁଗଟିଏ ପରି । ବେଜାଏ ଅସଂଲଗ୍ନ ଚିନ୍ତା ଲହଡ଼ି ଭାଙ୍ଗୁଥିଲା ତା' ମନ ଭିତରେ । ମଳୟ ମହାନ୍ତି ଅଧିକାଂଶ ସମୟରେ ଘୋଟି ରହୁଥିଲେ ତା'ଚେତନାକୁ, ଓହଳା ମେଘର ଆକାଶ ପରି ।

ସେ କେଉଁଠି ରହେ ବୋଲି ୟା'ଭିତରେ ଥରେ ମଳୟ ପଚାରିଥିଲେ ବନ୍ଦନାକୁ । କ'ଣ ପାଇଁ ଏମିତି ପଚାରିଥିଲେ ଯେ ? ବନ୍ଦନା ଗୋଟେ ମିଠା ଆଶଙ୍କାରେ ଭିଜି ଯାଇଥିଲା ସେଦିନ । ସାରାରାତି ତା' ଆଖିରେ ନିଦ ନ ଥିଲା । ସେହି ରାତିର କେଉଁ ଅଜଣା ତିଥିର ଜହ୍ନ ଏଡ଼େ ଆକର୍ଷଣୀୟ ମନେ ହେଉଥିଲା କାହିଁକି ତାକୁ ? କାହିଁକି ବାରମ୍ବାର ତା' କବାଟରେ ମୃଦୁ ଆଘାତ ହବା ସେ ଅନୁଭବ କରୁଥିଲା ? କାହିଁକି ଛାୟାଚ୍ଛନ୍ନ ଦିଗ୍‌ବଳୟ ସେତେବେଳେ ଲାଗୁଥିଲା ଏତେ ସ୍ୱପ୍ନମୟ ?

ସକାଳକୁ ଗାଢ଼ କଜ୍ଜଳର ପ୍ରଲେପରେ ସେ ଲୁଚେଇଥିଲା ତା' ଆଖି ତଳର କଳାଦାଗସବୁକୁ । ଅଧିକ ସମୟ ନେଇଥିଲା ପ୍ରସାଧନ ଓ ମେକ୍‌ଅପ୍‌ପାଇଁ । ମଳୟଙ୍କର କିନ୍ତୁ ଦେଖା ମିଳିଲା ନାହିଁ ସେଦିନ ବା ତା' ପରଦିନ । ସେ ଟୁର୍‌ରେ ଯାଇଥିଲେ କେଉଁ ଦୂର ସହରକୁ ।

ବାପାଙ୍କର ପେଯୁଆ ଆଖି, ସାନଭାଇଟିର ଉଦାସ ମୁହଁ ବେଳେବେଳେ ଉଙ୍କି ମାରୁଥିଲା ବନ୍ଦନା ସ୍ମୃତିରେ । ଅବସର ନେଲାପରେ ବାପାଙ୍କ ଦମ୍ଭିଲା ଚେହେରାରେ କାକୁସ୍ଥପଣ ବାରି ହୋଇପଡୁଥିଲା । କେଉଁ ଝଡ଼ ଦୋହଲେଇ ଦେଇଥିଲା ଗୋଟେ ସ୍ୱର୍ଦ୍ଧିତ ବରଗଛର ମୂଳ ଓ ଚେର‌କୁ ? ଚାକିରି ସରିବା ପୂର୍ବରୁ ଗୋଟିଏ ବୋଲି ପୁଅ କୌଣସି କୂଳକିନାରାରେ ଲାଗି ନ ଥିବା ଦୁଃଖରେ ସେ ବୋଧେ ଆଉଟୁ ପାଉଟୁ ହେଉଥିଲେ । ଦୁଇ ବଢ଼ିଲା ଝିଅଙ୍କ ଭାର ବୋହିବାକୁ ତାଙ୍କ କାନ୍ଧରେ ହୁଏତ ଆଉ ବ୍ଳୁ'ନ ଥିଲା ।

ସାନଭାଇଟି ବି.ଏ. ଫେଲ୍ ହୋଇ ଘରେ ବସିଥିଲା । ତା' ଆଖିରୁ ସବୁତକ ସ୍ୱପ୍ନ କେଉଁଆଡ଼େ ଉଭାନ୍ ହୋଇଯାଇଥିଲେ ଯେମିତି ! ଆଉ ଅଣ୍ଟା ସଳଖିପାରୁ ନ ଥିଲା ବୋଉ । ସପ୍ତାହେ ଛୁଟିନେଇ ଗାଁକୁ ଯାଇଥିଲା ବନ୍ଦନା । ଦୁଇଦିନ ପରେ ଛାଟିପିଟି ହୋଇ ଫେରିଆସିଥିଲା ଭୁବନେଶ୍ୱର । ବାପା ଖାଲି ଅଯଥା ଚିଡ଼ିଚିଡ଼ି ହେଉଥିଲେ ବୋଉ ଉପରେ । ଯେମିତି ପାଞ୍ଚଟା ଝିଅ ଜନ୍ମ କରିବାର ପାପଟା ଏକା ତା'ରି ।

ମିନିଦେଇ ଅବଶ୍ୟ ତା' ସିଦ୍ଧାନ୍ତ ଶୁଣେଇ ସାରିଥିଲା ବାପା-ବୋଉଙ୍କୁ । ସେ ବାହାହବ ନାହିଁ । ପାଖ ଗାଁ ପ୍ରାଇମେରୀ ସ୍କୁଲରେ ସେ ଚାକିରି କରିଛି । ଘରୁ ଯିବାଆସିବା କରେ । ଅନିୟମିତ ହେଲେ ବି ଦରମା ପାଏ । ତା' ପଇସାରେ ଘର ଚଳୁଛି ଏବେ । ବାପାଙ୍କୁ ପେନ୍‌ସନ୍ ମିଳି ନାହିଁ ଏଯାଏ । ବନ୍ଦନା ମଝିରେ ମଝିରେ ଯେଉଁ ମନିଅର୍ଡ଼ର ପଠାଏ, ସେଥିରେ ଉଧାର ଶୁଝାହୁଏ ।

ବନ୍ଦନା ଗାଁରେ ଯାଇ ଶୁଣିଲା ଯେ ତା' ମାମୁଝିଅ ଭଉଣୀ ରାଧା କେଉଁ ଗୋଟେ ପିଲା ସାଙ୍ଗରେ ପଳେଇଯାଇ କୁଆଡ଼େ ବାହାହୋଇଛି ମନ୍ଦିରରେ । ଏ ଘଟଣା

ମାସେ ତଳୁ ଘଟିଥିଲେ ବି ଆଳାପ-ଆଲୋଚନାରୁ ଲିଭି ନ ଥିଲା କଥାଟା । ବୋଉ କହୁଥିଲା ବାପାଙ୍କୁ– " ବାପଭାଇଙ୍କ ମୁହଁ ତଳକୁ କରି କି ଲାଭ ପାଇଲା ରାଧା ? ଦୁଇକୁଳକୁ ଯେ ପୋଡ଼ି ଖାଇଲା । କଥାରେ କହିଛି ପରା, ଦୁହିତା– ଦୁଇକୁଳକୁ ହିତା, ନ ହେଲେ ଦୁଇକୁଳକୁ ପିତା ।" ବାପା କିନ୍ତୁ ବୋଉ କଥାକୁ ସମର୍ଥନ କରୁ ନ ଥିଲେ । କହିଲେ, "ରାଧା ଯାହା କରିଛି, କିଛି ଭୁଲ୍ କରି ନାହିଁ । ସାରା ଜୀବନ ଅଭିଆଡ଼ୀ ରହିବା ଅପେକ୍ଷା ଜାତିଅଜାତିରେ ପଳେଇଗଲେ କ୍ଷତି କ'ଣ ?" ବାପାଙ୍କର ଏ ଯୁକ୍ତି ଶୁଣି ସେଦିନ ଆଶ୍ଚର୍ଯ୍ୟ ହୋଇଥିଲା ବନ୍ଦନା ।

ବାପା ବୋଧେ ବନ୍ଦନାର ଉପସ୍ଥିତି ବିଷୟରେ ସଚେତନ ନ ଥିଲେ । କହୁ କହୁ କହିଦେଲେ ବୋଉକୁ–"ତମ ସାନଝିଅକୁ କହିଦିଅ, ସେ ରାଧାର ପଦାଙ୍କ ଅନୁସରଣ କରୁ । ଅନେକ ଝିଅ ଏମିତି ରାଜିଗୁଜା ହୋଇ ବାହା ହୋଇଯାଉଛନ୍ତି ଆଜିକାଲି । ମୁଁ କାହାକୁ ବାହାଦବା ଅବସ୍ଥାରେ ଆଉ ନାହିଁ । "

ବନ୍ଦନା ନିଜ କାନକୁ ବିଶ୍ୱାସ କରିପାରିଲା ନାହିଁ । ତାକୁ ଲାଗିଲା ପୃଥିବୀ ଯେମିତି ଓଲଟା ଘୂରୁଛି । ନ ହେଲେ ତା'ବାପା କ'ଣ ଏମିତି ବଦଳି ଯାଇପାରିଥା'ନ୍ତେ । ଏ ଯେଉଁ ବୁଢ଼ାଲୋକଟି, ସେ ସତରେ କ'ଣ ସେହି ନୀତିନିଷ୍ଠ ଶିକ୍ଷକ ବିଦ୍ୟାବାରିଧି ବରାଳ ? ଘରେ ଆଉ ମୁହୂର୍ତ୍ତେ ରହିପାରିଲା ନାହିଁ ବନ୍ଦନା ।

ସେହି ଦିନରୁ ବନ୍ଦନା ଗାଁ ଛାଡ଼ିଥିଲା ଯେ ଛାଡ଼ିଥିଲା, ଆଉ ଗାଁ ନାଁ ଧରୁ ନ ଥିଲା କେବେ । ସେ ଜାଣିଥିଲା, ତା' ଅସହାୟ ବାପା ତାକୁ ଦେଖିଲେ ଆହୁରି ଅସହାୟ ହୋଇପଡ଼ିବେ । ନିଜ ପାଇଁ ନିଜେ ଆଶ୍ରାଟିଏ ଖୋଜିବ ବୋଲି ସେ ଭାବିଲା ।

ତା'ପରଠାରୁ ମଳୟ ମହାନ୍ତି ପ୍ରତି ତା'ର ଏ ଦୁର୍ବଳତା ।

ଏବେ କୁଆଡ଼େ ଯାଇଛନ୍ତି ମଳୟ । ବାଙ୍ଗାଲୋର ନା ସୁରତ । କେଉଁଠି ରହୁଥିବେ ସେ ? କମ୍ପାନୀ ଗେଷ୍ଟ ହାଉସ୍‌ରେ ନା କେଉଁ ଷ୍ଟାର୍ ହୋଟେଲ୍‌ରେ ? କେହି ଗାର୍ଲଫ୍ରେଣ୍ଡ ଅଛନ୍ତି କି ତାଙ୍କର ? ସେ ରୋମାନ୍ସ କରୁଥିବେ କି କାହା ସାଙ୍ଗରେ ? କମ୍ପାନିର ଗୋଟେ ରିସେପ୍‌ସନିଷ୍ଟକୁ ସେ କ'ଣ ଭଲପାଇପାରିବେ ? ବାହାହେବେ କି ଗୋଟେ ରିଟାୟାର୍ଡ ମାଷ୍ଟରଙ୍କ ଝିଅକୁ ?

ସବିତା ସାହୁ ପରି କାଳୀ ଝିଅଟେ ପୁଣି କେମିତି ବାହା ହୋଇଗଲା ଗୋଟେ ହ୍ୟାଣ୍ଡସମ୍ ଏକ୍‌ଜିକ୍ୟୁଟିଭ୍ ପାହ୍ୟାର ଯୁବକ ରବି ରାଉତକୁ । ବନ୍ଦନାର ସହପାଠିନୀ ସବିତା ତ ହସିହସି କହିଥିବ କେତେଥର ଯେ ସେ ରବି ରାଉତକୁ ଏକପ୍ରକାର ଟ୍ରାପ୍ କରିଥିଲା । ରବି ରାଉତ ସାଙ୍ଗରେ କଦାପି ତୁଳନୀୟ ନୁହେଁ ସବିତା । ହେଲେ ସେ ରବି ରାଉତର ପିଛା ଛାଡ଼ି ନ ଥିଲା କେତେବର୍ଷ ଧରି । ଛାଇ ପରି ଆବୋରି ରହିଲା

ତାଙ୍କୁ ସବୁବେଳେ । ଅବଶ୍ୟ ସବିତାର ଧୂର୍ତ୍ତ କିରାଣି ବାପା ଏଥିରେ ସହଯୋଗ କରିଥିଲେ କୁଆଡ଼େ ।

ରବି ରାଉତକୁ ସବିତା ବାରମ୍ବାର ନିମନ୍ତ୍ରଣ କରୁଥିଲା ତାଙ୍କ ଘରକୁ । ତା' ବୋଉ ସ୍ୱାଦିଷ୍ଟ ଖାଦ୍ୟ ପ୍ରସ୍ତୁତ କରି ବହୁ ଆଦରରେ ଖୁଆଉଥିଲେ ଭାବୀ-ଜାମାତାଙ୍କୁ । ସବିତା ସହ ଅବାଧ ମିଳାମିଶାର ସୁଯୋଗ ବି ଦେଉଥିଲେ ପରୋକ୍ଷରେ ।

ରବି ରାଉତ ପ୍ରଥମେ ପ୍ରଥମେ କୁଆଡ଼େ ଆଦୌ ପସନ୍ଦ କରୁ ନ ଥିଲା ସବିତାକୁ । ହେଲେ ସବିତା କେଉଁ ଛାଡ଼ିବା ଝିଅ ? କି ମନ୍ତ୍ର ଫୁଙ୍କି ଭେଣ୍ଡାଟାକୁ ମେଣ୍ଢା କରିଦେଲା କେଜାଣି ? ଗଡ଼ ଜିଣିଲା ଶେଷରେ ।

ବନ୍ଦନା କ'ଣ ଟ୍ରାପ୍ କରିପାରିବନି ମଳୟ ମହାନ୍ତିଙ୍କୁ ? ଏବେ ନୁହେଁ ତ କେବେ ନୁହେଁ– ବନ୍ଦନା ନିଜକୁ ନିଜେ କହିଲା । ଏଥର ଟୁର୍‌ରୁ ଫେରିଲାପରେ ସେ ମଳୟଙ୍କ ଚ୍ୟାମ୍ବରକୁ ଯାଇ ନିଶ୍ଚୟ ଗପିବ ତାଙ୍କ ସାଙ୍ଗରେ । ଗୋଟେ କେଉଁ ରେସ୍ତୋରାଁ ବା ପାର୍କକୁ ଯିବାପାଇଁ ତାଙ୍କୁ ଏକପ୍ରକାର ବାଧ କରିବ । ତା'ପରେ ଅପେକ୍ଷା କରିବ ତାଙ୍କ ମନର ପରିଭାଷା ପଢ଼ିବାପାଇଁ ।

ବନ୍ଦନା ଦୈନିକ ଯେମିତି ଅଫିସ୍ ଯିବାକଥା ଯାଉଥିଲା । ପ୍ରତିଦିନ ପରି ଗହଳ ଚହଳ ଲାଗି ରହୁଥିଲା ଅଫିସ୍‌ରେ । ସେ ସେମିତି 'ନମସ୍ତେ' ମୁଦ୍ରାରେ ଠିଆହୋଇ ରହୁଥିଲା କାଚ କ୍ୟାବିନ୍‌ରେ । 'ମୁଁ ଆପଣଙ୍କୁ ସାହାଯ୍ୟ କରିପାରେ କି' ଭାଷା ତା' ମୁହଁରେ ଯେମିତି ଲେଖା ହୋଇଥିଲା ଅଦୃଶ୍ୟ ଲିପିରେ । ଆଗନ୍ତୁକମାନଙ୍କୁ ତଥ୍ୟ ଯୋଗାଇଦେଲାବେଳେ ମଧୁର ରାଗିଣୀର ବର୍ଷା ଝରୁଥିଲା ତା' କଣ୍ଠରୁ । ତା' କେଶ ଓ ଦେହର ସୁଗନ୍ଧିରେ ଆନ୍ଦୋଳିତ ହେଉଥିଲା ସେଠାକାର ପରିବେଶ ।

କିନ୍ତୁ ମଳୟ ମହାନ୍ତି ଟୁର୍‌ରୁ ଫେରୁ ନ ଥିଲେ ।



# ମାଟି କଣ୍ଢେଇ

ଶେଷରେ ସେହି ସିଦ୍ଧାନ୍ତରେ ପହଞ୍ଚିଲା ବନଲତା । ଏପରି ଗୋଟେ ନିଷ୍ଠୁର ସତ୍ୟର ସେ ସାମ୍ନା କରିପାରିଲା କେମିତି ? କିଏ ଯେମିତି ତାକୁ ପଚାରିଲା । ଅବିଶ୍ୱାସର ଆଖିରେ ସେ ନିଜକୁ ଚାହିଁଲା । କେତେ ଦିନର ସେ ଦ୍ୱନ୍ଦ୍ୱ, ଅଛିଣ୍ଡା ଗଣିତ ପରି ! ପୁଣି ଅସ୍ଥିରତା, ଅବସାଦ । ସବୁର ଅବସାନ ଘଟିଲା ।

ଗୋଟେ ଅଗଣାରେ ଅବା ବନ୍ଧା ହୋଇଥିଲା ବନଲତାର ଗୋଡ଼ ଦି'ଟା । ଫିଟି ପଡ଼ିବାକୁ ମନା । ଅଗଣା ଚାରିପାଖରେ ଗାର, ସରହଦ । ଡେଇଁଯିବାକୁ ଆକଟ । କେହି ଡିଅଁନ୍ତି ନାହିଁ କୁଆଡ଼େ । ଡେଇଁଗଲେ ଥରେ ଫେରିବାର ବାଟ ବନ୍ଦ । ସୀମା ସେପାରିରେ ଅନ୍ଧାର । ଅନ୍ଧାରରେ ବାଟ ଚାଲିବାର ହିମ୍ମତ କ'ଣ ଥାଏ ସଭିଙ୍କ ପାଖରେ ?

ବନଲତାର ବାଟ ଓଗାଳିଲେ ସମସ୍ତେ– ବାପା, ବୋଉ ଓ ଘରର ଅନ୍ୟ ଲୋକମାନେ । ସେ କିନ୍ତୁ କାହା ମନା ମାନିଲା ନାହିଁ, ଓଗାଳରେ ଅଟକିଲା ନାହିଁ । ବନଲତା ପ୍ରଥମେ ଫିସ୍‌ଫିସ୍ ହୋଇ କହିଲା ବଡ଼ଭାଉଜଙ୍କ ଆଗରେ । ବଡ଼ଭାଉଜ ଯାହା ବୁଝିଲେ, ସେଥିରେ ତାଙ୍କ କାନ ଯୋଡ଼ାକ କେବଳ କାହିଁକି, ଛାତିଟା ବି ଫାଟି ଦି'ଫାଳ ହେଇଗଲା । ଏ କ'ଣ ଗେହ୍ଲୀ ସାନ ନଣନ୍ଦର ଭାଷା ନା ଆଉ କାହାର ? କାନ ଉଠିଲା ଦିନରୁ ଯେଉଁକଥା ଶୁଣା ନ ଥିଲା, ସେକଥା ପୁଣି ଶୁଣିବାକୁ ମିଳିଲା ନିଜ ପାଠ ପଢୁଆ ନଣନ୍ଦଠାରୁ ! ଏହା ପାଠର ଦୋଷ ନା ଯୁଗର ଦୋଷ, ଅଧାପାଠୁଆ ବଡ଼ଭାଉଜ ବୁଝିପାରିଲେ ନାହିଁ । ଜିଭ କାମୁଡ଼ି ଚୁପ୍ ରହିଲେ । ଲତାକୁ ଉତ୍ତର ଫେରେଇଲେ ନାହିଁ । ଆଉ କାହା ଆଗରେ କିଛି କହିବାକୁ ତ ତାଙ୍କ ଜିଭ ଲେଉଟିଲା ନାହିଁ ।

ବଡ଼ଭାଉଜଙ୍କ ନିରବତାରୁ ତାଙ୍କ ଅସହାୟତା ବାରି ହୋଇପଡୁଥିଲା । ନିଜ ଜିଦ୍‌ରେ କିନ୍ତୁ ଅଟଳଥିଲା ବନଲତା । ସେ ବୋଉ ଆଗରେ ସବୁକଥା ଖୋଲି କହିଲା । ତା' ବୋଉ କଥାଟା ଶୁଣୁଶୁଣୁ ଚିହିଁକି ପଡ଼ିଲେ । ଲତା ମୁହଁରେ ହାତ ଦେଇ କହିଲେ, ''ଆଉ ଏଣୁତେଣୁ ଓକାଳ ନା, ଖବରଦାର । ତୋ ବାପାଭାଇ ଶୁଣିଲେ ଏକଥା, ଉପରକଣ୍ଟା ତଳକଣ୍ଟା ଦେଇ ତୋତେ ମାରିଦେବେ । ତୋତେ ଜନମ ଦଉଦଉ ମୁଁ ମଲି ନାହିଁ ଯା' ଲୋ ଅଲକ୍ଷଣୀ ! ତୋ ବାପଭାଇ ରାଜରାସ୍ତାରେ ମୁହଁଟେକି ଚାଲିପାରିବେ ନା ଏ ବଂଶର ପିତୃପୁରୁଷ ଆଉ ପାଣି ଛୁଇଁବେ !'' ଲତା ପ୍ରଥମଥରପାଇଁ ଦେଖୁଥିଲା ତା' ବୋଉର ଚଣ୍ଡୀରୂପ । ତା'ଛାତି ଚାଉଁକିନା ଲାଗିଲା । ଏକଥା ବୋଉକୁ କହି ନ ଥିଲେ କ'ଣ ଚଳି ନ ଥାନ୍ତା ବୋଲି ସେ ଭାବିଲା ଓ ମୁଣ୍ଡ ନୁଆଁଇ ବସିଲା ।

ଲତାବୋଉଙ୍କ ଗଞ୍ଜଣା କିନ୍ତୁ ସେଇଠୁ ସରିଲା ନାହିଁ । ସେ ପୁଣି ଗର୍ଜିଲେ, ''ଏରୁଣ୍ଡି ଏକଡ଼େ ରହିଲେ କୁଳବଧୂ, ଏରୁଣ୍ଡି ଡେଇଁଗଲେ କୁଳଟା । ଆଲୋ ଅଲାକ୍ଷୁକୀ, ତୋ ମୁହଁକୁ ସରମ ନାହିଁ ନା ଦେଶ ଦୁନିଆରେ ବିଷମଉରା ମିଳୁ ନାହିଁ !''

ବନଲତା ମୁହଁ ଖୋଲିଲା ନାହିଁ ସିନା, ହେଲେ ତା' ସିଦ୍ଧାନ୍ତରୁ ହଟିଲା ନାହିଁ ପାଦେ ।

ତା'ପରଦିନ ସକାଳୁ ବାପାଙ୍କ ନାଲିଆଖି ଦେଖି ବନଲତା ଶଙ୍କିଗଲା ଏବଂ ସେହିଦିନଠାରୁ ସେ ନିଜ ଆତ୍ମୀୟମାନଙ୍କୁ ପଛକରିଦେଲା ।

ଏମିତି ଜନ୍ମରୁ ଜିଦ୍‌ଖୋର ବନଲତା । ଭାରି ଅଝଟିଆ ଥିଲା ପିଲାବେଳେ । ଦିନ ଦି' ପହରେ ଜିଦ୍ କରିବ ଜହ୍ନ ଦେଖିବାପାଇଁ ତ ଖରା ପୁଇଁବାକୁ ଅଝଟ କରିବ ଅଧରାତିରେ । କହିବ ଗପ ଶୁଣୁଶୁଣୁ, ମୋତେ ଶଙ୍ଖଚୂଡ଼ ସାପ ଆଣିଦିଅ, ମୁଁ ଖେଳିବି ।'' ଅଜବ ତା' ସଉକ ପୁଣି । ଫୁଲ ନୁହେଁ, ତାରା ତୋଳିବାର ଖିଆଲ ଥାଇପାରେ କେଉଁ ପିଲାର ? ବଢ଼ିଲା ପରେ ବି ତା'ର ଜିଦ୍ କମିଲା ନାହିଁ । ଏଇ ଯେମିତି କଲେଜ ପଢ଼ିବା କଥା । ତା' ବାପା କହିଲେ, ''ମା' ଲତା, ତୋର ତ ଅଙ୍କ ଭଲ ହେଉନି । ଜଷ୍ଟ ସେକେଣ୍ଡ୍ ଡିଭିଜନ୍‌ରେ ପାସ୍ କଲୁ । ବିଜ୍ଞାନ ପଢ଼ିବାକୁ ମନ ବଳଉଛୁ କାହିଁକି ?'' ବନଲତାର କିନ୍ତୁ ଏକା ଜିଦ୍, ସେ ବିଜ୍ଞାନ ପଢ଼ିବ । ତା' ବାପାଙ୍କ କଥା କେହି ତଳେ ପକାନ୍ତି ନାହିଁ । ହେଡ୍‌ମାଷ୍ଟର କି ନା ! କିନ୍ତୁ ବନଲତା ବାପାଙ୍କ କଥା ଶୁଣିଲା ନାହିଁ । ପ୍ଲସ୍‌ଟୁରେ ବିଜ୍ଞାନ ପଢ଼ିଲା ଓ ଫେଲ୍ ହେଲା । ତଥାପି ତା'ର ଶଙ୍କା କି ସଂକୋଚ ନ ଥିଲା । ସପ୍ଲିମେଣ୍ଟାରୀରେ ପାସ୍ କଲାପରେ ବି ବିଜ୍ଞାନ ପଢ଼ାରୁ ସେ ନିବୃତ୍ତ ହେଲା ନାହିଁ । ଦୂର ଗୋଟେ ପ୍ରାଇଭେଟ୍ କଲେଜରେ ପ୍ଲସଥ୍ରି ବିଜ୍ଞାନ ପଢ଼ିଲା ।

ଯାହା ମୁଣ୍ଡରେ ପଶିଥିବ, ବନଲତା ତାହାହିଁ କରିବ, କାହାରି କଥା ଶୁଣିବ ନାହିଁ । ଅବଶ୍ୟ ବିଜ୍ଞାନ ଛାତ୍ରୀ ହୋଇଥିବାରୁ ବି.ଏଡ୍.ରେ ସିଟ୍‌ଟେ ସେ ପାଇଲା । ପରେପରେ ଚାକିରି ପାଇଗଲା ସେଣ୍ଟ୍ରାଲ୍ ସ୍କୁଲରେ ।

ବାହାଘରବେଳେ ବି ତା' ଜିଦ୍ କିଛି କମ୍ ନ ଥିଲା । କିରାଣି, ଜେ.ଇ., ଫାର୍ମାସିଷ୍ଟ ବା ପ୍ରାଇଭେଟ୍ କଲେଜ ଅଧ୍ୟାପକଙ୍କୁ ସେ ବାହାହେବ ନାହିଁ ବୋଲି ମୁହେଁମୁହେଁ କହିଦେଲା । ସେହି ଅନୁସାରେ ତା' ବାପା ଓ ଭାଇ ବର ଖୋଜିଥିଲେ । ବର ବଜାରରେ ଯେଉଁ ଭାଉ ! ସେଥିରେ ଗୋଟେ ହେଡ୍‌ମାଷ୍ଟର୍‌ର ଝିଅପାଇଁ କେମିତିକା ବରଟେ ଆଉ ଯୋଗାଡ଼ ହୋଇପାରିଥାନ୍ତା ? ତେବେ ବହୁତ ଖୋଜାଖୋଜି ପରେ ଗୋଟେ ଆସିଷ୍ଟାଣ୍ଟ୍ ଇଞ୍ଜିନିୟର ବର ଜୁଟିଗଲା, ତା' ପୁଣି ମେଟ୍ରିମୋନିଆଲ୍ ସଂସ୍ଥା ଜରିଆରେ ।

ବରର ଫଟୋ ଦେଖୁଦେଖୁ ମୁହଁ ମୋଡ଼ିଲା ବନଲତା; ମନେ ମନେ ଭାବିଲା ''କେଉଁ ଜଙ୍ଗଲରୁ ଆସିଛି ଏ ଟୋକାଟା ? ମଣିଷ ନା ମର୍କଟ ?'' ବଡ଼ଭାଉଜଙ୍କୁ କହିବ କହିବ ହୋଇ କିଛି କହିଲା ନାହିଁ । ଦେଖାଦେଖି ପର୍ଯ୍ୟନ୍ତ ଅପେକ୍ଷା କଲା ।

ବର କ'ଣ ବନଲତାକୁ ଦେଖିବ, ବନଲତା ବରକୁ ଦେଖିଲାକ୍ଷଣି ତତ୍‌କ୍ଷଣାତ ରିଜେକ୍ଟ କଲା । କିନ୍ତୁ ମୁହଁ ଖୋଲିଲା ନାହିଁ । ବରଘର ଲୋକେ ଯାହା ପଚାରିଲେ, ସେ ହଁ ହାଁ ମାରିଲା । ସେମାନେ ଚାଲିଗଲାପରେ ବନଲତାର ରାଗ ଆରମ୍ଭ ହେଲା । କିଟିକିଟା କଲା ପୁଣି ଦାନ୍ତୁରା ଲୋକଟାକୁ ସେ ବାହା ହବ ନାହିଁ ବୋଲି ସିଧା ମନା କରିଦେଲା ବୋଉକୁ । ବୋଉଠୁଁ କଥାଗଲା ବାପାଙ୍କ କାନକୁ । ତହୁଁ ବାପ ହେଡ୍‌ମାଷ୍ଟରପଣିଆ ଜାହିର କଲେ । ନାଲିଆଖି ଦେଖେଇ କହିଲେ, ''ମୁଁ ଥରେ ଜବାବ ଦେଲାପରେ ସେଥିରୁ ଓହରି ପାରିବି ନାହିଁ । ତେଣିକି ପୃଥିବୀ ପ୍ରଳୟ ହେଉ ପଛକେ ।'' ଭାଇନା ଖୁବ୍ ବିରକ୍ତ ହୋଇସାରିଥିଲା ବର ଖୋଜିଖୋଜି । କହିଲା, ''ତୁ ରାଜଜେମା ବୋଲି ନିଜକୁ ଭାବୁଛୁ କି ? ତୋ ଲାଗି କ'ଣ ସ୍ୱୟଂବର ଆୟୋଜନ ହେବ ?'' ବୋଉ କିନ୍ତୁ ଚୁପ୍‌ଚାପ୍ କାନ୍ଦିବାରେ ଲାଗିଲା ।

ଦିନଟିଏ ପରେ ବୋଉ କଥା ଶୁଣି କିଛି ବି ଉତ୍ତର ଫେରେଇପାରିଲା ନାହିଁ ବନଲତା । ବୋଉ କହିଲା, ''ମା' ଲୋ, ନିଜ ଇଚ୍ଛାକୁ ଲଗାମ ନ ଦେଲେ ସଂସାରରେ ଜିଇଁ ହୁଏ ନାହିଁ । ତୋ କଥା ସବୁ ଆକାଶଛୁଆଁ । ସେଥିରୁ କ'ଣ ମିଳିବ ? ମାଟିକୁ ଚାହାଁ, ସବୁ ବୁଝିଯିବୁ ।'' ବୋଉ କଥା ଶୁଣି ଲତା କଇଁକଇଁ ହୋଇ କାନ୍ଦିଲା । ବୋଉ ତା' ମୁଣ୍ଡ ଆଉଁଶିଦେଇ ପୁଣି କହିଲା, ''ତୋ ବରର ରୂପ ନ ଥିଲେ କ'ଣ ହେଲା, ଗୁଣ ଅଛି ତ ? ରୂପ ଆଜି ଅଛି, କାଲିକି ନ ଥିବ । ଗୁଣ କିନ୍ତୁ ସବୁଦିନିଆ । ପୁରୁଷ ପିଲାର ରୂପ ଦେଖାଯାଏନି ଲୋ' ମା ।''

ବନଲତା ପୁଣି ଜିଦ୍ ଧରିଲା ଜମା ବାହା ହବନି ବୋଲି । କେତେ ରାଗବିରାଗ, ମାନ-ଅଭିମାନରେ ରାତିରାତି ବିତିଲା । ବର ପଲଟଣରେ ଆସିବାଯାକେ ବି ସରାଗ ନ ଥିଲା ତା'ମନରେ । ଯାହାହେଉ, ସେ ବେଦୀକି ଯିବାକୁ ନାହିଁ କଲା ନାହିଁ ।

ଲହକା ବତା ପରି ଲତାର ବର । ମେଞ୍ଚଡ଼ । ବର୍ଣ୍ଣରେ ଶ୍ୟାମଳ, ମଧ୍ୟମ ଉଚ୍ଚତା । ଦାନ୍ତ ଟିକେ ବଡ଼ବଡ଼ । କିନ୍ତୁ ପିଲାଟା ସୁଧାର । ମେଧାବୀ, ଇଞ୍ଜିନିୟରିଙ୍ଗ୍ ପରୀକ୍ଷାରେ ପ୍ରଥମ ହୋଇଥିଲା ସାରା ଓଡ଼ିଶାରେ । ବଡ଼ଘର ପିଲା, ବାପା ମା'ଙ୍କର ଗୋଟିଏ ବୋଲି ପୁଅ । ତା' ବାପା ରିଟାୟାର୍ଡ ଡେପୁଟୀ । ସହର ମଝିରେ ବଡ଼ ଘର । ଟଙ୍କା ପଇସାର ଅଭାବ ନାହିଁ, ଉଭା ଯେତେ, ପୋତା ସେତେ । ବାପ ପୁଅଙ୍କର ଅଲଗା ଅଲଗା ଗାଡ଼ି । ତଳ ମହଲାରେ ବୁଢ଼ାବୁଢ଼ୀ, ଉପର ମହଲା ପୁଅବୋହୂଙ୍କର । ଚାକର-ବାକର, ପିଅନ ଚପ୍ରାସୀରେ ଘର ଭର୍ତ୍ତି । ରୋଷେଇ ଦୂରର କଥା, ତା'କପ୍‌ଟେ ହାତରେ ଉଠେଇବାକୁ ପଡ଼େନି ଲତାକୁ ।

ଜୀବନରେ ସୁଖ କହିଲେ ଆଉ କ'ଣ ବୁଝାଯାଏ କି ? ତା' ସତ୍ତ୍ୱେ ଯଦି ବନଲତା କହେ ସେ ସୁଖୀ ନୁହେଁ, ତା' ବର ତାକୁ ଭଲ ଲାଗୁନି, ଭଲଲାଗୁନି ବରଘର–

ତା'ହେଲେ ତା' କଥାରେ ବାପ, ସାଇପଡ଼ିଶାଙ୍କ କଥା ଛାଡ଼, ମା' କି ଭାଉଜ କ'ଣ ପରତେ ଯିବେ ? ଯାହାକୁ ପଚାରିଲେ ବି ସିଏ କହିବ, ଲତାର ମୁଣ୍ଡ ବିଗିଡ଼ି ଯାଇଛି, ନ ହେଲେ ତା' ମନ ବନ୍ଧା ପଡ଼ିଛି ଆଉ କାହା ପାଖରେ ।

ଲତା ବୋଉ ଠୋ କରି ଚାପୁଡ଼ାଟେ ବସେଇଥାନ୍ତେ ଝିଅ ଗାଲରେ । ସେଥିରୁ କିନ୍ତୁ ସେ ବିରତ ହେଲେ । ଯେତେହେଲେ ବାହାହେଲା ଝିଅ ତ ! କିନ୍ତୁ ବୁଲେଇ କହିଲେ ତାକୁ, "ତୋ ମୁହଁରେ ଲାଜ ନାହିଁ ! ଶୁଣିବା ଲୋକକୁ ଲାଜ ଭିଜେଇ ଦଉଛି । ତୋ ପାଟି ଫିଟୁଛି କିପରି ଲୋ ? କ'ଣ ନା ମୁଁ ଶାଶୂଘରକୁ ଆଉ ଯିବି ନାହିଁ । ସେ ଲୋକଟା ମୋତେ ଜମା ଭଲ ଲାଗୁନି । ଛି–ଛି– ଏମିତି କଥା କେହି ତୁଣ୍ଡରେ ଧରନ୍ତି ? ତୁ କି ପାଠ ପଢ଼ିଛୁ ଲୋ ? ପତି ପରମେଶ୍ୱର ବୋଲି ପରା କୁହାଯାଇଛି ।"

ପତି ପରମେଶ୍ୱର ବୋଲି କେବେ ବି ମାନୁ ନ ଥିଲା ବନଲତା । ଏସବୁ ପୁରୁଣାକାଳିଆ କଥାରେ ତା'ର ତିଳେ ବିଶ୍ୱାସ ନ ଥିଲା । ଗୋଟେ ପୁରୁଷ-ପ୍ରଧାନ ସମାଜକୁ ଧରି ରଖିବାର ବାହାନା ଇଏ । ପୁରୁଷଟିର ସ୍ୱାଧୀନତା ଅବାଧ– ଯାହା ମନ ତାହା ସେ କହିପାରିବ, କରିପାରିବ । କିନ୍ତୁ ଝିଅଟି ପାଇଁ ସବୁଆଡୁ ବାଡ଼ବତା । ଯାହା ବି ସେ ଭାବୁଥିବ, ସେତକ କହିପାରିବ ନାହିଁ, କହିପାରିବ ନାହିଁ ପୁଣି ତା' ବାପାମା'ଙ୍କୁ, ସ୍ୱାମୀଙ୍କୁ । ଶାଶୂ-ଶ୍ୱଶୁରଙ୍କ ପାଖରେ ମୁହଁ ଖୋଲିବା ବି ମୂଳରୁ ମନା । ମନା କ'ଣ, ପାପ ! ନରହତ୍ୟାଠାରୁ ଗର୍ହିତ ।

ଝିଅମାନଙ୍କର ମନ ବୋଲି କ'ଣ କିଛି ନାହିଁ ! ବାପଭାଇଙ୍କର ହଁ ହିଁ ତାଙ୍କର ହଁ, ସ୍ୱାମୀର ପସନ୍ଦ ହିଁ ତାଙ୍କର ପସନ୍ଦ । ଆଉ ଯଦି ଝିଅଟିଏ ତା' ମନକଥା ଖୋଲି କହିଦେଲା, ପୃଥିବୀଟା କାହିଁକି କେଜାଣି ଓଲଟପାଲଟ ହୋଇଯାଏ ? ପୁଅଟେ ପାଇଁ ତ ସାତଖୁଣ ମାଫ୍ । ତା'ର ଫାଜିଲାମି ପୁରୁଷତ୍ୱ, ତା'ର ପାଗଳାମି କବିପଣ । କିନ୍ତୁ ଝିଅଟିର ସଳଖ ପାଦ ସୂତେ ବାଙ୍କିଗଲେ କାହିଁକି ନାଗରା ବାଜେ ଦାଣ୍ଡଘାଟରେ ? ବନଲତା ନିଜକୁ ପ୍ରଶ୍ନକରେ ବାରମ୍ବାର, କିନ୍ତୁ ଉତ୍ତର ପାଏ ନାହିଁ ।

ବନଲତା ଜାଣିଥିଲା ସେ ମୁହଁ ଖୋଲିଲେ ଝଡ଼ ହେବ । କିନ୍ତୁ ଝଡ଼କୁ ତା'ର ଖାତିର ନ ଥିଲା ।

ବେଦୀରେ ବସିବାବେଳୁ ହିଁ ସେ ତା' ବରକୁ ଜମା ଆଦରିପାରୁ ନ ଥିଲା । ଆଦରିପାରୁ ନ ଥିଲା ଏଇଥିପାଇଁ ଯେ ସେ ଲୋକଟାର ଠାଣିରେ ନା ପୁରୁଷପଣିଆ ଥିଲା ନା ପ୍ରେମ ଥିଲା ଚାହାଣିରେ । ପ୍ରଥମ ଦେଖାରୁ ହିଁ ଗୋଟେ କେମିତି କେମିତି ଲାଗୁଥିଲା ଲୋକଟା । ତଥାପି ସେ ଭାବୁଥିଲା, ତା' ଆଶଙ୍କା ହୁଏତ ସତହୋଇ ନ ପାରେ । ସେମିତି ଲାଗୁଥାଇପାରେ ତା' ବର । ରହୁରହୁ ସେ ରହିଯିବ ଶାଶୂଘରେ ଓ ଆପଣେଇ ନବ ପତିପରମକୁ ।

ସେମିତି କିନ୍ତୁ କିଛି ହେଲା ନାହିଁ । ଶାଶୂଘରର ବଡ଼ପଣ ଲୁଚାଇପାରିଲା ନାହିଁ ତା' ବରର ବିକଳତା । ଜନ୍ମରୁ ରୁଗ୍‌ଣ ହୁଏତ ସେ ଲୋକଟା । ଛାମୁଦାନ୍ତ ଧାଡ଼ିକ ତା'ର କେବଳ ବଡ଼ ନୁହେଁ, ତା' ମୁହଁରୁ ଲାଳ ଗଡ଼ୁଥାଏ ଅବିରତ । ଅସ୍ପଷ୍ଟ ତେଣୁ ଶୁଭେ ତା'ର ଉଚ୍ଚାରଣ । କଥାଗୁଡ଼ାକ ଲୁଚିଯାଏ ଯେମିତି ଜିଭତଳେ । ନିଶଦାଢ଼ିରହିତ ତା' ମୁହଁଟା ପୁଣି ବିଶେ ଅସମ୍ଭବ ଭାବରେ ବିକୃତ । ନଳପରି ହାତଗୋଡ଼, ମାରିଶଗଛ ପରି ନିରସା ଦେହ ।

ତା' ବରର ପହିଲି ଚୁମାରେ ଶିହରିତ ହେବା ପରିବର୍ତ୍ତେ ସତତ ବିମୁଖ ହେଲା ବନଲତା । ଅସହ୍ୟ ଦୁର୍ଗନ୍ଧ ବାହାରୁଥିଲା ତା' ବର ମୁହଁରୁ । ବନଲତାର ନାକ ଫାଟି ପଡ଼ିଲା । ବାସର ବିଛଣାରେ ହୁଏତ ବାନ୍ତି କରିପକାଇଥାନ୍ତା । କୌଣସି ପ୍ରକାରେ କିଛି ସମୟପାଇଁ ସେ ଆୟତ୍ତ କରିନେଲା ନିଜକୁ । ପୁଣି ତା' ବରର ହୁଗୁଳା ବାହୁବନ୍ଧନ ଭିତରେ ଗୋଟେ ନିରୀହ ଛେଳିର ବିକଳତା ସେ ଅନୁଭବ କଲା । ତେଣୁ ମଧୁଚନ୍ଦ୍ରିକାର ମୁହୂର୍ତ୍ତ ମନେହେଲା ତାକୁ ବିଷମୟ; ସେହିକ୍ଷଣି ଘରକୁ ପଳାଇ ଆସିବାକୁ ତା' ମନ ବ୍ୟାକୁଳ ହେଉଥିଲା । ଇଚ୍ଛା ହେଉଥିଲା ଗଭାର ଗଜରାକୁ ଦଳିଦବାଲାଗି ପାଦରେ । ରାତିଟା କିନ୍ତୁ ସେ ସମ୍ଭାଳିଗଲା ।

ଏମିତି କେତେ ରାତି ସେ ଆଉ ନିଜକୁ ସମ୍ଭାଳି ପାରିଥାନ୍ତା ? ଅନିଚ୍ଛା ଭିତରେ କେଉଁଠୁ ଆସିବ ଆକର୍ଷଣ ? ହିମଶୀତଳ ମୂର୍ତ୍ତିଟିଏ ଉଷ୍ଣତା ଆଣିପାରିବ କି ଦେହମନରେ ? ସୁନାପଞ୍ଜୁରିରୁ ଉଡ଼ିଯିବାପାଇଁ ଛାଟିପିଟି ହେଉଥିଲା ବନଲତାର ମନପକ୍ଷୀ ।

ଉଡ଼ିଯିବାର ଭୟ ଅବଶ୍ୟ ତା'ଠି ନ ଥିଲା । ବିବାହ ଗୋଟେ ବନ୍ଧନ ନୁହେଁ, ଦିଆନିଆର ଭାବ, ଏମିତି ଭାବୁଥିଲା ବନଲତା । ଯେଉଁଠି ସେଇ ଭାବର ଅଭାବ, ସେଠି ବନ୍ଧନ କ'ଣ, କ'ଣ ବା ସମ୍ପର୍କର ସୀମାରେଖା ? ସାତତାଳ ପଙ୍କର ପ୍ରାଚୁର୍ଯ୍ୟ ଥିଲା ତା' ବରଘରେ । ଥିଲା ପୁଣି ଐଶ୍ୱର୍ଯ୍ୟର ଫଗୁଆ । କିନ୍ତୁ ଫଗୁଆ ଭିତରେ ଭଅଁରକୁ ଖୋଜିଖୋଜି ସେ ନୟାନ୍ତ ହେଉଥିଲା ।

ମରୁଭୂମିରେ ପଡ଼ି ଅନେକ ନଈ କୁଆଡ଼େ ଅବେଳରେ ମରିହଜିଯା'ନ୍ତି; ପିଲାବେଳେ ଭୂଗୋଳରେ ପଢ଼ିଥିଲା ବନଲତା । ମରୁପଥରେ ଧାରା ହରାଇଥିବା ନଈ ସହ ସେ ନିଜକୁ କାହିଁକି କେଜାଣି ବାରମ୍ବାର ତୁଳନା କରୁଥିଲା ଓ ହଠାତ୍ ବିମର୍ଷ ଦିଶୁଥିଲା ଶୀତରାତିର ଜହ୍ନ ପରି ।

ଆଗରୁ କୁହା ନାହିଁ, ବୋଲା ନାହିଁ, ଚାକିରି କରୁଥିବା ସହରକୁ ଚାଲିଯିବାପାଇଁ ହଠାତ୍ ଦିନେ ବାହାରିଲା ବନଲତା । କ'ଣ ନା ଛୁଟି ସରିଗଲାଣି, ସେ କହିଲା ତା' ବରକୁ । ସେଇକଥା ପୁନରାବୃତ୍ତି କଲା ଶାଶୂ-ଶ୍ୱଶୁରଙ୍କ ପାଖରେ । ନୂଆବୋହୂଟିର ଘରବାହୁଡ଼ାରେ ଥାଏ କାହିଁ କେତେ ଉପଚାର । ପୁଣି ଶାଶୂଘରୁ ସିଧା ଚାକିରି ଜାଗାକୁ

ଯିବା ମନା । ବୋହୂ ଯିବ ଯଦି ପହିଲେ ଯିବ ବାପଘରକୁ । ସେଠୁ ଯେଉଁଠିକୁ ଯିବ ବରଂ ଯାଉ । ଉଦାର ଶାଶୂ-ଶ୍ୱଶୁର ନୂଆବୋହୂଟି କଥାରେ ଅମଙ୍ଗ ହେଲେ ନାହିଁ । ସମୁଦୀ ସମୁଦୁଣୀଙ୍କୁ ଫୋନ୍ କଲେ । ତହିଁ ପରଦିନ ବନଲତା ବରର ଗାଡ଼ି ତାକୁ ଧରି ବାହାରିଲା ତା' ବାପଘରକୁ । ଅଥଚ ବନଲତା ତା' ବରକୁ ସାଙ୍ଗରେ ଯିବାପାଇଁ ଡାକିଲା ନାହିଁ ।

ଘରେ ପାଦଦେଲାକ୍ଷଣି ପ୍ରଥମେ ବନଲତାକୁ ଶଙ୍ଖୋଳିଲେ ତା' ବଡ଼ଭାଉଜ । ମାସଟେ ସତେ ଯେମିତି ବର୍ଷଟେ ପରି ଲାଗୁଥିଲା ତାଙ୍କୁ, ଗେହ୍ଲୀ ନଣନ୍ଦ ଅନୁପସ୍ଥିତିରେ । ଝିଅକୁ ଦେଖି କାନ୍ଦିପକେଇଲେ ବନଲତାର ବୋଉ । ଗୋଟେ ବୋଲି ଝିଅକୁ ଏତେଦିନ ପରେ ଦେଖି ତାଙ୍କ ଆଖି ଉଚ୍ଛୁଳି ପଡ଼ିଲା । ବାପା କିନ୍ତୁ କହିଲେ, ''ତରବରରେ ଆସିବା କ'ଣ ଦରକାର ଥିଲା ରେ ମା' ? ତୋ ଶାଶୂ-ଶ୍ୱଶୁର ଖରାପ ଭାବିବେ ଅଯଥାରେ ।'' ବନଲତା ତା' ବାପାଙ୍କ କଥାର ଉତ୍ତର ଦେଇ ନ ଥିଲା । ''ଜୋଇଁଙ୍କ ସାଙ୍ଗରେ ନ ଆସି ଏକା ଏକା ଆସିଲୁ କାହିଁକି ?'' ଏହି କଥା କହିଲାବେଳେ ବାପାଙ୍କ କଣ୍ଠରେ ଥିଲା ହେଡ୍‌ମାଷ୍ଟରସୁଲଭ ଗାମ୍ଭୀର୍ଯ୍ୟ ।

ପରେ ପରେ ବନଲତାର ଅଶ୍ରୁତପୂର୍ବ କଥାରେ ସମସ୍ତେ ହୋଇଥିଲେ ହତବାକ୍ । ଆଗପରି ଆଉ ତାଙ୍କ ଘର ଆପଣାର ଲାଗିଲା ନାହିଁ ତାକୁ । ସତକୁ ନିଜ ମା' ବି ଗ୍ରହଣ କରିବ ନାହିଁ, ଏହା ଥିଲା ତା'ର ଧାରଣା ବାହାରେ । ଦିନକ ଭିତରେ ବଡ଼ଭାଉଜଙ୍କ ମନରୁ ସବୁ ଆଦର ମରିଯାଇଛି ଯେମିତି, ସେ ଅନୁଭବ କଲା ; ଆହୁରି ବି ଅନୁଭବ କଲା ସେ ବୋଧହୁଏ ଠିକ୍‌ଭାବରେ ତା' କଥାଟା ବୁଝେଇ ପାରୁନି ତା' ବୋଉ କି ଭାଉଜଙ୍କୁ । ବାପାଙ୍କ ନାକ ଅଗରେ ତ ରାଗ ବସା ବାନ୍ଧି ସାରିଥିଲା । ଭାଇ ବି କଥା ହେଉ ନ ଥିଲା ତା' ସାଙ୍ଗରେ । ଦିନ କେତେଟା ଭିତରେ ସେ ଏଡ଼େ ଅଲୋଡ଼ା ହୋଇପଡ଼ିଲା ନିଜ ଘରେ ? ବନଲତା କୋହ ଚାପିପାରିଲା ନାହିଁ । ଘରୁ ବାହାରିଲାବେଳେ ଯାଇ କହିଲା, ''ବୋଉ, ଆଉ ତ ଛୁଟି ବଢ଼ାଇ ହବନି । ମୁଁ ଯାଉଛି ମୋ ସ୍କୁଲକୁ ।'' ତାକୁ କିନ୍ତୁ କେହି ଅଟକାଇଲେ ନାହିଁ ।

ସ୍କୁଲଠାରୁ ଅଳ୍ପଦୂରରେ ଥିବା ତା' ପୁରୁଣା ବସାଘରେ ବନଲତା ଏକା ରହିଲା, ଯେମିତି ରହୁଥିଲା ଗତ ତିନି ବର୍ଷ ହେଲା । ବନଲତାକୁ ଏକା ଆସିବା ଦେଖି ପାଖ ପଡ଼ିଶା ଲୋକମାନେ ହୁଏତ ଆଶ୍ଚର୍ଯ୍ୟ ହୋଇଥିବେ । କେହି କିନ୍ତୁ କିଛି କହିଲେ ନାହିଁ । ବନଲତା ଘରକୁ କି ବରକୁ– କାହାକୁ ଫୋନ୍ କଲା ନାହିଁ ।

ଥରେ ବଡ଼ଭାଉଜଙ୍କଠାରୁ, ଆଉଥରେ ତା' ବରଠାରୁ ଫୋନ୍ ପାଇଥିଲା ବନଲତା । ଉତ୍ତରରେ ଖୁବ୍ କମ୍ କଥା କହିଥିଲା । ସେ ଆଶା କରୁ ନ ଥିଲା, ଅଥଚ ହଠାତ୍ ଦିନେ ତା' ବର ଆସି ପହଞ୍ଚିଗଲା ତା' ବସାଘରେ । ଲତା ଲାଜରେ ମୁହଁ ତଳକୁ କରିବ କ'ଣ, ରାଗରେ ଥମଥମ ହେଲା । ବହୁକଷ୍ଟରେ କପେ ଚା' ଦେଲା ।

ଦି'ପଦ କଥା ହେଲା ନାହିଁ ସରାଗରେ । ତଥାପି ତା' ବର ଯିବାକୁ ବାହାରିଲା ନାହିଁ । ସେତେବେଳକୁ ଉଛୁର ହେଲାଣି ରାତି, ଏତେ ବାଟ ଯାଇଥା'ନ୍ତା କିପରି ସେ ଘୋର ବରଷାରେ ।

ବନଲତା ବସାଘରେ ଘୋର ବରଷା ରାତି କିନ୍ତୁ ବିତିଲା ନାହିଁ ଉଜାଣିରେ ।

ତା'ପରେ ବି ବନଲତାର ବର ଆସିଥିଲା କେତେଥର । ଏବେ କିନ୍ତୁ କେବେ ଆସୁ ନ ଥିଲା । ବର, ଘର କାହା ସହିତ ଆଉ ସମ୍ପର୍କ ନ ଥିଲା ବନଲତାର । ସମ୍ପର୍କ ବି ନ ଥିଲା ପାଖପଡ଼ିଶାଙ୍କ ସହିତ । ସ୍କୁଲର ସହକର୍ମୀ, ଛାତ୍ରଛାତ୍ରୀ ସମସ୍ତଙ୍କଠାରୁ ସେ ଦୂରେଇ ରହୁଥିଲା । କେମିତି କେଜାଣି ସେ ବଞ୍ଚୁଥିଲା ଏକା ଏକା ଗୋଟେ ନିର୍ଜନ ଦ୍ୱୀପରେ ?

ତା' ବିଷୟରେ ଏତେସବୁ କାହାଣୀ ଓ କିମ୍ବଦନ୍ତୀ ପ୍ରଚଳିତ ହେଲାଣି ବୋଲି ବହୁତ ଡେରିରେ ଜାଣିଲା ବନଲତା । ସେତେବେଳକୁ ତା' ଚାରିପାଖର ପୃଥିବୀ ଋଗ୍ଣ ହୋଇସାରିଥିଲା । ଅଧିକଦିନ ସେଠି ରହିବାକୁ ତା' ମନ ବଳିଲା ନାହିଁ । ଅନ୍ୟତ୍ର ବଦଳିପାଇଁ ସେ ହେଡ୍‌ମାଷ୍ଟ୍ରଙ୍କ ଜରିଆରେ ଆବେଦନ କଲା । ସପ୍ତାହକ ଭିତରେ ଗୋଟେ ଦୂର୍ ସହରକୁ ତା'ର ବଦଳି ବି ହୋଇଗଲା ।

ଦୂର ସହରଟିର ଅବସ୍ଥିତି ରାଜ୍ୟର ଉପାନ୍ତରେ । ଚାରିପାଖରେ ପାହାଡ଼, ପାହାଡ଼ ଉପରେ ମେଘମହ୍ଲାର । କି ଦିନ କି ରାତି, ଖାଲି ଝିପିଝିପି ବର୍ଷାର ନିକ୍ୱଣ । ବନଲତାକୁ ନୂଆ ସହରଟା ମନେହେଲା ଚିହ୍ନା ଚିହ୍ନା, ଆପଣାର । ଖୁବ୍ କମ୍‌ଦିନ ଭିତରେ ବନଲତାକୁ ଆରେଇଗଲା ସେ ଜାଗା ।

ସେଠାକାର ଜଣେ ନାମଜାଦା ଓକିଲଙ୍କ ପାଖକୁ ବନଲତା ଯାଇଥିଲା ଥରେ, ଗୋପନରେ । ନିରୋଳାରେ କଥାହେଲା ତାଙ୍କ ସହ । ନିଜ ପତିକୁ ଡିଭୋର୍ସ କରିବାକୁ ଚାହେ ବୋଲି ସେ ରୋକ୍‌ଠୋକ୍ କହିଲା ଓକିଲଙ୍କୁ । ଡିଭୋର୍ସଟା ଭାରି ସହଜ ବୋଲି କହିଲେ ଓକିଲ ମହାଶୟ । କହିଥିଲେ ପୁଣି, ନ୍ୟାୟ କୁଆଡ଼େ ସବୁବେଳେ ନାରୀ ସପକ୍ଷରେ । ତେବେ ଘଟଣାଟି ଯୌତୁକଜନିତ କି ବୋଲି ସେ ପଚାରିବାରୁ ବନଲତା ଚୁପ୍ ରହିଥିଲା । କାରଣ ସେ ମିଛକଥା କହିବ କିପରି ? ବରଘରେ ତାକୁ ଆଦର ମିଳିଥିଲା, ଯାତନା ନୁହେଁ । ବୃଦ୍ଧ ଓକିଲ କିନ୍ତୁ ବାରମ୍ବାର ଜାଣିବାକୁ ଚାହିଁଲେ ଗୋଟିଏ କଥା, 'ଡିଭୋର୍ସର କାରଣ କ'ଣ ?' ବନଲତା ଭାରି ଜୋସ୍‌ରେ ସିନା ଚାଲିଯାଇଥିଲା ଓକିଲଙ୍କ ଘରକୁ, ହେଲେ ଗୋଟେ ମାଟିକଣ୍ଢେଇ ସହିତ ସାରା ଜୀବନ କେମିତି କାଟିବ ବୋଲି ସେ କହିବ କହିବ ହୋଇ କହିପାରି ନ ଥିଲା ।

ମତୁଆଲା ମେଘର ସେହି ଉଦାସ ଉପତ୍ୟକାରେ କିନ୍ତୁ ବନଲତା ନିଆଁକୁ ଭେଟୁଥିଲା ନିଜ ଭିତରେ, ପ୍ରତି ରାତିରେ ।



# କେବେଠାରୁ କବିତା ଲେଖିଲ, କୁମାରେଶ ?

ନୂଆ ନୂଆ ପ୍ରେମ କଲେ କେମିତି ଲାଗେ ? କେମିତି ଲାଗେ ପ୍ରଥମେ ପ୍ରଥମେ କବିତା ଲେଖିଲେ ? ଏ ଦୁଇଟିରୁ କୌଣସିଟିର ଅନୁଭବ କିନ୍ତୁ ନ ଥିଲା କୁମାରେଶଙ୍କର ।

ପିଲାଟି ଦିନରୁ କାହିଁକି କେଜାଣି ଗୋଟେ ଉଦାସପଣ ଆଚ୍ଛନ୍ନ କରି ରଖିଥାଏ କୁମାରେଶଙ୍କୁ । ପାଠ ଭଲ ତ ସେ ଭଲ, ପୃଥିବୀର ଅନ୍ୟକୌଣସି ଚିଜରେ ତାଙ୍କର ନିଘା ନ ଥାଏ । ପୁଣି ପାଠ ଭିତରେ ତାଙ୍କର ସବୁଠୁଁ ପ୍ରିୟ ବିଷୟ ଥିଲା ଗଣିତ । ହାଇସ୍କୁଲରେ ପଢ଼ିଲାବେଳେ ସେ ଅଙ୍କରେ ଶହେରୁ ଶହେ ନମ୍ବର ରଖୁଥିଲେ । ବିଜ୍ଞାନରେ ବି ଥିଲେ ଭାରି ପାରଙ୍ଗମ । କିନ୍ତୁ ସାହିତ୍ୟ ଫାହିତ୍ୟ ତାଙ୍କୁ ଭଲ ଲାଗୁ ନ ଥିଲା କେବେ । ସେ ଅଙ୍କ କଷୁଥିବେ ତ କଷୁଥିବେ, ଦିନରାତି ମାନୁ ନ ଥିବେ । ସାହିତ୍ୟ କି ବ୍ୟାକରଣ କଥା ପଡ଼ିଲେ ତାଙ୍କର ମୁଣ୍ଡବିନ୍ଧା ଆରମ୍ଭ ହୋଇଯାଉଥିଲା । ସଂସ୍କୃତ ବ୍ୟାକରଣ ତ ତାଙ୍କୁ ମନେ ହେଉଥିଲା ଭୂତପ୍ରେତଠାରୁ ଆହୁରି ଭୟଙ୍କର । କବି ସମୁଦ୍ରକୁ ନେଇ କ'ଣ ଭାବିଲେ, ଜହ୍ନ ବା ଫୁଲକୁ ଦେଖି କାହିଁକି ତାଙ୍କ ମନ ନାଚିଉଠିଲା– ଏସବୁ ଫାଲ୍‌ତୁ କଥା ତାଙ୍କୁ ଭଲ ଲାଗନ୍ତା କିପରି ?

ଅନ୍ୟମାନଙ୍କ ପରି ଖେଳଛୁଟିରେ କୁମାରେଶ ଫୁଟବଲ୍ ପଡ଼ିଆକୁ ଧାଉଁ ନ ଥିଲେ କି ଝାଲ୍‌ମୁଢ଼ିବାଲା ପାଖରେ ଲାଇନ୍ ଦେଉ ନ ଥିଲେ । ଗଣେଶପୂଜା, ସରସ୍ୱତୀପୂଜା ବା ସ୍ୱାଧୀନତା ଦିବସରେ ସେ ସ୍କୁଲକୁ ଆସୁ ନ ଥିଲେ ବା ଯଦି ଆସୁଥିଲେ ସାଙ୍ଗସାଥୀମାନଙ୍କ ସହିତ ହୋ-ହାଲ୍ଲାରେ ମଜ୍ଜି ପାରୁ ନ ଥିଲେ । ଆଉ ଝିଅପିଲାଙ୍କୁ ଦେଖିଲେ ରାତିରେ ସାପ ଦେଖିଲା ପରି ସେ ଅତର୍କ୍କ ବାଟ ଭାଙ୍ଗି ଅନ୍ୟଆଡ଼େ ଚାଲିଯାଉଥିଲେ ।

କଲେଜ ମାଡ଼ିଲେ କୁଆଡ଼େ ଅନେକ ପିଲା ବଦଳି ଯା'ନ୍ତି, ହେଲେ କୁମାରେଶ ଆଦୌ ବଦଳିପାରିଲେ ନାହିଁ କଲେଜ ବା ୟୁନିଭରସିଟିରେ । ସେ ଯେଉଁ ପୋତାମୁହାଁକୁ ସେହି ପୋତାମୁହାଁ ହୋଇ ରହିଗଲେ । ହସଧାରେ କେବେ କେହି ଦେଖି ନ ଥିବେ ତାଙ୍କ ଓଠସନ୍ଧିରେ । ସେ ଖୁବ୍ କମ୍ ସହପାଠୀଙ୍କ ନାମ ଜାଣିଥିଲେ, ପ୍ରାୟ କୌଣସି ସହପାଠିନୀଙ୍କ ନାମ ତାଙ୍କୁ ଜଣା ନ ଥିଲା । କିନ୍ତୁ ୟୁନିଭରସିଟି ଛାଡ଼ିବାର ଦୀର୍ଘ ଚାଳିଶବର୍ଷ ପରେ ସେ ତାଙ୍କର ଜନୈକା ସହପାଠିନୀକୁ ଦେଖି

କେବଳ ଯେ ଚିହ୍ନିପାରିଲେ, ତା'ନୁହେଁ, ତା' ନାଁ ମନେପକାଇପାରିଲେ ତତ୍‌କ୍ଷଣାତ୍ । ଦେଖୁ ଦେଖୁ କହିପକାଇଲେ, ''ତମେ ସୁସ୍ମିତା ଶତପଥୀ ନା ?''

ସୁସ୍ମିତା ଶତପଥୀ ସହ କୁମାରେଶଙ୍କର ପୁଣି ଦେଖାହେଲା ଅକସ୍ମାତ୍, ଅପ୍ରତ୍ୟାଶିତ ଭାବରେ, ଗୋଟେ ସର୍ବତ ଦୋକାନ ସାମ୍ନାରେ । କୁମାରେଶ ନିଜେ କାର୍ ଡ୍ରାଇଭିଂ କରି ଫେରୁଥିଲେ କାନନବିହାରରେ ଥିବା ତାଙ୍କ ନୂଆଘରକୁ । କାର୍‌ରେ ଏ.ସି. ଥିବାସତ୍ତ୍ୱେ ଭୁବନେଶ୍ୱରର ଜ୍ୱଳନ୍ତ ମଧ୍ୟାହ୍ନ ତାଙ୍କୁ ସର୍ବତ୍ ଦୋକାନ ଆଗରେ ଗାଡ଼ି ରୋକିବାକୁ ଏକପ୍ରକାର ବାଧ୍ୟକଲା । ସେ ଗାଡ଼ିରୁ ବାହାରି ଆସିବାକ୍ଷଣି ପ୍ରଥମେ ତାଙ୍କ ଦୃଷ୍ଟି ଯେଉଁ ଭଦ୍ରମହିଳାଙ୍କ ଉପରେ ପଡ଼ିଲା, ସେହିଁ ଥିଲା ସୁସ୍ମିତା ଶତପଥୀ ।

ସୁସ୍ମିତା ଗୋଟେ ଧଳାଶାଢ଼ି ପିନ୍ଧିଥିଲା ଓ ତା' ମୁଣ୍ଡର ଅର୍ଦ୍ଧାଧିକ କେଶ ଧଳା ପଡ଼ିଯାଇଥିଲା । ଚଷମା ଅନ୍ତରାଳରୁ ତା' ଆଖିପତାର କଳାଦାଗ ସ୍ପଷ୍ଟ ଦିଶୁ ନ ଥିଲେ ବି, ତା' ମୁହଁର ମଳିନତା ବେଶ୍ ବାରି ହୋଇପଡୁଥିଲା । କିନ୍ତୁ ଛାତ୍ରୀଜୀବନର ସେହି ମୁଖମଣ୍ଡଳଟି ପ୍ରାୟତଃ ଅକ୍ଷୁଣ୍ଣ ଥିବାରୁ, ଦେଖୁଦେଖୁ ସୁସ୍ମିତାକୁ ଚିହ୍ନିପାରିବାରେ କୁମାରେଶଙ୍କର ବିଶେଷ ଅସୁବିଧା ହେଲା ନାହିଁ ।

ଅଳ୍ପ ଆଳାପ ପରେ କୁମାରେଶ ସୁସ୍ମିତାକୁ କାର୍‌ରେ ବସାଇ ଆଗକୁ ଚାଲିଲେ । ସୁସ୍ମିତା ନିଜ ପତିଙ୍କୁ ହରେଇ ସାରିଥିବା ଜାଣି ମଧ୍ୟ ସେ ପ୍ରସଙ୍ଗ ହଠାତ୍ ଉଠେଇବାକୁ ଭରସିଲେ ନାହିଁ କୁମାରେଶ । ଭାବିଲେ, ଶୈଳଶ୍ରୀବିହାରକୁ କାନନବିହାର ଆଉ କେତେଦୂର କି? ପରବର୍ତ୍ତୀ ଦେଖାସାକ୍ଷାତରେ ସବୁକଥା ବଳେ ଜଣାପଡ଼ିଯିବ ।

ଗଣିତ, ଗବେଷଣା ଓ ଗବେଷଣା, ଗଣିତ ଭିତରେ ରୁନ୍ଧି ହୋଇଯାଇଥିଲେ କୁମାରେଶ । ସାରାଜୀବନ ଗଣିତର ଜଟିଳ ସୂତ୍ରରେ ଛନ୍ଦି ହୋଇ ତାଙ୍କୁ ଆକ୍ତାମାକ୍ତା ଲାଗୁଥିଲା । କଲେଜ, କ୍ୱାର୍ଟର୍ସ, ଲାଇବ୍ରେରୀ ତାଙ୍କ ଜୀବନର ସରହଦ ପାଲଟି ଯାଇଥିଲା ଏକଦା । ସବୁ ନିଷ୍ଠା, ସମସ୍ତ ଆନ୍ତରିକତା ସତ୍ତ୍ୱେ ସେ ଭଲଗୋଟେ ୟୁନିଭରସିଟିରେ ପ୍ରଫେସର ହୋଇପାରିଲେ ନାହିଁ । ତାଙ୍କର ଛାତ୍ର ଏବଂ ରିସର୍ଚ୍ଚସ୍କଲାରମାନେ କିଏ କେତେ ଉପରକୁ ଉଠିଗଲେ । ସେଥିପାଇଁ ଅବଶ୍ୟ ତାଙ୍କ ମନରେ ବିଶେଷ କ୍ଷୋଭ ନ ଥିଲା । କିନ୍ତୁ ତାଙ୍କୁ ପ୍ରଫେସର କରା ନ ଯିବା ପାଇଁ ଚାଲିଥିବା ଚକ୍ରାନ୍ତ କଥା ଭାବିଲେ ସେ କେବେ କେମିତି ଖୁବ୍ ଦୁଃଖୀ ହୋଇଯାଉଥିଲେ । ରିଟାୟାର୍ଡମେଣ୍ଟ ପରେ ସେସବୁକୁ ଫିଙ୍ଗି ଗୋଟେ ନୂଆଜୀବନ ଆରମ୍ଭ କରିବାକୁ ତାଙ୍କ ମନ ବଳୁଥିଲା ।

ପ୍ରଥମେ ପ୍ରଥମେ ତାଙ୍କ ପ୍ରିୟ ଭୁବନେଶ୍ୱର କୁମାରେଶଙ୍କୁ ଭାରି ଅଡୁଆ ଅଡୁଆ ଲାଗିଲା । ଜୀବନର ଅର୍ଦ୍ଧାଧିକ ସମୟ ତାଙ୍କର ବିତିଲା ପଶ୍ଚିମାଞ୍ଚଳରେ । ତାଙ୍କୁ ସେ ଅଞ୍ଚଳର ଲୋକମାନେ ସ୍ୱୀକୃତି ଦେଲେ କିନ୍ତୁ ଭୁବନେଶ୍ୱରରେ ତାଙ୍କୁ କେହି ସେମିତି

ଚିହ୍ନିଲେ ନାହିଁ । ତଥାପି ଅବସର ନେବାପରେ ଭୁବନେଶ୍ୱରରେ ରହିବାପାଇଁ ସେ ପସନ୍ଦ କଲେ । କାନନବିହାର ଜାଗାରେ ଘରଖଣ୍ଡେ ତୋଳାଇଲେ ।

ସୁନ୍ଦର ଡୁପ୍ଲେକ୍ସ ଘରଟିରେ ଏବେ ସେ ଏକା ରହୁଥିଲେ । ରୋଷେଇବାସ କରିଦେଉଥିଲା ଚାକର ପିଲାଟି । ମନୋରମା ସୁଦୂର ମୁମ୍ବାଇରେ ରହୁଥିଲେ ଝିଅ ପାଖରେ । ଝିଅର ଆଡ଼ଭାନ୍ସ ଷ୍ଟେଜ୍ । ଜୋଇଁ ମଲ୍‌ଟି ନ୍ୟାସ୍‌ନାଲ କମ୍ପାନିର ମାର୍କେଟିଂ ମ୍ୟାନେଜର । ସମୟର ଘୋର ଅଭାବ । ଜୋଇଁଙ୍କର ଅନୁରୋଧକୁ ଏଡ଼େଇ ପାରିଲେ ନାହିଁ କୁମାରେଶ । ଝିଅଟା ତ ସବୁବେଳେ ଚୁପ୍‌ଚାପ୍ । ମୁହଁଖୋଲି କିଛି କେବେ କହିବ ନାହିଁ । ଝିଅର ଡେଲିଭରୀ ହବାର ଆହୁରି ମାସେ ପର୍ଯ୍ୟନ୍ତ ମନୋରମା ରହିବେ ମୁମ୍ବାଇରେ । ତାଙ୍କ ଅନୁପସ୍ଥିତି ବେଶ୍ ଅନୁଭବ କରୁଥିଲେ କୁମାରେଶ । ଚାକର ପିଲାଟା କ'ଣ ସ୍ତ୍ରୀର ବିକଳ୍ପ ହୋଇପାରିବ କେବେ ?

ପୁଅ ବର୍ଷକ ଭିତରେ ଇଣ୍ଡିଆ ଫେରିବାର ସମ୍ଭାବନା ନାହିଁ । ଆମେରିକାରେ ସେ ସାଇଣ୍ଟିଷ୍ଟ । ବୋହୂ ବି ସେଠି କେଉଁଠି ଗୋଟେ ଚାକିରି କରିଛି । ନାତିଟୋକା ଏବେ ସ୍କୁଲ ଗଲାଣି ପରା ! ଫୋନ୍‌ରେ ତା' ଉଚ୍ଚାରଣ ସ୍ପଷ୍ଟ ହୁଏନି ଜମା । କୁମାରେଶ ବେଳେବେଳେ ଭାବନ୍ତି, ଭବିଷ୍ୟତରେ ତାଙ୍କ ନାତି ହୁଏତ ମାନଚିତ୍ରରେ ଇଣ୍ଡିଆକୁ ଚିହ୍ନିବ, ଓଡ଼ିଶାକୁ ଦେଖିବ । କିନ୍ତୁ ବୁଝିପାରିବ କି ଇଣ୍ଡିଆକୁ ?

ଆଗରୁ ଗହଳ ଚହଳ ଭାରି ବିରକ୍ତିକର ବୋଧ ହେଉଥିଲା କୁମାରେଶଙ୍କୁ । ସେ ନିୟତ ମଗ୍ନ ରହୁଥିଲେ ଗଣିତର ଗୁହା ଭିତରେ । କିଏ ଟିକେ ଉଁଚୁଁ ହେଲେ, ଅସମ୍ଭବ ଭାବରେ ଚିଡ଼ି ଉଠୁଥିଲେ । ଏବେ କିନ୍ତୁ ନିରବତା ତାଙ୍କୁ ଆଗପରି ସମ୍ମୋହିତ କରିପାରୁ ନ ଥିଲା । ଯାହାପାଖରେ ନାହିଁ ତା' ପାଖରେ ଗପିବାକୁ ଇଚ୍ଛା ହେଉଥିଲା ତାଙ୍କର । ସମୟର ଦୈର୍ଘ୍ୟପ୍ରସ୍ଥ ଯେ ଏତେ ବିସ୍ତୃତ, ଅନେକ ଦିନପରେ ସେ ଅନୁଭବ କରୁଥିଲେ । ଅନୁଭବ ବି କରୁଥିଲେ ତାଙ୍କ ଦେହ ଆସ୍ତେ ଆସ୍ତେ କେମିତି ହୁଗୁଳି ଯାଉଛି । ଶର୍କରା ଓ ମେଦବୃଦ୍ଧିର ସଂକେତ ସେ ତ ପାଇସାରିଥିଲେ ବହୁ ଆଗରୁ । ସେଥିଲାଗି ନିୟମିତ ଔଷଧ ସେବନ କରୁଥିଲେ, ଖାଦ୍ୟପେୟରେ ସଂଯମ ସାଙ୍ଗକୁ ପ୍ରାତଃଭ୍ରମଣ ଅବ୍ୟାହତ ରଖିଥିଲେ । ତଥାପି ତାଙ୍କ ଭିତରର ହୁଗୁଳାପଣ ସୁଧୁରୁ ନ ଥିଲା । ବଳ ହଟିବାକୁ ରୋଗବ୍ୟାଧିମାନେ ଟାକି ରହିଥା'ନ୍ତି ବୋଧେ । ଅଗ୍ନିମାନ୍ଦ୍ୟଠାରୁ ଉଚ୍ଚ ରକ୍ତଚାପ ପର୍ଯ୍ୟନ୍ତ ନାନାଦି ବ୍ୟାଧିର ଲମ୍ୱାଧାଡ଼ି ଲାଗିଥିଲା ତାଙ୍କ ଦେହରେ । ହେୟାର୍‌ଡ୍ରାୟ୍, ସମ୍ଭ୍ରାନ୍ତ ପୋଷାକ ବା ଏ.ସି. ଗାଡ଼ି ଭିତରେ କ'ଣ ବାର୍ଦ୍ଧକ୍ୟକୁ ଲୁଚାଇହୁଏ ? ନା ଦବି ଦବି ଯାଉଥିବା ମନକୁ ଢେରା ଦେଇ ସଳଖ କରିହୁଏ ?

ସୁସ୍ମିତା ସହ ଦେଖାହବା ପରଠାରୁ କୁମାରେଶଙ୍କର ପ୍ରାତଃଭ୍ରମଣର ପଥ ବଦଳିଯାଇଥିଲା । ସେ କାନନବିହାରରୁ ବାହାରି ପ୍ରାୟ ଦୁଇ କିଲୋମିଟିର ଚାଲିଲା ପରେ ଝାଳ ସରସର ଅବସ୍ଥାରେ ପହଞ୍ଚି ଯାଉଥିଲେ ସୁସ୍ମିତା ଘର ବାରଣ୍ଡାରେ ।

ସେଠି ବେଶ୍ କିଛି ସମୟ ଗପସପ କରୁଥିଲେ । କଫିରେ ଆପ୍ୟାୟିତ ହେବାପରେ ଫେରୁଥିଲେ ନିଜ ଘରକୁ । ଦୈବାତ୍ ଦିନେ ଅଧେ ସୁସ୍ମିତା ଘରକୁ ଯାଇ ନ ଥିଲେ, ସେପାଖରୁ ଫୋନ୍ ଆସୁଥିଲା, ''କ'ଣ ଦେହ ଭଲ ନାହିଁ କି ତମର ? ଆଜି କାହିଁକି ଏବାଟେ ଆସିଲନି ? ରାଗିଛ କି ?'' ସେଥିପାଇଁ ତାଙ୍କୁ ନାନା କୈଫିୟତ୍ ଦେବାକୁ ପଡୁଥିଲା ।

ସୁସ୍ମିତାକୁ କ'ଣ ଭାରି ଏକୁଟିଆ ଲାଗୁ ନ ଥିବ ଏତେବଡ଼ ଘରଟାରେ । ଏତେଦିନ ହେଲା କେମିତି ସେ ରହୁଛି ଏକା ଏକା ? ବିଚାରୀ ବିବାହର ବର୍ଷ କେତେଟା ଭିତରେ ସ୍ୱାମୀଙ୍କୁ ହରାଇଲା । ରିହ୍ୟାବିଲିଟେସନ୍‌ରେ ଚାକିରି କରି ଏକମାତ୍ର ପୁଅକୁ ପାଠଶାଠ ପଢ଼ାଇ ମଣିଷ କଲା । ଅଥଚ ପୁଅ ବଡ଼ ଚାକିରି କଲାପରେ ବିଧବା ମା'କୁ ପଚାରିଲା ନାହିଁ । ଓଡ଼ିଶା ଭିତରେ ପୁଣି ଚାକିରି କରିଛି ତା'ପୁଅ, କୋଉ ଦୂରଦୂରାନ୍ତରେ ନୁହେଁ । କିନ୍ତୁ ବର୍ଷରେ କୁଆଡ଼େ ଥରେ ଅଧେ ବି ଆସେନି ମା' ପାଖକୁ । ସ୍ତ୍ରୀ ଯାହା କହିବ ତା'ପାଇଁ ସେଇଟା ପରା ବେଦରଗାର । ଶ୍ୱଶୁରଘର କଥାରେ ପଡ଼ି ମା' ସହିତ ଅପଡ଼ । ଧନ୍ୟରେ କୁମରବର !

କୁମାରେଶ ଅଧିକାଂଶ ସମୟରେ ସୁସ୍ମିତା କଥା ହିଁ ଭାବୁଥିଲେ । ଅନ୍ୟମନସ୍କ ହୋଇପଡୁଥିଲେ ହଠାତ୍, କେବେକେବେ ଗୁଣୁଗୁଣୁ ହଉଥିଲେ ମନେମନେ । ବାବୁଙ୍କ ହାବଭାବ ଦେଖି ଚକିତ ହେଉଥିଲା ଚାକରଟୋକା । ମା'ଙ୍କ କଥା ମନେପଡୁଛି ବାବୁଙ୍କର ବୋଲି ଭାବି ହସି ଦେଉଥିଲା ।

ଭାରି ଲମ୍ବା ମନେହେଉଥିବା ସମୟ କ୍ରମେ ଛୋଟ ହୋଇଆସିଲା କୁମାରେଶଙ୍କ ପାଇଁ । ସଞ୍ଜ ହେଲାକ୍ଷଣି ସାନ୍ଧ୍ୟଭ୍ରମଣ ବାହାନାରେ ସେ ପୁଣି ପହଞ୍ଚି ଯାଉଥିଲେ ସୁସ୍ମିତା ଘରେ । ଗପୁଥିଲେ ଢେର ରାତି ପର୍ଯ୍ୟନ୍ତ । ଦିନେ ଦିନେ ସେଠୁ ରାତିଖିଆ ସାରି ଫେରୁଥିଲେ ।

ଦିନେ ସୁସ୍ମିତା ଘରେ ରାତିପର୍ଯ୍ୟନ୍ତ ଗପୁଗପୁ ସିନେମା ଦେଖିଯିବାପାଇଁ ପ୍ରସ୍ତାବ ବାଢ଼ିଲେ କୁମାରେଶ । ଏମିତି ଗୋଟେ ପ୍ରସ୍ତାବକଥା ସେ ଭାବି ନ ଥିଲେ ଆଗରୁ । କହୁ କହୁ କହିଦେଲେ, ''ବୁଝିଲ ସୁସ୍ମିତା, ମୁଁ ସିନେମା ହଲ୍‌ର ମାଟି ମାଡ଼ି ନାହିଁ ପ୍ରାୟ କୋଡ଼ିଏ ବର୍ଷ ହେବ । ପିଲାମାନଙ୍କ ସାଙ୍ଗରେ ବସି ଟି.ଭି.ରେ ସିନେମା ଦେଖିବା ମୋ ଦେଇ କେବେ ସମ୍ଭବ ହେଲା ନାହିଁ । ଥରେ ଗୋଟେ ହଲ୍‌କୁ ସିନେମା ଦେଖିଗଲେ କେମିତି ହୁଅନ୍ତା ?'' କୁମାରେଶଙ୍କ କଥା ନ ସରୁଣୁ ସୁସ୍ମିତା ଯେମିତି ଲାଜ ସରସର ହୋଇଗଲା । ବାଣୀବିହାର କ୍ୟାମ୍ପସ୍‌ରେ କୃଷ୍ଣଚୂଡ଼ା ଗଛମୂଳରେ ଠିଆହୋଇ କାହାସହ ଘଣ୍ଟାଘଣ୍ଟା ଗପୁଥିବାର ସ୍ମୃତି ତାକୁ ଗ୍ରାସକଲା ହୁଏତ । ସେ କେଉଁ ଦୂର ଅତୀତରେ ଯେମିତି ହଜିଗଲା କିଛିକ୍ଷଣପାଇଁ । ତା' ନୀଳଶାଢ଼ିର

ପଣତ ଯେମିତି ଛୁଇଁଯାଉଥିଲା ନୀଳଆକାଶର ଛାତିକୁ । ହଠାତ୍ ଡ୍ରଇଁରୁମ୍‌ରୁ ଉଠି ସେ ଘରଭିତରକୁ ପଳାଇଗଲା । କୁମାରେଶ ଗୋଟେ ହୋସ୍‌ରେ କଥାଟା କହିଦେଲେ ସିନା, ହେଲେ କହିସାରିଲା ପରେ ତାଙ୍କୁ ବି କେମିତି ଅଡୁଆ ଅଡୁଆ ଲାଗିଲା । ସେ ଘରକୁ ଫେରିଆସିଲେ ଚୁପ୍‌ଚାପ୍ ।

ତା'ପରେ ଦୁଇତିନିଦିନ ଆଉ ସୁସ୍ମିତା ଘରକୁ ଗଲେ ନାହିଁ କୁମାରେଶ । ତାଙ୍କୁ କେମିତି ଉଦାସ ଉଦାସ ଲାଗିଲା, କି ସଞ୍ଜ କି ସକାଳ । ସମୟ ପୁଣି ପଙ୍ଗୁ ପାଲଟିଗଲା ତାଙ୍କପାଇଁ । ସରିଲା ନାହିଁ ସମୟ, ପାହିଲା ନାହିଁ ଯେମିତି ଦୀର୍ଘରାତି । ସୁସ୍ମିତା କିନ୍ତୁ ବେଶି ବେଶି ମନେପଡ଼ିଲା । ଏହି ସମୟ ଭିତରେ ହଠାତ୍ ଗୋଟେ କବିତା ଲେଖିବାକୁ ତାଙ୍କୁ କିଏ ଯେମିତି ବାଧ୍ୟକଲା । ସେ ପୁରୁଣା ଡାଏରୀଟିଏ ବାହାରକଲେ ଆଲମିରାରୁ । ଧାଡ଼ି ପରେ ଧାଡ଼ି କବିତା ଲେଖିଚାଲିଲେ । ଶବ୍ଦର ଫୁଲସବୁ କିଏ ଯେମିତି ଫୁଟେଇଦେଲା ସାଦାକାଗଜ ଉପରେ । ସେ ନିଜେ ଚକିତ ହେଲେ, ବାରମ୍ବାର ପଢ଼ିଲେ କବିତାର ପଂକ୍ତିସବୁ । ତାଙ୍କୁ ଖୁବ୍ ଭଲଲାଗିଲା କବିତାଟି । ସେ ନିଜେ କବିତାଟି ଲେଖିଛନ୍ତି ବୋଲି ବିଶ୍ୱାସ ହେଲା ନାହିଁ ତାଙ୍କର ।

କବିତାଟି କାହାକୁ ହେଲେ ପଢ଼ି ଶୁଣେଇବାପାଇଁ ତାଙ୍କର ଖୁବ୍ ଇଚ୍ଛା ହେଉଥିଲା । କିନ୍ତୁ ତାଙ୍କ ପାଖ ପଡ଼ୋଶୀମାନଙ୍କ ଭିତରୁ କେହି କବିତାର ସୁକ୍ଷମ ଗ୍ରାହକ ଥିବାପରି ତାଙ୍କର ମନେହେଲା ନାହିଁ । ତା'ଛଡ଼ା କବିତାଟି କାଳେ କାହାକୁ ଭଲ ନ ଲାଗିବ, ସେ ଡରଟି ବି ଥିଲା କୁମାରେଶଙ୍କ ମନ ଭିତରେ । ତାଙ୍କର ପ୍ରଥମ କବିତାଟି ସେ କିନ୍ତୁ ସୁସ୍ମିତାକୁ ଶୁଣେଇବାପାଇଁ ଉତ୍ସୁକ ହେଉଥିଲେ । ଅଥଚ ସୁସ୍ମିତା ଘରକୁ ଯିବାପାଇଁ ତାଙ୍କୁ କେମିତି ମାଡ଼ିମାଡ଼ି ପଡୁଥିଲା ।

ଶନିବାର ସନ୍ଧ୍ୟାରେ ସେ କିନ୍ତୁ ସୁସ୍ମିତାର ଫୋନ୍ ପାଇଲେ । ଲାଜେଇ ଲାଜେଇ କହୁଥିଲା ସୁସ୍ମିତା, ମ୍ୟାଟିନି ସୋ' ଦେଖିଯିବାପାଇଁ । ବାଣୀବିହାର ବେଳର ଗୋଟେ ପୁରୁଣା ସିନେମା ପଡ଼ିଥିଲା ସମ୍ରାଟ୍ ହଲ୍‌ରେ ।

ରବିବାର ସକାଳ ଏତେ ନୂଆ ଲାଗୁଥିଲା କାହିଁକି କୁମାରେଶଙ୍କୁ । ଅନେକ ଦିନତଳୁ ପୋତିହୋଇ ପଡ଼ିଥିବା ନିଆରା ଅନୁଭବଟେ ଯେମିତି ମାଟିଫଟେଇ ମୁଣ୍ଡ ଟେକୁଥିଲା ଊର୍ଦ୍ଧ୍ୱକୁ । ଭାରି ହାଲୁକା ଲାଗୁଥିଲା ତାଙ୍କ ମନ, ଫୁଲପରି, ନା, ତା'ଠାରୁ ଆହୁରି ହାଲୁକା । ଗୋଟେ ଫୂର୍ତ୍ତିଭାବ ଉଛୁଳି ପଡୁଥିଲା ଓଠତଳୁ । ମଧୁର ପ୍ରତୀକ୍ଷାର ପ୍ରଲମ୍ବନ ଭିତରେ ଉବୁଟୁବୁ ହେଉଥିଲେ ସେ ।

ଦୁଇଟା ବାଜିବାକ୍ଷଣି ସୁସ୍ମିତା ଘର ଆଗରେ କାର୍ ଲଗେଇଲେ କୁମାରେଶ । ହର୍ଣ୍ଣ ଶବ୍ଦ ଶୁଣିବାମାତ୍ରେ ଘରୁ ବାହାରିଆସିଲା ସୁସ୍ମିତା । ଆଗରୁ ପ୍ରସ୍ତୁତ ହୋଇ ରହିଥିଲା ନିଶ୍ଚୟ । କେମିତି ନୂଆ ନୂଆ ଲାଗୁଥିଲା ସୁସ୍ମିତା । ସେ ହେୟାରଡାଏ କରିଥିଲା ।

ଧଳାକେଶର ବିଷଣ୍ଣତା ନ ଥିଲା ତା'ମୁଣ୍ଡରେ । ଈଷତ୍‌ନୀଳ ଶାଢ଼ିଟେ ପିନ୍ଧିଥିଲା । କାର୍ ଭିତରକୁ ପଶିଆସିଲାକ୍ଷଣି ମୃଦୁ ପରଫ୍ୟୁମ୍ ସଞ୍ଚରିଗଲା ଗାଡ଼ିସାରା ।

ପୁରୁଣା ପିକ୍‌ଚରଟା ନୂଆ ନୂଆ ଲାଗୁଥିଲା ବୋଧେ ସୁସ୍ମିତାକୁ । ସେ ମଗ୍ନହୋଇ ସିନେମା ପର୍ଦାକୁ ଚାହିଁ ରହୁଥିଲା । କୁମାରେଶ କେତେବେଳେ ବାଦାମ ଚୋବାଉଥିଲେ ତ କେତେବେଳେ ଅନ୍ୟମନସ୍କ ରହୁଥିଲେ । କିନ୍ତୁ କାହିଁ କେତେଦିନ ପରେ ସାଥିହୋଇ ସିନେମା ଦେଖିବାର ଚାର୍ମ ସେ ବେଶ୍ ଅନୁଭବ କରିପାରୁଥିଲେ ।

ସିନେମାହଲ୍‌ରୁ ଫେରିବା ବାଟରେ କୁମାରେଶ କବିତା ଲେଖିଥିବା କଥା କହିଲେ ସୁସ୍ମିତାକୁ । ସୁସ୍ମିତା ବିଶ୍ୱାସ କରିପାରିଲା ନାହିଁ କୁମାରେଶଙ୍କ କଥାକୁ । ଭାବିଲା, ସେ ଏମିତି ମଜା କରୁଛନ୍ତି ବୋଧେ ! କିନ୍ତୁ କୁମାରେଶ ଯେତେବେଳେ କହିଲେ, ସତରେ ସେ ଗୋଟେ କବିତା ଲେଖିଛନ୍ତି, ସୁସ୍ମିତା ଚକିତ ହେଲା । ''କେବେଠାରୁ କବିତା ଲେଖିଲ, କୁମାରେଶ''(?), ପଚାରୁ ପଚାରୁ ସେ ଫିକ୍‌କରି ହସିଦେଲା ଓ କବିତା ଶୁଣିବାପାଇଁ ଜିଗର କଲା । କୁମାରେଶ କହିଲେ, ''କବିତା ତ ଆଉ ଗାଡ଼ି ଭିତରେ ଶୁଣେଇ ହବ ନାହିଁ । ବରଂ ଚାଲ କେଉଁ ରେଷ୍ଟୋରାଁକୁ ଯିବା, କଫି ପିଇବା । କବିତା ବିଷୟରେ ଗପିବା ।'' ସୁସ୍ମିତା ଆପତ୍ତି କଲା ନାହିଁ । କିନ୍ତୁ କହିଲା, ''ଦେଖ ସଞ୍ଜପୂର୍ବରୁ ଯେମିତି ଘରକୁ ଫେରିବା ।''

ସ୍ନାକ୍ସ, କଫି, କଟ୍‌ଲେଟ୍ ଓ ଗପସପ ଭିତରେ ସଞ୍ଜ କୁଆଡ଼େ ହଜିଗଲା ଜଣାପଡ଼ିଲା ନାହିଁ । ବିଳମ୍ବିତ ସଞ୍ଜରେ ସୁସ୍ମିତାର ଘର ଆଗରେ ଗାଡ଼ି ରହିଲା । ସୁସ୍ମିତା କାର୍‌ରୁ ଓହ୍ଲାଇଲାବେଳେ କୁମାରେଶ ପଚାରିଲେ, ''ପୁଣି କେବେ ସିନେମା ଯିବା ?'' ''ଆଉ ନୁହେଁ'', କହୁକହୁ ସୁସ୍ମିତା ପୁଣି ଲାଜେଇଗଲା ଓ କାର୍‌ର ଡୋର୍ ବନ୍ଦ କଲା ।

ମନୋରମା ମୁମ୍ବାଇରୁ ଫେରୁ ନ ଥିଲେ । ଝିଅର ଇ.ଡି.ଡି. ଡେରିଥିଲା । କେବେ ତମେ ଫେରିବ ବୋଲି କୁମାରେଶ ବେଳେବେଳେ ଫୋନ୍‌ରେ ପଚାରୁଥିଲେ ମନୋରମାଙ୍କୁ । କିନ୍ତୁ ତାଙ୍କ ଉତ୍ତରକୁ ଅପେକ୍ଷା କରୁ ନ ଥିଲେ ।

ରୁଟିନ୍ ଚେକ୍‌ଅପ୍ ପାଇଁ ଯେତେବେଳେ କୁମାରେଶ କର କ୍ଲିନିକ୍‌କୁ ଗଲେ, ଡାକ୍ତର ପରୀକ୍ଷା-ନିରୀକ୍ଷା ପରେ କହିଲେ, ''ଆପଣଙ୍କ ବ୍ଲଡପ୍ରେସର୍ ନର୍ମାଲ୍, ସୁଗାର ପର୍‌ସେଣ୍ଟେଜ୍ ବି । ୟୁ ଆର୍ ଲୁକିଂ ଫ୍ରେଶ୍ ।'' କ୍ଲିନିକ୍‌ରୁ ଫେରୁଥିଲାବେଳେ କୁମାରେଶ ଅନୁଭବ କଲେ, ସତରେ ତାଙ୍କ ଭିତରର ବୁଢ଼ାପଣ କୁଆଡ଼େ ଉଭେଇ ଯାଇଛି । ଭାରି ସ୍ମାର୍ଟ ଲାଗୁଥିଲା ତାଙ୍କୁ ।

ଘରେ ପହଞ୍ଚି ଆଉ ଗୋଟେ କବିତା ଲେଖିବାପାଇଁ ତାଙ୍କ ମନ ବଳିଲା ।



# ସାହାଡ଼ା ସୁନ୍ଦରୀ

ରାମ ସେଠୀ ତା' ଚିରାଚରିତ ଢଙ୍ଗରେ କୁରାଢ଼ିରେ ମୁଣ୍ଡ ଛୁଆଁଇ ସାହାଡ଼ା ଗଛ ମୂଳରେ ଆସ୍ତେକରି ରାମଚଟା ମାଇଲା । ଦ୍ୱିତୀୟବାର ନିର୍ଘାତ ଚଟା ମାରିବାପାଇଁ ମଣଷେ ଉଞ୍ଚରୁ କୁରାଢ଼ି ଉଞ୍ଚେଇଲାକ୍ଷଣି ସେ ଯାହା ଦେଖିଲା, ସେଥିରେ ନିଜ ଆଖିକୁ ପରତେ ଯାଇଥା'ନ୍ତା କି ? ରାମଚଟା ବାଜିଥିବା ସାହାଡ଼ା ଗଛ ମୂଳରୁ ଲହୁ ଝରୁଥିଲା ଝରଝର । ପୋଖତ ଗଛକଟାଳି ରାମ ସେଠୀ ହାତରୁ କୁରାଢ଼ି କେତେବେଳେ ଖସି ମାଟିରେ ଲୋଟୁଥିଲା, ତାକୁ ଜଣା ନ ଥିଲା । ତା' ମୁଣ୍ଡ ଚକ୍‌କର କାଟିଲା ଯେମିତି ! ସେ ଲଥ୍‌କରି ଗଛମୂଳରେ ବସିଗଲା । ଗୋଟେ ନୂଆ ଭୁଆସୁଣୀର କାନ୍ଦଣା ସ୍ୱର ହଠାତ୍ ତା' କାନରେ ବାଜିଲା ।

ରାମ ସେଠୀ ଚାରିଆଡ଼କୁ ଚାହିଁଲା । ଅନିଷା କଲା, କୁଆଡୁ ଆସୁଚି କାନ୍ଦଣା । କାହିଁ କେଉଁଠି ତ କେହି ଦିଶୁ ନାହିଁ । ସକାଳ ଗଡ଼ି ଯାଇଛି ସିନା, ମାଟିରୁ ଛାଡ଼ିନି କାକରଛୁଆଁ । ସକାଳୁଆ ରେଣ୍ଟରେ ଥରିଯାଉଛି ଦିହ । ଗାଁ ଠାରୁ ଅଧମାଇଲିଏ ଦୂର ନଈକୂଳିଆ ଏ ଡାହାଣିଆ ପଦାକୁ କିଏ ବା କାହିଁକି ଆସିବ ? ପୁଣି କୋଉ ଭୁଆସୁଣୀର ଏଡ଼େ ବହପ ଯେ ସେ ଏ ନିଛାଟିଆ ଜାଗାକୁ ଆସିବାକୁ ଭରସିବ ?

ଗଛବୃଛରେ ଭର୍ତ୍ତି ଡାହାଣିଆ ପଦା । ତା' ଭିତରେ ଦିନ ଲାଗେ ରାତି ପରି । କେବେ ଖରା ପଡ଼େ ନାହିଁ ମାଟିରେ । ପାଖରେ ଗହୀରିଆ ନଈ । ଜନ୍ତୁଜନ୍ତାଙ୍କର ଆଡ଼୍‌ଡ଼ା, ଭୂତ ଖପିସଙ୍କର ଚରାଭୂଇଁ । ଝଙ୍କାଳିଆ ବରଗଛରେ ପରା ଥାଏ ଗୋଟେ ବୁଢ଼ା ଖପିସ, ଭାରି ଉତ୍‌ପାତିଆ । ଜାମୁଗଛ କୋରଡ଼ରେ ବ୍ରହ୍ମରାକ୍ଷସ ବସି ହାତେ ଜିଭ ଲମ୍ବେଇଥାଏ । ମହାନ୍ତିଘର କଲେଜପଢୁଆ ଝିଅ ବାପଘରେ ପେଟରେ ହେଇ ଫାଶି ଲଗେଇଥିଲା ଆମ୍ବଗଛ ଡାଳରେ । ତା' ପ୍ରେତାତ୍ମା କୁଆଡ଼େ ବେଳେବେଳେ କାନ୍ଦେ । ସେ କାନ୍ଦୁ ନାହିଁ ତ ଆଉ ? କିନ୍ତୁ ଦିନରେ ଯେ ଭୂତପ୍ରେତ ଶୋଇଥା'ନ୍ତି ମଲାପରି, ରାତିକୁ ଜୀବଦାନ ପାଆନ୍ତି । ସେ ଅଭିଆଡ଼ୀ ପ୍ରେତାତ୍ମା ଦିନରେ କାନ୍ଦିବ କେମିତି ?

ରାମ ସେଠୀ ସିଆଡ଼େ ଇଆଡ଼େ କାନ ପାରିଲା । ଜାଣିଲା, ବାହୁନା ଥମି ନାହିଁ । ସ୍ଥିର ହେଇ ବସିଲା, ଋଷି ପରି ଧ୍ୟାନରେ । କିଛି ସମୟ ପରେ ସାହାଡ଼ା ଗଛଟି କାନ୍ଦୁଛି ଜାଣି ସେ ଚିହିଁକି ପଡ଼ିଲା । ଜୀବନରେ ପାଞ୍ଚହଜାର ଗଛ, ହଜାରେ

ସରିକି ଛେଳି କାଟିଥିବା ରାମ ସେଠୀର ମନ କିନ୍ତୁ ପ୍ରଥମଥରପାଇଁ ଦବିଗଲା । ତା' ଭିତରଟା ଯେମିତି ପାଣି ପରି ଢଳଢଳ ହେଲା । ସେ ସାହାଡ଼ା ଗଛକୁ ଆଉଁଶି ଦେଲା, ଚଟା ବସିଥିବା ଜାଗାରେ ମାଟି ଭରିଦେଲା । କହିଲା, ''ମୋ ସୁନା ମା'ଟି ଲୋ, ତୁ ଭଲରେ ଥା ।''

ରାମ ସେଠୀ କୁରାଢ଼ି କାନ୍ଧରେ ପକେଇ ଫେରିଆସିଲା ଶିବବୋଉ ପାଖକୁ । କହିଲା, ''ଖୁଡ଼ୀ, ମୁଁ ଗଛ କାଟିପାରିଲି ନାହିଁ ।'' ଶିବବୋଉ ତାଜୁବ ହେଲା । ଚାଖଣ୍ଡେ ମୋଟର ସାହାଡ଼ା ଗଛକୁ ରାମ କାଟିପାରିବ ନାହିଁ, ଏ କି କଥା ! ରାମ ସେଠୀ ଶିବବୋଉ ମୁହଁର ଭାଷା ବୁଝିପାରିଲା । ଡାହାଣିଆ ପଦାରେ ଘଟିଥିବା ଅଘଟଣ କଥା ବଖାଣି ବସିଲା । ତହୁଁ ଶିବବୋଉ ମନରେ ଛନକା ପଶିଲା । ସେ ରାଣ ନିୟମ ପକାଇ ରାମକୁ କହିଲା, ବାବାରେ, ଏକଥା ଯେମିତି କାନରୁ ଦି' କାନ ନ ହୁଏ । ଶିବ କାନରେ ଏ କଥା ପଡ଼ିଲେ ସେ ବାଇବିଛ ପାଲଟିଯିବ । ତୋ ମଜୁରି ମାରା ହବ କିଆଁ ବୋଲି କହି ଶିବବୋଉ ତା' କାନିରୁ ଚକ୍‌ଚକିଆ ନୋଟ୍ କାଢ଼ି ରାମ ସେଠୀ ହାତକୁ ବଢ଼େଇଦେଲା ।

ସାହାଡ଼ା ଗଛର କାନ୍ଦଣା କଥା କିନ୍ତୁ ମୁହୂର୍ତ୍ତକ ଭିତରେ ଚରିଗଲା ଗାଁ ସାରା । ଡାହାଣିଆ ପଦାରେ ହାଟ ବସିଲା ଜାଣ । କି ଛୁଆ କି ବୁଢ଼ା, କି ମର୍ଦ୍ଦ କି ମାଇପେ ସଭିଏଁ ବାତୁଳ ହେଇ ଧାଇଁଲେ ସାହାଡ଼ା ଗଛ ଦେଖିବାକୁ । ଖରା ଗଡ଼ାଣିକୁ କିମ୍ଭୂତକିମାକାର ଗପସବୁ ତୁଣ୍ଡରୁ ତୁଣ୍ଡ ଘୂରିବୁଲିଲା ।

ବେଳ ରତରତ ହେଉଥାଏ, ଆକାଶ ଯେମିତି ମାଖି ହୋଇଥାଏ ନାଲି ଅଳତା । ଶିବ ସାହୁ ଅଲ୍ଲୀପୁର ଛକରେ ପହଞ୍ଚିଲା, ତିନିଟା ଟ୍ରଲିରେ ସଉଦା ଭର୍ତ୍ତି ।

ଶିବ ସାହୁ ମାସରେ ଥରେ ନ ହେଲେ ଦି'ଥର ଭଦରକ ମାଛୁଆଳିପଡ଼ିକୁ ଯାଏ ସଉଦା କରି । ଅଲ୍ଲୀପୁର ଛକରେ ତା'ର ବରାପିଆଜି ଦୋକାନ । କାହିଁ କେଉଁ ଦିନରୁ ତା' ବାପ ରତନା ସାହୁ ଅନାବାଦି ଜାଗା ଖଣ୍ଡେ ମାଡ଼ିବସି ଚା'ଦୋକାନ କରିଥିଲା । ଚା' ବିକୁ ବିକୁ ବରାପିଆଜି ବିକିଲା । ବରାପିଆଜି ସାଙ୍ଗରେ ଆଳୁଦମ୍, ଘୁଗୁନି । ଶିବ ଦେଇ ପାଠଶାଠ ହେଲାନି । ରତନା ସାହୁ ମାଷ୍ଟର୍‌ଙ୍କୁ ମାଗଣାରେ ଯେତେ ଚା' ପିଆଇଲେ କ'ଣ ହବ, ପୁଅର ତ ପାଠଘରେ ଶୂନ । ମେଟ୍ରିକ୍‌ଟା ବି ଡେଇଁ ପାରିଲାନି ଶିବ । ରତନା ସାହୁ ପୁଅ ଉପରେ ଦିକ୍‌ଦାର ହେଇ କହିଲା, '' ତୋ ଲଲାଟରେ ପାଠ ଲେଖା ହେଇ ନାହିଁ । ତୁ ବରାପିଆଜି ଛଣା ଶିଖ ।'' ଶିବ ଯେମିତି ବାପର ଏଇ କଥା ପଦକୁ ଅପେକ୍ଷା କରିଥିଲା । ଅଙ୍କ କଷିବା ଓ ଇଂରାଜୀ ଗ୍ରାମାର ବୁଝିବା ପରି ମାରାତ୍ମକ କାମରୁ ତାକୁ ମୁକ୍ତି ମିଳିଯିବାରୁ ସେ ବାପର ଡାହାଣ ହାତ ପରି ବରାପିଆଜି ଛଣା କାମରେ ଲାଗିପଡ଼ିଲା ।

କିନ୍ତୁ ବାପ୍ ସେ ବେଟା ଜ୍ୟାଦା । ଘୁଗୁନି ଆଉ ଆଳୁକଷା ବନେଇବାରେ ଶିବ ବାପକୁ ବଳିଗଲା । ତା' ହାତତିଆରି ଜିଲାପି ଓ ମାଲ୍‌ପୁଆ, ଯା' ମୁହଁରେ ଥରେ ଲାଗିଲା, ସେ ଧାନଚାଉଳ ବିକି ଅଲ୍ଲୀପୁର ଛକକୁ ଧାଇଁଲା । ରତନା ସାହୁର ମନ ଖୁସ୍ । ପାଠଶାଠ ନ ହେଲେ କ'ଣ ହବ, ଶିବ ଭାରି ପାରିବାର ପୁଅ । ତା' ମୁଣ୍ଡକୁ ହାତ ପାଇଗଲାଣି । ୟା'ଠୁ ବଳି ବଡ଼କଥା ଆଉ କ'ଣ ଅଛି ?

ରତନା ସାହୁ ପୁଅ ବାହାଘର କରିବାପାଇଁ ହକ ହକ ହେଲା । ଶିବବୋଉର ଗୋଡ଼ ତଳେ ଲାଗିଲା ନାହିଁ । ଦେବୀପ୍ରତିମା ପରି ବୋହୂଟେ ସେ ଘରକୁ ଆଣିବ । ବର୍ଷେ ଦି'ବର୍ଷକେ ନାତିନାତୁଣୀ ଖେଳେଇବ । ହେଲେ କିଏ ଜାଣିଥିଲା ବୁଢ଼ାଟା ହଠାତ୍ ଆରପୁରକୁ ଟିକେଟ୍ କାଟିବ ବୋଲି ! ଦେହ ନାହିଁ ପା'ନାହିଁ । ଜର ନାହିଁ ଝାଡ଼ା ନାହିଁ କି ବିଛଣାରେ ପଡ଼ିବାର ନାହିଁ । ବୁଢ଼ା ବରା ଛାଣୁ ଛାଣୁ ପଡ଼ିଗଲା । ପଡ଼ିଗଲା ଯେ ପଡ଼ିଗଲା ଆଉ ପାଟି ଫିଟିଲା ନାହିଁ । ଶିବ ଗାଡ଼ି କରି ବାପକୁ ଭଦରଖ ନେଇଗଲା । ଡାକ୍ତର ନାଡ଼ି ଚିପିକି କହିଲା, ବୁଢ଼ା ଆଉ ନାହିଁ । କ'ଣ ନା ହାର୍ଟ ଆଟାକ୍ ।

ବୁଢ଼ା ଅନ୍ତେ ଶିବ କିନ୍ତୁ ଛେଉଣ୍ଡ ହେଲା ନାହିଁ । ତା' ଦୋକାନ ଜାଣ ହୁ ହୁ ହୋଇ ବଢ଼ିଲା । ଦିନ କେତେଟାରେ ସେ ଉଠି ବସିଲା । ଏବେ ଉଭା ଯେତେ ପୋତା ସେତେ । ଦୋକାନଘର ପକ୍‌କା କରିସାରିଲାଣି । କାଚ ଆଲମିରାରେ ସଜେଇ ରଖିଛି ରକମ ରକମ ମିଠା । ଗୋଟେ ମିଠା ମିସ୍ତ୍ରି, ତିନିଟା ଟହଲିଆଙ୍କୁ ଖଟଉଛି । ବେପାରରେ ଠକାମି ନାହିଁ । ନିଜେ ଯାଇ ମାଛୁଆଳିପଟିରୁ ସଉଦା କିଣି ଆଣୁଛି । ଏତେ କମ୍ ବୟସରୁ ଏଡ଼େ ବୋଲମନା ହାତଖଣ୍ଡେ ପାଇଛି ଏକା ।

ଦି'ବର୍ଷ ହେବ ନୂଆକରି ଗୋରୁ ହାଟଟେ ବସିଲା ଅଲ୍ଲୀପୁର ଛକରେ । ତହୁଁ ଶିବର ବେପାର ବଢ଼ିଗଲା କାହିଁରେ କେତେ ? ବୁଧବାର ଦିନ ହାଟ ବସେ । ସେଦିନ ଶିବ ବରାପିଆଜି ବିକିବିକି ହାଲିଆ ହୋଇଯାଏ । ଦରଡ଼ାରୁ ଆସିବେ ଯେ ଗୋରୁବେପାରୀ, ଜଣକା ଡଜନେ ଦି' ଡଜନ ଲେଖାଏଁ ବରା ଚୋବେଇବେ । ଖାଇବେ ଦି' ଚାରି ପ୍ଲେଟ୍ ଆଳୁଦମ୍ ପୁଣି ତା'ସାଙ୍ଗରେ ଗରମ ଗରମ ଜିଲାପି । ନ ହେଲେ ମାଲପୁଆ । ତା'ପରେ ଗୋଟେ ଗୋଟେ ନିମିକି ଖାଇସାରି ଚା' ପିଇବେ । ତଳମାଳିଆ ଚଷା ଆସିବେ ଗୋରୁ କିଣି । ପ୍ଲେଟ୍ ପ୍ଲେଟ୍ ପିଆଜି ଘୁଗୁନି ଖାଇଯିବେ । ଫେରିଲାବେଳକୁ ପାଏ, ଅଧସେରେ ଛେନା ମୁଡ଼ୁକି ନେଇ ଘରକୁ ଫେରିବେ । ସମସ୍ତେ ଭିଡ଼ ଜମେଇଥିବେ ଶିବ ସାହୁ ଦୋକାନରେ । ଅନ୍ୟମାନେ ମାଛି ଗୋଡ଼ଉଥିବେ ।

ଶିବ ବାହାଘର ପାଇଁ ଶିବବୋଉକୁ ବେଶି ଦିନ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । କୁଆଡୁ ବୋଲି କୁଆଡୁ ଭଲଭଲ ପ୍ରସ୍ତାବ ସବୁ ଆସିଲା । ରୂପ ଗୁଣ ପୁଣି ବିଭବ କେଉଁଥିରେ ବା ଊଣା ଶିବର । ଗୋରା ତକତକ ଭେଣ୍ଡିଆଟା, ଉଚ୍ଚାରେ ଯେତେ,

ଆଡ଼ରେ ସେତେ । ଟଙ୍କା ତ ବୋହି ଆଣୁଚି ବେପାରରୁ, ତା' ସାଙ୍ଗକୁ ଚାଷବାସରୁ କିଛି କମ୍ ନୁହେଁ । ଶିବବୋଉ କହିଲା, ମୋ ବୋହୂଟି ଏମିତି ହେଇଥିବ, ଶିବ ସାଙ୍ଗରେ ଗଲାବେଳେ ହରପାର୍ବତୀ ଯୋଡ଼ି ପରି ଦୁଶିବ ନା ! ସତକୁ ସତ ସୁବର୍ଣ୍ଣ ପ୍ରତିମା ବୋହୂଟିଏ ସେ ଘରକୁ ଆଣିଲା ।

ଶିବ ମନେ ମନେ ଭାରି ଖୁସି ଥିଲା । ତା' ସ୍ତ୍ରୀ ସରି କିଏ ବା ହବ ଗାଁଟା ଯାକରେ । ଆଉଟାସୁନା ପରି ଦେହ । ତା' ବାପା ମା' ବୁଝି-ବିଚାରି ବି ନାଁ ଦେଇଛନ୍ତି କାଞ୍ଚନ । ଶିବ କେତେ ଝିଅବୋହୂ ଦେଖିଚି । ହେଲେ କାଞ୍ଚନ ପାଖରେ ସମସ୍ତେ ଫିକା ଦିଶିବେ । ଗୋସେଇଁ ସାହି କି ସାଆନ୍ତ ସାହିର ଝିଅବୋହୂ ବି କାଞ୍ଚନ ପାସଙ୍ଗରେ ପଡ଼ିବେ ନାହିଁ । ଶିବ କିନ୍ତୁ ସ୍ତ୍ରୀ ରୂପରେ ଢଳିବା ଭଳି ଲୋକ ନ ଥିଲା । ଘର ଘର, ବେପାର ବେପାର । ବେପାରରେ ହେଳା କରିବା ତା' ଜାତକରେ ନ ଥିଲା ।

କାଞ୍ଚନର ଯେବେଠାରୁ ମାସ ଗଡ଼ିଗଲା, ସେବେଠାରୁ ତା'ର ଛୋଟ ମୋଟ ବେମାର ଆମାର ବାହାରିଲା । ଶିବ ତାକୁ ସାଙ୍ଗରେ ନେଇ ଡାକ୍ତରାଣୀ ପାଖକୁ ଧାଇଁଲା । ଚିକିତ୍ସାରେ ରହିଲା କାଞ୍ଚନ । ଡାକ୍ତରାଣୀ ଆଶ୍ୱାସନା ଦେଲା, କିଛି ଅସୁବିଧା ନାହିଁ । ସବୁ ରିପୋର୍ଟ ଠିକ୍ ଅଛି ।' ଡେଲିଭରିର ତାରିଖ ବି ଦେଲା । କହିଲା, ''ମୋ ପ୍ରାଇଭେଟ୍ ଡାକ୍ତରଖାନାରେ ଏହି ତାରିଖର ସାତ ଆଠ ଦିନ ପୂର୍ବରୁ ଭର୍ତ୍ତି କରିଦେବ ।'' ଶିବ ଡାକ୍ତରାଣୀ ବାକ୍ୟକୁ ବେଦ ମଣିଲା । ଦିନ ଗଣିଲା । ଫେବୃଆରୀ ମାସ ଦୁଇ କି ତିନି ତାରିଖରେ କାଞ୍ଚନକୁ ସାଙ୍ଗରେ ଧରି ମାଡାମ୍‌ଙ୍କ ଡାକ୍ତରଖାନାରେ ପହଞ୍ଚିଗଲା ।

ଡେଲିଭରି ପାଖେଇ ଆସିଲାବେଳକୁ କାଞ୍ଚନ ଭାରି କଷ୍ଟ ପାଇଲା । ଦିନେ ଦି'ଦିନ ସେ ଯୋଉ ଦହଗଞ୍ଜ ଭୁଲିବାର ନୁହେଁ । ଡାକ୍ତରାଣୀ କହିଲା, ଅପରେସନ୍ ହବ, ଲାଗିବ ଟଙ୍କା ଦଶହଜାର । କେସ୍‌ଟା ଭାରି ଜଟିଳ । ଏକଥା ଶୁଣି ଶିବର ହାଲୁକ ଶୁଖିଗଲା । ''ପେଟ ଚିରାଗଲେ, ମା'ଛୁଆ ଭଲ ରହିବେ ତ ?'' ସେ ସାହସ ବାନ୍ଧି ଡାକ୍ତରାଣୀକୁ ପଚାରିଲା । ଡାକ୍ତରାଣୀ କହିଲା, ''ଚିନ୍ତା ନାହିଁ । ଆଜିକାଲି ଏସବୁ ଅତି ସାଧାରଣ କଥା ।''

କିନ୍ତୁ ତା' କଥା ସତ ହେଲା ନାହିଁ । ଅପରେସନ୍ ସରିଲାବେଳକୁ ମା'ଛୁଆଙ୍କ ପିଣ୍ଡରେ ପ୍ରାଣ ନ ଥିଲା ।

କାଞ୍ଚନ ବିନା ଶିବକୁ ଭାରି ଏକୁଟିଆ ଲାଗିଲା ସଂସାର । ବେଶ୍ କେତେଦିନ ସେ ଭଲରେ କାହା ସାଙ୍ଗରେ କଥା ହେଇପାରିଲା ନାହିଁ । ଦୋକାନରେ ଯାହା ମେସିନ୍‌ଟେ ପରି ବରାପିଆଜି ଛଣା କାମରେ ଲାଗିଲା ।

ବୋହୂର ଦଶାକଷା ସରିବା ପରଠୁଁ କିନ୍ତୁ ଆଉ ଗୋଟେ ବୋହୂ ଯୋଗାଡ଼ରେ ଲାଗିପଡ଼ିଲା ଶିବବୋଉ । ଯିଏ ଗଲା ତ ଗଲା, ସେ ଲାଗି ଝୁରିମରି ଲାଭ କ'ଣ ? ଶିବ ତ ଗୋଟେ ବୋଲି ପୁଅ । ବାହାଘରଟା ଶୀଘ୍ର ନ କରାଇଲେ ବଂଶ ରକ୍ଷା ହବ କେମିତି ? ମାଇପ ମଲାପରେ ଶିବଟା ଯେମିତି ଝାଉଁଳି ପଡ଼ିଚି । ଆଗ ସରାଗ ନାହିଁ ତା' ମନରେ । ଶିବ ଶ୍ୱଶୁର ଖୁବ୍ ଭଲ ଲୋକ । ଜୋଇଁଙ୍କୁ ଦ୍ୱିତୀୟ କରିବାପାଇଁ ସେ ତାଗିଦା କଲେ । ଫଗୁଣ ଶେଷକୁ ତାଙ୍କ ଆଡ଼ିଆ ଝିଅଟେ ଯୋଗାଡ଼ କଲେ । ଗରିବ ଘର ହେଲେ କ'ଣ ହବ, ଝିଅଟି ଗୋଟିଏ ଚାଉଳରେ ଗଢ଼ା । ତା' ବାପ ମୂଲମଜୁରି ଲାଗେ । ସବୁ ଭାଗ୍ୟ ଫଳ । ଆଗେ ତା'ର ଢେର୍ ଜମିବାଡ଼ି ଥିଲା । ଜମି ବିକିବିକି ଏବେ ନିଃସ୍ୱ । ହେଲେ ତାଙ୍କର ଖାନ୍ଦାନି ଯାଇ ନାହିଁ । ଶିବବୋଉ ରାଜି ହେଇଗଲା ପ୍ରସ୍ତାବରେ । ଦିଆନିଆ କିଛି ନାହିଁ । ତୋଳାକନିଆଁ ଜାଣ ।

କାଞ୍ଚନଠାରୁ ରୂପ ଗୁଣରେ ଊଣା ନ ଥିଲା ମିନତି । କାଞ୍ଚନଠୁଁ ବଳି ସୁନ୍ଦରୀ ନ ଥିଲେ ବି ସୁଶୀଳା । ଶିବବୋଉ ତ କାଞ୍ଚନ କଥା କେବେ ଠାରୁ ପାସୋରି ସାରିଥିଲା । ଶିବ ମନରୁ ବି କାଞ୍ଚନ ଚେହେରା ଆସ୍ତେ ଝାପ୍‌ସା ହୋଇଗଲା ।

ସବୁ ତ ଠିକ୍ ଚାଲିଥିଲା । ହେଲେ ବର୍ଷକ ପରେ ଶିବବୋଉ ଲଗେଇ ଲୁଟେଇ କମ୍ କହିଲା କି ମିନତିକୁ । ବୁଢ଼ୀ ତକେଇଥିଲା କେବେ ମିନତିର ମାସ ଗଡ଼ିବ । କିନ୍ତୁ ସେମିତି କିଛି ହେଲା ନାହିଁ । ''ନାତି ଖେଳେଇବାକୁ ମୁଁ ଆଉ କେତେକାଳ ବଞ୍ଚିଥିବି ଲୋ ବାଞ୍ଝ'', ବୁଢ଼ୀ ମୁହେଁ ମୁହେଁ କହିଲା । ଶିବ ପ୍ରତିବାଦ କଲେ ତାକୁ ମାଇପ ସୋହାଗିଆ ବୋଲି କହି ଗାଳି ଦେଲା । ବୁଢ଼ୀ ଉପରକୁ ଏମିତି ରାଉରାଉ ହେଲା ସିନା, ହେଲେ ମନେମନେ କେତେ ଦେବଦେବୀଙ୍କୁ ମନାସିଲା । ନାହାକ ଜ୍ୟୋତିଷଙ୍କ ପାଖକୁ ଧାଇଁଲା । କେତେକେତେ ଚେରମୂଳି ଯୋଗାଡ଼ କଲା । ତଥାପି ମିନତିର କିଛି ହେଲା ! ଯୋଉ କଥାକୁ ସେଇ କଥା । ଫି' ମାସ ବୁଡ଼ ।

ଦେଢ଼ବର୍ଷ ପାଖାପାଖି ଗତ ହେଲା ପରେ ଶିବ ମନକୁ କଥାଟା ଘାରିଲା । ମିନତିକୁ ସାଙ୍ଗରେ ଧରି କଟକ ବଡ଼ ଡାକ୍ତରଖାନାକୁ ଧାଇଁଲା । କେତେ କ'ଣ ପରୀକ୍ଷା-ନିରୀକ୍ଷା କରାହେଲା । ବୋତଲ ବୋତଲ ଔଷଧ, ଗଣ୍ଡାଗଣ୍ଡା ବଟିକା କିଣାଗଲା । ମିନତି ପିଛା ସୁଅପରି ପଇସା ଭସେଇଲା ଶିବ । କିନ୍ତୁ ଫଳ ଘରେ ଶୂନ୍ । ତଥାପି ଶିବ ଦମ୍ଭ ହାରିଲା ନାହିଁ । ଆଶା ବୈତରଣୀ ।

କିନ୍ତୁ ମିନତି ମନରେ ଉଠୁଥିଲା ଅସୁମାରି ଝଡ଼ । ସତେ କ'ଣ ସେ ପିଲାର ମା' ହବ ? କେବେ ତା' କୋଳ ପୂରିଉଠିବ । କେବେ ବାଳୁତ ପିଲାର ରାହାରେ ତାଙ୍କ ଘର କମ୍ପିବ । କେବେ ଯିବ ତା' ଦୁଃଖ । କେବେ ଅନ୍ତ ହବ ଶାଶୂର ଗଞ୍ଜଣା । ବୁଢ଼ୀ ତ ନାତି ଖେଳେଇବ ବୋଲି ପାଗଳୀ । ତା' ମୁହଁରେ ଆଉ ବାଡ଼ବତା ନାହିଁ ।

ମନକୁ ଯାହା ଆସିଲା, ତାହା ସେ ଓକାକିଲା । ମିନତି କିନ୍ତୁ କେବେ ବି ମୁହଁ ଖୋଲୁ ନ ଥିଲା । ଅଯଥାରେ ପାଟିତୁଣ୍ଡ ବଢ଼ିବ ଘରେ । ସାଇପଡ଼ିଶା ଏଣୁତେଣୁ କହିବେ । ଶାଶୂ ବୋହୂ କଳି ଦାଣ୍ଡରେ ପଡ଼ି ଘାଟରେ ଗଡ଼ିବ । ଶିବ କିନ୍ତୁ ତା' ବୋଉ ଉପରେ ବିରକ୍ତ ହୁଏ । କେବେ କେମିତି ପାଟିକରେ । ଚୁପ୍ ରହିବାକୁ କହେ ।

ଦିନେ ଅଘଟଣଟିଏ ଘଟିଲା । ରାନ୍ଧୁଣୀ ଗାଧୁଆବେଳ । ପରିବା ଯୋଗାଡୁଥିଲା ବୁଢ଼ୀ । ଶିବ ଥିଲା ଦୋକାନରେ । ବଡ଼ପୋଖରୀକୁ ଗାଧେଇ ଯାଇଥିଲା ମିନତି । ଢେର ସମୟ ପର୍ଯ୍ୟନ୍ତ ମିନତି ନ ଫେରିବାରୁ ବୁଢ଼ୀ ବକର ବକର ହେଲା । କାଛବାଡ଼କୁ ଉପଲକ୍ଷ୍ୟ କରି କହିଲା, ''କେତେ ଘଷିମାଜି ହଉଛି ଏ ଅପଯଶିଆଣୀଟା । ଅଫଳନ୍ତି ଗଛ, ତା' ସଜବାଜକୁ ଦେଖ !'' ତଥାପି ମିନତି ଫେରିଲା ନାହିଁ । ବୁଢ଼ୀ ରାଗ ତମତମ ହୋଇ ପୋଖରୀହୁଡ଼ାକୁ ଧାଇଁଲା । ସିମେଣ୍ଟ ତୁଠରେ ଥୁଆ ହୋଇଛି କଳସୀ, ବୋହୂ କାହିଁ ? ବୁଢ଼ୀର ତଣ୍ଟି ଶୁଖିଗଲା । ସେ ଆଉ ସମ୍ଭଳା ପଡ଼ିଲା ନାହିଁ । ସ୍ୱର ଲମ୍ବେଇ ବାହୁନିଲା । ପ୍ରଥମେ ଗାଁ ମାଇପେ ଧାଇଁ ଆସିଲେ ପୋଖରୀକୂଳକୁ । ପରେ ପରେ ବୁଢ଼ା, ଟୋକା, ପିଲାକବିଲା । ଗୁରୁବାରୀ ବୋଉ ପହିଲେ ଦେଖିଲା, କାହାର କାନି ଭାସୁଛି ପାଣିରେ । ଯାହାହେଉ ମାଝିପୁଅ ମକରା ସେଦିନ ନଈକୁ ଯାଇ ନ ଥିଲା । ପୋଖରୀକୁ ମାରିଲା ହୁମ୍ପା । ନିମିଷକେ ମିନତିକୁ ଟେକି ଆଣିଲା କୂଳକୁ । ମିନତି ସେତେବେଳକୁ ଅସାଡ଼ କାଠଗଡ଼ଟେ ଯେମିତି ।

ବୁଢ଼ୀ ମୁଣ୍ଡପିଟି ବାହୁନିଲା । କାହାଠାରୁ ଖବର ପାଇ ଶିବ ପହଞ୍ଚିଗଲା ପୋଖରୀତୁଠରେ ।

ଶିବ ହୀନକପାଳିଆଟା । ବାପଛେଉଣ୍ଡ ପିଲାଟାର କପାଳରେ କି ଦୁଃଖ ଲେଖିଥିଲା କେଜାଣି ଦଇବ ! ତା' ଛାତି ସହିଲା କେମିତି ? ଦି'ଟା ମାଇପ ମଲେ ଦି' ତିନି ବର୍ଷ ଅନ୍ତରରେ । ସେଥିରେ ପୁଣି ପୁଲିସ୍ ଦାରୋଗା କେଉଁଠୁଁ ସୁଙ୍ଗା ବାରି ଆସି ହାଜର ହୋଇଗଲେ । ତାଙ୍କ ନାଲି ଆଖି ଦେଖି ଶିବର ପିଳେହିପାଣି । ତା' ସାଙ୍ଗକୁ ଗାଁ ଟାଉଟର ମାତିଲେ । ସ୍ତ୍ରୀଲୋକମାନେ ମୁହଁ ମୋଡ଼ିଲେ ।

ପେଟ ଚିରା ଲାଗି ମିନତିର ଶବ ଗଲା ଭଦରକ । ଖାକି ପୁଲିସ୍ ବାନ୍ଧିନେଲା ଶିବକୁ । ଯୋଗକୁ ସରପଞ୍ଚ ସାଙ୍ଗରେ ଭାବ ଥିଲା ଶିବର । ଶିବ ଦୋକାନରୁ ନିତି ସେ ଚା'ପିଏ । ଶିବ ପଇସା ରଖେ ନାହିଁ । ବରଂ ତା' ଦରକାରବେଳେ ତା' ପକେଟରେ ଗାଡ଼ିଭଡ଼ା ଗୁଞ୍ଜିଦିଏ । ବୁଢ଼ା ପୋଖତ ଟାଉଟର ହେଲେ ବି ପର ଉପକାରୀ । ଶିବ ଶ୍ୱଶୁର, ଶଳାଙ୍କୁ ଡକେଇଲା । ଶିବବୋଉକୁ ଆଶ୍ୱାସନା ଦେଲା, ''ଥୟଧର ମାଉସୀ, ଶିବକୁ ମୁଁ ମୁକୁଳେଇ ଆଣିବି । ପୁଲିସ୍‌ର କେତେ ବୁଦ୍ଧି ଦେଖିବି ।''

ସରପଞ୍ଚ ବୁଦ୍ଧି ହାକିମଠୁଁ ବଳି । ଶିବ ଶ୍ୱଶୁର, ଶଳାଙ୍କଠାରୁ ସେ କ'ଣ ସବୁ ଲେଖେଇନେଲା । ଏମ୍.ଏଲ୍.ଏ.କୁ ଫୋନ୍ କଲା, ''ଶିବ ଆମ ଲୋକ । ପୁଣି ଭାରି ନିରୀହ । ତାକୁ ଡାଉରି କେସ୍‌ରେ ଫସେଇଦେବ ସେ ଘୁଷ୍‌ଖୋର ଥାନାବାବୁ । ତା'ପରେ ତାକୁ ଶୋଷିଚାଲିବ । ତା'ପାଇଁ ଥାନାବାବୁଙ୍କୁ ଫୋନ୍ କର । ଆଗକୁ ଇଲେକ୍ସନ୍ । ଶିବ ଭଳିଆ ମେଣ୍ଢାମାର୍କା ଭେଣ୍ଡାମାନଙ୍କୁ ବେଳହୁଁ ହାତେଇବାକୁ ହବ ।'' ସରପଞ୍ଚକୁ ସତରେ କିମିଆ ଜଣା । ପୁଲିସ୍‌ର ନାଲିଆଖି ବାଟେବାଟେ ଉଡ଼ିଗଲା । ତହିଁ ଆରଦିନ ସକାଳୁ ଘରକୁ ଫେରିଆସିଲା ଶିବ ।

ମିନତି ମଲାଦିନୁଁ ଶିବ ମୁହଁରୁ ଉଡୁରା ହସଖଣ୍ଡକ କିଏ ଯେମିତି ଛଡ଼େଇ ନେଇଥିଲା । ଶିବ ବୋଉ ମନରେ ବି ଆଉ ସରାଗ ନ ଥିଲା । ବଂଶରକ୍ଷା ହବ କେମିତି ବୋଲି ଭାଳି ହୋଇ ସେ ନିକାଞ୍ଚନରେ ବାହୁନୁଥିଲା । ତଥାପି ତା' ମନରୁ ଆଶା ମଉଳି ନ ଥିଲା ।

ପୁଷ ଯାଇ ମାଘ ହେଲା । ସୁଲୁସୁଲିଆ ଶୀତଳ ବାଆରେ ପାଚିଲା ଧାନବିଲ ଛଇ କାଢ଼ିଲା । କ୍ଷେତଠୁଁ ଖଳା ପର୍ଯ୍ୟନ୍ତ ସବୁଠି ଲକ୍ଷ୍ମୀମନ୍ତ ଭାବ । ଶିବବୋଉ ମନରେ ବି ନୂଆ ଭାବଟେ ଲହଡ଼ି ଭାଙ୍ଗିଲା । ସେ ଟିଆ ନାହାକ ପାଖକୁ ବେଉରା ପଠେଇଲା । ଦିନେ ଭାତଖିଆବେଳ ଗଡ଼ିଛି କି ନାହିଁ ବୁଢ଼ା ଆସି ହାଜର । ନାହାକକୁ ଦେଖୁଦେଖୁ ଶିବବୋଉ ଆସନ ପାରିଦେଲା, ଥୋଇଦେଲା ଢାଳେ ପାଣି । ନାହାକେ ଆସନ ଉପରେ ଚେକାମାଡ଼ି ବସିଲେ ଓ 'ଓଁ ଶନିଶ୍ଚରାୟ ନମୋନମଃ' ଉଚ୍ଚାରଣ କରି ତାଙ୍କ ସ୍ୱଭାବସୁଲଭ ସଂସ୍କୃତମିଶା ଭାଷାରେ କହିଲେ, ''ମୋତେ କାହିଁକି ସ୍ମରଣ କଲ ମାତ ?'' ଶିବବୋଉ ଶିବର ଜାତକ ଖଣ୍ଡକ ନାହାକଙ୍କ ପାଖରେ ଥୋଇ ଦେଇ କହିଲା, ''ନାହାକେ, ମୋ ଭେଣ୍ଡାପୁଅ କ'ଣ ବାଆଜି ବଇଷ୍ଣବ ହୋଇ ରହିଯିବ ! ମୋ କୁଳରକ୍ଷା ହବ କେମନ୍ତେ ? ତା'ର ଗ୍ରହରାଶି କ'ଣ କେଜାଣି ଦି' ଦି'ଟା ଭାରିଯା ମଲେ । ଏବକୁ କିଛି ଉପାୟ ବତାଅ ।''

ନାହାକେ ମୁଣିରୁ ସିଲଟଖଡ଼ି କାଢ଼ିଲେ, ପାଞ୍ଜି ବି । ସିଲଟ ଉପରେ ଗାର କାଟିଲେ । ପାଞ୍ଜି ଖୋଲିଲେ । ଯାବତ୍ୟ ଶ୍ଳୋକ ବୋଲିଲେ । ମଝିରେ ଦି'ଥର ନାସ ଶୁଙ୍ଘିଲେ । ତା'ପରେ ଯାଇ କହିଲେ, ''ମାତ, ତମ କୋଳରେ ଅବଶ୍ୟ ନାତି ଖେଳିବ । କିନ୍ତୁ...,'' ନାହାକେ 'କିନ୍ତୁ' କହିଲାକ୍ଷଣି ଶିବବୋଉ ଛାତିରେ ଛନକା ପଶିଲା । 'କିନ୍ତୁ' କ'ଣ ନାହାକେ, ସେ ପଚାରିଲା । ''ଗୋଟାଏ ଉପଚାରର ଆବଶ୍ୟକତା ରହିଛି । ତାହା କରିବାକୁ ହିଁ ହେବ । ନୋଚେତ୍ ବିଭ୍ରାଟ ଘଟିବାର ସମ୍ଭାବନା ରହିଛି,'' ନାହାକେ କହିଲେ । ବିଭ୍ରାଟ ପରି ଶବ୍ଦଟି ଯେମିତି ଗୋଟେ ଝଡ଼ ସୃଷ୍ଟି କଲା ଶିବବୋଉ ମନ ଭିତରେ । ନାହାକେ ତାହା ଅବଶ୍ୟ ଅଚିରେ

ବୁଝିଗଲେ । କହିଲେ, ''ଅସ୍ଥିର ହବାର କୌଣସି କାରଣ ନାହିଁ । ଶିବକୁ ଆଉଥରେ ବାହାକରିବା ପୂର୍ବରୁ ଏକ ସାହାଡ଼ାଗଛ ସହିତ ତା'ର ବିବାହ ଅପରିହାର୍ଯ୍ୟ । ଅନ୍ୟଥା ତୃତୀୟ ପତ୍ନୀଟିର ମୃତ୍ୟୁ ଘଟିପାରେ ବା ଶିବ...'' ଶିବବୋଉ ନାହାକଙ୍କ ତୁଣ୍ଡରେ ହାତଦେଇ ଅବଶିଷ୍ଟ କଥା କୁହାଇଦେଲା ନାହିଁ । ସବୁ ଉପଚାର କରିବାକୁ ମୁଁ ରାଜି ବୋଲି କହି ତିନି ସେର ଚାଉଳ, ତିନୋଟି ନଡ଼ିଆ ଓ ତିନୋଟି ଦଶଟଙ୍କିଆ ନୋଟ୍ ନାହାକଙ୍କ ସମୀପରେ ଥୋଇ ସେ ହାତଯୋଡ଼ିଲା ।

ଏକ ଶୁଭଲଗ୍ନରେ ଡାହାଣିଆପଦାର ସାହାଡ଼ା ଗଛ ସାଙ୍ଗରେ ଶିବର ବାହାଘର ହେଲା ଶାସ୍ତ୍ରମତେ ।

ଏଥର ଶିବବୋଉକୁ ଭାରି ଉଶ୍ୱାସ ଲାଗିଲା । ଶିବର ସବୁ ରିଷ୍ଟ ଖଣ୍ଡନ ହେଲା । ବାହାଘର ଆଉ କେତେ ବା ଦୂର ।

ଶିବ ମନରେ କିନ୍ତୁ ସରାଗ ନ ଥିଲା । ବାହାହବା କଥା କହିଲେ ସେ ଚମ୍ପା କି ମଲ୍ଲୀ କିଛି ବି କହୁ ନ ଥିଲା । ଏବେ ନୁହେଁ ପରେ ଦେଖିବା ବୋଲି କହି ବେଳେବେଳେ ସେ ତା' ବୋଉ କଥାକୁ ହାଲୁକା କରିଦେଉଥିଲା । ଯା'ଭିତରେ ବୁଢ଼ୀ ପାଞ୍ଚଖଣ୍ଡ ଗାଁ ପାରିହେଇ ଗୋଟେ କନିଆଁ ଦେଖିସାରିଥିଲା । ତା' ମନ ବି ବେଶ୍ ମାନିଥିଲା । ହେଲେ କନିଆଁ ଦେଖିଯିବା ଲାଗି ଶିବ ଜମା ମଙ୍ଗିଲା ନାହିଁ । ଆର ସନକୁ ଦେଖିବା ବୋଲି କହି ସେ ଚୁପ୍ ରହିଲା । ହେଲେ ବୁଢ଼ୀ କୋଉ ଛାଡ଼ିବା ମଣିଷ । ଶିବକୁ ଯାଉଣୁ ଆସୁଣୁ ଖୋଞ୍ଚିଲା । ଶିବ ଦିନେ ଚିଡ଼ିଉଠି କହିଲା, ''ଖବରଦାର, ବୋଉ ତୁ ଆଉ ବାହାଘର ସାହାଘର ନାଁ ଯେମିତି ନ ଧରୁ । ମୋ ଦୋକାନ କାମ ମୋତେ ବଳଉଛି । ଏବେ ସେଠି ପୁଣି ହୋଟେଲ୍ କରିବି । ବାହାଘର ଝାମେଲାରେ ମୋତେ ଆଉ ପୂରାନା ।''

ଏଣୁତେଣୁ କହି ତା' ବୋଉକୁ ସିନା ଚୁପ୍ କରେଇଦେଲା, ହେଲେ ନିଜ ଭିତରେ ଶିବ ଚୁପ୍ ହେଇ ରହିପାରୁ ନ ଥିଲା । ତା'ଦୋକାନ ଚାଲିଥିଲା ଭଲରେ କିନ୍ତୁ ଦୋକାନ ପ୍ରତି ଆଉ ତା'ର ମମତା ନ ଥିଲା । ତା'ଆଳୁକଷା ମସଲା ଛୁଙ୍କରେ ସାରା ଅଲ୍ଲୀପୁର ଛକ ମହକୁଥିଲା । କିନ୍ତୁ ସେସବୁ ଥିଲା ତା' ହାତର ବାହାଦୁରି, ମନର ନୁହେଁ । ସେ ମାଢ଼ୁଆଳିପଛି ଯାଉଥିଲା, ସଉଦା ଖରିଦ୍ କରୁଥିଲା । ଅଥଚ ତା' ମନ ବାୟାଚଢ଼େଇ ପରି ଏଣେତେଣେ ଘୂରିବୁଲୁଥିଲା । ସାହାଡ଼ା ଗଛକୁ ବାହାହବା ଦିନୁଁ ଏମିତି କାହିଁକି ହେଉଥିଲା କେଜାଣି, ସେ ନିଜେ ବି କିଛି ବୁଝିପାରୁ ନ ଥିଲା ।

ଦୋକାନକୁ ଗଲାବାଟରେ ପଡ଼େ ଡାହାଣିଆପଦା । ଯିବାଆସିବାବେଳେ ଶିବ ସାଇକେଲ୍‌ର ଗତି ଧିମା ହେଇଯାଏ ଡାହାଣିଆପଦା ପାଖରେ । । ତା' ଆଖି ଆପେଆପେ ଲମ୍ବିଯାଏ ଗଛପତର ଗହଳି ଭିତରକୁ । ସେ ଅନ୍ୟମନସ୍କ ହୋଇପଡ଼େ । ବେଳେବେଳେ ଭାବେ, ଯାହାର ସେ ହାତ ଧରିଲା ତାକୁ ଏମିତି ଅପନ୍ତରା ଜାଗାରେ

ଏକା ଏକା ଛାଡ଼ିଯିବାର କ'ଣ ଠିକ୍ ହେଇଛି ? ଆହା– କେମିତି ସେ ଦିନ କାଟୁଥିବ, କେମିତି ବିତଉଥିବ ରାତି ? ତାକୁ କ'ଣ ଡର ମାଡୁ ନ ଥିବ ? ଏମିତି ଭାବୁଭାବୁ ଶିବ ନିଜକୁ ନିର୍ବୋଧ ମନେକରେ । ଆରେ ଗଛ ତ ଗଛ, ତା'ପ୍ରତି ଏତେ ମାୟା ମମତା କାହିଁକି ? ଶିବ ନିଜେ ବି ବୁଝିପାରେନି ଏ ଭାବ । ଭାବେ ଆଉ ସାହାଡ଼ା କଥା ଭାବିବ ନାହିଁ । କିନ୍ତୁ ନ ଭାବିବ ବୋଲି ଭାବିଦେଲେ ତା'ର ବେଶି ବେଶି ମନେପଡ଼ିଯାଏ ସାହାଡ଼ା-ସୁନ୍ଦରୀ ।

ଦିନେ ଉଦୁଉଦିଆ ଖରାବେଳେ ଘରଫେରନ୍ତା ବାଟରେ ସେ ସିଧା ଡାହାଣିଆ ପଦା ଭିତରକୁ ଟାଣି ହେଇଗଲା । ହିଡ଼ହୁଡ଼ାର ଆକଟ କିଛି ମାନିଲା ନାହିଁ ତା' ରାଲେ ସାଇକେଲ୍ । ବାହାଘର ଦିନ ଯେମିତି ନାଲି ଓଢ଼ଣା ପକେଇଥିଲା ସାହାଡ଼ା, ଶିବକୁ ଠିକ୍ ସେମିତି ଦିଶିଗଲା ତା'ଚେହେରା । ଶିବ ଯାଇ ସାହାଡ଼ା ମୂଳରେ ବସିଲା । ହଠାତ୍ ପାଉଁଜିର ରିମ୍‌ଝିମ୍ ତା' କାନରେ ବାଜିଲା । ସେ ଏଣେତେଣେ ଚାହିଁଲା । ''ନା, ଏ ପାଉଁଜି ସାହାଡ଼ାର ନିଶ୍ଚୟ'' ସେ ଭାବିଲା । କିଛିକ୍ଷଣ ଯାଇଛି କି ନାହିଁ ପୁଣି ଝମ୍‌ଝମ୍ ସ୍ୱର । ଶିବ ଶିହରିତ ହେଲା । ରହିରହି ଏ ଯେଉଁ ଶୁଭୁଛି ଚୁଡ଼ି ଶବ୍ଦ, ସେ ସାହାଡ଼ାର ନୁହେଁ ତ ଆଉ କାହାର ? ଶିବ ଅନୁଭବ କଲା ଯେମିତି କେରାକେରା ହସଫୁଲ ଅଜାଡ଼ି ହେଇପଡୁଚି ତା' ଉପରେ । ତା'ପରେ ତା'ର ଆଉ କିଛି ମନେ ନାହିଁ । ଧଡ଼ପଡ଼ ହେଇ ଉଠିଲାବେଳକୁ ଆକାଶରେ ସୂରୁଯ ନ ଥିଲା; ଅନ୍ଧାର ଯେମିତି ଧୀରେ ଓହ୍ଲଉଥିଲା ମାଟିକୁ ଝଙ୍କାଳିଆ ଓସ୍ତଗଛ ଓହଳରୁ । ସେ ତରତର ହେଇ ଦୋକାନକୁ ଫେରିଲା ଓ ଫେରୁଫେରୁ କହିଲା, ''ମନ ଊଣା କରିବୁନି ଲୋ ସାହାଡ଼ା, ମୁଁ ତୋ ପାଖକୁ ନିତି ଆସୁଥିବି ।''

ଶିବ ତା' କଥା ଛୁଡ଼ିଲା ନାହିଁ । ଗଲାଆଇଲା ବାଟରେ ସେ ସାହାଡ଼ାକୁ ଦେଖିଯାଏ, କ'ଣ କେଜାଣି ଫୁସ୍‌ଫୁସ୍ ହେଇ କହେ !

ଦିନେ ହେଇଥିଲା ଜହ୍ନରାତି । ଖଇ-କଉଡ଼ିର ଫେଣ୍ଟାଫେଣ୍ଟି ରଙ୍ଗରେ ଚହଟ ଦିଶୁଥିଲେ ଗଛଲତା, ବିଲପାଟ । ଚଇତି ପୁନେଇଁ ବୋଧେ ବେଶି ଡେରି ନ ଥିଲା । ଶିବ ସାଇକେଲ୍ ମୋଡ଼ି ହେଇଗଲା ଡାହାଣିଆପଦା ଭିତରକୁ । ସାହାଡ଼ା ପାଖରେ ଯାଇ ଠିଆ ହେଲା । ପୋଖରୀ ଭିତରେ ଗାଧୋଉଥିଲା ଜହ୍ନ । ଶିବ କହିଲା, ''ସାହାଡ଼ାଲୋ, ତୁ କ'ଣ ଆଜି ଉଁ କି ଚୁଁ ହଉନୁ । ମାନ କରିଛୁ କି ଲୋ ମଉନାବତୀ ?'' ଏତିକି କଥା ତା'ର ସରିଛି କି ନାହିଁ, କାହା ପ୍ରଶ୍ୱାସ ଯେମିତି ବାଜିଲା ତା'ଛାତିରେ । ସେ ସାହାଡ଼ା ପାଖକୁ ଆହୁରି ଘୁଞ୍ଚିଘୁଞ୍ଚି ଗଲା । ସାହାଡ଼ାର କଟିକୁ ବେଢ଼ିଯିବାପାଇଁ ତା'ହାତ ଦୁଇଟି ଲମ୍ବିଗଲା ଏକା ସାଙ୍ଗରେ । ଶିବର ମନେହେଲା ସେ ଗୋଟେ ଅନୂଢ଼ା ଦିହକୁ ଯେମିତି ଛୁଇଁ ଯାଉଛି ।

ସେଦିନ ଶିବ ଘରକୁ ଫେରିଲାବେଳକୁ ଜହ୍ନ ଦୂର ଦିଗ୍‌ବଳୟର ମହୁଡ଼ ଛୁଇଁବାକୁ ହାତେ ଖଣ୍ଡେ ବାକିଥିଲା ।

ଶିବର ଏ ବେସୁରା ଭାବ ଗାଁର ସମସ୍ତଙ୍କୁ ତାଜ୍ଜୁବ୍ କରିସାରିଥିଲା । ଅଲ୍ଲୀପୁର ଛକଠାରୁ ଗାଁ ଦାଣ୍ଡ, ମାଇପି ମେଳରୁ ପଞ୍ଚୁଆତି– ସବୁଠି ଚାଲିଥିଲା ଶିବ ଚର୍ଚ୍ଚା । କେହିକେହି କହୁଥିଲେ ଦି'ଦି'ଟା ମାଇପ ମଲାପରେ ଶିବ ମୁଣ୍ଡ ବିଗିଡ଼ି ଯାଇଛି ତ ଅନ୍ୟ କେହି କହୁଥିଲେ ଏଟା ଗୋଟେ ବେମାରି । ବୟସ୍କ ଲୋକମାନେ କିନ୍ତୁ କହୁଥିଲେ ବିଚରା ଶିବକୁ କିଏ ଗୁଣିଟୁଣି କରିଛି । କିନ୍ତୁ ମାଇପି ମହଲରେ କଥାଥିଲା ଅନ୍ୟ ପ୍ରକାରେ– ଟୋକାଟା ଭୂତୁଣୀ ପାଲରେ ପଡ଼ିଯାଇଛି ।

ଶିବବୋଉ ସାଇପଡ଼ିଶାଙ୍କ ଚଉଦପୁରୁଷର ଗୋହି ଖୋଳି ଗାଳିଦେଲା । ଗାଁ ମାଇପିଙ୍କୁ ମୁହେଁ ମୁହେଁ କହିଲା, ''ହଇଲୋ ରାଣ୍ଡେ, ସଜ ମାଉଁସରେ ପୋକ ପକଉଛ, ମଲାବେଳକୁ ପୋକପଡ଼ି ମରିବ । ମୋ ଘର ବୁଡ଼ଉଚ, ନରକରେ ବି ତମକୁ ବାସ ମିଳିବ ନାହିଁ ।'' ହେଲେ ଶିବକୁ କିଛି କହିପାରିଲା ନା ନ କହି ରହିପାରିଲା । ସାରା ରାତି କାନ୍ଦିକାନ୍ଦି ବିଛଣା ଭିଜେଇଲା । ବୁଢ଼ୀ କାନରେ କିଏ ମନ୍ତ୍ର ଫୁଙ୍କିଲା କେଜାଣି, ସେ ଭାବିଲା ସତେ ତ, ବାଉଁଶ ଥିବ ନା ବାଂଶୋରୀ ବାଜିବ । ସାହାଡ଼ା ଗଛକୁ ହାଣିଦେଲେ ଗଲା । କିନ୍ତୁ ନମକ୍‌ହାରାମ ରାମ ସେଠୀ କଥାଟାକୁ ପ୍ରଘଟ କରିଦବ ବୋଲି କ'ଣ ସେ ଜାଣିଥିଲା ।

ମାଳୁଆଳିପଟିରୁ ଫେରି ସଉଦା ଓହ୍ଲଉଓହ୍ଲଉ ଶିବ କାନରେ କଥାଟା ପଡ଼ିଲା । ସେ ହଠାତ୍ କିଛି ବୁଝିପାରିଲା ନାହିଁ ଆଉ ବୁଝିଲାକ୍ଷଣି ତା'ର ମନେହେଲା ତା' ପାଦତଳେ ଯେମିତି ଆଉ ମାଟି ନାହିଁ । ତା' କାମ ସେଇଠୁ ରହିଲା । ସେ ସଞ୍ଜ ଅନ୍ଧାରରେ ସିଧା ଚାଲିଲା ଡାହାଣିଆପଦା । କିଟିମିଟି ଅନ୍ଧାର ଭିତରେ ସେ ସାହାଡ଼ା ମୂଳରେ କ୍ଷତଚିହ୍ନ ସ୍ପଷ୍ଟ ଦେଖିପାରିଲା । କେତେ ସୋହାଗରେ ଆଉଁଶି ଦେଲା ତା' ଦିହ । କହିଲା, ''ମୁଁ ନ ଥିଲି ବୋଲି ତୁ କେତେ କଷ୍ଟ ପାଇଲୁ ଲୋ ସାହାଡ଼ା । ତୋଠୁଁ ମୋତେ କେହି କ'ଣ ଅଲଗା କରିପାରିବ ?''

ରାତି ଅଧକୁ ଘରକୁ ଫେରିଲା ଶିବ । ତା' ଚଣ୍ଡ ମୂର୍ତ୍ତି ଦେଖି ଭୟ ପାଇଗଲା ବୁଢ଼ୀ । ଶିବ ମାରିବ କି ମରିବ । ଉଞ୍ଚେଇଲା ଯେ ତା' ଗଦାମିତି ହାତ । କିନ୍ତୁ ରହିଗଲା । ବୁଢ଼ୀ ନ ହେଲେ ମାଟି ଖାଇଥା'ନ୍ତା । ଶିବ ଖାଇଲାନି ପିଇଲାନି, ତିନି ଦିନ ତିନି ରାତି ଖଟରେ ମୁହଁମାଡ଼ି ଶୋଇଲା ।

ଶିବ ପିଟୁ କି ବାଡ଼ଉ ତା' ବା'ଘରଟା ନ ସାରି ଶିବବୋଉ ନା ମରିପାରୁଥିଲା ନା ବଞ୍ଚିପାରୁଥିଲା । ଛ'ମାସ ଗଡ଼ି ଯାଇଥିଲେ ବି କନିଆଁ ପକ୍ଷ ଶିବର ହଁ ନା'କୁ ଅପେକ୍ଷା କରି ରହିଥିଲେ । ମଧ୍ୟସ୍ଥ ଚଗଲା ତିହାଡ଼ୀ ଆଉ ଗଣ୍ଡେ ଛ'ଟା ପ୍ରସ୍ତାବ ଯା' ଭିତରେ

ଦେଇସାରିଥିଲା । କିନ୍ତୁ ଶିବର ଯୋଉ ନ'ରେ ବାଡ଼ି ନା କୁ ସେହି ନ'ରେ ବାଡ଼ି ନା । ବା'ଘର କଥା ଶୁଣିଲେ ସେ ଫିଡ଼ିକି ଯାଉଥିଲା । ଶିବବୋଉକୁ ଆଉ ଅଛପା ନ ଥିଲା ଯେ ଶିବ ମଗଜରୁ ସାହାଡ଼ା ଭୂତ ନ ଛାଡ଼ିଲେ ସେ ଆଉ ବାହାହବ ନାହିଁ ।

ମାସେ ପନ୍ଦର ଦିନ ଗଲା । ଶିବ ଦୋକାନ କାମରେ ମାତିଲା । ଶିବବୋଉ ସେହି ମଉକାରେ କ'ଣ କଲା ନା ନଣ୍ଡା ବିଶ୍ୱାଳ ହାତରେ ଟିଆ ନାହାକକୁ ଡକେଇ ପଠେଇଲା । ଶିବବୋଉର ତାଗିଦା ଶୁଣି ନାହାକେ ବସିବା ଥାନରୁ ଉଠି ଆଇଲେ । ନାହାକଙ୍କ ଆଗରେ ଶିବବୋଉ ସବୁକଥା କହିଗଲା, ଟିକେ କିଛି ପେଟରେ ରଖିଲା ନାହିଁ । ସବୁ ଶୁଣି ନାହାକେ ସାଧୁ ଶବ୍ଦରେ କହିଲେ, ''ଏ କାମ ମୋର ନୁହେଁ ମାତ । ବହଳପାଳର କାଳୀସାଧକ ନିତେଇ ଦାସ ନିରାକରଣର ମାର୍ଗ ଅବଶ୍ୟ ବତାଇ ପାରିବେ । ତେବେ ସେ ମୋର ସମଧର୍ମା । ତାଙ୍କ କଥା ମୁଁ ବୁଝିବି ।'' ନାହାକଙ୍କ କଥା ସରିଛି କି ନାହିଁ, ଶିବବୋଉ ଯେମିତି କୋଟିନିଧି ପାଇଗଲା । କହିଲା, ''ନାହାକେ ଆଜ୍ଞା, ଏ ବାବଦରେ ପଇସାକୁ ପରବାୟ ନାହିଁ ବୋଲି ବୁଝିବେ । ଖାଲି ଏକଥା ପ୍ରଘଟ ନ ହେଲେ ହେଲା । ଅସହଣି ଗାଁ ମାଇପେ ତିଳକୁ ତାଳ କରିବେ । ଆଉ ମୋ ଶିବ କଥା ଛାଡ଼, ତା' କାନରେ କିଛି କଥା ବାଜିଲେ ସେ ମୋତେ ଜିଅନ୍ତା ଖାଇଯିବ ।'' ନାହାକେ ଉତ୍ସାହିତ ହେଲେ । ଗଭୀର ରାତିରେ ଗଛ ଚଳେଇବା, ଭୂତପ୍ରେତମାନଙ୍କ ସହ ବାର୍ତ୍ତାଳାପ କରିବା, ବେତାଳ ପେଷଣ ପୂର୍ବକ ଅସାଧ୍ୟ ସାଧନ କରିବା କଳାରେ ନିପୁଣ ତାଙ୍କ ବନ୍ଧୁ ନିତେଇ ଦାସ ବୋଲି କହି ନାହାକେ ସେଦିନ ବିଦାୟ ନେଲେ । ବୁଝେଇଦେଲେ ପୁଣି, ''କଥା ପ୍ରଘଟ କାହିଁକି ହେବ ମାତ ? ନିତେଇ ଦାସଙ୍କୁ ସ୍ଥାନ, ପାତ୍ର, ବତାଇଦେଲେ ସେ କାଳ କଳନା କରି ଘରେ ବସି ସବୁ ଠିକ୍ କରିଦେବେ ।'' ଶିବବୋଉ ଆଶ୍ୱସ୍ତ ହେଲା । ମନେମନେ ବାବାମଣିଙ୍କ ପାଦରେ ଗଣିଗଣି ଶହେ ଆଠ ମୁଣ୍ଡିଆ ମାଇଲା ।

ଦିନେ ହଠାତ୍ ଶିବ ଆବିଷ୍କାର କଲା ସାହାଡ଼ା ଶୁଖି କାଠ ପାଲଟି ଯାଇଛି । ସେ ଛାତି ଫଟେଇ ଚିତ୍କାର କଲା । କାନ୍ଦିକାନ୍ଦି ବେହୋସ୍ ହୋଇଗଲା ।

ସେହିଦିନଠଉଁ ଶିବ ସାହୁ ଆଉ ଘରକୁ ଫେରିନି ।



# ଭାରି ମେଘରାତି

ସମୁଦ୍ର ଓ ଆକାଶ ଯେଉଁଠି ସରିଯା'ନ୍ତି, ତା'ପରେ ଆଉ କ'ଣ ଥାଏ । କୁନ୍ତଳା ନିଜକୁ ପଚାରୁଥିଲା ଓ ଭାବୁଥିଲା ଜଗା ସେହି ଅଜଣା ଜାଗାକୁ ଦେଖିଥିବ । ସେହି ଜାଗାକୁ ହିଁ ଜଗା ନିତି ମାଛ ଧରିବାକୁ ଯାଉଥିଲା ।

ଦୂରରେ ଭାସୁଥିବା ଡଙ୍ଗାସବୁ ଖେଳନାପରି ଦିଶୁଥିଲେ କୁନ୍ତଳାକୁ । ସମୁଦ୍ର ଫେରନ୍ତା ଡଙ୍ଗାକୁ ଦେଖିଲାକ୍ଷଣି ତା'ର ଖାଲି ଜଗା କଥା ମନେପଡୁଥିଲା । ତେଣୁ ସେ ଆଉ ସମୁଦ୍ରକୂଳକୁ ନ ଆସିବାପାଇଁ ମନେ ମନେ ସ୍ଥିର କରୁଥିଲା । ଏମିତି ସେ ଆଗରୁ କେତେଥର ଭାବିଥିବ । ଅଥଚ ମଝିରେ ମଝିରେ ତା' ପାଦ ଦି'ଟା କେମିତି କେଜାଣି ସମୁଦ୍ରକୂଳକୁ ଘୋଷାରି ହୋଇ ଆସୁଥିଲେ ଓ ଆଖି ଯୋଡ଼ିକ ଆପେ ଆପେ ଲମ୍ବିଯାଉଥିଲେ ସମୁଦ୍ର ଶେଷପର୍ଯ୍ୟନ୍ତ ! ଏବଂ ତା'ପରେ ତା' ଆଖିରେ ଆସୁଥିଲା ବନ୍ୟା ।

ତାକୁ କଥା ଦେଇଥିଲା ଜଗା, ସାରା ଜୀବନ ସାଙ୍ଗରେ ରହିବ ବୋଲି । କିନ୍ତୁ ତା' କଥା ତ ପାଣିରେ ଗାର । ସମୁଦ୍ରକୁ ମାଛ ମାରି ଗଲା ଯେ ଗଲା ଆଉ ଫେରିଲା ନାହିଁ । ସେ କଣ୍ଟ ଭାଙ୍ଗିବ ନାହିଁ ।

ଜଗା କିନ୍ତୁ ଫେରୁ ନ ଥିଲା ।

କୁନ୍ତଳା ସେଦିନ ମନା କରୁଥିଲା ସମୁଦ୍ରକୁ ଯିବାପାଇଁ । କିନ୍ତୁ ଜଗା କ'ଣ କା' ମନା ମାନେ ? ଆକାଶରେ ମେଘ ଥାଟପଟାଳି ଭାଙ୍ଗୁଥିଲା । କାନ୍ଦୁରା ଦିଶୁଥିଲା ଆକାଶର ମୁହଁ । ଗଛପତ୍ରରେ ଗୋଟେ ଥମ୍ ଥମ୍ ଭାବ ବାରି ହୋଇପଡୁଥିଲା । ଗୁମ୍ ହୋଇ ରହିଥିଲା ଚଉଦିଗ । କୁନ୍ତଳା କହିଲା, ''ଜଗା, ମୋ ସାନକୁହା ମାନ । ଯାଆନା ଦରିଆକୁ । ରେଡ଼ିଓ କହୁଛି, ଝଡ଼ବତାସ ଆସିବ ।'' ଜଗା କହିଲା, ''ମୁଁ କେଉଟପୁଅ, ଦରିଆ ମୋ ଘର । ମୁଁ ପାଣିର ପୋକ । ମୋର ପାଣି କି ଡର ନା କୁଆରକୁ ଡର; ଝଡ଼କୁ ଡର ନା ବତାସକୁ ଡର ! ଝଡ଼ ଝଡ଼ବାଟେ ଯିବ, ଜଗା ଡଙ୍ଗାରେ ଡଙ୍ଗେ ମାଛଧରି ଫେରିବ । ତୁ କାହିଁକି ନଈ ନ ଦେଖି ନଙ୍ଗଳା ହଉଚୁ କିଲୋ ?'' କୁନ୍ତଳା ବାଧା ଦେଲା । କହିଲା, ତୁ ସବ୍‌ଜାଣତା ଭଳି କାହିଁକି କହୁଚୁ ? ରେଡ଼ିଓ ଶୁଣିଲୁଣି ନା ? ଆକାଶକୁ ଦେଖିଲୁଣି ନା ? ମତେ ଲାଗୁଚି ଝଡ଼, ହବ ହିଁ ହବ । ଜଗା ଉତ୍ତର ଦେଲା, ଆଲୋ ହୁଣ୍ଡୀ, ରେଡିଓ ଏମିତି ସବୁବେଳେ କହେ, ଝଡ଼ ତା' ବାଟରେ ଯାଏ । ତୁ ଛାନିଆଁ ହ'ନା । କୁନ୍ତଳା ଚୁପ୍ ହେଲା । ଜଗା ଚାଲିଲା ଦରିଆକୁ ।

ସେଦିନ ଦି'ପ୍ରହରକୁ ଗଛପତ୍ର ଟିକେ ଟିକେ ହଲିଲା । ଦରିଆ ଖଟେଇ ହେଲା ଭଳି ଗର୍ଜିଲା । କୁନ୍ତଳାର ପିଳେହିପାଣି । ତା'ପରେ ସୁ ସୁ ହୋଇ ଗର୍ଜିଲା ଝଡ଼ । ଦରିଆ-ଆକାଶ ସନ୍ଧିରୁ ଛୁଟିଲା ମେଘର ପଟୁଆର । ଚାହୁଁ ଚାହୁଁ ଗଛବୃଛ ଭୂଇଁରେ ଗଡ଼ିଲେ । ଛପର ଉଡ଼ିଲା ଆକାଶରେ । ସମୁଦ୍ରକୂଳିଆ କେଉଟସାହିର ଲୋକେ ପ୍ରାଣ ବିକଳରେ ଧାଇଁଲେ ପାଖ ଗାଆଁକୁ, ଯେଉଁଠି ପକ୍କା ସ୍କୁଲଟେ ଥିଲା । କୁନ୍ତଳା ବି ଧାଇଁଲା ଅନ୍ୟମାନଙ୍କ ସାଙ୍ଗରେ । ସଂଜ ବେଳକୁ ସମୁଦ୍ର ଢେଉ ରଡ଼ିକରି ମାଡ଼ି ଆସିଲା ଗାଆଁ ଭିତରକୁ । ଗାଆଁ ଦାଣ୍ଡ ପାଲଟିଲା ସମୁଦ୍ର । ଦେଖୁ ଦେଖୁ ସ୍କୁଲ ଭିତରକୁ ଲହଡ଼ି ପଶିଲା । ଜୀବନ ବିକଳରେ କିଏ ଛାତକୁ ଉଠିଗଲା ତ କିଏ ଆସ୍ଥୁ ଉପରକୁ ଚଢ଼ିଲା । ମାଟି କାନ୍ଥସବୁ ଦୁଲ୍‌ଦାଲ୍ ହୋଇ ତଳେ ଲୋଟିଗଲେ ।

କିଏ ମଲା, କିଏ ଗଲା, କେହି କାହାର ଖବର ରଖିପାରିଲେ ନାହିଁ । ବୁଢ଼ା ବୁଢ଼ୀ, ଅକର୍ମଣ୍ୟ, ବେସାହାରାଙ୍କ ପତ୍ତା ମିଳିଲା ନାହିଁ । ଗାଆଁ ଭେଣ୍ଡିଆ କେତେଜଣ ବି ଚାହୁଁ ଚାହୁଁ ଭାସିଗଲେ । ଗୋଖେଇସାହୁ ତା' ବୁଢ଼ୀମା'କୁ କାଖ କରି ଆଣୁଆଣୁ ବାଟରେ କୋଉଠି ଅଟକିଯାଇଥିଲା । ଜବର ମର୍ଦଟା । ସମୁଦ୍ର ଟାଣିନେଲା ମା'ପୁଅଙ୍କୁ । ଗୋଦରାଗୋଡ଼ିଆ ନିମାଜେନା ଉପରେ ଶ'ଶ' ବର୍ଷର ପୁରୁଣା ଗଛଟେ ଗଡ଼ିପଡ଼ିଲା ଯେ ସେ କଲବଲ ହୋଇ ମଲା ସମସ୍ତଙ୍କ ଆଖି ଆଗରେ । ନିଜ ଜୀବନକୁ କାହାର ମୋହ ନାହିଁ ? କେହି ତାକୁ ଉଦ୍ଧାର କରିବାକୁ ଭରସିଲେ ନାହିଁ । ରମା ଗ୍ରହାଚାର୍ଯ୍ୟେ ଏଡ଼େ ବଡ଼ ଖଡ଼ିରତ୍ନ । ଝଡ଼କଥା ଜାଣିପାରିଲେ ନାହିଁ । ଗଣନାପାଇଁ ଯାଇଥିଲେ କୋଉ ଗାଆଁକୁ । ଫେରି ନ ଥିଲେ । ତାଙ୍କ ଭାର୍ଯ୍ୟା ରଡ଼ି ଛାଡୁଥିଲା । ଧନୀ ମହାକୁଡ଼ ତା' ଜର୍ସିଗାଈ ବେକରୁ ପଘା ଫିଟେଇବାକୁ ଯାଇଥିଲା ଗୁହାଳକୁ । ଗୁହାଳ କାନ୍ଥ ପଡ଼ିଲା । ବିଚରା ସେଇଠି ଖତମ୍ ।

ସୁ ସୁ ବତାସରେ କାନ ଅତଡ଼ା ପଡ଼ିଯାଉଥିଲା । ଛୋଟ ପିଲାମାନେ ଅଜଣା ଆତଙ୍କରେ ଶିହରିତ ହେଉଥିଲେ । ଆକୁଳ କାନ୍ଦଣା ବତାସରେ ମିଶି କୁଆଡ଼େ ଉଡ଼ି ଯାଉଥିଲା । ଆକାଶ, ସମୁଦ୍ର, ପୃଥିବୀ, ସବୁ ଯେମିତି ଏକାକାର, ଚଢ଼େଇ, ଚିରୁଗୁଣୀ ଠାରୁ ମଣିଷ ପର୍ଯ୍ୟନ୍ତ ସଭିଁଙ୍କ ମୁହଁରେ ଆତୁରତା । ହରିବୋଲ ହୁଳହୁଳି ଦେଇ ଲୋକଙ୍କ ତଣ୍ଟି ଫାଟିପଡୁଥିଲା । ଅଥଚ ଝଡ଼ ଥମିବାର କୌଣସି ସମ୍ଭାବନା ନ ଥିଲା ।

ସ୍କୁଲଘର ଛାତ ଉପରେ ଗୋଟେ କୋଣକୁ ଆଉଜି ଜାକିଜୁକି ହୋଇ ବସିଥିଲା କୁନ୍ତଳା । ସେ ଭାବୁଥିଲା, ପୃଥିବୀର ଆୟୁଷ ଯେମିତି ସରିଯାଇଛି । ପିଲାଦିନେ ବୁଢ଼ୀମାଠାରୁ ଶୁଣିଥିବା ମାଳିକା କଥା ତା'ର ମନେପଡୁଥିଲା । ଘୋର କଳିକାଳ ଶେଷ ଦୃଶ୍ୟରେ ପହଞ୍ଚିଥିଲା କି ଆଉ ! ଝଡ଼ରୂପ ଧରି କଳ୍କି ଓହ୍ଲାଇଥିଲା କି ପାପୀ ସଂହାରପାଇଁ । ସାରା ଓଡ଼ିଶା ମୁଲକ ସମୁଦ୍ର ଆଁ ଭିତରେ ଛଟପଟ ହେଉଥିଲା

ଯେମିତି । କୁନ୍ତଳାର ଛାତି ଥରୁଥିଲା । ଦେହ ସାରା ବୁନ୍ଦା ବୁନ୍ଦା ଝାଳ ଜମିଥିଲା । ମଝିରେ ମଝିରେ ଜଗା ଭାରି ତା'ର ମନେ ପଡୁଥିଲା । ଜଗା ଆଉ ତା' ଡଙ୍ଗାର ଅବସ୍ଥା କ'ଣ ହୋଇଥିବ, ଭାବିଲାକ୍ଷଣି ତା' ଚେତା ହଜିଯାଉଥିଲା ।

ରାତି ପାହି ସକାଳ ହେଲା । ଫର୍ଚ୍ଚା ଆଲୁଅରେ ଗାଆଁଗଣ୍ଡାର ଦୃଶ୍ୟ ଦେଖି ହେଉ ନ ଥିଲା । ଝଡ଼ ଦଣ୍ଡେ ଥମିଯାଇ ପୁଣି ପ୍ରବଳ ହେଉଥିଲା । ସମୁଦ୍ର କୁଆର ପାଦେ ଘୁଞ୍ଚିଯାଇ ପୁଣି ଦି'ପାଦ ଆଗେଇ ଆସୁଥିଲା । ସମୁଦ୍ର ଦିଗମ୍ବରୀ ହୋଇ ରକ୍ତମୁଖା ସାଜିଥିଲା ଅବା ! ସମୁଦ୍ରର ସେ ଉଚ୍ଚାଟ କୁଆରକୁ ଚାହିଁବାପାଇଁ ବି କୁନ୍ତଳା ଭୟ କରୁଥିଲା । ସକାଳୁ ସକାଳୁ ଖାଇବାପାଇଁ ଛାତ ଉପରର ପିଲାମାନେ କାନ୍ଦବୋବାଳି ଆରମ୍ଭ କରିଦେଇଥିଲେ । କାହା ପାଖରେ କିଛୁ କିଛି ଖାଇବାକୁ ନ ଥିଲା । କୁଆରରେ ଭାସିଯାଉଥିବା ଧାନ ଚାଉଳ ବା ଚୁଡ଼ାମୁଢ଼ିର ବସ୍ତାକୁ ଉଠେଇ ଆଣିବାପାଇଁ କା' ମନରେ ଦମ୍ଭ ନ ଥିଲା । ନ ଥିଲା ବାହୁରେ ବଳ । ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତଙ୍କ ଚେହେରାରେ କାତରତା ଖୁନ୍ଦି ହୋଇ ରହିଥିଲା ।

ଦିଗ୍‌ବଳୟ ଦିଶୁଥିଲା ଛେଉଣ୍ଡ ପରି । ଗାଆଁ ଗଣ୍ଡାରେ ଶ୍ମଶାନର ନୀରବତା, ଖାଁ-ଖାଁ ଭାବ । ଅମିତ ଯନ୍ତ୍ରଣାରେ ଯେମିତି ଘାଣ୍ଟିହେଉଥିଲା ସାରା ପୃଥ୍ୱୀ ।

ସଂଜବେଳକୁ କେଉଁଠି କେଉଁଠି କେମିତି ସୋଉଶବ୍ଦ ଟିକେ ଶୁଭିଲା । ଆକୁଳ କାନ୍ଦଣା କେଉଁଠି ତ କେଉଁଠି ରାମନାମ ସତ୍ୟ ହେ ର ଧ୍ୱନି । ଜଣେ ଅଧେ ସରକାରୀ ଲୋକଙ୍କର ଯିବାଆସିବା ଆରମ୍ଭ ହେଲା । ସଂଜ ଉତାରେ ଯେମିତି ମାଡ଼ି ଆସିଲା ଭୟାନକ ରାତି । କାନ୍ଥକୁ ଆଉଜି ନିଦେଇଗଲା କୁନ୍ତଳା । ତା'ର ଝାପ୍‌ସା ନିଦୁଆ ଆଖି ସାମନାରେ ଉଭାହେଲା ଜଗା ଯେମିତି ! କୁନ୍ତଳାର ନିଦ ଭାଙ୍ଗିଗଲା । ନିଦୁଆ ଆଖିରେ ଏଣେ ତେଣେ ଚାହିଁଲା ସେ । ଚାରିଆଡ଼େ ଖାଲି ଅନ୍ଧାର ଆଉ ଅନ୍ଧାର । କାହିଁ କେଉଁଠି ଜଗା ? ତା' ଚେହେରା ତ ନିଆରା । ତା' ଚାଲି ସମସ୍ତଙ୍କଠୁ ଅଲଗା । ଏମିତି ମର୍ଦଟେ ପାଞ୍ଚଖଣ୍ଡ ଗାଆଁରେ ନ ଥିବ । ଆସିବାର ଥିଲେ ସେ ତ କୁହାଟ ଛାଡ଼ି ଦୌଡ଼ିଆସନ୍ତା । କାହିଁ ଜଗା ? କୁନ୍ତଳାର ଆଖି ଜକେଇ ଉଠିଲା ।

ଜଗାସହ ତା'ର ପହିଲି ପ୍ରେମର ଅନୁଭବ ତାକୁ-ଅଥୟ କଲା । ଜଗାମୟ ହୋଇଉଠିଲା ତା' ସାରା ପୃଥିବୀ । ଏଇ ଯେମିତି ଜଗା ତାକୁ ଭିଡ଼ି ଧରି ଅଣନିଃଶ୍ୱାସୀ କରିଦେଉଛି । ଅଥଚ ସେଇ ଅଣନିଃଶ୍ୱାସୀ ହବା ଭିତରେ ସେ ଅପାର ଆନନ୍ଦ ପାଉଛି । କଡ଼ମଡ଼ ହୋଇ ଭାଙ୍ଗିଯିବା ପରି ଲାଗୁଥିବା ଦେହ ଭିତରେ ଯେମିତି ଫୁଟିଯାଉଥିଲା ଲକ୍ଷେ କଦମ୍ବ । ସେହି ମିଠା ଯନ୍ତ୍ରଣାର ମୋହରେ ଶିହରି ଯାଉଥିଲା କୁନ୍ତଳା ଓ ମୁହୂର୍ତ୍ତ କେତୋଟିପାଇଁ ହେଲେ ବି ଭୁଲିଯାଉଥିଲା ଝଡ଼ର ଭୟାବହତା । ମୃତ୍ୟୁର ତାଣ୍ଡବ ଭିତରେ ଜୀବନ-ମନସ୍କ ହବା ବୋଧେ ମଣିଷର ସହଜାତ !

ତା'ପର ଦିନ ସକାଳ ଥିଲା ନରମ ଓ ଶାନ୍ତ । ସମୁଦ୍ର ଗାଆଁଠାରୁ ଦୂରକୁ ଘୁଞ୍ଚି ଯାଇଥିଲା । ମେଘର ହାଲ୍କା ଓଢ଼ଣା ତଳୁ ଫୁଟି ବାହାରୁଥିଲା ସୂର୍ଯ୍ୟର ଲାଜରା ମୁହଁ । କଅଁଳ ଖରାରେ ଝଲିମିଲି ହେଉଥିଲା ଗାଆଁ ଦାଣ୍ଡ । କୁନ୍ତଳା ବାହାରିଲା ତାଙ୍କ ଗାଆଁକୁ ଫେରିଯିବାପାଇଁ । କିନ୍ତୁ ଓପାସରେ ତା' ଦେହ ଥରୁଥିଲା ଓ ସେ ଯିବ କି ନ ଯିବ ଭାବି ହେଉଥିଲା । ସେତେବେଳେ ସରକାରୀ ଲୋକ କି କୋଉ ସ୍ୱେଚ୍ଛାସେବୀ ଦଳ ଖାଦ୍ୟପୁଡ଼ିଆ ଧରି ପହଞ୍ଚିଲେ ସ୍କୁଲପାଖରେ । ଖାଦ୍ୟପୁଡ଼ିଆ ପାଖରେ ଠେଲାପେଲା ଦଳାମକଚା ବେଶ୍ କିଛି ସମୟ ଲାଗିରହିଲା । କୁନ୍ତଳା କୌଣସି ପ୍ରକାରେ ବିସ୍କୁଟ ପ୍ୟାକେଟଟାଏ ପାଇଗଲା ଓ ବିସ୍କୁଟ ଦି'ଖଣ୍ଡ ପାଟିରେ ଦେଲା । ତା'ପରେ ଚାଲିଲା ନିଜ ଗାଆଁ ଆଡ଼କୁ । ଗାଆଁଗଣ୍ଡାର ଚେହେରା ଏମିତି ବଦଳି ଯାଇଥିଲା ଯେ ସେ ତାଙ୍କ ଗାଆଁକୁ ବାଟ ପାଇଲା ନାହିଁ । ଅନ୍ୟମାନେ ଯେଉଁଆଡ଼େ ଚାଲିଲେ, ସେ ତାଙ୍କର ପିଛାକଲା ।

ନିଜ ଗାଆଁରେ ପହଞ୍ଚିଲା ବେଳକୁ ଗାଆଁର ଚିହ୍ନବର୍ଣ୍ଣ ନ ଥିଲା । ସମୁଦ୍ର ଭିତରେ ଗାଆଁ ଥିଲା କି ଗାଆଁ ଭିତରେ ସମୁଦ୍ର, ସେ ଜାଣିପାରିଲା ନାହିଁ । ସେଦିନ ପ୍ରଥମ କରି ସେ ଅସହାୟତାର ଅର୍ଥ ବୁଝିଲା ।

ଗାଆଁରେ ରିଲିଫ୍ କ୍ୟାମ୍ପ୍ ଖୋଲିଲା । କେଉଟସାହିର ସମସ୍ତେ ସେହି ରିଲିଫ୍ କ୍ୟାମ୍ପରେ ରହିଲେ । କୁନ୍ତଳା ବି । ପ୍ରାୟ ପ୍ରତିଘରୁ କେହି ନା କେହି ମରିଥିଲେ ବାତ୍ୟାରେ । ସମସ୍ତଙ୍କ ମୁହଁରେ ଦୁଃଖର ଛାଇ ଘୋଟିଥିଲା ଯେମିତି । ତୁହାକୁ ତୁହା କାନ୍ଦଣା ପବନରେ ଖେଳି ବୁଲୁଥିଲା । ହିଡ଼ ମୂଳରେ, ରାସ୍ତା କରରେ ଲାଗିଥିବା ଶବକୁ କେହି ଚିହ୍ନଟ କରିପାରୁ ନ ଥିଲେ । ଗାଆଁ ସରପଞ୍ଚ ନିଧି ମହାନ୍ତି ଆସି କହିଗଲା, ଦିନବାର ହିସାବ କରି ଯିଏ ଯେମନ୍ତ ଶୁଦ୍ଧି ହୋଇପଡ଼ । ଆର୍.ଆଇ. କି ତହସିଲ୍‌ଦାର ଆସିଲେ ମୃତଲୋକର ନାଁ ଠିକ୍ କରି କହିବ । ମୁଣ୍ଡପିଛା ଲକ୍ଷେ ଟଙ୍କାରୁ କମ୍ ମିଳିବ ନାହିଁ । ନିଧି ମହାନ୍ତି କଥା ଶୁଣି କୁନ୍ତଳା ଭୋ କରି କାନ୍ଦିଉଠିଲା । ଜଗା ପରି ଭେଣ୍ଡିଆଟା କ'ଣ ସତରେ ମରି ଯାଇଥିବ ?

ଝଡ଼ ଆରମ୍ଭ ହୋଇଥିଲା ଗୁରୁବାର ଦିନ । ଗୁରୁବାରକୁ ଗୁରୁବାର ଆଠ ଶୁକ୍ରବାର ନ', ଶନିବାର ଦଶ । ଦଶଦିନ ଦିନ ମାଧେଇ ଖୁଡ଼ୀ କହିଲେ, ''ଆଲୋ କୁନ୍ତୀ, ଆଉ ମନମାରି ବସିଲେ କ'ଣ ହବ ? ଜଗା କ'ଣ ଆଉ ଫେରିବ ? ଚାଲ୍ ମୁଁ ତୋ ହାତରୁ ଶଂଖା ଉତାରି ଦେବି ।'' ଏତିକି କଥା ଶୁଣିଲାକ୍ଷଣି କୁନ୍ତଳାର ଦେହ ଜଳିଗଲା । ସେ ପାଗଳୀପରି ଦୌଡ଼ିଲା । କହିଲା ''ଖବରଦାର, ମୋ ଶଙ୍ଖା କେହି ଭାଙ୍ଗିପାରିବ ନାହିଁ । ମୋ କପାଳରୁ କେହି ସିନ୍ଦୂର ଟିପା ଲିଭେଇ ପାରିବ ନାହିଁ ।'' ପାରଅପା ରାଗିଯାଇ କୁନ୍ତଳାର ବାଳ ଝିଙ୍କି କହିଲା, ''ଆଲୋ ଘଇତାଖାଇ, ତୁ ରାଣ୍ଡ

ହବୁନି କ'ଣ ଗାଆଁ ମାଇପେ ତୋ ପାଇଁ ରାଣ୍ଡ ହେବେ । ନା' ଆଉ କୋଉ ଘଇତା ଲାଗି ସିନ୍ଦୂର ଲଗଉଚୁ ଲୋ ?'' କୁନ୍ତଳାର ଛାତିରେ କିଏ ଯେମିତି କୁରାଢ଼ି ଚୋଟ ମାରିଲା । ତା'ର ଇଚ୍ଛା ହଉଥିଲା ପାରଅପା ଛାତିରେ ଚଢ଼ି ତା' ରକ୍ତ ପିଇଯିବାକୁ । ସେ କିନ୍ତୁ କିଛି କହିଲା ନାହିଁ । ଗାଆଁ ମାଇପେ ଥକି ଗଲେ । ମିଣିପଙ୍କ କାନକୁ କଥା ଗଲା । ଦନେଇକକା ବୁଝେଇ କହିଲେ, ''ମା'ରେ, ବାୟାଣୀ ପାଗଳୀ ପରି ଆଉ ହ'ନା । ଜଗାକୁ ଶୁଦ୍ଧି ହ' । ତା' ଆତ୍ମା ଯୋଉଠି ଥିଲେ ବି ଶାନ୍ତି ପାଇବ ।'' କୁନ୍ତଳା କିନ୍ତୁ କାହାକଥା ଶୁଣିଲା ନାହିଁ ।

ତହୁଁ ନିଧି ମହାନ୍ତିକୁ ଡକାଗଲା ।

ଖଦଡ଼ିଆ ନିଧି ମହାନ୍ତି ନିଶାପକୁ ବଗ । ପାକଲା ଗାମୁଛା କାନ୍ଧରେ ପକେଇ କେଉଟ ସାହିରେ ପହଞ୍ଚିଗଲା । ଏମିତି ତ ନିକମାରେ ନିଧି ମହାନ୍ତି କେଉଟସାହିକୁ ଧପାଳି ପଶେ । ମାଛ କଙ୍କଡ଼ା ମାହାଳିଆରେ ଗାମୁଛାରେ ବାନ୍ଧେ । କେଉଟ ସାହିଆଙ୍କ କୋତରା ନୋଟ୍ ପକେଟରେ ପୂରାଏ । କୁନ୍ତଳାକୁ ଜମା ଭଲ ଲାଗିଲା ନାହିଁ ନିଧି ମହାନ୍ତିର କଥାଭାଷା । ମା' ବୋଲି ସମ୍ବୋଧନ କରୁଥିଲା ଅଥଚ ତା' ଉଚ୍ଚା ଛାତି ଆଡ଼କୁ ବାରମ୍ବାର ଚାହୁଁଥିଲା । ଟଙ୍କାର ଲୋଭ ଦେଖଉଥିଲା । ବିଧବା ନ ହେଲେ ସରକାରୀ ଟଙ୍କା ମିଳିବ ନାହିଁ ବୋଲି କହୁଥିଲା । କୁନ୍ତଳା କିନ୍ତୁ ନିଧି ମହାନ୍ତିର କୁହା ମାନିଲା ନାହିଁ । ସାଇପଡ଼ିଶାଏ ତାଜୁବ ହେଲେ । ନିଧି ମହାନ୍ତି ପ୍ରଥମଥର ପାଇଁ କେଉଟସାହିରୁ ନାସ୍ତିବାଣୀ ଶୁଣି ଫେରିଗଲା । ଆଉ ମତେଇ ଦେଇଗଲା ବୁଢ଼ା ଟୋକା ସଭିଙ୍କୁ – ସେ ବେଚଣ୍ଡୀ ମାଇକିନିଆକୁ ଏକଘରିଆ କରିଦିଅ ; ନିଆଁପାଣି ବାଛନ୍ଦ କର ।

କୁନ୍ତଳା ଏକଘରିଆ ହେଲା ସିନା, ଶଂଖା ଭାଙ୍ଗିଲା ନାହିଁ । କି ଜଗାକୁ ଶୁଦ୍ଧି ହେଲା ନାହିଁ । ସୁନ୍ଥାରେ ନିତିନିତି ସିନ୍ଦୂର ନାଇଲା । ଜଗାକୁ ତକେଇଲା । ତେଣେ ବାପଭାଇ କେହି ତାକୁ ମଲାଗଲାରେ ବି ପଚାରୁ ନ ଥିଲେ । କୁନ୍ତଳା ବାପଭାଇଙ୍କ ମୁହଁରେ କଳାବୋଳି ପାଞ୍ଚଗାଆଁ ଡେଇଁ ଚାଲି ଆସିଥିଲା ଜଗା ସାଙ୍ଗରେ । ଏବକୁ ଦି' ବରଷ ତଳର କଥା । ତା'ପରଠୁଁ ସେ ବାପମା'ଙ୍କ ମୁହଁ ଦେଖି ନାହିଁ । ଆଉ ଶାଶୂଘର କୁଟୁମ୍ବ କହିଲେ ଏକା ଜଗା । ବାପକୁ କେବେ ଆଖିରେ ଦେଖି ନ ଥିଲା ଜଗା । ମା'ବୁଢ଼ୀ ତାକୁ ମଣିଷ କରିଥିଲା । ସେ ଗତବର୍ଷ ବାଧିକି ପଡ଼ି ମଲା । ଗାଆଁ ଲୋକେ କେତେ କ'ଣ ଚୁପ୍‌ଚାପ୍ ହୁଅନ୍ତି ଜଗା ବିଷୟରେ । ତା' ବାପ କୁଆଡ଼େ କଲିକତାରେ କୁଲିକାମ କରୁଥିଲା । ଗାଆଁକୁ ଆସୁ ନ ଥିଲା କେବେ । ସେହି କଲିକତାରେ ସେ ମଲା । ପୁଣି ଜଗାବାପ ନହନହକା ମେଞ୍ଚଡ଼ ଲୋକଟେ ଥିଲା ପରା ! କିଏ କିଏ କୁହନ୍ତି ସେ କୁଆଡ଼େ ଅଣପୁରୁଷା ! ହେଲେ ଜଗା ମା' ରାଜାପୁଅ

ପରି ଭେଣ୍ଡିଆଟା ଆଣିଲା କୁଆଡୁ ? କୁନ୍ତଳା ସେ ସବୁ କଥାକୁ କେବେ କାନ ଦେଇ ନ ଥିଲା । ଜଗା ଥିଲେ ତା'ର ସବୁ ଥିଲା ।

ସତରେ ଜଗାଠିଁ କ'ଣ ଥିଲା କେଜାଣି ତାକୁ ଦେଖିଲାକ୍ଷଣି ପାଗଳୀ ହୋଇଯାଇଥିଲା କୁନ୍ତଳା । ଲାଜ ସଂଭ୍ରମ, ଘରର ମାନଇଜ୍ଜତ ସବୁକୁ ତୁଚ୍ଛ କରି ଦେଇଥିଲା ତା'ପାଇଁ । କାହାରି ଆକଟ ମାନି ନ ଥିଲା । ଟାହିଟାପରାକୁ ଖାତିର କରି ନ ଥିଲା । ଜଗା ତାକୁ କିମିଆଁ କରିଥିଲା ନା କ'ଣ ? କୁନ୍ତଳାର ମନେ ପଡୁଥିଲା, ସେହି ଚଇତି ପୁନେଇଁ କଥା ଯୋଉଦିନ ସେ ପ୍ରଥମେ ଦେଖିଥିଲା ଜଗାକୁ । ଗାଁ ଦାଣ୍ଡର ଝଙ୍କାଳିଆ ଆମ୍ବତାଳ ସଂଧିରୁ ସେଦିନ ବିଛୁରି ପଡୁଥିଲା ଜହ୍ନଆଲୁଅ । ଦାଣ୍ଡଧୂଳି ଚିକ୍‌ଚିକ୍ କରୁଥିଲା ରୁପା ଥାଳି ପରି । ଗାଁ ଦାଣ୍ଡରେ ଆସି ପହଞ୍ଚିଲା ଚଇତିଘୋଡ଼ା । ତାଙ୍କ ଉଚ୍ଚା ପିଣ୍ଡାରେ ଗାଁ ଲୋକଙ୍କ ଭିଡ଼ ଜମିଲା । ଜଗା କାନ୍ଧରେ ଧୋବ ଫରଫର ଘୋଡ଼ା । ଢୋଲ ମହୁରି ସାଙ୍ଗକୁ ଚଢ଼େୟା ଚଢ଼େୟାଣୀ ଗୀତ । ଗୀତ ଶେଷରେ ଘୋଡ଼ା କାନ୍ଧେଇ ଜଗା ନାଚୁଥିଲା, ଧୂଳିର ଧୂମାଳ ସୃଷ୍ଟି ହଉଥିଲା ଗାଁ ଦାଣ୍ଡରେ । ଚଢ଼େୟାଣୀ ଗୀତରେ ପଚାରୁଥିଲା 'ନାଲି ଚାରି ଜାତି କହ ନାଗରରେ, ନାଲି ଚାରି ଜାତି କହ...' ଚଢ଼େୟା ଉତ୍ତର ଦେଉଥିଲା ଗୀତରେ । ବର୍ଣ୍ଣନା କରୁଥିଲା ଚାରି ନାଲିର ଭେଦ । ଶେଷ ନାଲି ଥିଲା ଚଢ଼େୟାଣୀ ମଥାର ସିନ୍ଦୂର । ଏ ଗୀତ ଶୁଣିଲାକ୍ଷଣି କୁନ୍ତଳା ମୁହଁରେ ମେଞ୍ଚେ ସିନ୍ଦୂର ବୋଳି ହୋଇଗଲା ଯେମିତି ! ସେ ଭାରି ଲାଜେଇଗଲା । ଅଥଚ ନିଜ ଅଜାଣତରେ ଜଗା ମୁହଁକୁ ଚାହିଁ ରହିଲା । ଏହା ଲକ୍ଷ୍ୟକରି ସାନଭାଉଜ ତା' ନିତମ୍ବକୁ ଚିମୁଟି ଦେଲେ । ତା'ସତ୍ତ୍ୱେ କୁନ୍ତଳା ଜଗାଠାରୁ ଦୃଷ୍ଟି ଫେରେଇ ପାରିଲା ନାହିଁ । ନିଜକୁ ପୂରାପୂରି ଭୁଲିଯିବାର ଏ ଘଟଣା ଥିଲା କୁନ୍ତଳା ଜୀବନରେ ପ୍ରଥମ ।

ସେତେବେଳକୁ ସେ ମ୍ୟାଟ୍ରିକ୍ ପାସ୍ କରିସାରିଥିଲା ଓ କଲେଜରେ ନ ପଢ଼ି ଘରେ ରହୁଥିଲା । ମ୍ୟାଟ୍ରିକ୍ ପଢ଼ା ଭିତରେ ନିଜ ଭିତରର ମନ୍ଥର ପରିବର୍ତ୍ତନକୁ ଅନୁଭବ କରିବାପାଇଁ ଅବସର ପାଇ ନ ଥିଲା କୁନ୍ତଳା । ଘରେ ରହିବା ପରଠାରୁ ନିଜ ଭିତରର ପରିବର୍ତ୍ତନକୁ ସେ ବେଶ୍ ବୁଝି ପାରିଥିଲା । କ୍ରମେ ନିଟୋଳ ହୋଇଆସୁଥିବା ତା' ଛାତି, ଭାରୀ ଭାରୀ ଲାଗୁଥିବା ନିତମ୍ବ ଓ ଗହୀରେଇ ଯାଇଥିବା ତା' ନାଭିକୁ ଦେଖି କାହିଁକି କେଜାଣି ସେ ମନେ ମନେ ଶିହରିତ ହେଉଥିଲା । ଚଇତିର ଜହ୍ନରାତି ଓ ଫଗୁଣର ଫୁଲସଂଜବେଳ ତା' ମନକୁ ଅଥୟ କରୁଥିଲା । ଶ୍ରାବଣର ବର୍ଷାଭିଜା ରାତି ତା' ଆଖିରୁ ଚୋରେଇ ନଉଥିଲା ନିଦ । ଡିସେମ୍ବର ଶୀତରେ ତା' ଦେହ ଓ ମନରେ ଦିକ୍ ଦିକ୍ କରୁଥିଲା କେଉଁ ଅଜଣା ନିଆଁଝୁଲ । ମନତଳର ସେଇ ନିଆଁକୁ ଉସ୍‌କେଇ ଦେଉଥିଲା ଜଗା ।

ଚଇତି ପୁନେଇଁ ପରେ ଜଗା ଗାଆଁକୁ ଆସିଥିଲା ମାଛଭାର ଧରି । ତା' ଭାରରେ ଚିକ୍‌ଚିକ୍ କରୁଥିଲା ସମୁଦ୍ରଇଲିଶି । ମାଛ କିଣିବା ବାହାନାରେ ସେ ଜଗାର ଭାରଟାଯାକ ଇଲିଶି ଖେଳଉଥିଲା ନିଜ ହାତରେ । ଏବଂ ମଝିରେ ମଝିରେ ଚାହୁଁଥିଲା ଜଗାର ଫୁଙ୍ଗୁଳା ଦେହକୁ । ଜଗା ଠିଆ ହୋଇଥିଲା ଭାର ପାଖରେ, ଜବର ଖୁଣ୍ଟ ପରି ଗୋଡ଼ ଦି'ଟାକୁ ଭୂଇଁରେ ପୋତି । ପିଠଉବଟା ଶିଳ ଦି'ଟା ଯୋଡ଼ିଦେଲା ପରି ତା' ନିଦା ଛାତି, ଲୋମ ବଲବଲ, ବରଡାଳ ପରି ବାହା, ବୋଇତାଳୁଆ ମୁଣ୍ଡରେ ତା'ର ଝାଂପୁରା ବାଳ, ଅପେରାର ସେନାପତି ପରି । ମାଛର ଦାମ୍ ପଚାରିବାରୁ, ହସିଦେଲା ଜଗା । ସେ ହସ ଯେମିତି କୁନ୍ତଳା ଛାତିଭିତରେ ହାତୁଡ଼ି ପିଟିଲା । ସେ ଝାଳେଇଗଲା ଗୋଟାପଣେ ।

ସେ ଦିନ ରାତିରେ କୁନ୍ତଳାକୁ ନିଦ ହେଲା ନାହିଁ । ଜଗାର ହସ ଖାଲି କଇଁଫୁଲ ପରି ଫୁଟିଉଠିଲା ଚାରିଆଡ଼େ । କୁନ୍ତଳା ଆଖିବୁଜି ଏକଡ଼ ସେକଡ଼ ହେଲା, ତକିଆରେ ମୁହଁ ଗୁଂଜିଲା । ଅଥଚ ତା'ଆଖିକୁ ନିଦ ଆସିଲା ନାହିଁ । ବୋଉର ଘୁଙ୍ଗୁଡ଼ି ଶୁଭିଲା । ରାତି ଗହୀର ହେଲା । ବାହାରେ ପବନ ଲୁଚିଛପି ଯେମିତି ପଶିଲା ଘର ଭିତରେ ଓ ତା' ଦେହକୁ ନେଇ ଖେଳିଲା । ଥଣ୍ଡା ପବନରେ ଏତେ ଉଷ୍ମତା ଥାଏ କାହିଁକି, ସେ ବୁଝିପାରିଲା ନାହିଁ । ସାରାରାତି ଏମିତି ଏମିତି କଟିଗଲା । ପାହାନ୍ତା ପହରକୁ ଛାଇ ନିଦରେ ସେ ଏଣ୍ଡୁତେଣ୍ଡୁ ସ୍ୱପ୍ନ ଦେଖିଲା । ଦୁଇଟା କଳାସାପ ତା' ସାରାଦେହକୁ ଗୁଡ଼େଇ ହୋଇ ତାକୁ ଚାପି ଦେଉଥିଲେ ଯେମିତି ! ତାକୁ ଆକ୍ରାମାକ୍ରା ଲାଗୁଥିଲା । କିନ୍ତୁ ପରମୁହୂର୍ତ୍ତରେ ସାପ ଦି'ଟା ମନେ ହେଉଥିଲେ ଜଗାର ଶକ୍ତ ବାହୁବଂଧନ ପରି । ଯନ୍ତ୍ରଣାରେ ରୁନ୍ଧି ହୋଇଯାଉଥିଲା କୁନ୍ତଳାର ନହକା ଦେହ, କିନ୍ତୁ ତା'ମନରେ ସଞ୍ଚରି ହୋଇଯାଉଥିଲା କେଉଁ ଅଜଣା ଫୁଲର ମହଣ ମହଣ ମହକ ।

ଏଣିକି ଦିନେ ଛଡ଼ା ଦିନେ ଜଗା ଆସୁଥିଲା ତାଙ୍କ ଗାଆଁକୁ, ମାଛଭାର ଧରି । କାହିଁ ଆଗରୁ ତ ସେ ଏତେ ଆସୁ ନ ଥିଲା ଏ ଆଡ଼େ । କଦବା କେମିତି ତା'ର ଦେଖା ମିଳୁଥିଲା । କୁନ୍ତଳା ଭାବୁଥିଲା, ତା'ର ଓ ଜଗାର ଅନୁଭବ କ'ଣ ଏକାପରି ? ପୁରୁଷ ପିଲାଙ୍କ ମନରେ କ'ଣ ଏମିତି ନିଆଁ ଲାଗେ ଝିଅମାନଙ୍କ ପରି ?

ଜଗାର ଆସିବା କମିଲା ନାହିଁ କି ଜଗା ଓ କୁନ୍ତଳାର ମନଦିଆନିଆ କଥା କାହାକୁ ଅଛପା ରହିଲା ନାହିଁ । କୁନ୍ତଳା ଘରେ ନିଆଁ କୁହୁଳିଲା । ସେ ନିଆଁ ବ୍ୟାପିଗଲା ତମାମ ଗାଆଁ । କେଡ଼େ ବହପ ସେ କେଉଟ ଟୋକାର, ଗୋପ ମାଷ୍ଟ୍ରଙ୍କ ଝିଅକୁ ବାହାହବାପାଇଁ ହିମ୍ମତ କରୁଚି ? ଗାଆଁ ଲୋକେ କୁହାକୁହି ହେଲେ । ଏବେତ ରିଟାୟାର୍ଡ଼ କରିସାରିଥିଲେ ତା' ବାପା । ଲୋକଲଜ୍ଜାରେ ଆଉ ଦାଣ୍ଡକୁ ବାହାରିଲେ ନାହିଁ । ସମସ୍ତଙ୍କୁ କିନ୍ତୁ ପର କରିଦେଇଥିଲା କୁନ୍ତଳା । ପଛ କରିଦେଇଥିଲା ସତର ବର୍ଷର ସ୍ନେହମମତାକୁ । ଅଧ ରାତିରେ ଜଗାମଳିକ କାନ୍ଧରେ ବସି ସେ ଚାଲି ଆସିଥିଲା କେଉଟସାହିକୁ ।

ସେ ଦମ୍ଭ ତଥାପି ଜିଇଁଥିଲା କୁନ୍ତଳା ଭିତରେ । ଆର୍.ଆଇ., ଗ୍ରାମସେବକ ଆସି କହିଲେ, ''ତମେ ଋଣ ପାଇବ, ତୁମର ଇନ୍ଦିରା ଆବାସ ଘର ତିଆରି ହବ । ହେଲେ ବିଧବା ନ ହେଲେ ଜଗବନ୍ଧୁ ମଳିକର ମୃତ୍ୟୁ ବାବଦ ଅନୁକମ୍ପା ସାହାଯ୍ୟ ତୁମକୁ ମିଳିପାରିବ ନାହିଁ । ତମକୁ ଟଙ୍କା ଲକ୍ଷେ ଦେଲେ, ଆମ ଚାକିରି ଯିବ ଜାଣ । ଖବରକାଗଜବାଲା ତମ ସଧବା ଫଟୋ ଛାପି, ସରକାରୀ ଟଙ୍କା ହଡ଼ପ ହୋଇଛି ବୋଲି ଲେଖିବେ । ତମର ଯାହା ଇଚ୍ଛା ତାହା କର । ଆମେ ସବ୍‌କଲେକ୍ଟରଙ୍କୁ ଆମ ରିପୋର୍ଟ ଦେଇଦବୁ ।'' ସେମାନେ ଯିବାର ମାସେ ପରେ ଆସି ପହଞ୍ଚିଲେ ତହସିଲ୍‌ଦାର ବାବୁ । ସେ ଯେମିତି ତହସିଲ୍ ଅଫିସରୁ ରାଗକୁ ପକେଟ୍‌ରେ ପୂରେଇ ଆସିଥିଲେ । ଅଧା ଉଠିଥିବା ଇନ୍ଦିରା ଆବାସଘର କାନ୍ଥକୁ ଚାହିଁ କହିଲେ, ''ଏଇଟା କ'ଣ କୁନ୍ତଳା ଦେଈର ଘର ?'' ଏହା ଶୁଣି କୁନ୍ତଳା ଅତର୍ଛା ଘରୁ ବାହାରିଆସିଲା । ତହସିଲ୍‌ଦାର ତାକୁ ଦେଖିଲାକ୍ଷଣି ଖିଙ୍କାରିଲେ, ''ତମେ କ'ଣ ଏ ଯୁଗର ସାବିତ୍ରୀ ? ବାତ୍ୟାର ଦୁଇମାସ ପରେ ତମ ସ୍ୱାମୀଙ୍କୁ ଯମରାଜ ଫେରସ୍ତ ଦବ ! ବାତ୍ୟାରେ କେତେଲୋକ ମଲେ ଆମେ ସରକାରଙ୍କୁ ଠିକ୍ ଭାବରେ ଜଣେଇପାରୁନୁ । ତହସିଲ ତହବିଲ୍‌ରେ ଟଙ୍କା ଜମାହୋଇଛି, ବାଣ୍ଟିପାରୁନୁ । ତମ ଶଙ୍ଖା ଭାଙ୍ଗ, ଲକ୍ଷେ ଟଙ୍କା ଧର ।'' କୁନ୍ତଳା ହଁ କି ନା କହିଲା ନାହିଁ । ତହସିଲ୍‌ଦାର ବିରକ୍ତ ହୋଇ ଗାଡ଼ିଏ ଗାଡ଼ିଏ ଫେରିଗଲେ ।

ଗାଆଁର ଦୃଶ୍ୟ କ୍ରମେ ବଦଳୁଥିଲା । ଚାଉଳ, ଲୁଗା, ପଲିଥିନ୍ ପରେ ବିହନ ବଣ୍ଟା ଚାଲିଥିଲା । ଗାଆଁ ରାସ୍ତା ମରାମତି ହେଉଥିଲା । ସ୍କୁଲ ଘରର ଛାତ ପଡୁଥିଲା । ଗାଆଁ ଲୋକଙ୍କର ନିଜ ନିଜ ଘରତିଆରି କାମ ସରି ସରି ଆସୁଥିଲା । ଅଧା ହୋଇ ଯାହା ପଡ଼ି ରହିଥିଲା କୁନ୍ତଳାର ଘର । କିଏ ହାମ୍‌ସୁଆରି ଅଛି ଯେ ଘର ତିଆରିକି ଆଗେଇ ନବ ? ବ୍ଲକ୍ ଜେ.ଇ.ର ଦେଖା ନ ଥିଲା । ଦେଖା ନ ଥିଲା ବି.ଡି.ଓ. କି ଗ୍ରାମସେବକର । ଅଧା କାନ୍ଥରେ ପଲିଥିନ୍ ଢାଙ୍କି ରହୁଥିଲା କୁନ୍ତଳା । ହିମ୍ମତ ହାରୁ ନ ଥିଲା କିନ୍ତୁ ସେ କ'ଣ ଭାବିଥିଲା ଭଙ୍ଗା ତାଟି ଠେଲି ରାତି ଅଧରେ ତା'ଘରକୁ ପଶିଆସିବ ଖଦଡ଼ିଆ ନିଧି ମହାନ୍ତି ? ବାପ ବୟସର ବୁଢ଼ା । ତା' ଆଖିରେ କି ନିଆଁ ! ଚୁପି ଚୁପି କରି ସାକୁଲେଇ କହିଲା, ''କୁନ୍ତଳା ଲୋ, ଜଗା କ'ଣ ଆଉ ବଞ୍ଚିଥିବ ? ତୁ ମିଛଟାରେ କାହିଁକି ତା' ବାଟକୁ ଚାହିଁ ବସିଚୁ ଲୋ । ଜଗା ମରିଯାଇଚି ବୋଲି ଲେଖିଦେ । ତୋତେ ଲକ୍ଷେ ଟଙ୍କା କରେଇଦେବି । ତୋ ଲାଗି କୋଠା ଘର ତୋଳେଇଦେବି ।'' କୁନ୍ତଳା ମୁହଁରେ ଭାଷା ନ ଥିଲା । ସେ ଖାଲି ବୋକୀଙ୍କ ପରି ନିଧି ମହାନ୍ତିଙ୍କୁ ଚାହିଁରହିଥିଲା । ପୁଣି ନିଧି ମହାନ୍ତି କଥାଯୋଡ଼ିଲା, ''କୋଠାଘରେ ତୁ ରାଣୀ ପରି ରହିବୁ । ଭଲ ମନ୍ଦକୁ ମୁଁ ଅଛି ।'' କହୁ କହୁ ସେ କୁନ୍ତଳାର ହାତକୁ ଚାପିଧରିଲା ଓ ମୁଣ୍ଡ ଆଉଁଶିଲା । କୁନ୍ତଳା ଖପ୍‌ପା ହୋଇ ଧରିଲା ଚଣ୍ଡୀବେଶ । ମାରିଲା ଯେ ଧକ୍‌କାଟାଏ, ବୁଢ଼ା ଚିତ୍‌ପଟାଙ୍ଗ, ମା'ଲୋ ମଲି କହି ଅନ୍ଧାରେ ଅନ୍ଧାରେ ଛୁ ମାରିଲା ।

ତା'ପରଠୁଁ କୁନ୍ତଳାର ସବୁ ଦମ୍ଭ ଯେମିତି ଦୋହଲି ଯାଉଥିଲା । ସେ କାହାକୁ କିଛି କହିପାରୁ ନ ଥିଲା ଅଥଚ ଭିତରେ ଭିତରେ କୁହୁଳୁଥିଲା । ମନ ପୋଡ଼ିଯିବା କ'ଣ କାହା ନଜରକୁ ଆସେ ?

ଗାଆଁର ଚେହେରା ଆହୁରି ଆହୁରି ବଦଳିବାରେ ଲାଗିଥିଲା । ମଣିଷ ହାତରେ କି କାଉଁରି ଥାଏ କେଜାଣି ? ସେଇ କାଉଁରି ପରଶରେ ଭଙ୍ଗା, ଗଢ଼ା ହୋଇଯାଉଥିଲା, ଅସଜଡ଼ା, ସଜଡ଼ା ହୋଇଯାଉଥିଲା । ତା'ଭିତରେ ହଡ଼ପ, ଦଙ୍ଗାହାଙ୍ଗାମା, ରାଜନୀତି ଲାଗି ରହୁଥିଲା । ହେଲେ କୁନ୍ତଳା ଆଶ୍ଚର୍ଯ୍ୟ ହେଉଥିଲା, ଆସ୍ତେ ବଦଳିଯାଉଥିବା ଦିଗ୍‌ବଳୟ ଓ ମାଟିର ରୂପ ଦେଖି । ମାଟି ଭିତରେ ବୋଧେ ଗୋଟେ ପ୍ରଚଣ୍ଡ ପ୍ରାଣସତ୍ତା ଥାଏ, ଗଛ ଭିତରେ ଥାଏ ଆପେ ଆପେ ସବୁଜ ହବାର ଅଦମ୍ୟ ଶକ୍ତି ! ଝଡ଼ ଝାଉଁଳା ଗଛବୃଛ ସବୁ କେମିତି ଚିକ୍‌କଣ ହୋଇଆସୁଥିଲେ । ମାଉଁସ ଲାଗୁଥିଲା ଆବୁଡ଼ା ଖାବୁଡ଼ା ଆଞ୍ଜୁଡ଼ା ମାଟିର ରୁଗ୍‌ଣ ଦେହରେ । ଅଶାନ୍ତ ସମୁଦ୍ର କେମିତି ସୁଧାର ହୋଇଯାଉଥିଲା ଓ ଭୟଙ୍କର ଆକାଶ ଏବେ ଆକାଶେ ତାରା ଧରି ହସି ଉଠୁଥିଲା ପ୍ରତିଟି ରାତିରେ । ସମୟର ଏ ପରିବର୍ତ୍ତନକୁ ବୁଝିପାରୁ ନ ଥିଲା କୁନ୍ତଳା ।

କିନ୍ତୁ ନିଜ ଭିତରର ପରିବର୍ତ୍ତନକୁ ସେ ଠିକ୍ ବୁଝିପାରୁଥିଲା । ତା'ଦେହ ଖୁବ୍ ଭାରୀ ଭାରୀ ଲାଗୁଥିଲା । ମଝିରେ ମଝିରେ ବାନ୍ତି ମାଡୁଥିଲା । ପେଟ ଭିତରେ କିଏ ଗୋଟେ ଯେମିତି ସଲସଲ ହଉଥିଲା । ମା' ହବାର ନୂଆ ଅନୁଭବ ବ୍ୟାକୁଳ କରୁଥିଲା କୁନ୍ତଳାକୁ । ଆଖି ଲୁହ ନିଜ ଅଜାଣତରେ ଫୁଲ ହୋଇ ଫୁଟୁଥିଲା ଓଠଧାରରେ । ଶିହରଣ ରୂପାନ୍ତରିତ ହେଉଥିଲା ସୋହାଗରେ । ଜଗା ନ ଫେରିବାର ଦୁଃଖ, କିଏ ଜଣେ ଆସିବାର ସ୍ୱପ୍ନରେ ଝାପ୍‌ସା ହୋଇଯାଉଥିଲା, ଆସ୍ତେ ଭାରି ଆସ୍ତେ । ସମୁଦ୍ରକୂଳରୁ ଫେରିଆସିଲା କୁନ୍ତଳା । ସମୁଦ୍ର ପବନ ସିନା ତା'ର ଦେହସୁହା, ହେଲେ ତା'ଦେହ ଭିତରେ ବଢୁଥିବା ଦେହଟିର ଯଦି କିଛି ଅମଙ୍ଗଳ ହୁଏ ?

କୁନ୍ତଳା ଆଜିକାଲି ଜଗା ଅପେକ୍ଷା ଘରତିଆରି ବିଷୟରେ ବେଶି ଭାଳି ହେଉଥିଲା । ନୂଆକରି ଦୁନିଆକୁ ଆସୁଥିବା ପିଲାଟା କ'ଣ ପଲିଥିନ୍ ଛପର ତଳେ ମୁଣ୍ଡ ଗୁଂଜିବ ? ଜଗା ଥିଲେ ଘରେ ଆନନ୍ଦର ମଉଛବ ଲାଗିଥା'ନ୍ତା ! କୁନ୍ତଳା ଭାବିଲା, ସେ ନିଧି ମହାନ୍ତିର ଦ୍ୱାରସ୍ଥ ହବ । ଘର କଥା ତାକୁ କହିବ । ସେ ତ ବି.ଡି.ଓ., କଲେକ୍ଟରକୁ ଉଠାବସା କଲା ଲୋକ । ପୁଣି ଭାବିଲା, ନା ଏମିତିକା ନୀଚଲୋକର ପାଖ ମାଡ଼ିବା ପାପ । ହଠାତ୍ ତା'ର ମନେପଡ଼ିଲା ବୁଧିଆଜେନା କହୁଥିଲା, କଲେକ୍ଟର କୁଆଡ଼େ ଭାରି ଭଲଲୋକ । ଲୋକ କ'ଣ ଟୋକାଟେ ପରା । ଦକ୍ଷିଣ ଦେଶ ମଣିଷ । ଗରିବଗୁରୁବାଙ୍କ ଦୁଃଖ ବୁଝେ । କଥା ଶୁଣେ । କୁନ୍ତଳା ମନକୁ ଭଲ ବୁଦ୍ଧିଟେ ଜୁଟିଲା । କଲେକ୍ଟର ପାଖକୁ ଖଣ୍ଡେ ଦରଖାସ୍ତ ଲେଖି ସେ ଡାକବାକ୍ସରେ ପକେଇଦେଲା ।

ତା'ର ଆଠଦଶଦିନ ପରେ ବ୍ଲକ୍ ଜେ.ଇ. ଆସି ପହଞ୍ଚିଗଲା କୁନ୍ତଳା ଘର ପାଖରେ । କହିଲା, ''ଖୁବ୍ ଶୀଘ୍ର ତମର ଘର ତିଆରି ସରିବ । ତମର ଯାହା ସୁବିଧା ଅସୁବିଧା ଆମକୁ ନ କହି ସିଧା କଲେକ୍ଟରଙ୍କୁ ଲେଖିଦଉଚ କାହିଁକି ? କାଲି ବ୍ଲକ୍ ଅଫିସ୍ ଆସ, ଆଡ୍‌ଭାନ୍ସ ଆଣିବ । ଆଉ ଯେଉଁ କଣ୍ଟ୍ରାକ୍ଟର ଆଗରୁ କାମ କରୁଥିଲା, ତା'ଜାଗାରେ ନୂଆ ଜଣେ କଣ୍ଟ୍ରାକ୍ଟର କାମ କରିବ । ବର୍ଷା ଋତୁ ପୂର୍ବରୁ ତମେ ନୂଆଘରେ ରହିଲେ ହେଲା ।'' ଏହା ଶୁଣି କୁନ୍ତଳା ଭାରି ଖୁସି ହେଲା, ଯାହା ହେଉ ନୂଆଘରେ ତା' ପିଲା ଜନ୍ମ ହେବ ।

ସତକୁ ସତ ନୂଆଘରେ କୁନ୍ତଳା ପିଲା ଜନ୍ମକଲା । ପୁଅ ପିଲାଟେ । ଜଗାପରି ହୃଷ୍ଟପୁଷ୍ଟ ଓ ତା'ପରି ଗୋରା । ତା' କାନ୍ଦଣାରେ କୁନ୍ତଳାର ଶୂନ୍ୟ ଅଗଣା ମୁଖରିତ ହେଲା । ଏଡ଼େ ବକଟେ ପିଲାର ଉପସ୍ଥିତି ତା' ମନରେ ବସା ବାନ୍ଧିଥିବା ସବୁ ଅସହାୟତାକୁ ଅସ୍ୱୀକାର କଲା ଯେମିତି ! ସେ ନିଜକୁ ଆଉ ଏକୁଟିଆ ମନେ କଲା ନାହିଁ । ପିଲାର ହଗାମୂତା, ଖିଆପିଆ ଓ କାନ୍ଦବୋବାଳି ଭିତରେ ବୁଡ଼ିରହି ସେ ଦିନବାର ଭୁଲିଗଲା । ଆଉ ରାହାଧରୁଥିବା ପୁଅ ମୁହଁରେ ତା' ପହ୍ନେଇଲା ଥନ ଗୁଂଜି ଦେଲାବେଳେ, ତା'ର ଆଉ ଝଡ଼ବାତ୍ୟା କଥା ମନେ ପଡୁ ନ ଥିଲା ; ଝାପ୍‌ସା ହୋଇ ଆସୁଥିବା ଜଗାର ମୁହଁ ଆହୁରି ଝାପ୍‌ସା ହୋଇଯାଉଥିଲା ।

ବର୍ଷାଋତୁ ଭିଡ଼ିମୋଡ଼ି ହଉଥିଲା ସମୁଦ୍ରକୂଳିଆ କେଉଟସାହିରେ ।

ଝିପିଝିପି ବର୍ଷା, କୋହଲା ପାଗକୁ ଖାତିର ନ କରି ହଠାତ୍ ଦିନେ ମାସକର ପିଲାକୁ କାଖରେ ଜାକି କୁନ୍ତଳା ପହଞ୍ଚିଗଲା ତହସିଲ୍ ଅଫିସ୍‌ରେ । ତହସିଲ୍‌ଦାର ସାମ୍ନାରେ ଶଙ୍ଖା କାଢ଼ିଦେଲା ହାତରୁ । ସୁନ୍ଥାରୁ ପୋଛିଦେଲା ସିନ୍ଦୂର । କହିଲା, ''ହଜୁର, ମୋ ଗେରସ୍ତ ମୃତ । ମୋ ପୁଅ ନାଁରେ ଲକ୍ଷେ ଟଙ୍କା ଜମା କରିଦିଅ ବ୍ୟାଙ୍କ୍‌ରେ ।''



# ବୋଉ ମରୁନି

ୱାର୍ଡ଼ ଡ୍ୟୁଟିରେ ଥିବା ଡାକ୍ତର କ୍ୟାବିନ୍ ଭିତରକୁ ପଶିଲେ । ପଛେ ପଛେ ତରୁଣୀ ନର୍ସ, ଶ୍ୱେତବସ୍ତ୍ରାବୃତା ।

ଅପ୍ରଶସ୍ତ କ୍ୟାବିନ୍ କୋଣରେ ପଡ଼ିଥିବା ବେଡ୍ ଉପରେ ଚିତ୍ ହୋଇ ଶୋଇଥିଲା ବୋଉ । ତା' ଶିରାଳ ହାତ ଶିରାରେ ସାଲାଇନ୍‌ର ଛୁଞ୍ଚି । ବେଡ୍ ବାଡ଼ରେ ତଳମୁହାଁ ହୋଇ ଝୁଲୁଥିଲା ସାଲାଇନ୍ ବୋତଲ । ବୋଉ ଆଖି ବୁଜିଥିଲା । ନିଦ ହୋଇଥିଲା କି ନାହିଁ କେଜାଣି ! ତା'ର ଯନ୍ତ୍ରଣା-ଦଗ୍ଧ ମୁହଁରୁ ବାହାରୁଥିବା ଉଁ ଉଁ ସ୍ୱର କ୍ଷୀଣ ଭାବରେ କ୍ୟାବିନ୍ ଭିତରେ ତରଙ୍ଗାୟିତ ହେଉଥିଲା । ସରୁ ବାଉଁଶ ପରି ତା'ର ଗୋଡ଼ ଦି'ଟା ବିଛଣା ଉପରେ ସ୍ଥିର ହୋଇ ପଡ଼ି ରହିଥିଲେ । ତା'ର କୁଞ୍ଚିତ ମୁହଁ ଉପରେ କେବେ କେମିତି ମାଛିଟିଏ ବସିବାର ପ୍ରୟାସ କରୁଥିଲା ।

ବୋଉର ମୁଣ୍ଡ ପାଖରେ ବସି ସୀତାନାଥ ଢୁଳଉଥିଲା । ବେଡ୍‌କୁ ଲାଗି ପଡ଼ିଥିବା ଷ୍ଟୁଲ ଉପରେ ବସିଥିଲେ ରମାନାଥ ।

ବେଡ୍ ବାଡ଼ାରେ ଝୁଲୁଥିବା ରୋଗୀର ହିଷ୍ଟ୍ରିସିଟ୍ ଉପରେ ଆଖି ବୁଲେଇ ଆଣିଲେ ଡାକ୍ତର । ବୋଉ ଛାତି ଉପରେ ଷ୍ଟେଥୋ ପକାଇଲେ । ତା'ର ବୁଜି ହୋଇଯାଇଥିବା ଆଖିପତା ଉପରକୁ ଟେକି ଦେଖିଲେ । ପରେ ପରେ, ନର୍ସକୁ କହିଲେ ସାଲାଇନ୍‌ର ଫ୍ଲୋ କମେଇଦବାପାଇଁ । ଫେରି ଯାଉଥିବା ଡାକ୍ତରଙ୍କ ପାଖକୁ ଯାଇ ରମାନାଥ ପଚାରିଲେ, ''ସାର୍, ରୋଗୀର ଅବସ୍ଥା କେମିତି ?'' ଡାକ୍ତର ଶୁଣି ନ ଶୁଣିଲା ପରି ଚାଲି ଯାଉ ଯାଉ କହିଲେ, ''ବୟସ୍କ ରୋଗୀ । ତା'ର ଅବସ୍ଥା ବିଷୟରେ କ'ଣ ପଚାରୁଛନ୍ତି ?'' ରମାନାଥ ଚୁପ୍ ରହିଲେ ।

ଡାକ୍ତରମାନେ କ'ଣ ସବୁବେଳେ ଏମିତି ରହସ୍ୟମୟ । ରମାନାଥ ଭାବିହେଲେ । ରୋଗୀ ବିଷୟରେ ଡାକ୍ତରଙ୍କଠାରୁ ଠିକ୍ ତଥ୍ୟ ପାଇବା ମଙ୍ଗଳଗ୍ରହରେ ଜୀବନ ସଂଧାନ ପରି ଦୁରୂହ !

ବୋଉ ଡାକ୍ତରଖାନାରେ ଭର୍ତ୍ତିହବା ଅଠରଦିନ ହୋଇଗଲାଣି । ପ୍ରଥମେ ପ୍ରଥମେ ଦୈନିକ ପାଞ୍ଚଟି ସାଲାଇନ୍ ଲାଗୁଥିଲା । ଏବେ କମି କମି ଦୁଇରେ ପହଞ୍ଚିଛି । ସାଲାଇନ୍ ଛୁଞ୍ଚିର ଦଂଶନରେ ବୋଉ ହାତରେ ଅସଂଖ୍ୟ କ୍ଷତଚିହ୍ନ । ଇଂଜେକ୍‌ସନକୁ ପ୍ରାଣରେ ଭୟ କରୁଥିବା ବୋଉ ଭାଗ୍ୟରେ ପୁଣି ଅବିରତ ଛୁଞ୍ଚିଫୋଡ଼ା ଯୋଗ ଥିଲା ।

ଛୁଞ୍ଚି ଫୋଡ଼ାବେଳେ ବୋଉ ଥରେ ଦି'ଥର ଉଃ ଆଃ ହୋଇ ପୁଣି ନୀରବି ଯାଉଛି । ତା'ର ଚେତା ଥାଇ ନ ଥିଲା ପରି । ଡାକିଲେ ବେଳେ ବେଳେ ହଁ କରୁଛି ତ ବେଳେ ବେଳେ ଜମା କିଛି ଶୁଣୁ ନାହିଁ । ଅଠର ଦିନ ଭିତରେ ଆଠପଦ କଥା କହିଥିବ କି ନାହିଁ । କଦବା କେମିତି କାହାକୁ ଚିହ୍ନିଲା ଚିହ୍ନିଲା ଦୃଷ୍ଟିରେ ଚାହୁଁଛି । ଅଧିକାଂଶ ଆତ୍ମୀୟଙ୍କୁ ଚିହ୍ନିପାରୁ ନାହିଁ ।

ଏଥର ବୋଉ ଆଉ ଟେକିବା ପରି ଜଣାଯାଉ ନାହିଁ ।

ରମାନାଥ ନିଜେ ଅଜା ହୋଇସାରିଲେଣି । ଦୁଇ ବର୍ଷ ତଳେ ବାହା ହୋଇଥିବା ତାଙ୍କ ବଡ଼ ଝିଅ ନମିର ଏବେ ଛ' ମାସର ପୁଅଟେ । ତାଙ୍କର ରିଟାୟାର୍ଡ଼ମେଣ୍ଟ ଆଉ ବର୍ଷେ ଦେଢ଼ବର୍ଷ ବାକି ଅଛି । ନିଜ ଦେହ ଭିତରେ ଗୋଟେ ହୁଗୁଳା ହୁଗୁଳା ପ୍ରକ୍ରିୟା ସେ ଅନୁଭବ କଲେଣି । ତଥାପି କାହିଁକି କେଜାଣି, ଅନେକ ସମୟରେ ବୋଉ ଲାଗି ତାଙ୍କ ମନଟା ଭାରି ଆଉଟୁପାଉଟୁ ହୁଏ !

ଗତ ଦୁଇ ବର୍ଷ ଭିତରେ ବୋଉ ପ୍ରାୟ ପାଞ୍ଚଥର ବେମାର ପଡ଼ିଲାଣି । ପ୍ରଥମେ ଯେତେବେଳେ ବୋଉର ଆଖି ଖରାପ ହେଲା, ରମାନାଥ ବୋଉକୁ ନିଜ ପାଖକୁ ନେଇଯାଇଥିଲେ । ସେତେବେଳେ ସେ ଚନ୍ଦ୍ରଗିରି ଆଶ୍ରମ ସ୍କୁଲରେ ହେଡ୍‌ମାଷ୍ଟର । ବ୍ରହ୍ମପୁରର ଗୋଟେ ପ୍ରାଇଭେଟ କ୍ଲିନିକ୍‌ରେ ସେ ବୋଉର ଆଖି ଅପରେସନ୍ କରେଇଥିଲେ । ଆଖି ଭଲ ହୋଇଗଲାପରେ ବୋଉ ଚନ୍ଦ୍ରଗିରିରେ ବେଶ୍ କିଛି ଦିନ ରହିଥିଲା । ସେଠାକାର ଜଳବାୟୁ ବୋଉ ପାଇଁ ଖୁବ୍ ଅନୁକୂଳ ହୋଇଥିଲା । ବୋଉର ଚେହେରା ବି କ୍ରମେ ବଦଳି ବଦଳି ଆସୁଥିଲା । ହେଲେ, ଗାଆଁ ଛାଡ଼ି ବୋଉ କ'ଣ ବାହାରେ ରହିପାରିବା ଲୋକ ? ଖାଲି ଘର ଘର ହେଲା ।

ଘରେ ପୁଣି କିଏ ବା ଅଛି ? କକାପୁଅ ଭାଇ ମାଧବ ଛଡ଼ା ଗାଆଁରେ ତ ଆଉ କେହି ରହନ୍ତି ନାହିଁ । ଜମିବାଡ଼ି ସବୁ ଭାଗଚାଷ କରେ ମାଧବ । ଗଛ ମାଛ ବି ତା' ହେପାଜତରେ ଥାଏ । ସୀତାନାଥ ତା' ପିଲାପିଲି ସହ ଭୁବନେଶ୍ୱରରେ ରହେ । ସେ ଏବେ ସେକ୍ରେଟାରିଏଟ୍‌ରେ ସେକ୍‌ସନ ଅଫିସର୍ । ଭୁବନେଶ୍ୱର ଛଡ଼ା ତାକୁ ଆଉ କୋଉ ଜାଗା ଭଲ ଲାଗେ ନାହିଁ । ଗାଆଁର ଜମିବାଡ଼ି ବିଷୟରେ ମୁଣ୍ଡ ଖେଳେଇବାକୁ ତା'ର ସମୟ ନ ଥାଏ । ବୋଉ କାହିଁକି କେଜାଣି ମୂଳରୁ ସୀତାନାଥ ସ୍ତ୍ରୀକୁ ଦେଖିପାରେ ନାହିଁ । ତେଣୁ ତା' ପାଖରେ ରହିବାକୁ ବୋଉ କେବେ ରାଜି ହୁଏ ନାହିଁ ।

ଘର ପାଖ ହେବ ବୋଲି ରମାନାଥ ଡିପାର୍ଟମେଣ୍ଟରେ ଧରାଧରି କରି କୌଣସି ପ୍ରକାରେ ଉଦଳା ଆସିଛନ୍ତି । ସେଠୁ ଅନ୍ତତଃ ମାସରେ ଥରେ ଅଧେ ଘରକୁ ଆସି ହୁଏ । କିନ୍ତୁ ଘରଠୁଁ କମ୍ ଦୂରରେ ରହିବା ଯୋଗୁଁ ଘରର ସବୁ ଦାୟିତ୍ୱ

ତାଙ୍କ ଉପରେ ଲଦି ହୋଇଯାଇଛି । ବଡ଼ ପୁଅ ଭାବରେ ସେ ତ ଏମିତି ବି ଘରର ସବୁ ଦାୟିତ୍ୱ ବୁଝୁଥିଲେ । ସୀତାନାଥ ନିଜଘରେ କୁଣିଆପରି । ତାକୁ ବା କାହିଁକି କାନ୍ଧ ଭାରା ଲାଗିବ ?

ପୁଅର ଚାକିରିପାଇଁ ଦୌଡ଼ାଦୌଡ଼ି ସାଙ୍ଗକୁ ବୋଉର ବାରମ୍ବାର ବେମାର ପଡ଼ିବା ବଡ଼ ତକ୍‌ଲିଫ୍‌ରେ ପକାଇଛି ରମାନାଥଙ୍କୁ । ବୋଉକୁ କେତେଥର ସେ ଉଦଳା ନେଇ ପାଖରେ ରଖିଛନ୍ତି । ବୋଉ ଟିକେ ଭଲ ହେଲା ପରେ ପୁଣି ଜିଦ୍ ଧରି ଫେରିଛି ଘରକୁ । ସେ ଖାଲି ଉଦଳାରୁ ଗାଆଁ ଓ ଗାଆଁରୁ ଉଦଳା ଦୌଡ଼ି ଦୌଡ଼ି ନୟାନ୍ତ ହୋଇଛନ୍ତି । ଅଥଚ ବୋଉର ସ୍ୱାସ୍ଥ୍ୟରେ ସାମୟିକ ଉନ୍ନତି ଘଟିଲେ ବି ସେ ପୂରା ସୁସ୍ଥ ହୋଇପାରି ନାହିଁ ।

ଏଥର ବୋଉର ଅବସ୍ଥା କିନ୍ତୁ ସବୁଥର ଅପେକ୍ଷା ଗୁରୁତର । ମାଧବଠାରୁ ଫୋନ୍ ପାଇ ସେ ଗାଆଁକୁ ଆସିଲାକ୍ଷଣି ବୋଉକୁ ଦେଖି ହଡ଼ବଡ଼େଇ ଗଲେ । ସଦର ହସ୍ପିଟାଲରେ ବୋଉକୁ ଭର୍ତ୍ତି କରିବା ଛଡ଼ା ତାଙ୍କର ଅନ୍ୟ ଉପାୟ ନ ଥିଲା । ଦୁଇ ତିନି ଦିନ ୱାର୍ଡ଼ରେ ପଡ଼ିରହିବା ପରେ କୌଣସି ପ୍ରକାରେ କ୍ୟାବିନ୍‌ଟେ ମିଳିଗଲା । ତା'ପରେ ଯାଇ ସେ ସୀତାନାଥକୁ ଖବର ଦେଲେ । ନବୀନକୁ ଡକାଇଲେ ଉଦଳାରୁ । ଭଉଣୀମାନଙ୍କ ପାଖକୁ ବି ଟେଲିଗ୍ରାମ କଲେ ।

ଏପର୍ଯ୍ୟନ୍ତ ଭଉଣୀ କେହି ଆସି ପହଞ୍ଚି ନାହାନ୍ତି । ସୀତାନାଥ ଚାରି ପାଞ୍ଚ ଦିନ ତଳେ ଆସି ଦିନଟିଏ ରହି ଫେରିଯାଇଥିଲା ଭୁବନେଶ୍ୱର । କାଲିଠୁଁ ପୁଣି ଆସି ପହଞ୍ଚିଛି । ନବୀନ ରାତିରେ ବୋଉକୁ ଜଗି ଜଗି ବୋର୍ ହେଲାଣି । ଏକେ ତ ବେକାର, ତା' ମନର ଅବସ୍ଥା ଭଲ ନାହିଁ । ତା' ସାଙ୍ଗକୁ ସଂକୀର୍ଣ୍ଣ କ୍ୟାବିନ୍ ଚଟାଣରେ ବିଛଣା ଚଦର ପକାଇ ଶୋଇ ଶୋଇ ସେ ଚିଡ଼ିଗଲାଣି । ମୁହଁ ଖୋଲି ସିନା କହିପାରୁନି କିଛି !

ମାସେ ଦି'ମାସରେ ଥରେ ବୋଉର ବେମାରି ବାହାରିଲେ କିଏ ବା ନ ଚିଡ଼ିବ ?

ଦେହ ଖରାପ ଯୋଗୁଁ ବୋଉ ଉଦଳାରେ ଥିଲାବେଳେ, ସେଠାକୁ ସୀତାନାଥ, ତା' ପିଲାମାନେ ଓ ଦୁଇଜଣଯାକ ଭଉଣୀ ଯାଇଥିଲେ । ବୋଉକୁ ଟେକାଟେକି କରିବା ଅପେକ୍ଷା ଅତିଥିଚର୍ଚ୍ଚା ଅଧିକ ବାଧିଥିଲା ରୁକ୍ମିଣୀଙ୍କୁ । ବୋଉକୁ ଗାଧୋଇଦବା, ତା' ପାଇଖାନା ସଫା କରିବାଠାରୁ ରୋଷେଇବାସ ପର୍ଯ୍ୟନ୍ତ ଯାବତୀୟ କାମ କରି ରୁକ୍ମିଣୀ ବି ଅସୁସ୍ଥ ହୋଇପଡ଼ିଥିଲେ । ସେ ମାସ ଜି.ପି.ଏଫ୍.ରୁ ପାଞ୍ଚ ହଜାର ଟଙ୍କା ଉଠେଇବା ସତ୍ତ୍ୱେ ହାତ ଉଧାରି କିଛି କମ୍ ହୋଇ ନ ଥିଲା । ସୀତାନାଥ ଦୁଇଚାରି ଥର ମେଡିସିନ୍ କିଣିଥିଲା ଯାହା ।

ଏଥର କେହି ନ ଆସିଲେ ବରଂ ଭଲରେ ବୋଉର ଚିକିତ୍ସା କରିହବ । ଗାଆଁ ତ ଏଠୁ ଆଠ କିଲୋମିଟରରୁ ଅଧିକ ବାଟ । ଗାଡ଼ି ମୋଟରର ସେମିତି ସୁବିଧା ନାହିଁ । ସକାଳେ ସଂଜେ ଖଣ୍ଡେ ଲେଖାଏଁ ଟ୍ରେକର କେନାଲ୍ ବନ୍ଧେ ବନ୍ଧେ ଗାଆଁକୁ ଯାଏ ଯେ ସେଥିରେ ଆଳୁ ବାଇଗଣ ବସ୍ତାପରି ଲଦି ହୋଇଥା'ନ୍ତି କି ସ୍ତ୍ରୀ କି ମର୍ଦ୍ଦ ! ଗାଆଁକୁ ରିକ୍ସାରେ ପିଠିଏ ଗଲେ, କୋଡ଼ିଏ ଟଙ୍କାରୁ କମ୍ ଲାଗେ ନାହିଁ । ନବୀନ ଓ ସେ ଏଇ କେତେଦିନ ହବ ଅଦଳ ବଦଳ ହୋଇ ସଂଜେ ସକାଳେ ଗାଆଁକୁ ଯାଉଛନ୍ତି ସାଇକେଲ୍‌ରେ ଓ ଖାଇସାରି ଫେରୁଛନ୍ତି । ଗାଆଁ ସହ ଅନଭ୍ୟସ୍ତା ହେଲେ ବି କୌଣସି ପ୍ରକାରେ କାମ ଚଳେଇ ନେଉଛନ୍ତି ରୁକ୍ମିଣୀ । ଭଉଣୀ ଦି'ଜଣ ଆସିଲେ ତାଙ୍କ କଥା ବୁଝୁ ବୁଝୁ ପୁଣି ତର ସହିବ ନାହିଁ ତାଙ୍କୁ । ମଝିରେ ମଝିରେ ସେ ଦୁହିଁଙ୍କୁ ହସ୍ପିଟାଲ ଆଣିବା ପୁଣି ଗୋଟେ ସମସ୍ୟା । ଭଉଣୀ ଭିଣୋଇ କେହି ନ ଆସିଲେ ବରଂ ଭଲ !

ସେମାନେ ବି ବାରମ୍ବାର ଗାଆଁ ଓ ଉଦଳାକୁ ଯାଇ ଯାଇ ବିରକ୍ତ ହୋଇଗଲେଣି । ସେମାନଙ୍କର ତ ପୁଣି ଘରସଂସାର ଅଛି । ଦୁଇଜଣ ଯାକ ଭିଣୋଇ ପୁଣି ସରକାରୀ ଅଫିସର୍, ଦୂର ସହରରେ । ଏଥର ବୋଧେ ଦ୍ୱିତୀୟ ଟେଲିଗ୍ରାମକୁ ସେମାନେ ଅପେକ୍ଷା କରିଛନ୍ତି । ଦ୍ୱିତୀୟ ଟେଲିଗ୍ରାମକୁ କାହିଁକି, ହୁଏତ ଶେଷ ଟେଲିଗ୍ରାମ୍‌କୁ ।

ବୋଉ କ'ଣ ସତରେ ଏଥର ଚାଲିଯିବ ? ଭାବିଲାକ୍ଷଣି ସୀତାନାଥଙ୍କ ଦେହ ଶୀତେଇ ଉଠୁଥିଲା । ସେ ପିଲାଦିନୁଁ ଦେଖି ଆସୁଥିବା ବୋଉ ଆଉ ଏବର ବୋଉ ଭିତରେ କେତେ ପାର୍ଥକ୍ୟ ସତେ ! ତାଙ୍କ ବାପାଙ୍କ ପରି ଗୋଟେ ଏକଜିଦିଆ ମଣିଷର ହାତ ଧରି କ'ଣ କମ୍ ହନ୍ତସନ୍ତ ହୋଇଛି ବୋଉ ? ତା' ସାଙ୍ଗକୁ ପିଲାଛୁଆ, ବନ୍ଧୁବାନ୍ଧବ ସବୁକଥା ବୋଉ ହିଁ ବୁଝୁଥିଲା । ବାପା ତ ଥିଲେ ଚିରକାଳ ମିଜାଜୀ; ମୁଡ୍‌ଡି । ସେମାନଙ୍କୁ ମଣିଷ କରିବା ପଛରେ ବାପାଙ୍କ ଅପେକ୍ଷା ବୋଉର ଅବଦାନ ଥିଲା ବେଶି । ସେଇ ବୋଉର ମରିଯିବାକୁ ଆଜି ଯେମିତି ସମସ୍ତେ ଚାହିଁ ବସିଛନ୍ତି ।

ସୀତାନାଥ କହୁ କହୁ ସେଦିନ କହି ପକେଇଲା, ବୋଉ ମରୁନି ଯେ ସମସ୍ତଙ୍କୁ ଦହଗଂଜ କରି ମାରୁଛି । ସୀତାନାଥ ପିଲାବେଳୁ ଏମିତି ଖାପ୍‌ଛଡ଼ା ପ୍ରକୃତିର । ନିଜ ଛଡ଼ା ସେ ଆଉ କିଛି ଚିନ୍ତା କରେନି କେବେ । ହେଲେ, ସେ ତ ବୋଉକୁ ଭାରି ଭଲପା'ନ୍ତି । ସେ କ'ଣ ମନେ ମନେ ଚାହୁ ନାହାନ୍ତି, ବୋଉ ମରିଯାଉ ବୋଲି ! ରୁକ୍ମିଣୀଙ୍କ ଭାରୀ ଭାରୀ ମୁହଁ କ'ଣ ସୂଚନା ଦେଉନି ବୋଉ ପ୍ରତି ତାଙ୍କର ମନୋଭାବ କେମିତି ? ନବୀନର ବିରକ୍ତି ଭିତରେ କ'ଣ ପ୍ରତିଫଳିତ ହେଉନି ତା' ବୁଢ଼ୀମା'ର ଅବାଞ୍ଛିତ ଜୀବନ ? ଭଉଣୀ ଭିଣୋଇଙ୍କ ଡେରି ଡେରି ଭାବ କ'ଣ ସେହିପରି ଏକ ନଗ୍ନ ବାସ୍ତବତାର ଝଲକ ନୁହେଁ ।

ଏ ସମସ୍ତଙ୍କ ପାଇଁ କ'ଣ ବା ନ କରିଥିଲା ବୋଉ !

ପିଲାବେଳେ ଥରେ ସୀତାନାଥକୁ ଟାଇଫଏଡ୍ ହୋଇଥିବା କଥା ମନେ ପଡୁଥିଲା ରମାନାଥଙ୍କର । ଦୁର୍ଯୋଗକୁ ସେତେବେଳେ ଘରେ ନ ଥିଲେ ବାପା । ରମାନାଥଙ୍କର ସେ ବର୍ଷ ମେଟ୍ରିକର ଶେଷଶ୍ରେଣୀ । କକାଙ୍କ ସହ ଜମିବାଡ଼ି ଝଗଡ଼ାକୁ ନେଇ ଅପଡ଼ । ସେକାଳର ନୂଆ ଭୁଆସୁଣୀ ବୋଉ ସୀତାନାଥକୁ କାନ୍ଧରେ ପକେଇ କେନାଲ ବନ୍ଧେ ବନ୍ଧେ ଚାଲି ଚାଲି ଆସି ପହଞ୍ଚିଥିଲା ଏଇ ହସ୍ପିଟାଲରେ । ଦିନେ ଡେରି ହୋଇଥିଲେ ସୀତାନାଥ ବୋଧେ ଆଉ ନ ଥା'ନ୍ତା । ରମାନାଥଙ୍କ ଚାକିରିବେଳେ ହଠାତ୍ ଟଙ୍କା ଦରକାର ପଡ଼ିବାରୁ ବେକରେ ସୂତା ଗୁଡ଼େଇ ସୁନାହାର ଫିଙ୍ଗି ଦେଇଥିଲା ନା ବୋଉ ? ତା' ଝିଅମାନେ ସୁଖରେ ରହିବେ ବୋଲି ବାପାଙ୍କ ସହ କଳି କରି କେତେ ଯେ ପ୍ରସ୍ତାବ ଭାଙ୍ଗିଥିଲା ବୋଉ । ଥିଲାବାଲା ଘରେ ରୋଜଗାରିଆ ପୁଅ ଦେଖି ଝିଅ ବାହାଦବା ମୂଳରେ ଥିଲା କିଏ ଯେ ଆଉ ? ବୋଉ ତ !

ଯା' ଭିତରେ ଥରେ ଚା' ପିଇ ଫେରିଆସିଥିଲା ସୀତାନାଥ । ରମାନାଥଙ୍କୁ ଲକ୍ଷ୍ୟ କରି କହିଲା, ''ଭାଇ, ତମର ଛୁଟି ନବାରେ କିଛି ଅସୁବିଧା ନ ଥିବ । ତମେ ହେଡ୍‌ମାଷ୍ଟରମାନେ ହେଡ୍ ଅଫ୍ ଦି ଅଫିସ୍ । ଛୁଟି ନବା ପାଇଁ ତମକୁ କିଏ ବା ବାରଣ କରିବ ? ହେଲେ ଆମର ଏ ନୂଆ ସେକ୍ରେଟେରୀଟା ନିହାତି ଗୋଟେ ବାଜେ ଲୋକ । ଡିପାର୍ଟମେଣ୍ଟରେ କୋଉ କିରାଣି ଟିକେ ଡେରିରେ ଆସିଲା, ସେ ଖବର ସେ ବୁଝେ । ଓଧ ସାଙ୍ଗରେ ଭୁଆ ବାଇ ହେଲାପରି ବୁଢ଼ା ଡେପୁଟି ସେକ୍ରେଟାରୀଟା ଖାଲି ତୁଚ୍ଛାଟାରେ ଫଁ ଫଁ ହୁଏ ।'' ସୀତାନାଥର ଏ ସବୁ ଗୌରଚନ୍ଦ୍ରିକାରୁ ରମାନାଥ ବୁଝିଗଲେ ଯେ ଭୁବନେଶ୍ୱର ଫେରିଯିବା ଲାଗି ସୀତାନାଥର ଯେ ଗୋଟେ ବାହାନା । ବୋଉ ମୁଣ୍ଡରେ ହାତ ବୁଲଉ ବୁଲଉ ସେ କହିଲେ, ''ଦିନେ ଦି' ଦିନ ଅଟକି ଯା । ଆମକୁ ବୋଧେ ଆଉ ବେଶି ଦିନ ଅପେକ୍ଷା କରିବାକୁ ପଡ଼ିବନି ।''

ଆଉ କେତେଦିନ ଏଠି ରହିବାକୁ ପଡ଼ିବ ? ଡ୍ୟୁଟିରେ ଆସୁଥିବା ଡାକ୍ତରମାନଙ୍କୁ ପଚାରୁଥିଲେ ରମାନାଥ, ପ୍ରାୟ ପ୍ରତିଦିନ । ଅଥଚ ଡାକ୍ତରମାନଙ୍କ ଉତ୍ତର ଥିଲା ଦୁର୍ବୋଧ୍ୟ !

ରମାନାଥ ବେଳେ ବେଳେ ଭାବୁଥିଲେ, ବୋଉର ଶେଷ ଅବସ୍ଥା ଯେତେବେଳେ, ତାକୁ ଗାଆଁକୁ ଫେରେଇନେଲେ ବରଂ ଭଲ ହୁଅନ୍ତା । ସେଠି ବୋଉର ମୁଣ୍ଡ ପାଖରେ ବସି ଅଧେ ଦି'ଅଧା ଭାଗବତ ପଢ଼ିଲେ ବୋଉ ହୁଏତ ଶାନ୍ତି ପାଆନ୍ତା । ଏତେ ଉଃ ଆଃ ହୁଅନ୍ତା ନାହିଁ ।

ପରକ୍ଷଣରେ ସେ ପୁଣି ନିଜର ମତ ବଦଳାଉଥିଲେ । ଯେତେ ଯାହା ହେଲେ ବି ହସ୍ପିଟାଲର ସେ ବୁଢ଼ୀ ବେହେରାଣୀର ସେବା ଭୁଲିବାର ନୁହେଁ । କେତେ ବା ପାଉଣା ନଉଛି । ହେଲେ ବୋଉକୁ ଦାନ୍ତ ଘଷେଇଦବାଠାରୁ ତା' ଘୁଅମୂତ ସଫା

କରିବା ପର୍ଯ୍ୟନ୍ତ ସବୁ କାମ ସେ ତୁଲଉଛି । ଘରେ ଏ ସବୁ କରିବ କିଏ ? ସେ ନିଜେ, ନ ହେଲେ ରୁକ୍ମିଣୀ ତ ? ଘରେ ଘୁଅମୂତରେ ଘାଣ୍ଟି ହବା ଅପେକ୍ଷା ହସ୍ପିଟାଲରେ ରହି ଖାଇବା ପିଇବାର ଅନିୟମିତତା ଆବୋରି ନବା କ'ଣ ଭଲ ନୁହେଁ ? କିନ୍ତୁ ଏମିତି କେ଼ତେଦିନ ବା ଆଉ ଚଳିହବ ?

ତେଣେ ତାଙ୍କ ଅନୁପସ୍ଥିତିରେ ସ୍କୁଲର ଅବସ୍ଥା କ'ଣ ଯେ ହୋଇଥିବ, ତା'ର କଳନା ନାହିଁ । ରାମବାବୁ ଓ ମହାପାତ୍ରର ହୁଏତ ଥରେ ଦୁଇଥର ହାତାହାତି ହୋଇସାରିବଣି ! ରାଉତବାବୁ ଯା' ଭିତରେ ସାତ ଥର ଏଫ.ଏଲ୍. ମାରି ଘରକୁ ପଳେଇଥିବ ବୋଧେ ! ବିଶୃଙ୍ଖଳ ଛାତ୍ରମାନଙ୍କର ହୋ-ହାଲ୍ଲାରେ ହାଟ ପାଲଟି ଯାଇଥିବ ଆଶ୍ରମ ସ୍କୁଲଟି । ସେ କେତେଦିନ ଆଉ ସ୍କୁଲଛାଡ଼ି ରହିପାରିବେ ବୋଉ ପାଖରେ । ଖୁବ୍ ଜୋରରେ ଦିନେ ଦୁଇଦିନରୁ ଅଧିକ କେହି ଅଟକାଇ ରଖିପାରିବନି ସୀତାନାଥଙ୍କୁ ଏଠି । ତା' ପିଲାମାନଙ୍କର ବି ଏଠାକୁ ଆସିବାର ସମ୍ଭାବନା କମ୍ । ଭଉଣୀ ଦୁହେଁ ଯଦିବା ଆସନ୍ତି, ଖାଲି ଗପ କରି କରି ବୋର୍ କରିଦେବେ ସମସ୍ତଙ୍କୁ । ବୋଉର ଆଉ କେତେ ଗହଣାଗାଣ୍ଠି ଅଛି, ତା'ର ଖବର ନେବେ ଯାହା !

ରମାନାଥ ନିଜ ଭିତରେ ଚିଡ଼ି ଉଠୁଥିଲେ । ଏ ବୟସରେ ଦୈନିକ ଆଠ ଆଠ ଷୋହଳ କିଲୋମିଟର ସାଇକ୍ଲିଂ କରିବାକୁ ତାଙ୍କୁ ବଡ଼ କଷ୍ଟ ହେଉଥିଲା । ତଥାପି ସେ ରାତିରେ ଘରକୁ ଯାଇ ସକାଳୁ ଫେରୁଥିଲେ । ନ ହେଲେ ସକାଳୁ ଘରକୁ ଯାଇ ଫେରୁଥିଲେ ସଂଜରେ ! ମେଡିସିନ୍ ଦୋକାନରେ ବାକି ବଢୁଥିଲା । ଫାଙ୍କା ହୋଇଯାଉଥିଲା ତାଙ୍କ ପଞ୍ଜାବି ପକେଟ୍ । ସେ ସୀତାନାଥକୁ ହାତ ପତେଇ ପାରୁ ନ ଥିଲେ କି ବେହେରାଣୀକୁ ପାଉଣା ଦବାରେ ହେଳା କରିପାରୁ ନ ଥିଲେ । ''ବୋଉଙ୍କ ଅବସ୍ଥା କେମିତି ? ଆମେ ଦିନେ ଦୁଇଦିନ ଭିତରେ ଯାଇ ପହଞ୍ଚୁଛୁ,'' ବୋଲି ଭିଣୋଇ ଦିହିଁଙ୍କ ଅସ୍ପଷ୍ଟ ଉଚ୍ଚାରଣ ସେ ଫୋନ୍‌ରୁ ଶୁଣୁଥିଲେ, କିନ୍ତୁ କିଛି କହିପାରୁ ନ ଥିଲେ ।

ମନେ ମନେ ବୋଉର ଅନ୍ତ୍ୟେଷ୍ଟିକ୍ରିୟା ପାଇଁ ଆୟବ୍ୟୟର ହିସାବ କରିବାକୁ ବି ଭୁଲୁ ନ ଥିଲେ ରମାନାଥ । ଦଶବର୍ଷ ତଳେ ବାପାଙ୍କ ଅନ୍ତ୍ୟେଷ୍ଟିରେ ଦଶ ବାର ହଜାର ଟଙ୍କା ଖର୍ଚ୍ଚ ହୋଇଥିବା ମନେ ପଡୁଥିଲା ତାଙ୍କର । ସେହି ଧରଣର କ୍ରିୟା ପାଇଁ ଏବକୁ ପଚିଶ ହଜାର ଟଙ୍କା ଅଣ୍ଟିବ କି ନାହିଁ ସନ୍ଦେହ ! ସୀତାନାଥଠାରୁ ପାଞ୍ଚ ଛ' ହଜାରରୁ ଅଧିକ ଆଶା କରିବା ବୃଥା । ବଡ଼ ଭିଣୋଇଟି ହୁଏତ ଦି'ହଜାର ଦେଇପାରେ । ସାନଟି ତ ପରମ ଶୁଣ୍ଢା । ତା' ପକେଟରୁ ଟଙ୍କା ପାଞ୍ଚଶ ବାହାରିବା କାଠିକର ପାଠ । ଆଉ ଅନ୍ୟ ବନ୍ଧୁବାନ୍ଧବଙ୍କ ଭାରବେଭାର ମହାସମରକୁ ସାଉଁଟିଲା କାଣ୍ଡ ! ଘରର ବଡ଼ ପୁଅ ହୋଇଥିବାରୁ ସବୁ ଭାର ମୁଣ୍ଡେଇବା ଯେମିତି ତାଙ୍କର କପାଳ ଲିଖନ-ବାପାମା'ଙ୍କ ଘୁଅମୂତ କାଢ଼ିବାଠୁଁ ତାଙ୍କ ଅସ୍ଥି ଗଙ୍ଗାରେ ବିସର୍ଜନ କରିବା ପର୍ଯ୍ୟନ୍ତ ।

ଊଣା ହୋଇଆସୁଥିଲା କ୍ରମେ ରମାନାଥଙ୍କ ମନୋବଳ । ସଙ୍କୁଚିତ ହୋଇଯାଉଥିଲା ତାଙ୍କ ଧୈର୍ଯ୍ୟର ଦିଗନ୍ତ ।

ବୋଉ ମରୁନି କାହିଁକି ? ଆପେ ଆପେ ଯେମିତି କହି ହୋଇଗଲା ରମାନାଥଙ୍କ ଭିତରେ । ପରକ୍ଷଣରେ ସେ ଚିହିଁକି ପଡ଼ିଲେ । ଆହା...ଏ କଥା କିଏ କହୁଚି ତାଙ୍କ ଭିତରେ । ତାଙ୍କ ମୁହଁରୁ ବୋଉ ଡାକ ସବୁଦିନପାଇଁ ଉଭେଇ ଯାଉ ବୋଲି କ'ଣ ସେ ସତରେ ଚାହାନ୍ତି ? ନିଜେ ଅଜା ହେଲା ପରେ ବି 'କାହ୍ନୁ' ଡାକ ଶୁଣିବାର ସୌଭାଗ୍ୟ କ'ଣ ସମସ୍ତଙ୍କର ଥାଏ ? କାହ୍ନୁ ବୋଲି ଡାକିବାର ସାମର୍ଥ୍ୟ ହରେଇଥିବାରୁ ବୋଉ କ'ଣ ଅଦରକାରୀ ହୋଇପଡ଼ିଲା ?

ହଁ, ଦରକାରୀ ନୁହେଁ ତ ଆଉ କ'ଣ ? ରମାନାଥଙ୍କ ଭିତରର ଆଉ ଗୋଟେ ସତ୍ତା ଯେମିତି ଯୁକ୍ତି ବାଢୁଥିଲା । ଏମିତି ବଞ୍ଚୁ ବଞ୍ଚୁ ମରିବା ଅପେକ୍ଷା ମରି ନ ଯିବ କାହିଁକି ବୋଉ । ତା' ହାତ ତ ପାଟିକୁ ଯାଉ ନାହିଁ । ଗୋଡ଼ ଚଲୁ ନାହିଁ । ସେ ଯାହା ବା ଯେତେବେଳେ କହୁଛି, କିଛି ତ ବୁଝି ହେଉ ନାହିଁ । ଏମିତି ବଞ୍ଚିବା କ'ଣ ଜୀବନରେ ଲେଖା ! ବୋଉ ଜୀବନରେ ଆଉ ବାକି ରହିଛି ବା କ'ଣ ? ପୁଅବୋହୂ, ନାତି ନାତୁଣୀ ସାଙ୍ଗକୁ ସେ ଅଣନାତି ବି ଦେଖିଲା । ଏଣିକି ତା'ପାଇଁ ଜୀବନ ମାନେ ତ ଜୀବନ୍ତମରଣ । ଏ ସୁନ୍ଦର ପୃଥିବୀ କେଉଁଦିନରୁ ସବୁ ରଙ୍ଗ ହରେଇ ସାରିଛି ତା'ପାଇଁ । କିନ୍ତୁ ଯୋଉମାନଙ୍କ ପାଇଁ ଏ ପୃଥିବୀ ତଥାପି ରଙ୍ଗିନ, ସେମାନେ କାହିଁକି ଏତେ ଦହଗଞ୍ଜ ହେବେ ? ବୋଉ ମରିଗଲେ ଅନ୍ତତଃ ସେ ତ୍ରାହି ପାଇଯା'ନ୍ତେ !

ସେଦିନ ଉପରଓଳି ସୀତାନାଥ ଭୁବନେଶ୍ୱର ଯିବାକୁ ବାହାରିଲା ଯେ ବାହାରିଲା, ରମାନାଥ ନାହିଁ କରିପାରିଲେ ନାହିଁ । ମନେ ମନେ କହିହେଲେ, ''ଦେଖିବିରେ ସୀତାନାଥ, ତୁ ଏମିତି କେତେଦିନ ପଦ୍ମପତ୍ରରେ ଜଳ ହୋଇ ରହିଥିବୁ ?''

ସଂଜକୁ ପୁଣି ତନ୍ୱୀ ନର୍ସ ଗହଣରେ ଆସିଲେ ଡାକ୍ତର । ଏଥର କିନ୍ତୁ ରମାନାଥ କିଛି ପଚାରିଲେ ନାହିଁ । ଅଥଚ ଭାରି ଚୁପ୍‌ଚାପ୍ ଡାକ୍ତର ସେଦିନ ପାଟି ଖୋଲିଲେ, ''ଆପଣଙ୍କ ପେସେଣ୍ଟ ଡେନ୍‌ଜର ବାହାରେ । ଆସନ୍ତାକାଲି ତାଙ୍କୁ ଡିସ୍‌ଚାର୍ଜ କରାଯିବ ।''

''ଚିନ୍ତା କରନ୍ତୁ ନାହିଁ, ପାରାଲିସିସ୍ ପେସେଣ୍ଟମାନେ ଦୀର୍ଘଜୀବୀ'' ବୋଲି ନର୍ସଟି କଥା ଯୋଡୁଥିଲାବେଳେ, ତାଙ୍କ ଗୋଡ଼ ଦୁଇଟି ପାରାଲିସିସ୍‌ଗ୍ରସ୍ତ ହୋଇଯାଉଥିବା ପରି ଅନୁଭବ କରୁଥିଲେ ରମାନାଥ । କିନ୍ତୁ ବେଶ୍ କିଛିଦିନ ହେଲା ମଉଳି ଯାଇଥିବା ଖୁସି ଭାବଟା ଯେମିତି ଆଙ୍କି ହୋଇଯାଉଥିଲା ତାଙ୍କ ମୁହଁରେ, ନିଜ ଅଜାଣତରେ ।



# ଆଖି ଖୋଲିଲେ ସକାଳ

''ବୁଢ଼ାରେ, ଆଉ କେତେ ଦିନ ରହିବି ତୋ ପାଖରେ । ତେଣେ ଗାଁରେ ଚାଷବାସ, ଗୋରୁଗାଈ ଉଜୁଡ଼ି ଯାଉଥିବ । ରଙ୍କୁଣୀ ଗାଁ ମାଇପେ ଚାଳରେ କୁଟାଖିଏ ରଖେଇ ଦଉ ନ ଥିବେରେ । ସେ ବଢ଼ିଲା ଝିଅଟା କ'ଣ କରୁଥିବ ଏକା ଏକା ! ମନଟା ଭାରି ଗୁଡ଼େଇ ତୁଡ଼େଇ ହଉଚି ।''

''ତା'ହେଲେ ତୁ କାଲି ଗାଁକୁ ପଳା''– ବୋଉର କଥା ସରିଲା ବେଳକୁ କହିଲା କେଶୁ । କହିଦେଲା ସିନା ଏମିତି ସେ ଉପରକୁ, ହେଲେ ଖୁବ୍ ବଡ଼ କୋହଟେ ତା' ପିଞ୍ଜରାରେ ଧକ୍କା ଖାଇଲା । ସେ ଶୋଇଥିବା ଖଟ ଘର ସହ ଯେମିତି ଆକାଶକୁ ଉଠିଯାଇ ଏଣେତେଣେ ଘୂରିବୁଲିଲା । ଗୋଟେ ଅସହ୍ୟ ଯନ୍ତ୍ରଣାରେ ତା'ଆଖି ବନ୍ଦ ହୋଇଗଲା । ବୋଉ ଅବଶ୍ୟ ସେସବୁ କିଛି ଜାଣିପାରିଲା ନାହିଁ । ସେଦିନ ରାତିରେ କେଶୁକୁ ଜମା ନିଦ ହେଲା ନାହିଁ । ସେ ଅଯଥାରେ ବର୍ଷା ଓ ବୁଣ୍ଟି ଉପରେ ଚିଡ଼ିଲା । ବଡ଼ ଅସହାୟ ଲାଗିଲା ତାକୁ । ସେ ନିଃଶବ୍ଦରେ କାନ୍ଦିଲା ଥରେ ଦୁଇ ଥର । ମା'ଠାରୁ ଦୂରେଇ ଯାଉଥିବ ଦୁଧଖିଆ ଛୁଆଟେର ବିକଳ ଅନୁଭବ ତାକୁ ଗ୍ରାସ କଲା ।

କେଶୁଠାରୁ ସମସ୍ତେ ଆସ୍ତେ ଆସ୍ତେ ଦୂରେଇ ଯାଉଥିଲେ ଯେମିତି ! ସତରେ କିଏ ଦୂରେଇ ଯା'ନ୍ତୁ ବା ନ ଯା'ନ୍ତୁ, ସେମିତି ଧାରଣାଟେ କିନ୍ତୁ ତା' ମନ ଭିତରେ ଡାଳପତ୍ର ମେଲେଇ ସାରିଥିଲା । ବର୍ଷେ କାଳ ଗୋଟିଏ ବିଛଣାରେ ପଡ଼ି ରହିବାର ଯନ୍ତ୍ରଣା ସାଙ୍ଗକୁ ଆତ୍ମୀୟମାନେ ତା'ଠାରୁ ଦୂରେଇ ଯାଉଥିବା ଅନୁଭବଟି ତାକୁ ମ୍ରିୟମାଣ କରିଦଉଥିଲା । ବର୍ଷା, ବୁଣ୍ଟି କାହାରି ଆଗରେ ସେ କାନ୍ଦିପାରୁ ନ ଥିଲା, ଅଥଚ କାନ୍ଦଣାର କରୁଣ ସ୍ୱର ତା' ଛାତି ଭିତରେ ଅହରହ ଲହଡ଼ି ଭାଙ୍ଗୁଥିଲା ।

ବୋଉକୁ ସକାଳ ଗାଡ଼ି ଚଢ଼େଇ ଦେଇ ବର୍ଷା କ୍ୱାର୍ଟର୍ସକୁ ଫେରିଲାବେଳକୁ କେଶୁ ଯେମିତି ପାଲଟି ଯାଇଥିଲା ଗୋଟେ ଛେଉଣ୍ଡ ଆକାଶ ।

ବର୍ଷେ ତିନି ମାସ ତଳର ସେହି ଓଦା ସକାଳର ସ୍ମୃତି ପୁଣି ସବାର ହେଲା ତା' ମନରେ । ସେଦିନର ସକାଳ ଭାରି ଗୋଟେ ମାମୁଲି ସକାଳ ଥିଲା ନିଶ୍ଚୟ ! ଆକାଶରେ ହାଲୁକା ମେଘ । ଝିପିଝିପି ବର୍ଷା । କଅଁଳ ଖରାରେ ଫାଜିଲାମି କରୁଥିଲା ଯେମିତି କିଶୋର ସକାଳ । କେଶୁ ଦଶଟା ବାଜିବାର ଦଶ ମିନିଟ୍ ଆଗରୁ ସ୍କୁଟର

ଷ୍ଟାର୍ଟ କରିଥିଲା । ପଛରେ ବସିଥିଲା ବୁଣ୍ଟି । ସେ ପ୍ରଥମେ ବୁଣ୍ଟିକୁ ସ୍କୁଲରେ ଛାଡ଼ିଲା ଓ ତା'ପରେ ଅଫିସ୍‌କୁ ଗଲା, ସବୁଦିନ ପରି । ଅଫିସ୍‌ରେ ପହଞ୍ଚିଲା ବେଳକୁ ବଡ଼ବାବୁଙ୍କ ଛଡ଼ା ଅନ୍ୟ କେହି ଅଫିସ୍ ଆସି ନ ଥିଲେ । ସେ ତା' ଟେବୁଲ୍ ପାଖକୁ ଗଲା ଓ ଟିଫିନ୍ ବ୍ୟାଗ ଡ୍ରୟରରେ ଭର୍ତ୍ତିକରି ଚେୟାର୍‌ରେ ବସିପଡ଼ିଲା । ବୁଣ୍ଟିକୁ ସ୍କୁଲରେ ଛାଡ଼ିଲାବେଳେ ତା' ମୁଣ୍ଡ ଟିକେ ଭାରୀ ଭାରୀ ଲାଗୁଥିଲା ଓ ଅଗତ୍ୟା ତା' ମୁଣ୍ଡ ଚକ୍‌କର କାଟିଲା । ତା'ପରେ ହଠାତ୍ ସେ ଛାତିରେ ଯନ୍ତ୍ରଣା ଅନୁଭବ କଲା । ସେତେବେଳକୁ ତା' କପାଳରେ ବିନ୍ଦୁ ବିନ୍ଦୁ ଝାଳ । ପରେ ପରେ ତା' ତଣ୍ଟି ଶୁଖିଗଲା ଓ ଉଜ୍ଜ୍ୱଳ ସକାଳ ଅନ୍ଧାର ଦିଶିଲା ।

ପରବର୍ତ୍ତୀ ଆଉ କିଛି କଥା ମନେ ନ ଥିଲା କେଶୁର । ଗାଢ଼ ନିଦରୁ ଉଠିବାର ଅନୁଭବ ସହ ଅବଶ ଦେହକୁ ସେ ଆବିଷ୍କାର କଲା ହସ୍ପିଟାଲ୍ ଖଟରେ । ବର୍ଷାର ଥମ୍ ଥମ୍ ମେଘୁଆ ମୁହଁ, ବିପର୍ଯ୍ୟସ୍ତ ବୁଣ୍ଟି, ନିର୍ବାକ୍ ବୋଉ–ସାରା ପରିବେଶରେ ଆତଙ୍କର ନୀରବ ଝଡ଼ । କେଶୁ ବୁଝିଲା, ଦିନେ ଦୁଇଦିନ ଚେତାଶୂନ୍ୟ ହେବା ପରେ ସେ ନିଜ ଲୋକମାନଙ୍କ ପାଖକୁ ଫେରିଆସିଛି, ପରିଚିତ ପବନ ଓ ଖରାକୁ ଫେରିପାଇଛି । ପରେ ପରେ ତା'ର ବ୍ଲଡ୍‌ପ୍ରେସର୍, ଷ୍ଟ୍ରୋକ୍ କଥା ଜାଣିଲା ଓ ଜାଣିବା ପରେ ଭାରି ଛାନିଆ ହୋଇପଡ଼ିଲା । କିନ୍ତୁ ଡାକ୍ତରମାନେ 'ତମେ ବିପଦମୁକ୍ତ' ବୋଲି କହିବାରୁ ସେ ଆଶ୍ୱସ୍ତ ହେଲା । ଚାଳିଶ ଟପି ନ ଥିବା ତା'ପରି ଜଣେ ସ୍ପୋର୍ଟସ୍‌ମ୍ୟାନର କାହିଁକି ଷ୍ଟ୍ରୋକ୍ ହେଲା, ସେ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ସେ କାହାରିଠାରୁ ପାଇପାରୁ ନ ଥିଲା ।

ତା' ହାତରୁ ସାଲାଇନ୍ ଛୁଞ୍ଚି କଢ଼ା ହେଲା । ତାକୁ ତରଳ ଖାଦ୍ୟ ଖୁଆଗଲା । ଇଞ୍ଜେକ୍‌ସନ୍ ସଂଖ୍ୟା କମିଲା । ଦେହରୁ ବ୍ୟଥା ଊଣା ହେଲା । ତା' ମୁଣ୍ଡ ଆଉ ସେତେ ଭାରୀ ଭାରୀ ଲାଗିଲା ନାହିଁ । ଅସ୍ୱାଭାବିକ ଲାଗୁଥିବା ପାଟିର ସ୍ୱାଭାବିକତା ଫେରିଆସିଲା । ଅଥଚ ତା' ଡାହାଣଗୋଡ଼ ଆଉ ସ୍ୱାଭାବିକ ଅବସ୍ଥାକୁ ଫେରିଲା ନାହିଁ । ତା'ପରେ କେଶୁର ଅଫିସର୍ ଶଳା ଓ ଲେକ୍‌ଚରର୍ ଭାଇ ମିଶି ତାକୁ କଟକ ନେଲେ । କଟକର ଗୋଟେ ପ୍ରାଇଭେଟ୍ ନର୍ସିଂହୋମ୍‌ରେ ସେ ମାସାଧିକ ସମୟ ପଡ଼ିରହିଲା । ଅଥଚ ତା' ଅଚଳ ଗୋଡ଼ ଆଉ ସଚଳ ହେଲା ନାହିଁ । ବିଶେଷଜ୍ଞ ଡାକ୍ତର କହିଲେ, ତାଙ୍କର ସମସ୍ତ ପ୍ରୟୋଗ ଶେଷ ହୋଇଛି । ଏବେ ରୋଗୀକୁ ଭାଗ୍ୟ ଓ ଭଗବାନ୍‌ଙ୍କ ଉପରେ ଛାଡ଼ି ଦିଆଯାଉ ।

ଭାଗ୍ୟ କି ଭଗବାନ୍ କେହି ଆଡ଼ ଆଖିରେ ଚାହିଁଲେ ନାହିଁ କେଶୁକୁ । ଦଶଫୁଟରେ ଦଶଫୁଟ ଗୋଟେ ଆଜ୍‌ବେଷ୍ଟସ ଛାଉଣି ବେଡ୍ ରୁମ୍, ତା' ଭିତରେ ସାତଫୁଟ୍‌ରେ ସାଢ଼େ ତିନିଫୁଟ ଗୋଟେ ଖଟ, ତା' ଉପରେ ସେ ବର୍ଷେ ହେଲା ଖାଲି ଶୋଇଛି ଓ ଶୋଇଛି ।

ସହର ଉପାନ୍ତରେ ସରକାରୀ କଲୋନୀ । କେଶୁ ତା' ବେଡ୍ ରୁମ୍‌ର ଝର୍କାରୁ ଦିଗ୍‌ବଳୟକୁ ଚାହିଁଲେ, ଲମ୍ବିଥାଏ ଧାନବିଲ, ଡେଙ୍ଗା ତାଳଗଛରେ ଭରାଦେଇ ଓହ୍ଲାଉଥାଏ ସଞ୍ଜ, ନୀଳ ଆକାଶର ଛାତି ବିଦାରି କେବେକେବେ ଉଡ଼ିଯାଉଥା'ନ୍ତି ଦଳ ଦଳ ପକ୍ଷୀ, ଦୂର ପାହାଡ଼ର ନିବିଡ଼ ଆଶ୍ଳେଷରେ ମସ୍‌ଗୁଲ ଥାଏ ତନ୍ୱୀ ମେଘ । ଏମିତି କେତେ କ'ଣ ଭାସିଉଠେ କେଶୁ ଆଖି ଆଗରେ । ସେ ଲକ୍ଷ୍ୟ କରେ ବଦଳିଯାଉଥିବା ଋତୁଙ୍କୁ । ନଈବଢ଼ି ପରେ ପୁଣି ସବୁଜ କେଦାର, କୋହଲା ପବନରେ ଦୋହଲୁଥିବା ପାଚିଲା ଧାନକେଣ୍ଡା, ପୁଣି ଧୁ-ଧୁ ଖରାବେଳର ଖାଁ ଖାଁ ପହି । ଏମିତି ବଦଳୁଥାଏ ଗଛବୃଛ, ମାଟି, ପାଣି, ପବନ ଓ ଆକାଶ । ବଦଳୁଥାଏ ରାଜନୀତିର ଦୃଶ୍ୟପଟ ଓ ବଜାର ଭାଉ । କିନ୍ତୁ ସେ କେବଳ ବଦଳପାରୁ ନ ଥିଲା ଯାହା !

ସକାଳେ ସଞ୍ଜେ ବର୍ଷାର କାନ୍ଧରେ ହାତଭରା ଦେଇ ସେ ଚାଲିବାର ପ୍ରୟାସ କରୁଥିଲା । ତା' ଡାହାଣ ଗୋଡ଼ ଭୂଇଁ ଛୁଉଁଥିବା ସେ ଦେଖୁଥିଲା । କିନ୍ତୁ ଜାଣିପାରୁ ନ ଥିଲା । ପ୍ରତିଟି ସକାଳ ଓ ସଞ୍ଜର ବ୍ୟର୍ଥତା ତାକୁ ଆହୁରି ବ୍ୟଥିତ କରୁଥିଲା । ଖଟରେ ଶୋଇଶୋଇ ଏବେ ବେଡ୍‌ସୋର ଭରିଯାଇଥିଲା ତା' ପିଠିସାରା । ବାମଗୋଡ଼ ଆଉ ଆଗପରି କାର୍ଯ୍ୟକ୍ଷମ ନୁହେଁ ବୋଲି ଅନୁଭବ କରୁଥିଲା । ସେ ଭଲ ହେବାର କ୍ଷୀଣତମ ଆଶାଟି ଲିଭି ଲିଭି ଯାଉଥିଲା, ତା'ମନରୁ । ତଥାପି ସେ ହାରିଯାଉ ନ ଥିଲା । ନିରୋଳାରେ ନିଜ ଗୋଡ଼କୁ ଛୁଉଁଥିଲା, ଚୁମୁଟୁ ଥିଲା ବି । କାଳେ ସମ୍ବେଦନଶୀଳତା ଗଜରୁଥିବ ତା' ଅଚଳ ଗୋଡ଼ରେ । କିନ୍ତୁ ନା... ସେମିତି ମହାର୍ଘ ଅନୁଭବଟେ ତା'ହାତ ପାହାନ୍ତାକୁ ଆସୁ ନ ଥିଲା । କେଶୁ ଗୋଟେ ବିକଳ ଦୃଷ୍ଟିରେ ଅନେକ ସମୟରେ ନିଜ ଗୋଡ଼କୁ ଚାହୁଁଥିଲା । ସେଣ୍ଟର ଫରୱାର୍ଡ଼ରେ ଚମକପ୍ରଦ ଭାବରେ ଖେଳିପାରୁଥିବା ଓ ଦିନେ ଏନ୍.ସି.ସି. ମାର୍ଚ୍ଚିଂରେ ଫାଷ୍ଟ ହେଉଥିବା ଗୋଡ଼ ଯେ ଏମିତି ନିସ୍ତେଜ ହୋଇଯିବ ଓ ସେ ବର୍ଷେ କାଳ ଶୋଇରହିବ, ଏକଥା ତା' କଳ୍ପନାରେ ବି ନ ଥିଲା କେବେ । ପାୱାର ଟିମ୍‌ରେ ସେ ପୁଣି ସେଣ୍ଟର୍ ଫରୱାର୍ଡ଼ ଖେଳିବ, ଏମିତି ପ୍ରତ୍ୟୟଟେ ଅବଶ୍ୟ ତା' ମନରୁ ସମ୍ପୂର୍ଣ୍ଣ ମଉଳି ନ ଥିଲା ।

ଯେଉଁଦିନ ସେ ଫୁଟବଲ୍ କଥା ବେଶି ଭାବୁଥିଲା, ସେଦିନ ରାତିରେ ସେ ଖୁବ୍ ଗାଢ଼ ନିଦରେ ଶୋଇଯାଉଥିଲା ଓ ସୁନ୍ଦର ସୁନ୍ଦର ସ୍ୱପ୍ନସବୁ ଦେଖୁଥିଲା । ଏଇ ଯେମିତି ମାସେ ତଳର ଗୋଟେ ସ୍ୱପ୍ନ ଅନ୍ତତଃ କିଛି ସମୟପାଇଁ ତା' ଶୁଖିଲା ଓଠକୁ ଅସରାଏ ହସରେ ଭିଜେଇ ଦେଇଥିଲା । ସେ ପାୱାର୍‌ଟିମ୍‌ର କ୍ୟାପଟେନ୍ ଭାବରେ କଲିକତା ଯାଉଛି ଫୁଟବଲ ଖେଳିବାପାଇଁ, ମୋହନବାଗାନ୍ ଟିମ୍ ସାଙ୍ଗରେ । ଭରପୂର ମଇଦାନ୍‌ରେ ସେ ସେଣ୍ଟର୍ ଫରୱାର୍ଡ଼ ଖେଳୁଛି । ହାଫ୍‌ଟାଇମ୍ ହବାକୁ ଅଳ୍ପ ସମୟ ବାକି ରହିଛି, ସେ ବଲ୍‌କୁ କଟେଇ କଟେଇ ଗୋଲପୋଷ୍ଟ

ପାଖରେ ପହଞ୍ଚୁଛି ଓ ଏମିତି ଏକ ଲକ୍ଷ୍ୟଭେଦୀ ସଟ୍ ମାରିଛି ଯେ ଅଭିଜ୍ଞ ଗୋଲ-କିପର୍ ଗୋଲକୁ ରୋକିପାରି ନାହିଁ । ତା'ପରେ ଖେଳାଳି ବନ୍ଧୁମାନେ ତାକୁ ଟେକି ନେଉଛନ୍ତି ଶୂନ୍ୟରେ ଶୂନ୍ୟରେ ଓ ସେ ଆନନ୍ଦରେ ଚିତ୍କାର କରୁଛି । ଆଉ ସ୍ୱପ୍ନର ସେ ଚିତ୍କାରରେ ସେଦିନ ନିଦ ଭାଙ୍ଗିଥିଲା ତା'ର । ନିଦ ଭାଙ୍ଗିଗଲା ପରେ ପୁଣି ସେଇ ଅଥର୍ବତା । ନିଦରେ ଅଚେତ ବର୍ଷା ଓ ବୁଣ୍ଟି, ନୀରବ ରାତି, ଖାଁ ଖାଁ ଘର । ତା'ସତ୍ତ୍ୱେ ଅନେକ ଦିନ ପରେ ଗୋଟେ ଭାରି ମନମତାଣିଆ ଭାବ ତାକୁ ଆଚ୍ଛନ୍ନ କରିଥିଲା । ସେ ରାତିଯାକ ଆଉ ଶୋଇପାରି ନ ଥିଲା । ଏକ ଅନନ୍ୟ ଉଦ୍ଦୀପନା ତାକୁ ଘାରୁଥିଲା ବାରମ୍ବାର ।

ଏମିତି କାଁ-ଭାଁ ଉଶ୍ୱାସକୁ ବାଦ୍‌ଦେଲେ କେଶୁର ଅବଶିଷ୍ଟ ଜୀବନ ପାଲଟିଯାଇଥିଲା ଖରାବେଳର ବାଲିଅନ୍ତାର ପରି ଡହଳ ବିକଳମୟ ।

ଯେତେବେଳେ ସବୁ ପ୍ରକାରର ସରକାରୀ ଛୁଟି ସରିଗଲା, ଅଥଚ ସେ ସମ୍ପୂର୍ଣ୍ଣ ଆରୋଗ୍ୟ ହେବାର କୌଣସି ସମ୍ଭାବନା ଦେଖାଗଲା ନାହିଁ, ସେତେବେଳେ ବର୍ଷାକୁ ଚାକିରିରେ ଭର୍ତ୍ତିକରିବାର ପ୍ରଶ୍ନ ଉଠିଲା । ଜି.ପି.ଏଫ. ଆକାଉଣ୍ଟ, ସେଭିଙ୍ଗ୍‌ସ ପାସ୍ ବୁକ୍ ସେତେବେଳକୁ ଫାଙ୍କା ହୋଇସାରିଥିଲା । ସହକର୍ମୀ ଓ ଉପରିସ୍ଥ ହାକିମଙ୍କ ମୁହଁରୁ 'ଆହା' ପଦ କମି ଆସିଥିଲା । ଭଟ୍ଟା ପଡ଼ିଯାଇଥିଲା ବନ୍ଧୁବାନ୍ଧବଙ୍କ ଆସିବା ଯିବାରେ, ଏପରିକି ବଡ଼ଭାଇ ଓ ସାନ ଶଳାଠାରୁ ମନିଅର୍ଡ଼ର ଆସିବା ବିଳମ୍ବ ହେଉଥିଲା । କେଶୁ ଭାବିଲା, ସେ ନିଜକୁ ଅକର୍ମଣ୍ୟ ଘୋଷଣା କରି ବର୍ଷାର ଚାକିରି ପାଇଁ ସରକାରଙ୍କୁ ଆବେଦନ କରିବ । ଏଥିରେ କେହି ଅମଙ୍ଗ ହୋଇ ନ ଥିଲେ । ବର୍ଷା ବି ପ୍ରତିବାଦ କରି ନ ଥିଲା ।

ମେଡିକାଲ୍ ବୋର୍ଡ଼ ଆଗରେ ନିଜକୁ ଅକର୍ମଣ୍ୟ ଘୋଷଣା କଲାପରେ କେଶୁର ମନେ ହେଇଥିଲା, ସେ ଗୋଟେ ଜିଅନ୍ତା ଶବ । ସ୍ତ୍ରୀ-ପିଲାଙ୍କ କାନ୍ଧରେ ବୁହାହଉଥିବା ମଣିଷଟେ ଶବଠାରୁ ଆଉ କୋଉ ଗୁଣରେ ଭିନ୍ନ ।

ରିହ୍ୟାବିଲିଟେସନ୍ ବାବଦୀୟ କାଗଜପତ୍ର ଯୋଗାଡ଼ ହେବାକୁ ମାସେରୁ କମ୍ ସମୟ ଲାଗିଲା ନାହିଁ । ମେଡିକାଲ ସାର୍ଟିଫିକେଟ୍, ଇନ୍‌କମ୍ ସାର୍ଟିଫିକେଟ, ବର୍ଷାର ବି.ଏ. ପାସ୍ ସାର୍ଟିଫିକେଟ- ଏମିତି ସାର୍ଟିଫିକେଟ୍ ପରେ ସାର୍ଟିଫିକେଟ୍ ସବୁ ଖୋଜା ପଡ଼ିଲା । ତା' ପରେ ସର୍କାରୀ ଫାଇଲ୍‌ର ଅକ୍ଟୋପସୀୟ ଅାଁ ଭିତରେ ବେଶ୍ କିଛିଦିନ ଛଟପଟ ହେଲା ଆବେଦନ, ନିବେଦନ ଆଦି । ବଡ଼ଭାଇଙ୍କଠାରୁ ଶଳା ପର୍ଯ୍ୟନ୍ତ ସମସ୍ତଙ୍କ ପକେଟ୍‌ରୁ କିଛି କିଛି ନୋଟ୍ ନିଗିଡ଼ିଲା ମଧ୍ୟ । ତା'ପରେ ହଠାତ୍ ଦିନେ ଡାକବାଲାର ଡାକ ଶୁଭିଲା । ଖାକି ଖାମ୍‌ରୁ ବାହାରିଲା ଆପଏଣ୍ଟମେଣ୍ଟ ଲେଟର ।

ବର୍ଷା ଯେଉଁଦିନ ଚାକିରିରେ ଜଏନ୍ କରିବାପାଇଁ ଅଫିସ୍ ଗଲା, କେଶୁ ସମସ୍ତଙ୍କ ଅଲକ୍ଷ୍ୟରେ ବେଶ୍ କିଛି ସମୟ କାନ୍ଦିଲା । ସାରାଦିନ ସେ ଘରେ ଏକା ଏକା ରହିବ କେମିତି । ବର୍ଷା ଅଫିସ୍ ଚାଲିଯିବ ଓ ବୁଣ୍ଟି ଚାଲିଯିବ ସ୍କୁଲକୁ । ସେହି ସମୟ ଭିତରେ ଯଦି ତା'ର ବାଥ୍‌ରୁମ୍ ଯିବା ଦରକାର ପଡ଼ିଲା । ଯଦି କିଛି ଗୋଟେ ଅଘଟଣ ଘଟିଗଲା ଘର ଭିତରେ । କ'ଣ କରିବ ସେ । ଏମିତି ଭାବି ଭାବି ସେ ଅଥୟ ହୋଇପଡ଼ିଲା । ସେଦିନ ଅବଶ୍ୟ ଘଣ୍ଟେ ଦୁଇଘଣ୍ଟା ଭିତରେ ଘରକୁ ଫେରିଆସିଥିଲା ବର୍ଷା ଓ କେଶୁ ପ୍ରତ୍ୟୟ ଫେରିପାଇଥିଲା । ମଣିଷ ଅକର୍ମଣ୍ୟ ହେଲେ ଆତ୍ମବିଶ୍ୱାସ କ'ଣ ରୁଗ୍ଣ ପାଲଟିଯାଏ । ନିଜକୁ ଏମିତି ପ୍ରଶ୍ନ ପଚାରି ସେ ଆହୁରି ଅସହାୟ ହୋଇପଡୁଥିଲା । ତେବେ, ନିଜର ଅସହାୟତାକୁ ସେ ବର୍ଷା ପାଖରେ ଲୁଚେଇବାକୁ ପସନ୍ଦ କଲା ନାହିଁ । କହିଲା, "ତମେ ଅଫିସ୍‌କୁ ଚାଲିଗଲା ପରେ ମତେ ଭାରି ଏକୁଟିଆ ଲାଗୁଛି । ଭୟ ଘାରୁଛି । ନାନା ଦୁଶ୍ଚିନ୍ତା କାବୁ କରୁଛି । ଗାଁକୁ ଖବର ଦିଅ । ବୋଉ ଗୋଟେ ପିଲା ଯୋଗାଡ଼ କରି ପଠଉ, ନ ହେଲେ ନିଜେ ଆସୁ ଅନ୍ତତଃ କିଛିଦିନପାଇଁ ।"

ବୋଉ ପାଖକୁ ଖବର ଦିଆଗଲା ସତ, ହେଲେ ଚାକର ପିଲାଟେ ମିଳିବା କୋଉ ବା ସହଜ ଆଜିକାଲି ! ବୋଉ ତେଣୁ ନିଜେ ଆସିଲା ସାନ ଭଉଣୀକୁ ଏକା ଛାଡ଼ି ଦେଇ ଗାଁରେ । ଆଉ ବୋଉ ଥିବାଯାକେ କେଶୁ ନିଜର ପଙ୍ଗୁପଣ ପାସୋରିଗଲା । ତା'ର ପିଲାଦିନ ବେଶି ବେଶି ମନେ ପଡ଼ିଲା ଏବଂ ସେ ନିଜ ଭିତରେ ପିଲା ହୋଇଗଲା ଯେମିତି ! ବୋଉ ତା' ମୁଣ୍ଡ ଆଉଁଶି ଦେଲେ ସେ ନିଘୋଡ଼ ନିଦରେ ଶୋଇଯାଉଥିଲା । ବୁଢ଼ୀ ଅସୁରୁଣୀ ଓ ରଜା ଝିଅ ଗପ ସ୍ୱପ୍ନରେ ଶୁଣୁଥିଲା ଯେମିତି ! ଭାବୁଥିଲା ସମୟେ ସମୟେ, ସମୟଟା ଆଣ୍ଟିକ୍ଲକ୍ ଦିଗରେ ଗତି କରନ୍ତା କି ! ସେ ଆସ୍ତେ ଆସ୍ତେ ପିଲା ହୋଇଯା'ନ୍ତା ଓ ବୋଉର ହାତ ଧରି ବାଟ ଚାଲନ୍ତା ! ଏମିତି ଉଦ୍ଭଟ ଚିନ୍ତାସବୁ ତାକୁ ଶିହରିତ କରୁଥିଲା ! ସେ ମନକୁ ମନ ହସୁଥିଲା, ଗପୁଥିଲା । ଏମିତି ବେଶ୍ କିଛିଦିନ ସେ ନିରୋଳା ଅତୀତରେ ବଞ୍ଚିଗଲା ।

କିନ୍ତୁ ବୋଉ ଚାଲିଗଲାପରେ ସେ ପୁଣି ଭାରି ଏକା ହୋଇଗଲା । ବର୍ଷାର ବ୍ୟବହାର କାହିଁକି କେଜାଣି ଭଲ ଲାଗୁ ନ ଥିଲା କେଶୁକୁ । ବିଛଣାରୁ ଅନେକ ଥର ଡାକିଲା ପରେ 'ଯାଉଚି' ବୋଲି ଭାରି ହେମାଳ ଉତ୍ତରଟେ ମିଳୁଥିଲା ବର୍ଷାଠାରୁ । ଡ଼ାକିଦେଲାକ୍ଷଣି ଧାଇଁ ଆସିବାର ପ୍ରବଣତା ଆଉ ନ ଥିଲା ତା'ଠିଁ । ପ୍ରତିଦିନ ସକାଳେ ବର୍ଷାର କାନ୍ଧ ଉପରେ ହାତଭରା ଦେଇ ଚାଲିବାର ପ୍ରୟାସରେ ବି ଜମିଯାଉଥିଲା ମନ୍ଥରତାର ଅଳନ୍ଧୁ । କେଶୁ ଭାବୁଥିଲା, ସତରେ ଗତି ହିଁ ଜୀବନ । ବିଛଣାରେ ପଡ଼ିରହି ଜିଇଁବାରେ କ'ଣ କିଛି ଅର୍ଥ ହୁଏ ? ଯେଡ଼େ ବିଶାଳ ହେଲେ ବି

ହ୍ରଦର କ'ଣ ଗୋଟେ ଜୀବନ ଥାଏ, ନଈପରି ? ବହିଯାଉଥିବା ନଈର ଚପଳତା ନିଆରା । ଏମିତି ଭାବିଲେ ହିଁ କେଶୁର ଦୌଡ଼ିବାକୁ ଇଚ୍ଛା ହୁଏ । ଅଥଚ ଦୌଡ଼ି ନ ପାରିବାର ହତାଶା ଆଖିରେ ଲୁହହୋଇ ଫୁଟେ । କେଶୁ ଭିତରେ ଭିତରେ ଗୋଟେ ଭୂମିକମ୍ପ ଅନୁଭବ କରେ । ଏମିତି କେଶୁର ଜୀବନ ଗୋଟେ ଉଦାସ ଆକାଶରେ ରୂପାନ୍ତରିତ ହୋଇଯାଉଥିଲା ଦିନୁଁ ଦିନ ।

ବଡ଼ି ସକାଳୁ ଉଠି ବର୍ଷା ରୋଷେଇଘରେ ପଶୁଥିଲା ଯେ ବାହାରୁଥିଲା ନଅଟା ପରେ । ତା' ଭିତରେ ସେ କେଶୁର ଡାକ ଶୁଣି ବି ଶୁଣୁ ନ ଥିଲା । ବୁଣ୍ଟି ଉପରେ ବାରମ୍ବାର ରାଗୁଥିଲା । କିନ୍ତୁ ପ୍ରାୟ ନଅଟା ବେଳକୁ ତା'ର ରୋଷେଇ ସରିଯାଉଥିଲା ଓ ବୁଣ୍ଟିକୁ ଗାଧୋଇଦେଇ ଗରମ ଭାତ ଡାଲି ଆଦି ପରଶି ଦଉଥିଲା । ସ୍କୁଲ ରିକ୍ସାରେ ବସି ବୁଣ୍ଟି ସ୍କୁଲକୁ ବାହାରିଗଲା ପରେ ଯାଇ ବର୍ଷା ନିଜ ପାଇଁ ଭାତ ବାଢୁଥିଲା । ତା'ପରେ ସେ ଅଫିସ୍ ଯିବାପାଇଁ ପ୍ରସ୍ତୁତ ହେଉଥିଲା । ଅଫିସ୍ ବାହାରିବାର ଠିକ୍ ପୂର୍ବରୁ କେଶୁ ପାଇଁ ବଢ଼ାବଢ଼ି କରି ବିଛଣା ପାଖ ଟି'ପୟ ଉପରେ ଥୋଇ ଦଉଥିଲା । ତା'ପରେ ଅଭ୍ୟାସବଶତଃ ହାତ ହଲେଇ ସେ କେଶୁଠାରୁ ବିଦାୟ ନଉଥିଲା ।

ବର୍ଷାଠାରୁ ଏମିତିକା ଫର୍ମାଲିଟି ଆଶା କରୁ ନ ଥିଲା କେଶୁ । ଆଉ ତା' ଚାରିପାଖର ପୃଥିବୀ ଏତେ ଶୀଘ୍ର ବଦଳିଯିବ ବୋଲି ସେ କେବେ କଳ୍ପନା ବି କରି ନ ଥିଲା । ବର୍ଷା, ଦିନେ ଥିଲା ବର୍ଷାଋତୁ ପରି ସ୍ନିଗ୍ଧା, ବିପୁଳା । ଏତେ ସ୍ୱପ୍ନ ଆଉ ଏତେ ସମ୍ବେଦନଶୀଳତାରେ ଭରପୂର ଗୋଟେ ଝିଅ ଥାଇପାରେ, ଏ କଥା ବର୍ଷାର ସଂସ୍ପର୍ଶରେ ଆସିବା ଆଗରୁ ଭାବିପାରି ନ ଥିଲା କେଶୁ । ପ୍ଲସ୍ ଥ୍ରୀ ଫାଷ୍ଟ ଇଅର୍ ପଢ଼ିଲାବେଳେ ସେ ଥିଲା କଲେଜ ଫୁଟବଲ୍ ଟିମ୍‌ର କ୍ୟାପଟେନ୍ । ସେଥର ଇଣ୍ଟର କଲେଜ ଫୁଟବଲ୍ ଟୁର୍ଣ୍ଣାମେଣ୍ଟ ତାଙ୍କ କଲେଜରେ ହିଁ ଅନୁଷ୍ଠିତ ହୋଇଥିଲା । ସାତଟି ବଡ଼ ବଡ଼ କଲେଜର ଟିମ୍ ସେଥିରେ ଭାଗ ନେଇଥିଲେ । ତାଙ୍କ କଲେଜ ଟିମ୍ ଫାଇନାଲରେ ପହଞ୍ଚି ସିଲ୍‌ଡ଼ ପାଇଥିଲା । ସେ ନିଜେ ହିଁ ଦୁଇଟିଯାକ ଗୋଲ୍ ଦେଇଥିଲା ବିପକ୍ଷ ଦଳକୁ । ସେ ଦିନ ତା'ର ପ୍ରଶଂସାରେ ତମାମ କଲେଜ ମୁଖରିତ ହୋଇଥିଲା । ପ୍ଲସ୍‌ଟୁ ସାଇନ୍ସ ପଢୁଥିବା ବର୍ଷା ସେଦିନ ତା' ସାଙ୍ଗରେ କରମର୍ଦ୍ଦନ କରିଥିଲା । ଏକ ଛୋଟ ସହରର ସେହି ମଧ୍ୟମ ଧରଣର କଲେଜରେ ଏପରି ଘଟଣା କେବେ ବୋଧେ ଆଗରୁ ଘଟି ନ ଥିଲା । କଲେଜର ଛାତ୍ରଛାତ୍ରୀମାନଙ୍କଠାରୁ ଅଧ୍ୟାପକ ପର୍ଯ୍ୟନ୍ତ ସମସ୍ତେ ତାଜୁବ୍ ହୋଇଯାଇଥିଲେ ସେଦିନ, ଏପରି ଏକ ଅପ୍ରତ୍ୟାଶିତ ଘଟଣାରେ । କେଶୁ କେବଳ ଶିହରିତ ହୋଇଥିଲା ବାରମ୍ବାର, ସହସ୍ରବାର ।

ବର୍ଷା ସହ ପ୍ରଥମ କରମର୍ଦ୍ଦନର ଅନୁଭବ ଏବେ ବି କେଶୁ ମନରେ ଶୀତ୍କାର ତୋଳୁଥିଲା ।

ସେହି ଘଟଣା ପରଠୁଁ ସତରେ ସେ ବର୍ଷାର ଆବେଗରେ ଗୋଟାପଣେ ଭିଜିଯାଇଥିଲା । ଆବେଗ ଅସରନ୍ତି ସ୍ୱପ୍ନ ହୋଇ ଫୁଟିଥିଲା ମନରେ । ସ୍ୱପ୍ନ ପୁଣି ପ୍ରେମରେ ରୂପାନ୍ତରିତ ହୋଇଥିଲା ଓ ପ୍ରେମ, ବିବାହରେ । ଅବଶ୍ୟ ବର୍ଷା ସହ ତା'ର ବିବାହଟା ଏମିତି ସୁରୁଖୁରୁରେ ହୋଇ ନ ଥିଲା । ଗୋଟେ ମାମୁଲି ଚାକିରି କରୁଥିବା ଏକ ସାଧାରଣ ପରିବାରର ଯୁବକ ହାତରେ ନିଜ ଅଲିଅଳୀ ଝିଅକୁ ସମର୍ପି ଦେବାକୁ ଚାହୁ ନ ଥିଲେ ବର୍ଷାର ଓକିଲ ବାପା । ତା' ମା' ଓ ଭାଇମାନେ ବି ରାଜି ନ ଥିଲେ ଏଥିରେ । କେଶୁ ଘରେ ବି କମ୍ ଝଡ଼ ଉଠି ନ ଥିଲା ବାହାଘରକୁ ନେଇ । ସହରୀ ଝିଅକୁ ବୋହୂକରି ଆଣିବା ସପକ୍ଷରେ ନ ଥିଲା ବୋଉ । ପ୍ରେମକରି ବାହା ହବାକୁ ଜିଦ୍ ଧରିଥିବା ଯୁବକ ଭାବରେ କେଶୁ ତାଙ୍କ ଅଞ୍ଚଳରେ ଥିଲା ପ୍ରଥମ । ଅତଏବ ଗାଁ ଗୁଜବର ସେ ପାଲଟିଯାଇଥିଲା ପ୍ରବାଦପୁରୁଷ । ରକ୍ଷଣଶୀଳ ମାଷ୍ଟର-ବାପା ତେଣୁ ଏ ବିବାହ ପ୍ରତି ବିମୁଖ ଥିଲେ । କିନ୍ତୁ ସେମାନଙ୍କ ପ୍ରେମରେ କି ଯାଦୁ ଥିଲା କେଜାଣି, ସବୁ ଝଡ଼ ଆପେ ଆପେ ଥମି ଯାଇଥିଲା । ବର୍ଷା ବୋହୂ ହୋଇ ସହରରୁ ଆସିଥିଲା ଗାଁକୁ । ତା' ପାଉଁଜିର ନିକ୍ୱଣ ପହିଲି ଆଷାଢ଼ର ବର୍ଷାପରି ଭିଜେଇ ଦେଇଥିଲା ସାରା ଗାଁକୁ ଯେମିତି !

ସେହି ବର୍ଷାଠିଁ ଲାଳିତ୍ୟର ଏତେ ଅଭାବ କାହିଁକି ଏବେ ? କେଶୁ ବାରମ୍ବାର ନିଜକୁ ପଚାରୁଥିଲା ଓ ନିଜ ଅଜାଣତରେ ତରଳି ଯାଉଥିଲା ।

ବର୍ଷା ତରବରରେ ଅଫିସ୍ ଯାଉଥିଲା ସିନା, ସହଳ ଆଉ ଫେରୁ ନ ଥିଲା ଆଗପରି । ଅଫିସ୍‌ର କୋଉ କାମ ଏତେ ବଳି ପଡୁଥିଲା କେଜାଣି ! ପାଞ୍ଚଟା ବାଜିବା ପରଠୁଁ କେଶୁର ଉତ୍କଣ୍ଠା ବଢ଼ି ଯାଉଥିଲା ଏବଂ ସେ ବର୍ଷା ଓ ବୁଣ୍ଟିର ଫେରିବାରେ ଅଯଥା ବିଳମ୍ବକୁ ଆଦୌ ସହ୍ୟ କରିପାରୁ ନ ଥିଲା । ବୁଣ୍ଟି ପ୍ରାୟ ପାଞ୍ଚଟା ପନ୍ଦର, କୋଡ଼ିଏରେ ଘରେ ପହଞ୍ଚୁଥିଲା; ବର୍ଷା ସେତେବେଳକୁ ଆସି ନ ଥିଲେ ନିଜେ ଟିଫିନ୍ ଆଣି ଖାଉଥିଲା । ଅଧିକାଂଶ ଦିନ ବେଶି ଡେରିରେ ଫେରୁଥିଲା ବର୍ଷା । କେବେ କେମିତି ଗୋଟେ ମୋଟରସାଇକେଲ କ୍ୱାର୍ଟର୍ସ ସାମ୍ନାରେ ଅଟକୁଥିଲା ଓ ବର୍ଷା ସେଥିରୁ ଓହ୍ଲାଉଥିବା କେଶୁ ଅନୁମାନ କରୁଥିଲା । କାହା ମୋଟରସାଇକେଲ ପଛରେ ବସି ସେ ଫେରୁଛି ବୋଲି ଅବଶ୍ୟ କେଶୁ କେବେ ପ୍ରଶ୍ନ କରୁ ନ ଥିଲା ବର୍ଷାକୁ । ବରଂ ମୋଟର୍‌ସାଇକେଲ ଶବ୍ଦ ଶୁଣି ସେ କାହିଁକି କେମିତି ଉତ୍ତେଜିତ ହୋଇପଡୁଥିଲା । ତେବେ ପିନାକି ପରିଡ଼ା ନାମକ କୌଣସି ଯୁବ-କର୍ମଚାରୀର ପ୍ରଶଂସା ସେ ବେଶ୍ କେତେଥର ଶୁଣିଥିଲା ବର୍ଷା ମୁହଁରୁ । କିନ୍ତୁ ତା' ବିଷୟରେ ଅଧିକ ଜାଣିବାକୁ କେଶୁ କେବେ ବି ଆଗ୍ରହ ପ୍ରକାଶ କରି ନ ଥିଲା । ବାରମ୍ବାର ସେହି ପରିଚିତ ମୋଟରସାଇକେଲର ଶବ୍ଦ ଓ ଘର ଭିତରକୁ ପଶିବା ପର୍ଯ୍ୟନ୍ତ ବର୍ଷା

ଓଠରେ ଲାଗିରହିଥିବା ହସରୁ ହୁଏତ ନାନା ଅର୍ଥ ବାହାର କରିପାରନ୍ତା କେଶୁ । କିନ୍ତୁ ସେ ସେପରି କିଛି କରିବାକୁ ଚାହୁଁ ନ ଥିଲା । ତା' ଭିତରେ ଅବଶ୍ୟ ଏଣୁତେଣୁ ଭାବନା ଦାନା ବାନ୍ଧୁଥିଲା ।

ନିଜ ସ୍ତ୍ରୀ ମୁହଁରୁ ଅନ୍ୟ ପୁରୁଷର ପ୍ରଶଂସା ଶୁଣିବାକୁ କୌଣସି ସ୍ୱାମୀକୁ ଭଲ ଲାଗେନା ଆଉ ଭଲ ଲାଗିବ କି, ନିଜ ସ୍ତ୍ରୀ ଅନ୍ୟ କାହାର ମୋଟରସାଇକେଲ ପଛରେ ବସି ଅଫିସ୍ ଆୱାର୍‌ର ଘଣ୍ଟେ ପରେ ଘରକୁ ଫେରିଲେ ? କେଶୁକୁ ଏ ସବୁ ଭଲ ଲାଗନ୍ତା କି ? କିନ୍ତୁ କେଶୁ ଜାଣିଥିଲା, ସେ ପାଟି ଖୋଲିଲେ ନିଆଁ ଲାଗିଯିବ ବର୍ଷା ଦେହରେ । ସ୍ତ୍ରୀ ଉପରେ ନିର୍ଭର କରି ସାରାଜୀବନ କାଟିବାକୁ ଥିବା କେଶୁ ନିଆଁଠାରୁ ଦୂରେଇ ରହିବାକୁ ଉଚିତ ମଣୁଥିଲା ।

କିନ୍ତୁ ଅସହାୟତା ଭିତରେ ଲୁଚିପାରୁ ନ ଥିଲା କେଶୁର ପୁରୁଷପଣିଆ । ଅନିଚ୍ଛାସତ୍ତ୍ୱେ ସେ ବର୍ଷା ଉପରେ ବାରମ୍ବାର ଚିଡ଼ି ଉଠୁଥିଲା । ବିଛଣାରେ ପଡ଼ି ରହି ବି ସେ ନିଜକୁ ଜାହିର୍ କରୁଥିଲା । ପ୍ରତିରାତିରେ ନୀରବ ମୁହୂର୍ତ୍ତରେ ଏକ ଅଜଣା ଚିଆଁରେ ସେ ଶିହରିତ ହେଉଥିଲା ଯେମିତି । ଦୁର୍ଦ୍ଧର୍ଷ ଆଜାଦ୍ ହିନ୍ଦ୍ ଫୌଜର ସୈନିକ ପରି ଦୁର୍ଗମ ଗିରି ମରୁ କାନ୍ତାର ଡେଇଁ ମାର୍ଚ୍ଚିଙ୍ଗ୍ କରି ସେ ଆଗକୁ ଚାଲିପାରନ୍ତା କି ? ତା'ର ମନେ ହେଉଥିଲା, ସେ ପାରିବ; ଥୁଣ୍ଟା ଗଛର ପତ୍ର କଅଁଳିଲା ପରି ତା' ଗୋଡ଼ରେ ଶକ୍ତି ସଞ୍ଚାର ହବ । ଘର ଓ ଅଗଣାର ସୀମିତ ଚୌହଦି ଡେଇଁ ସେ ପୁଣି ବିପୁଳା ପୃଥ୍ୱୀରେ ବିଚରଣ କରିବ । କିନ୍ତୁ ତା'ର ମନ ଓ ବାସ୍ତବତା ଭିତରେ କିଏ ଯେମିତି ଅଡିଆଁ ପାଚେରିଟେ ତୋଳି ଦେଇଥିଲା ।

ତଥାପି କେଶୁ ହାରୁ ନ ଥିଲା । ବୁଣ୍ଟି ଭିତରେ ସେ ନିଜକୁ ଖୋଜୁଥଲା । ବର୍ଷାର ନୁଆଁଣିଆ ମେଘ ପରି ଗାଢ଼କେଶରେ ବାରୁଥିଲା ପ୍ରଣୟର ବିଭୋରତା । ଅନୁଭବ କରିପାରୁଥିଲା ମାଟିର ମହକରେ ଜୀବନର ମୋହ, ପବନ ଭିତରେ ଅଦମ୍ୟ ଚଳଚଞ୍ଚଳତା ଓ ସୂର୍ଯ୍ୟାଲୋକରେ ପ୍ରାଣସତ୍ତାର ଅପୂର୍ବ ଔଜ୍ଜ୍ୱଲ୍ୟ । ଅଳ୍ପ ସମୟ ପାଇଁ ହେଲେ ବି ସେ ନିଜ ପଙ୍ଗୁପଣକୁ ପାସୋରି ପକଉଥିଲା । ଜୀବନମନସ୍କ ହେଲେ ଦୁଃଖସବୁ କେମିତି ମାମୁଲି ଜଣାପଡ଼େ । ପହିଲି ପ୍ରେମର ପରଶ ପରି ଗୋଟେ ସ୍ଥାୟୀ ଶିହରଣର ନାଁ ତ ଜୀବନ ।

ତାକୁ ଏକା ଛାଡ଼ି ପିକ୍‌ନିକ୍ ଯିବା କଥା ଯୋଉଦିନ ବର୍ଷା କହିଲା, କେଶୁ ଅନୁଭବ କଲା, ଯେମିତି ପାଦ ଥାପିବାକୁ ଇଞ୍ଚେ ବି ଜାଗା ନାହିଁ ସାରା ପୃଥିବୀରେ ତା'ପାଇଁ । ପିକ୍‌ନିକ୍ ଯିବାପାଇଁ ବର୍ଷା ଅନୁରୋଧ ବା ଅନୁନୟ କରିଥିଲେ ହୁଏତ ସେ ଏତେ ବିବ୍ରତ ହୋଇ ନ ଥା'ନ୍ତା । କିନ୍ତୁ ବିନା ପଚରା ଉଚୁରାରେ ବର୍ଷା ନିଜେ

କୌଣସି ସିଦ୍ଧାନ୍ତ ନବା କଥାକୁ ସେ ଆଦୌ ଗ୍ରହଣ କରିପାରୁ ନ ଥିଲା । ଅବଶ୍ୟ ଅଫିସ୍‌ର ସବୁ ଷ୍ଟାଫ୍ ଓ ଖୋଦ୍ ଅଫିସରଙ୍କ ନିହାତି ଜିଦ୍ ପାଇଁ ସେ ରାଜି ହୋଇଛି ବୋଲି ବର୍ଷା ଯଥାସମ୍ଭବ ବୁଝେଇବା ଢଙ୍ଗରେ କହିଥିଲା କେଶୁକୁ । କେଶୁ ଜୀବନରେ ପ୍ରଥମଥର ପାଇଁ ଅଭିନୟ କଲା ବର୍ଷା ସାଙ୍ଗରେ । କହିଲା, ଦିନେ ଗୋଟେ ମୁଁ କ'ଣ ଏକା ଚଳିପାରିବି ନାହିଁ ଯେ ତମେ ଅଯଥା ଟେନ୍‌ସନ୍ ନଉଛ ? କିନ୍ତୁ ଏହି କେତୋଟି ମାପଚୁପ ଶବ୍ଦ ତା'ମୁହଁରୁ ବାହାରିବା ଭିତରେ ଯେମିତି ଶହେ କୁଆଁରୀ ମା'ର ପ୍ରସବଯନ୍ତ୍ରଣା ତାକୁ କାବୁ କରିଦେଇଥିଲା ।

ନିର୍ଦ୍ଦିଷ୍ଟ ଦ୍ୱିତୀୟ ଶନିବାର ମଧ୍ୟରାତ୍ରିରେ ବର୍ଷା ବୁଣ୍ଟି ସହ ପିକ୍‌ନିକ୍ ଗଲା । କେଶୁ ହାତ ହଲେଇ ସେମାନଙ୍କୁ ବିଦାୟ ଦେଲା ଓ ବହୁ କଷ୍ଟରେ କାଫ୍ରି ବନ୍ଦ କଲା ।

ନିଜକୁ ଏତେ ଏକୁଟିଆ ବୋଲି କେବେ ବି ଭାବି ନ ଥିଲା କେଶୁ । ଏକଲାପଣର ଭୟାବହତା ବିଷୟରେ ବି କୌଣସି ଅଭିଜ୍ଞତା ନ ଥିଲା ତା'ର । କେଶୁର ମନେହେଲା, ସେ ରହୁଥିବା ସହରର ସବୁ ମଣିଷ ଯେମିତି କୁଆଡ଼େ ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି ରାତିଟେ ପାଇଁ । ରାତି ଗୋଟେ ଯେ କେଡ଼େ ଭୟାନକ ହୋଇପାରେ, ସେ ପ୍ରଥମ କରି ଅନୁଭବ କଲା । ଖୁବ୍ କମ୍ ଶୀତ ସତ୍ତ୍ୱେ ତା' ଦେହ ଅସମ୍ଭବ ଭାବରେ ଥରିଲା ଓ ତା' ଦାନ୍ତରେ ଦାନ୍ତ ବାଜିଲା । କୌଣସି ପ୍ରକାରେ ସେ କମ୍ବଳରେ ଦେହଢାଙ୍କି କୁଙ୍କୁରିକାଙ୍କୁରି ହେଲା । ବେଶ୍ କିଛି ସମୟ ପରେ ଟିକେ ଉଷୁମ ଲାଗିଲା ତାକୁ । ସେ ଶୋଇବାକୁ ଚେଷ୍ଟା କଲା, ଅଥଚ ତାକୁ ଜମା ନିଦ ହେଲା ନାହିଁ । ବର୍ଷା ଓ ବୁଣ୍ଟିକୁ ମନେ ନ ପକାଇବା ପାଇଁ ସେ ଯେତେଥର ଭାବିଲା, ସେମାନେ ମନଭିତରକୁ ସେତେ ଧସେଇ ପଶିଲେ । କେଶୁ ଆକ୍ରାମାକ୍ରା ହୋଇପଡ଼ିଲା । ତା'ର ଦୁଇଟିଯାକ ଗୋଡ଼ ଅଚଳ ହୋଇପଡ଼ିଲା ପରି ତାକୁ ଲାଗିଲା ଓ ସେ କାନ୍ଦି ପକେଇଲା । ବହୁ ସମୟ ଧରି କାନ୍ଦିଲାପରେ ତାକୁ ଟିକେ ହାଲୁକା ଲାଗିଲା ।

କାନ୍ଦ ପରେ କ୍ଳାନ୍ତି ଓ ତା'ପରେ ନିଦେଇଗଲା କେଶୁ । ପୁଣି ଆଖି ଖୋଲିଲା ବେଳକୁ ସକାଳ । ଘର ଭିତରେ ତଥାପି ଅନ୍ଧାର ମୁଣ୍ଡ ପିଟୁଥିଲା । କିନ୍ତୁ ସ୍କାଏ ଲାଇଟ୍‌ରେ ଉଙ୍କି ମାରୁଥିଲା ଫର୍ଚ୍ଚା ଆଲୁଅ । କେଶୁ ଉଠି ବସିଲା ଓ ଖଟ ଉପରୁ କୌଣସି ପ୍ରକାରେ ଝର୍କା ଫିଟେଇଲା । ଝର୍କାରୁ ସକାଳର ଦୃଶ୍ୟ ଥିଲା ସତରେ ଅନନ୍ୟ । ଏମିତି ସୁନ୍ଦର ସକାଳଟେ ଆଗରୁ କେବେ ହୁଏତ ଦେଖି ନ ଥିଲା କେଶୁ । ସୂର୍ଯ୍ୟ ନାହିଁ କି ଅନ୍ଧାର ନାହିଁ । ସଫେଦ ଫର୍ଦ ଉପରେ ଶିଳ୍ପୀର ରଙ୍ଗ ଛିଟା ପରି ଭୋ'ର ଆକାଶ । ଖୁବ୍ ଦୂରରୁ ଭାସି ଆସୁଥିଲା ମୃଦୁ କାକଳି । ବିଜୁଳିଟେ ଯେମିତି

ସଞ୍ଚରିଗଲା କେଶୁ ଦେହରେ । ପ୍ରତିଦିନର ସକାଳ କ'ଣ ଏମିତି ଗୋଟେ ନୂଆ ଉଦ୍ଦୀପନା ? କେଶୁର ଦେହସାରା ଚରିଗଲା ରୋମାଞ୍ଚର ବନ୍ୟା, ସେ ବାରମ୍ବାର ଶିହରିତ ହେଲା ନିଜ ଅଜାଣତରେ ।

ଝର୍କାରୁ ସେ ଆହୁରି ଦେଖୁଥିଲା ଧୂଆଁଳିଆ ଦିଗ୍‌ବଳୟ । ନାଚ ଶିଖିବା ଆରମ୍ଭ କରିଥିବା ଛୋଟ ଝିଅଟେ ପରି ପାଚିଲା ଧାନର ଅସଙ୍ଗତ ଦୋଳନ, ସବୁ ରାସ୍ତାର ଦୁଇକଡ଼େ କଅଁଳ ଘାସ ଓ ତା' ଉପରେ ବର୍ଷାର ଅଭିମାନୀ ଆଖିପରି ଢଳ ଢଳ ଶିଶିର ବିନ୍ଦୁ–ବେଶ୍ ଭଲ ଲାଗୁଥିଲା କେଶୁକୁ । ସେ ହଠାତ୍ ଦେଖିଲା, ଆକାଶରେ ଗୋଟେ ଅବିରର ଝଡ଼ । ଶୀତସକାଳରେ ବି ବଉଳଫୁଲର ବାସ୍ନାରେ ତା' ନାକ ଯେମିତି ଫାଟି ପଡ଼ିଲା । ସେ ବାଡ଼ି ଧରି ଆସ୍ତେ ଉଠିଲା ଓ ଧୀରେ ଧୀରେ ଚାଲିଲା ।

ପ୍ରମତ୍ତ ଇଚ୍ଛାଶକ୍ତିର ଧକ୍କାରେ ଫିଟିଗଲା କି ନିବୁଜ ଜାଫ୍ରି ? ଧୀର ଅଥଚ ଅଟଳ ପଦାଙ୍କ ଫୁଲ ହୋଇ ଫୁଟିଲା ଧୂଳିଆ ରାସ୍ତାରେ । ସବୁଜପତ୍ର ହାତ ଠାରିଲା କି ? ଡେଙ୍ଗା ତାଳଗଛ ସଳଖ ହବାର ସାହସ ଦେଲା କି ଆଉ ? ଅନ୍ତରଙ୍ଗ ବାଡ଼ିଟି ବର୍ଷାଠାରୁ ଆହୁରି ଅନ୍ତରଙ୍ଗ ପାଲଟିଗଲା ଯେମିତି ! କେଶୁ କଲୋନୀ ଟପି ସହରରୁ କୋଉ ଅଜଣା ଗାଁକୁ ଲମ୍ବିଥିବା ରାସ୍ତା ଉପରେ ଚାଲୁଥିଲା ।

ଦିଗ୍‌ବଳୟରେ ଆଉ ଅବିରର ଝଡ଼ ନ ଥିଲା ।

ଆଲୋକର ଅବିରତ ବର୍ଷାରେ ଭିଜିଯାଉଥିଲେ ମାଟି ଓ ଆକାଶ । ହଠାତ୍ କେଶୁ ଅନୁଭବ କଲା, ସେ ଗୋଟେ ଗାଁ ମୁଣ୍ଡରେ ପହଞ୍ଚିସାରିଛି । ସେ ଭାରି ଆଶ୍ଚର୍ଯ୍ୟ ହେଲା, ତା' ହାତରେ ବାଡ଼ିଟି ନାହିଁ ବୋଲି ଜାଣିଲା ପରେ । କୋଉଠି କେତେବେଳୁ ସେ ବାଡ଼ିଟି ହଜିଯାଇଥିଲା କେଜାଣି !



# ନାରଙ୍ଗୀ

ଆଉ ଭାବିବ ନାହିଁ ବୋଲି ଭାବିବାକ୍ଷଣି ହିଁ ବେଶି ବେଶି ଭାବିଚାଲେ ସନାତନ । କ'ଣ ବା ସେ ଭାବେ ? ସେଇ ପୁଲକଦା' କଥା ତ ? କାହିଁକି ସେ କଥା ଦଉଥିଲା ପୁଲକଦା'କୁ? କାହିଁକି ତା' କଥାରେ ହଁ ମାରୁଥିଲା ? କିନ୍ତୁ ହଁ ମାରିବା ଛଡ଼ା ସେତେବେଳେ ଅନ୍ୟ ଉପାୟ କିଛି ଥିଲା କ'ଣ ଆଗରେ ?

ପାଖାପାଖି ପାଞ୍ଚ ବର୍ଷ ହେଲାଣି । ସେଇ ହଁ ପଦକ ତାକୁ ସାପର ଫଁ ପରି ଡରେଇ ଚାଲିଚି, ଭୂତ ହୋଇ ବାଟ ଓଗାଳୁଚି । ଯେତେ ଭୁଲିବାକୁ ଚେଷ୍ଟା କଲେ ସେତେ ଅଧିକ ମନେପଡ଼େ ସେକଥା । କିଛି କୁଆଡ଼େ ନ ଥିବ, ହଠାତ୍ ସେ କଥା ପଦକ ଗୋଟେ ହାତୁଡ଼ି ପରି ତା' ମୁଣ୍ଡକୁ ବାଡ଼େଇବ । ବେକ ଚିପି ଧରିବ । ସେ ଅଣନିଃଶ୍ୱାସୀ ହୋଇପଡ଼ିବ । ହଠାତ୍ ତା' ମୁଣ୍ଡ ଲଟୁ ପରି ଘୂରିବ । ତାକୁ ବାନ୍ତି ବାନ୍ତି ଲାଗିବ । ମୁହୂର୍ତ୍ତକ ପାଇଁ ହେଲେ ବି ମରିଯିବାକୁ ତା'ର ଇଚ୍ଛା ହବ । କିନ୍ତୁ ସନାତନ ମରିପାରୁ ନ ଥିବ; ବଞ୍ଚି ପାରୁଥିବ ବା କୋଉଠି ?

ଏଇ ଚିନ୍ତା ତ ତାକୁ କେବେଠୁଁ ପଙ୍ଗୁ କରିସାରନ୍ତାଣି ! ଚଟକଳରେ କାମ କରୁଥିଲାବେଳେ କେତେଥର ତା' ହାତ କଟି ଯାଉ ଯାଉ ଅଳ୍ପକେ ରହିଯାଇଚି । ଭିଡ଼ ରାସ୍ତାରେ ଅନ୍ୟମନସ୍କ ଭାବରେ ଚାଲୁଥିଲାବେଳେ ମୋଟର ଚକ ତଳୁ ସେ ତ୍ରାହି ପାଇ ଫେରିଆସିଚି ଅନେକ ଥର । ହଜାରେ ବାର ପଚାରିଚି ମାଣିକ, ''ତମେ କାହିଁକି ଇମିତି ଖାପଛଡ଼ା ଖାପଛଡ଼ା ନାଗୁଚ ?'' ଘରକୁ ଗଲେ ବାପା ବୋଉ ପଚାରୁଚନ୍ତି, ''ଶୁଖି ଯାଉଚୁ କାହିଁକିରେ ବୁଢ଼ା ? ତୋର ସେଠି ସବୁ ଭଲ ତ ?'' ସନାତନର ସାଙ୍ଗ ବିହାରୀ ଦୁଧବାଲା ମାଖନ୍‌ଲାଲ୍ ପଚାରିଚି କାହିଁ କେତେଥର, ''ଇତ୍‌ନେ ପରେଶାନ୍ କେଁ୍ୟା ସନାତନ ଭୟା ?'' ପଚାରିଚି ତା'ଦୋକାନୀ ବଟୁ ଘୋଷାଲ୍, ''ତୁମି ଏମନ ମନ୍‌ମରା ହଏଛ କେନ ଗୋ ?'' ପାଞ୍ଚବର୍ଷ ହେଲା କାହାରି ପ୍ରଶ୍ନର କିଛି ଉତ୍ତର ଦେଇନି ସନାତନ । ଖାଲି ଯାହା ଟିକେ ହସିଦେଇଚି ମଉଳା କଇଁଫୁଲ ପରି ।

ଦିନେ ଦିନେ ରାତିରେ ସେ ପୁଲକଦା'କୁ ସ୍ୱପ୍ନ ଦେଖେ । ଗୋଲ୍, ଗୋରା, ମାଖୁନା ମୁହଁ ପୁଲକଦା'ର । ମାଇଚିଆ, ମାଇଚିଆ ଲାଗେ । କିନ୍ତୁ ହଠାତ୍ ତା' ଅଧାଚନ୍ଦା ମୁଣ୍ଡରେ ଦୁଇଟା ଶିଙ୍ଘ ଠିଆ ହୋଇଯାଏ । ତା' ଆଖି ହୁଏ ମନ୍ଦାରଫୁଲ ପରି ଲାଲ୍; ଜିଭ ଚାଖଣ୍ଡେ ପଦାକୁ ବାହାରିଆସେ; ତ୍ରିପଣ୍ଡ କଳା ଦିଶେ ମୁହଁ ।

ଆଖି ପିଛୁଳାକେ ସେ ଯେମିତି ପାଲଟିଯାଏ ଗୋଟେ ଯମଦୂତ ଓ ପ୍ରାଣ ବିକଳରେ ଦୌଡୁଥିବା ସନାତନକୁ ଗୋଡ଼ାଏ ଧରିବାପାଇଁ । ଦୌଡୁ ଦୌଡୁ ସନାତନ କୋଉ ଖାଲରେ ପଡ଼ିଯାଏ ଯେ ଯମଦୂତରୂପୀ ପୁଲକଦା' ତାକୁ ମାଡ଼ିବସେ । ସନାତନ ଖୁବ୍ ଜୋର୍‌ରେ ଚିତ୍କାର କରେ ଓ ତା' ନିଦ ଭାଙ୍ଗିଯାଏ । ନିଦ ଭାଙ୍ଗିଯାଏ ବି ମାଣିକର । କି ସପନ ଦେଖିଲ କି ବୋଲି କହି ସେ ସନାତନର କପାଳରେ ହାତମାରେ । କାନିରେ ଝାଳ ପୋଛିଦିଏ । ଚିହିଁକି ପଡ଼ିଥିବା ନାଣ୍ଟୀ ଉପରେ ଛେପ ଲଣ୍ଡାଏ ପକାଏ । ଭିଡ଼ିଆଣେ ପାଖକୁ; ଛାତିରେ ଛାତି ଜଡ଼େଇଦିଏ ।

ଗତ ସନ ରଜକୁ ସେ ଗାଁକୁ ଯାଇଥିଲା ନାଣ୍ଟୀ ଆଉ ମାଣିକକୁ ସାଙ୍ଗରେ ଧରି । ବୋଉ ଚିଠି ଦେଇଥିଲା ଗାଁରୁ ଅନେକ ଆଗରୁ, "ବୁଢ଼ାରେ, ଏଥର ରଜକୁ ଯେମିତି ହେଉ ଆସିବୁ । ତୋ ବାପା ଧିଅ ଆଉ ଭଲ ରହୁନିରେ । କେତେବେଳେ କୋଉ କଥା । ମୋ ରାଣ ଏଥର ନିଶ୍ଚେ ଆସିବୁରେ ଧନ ।" ଗାଁରେ ପହଁଚି ସନାତନ ଦେଖିଲା, ସତରେ ବାପର ଅବସ୍ଥା ବଡ଼ ଖରାପ । ଚମ ଧୁଡୁକି ଗଲାଣି । ହେଲେ ମାଣିକ ଶ୍ୱଶୁର ସେବା କରିବ କ'ଣ; ଏ ଗୁଣିଆ ସେ ଗୁଣିଆ ପାଖକୁ ଖାଲି ଦୌଡ଼ିଲା । ତଳଦୁମୁକାର କମ୍ପୁପାଣି ଦାସଠାରୁ ଗୋଟେ ତେଉଁରିଆ ଆଣି ସନାତନ ହାତରେ ବାନ୍ଧିଲା । ରିଷ୍ଟ ଖଣ୍ଡନ ପାଇଁ ବୋଉ ବୁଢ଼ା ମହାଦେବ ମୁଣ୍ଡରେ ଶହେଆଠ ବେଲପତ୍ର ଚଢ଼େଇଲା । ତଥାପି ସନାତନ ଦୁଃସ୍ୱପ୍ନରୁ ମୁକ୍ତି ପାଇପାରୁ ନ ଥିଲା ଯାହା ।

ଗାଁଠାରୁ କାହିଁ କେତେଦୂର ଏ ମହାନଗରୀ, ବେଳେବେଳେ ଭାବିଲେ ଆଖି ପାଏ ନାହିଁ । ଦି'ଥର ଟ୍ରେନ୍, ତିନି ଥର ମଟର ବଦଳାଇବା ପରେ ଡଙ୍ଗା ପାରି ହୋଇ ଦି'କୋଶ ଚାଲିଲେ ଯାଇ ଗାଁ । ସେଇ ଗାଁରୁ ରାତିଅଧିଆ ପଳେଇ ଆସି ସେ ଏଇ ମହାନଗରୀରେ ଆଶ୍ରୟ ଖୋଜିଥିଲା । ଏବେ ବି ଭଲ କି ମନେଅଛି ସନାତନର, ସେ ଗାଁ ଛାଡ଼ିଥିଲା ଦୋଳପୁନେଇଁ ଆଗ ଦିନ ରାତିଅଧରେ । ସେଇଦିନ ସଂଜରେ ପଡ଼ୋଶୀ ଗାଁର ରଥୀ ମହାରଣା ଝିଅ ଲବଙ୍ଗଲତା ସବାରିରେ ବସି ଶାଶୁଘରକୁ ଯାଇଥିଲା ।

ସନାତନ ଗାଁରେ ଲବଙ୍ଗର ମାମୁଘର । ଲବଙ୍ଗ ପ୍ରତିବର୍ଷ ଦୁର୍ଗାପୂଜା ବେଳକୁ ମାମୁ ଘରକୁ ଆସେ । ସନାତନର ଦୁଇବର୍ଷ ତଳେ ସେ ପାଠପଢ଼େ । ସନାତନ ଲବଙ୍ଗକୁ କେତେ ଥର ପାଠ ପଚାରିଥିବ; ଥଟ୍ଟା କରିଥିବ । କିନ୍ତୁ ସନାତନ ମେଟ୍ରିକ୍ ପରୀକ୍ଷା ଦବା ବର୍ଷ ଲବଙ୍ଗ ଯେତେବେଳେ ତା' ମାମୁଘରକୁ ଆସିଥିଲା, ତାକୁ ଦେଖି ସନାତନ ନିଜ ଛାତିରେ ଗୋଟେ ଅଜଣା ଧକ୍‌କା ଅନୁଭବ କରିଥିଲା । ଲବଙ୍ଗ ଆଉ ଆଗପରି ଫେଁ ଫେଁ ହୋଇ ହସୁ ନ ଥିଲା କି ବେଶି କଥା କହୁ ନ ଥିଲା । ସେତେବେଳେ ଲବଙ୍ଗ, ଲବଙ୍ଗଲତାରେ ପରିଣତ ହୋଇସାରିଥିଲା । ତା' ଛାତିର ଉଚ୍ଚତା ଯେମିତି ବଢ଼ିଥିଲା, ସେମିତି ବି ଆଖିର ଚଞ୍ଚଳତା । ତା' ସାରା ଦେହରେ ଶରତ ଋତୁର ଧାନକିଆରି

ଯେମିତି ଲହଡ଼ି ଭାଙ୍ଗୁଥିଲା । ଏତେ ଦିନରୁ ଦେଖି ଆସୁଥିବା ଲବଙ୍ଗ ହଠାତ୍ ତାକୁ ଲାଗିଲା, ଗାଁ ନଈପରି ସଦା ପରିଚିତ ଅଥଚ ଅଚିହ୍ନା । ସେଥର ସାରା ପୂଜା ଛୁଟି ସନାତନକୁ ମନେହେଲା ଲବଙ୍ଗମୟ ଗୋଟେ ଜହ୍ନରାତି ପରି ।

ଲବଙ୍ଗ ତାଙ୍କ ଘରକୁ ଫେରିଯିବା ପୂର୍ବଦିନ ସନାତନ ନିରୋଳାରେ ଲବଙ୍ଗକୁ ପାଇ କହିଲା, ''ମୁଁ ତୋତେ ଭାରି ଭଲପାଏ ଲବଙ୍ଗ ।'' ଏତକ କହୁ କହୁ ତା' ପାଟି ଖନି ମାରିଗଲା ଓ ସେ ଆଉକିଛି କହିପାରିଲା ନାହିଁ । ଲବଙ୍ଗ ତଳକୁ ମୁହଁ ପୋତି ଠିଆହୋଇ ରହିଲା ଯାହା, ଉଁ ନାହିଁ କି ଚୁଁ ନାହିଁ । ବହୁ ସାହସ ସଞ୍ଚୟ କରି ସନାତନ ଥରେ ତା' ମୁହଁକୁ ଚାହିଁଲା । ଦେଖିଲା, ଲବଙ୍ଗ ମୁହଁରେ କିଏ ଯେମିତି ମେଞ୍ଚାଏ ଅବିର ଏଇମାତ୍ର ବୋଳିଦେଇଚି ।

ସେଇଦିନଠୁଁ ଲବଙ୍ଗ ସହ ତା'ର ଚିଠି ଦିଆନିଆ, ମନ ଦିଆନିଆ । ସନାତନ ମେଟ୍ରିକ ଫେଲ୍‌ହେଲା, ଦି' ଦି' ଥର । ରାଗରେ ଥମଥମ ହୋଇ ସନାତନର ବାପା ତାକୁ କହିଲା, ''ତୋର ଆଉ ପାଠ ପଢ଼ିବା ଦରକାର ନାହିଁରେ କୁଳାଙ୍ଗାର, ବିଲବାଡ଼ି ବୁଝ, ନ ହେଲେ ଛୋଟମୋଟ ବେପାର କର୍ ।'' ସନାତନ ବାପ କଥାକୁ କାନ ଦେଲା ନାହିଁ । ଫୁଲାଫାଙ୍କିଆ ହୋଇ ବୁଲିଲା । ଲବଙ୍ଗକୁ ଆହୁରି ଆହୁରି ସ୍ୱପ୍ନ ଦେଖିଲା । କିଛିଦିନ ପରେ ବୋଉ ପାଖରେ ତା' ମନକଥା ଖୋଲି କହିଦେଲା ସନାତନ,''ଲବଙ୍ଗକୁ ମୁଁ ବାହାହେବି ।''

ସେତେବେଳକୁ ଲବଙ୍ଗ ମେଟ୍ରିକ୍ ପାସ୍ କରିସାରିଥିଲା ଓ ତା' ବାପା ବର ଖୋଜିବାରେ ଲାଗିଥିଲେ । ସନାତନର ବାପା ତାଙ୍କ ପାଖକୁ ପ୍ରସ୍ତାବ ପଠାଇବାରୁ ସିଏ କଥାଟାକୁ ତାଚ୍ଛଲ୍ୟରେ ଉଡ଼ାଇଦେଲେ । ସେହିଦିନୁଁ ସନାତନ ଚିଠିର ବି ଆଉ ଉତ୍ତର ଫେରିଲାନି ଲବଙ୍ଗଠାରୁ । ଫଗୁଣର ମହମହ ଫଗୁ ବାସ୍ନା ଭିତରେ ରାଉରକେଲାରେ ଚାକିରି କରୁଥିବା ଗୋଟେ ଡଉଲଡାଉଲ ଯୁବକର କନିଆଁ ସାଜି ଚାଲିଗଲା ଲବଙ୍ଗଲତା । ଆଉ ସେଇଦିନ ରାତିରେ ତମାଳତାଳି ଗାଁର ଆତ୍ମୀୟ ବନ୍ଧନକୁ ପଛ କରିଦେଇଥିଲା ସନାତନ ।

ମହାନଗରୀରେ ରହିବାର ମାସେ ଦୁଇ ମାସ ପରେ ସନାତନର ଚିହ୍ନା ହୋଇଥିଲା ଫୁଲକଦା' ସାଥିରେ । ସେତେବେଳେ ଗୋଟେ ହୋଟେଲ୍‌ରେ ବୟ କାମ କରୁଥିଲା ସନାତନ । ସେହି ହୋଟେଲକୁ ବେଶ୍ ବିଳମ୍ବରେ ଆସେ ଫୁଲକଦା' । ତା' ପାଇଁ ସ୍ୱତନ୍ତ୍ର ଖାଦ୍ୟ ତିଆରି ହୁଏ । ଖାଇବା ପୂର୍ବରୁ ସେ ଧୁମ୍ ପିଏ । ସାଙ୍ଗରେ ଆଣିଥାଏ ନାନା ରଙ୍ଗର ବୋତଲ । ନ ଆଣିଥିଲେ ସେଇ ରାତିରେ ସନାତନ ମଦଦୋକାନ ଖୋଜିବୁଲେ ଓ ଯେଉଁଠୁଁ ହେଲେ ମଦ ଧରି ଫେରେ । ଫୁଲକଦା' ପୁଲକିତ ହୁଏ । କ୍ରମେ କ୍ରମେ ସନାତନର ତା' ସହ ସମ୍ପର୍କଟା ଗାଢ଼ହେଲା । ଦରକାର ବେଳେ ସେ ସନାତନକୁ ଧାରଉଧାର ଦିଏ ।

ପରେ ପୁଲକଦା' ବିଷୟରେ ଆହୁରି ଅନେକ କଥା ଜାଣିଲା ସନାତନ । ପୁଲକଦା' ଗୋଟେ ବେଶ୍ୟା କୋଠିର ଦଲାଲ୍ । ଝିଅ ସଂଗ୍ରହ କରି କୋଠିକୁ ପଠାଏ । କେତେକ ଝିଅ ଲୋଭରେ ଆପେ ଧରାଦିଅନ୍ତି, ତା' ହାତରେ । ଧନ୍ଦା ସାରି ଫେରିଯା'ନ୍ତି । ଏମିତିକା ଝିଅମାନେ ଟିକେ ସଂଭ୍ରାନ୍ତ । ତା'ଛଡ଼ା ପୁଲକଦା' ଅନ୍ୟ ଝିଅ ବେପାରୀମାନଙ୍କ ଜରିଆରେ ଝିଅ କିଣେ, କୋଠିକୁ ସପ୍ଲାୟ କରେ । କେହି କେହି କହନ୍ତି ପୁଲକଦା'ର କୋଠିରେ ସେୟାର୍ ଅଛି । ହୋଟେଲ୍ ମାଲିକ କହେ, ପୁଲକଦା' ଟୋଟେ ବଡ଼ ଦଲାଲ୍ । କୋଠିକୁ ଝିଅ ବିକ୍ରିକରି ମଝିରେ ଫାଇଦା ଉଠାଏ ।

ପୁଲକଦା'ର ଚିନ୍ତା ନ ଥାଏ ମାମୁଲି ଗ୍ରାହକମାନଙ୍କପାଇଁ । ସେମାନେ ତ କମ୍ ଦାମୀ ଗୁଡ଼ା । କିନ୍ତୁ ପୁଲକଦା' ଶେଠ୍ ଗ୍ରାହକମାନଙ୍କପାଇଁ ନିଜେ ଯୋଗାଡ଼ କରେ । ଶେଠମାନଙ୍କପାଇଁ ବ୍ୟବସ୍ଥା ସ୍ୱତନ୍ତ୍ର । ନାଚ, ଗୀତ ଓ ପାନୀୟ ଆଦିର ବନ୍ଦୋବସ୍ତ ଥାଏ । ସେମାନଙ୍କ ବରାଦ ଅନୁସାରେ ଅଳ୍ପବୟସ୍କା, ଗୌରବର୍ଣ୍ଣା, ପୀନଉରଜାମାନଙ୍କୁ ଉଭା କରାଯାଏ । ତା'ପରେ ଯାଇ ଟଙ୍କାର ମୋଟେଇ ବଢ଼େ । ବଡ଼ ବଡ଼ ଅଫିସର୍ ବା ମନ୍ତ୍ରୀସ୍ତରୀୟ ଗ୍ରାହକମାନେ କିନ୍ତୁ କୋଠିକୁ ଆସନ୍ତି ନାହିଁ । ପୁଲକଦା' ନିର୍ଦ୍ଦିଷ୍ଟ ହୋଟେଲ୍ ବା ଡାକବଙ୍ଗଳାକୁ ନିର୍ଦ୍ଧାରିତ ସମୟରେ ପସନ୍ଦଯୋଗ୍ୟା ଝିଅମାନଙ୍କୁ ପଠାଏ ।

ଘନିଷ୍ଠ ହୋଇଯିବା ପରେ ନିଜେ ପୁଲକଦା' ଗପିଚି କେତେଥର, ମହାନଗରୀର ବିଭିନ୍ନ କଲେଜର ଲେଡିଜ୍ ହଷ୍ଟେଲ୍ ସହ କୁଆଡ଼େ ତା'ର ସମ୍ପର୍କ ନିବିଡ଼ । ରାତିରେ ସେଠୁ ଝିଅମାନଙ୍କୁ ଅଣାଯାଏ, ରାତି ପାହିବା ପୂର୍ବରୁ ପୁଣି ଯଥା ସ୍ଥାନରେ ପହଞ୍ଚାଇ ଦିଆଯାଏ । ସେମାନଙ୍କର ଚାର୍ଜ୍ ବେଶି । ସେମାନେ ବି ଗ୍ରାହକର ଷ୍ଟାଟସ୍ ଆଦି ଜାଣିବା ପରେ ଯାଇ ରାଜି ହୁଅନ୍ତି । କେତେକ ବଡ଼ଘରର ଝିଅବୋହୂ ବି ଏ ଧରଣର କାର୍ଯ୍ୟରେ ଲିପ୍ତ । ହେଲେ ପୋଷା ବେଶ୍ୟାମାନଙ୍କର କିଛି ନିଜସ୍ୱ ନ ଥାଏ । ସେମାନେ ଯନ୍ତ୍ରଠୁଁ ବଳି ଯାନ୍ତ୍ରିକ ।

ପୁଲକଦା' ଦୟାରୁ ସନାତନ ମାମୁଲି କୋଠିର ଦ୍ୱାର ଡେଇଁଚି କେତେଥର ।

ଆଗରୁ ହୋଟେଲ୍ ମାଲିକ ସହ ଥରେ ଦୁଇ ଥର ଝଗଡ଼ା ହୋଇଥିଲା ସନାତନର । ଦିନେ ଝଗଡ଼ା ଏମିତି ତୀବ୍ର ହେଲା ଯେ ଶଳା ଧକ୍‌କା ମାରି ବାହାର କରିଦେଲା ତାକୁ ହୋଟେଲ୍‌ରୁ, ଆଉ ସେଇ ଧକ୍‌କାକେ ସନାତନ ଆସି ପହଞ୍ଚିଗଲା ମହାନଗରୀର ଉପାନ୍ତ ଏକ ଶିଳ୍ପାଞ୍ଚଳରେ ।

ଶିଳ୍ପାଞ୍ଚଳରେ ଅବଶ୍ୟ କାମ ମିଳିଗଲା ସନାତନକୁ । ଚଟକଳରେ । ବଦଳି କାମ । ପ୍ରାୟ ପ୍ରତିଦିନ କେହି ନା କେହି ଶ୍ରମିକ ଛୁଟିରେ ଥା'ନ୍ତି । ତାଙ୍କ ସ୍ଥାନରେ କାମ କରେ ସନାତନ । ଦୂର ପ୍ରଦେଶର ଶ୍ରମିକମାନେ ତ ମାସ ମାସ ଧରି ଛୁଟିରେ ରହନ୍ତି । ସେପରି ସ୍ଥଳରେ ସନାତନକୁ ମାସବ୍ୟାପୀ କାମ ମିଳେ । ନ ହେଲେ ବି ମାସରେ

କୋଡ଼ିଏ ପଚିଶ ଦିନରୁ କମ୍ କାମ ମିଳେ ନାହିଁ । ଶ୍ରମିକ ବସ୍ତିରେ ଭଡ଼ାଘରଟେ ବି ମିଳିଗଲା ସନାତନକୁ । ବଞ୍ଚିଗଲା ବିଚରା ।

ସାରାଦିନ ଖଟଣି ପରେ ପୁଣି ହାତରେ ରନ୍ଧାବଢ଼ା । ଫୁରୁସତ୍ ମିଳେନି ସନାତନକୁ କିଛି କଥା ଭାବିବାପାଇଁ । ପ୍ରଥମେ ପ୍ରଥମେ ତ ଲବଙ୍ଗ ତା'ର ଭାରି ମନେ ପଡୁଥିଲା । ଏବେ କିନ୍ତୁ ପିଲାଦିନେ ଦେଖିଥିବା ଗୋଟେ ନଈବଢ଼ିର ଦୃଶ୍ୟ ପରି ଲବଙ୍ଗର ସ୍ମୃତି ଲାଗୁଥିଲା ବଡ଼ ଝାପ୍‌ସା, ଆବେଗରହିତ । କିନ୍ତୁ ବୋଉର ବୁଢ଼ା' ଡାକ ଅନେକ ସମୟରେ ସନାତନର କାନ ଭିତରେ ଗୁଞ୍ଜରଣ ତୋଳୁଥିଲା । ଦିଶିଯାଉଥିଲା କେବେ କେମିତି ବାପାର ପାନଖିଆ ପାକୁଆ ପାଟି । ସହସ୍ର କୋଶର ବ୍ୟବଧାନ ଡେଇଁ ମନ ପହଞ୍ଚି ଯାଉଥିଲା ଗାଁରେ । ତାଳ ବରଡ଼ାର ହାତ ହଲେଇ ଗାଁ ଯେମିତି ଡାକୁଥିଲା, ଆ...ଆ... ସନାତନ ଫେରିଆ...

ସନାତନ ଗାଁକୁ ଫେରିଲା । ବାହାହୁରା ହେଲା ।

ୟା ଭିତରେ କିନ୍ତୁ ବେଶ୍ କିଛି ବଦଳି ଯାଇଥିଲା ଗାଁର ରୂପ । ଗାଁର ନଈପେଟରେ ଫାଟ । କ୍ଷେତର ଧାନଗଛ– ଛାଞ୍ଚୁଣୀ । ଗାଁ ରାସ୍ତା କିନ୍ତୁ ଯୋଉ ହିଡ଼୍‌କୁ ସେଇ ହିଡ଼ । ଭୋଅଟ ବେଳୁ ଗାଁ ଫଟାହାଣ୍ଡି ଯେ ଯେତେ କାହୁଅ ବୋଲିଲେ ବି ଶୁଣୁ ନାହିଁ । ସେଥିରେ ପୁଣି ଦିନ ଦି'ପହରେ ଖଦଡ଼ିଆଙ୍କ ଡକେଇତି । ଦାଦା ଖୁଡ଼ୀ, ମଉସା ପିଉସା ଡାକ ଭିତରେ ଯେମିତି ଗୋଟେ ଭସାଣିଆ ଭାବ । ଗାଁର ମଳୟରେ ଅବା ଅବିଶ୍ୱାସର ଝାଞ୍ଜି । ପୁଣି ମହାନଗରୀକୁ ଧାଇଁଲା ସନାତନ । ଏଥର ସାଙ୍ଗରେ ନୂଆ ବାହାହେଇଥିବା ସ୍ତ୍ରୀ, ମାଣିକ ।

ଚଟକଳରେ ସେହି ବଦଳି କାମ । ସନାତନ ଉଣ୍ଡି ବୁଲୁଥାଏ, କିଏ କୋଉଦିନ ଛୁଟିରେ ଯିବ ଆଉ ତା' ଜାଗାରେ ସେ କାମ ପାଇବ । ପ୍ରତିଦିନ ତ ଗାଁ-ଗଣ୍ଡାରୁ ବେକାରମାନଙ୍କର ସୁଅ ଛୁଟୁଥିଲା ଶିଳ୍ପାଞ୍ଚଳକୁ । ମାସକୁ ପନ୍ଦର ଦିନ କାମ ମିଳିବା ବି ଅସମ୍ଭବ ହୋଇପଡ଼ିଲା । ସେଥିରେ ପୁଣି ପାଖରେ ଭୁଆସୁଣୀଟା । ଆଜି ଶାଢ଼ି ତ କାଲି ଚୁଡ଼ି । ଦେହପା' ଭଲମନ୍ଦ ସାଙ୍ଗକୁ ପୁଣି ଗାଁରେ ବୁଢ଼ାବୁଢ଼ୀଙ୍କ ଚିନ୍ତା । ତଥାପି ସନାତନ ମନରେ ଧୈର୍ଯ୍ୟର ଅଭାବ ନ ଥିଲା । ଢୋକେ ପିଇ ଦଣ୍ଡେ ଜିଇଁଲା ପରି ବଞ୍ଚିଯାଉଥିଲା ସନାତନ ।

ଅବଶ୍ୟ ଡ୍ୟୁଟିରୁ ଫେରିବା ପରେ ହାତରେ ରାନ୍ଧିବାଢ଼ି ଖାଇବାର ଝିନ୍‌ଝଟ୍ ନ ଥିଲା ତା'ର । ଯାହା ଶାଗମୁଗ ଗଣ୍ଡେ ଫୁଟେଇ ମାଣିକ ଚାହିଁଥାଏ, ତା' ଫେରିବାକୁ । ଅଭାବର ଅଥଳ ଜଳରେ ବି ଜୀବନ୍ ମନେ ହେଉଥିଲା ପଦ୍ମଫୁଲ ପରି ଚହଟ, ଢଳଢଳ ।

ମାଣିକ ଯୋଉଦିନ କହିଲା– ସେ ମା' ହବ, ସନାତନର ଆନନ୍ଦ କହିଲେ ନ ସରେ । ଝାମୁଯାତରୁ କଣ୍ଢେଇ କିଣିବା ଆଶାରେ ଉଲ୍ଲସିତ ଗୋଟେ ଅବୋଧ କିଶୋର ପରି ସେ ଡେଇଁ ଡେଇଁ ଚାଲିଲା ଯେମିତି !

ମାଣିକ ପେଟରେ ହବାର ଚାରି ମାସ ପୂରିଚି କି ନାଇଁ, କୋଉଠି ଥିଲେ ଯେ ରୋଗବ୍ୟାଧି ସବୁ ମାଡ଼ି ଆସିଲେ ପିଲାକୁଟୁମ୍ବ ଧରି । ଆଜି ଝାଡ଼ା ତ କାଲି ବାନ୍ତି । କୋଉଦିନ ମୁଣ୍ଡବ୍ୟଥା ତ ଆଉ କୋଉଦିନ ପେଟକଟା । ସନାତନ ଜଣେ ହୋମିଓପ୍ୟାଥିକ୍ ଡାକ୍ତରଠୁଁ ଔଷଧ ଆଣି ମାଣିକକୁ ଖୁଆଇଲା । ହେଲେ ଆଜିକାଲିକା ରୋଗକୁ କୋଉ ହୋମିଓପ୍ୟାଥି ବା କାଟୁ କରିବ । ମାଣିକକୁ ସାଙ୍ଗରେ ଧରି ଗୋଟେ ବଡ଼ ଡାକ୍ତର ପାଖକୁ ଦୌଡ଼ିଲା ସନାତନ । ଚାରିଘଣ୍ଟା ଅପେକ୍ଷା କଲା ପରେ ପଡ଼ିଲା ତା'ର ପାଳି । ମାଣିକକୁ ଉଞ୍ଚା ଟେବୁଲ୍ ଉପରେ ଶୁଆଇ ମିନିଟିଏ କ'ଣ ଏଣ୍ଡୁତେଣ୍ଡୁ ଦେଖି, ସେ ବୁଢ଼ା ଡାକ୍ତର ଧରେଇଦେଲା ଔଷଧର ଗୋଟେ ଲମ୍ବା ତାଲିକା ଆଉ ଝାମ୍ପିନେଲା ଶହେ ଟଙ୍କା ।

ସନାତନ ହାତ ଉଧାରିରେ ବୁଡ଼ିଗଲା ସିନା, ମାଣିକର ଔଷଧ ଖିଆ ବନ୍ଦ କଲା ନାହିଁ । ମଝିରେ ମଝିରେ ଡାକ୍ତର ପରାମର୍ଶ କଲା । କିନ୍ତୁ ପ୍ରତିଥର ଡାକ୍ତର ନୂଆ ନୂଆ ରୋଗର ନାଁ କହି ତାକୁ ଡରେଇ ଚାଲିଲା । ମାଣିକ ପୋଖତୀ ହେଲାବେଳକୁ ଡାକ୍ତର କହିଲା କ୍ଲିନିକ୍‌ରେ ଭର୍ତ୍ତି କରିବାକୁ । ମା'ଛୁଆ ଉଭୟଙ୍କର ଅବସ୍ଥା ଜଟିଳ ବୋଲି କହିବାରୁ ସନାତନ ଛାତିରେ ଛନକା ପଶିଲା । ସେ କ'ଣ କରିବ, କ'ଣ କରିବ ଭାଳି ହେଲା । ସାଙ୍ଗସାଥୀ ଚିହ୍ନାଜଣା ସମସ୍ତଙ୍କଠାରୁ ତ କରଜ ଆଣିସାରିଚି, ଏବେ ସବୁ ବାଟ ବନ୍ଦ । କାହାକୁ ଆଉ ଉଧାର ମାଗିବ । ସନାତନର ନଜରକୁ ଆସିଲା ମାଣିକର କାନଫୁଲ । ସେ ସେହିକ୍ଷଣି ବଣିଆ ଦୋକାନକୁ ଯାଇ କାନଫୁଲ ବିକ୍ରିକଲା ଓ ମାଣିକକୁ ଭର୍ତ୍ତିକଲା କ୍ଲିନିକ୍‌ରେ ।

କ୍ଲିନିକ୍‌ରେ ଦି'ତିନି ଦିନ ରହିବା ପରେ ଡାକ୍ତର ପୁଣି ବାହାର କଲା ନୂଆ ଫିକର । ପେଟ ଚିରା ନ ହେଲେ ମା'ଛୁଆଙ୍କ ଉପରେ ଭରସା କରିହବ ନାହିଁ । ତହୁଁ ସନାତନ ମୁଣ୍ଡରେ ଚଡ଼କ ପଡ଼ିଲା ଯେମିତି ! ତାକୁ ଚାରିଆଡ଼ ଅନ୍ଧାର ଦିଶିଲା । ସେ ବିରକ୍ତ ହୋଇ ଭାବିଲା, ଆମ ମା'ମାନେ କେମିତି ପୁଣି ଆମକୁ ଗାଁ ଗଣ୍ଡାରେ ଜନ୍ମ ଦେଇଥିଲେ । ଜଣେ ଜଣେ ଗାଁ ମାଇପି ତ ପାଞ୍ଚ ସାତଟାର ମା' ହୋଇଥିଲେ । କୋଉ ଡାକ୍ତର ନର୍ସ ଥିଲେ ଯେ ଗାଁରେ । ବୁଢ଼ୀ ଶୁଳିଆଣୀ ନିମିଷକରେ ଛୁଆ କାଢ଼ି ଆଣୁଥିଲା ମା' ପେଟରୁ । ଏବେ ଶଳା ଡାକ୍ତରଙ୍କର ସବୁ ଚାଲ୍ । ଖାଲି ପଇସା ନବାର ଫନ୍ଦି । ସନାତନ ଦୀର୍ଘଶ୍ୱାସ ଛାଡ଼ିଲା ଓ ମାଣିକକୁ ନେଇ ବସାଘରକୁ ଫେରିଯିବ ବୋଲି ଚିନ୍ତାକଲା । ଯାହା ହବ ହବ, ଠାକୁର ଭରସା । ନର୍ସକୁ ସେ ପଚାରୁଥିଲା ଯେ ସେ

ଦାକ୍ତରୀଟି ଆଖି ନଚେଇ କହିଲା, ଛ' ହଜାରରୁ କମ୍ ଲାଗିବ ନାହିଁ । ସେ ଏତେ ଟଙ୍କା କାହୁଁ ପାଇବ ଯେ ମାଣିକର ପେଟ ଚିରେଇବ ?

କାନ୍ଦ କାନ୍ଦ ହୋଇ ସନାତନ ମାଣିକର ମୁଣ୍ଡ ଆଉଁଶିଲା । ମାଣିକର ଆଖି ଓଦା ହୋଇଗଲା, ତଣ୍ଟି ଥରିଲା । ସେ କହିଲା, 'ଚାଲ ଏଠୁ ପଳେଇବା । ଏତେ ଟଙ୍କା ତମେ ଆଣିବ କୋଉଠୁ ? ମୁଁ ମଲେ ବରଂ ମରିବି । ହେଲେ ତମେ କରଜରେ ବୁଡ଼ି ମରିବା ମୁଁ ସହି ପାରିବି ନାହିଁ ।' ମାଣିକ ପାଟିରେ ହାତଦେଇ, 'ସେମିତି କହନା ମାଣିକ, ଆମକୁ ଭଗବାନ୍ ସାହା ହେବେ' କହି ସନାତନ ବାହାରକୁ ଆସିଲା । ଗୋଟିଏ କ୍ୟାବିନ୍‌ରୁ ବିଡ଼ି କିଣି କ୍ଲିନିକ୍ ସାମ୍ନା ଝଙ୍କାଳିଆ ନିମ୍ବଗଛ ମୂଳ ଚାନ୍ଦିନୀରେ ଯାଇ ବସିଲା । ତିନିଚାରି ଥର ଦିଆଶିଲି ମାରି ବି ସେ ବିଡ଼ିରେ ନିଆଁ ଧରେଇ ପାରୁ ନ ଥିଲା । ତା' ଚାରିଆଡ଼େ ଖାଲି ନାଚି ଯାଉଥିଲା ମାଣିକର ବିକଳ ମୁହଁ, କାନରେ ବାଜୁଥିଲା ଯୁଗପତ୍ ଗୋଟେ କଅଁଳା ଛୁଆର କାନ୍ଦଣା । ପାଗଳ ହୋଇଯିବ କି ଆଉ ସନାତନ ? ତା' ମୁଣ୍ଡ ଭିତରେ ଯେମିତି ଅସଂଖ୍ୟ ବିରୁଡ଼ି ବସା । 'ମୁଁ କ'ଣ ଏଡ଼େ ଜହ୍ଲାଦଟାଏ ଯେ ନିଆଁକୁ ସାକ୍ଷୀ ରଖି ବାହା ହୋଇଥିବା ସ୍ତ୍ରୀକୁ ଜାଣି ଜାଣି ମାରିଦେବି ? ମାଟିରେ ଗୋଡ଼ କଚାଡ଼ିବା ପୂର୍ବରୁ ଛୁଆଟାର ତଣ୍ଟି ଚିପିଦେବି ?' ଏମିତି ଭାବୁଭାବୁ ସନାତନ ଲାଗଲାଗ ଦୁଇଚାରିଟି ବିଡ଼ି ପିଇଗଲା । ତା'ପରେ ସିଧା କ୍ଲିନିକ୍ ବାହାରକୁ ଆସି ଟ୍ରାମ୍ ଚଢ଼ିଲା ।

ଖଟି ଜାଗାମାନଙ୍କରେ ପୁଲକଦା'କୁ ଖୋଜିଲା ସନାତନ । ଅନେକ ଖୋଜାଖୋଜି ପରେ ଗୋଟେ ଚା'ଦୋକାନରେ ତା' ସହ ଭେଟ ହେବାରୁ ସନାତନ ନିଜ ଦୁଃଖ ବଖାଣିଲା । ପୁଲକଦା' ସନାତନଠୁଁ ସବୁ କଥାଶୁଣି ଆହାପଦ ଶୁଣେଇଲା ସିନା କିନ୍ତୁ ଟଙ୍କା ଦବାକୁ ଅମଙ୍ଗ ହେଲା । କହିଲା, ''ଦେଖ, ସନାତନ, ତୋତେ ଏତେ ଟଙ୍କା କୋଉ ଭରସାରେ ଦେବି ? ତୋ ଘର କାହିଁ କେତେ ଦୂର ଆଉ ଏକ ରାଜ୍ୟରେ । ତୋ ଚାକିରିର କୂଳ ନାହିଁ କି ଥଳ ନାହିଁ । ଶହେ ଦୁଇ ଶହ କଥା ଅଲଗା । ଏତେ ଟଙ୍କା ତୁ ଶୁଝିବୁ କେମିତି ?'' ଗୋଟେ ଆବେଗରେ ସନାତନ ଧାଇଁ ଆସିଥିଲା ପୁଲକଦା' ପାଖକୁ । ପୁଲକଦା'ର ନାସ୍ତିବାଣୀ ତା'ର ଶେଷ ଭରସାଟିକୁ ଭସେଇଦେଲା ମଝିନଈରେ । ସନାତନ ପୁଲକଦା'ର ଗୋଡ଼ ଧରି କାଳିଶି ପରି ରଡ଼ିଲା । 'ମୋ ପିଲା-ମାଇପଙ୍କୁ ବଞ୍ଚା ପୁଲକଦା', ମ ଗାଁରୁ ଜମି ବିକି ଆଣି ତୋ ଟଙ୍କା କଳନ୍ତର ସହ 'ଶୁଝିଦେବି', ଗୋଟେ ଗାଉଁଲି ଅପେରାର ଅଭିନେତା ପରି ଚିତ୍କାର କଲା ସନାତନ । ପୁଲକଦା' କାହିଁକି ଶୁଣିବ କିଛି ! ମନାକଲା ଟଙ୍କା ଦବାକୁ ।

ଚାଲିଯାଉଥିଲା ସନାତନ । ଖଣ୍ଡେ ଦୂରରେ ହୋଇଥିବ, ପୁଲକଦା' ଡାକିଲା ପଛରୁ, ''ଶୁଣ୍ ସନାତନ ।''

ସନାତନ ଫେରିଆସିଲା ।

ଫୁଲକଦା' କହିଲା, 'ତୁ ରାଜିହେଲେ ମୁଁ ବାଜି ମାରିବି' । ସନାତନ ହଠାତ୍ କିଛି ବୁଝିପାରିଲା ନାହିଁ । ଫୁଲକଦା' କହିଲା, 'ପାଞ୍ଚ ହଜାର ଟଙ୍କା ଦେବି ଏଇ ମୁହୂର୍ତ୍ତରେ, କିନ୍ତୁ ଧାର ନୁହେଁ, ବାଜି ଲଗେଇବି ତୋ ଛୁଆ ଉପରେ । ପୁଅ ହେଲେ ତୋର, ଝିଅ ହେଲେ ମୋର ।'

ଫୁଲକଦା'ର କଥା ନ ସରୁଣୁ ସନାତନ ରାଗରେ ପାଚି ଲାଲ ହୋଇଗଲା । ଫୁଲକଦା'କୁ ତଳେ କଚାଡ଼ି ତା' ଛାତିରୁ ରକ୍ତ ପିଇଯିବାକୁ ଇଚ୍ଛା ହେଉଥିଲା ତା'ର । ସେ କିନ୍ତୁ ନିଜକୁ ସମ୍ଭାଳି ନେଲା । ଫୁଲକଦା' ଉପରକୁ ଢେଲା ପରି ଗୋଟେ ତେର୍ଚ୍ଛା ଚାହାଣି ଫିଙ୍ଗି ସେ ଗହଳି ଭିତରେ ଉଭାନ୍ ହୋଇଗଲା ।

କ୍ଲିନିକ୍‌କୁ ଫେରିଲା ବେଳକୁ ମାଣିକର ବେଡ୍ ଦୁଇପାଖରେ ଦୁଇଜଣ ନର୍ସ । ଚେତା ହରେଇଚି ମାଣିକ । ସାଲାଇନ୍ ଚାଲିଛି । 'କାହାକୁ କିଛି ନ କହି କୁଆଡ଼େ ଚାଲିଯାଇଥିଲ ହୋ ବାବୁ, ତମେ କେମିତିକା ଲୋକ କି,' ଖିଙ୍କାରିଲା ଗୋଟେ ନର୍ସ । ଅନ୍ୟ ଜଣକ କହିଲା, ଶୀଘ୍ର ଯାଇ ଟଙ୍କା ଡିପୋଜିଟ୍ କର ଆମ କାଉଣ୍ଟରରେ । ରାତିକି ଅପରେସନ୍ ହେବ' । ସନାତନ ଦଣ୍ଡେ ମୂକ ପାଲଟିଗଲା । ପରେ କହିଲା, ''ମାଣିକର କିଛି ହେବ ନାହିଁ ତ ଦିଦୀ ? ମୁଁ ଯେମିତି ହେଲେ ଟଙ୍କା ଯୋଗାଡ଼ କରିବି । ବସନ୍ତମୁହାଁ ମୋଟୀ ନର୍ସଟି ମୁରୁକି ହସି କହିଲା, ''ସବୁ ଠିକ୍ ହୋଇଯିବ । ଆମ ଡାକ୍ତରଙ୍କୁ ଯମ ବି ଡରେ । ଖାଲି ଠିକ୍ ସମୟରେ ଟଙ୍କା ଡିପୋଜିଟ୍ କଲେ ହେଲା ।''

ସନାତନ ମନକୁ ବୁଝେଇଲା । ଦମ୍ଭ ଧରିଲା । ପଥର କଲା ଛାତି । ପୁଣି ଆସିଲା ଫୁଲକଦା' ପାଖକୁ । ସର୍ତ୍ତରେ ରାଜିହେବା ପରେ ପାଞ୍ଚ ହଜାର ଟଙ୍କାର ଗୋଟେ ବଣ୍ଡଲ୍ ତାକୁ ଧରେଇଦେଲା ଫୁଲକଦା' ଓ କହିଲା, 'ମୋ ସଙ୍ଗରେ ଚାଲାକି କରିବୁନି ସନାତନ, ଠକିଯିବୁ । ସନାତନ ମୁଣ୍ଡ ହଲେଇ ହଁ ମାରିଲା ଓ ଏକା ନିଃଶ୍ୱାସକେ ଯେମିତି ଫେରିଆସିଲା କ୍ଲିନିକ୍‌କୁ । କାଉଣ୍ଟର୍‌ରେ ଟଙ୍କା ଡିପୋଜିଟ୍ କଲା ।

ସେଇ ରାତିରେ ମାଣିକକୁ ଅପରେସନ୍ ଥିଏଟର୍‌କୁ ନିଆଗଲା । ସନାତନ ବାରନ୍ଦାରେ ଖାଲି ଏପଟ ସେପଟ ହେଲା । ପାନ ଚୋବାଇଲା । ବିଡ଼ି ଟାଣିଲା । ପୁଅଟିଏ ହବାପାଇଁ ତା'ର ମନେ ପଡୁଥିବା ସବୁ ଦେବଦେବୀଙ୍କୁ ଗୁହାରି କଲା । ପଣା ସଂକ୍ରାନ୍ତି ବେଳକୁ ମା' ମଙ୍ଗଳା ପାଖରେ ବୋଦାବଳି ଦବାକୁ ମନାସିଲା । ପୁଅ ହେଲେ ଠାକୁର ଧରା ଯାଇ ଜଗନ୍ନାଥ ଦର୍ଶନ କରିବ ବୋଲି ଚିନ୍ତା କଲା । ମନେ ମନେ ବିକ୍ଷିପ୍ତ ଭାବରେ ଖିଆଲ ଥିବା ହନୁମାନ ଚାଳିଶା ଜପିଲା । ଅଧ ରାତିକୁ ଅପରେସନ୍ ଥିଏଟରୁ କୁଆଁ କୁଆଁ ଶବ୍ଦ ଶୁଭିବାରୁ ସେ ଆଶ୍ୱସ୍ତ ହେଲା ।

କିଛି ସମୟ ପରେ, ନର୍ସଟିଏ ବାହାରି ଆସିଲା ଅପରେସନ୍ ଥିଏଟରରୁ ଓ 'ତମର ଝିଅଟେ ହୋଇଚି' ବୋଲି କହିଲା । ଝିଅ ହବା କଥା ଶୁଣି ସନାତନର ଛାତି ପୁଣି ଚାଁ ହେଲା ଓ ତା' ତଣ୍ଟି ଶୁଖିଗଲା । ମାଣିକ କେମିତି ଅଛି ପଚାରିବାକୁ ବି ସେ ପାସୋରି ଦେଲା । ଖାଲି ପୁଲକଦା'ର ମୁରୁକୁନ୍ଦିଆ ହସ ବିକଟାଳ ହସରେ ରୂପାନ୍ତରିତ ହୋଇ ଚାରିଆଡୁ ତା'ର ପଥରୋଧ କଲା ଯେମିତି !

ମାଣିକ ସୁସ୍ଥ ହବାକୁ ଲାଗିଗଲା ସପ୍ତାହେ । ତା'ପରେ ମା' ଓ ଝିଅାଙ୍କୁ ଧରି ସନାତନ ଫେରିଆସିଲା ବସାଘରକୁ । ପୁଣି କାମରେ ଜଏନ୍ କଲା । ଦିନରାତି ଖଟିଲା । ମାଣିକ ପାଇଁ ଔଷଧ ଓ ଝିଅ ପାଇଁ ବେବିଫୁଡ୍ କିଣିଲା । ଗାଁକୁ ଚିଠିଦେଲା । ସାଙ୍ଗସାଥୀମାନଙ୍କ ସହ ହସଖୁସି ହେଲା । ୟୁନିୟନ୍‌ରେ ମେମ୍ବର ହେଲା । ଶ୍ରମିକ ଶୋଭାଯାତ୍ରାରେ ଲାଲ ଝଣ୍ଡା ଧରିଲା ।

ମାଣିକକୁ କିନ୍ତୁ ସତକଥା କହିବାପାଇଁ ତା'ର ସାହସ ନ ଥିଲା । 'ଏତେ ଟଙ୍କା କୋଉଠୁ କରଜ କଲ, କିମିତି ଶୁଝିବ' ବୋଲି ମାଣିକ ପଚାରିଦେଲେ ସନାତନ ହଡ଼ବଡ଼େଇଯାଏ । କଥା ବାଆଁରେଇ କହେ, 'ପ୍ରତିଥର ହପ୍ତା ପାଇଲାବେଳକୁ ଶହେଟଙ୍କା ମହାଜନକୁ ଦଉଚି । ଲୋକଟା ଦୟାଳୁ । କଳନ୍ତର କମ୍ । ଦି'ବର୍ଷରେ ଶୁଝିଯିବ ଯେ ।' ଘରକାମ ଓ ଝିଅର ଯତ୍ନ ନବାରେ ବ୍ୟସ୍ତ ରହି ମାଣିକ ଆଉ କଥା ଦୋହରାଏ ନାହିଁ ।

ଜନ୍ମ ହେଲା ବେଳେ ଝିଅ ମୁଣ୍ଡରେ କମ୍ ବାଳ ଥିବାରୁ ମାଣିକ ତାକୁ ନାଣ୍ଡୀ ବୋଲି ଡାକୁଥିଲା । ନାଣ୍ଡୀ ଡାକ ବି ସନାତନର ଅଭ୍ୟାସରେ ପଡ଼ିଗଲା । ସେ କାମରୁ ଫେରି ନାଣ୍ଡୀକୁ କୋଳରେ ଧରି ଗେଲ କରେ, ବୋକଦିଏ । ନାଣ୍ଡୀ ଯେତେ ବଢୁଥାଏ, ସେତେସେତେ ଗୋରା ଫିଟୁଥାଏ ତା' ମା' ପରି । ନାଣ୍ଡୀକୁ କୋଳରେ ଧରିଥିବା ବେଳେ ସନାତନର କେବେକେବେ ମନେ ପଡ଼ିଯାଏ ପୁଲକଦା' କଥା । ଏଡ଼େ ସୁନ୍ଦର ଗୁଲୁଗୁଲିଆ ଝିଅଟାକୁ କେମିତି ଟେକିଦବ କଂସେଇ ହାତକୁ ବୋଲି ଭାବିବାକ୍ଷଣି ସନାତନର ଛାତିରେ ହୁତ୍‌ହୁତ୍ ହୋଇ ନିଆଁ ଜଳେ । ସିଏ କାନ୍ଦକାନ୍ଦ ହେଇଯାଏ ଅଥଚ ପ୍ରକାଶ୍ୟରେ କାନ୍ଦିପାରେନି ।

ମିଲ୍ ଆଡ଼କୁ କେତେଥର ଆସି ବୁଲିଗଲାଣି ପୁଲକଦା' । ମଝିରେ ଥରେ ଆସି କହିଗଲା, 'ଝିଅ ପାଇଁ ପଇସା ଖର୍ଚ୍ଚ କରିବାକୁ ଡରିବୁନି । ଏତେ ଛୋଟ ପିଲାଟାକୁ ମୁଁ ସମ୍ଭାଳିବି କେମିତି ? ତୁ ଚାରି ପାଞ୍ଚ ବର୍ଷ ପାଳିଥା' । ମୁଁ ଖର୍ଚ୍ଚଦେବି । ପୁଲକଦା'ର କଥା ଶୁଣି ସନାତନର କଲିଜା ଚିରି ହୋଇଗଲା । ସେ କିନ୍ତୁ ପାଟି ଖୋଲିଲା ନାହିଁ । ଖାଲି ମୁଣ୍ଡ ଟୁଙ୍ଗାରିଲା ।

ନାଣ୍ଟୀ ଯେତେବେଳେ ଜହ୍ନକୁ ହାତଠାରି ଶିଖିଲା, ମୁଣ୍ଡରେ ରିବନ୍ ବାନ୍ଧିଲା, ମାଣିକଠାରୁ ଗପ ଶୁଣିବାକୁ ଅଝଟ କଲା, ସନାତନର ମୁଣ୍ଡ ଉପରେ ସାରା ପୃଥିବୀଟା ଲଦି ହୋଇପଡ଼ିଲା ଯେମିତି ! ସେ ଅନ୍ୟମନସ୍କ ରହିଲା । ବିନା କାରଣରେ ରାଗିଲା । ୟୁନିୟନ୍‌ରେ ଗଣ୍ଡଗୋଳ କଲା । ମ୍ୟାନେଜର୍‌କୁ ଗାଳିଦେଲା । ସାଙ୍ଗସାଥୀଙ୍କ ସହ ଝଗଡ଼ା କଲା । ଗାଁକୁ ଚିଠିଦେବା ପାଇଁ ଭୁଲିଗଲା । ପୁଲକଦା'କୁ ଲୁଚିଲା ।

କେତେ ଲୁଚିବ ଆଉ ପୁଲକଦା'କୁ ? କୋଉଠି ଲୁଚିବ ? ପୁଲକଦା'ର ଆଖି ତ ବିଛୁରି ହୋଇ ପଡ଼ିଥାଏ ମହାନଗରୀ ସାରା ।

ମିଲ୍‌ରୁ ଡ୍ୟୁଟିସାରି ସେଦିନ ସନାତନ ଫେରୁଥିଲା ସଂଜବେଳେ । ତା'ପଛରେ କିଏ ଜଣେ ଚାଲୁଥିବାର ସେ ଅନୁଭବ କଲା । ପଛକୁ ନ ଚାହିଁ ସେ ଜୋର୍‌ରେ ପାହୁଲ ପକେଇଲା । 'ସନାତନ୍' ବୋଲି ଗମ୍ଭୀର ଆବାଜ ଶୁଭିଲା ପଛରୁ । ସନାତନ ଫେରି ଚାହିଁଲା । ଫିନ୍ ଫିନ୍ ପଞ୍ଜାବି ପିନ୍ଧା ପୁଲକଦା' ତାକୁ ହାତ ଠାରୁଛି । ସନାତନ ଅଟକିଗଲା । ପୁଲକଦା'ର ଇଙ୍ଗିତରେ ସେ ଟାଣି ହୋଇଗଲା ଗୋଟେ ଅନ୍ଧାରିଆ ସ୍ଥାନକୁ ।

ପୁଲକଦା' କୌଣସି ଉପକ୍ରମଣିକା ନ ଦେଇ କହିଲା, 'ସନାତନ, ଝିଅକୁ ଏବେ ମୋତେ ଦେଇଦେ । ତା'ର ନାଚିବା ବୟସ ହୋଇଗଲାଣି ।' ଖଡ଼ି ଚୋରି କରି ହେଡ୍‌ପଣ୍ଡିତଙ୍କ ପାଖରେ ଧରାପଡ଼ିଯାଇଥିବା ଦ୍ୱିତୀୟ ଶ୍ରେଣୀର ଛାତ୍ରଟେ ପରି ଭେଁ କରି କାନ୍ଦିଉଠିଲା ସନାତନ । ପୁଲକଦା' ନିଜର ଅନିଚ୍ଛାସତ୍ତ୍ୱେ ସନାତନ ପିଠିରେ ଗୁରୁସୁଲଭ ହାତ ଥାପୁଡ଼େଇ କହିଲା, 'ଚିନ୍ତା କରନା ସନାତନ, ପୁଣି ଚାହିଁଲେ ମାସ କେତେଟାରେ ତୋ ସ୍ତ୍ରୀ କୋଳକୁ ପିଲାଟେ ଆସିବ ।' ସନାତନ ଭାବିଲା ପୁଲକଦା' କବଳରୁ ତ୍ରାହି ନାହିଁ । ଜଳ, ସ୍ଥଳ, ବନ, ଗିରି, ଆକାଶ– ଯୋଉଠି ଲୁଚିଲେ ବି ପୁଲକଦା' ତାକୁ ଖୋଜିଆଣିବ । ମହାନଗରୀର ଅଧେ ଗୁଣ୍ଡା ତା'ର; ପୋଲିସ୍, ପ୍ରଶାସନକୁ ସେ ତ ଗେଲ କରେ, ପୋଷା କୁକୁର ପରି ।

ସନାତନ ବଡ଼ କାକୁତିଭରା କଣ୍ଠରେ କହିଲା, ''ପୁଲକଦା, ମୋ ସ୍ତ୍ରୀକୁ ଏକଥା କହିନି ଏପର୍ଯ୍ୟନ୍ତ । ସେ ଜାଣିଲେ ପାଗଳୀ ହୋଇଯିବ, ନ ହେଲେ ମଉରା ଖାଇଦେବ । ବୁଦ୍ଧି ବତା ପୁଲକଦା' ମୁଁ କରିବି କ'ଣ ?'' ସନାତନ ଚିହିଁକି ପଡ଼ିଲା ପରି ଗୋଟେ ଜୋର୍ ହସ ହସି ପୁଲକଦା' କହିଲା, ''ବେକୁବ୍, ମାଇକିନାଟାକୁ ଠକିପାରିବୁ ନାହିଁ ? କି ମର୍ଦ ହେଇଚୁ ବେ ।'' ସନାତନ ବୁଦ୍ଧୁଙ୍କ ପରି ପୁଲକଦା' ମୁହଁକୁ ଚାହିଁ ରହିଲା ।

ପୁଲକଦା' ସିନେମା କାଇଦାରେ ଦୁଇ ତିନିଥର ପାହୁଣ୍ଡ ବୁଲେଇ କହିଲା, 'କାଲିଠୁ ରେସ୍‌କୋର୍ସ ପଡ଼ିଆରେ ମେଳା ହେଉଚି । ଝିଅକୁ ମେଳା ଦେଖେଇ ନବୁ । ମୁଁ ସେଇଠି ଅପେକ୍ଷା କରିଥିବି । ଫେରିଆସି ତା' ମା'କୁ କହିବୁ ଝିଅ ହଜିଗଲା'' କହିସାରି ପୁଣି ହସିଲା ପୁଲକଦା' ଓ ଅନ୍ଧାର ଭିତରେ ଆସ୍ତେ ଆସ୍ତେ ହଜିଗଲା ।

ସନାତନ ବି ହଜିଯାଇଥିଲା ନିଜ ଭିତରେ ।

କେତେବେଳେ ଓ କେମିତି ଆସି ତା' ବସାଘର ପାଖରେ ପହଞ୍ଚିଛି, ସନାତନକୁ ଜଣା ନ ଥିଲା । ଘର ସାମ୍ନାରେ ଅନ୍ଧାର ଭିତରୁ କବାଟ ବନ୍ଦ । ଏନାତନ ଦୁଆର ଆଗରେ ଠିଆହେଲା । ଘର ଭିତରେ ମାଣିକର ପାଟି ଶୁଭୁଚି । ସେ କାନ ପାରିଲା । ନାଣ୍ଡୀକି ଗପ କହୁଥିଲା ମାଣିକ :

'ମୁଣ୍ଡରେ ପଦ୍ମଫୁଲ ଫୁଟେଇ କୁମ୍ଭୀର ବୁଡ଼ି ରହିଥିଲା ଅଳ୍ପ ପାଣିରେ । ଫୁଲକୁ ଦେଖେଇ ଝିଅଟିର ବାପା ଝିଅକୁ କହିଲା, କେଡ଼େ ସୁନ୍ଦର ଫୁଲ ଫୁଟିଚିଲୋ ଝିଅ, ତୋଳିଆଣ । ସେଇଠୁ ଝିଅଟି ଫୁଲ ତୋଳିବାକୁ ଗଲା । ଝିଅଟିର ଗୋଡ଼ ଦି'ଟା ଯେତେବେଳେ କୁମ୍ଭୀର ପିଠିରେ ପଡ଼ିଚି, କୁମ୍ଭୀର ଧୀରେ ଧୀରେ ଚାଲିଲା ନଈ ଭିତରକୁ । ଝିଅଟି ଆଣ୍ଠୁଏ ପାଣିରେ ହୋଇ କହିଲା, 'ଆଣ୍ଠୁଏ ପାଣିରେ ହେଲି ହେ ବାପା, ପଦ୍ମ ଘୁଞ୍ଚୁ ଘୁଞ୍ଚୁ ଯାଉଚି ।' ନଈ କଡ଼ରେ ଠିଆହୋଇ ତା' ବାପା କହିଲା 'ମୁଁ କିସ କରିବି ଝିଅଲୋ, ତୋ'ମା' ତ ନାରଙ୍ଗୀ ଖାଇଚି ।'

''ହୁଁ...ତା' ପରେ...'' ନାଣ୍ଡୀ ପଚାରିଲା ।

ମାଣିକ କହିଚାଲିଲା, କୁମ୍ଭୀର ଆହୁରି ଭିତରକୁ ଚାଲିଲା । ଝିଅଟି ଅଣ୍ଟାଏ ପାଣିରେ ହେବାରୁ କହିଲା, 'ଅଣ୍ଟାଏ ପାଣିରେ ହେଲି ହେ ବାପା, ପଦ୍ମ ଘୁଞ୍ଚୁ ଘୁଞ୍ଚୁ ଯାଉଚି', ତା' ବାପା ସେମିତି କହୁଥାଏ, 'ମୁଁ କିସ କରିବି ଝିଅଲୋ, ତୋ' ମା'ତ ନାରଙ୍ଗୀ ଖାଇଚି ।'

'ହଁ.. ତା'ପରେ, ନାଣ୍ଡୀର ସ୍ୱର କ୍ରମେ କ୍ଷୀଣ ହୋଇଆସୁଥିଲା ।

ମାଣିକ ପୁଣି ଗପିଲା– କୁମ୍ଭୀର ଆହୁରି ଆଗକୁ ଚାଲିଲା । ପାଖାପାଖି ମଝିନଈ । ଝିଅଟି ଛାତିଏ ପାଣିରେ ହେଲା । ଖୁବ୍ ଜୋରରେ କାନ୍ଦି କାନ୍ଦି କହିଲା, 'ଛାତିଏ ପାଣିରେ ହେଲି ହେ ବାପା, ପଦ୍ମ ଘୁଞ୍ଚୁ ଘୁଞ୍ଚୁ ଯାଉଚି ।' ତା' ବାପା ତ ନଈ କଡ଼ରେ ଠିଆ ହୋଇଥାଏ । ତା' ଆଖିରୁ ବି ଲୁହ ଝରଝର ବହିଯାଉଥାଏ । କିନ୍ତୁ ସେ ତ ନିରୁପାୟ । ତେଣୁ ସେମିତି କହୁଥାଏ, 'ମୁଁ କିସ କରିବି ଝିଅ ଲୋ, ତୋ' ମା'ତ ନାରଙ୍ଗୀ ଖାଇଚି ।'

ମାଣିକ କ୍ଷଣେ ଚୁପ୍ ରହିଲା ।

'ହଁ.. ତା'ପରେ' ବୋଲି ଆଉ ଶୁଭିଲା ନାହିଁ । ନାଣ୍ଡୀ ବୋଧେ ଶୋଇପଡ଼ିଲା ।



# ସେତୁ

'ଚିତ୍ରାସେତୁ' ଉଦ୍‌ଘାଟନ କରି ରାଜଧାନୀକୁ ଫେରିଯାଇଥିଲେ ବିଭାଗୀୟ ମନ୍ତ୍ରୀ ସନ୍ଧ୍ୟାର ଅନେକ ପୂର୍ବରୁ । ମୁଣ୍ଡବ୍ୟଥା ଅନୁଭବ କରୁଥିବାରୁ ବିଧାୟକ କନ୍ଦର୍ପ ଦାସ ସଭାସ୍ଥଳୀରୁ ହିଁ ମନ୍ତ୍ରୀଙ୍କୁ ମେଲାଣି ଦେଇଥିଲେ ।

ସନ୍ଧ୍ୟାବେଳକୁ ସବୁଦିନ ପରି ବିଜନ ମନେହେଲା ଚିତ୍ରାତଟ । ସଭାପାଇଁ ଆସିଥିବା ଓ ଅଣାଯାଇଥିବା ଲୋକେ ଦିନ ଥାଉଁଥାଉଁ ନିଜ ନିଜ ଗାଁକୁ ବାହୁଡ଼ି ଯାଇଥିଲେ । ରାଜନୈତିକ କର୍ମୀ, ଠିକାଦାର ଓ ଡିଲର୍ ଆଦି ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତିବିଶେଷଙ୍କୁ ସକାଳକୁ ଆସିବାପାଇଁ କହି ତଟବର୍ତ୍ତୀ ସେଚ ବିଭାଗ ଡାକବଙ୍ଗଳା ଭିତରକୁ ପଶିଗଲେ କନ୍ଦର୍ପ ଦାସ ।

ଡାକବଙ୍ଗଳାର ଦୁଇପାର୍ଶ୍ୱକୁ ବକ୍ରରେଖାଟିଏ ପରି ଘେରିଥିଲା ଚିତ୍ରାନଦୀ । ଚକ୍ରବାଳର ଉହାଡ଼ ଟପି ନ ଥିବା ଜହ୍ନର ମହଳ ଦ୍ୟୁତିରେ ଝାପ୍‌ସା ଆଲୋକିତ ଗହଳ ତୀରତରୁରେ ପ୍ରତିବିମ୍ବିତ ନଈ ମନେହେଉଥିଲା କୋଉ ନିପୁଣ ଶିଳ୍ପୀର ମଡର୍ଣ୍ଣ ଆର୍ଟଟିଏ ପରି ।

ଗାର୍ଡ଼ନ୍ ଚେୟାର୍‌ରେ ନଈମୁହାଁ ହୋଇ ବସିଲେ କନ୍ଦର୍ପ ଦାସ । ସାଙ୍ଗରେ ଥିବା ଅତ୍ୟନ୍ତ ଅନୁଗତ ଜଣେ ଦୁଇଜଣ କର୍ମୀଙ୍କୁ, କିଛି ସମୟ ଲାଗି ତାଙ୍କୁ ଏକା ଛାଡ଼ିଦେବାପାଇଁ ସେ ଇଙ୍ଗିତ ଦେଲେ । ଅନେକ ଦିନ ପରେ ଏମିତି ଗୋଟେ ଏକାନ୍ତ ନିରୋଳା ପରିବେଶ ତାଙ୍କୁ ଖୁବ୍ ଆପଣାର ଲାଗୁଥିଲା ଓ ସେ ଆବାଲ୍ୟ ଦେଖିଆସୁଥିବା ଚିତ୍ରାନଈକୁ ନୂଆକରି ଦେଖୁଥିଲେ ଯେମିତି !

ଏଇ ଚିତ୍ରାନଈ ତ ତାଙ୍କ ରାଜନୈତିକ ଅଭ୍ୟୁଦୟର ହେତୁ, ତାଙ୍କର ପରମାରାଧ୍ୟା ପତିତପାବନୀ ଗଙ୍ଗା । ଏଇ ଚିତ୍ରା ନଈ ଉପରେ ସେତୁ ନିର୍ମାଣକୁ ପୁଞ୍ଜି କରି ସେ ଗୋଟେ ଅନାମଧେୟ ଗ୍ରାମ୍ୟ ମାଇନର୍ ସ୍କୁଲର ଦ୍ୱାର ଡେଇଁ ରାଜ୍ୟ ବିଧାନସଭାର ଦ୍ୱାର ମାଡ଼ିପାରିଚନ୍ତି । ଏଇ ସେତୁ ହିଁ ଗୋଟେ ଅଦୃଷ୍ଟ ଐଶ୍ୱରିକ ସେତୁ ହୋଇ ତାଙ୍କୁ ବିଜୟର ନଈ ଆରପାରିରେ ପହଞ୍ଚାଇଛି ଅନେକ ଥର । କିନ୍ତୁ ସତକୁ ସତ ଗୋଟେ ସ୍ଥାୟୀ ସେତୁ ନିର୍ମିତ ହୋଇଗଲା ପରେ ତାଙ୍କ ପାଦତଳର ସେତୁଟା କେମିତି ଦୋହଲିଯାଉଥିଲା ଅବା ! ମା' ପରି ଆପଣାର ଚିତ୍ରାନଈ ଅପରିଚିତା ନାରୀଟିଏ ପରି ଆଡ଼ ହୋଇଯାଉଥିଲା ଯେମିତି ! ଗୋଟେ ଅନାଗତ ଆତଙ୍କରେ ଶିହରିଉଠିଲେ କନ୍ଦର୍ପ ଦାସ ।

ସେ ନଈକୁ ପଛକରି ବସିଲେ । ଜହ୍ନକୁ ଚାହିଁବାପାଇଁ ବି ତାଙ୍କର ସାହସ ହେଲାନି । ସେ ଦୁଇହାତକୁ ଛାତିରେ ଛନ୍ଦି ଆଖି ବୁଜିଦେଲେ, କୋଡ଼ିଏ ବର୍ଷ ତଳର ନିରୀହ ଡରୁଆ ମାଷ୍ଟରଟି ପରି ।

ମାଷ୍ଟର ଥିଲାବେଳେ ସତରେ ସେ ଥିଲେ ଭାରି ଡରକୁଳା । ତାଙ୍କର ଭାରି ଡର ଥିଲା ସଭାସମିତିକୁ । ତା'ଠୁଁ ବଳି ସେ ଡରୁଥିଲେ ହାକିମହୁକୁମାଙ୍କୁ, ଏପରିକି ତାଙ୍କ ସ୍କୁଲ୍ ପରିଚାଳନା କମିଟିର ସେକ୍ରେଟାରୀଙ୍କୁ । ସେତେବେଳେ ପରିଚାଳନା କମିଟିର ଯୋଉ ଅଖଣ୍ଡ କ୍ଷମତା । ମାଷ୍ଟରମାନେ ତ ଥିଲେ ସ୍କୁଲ ସେକ୍ରେଟାରୀଙ୍କ ବାରମାସିଆ ପରି । ସେକ୍ରେଟାରୀଙ୍କ ଦୟାରେ ଥିଲା ମାଷ୍ଟରଙ୍କ ବେତନ । କନ୍ଦର୍ପ ଦାସଙ୍କ ନିରୀହତାକୁ ଲକ୍ଷ୍ୟ କରି ହିଁ ତାଙ୍କୁ ଦିଆଯାଇଥିଲା ସ୍କୁଲ୍‌ର ହେଡ୍‌ମାଷ୍ଟର ପଦବୀ । ହାତବାରିସି ହବାର ସମସ୍ତ ଯୋଗ୍ୟତା ତାଙ୍କଠିଁ ରହୁଛି ବୋଲି ଅନୁଭବ କରିଥିଲେ ସ୍କୁଲ କମିଟିର ତଦାନୀନ୍ତନ ସେକ୍ରେଟାରୀ ତଥା ସିନିୟର୍ ସରପଞ୍ଚ ମାର୍କଣ୍ଡ ମିଶ୍ର । କିନ୍ତୁ ପରବର୍ତ୍ତୀ ସମୟରେ ସେହି ମାର୍କଣ୍ଡ ମିଶ୍ରଙ୍କ ସହ ତାଙ୍କର କଳହଟା ଏତେ ତୀବ୍ର ହବ, ଏକଥା କେହି ଭୁଲ୍‌ରେ ବି ଚିନ୍ତାକରି ନ ଥିଲେ ।

ବଚସାଟି ଆରମ୍ଭ ହେଇଥିଲା ମାର୍କଣ୍ଡ ମିଶ୍ରଙ୍କ ପୁତୁରାକୁ କେନ୍ଦ୍ରକରି । ସେକ୍ରେଟାରୀଙ୍କ ପୁତୁରା ବୃତ୍ତି ପରୀକ୍ଷାରୁ ବଞ୍ଚିତ ହବ, ଏହା ଥିଲା ମାର୍କଣ୍ଡ ମିଶ୍ରଙ୍କ ପାଇଁ ଇଜ୍ଜତ୍‌କା ସବାଲ୍ । ସେ ସ୍କୁଲର ସବୁ ଶିକ୍ଷକଙ୍କ ସାମନାରେ କନ୍ଦର୍ପ ଦାସଙ୍କୁ ମନଇଚ୍ଛା ଗାଳିଗୁଲଜ କଲେ । ତାଙ୍କ ପୁତୁରା ବୃତ୍ତି ପରୀକ୍ଷା ନ ଦେଲେ କନ୍ଦର୍ପ ଦାସଙ୍କ ଚାକିରି ଛୁଟି ବୋଲି ସେ ଧମକ ଦେଲେ । କନ୍ଦର୍ପ ଦାସ ପ୍ରଥମଥରପାଇଁ ମାର୍କଣ୍ଡ ମିଶ୍ରଙ୍କ ପରି ଜଣାଶୁଣା ମାନ୍ୟଗଣ୍ୟ ସମାଜସେବୀଙ୍କ ମୁହଁରେ ଜବାବ୍ ଦେଲେ ଓ ତାଙ୍କ ଆଦେଶକୁ ରୋକ୍‌ଠୋକ୍ ଅମାନ୍ୟ କଲେ । ଫଳରେ ମାସକ ଭିତରେ ତାଙ୍କୁ ଚାକିରି ହରେଇବାକୁ ପଡ଼ିଥିଲା ।

ଚାକିରିକୁ ବେଖାତିର ଓ ମାର୍କଣ୍ଡ ମିଶ୍ରଙ୍କୁ ଚ୍ୟାଲେଞ୍ଜ କରିବା ପରି ସତ୍‌ସାହସ ପାଇଁ ସେ ରାତାରାତି ହୀରୋ ବନିଯାଇଥିଲେ । ସ୍ୱାଧୀନଚେତା ଯୁବକମାନଙ୍କପାଇଁ ଚାକିରି ତୁଚ୍ଛା ବନ୍ଧନ ବୋଲି କହି ମାର୍କଣ୍ଡ ମିଶ୍ରଙ୍କ ଶତ୍ରୁମାନେ ତାଙ୍କୁ ପରୋକ୍ଷରେ ଉସ୍‌କାଇଥିଲେ । ସତକୁ ସତ ଚାକିରି ପ୍ରତି ତାଙ୍କର ମୋହଭଙ୍ଗ ଘଟିଲା ଓ ସେ ସରପଞ୍ଚ ହବାଲାଗି କ୍ଷେତ୍ର ପ୍ରସ୍ତୁତିରେ ଲାଗିପଡ଼ିଲେ ।

ଗ୍ରାମାଞ୍ଚଳରେ ଆଲୋକବର୍ତ୍ତିକା ସଦୃଶ ସେ ଏକ ମାଇନର ସ୍କୁଲ୍ ପ୍ରତିଷ୍ଠା କରିଛନ୍ତି ଓ ପୁଣିଥରେ ନିର୍ବାଚିତ ହେଲେ ହାଇସ୍କୁଲଟିଏ ଗଢ଼ିବେ ବୋଲି ମାର୍କଣ୍ଡ ମିଶ୍ରେ କହିବୁଲୁଥିଲାବେଳେ, ଚିତ୍ରାନଦୀ ଉପରେ ସେତୁ ନିର୍ମାଣ କରିବା ଥିଲା କନ୍ଦର୍ପ ଦାସଙ୍କ ଏକସୂତ୍ରୀ ନିର୍ବାଚନୀ ଇସ୍ତାହାର । ସ୍କୁଲ ବନାମ ସେତୁ ବିତର୍କଟି ଗ୍ରାମପଞ୍ଚାୟତର ଭୋଟରମାନଙ୍କ ମାନସ ମନ୍ଥନ କରିଥିଲା ସେଥର ।

କନ୍ଦର୍ପ ଦାସ ଶତାଧିକ ଭୋଟରେ ପରାଜିତ କରିଥିଲେ ମାର୍କଣ୍ଡ ମିଶ୍ରଙ୍କୁ । ସେତୁ ତିଆରି କରିବାପାଇଁ ପ୍ରତିଶ୍ରୁତି ଦେବା ସିନା ସହଜ, କିନ୍ତୁ ସେତୁଟିଏ ତିଆରି କରିବା ଯେ କେତେ କଷ୍ଟ, ସରପଞ୍ଚ ହେବା ପରେ ଯାଇ ଉପଲବ୍ଧି କରିଥିଲେ କନ୍ଦର୍ପ ଦାସ । କିନ୍ତୁ ଏଇ ସେତୁପାଇଁ ହିଁ ଗ୍ରାମପଞ୍ଚାୟତର ଅଧିକାଂଶ ଲୋକେ ତାଙ୍କ ନିକଟକୁ ଆସୁଥିଲେ ଓ ତାଙ୍କର ହୋଇ ରହିଥିଲେ । ଏ କଥାଟି ଭଲଭାବରେ ବୁଝିଲାପରେ କନ୍ଦର୍ପ ଦାସ ସେତୁ ନିର୍ମାଣକୁ ଏକ ସବୁଦିନିଆ ଇସ୍ୟୁ କରି ରଖିବାପାଇଁ ଚାହିଲେ ଓ ନିର୍ମାଣ କାର୍ଯ୍ୟକୁ ଗଡ଼େଇବାକୁ ଲାଗିଲେ । ତେବେ ତାଙ୍କ କାର୍ଯ୍ୟକାଳ ଶେଷ ହବାର ଛ'ମାସ ପୂର୍ବରୁ ସେ ଏକ ବାଉଁଶ ପୋଲ ତିଆରି କଲେ ଚିତ୍ରାନଦୀ ଉପରେ ।

ସାମାନ୍ୟ ବାଉଁଶ ପୋଲଟିଏ ପାଇଁ ବି.ଡି.ଓ., ଚେୟାରମ୍ୟାନ୍‌ଙ୍କ ଘରକୁ ତାଙ୍କର ଯୋଉ ଘନଘନ ଦୌଡ଼, ସେ କଥା ଆଦୌ ପାସୋରିପାରୁ ନ ଥିଲେ କନ୍ଦର୍ପ ଦାସ । ତା'ପର ଥର ତେଣୁ ଚେୟାର୍‌ମ୍ୟାନ୍ ହବାକୁ ତାଙ୍କ ମନ ବଳିଲା । ଚିତ୍ରାନଦୀର ବାଉଁଶ ପୋଲକୁ କାଠପୋଲରେ ରୂପାନ୍ତରିତ କରିବାର ପ୍ରତିଶ୍ରୁତି ଦେଇ ସେ ହେଲେ ପଞ୍ଚାୟତ ସମିତିର ମାନ୍ୟବର ଚେୟାର୍‌ମ୍ୟାନ ।

ଅବଶ୍ୟ ତାଙ୍କରି ଉଦ୍ୟମରେ ହିଁ ଚିତ୍ରାନଦୀ ଉପରେ କାଠପୋଲଟିଏ ନିର୍ମିତ ହେଲା । ସାଇକେଲ୍, ରିକ୍ସା, ଶଗଡ଼ ଏପରିକି ଜିପ୍, କାର୍ ମଧ୍ୟ ପୋଲ ଯୋଗୁଁ ବ୍ଲକ୍‌ର ଜନବହୁଳ ପୂର୍ବାଞ୍ଚଳକୁ ସୁରୁଖୁରୁରେ ଯାତାୟାତ କଲା । ଚେୟାରମ୍ୟାନ୍ ଭାବରେ ଦ୍ରୁତ ଆର୍ଥିକ ଅଗ୍ରଗତିର ଅଧିକାରୀ ହୋଇଥିଲେ ହେଁ କେବଳ ପୋଲଟି ପାଇଁ ହିଁ ଜନପ୍ରିୟ ନେତା ହିସାବରେ କନ୍ଦର୍ପ ଦାସଙ୍କ ଖ୍ୟାତି ଚନ୍ଦ୍ରାଲୋକ ପରି ଦିଗ୍‌ଦିଗନ୍ତକୁ ଉଦ୍‌ଭାସିତ କଲା ।

ଏଥର ଏମ୍.ଏଲ୍.ଏ. ହବା କଥା ସେ ଚିନ୍ତାକଲେ ।

ତାଙ୍କ ନିର୍ବାଚନମଣ୍ଡଳୀର ଷାଠିଏ ପ୍ରତିଶତ ଲୋକ ଥିଲେ ପୂର୍ବାଞ୍ଚଳ ଅଧିବାସୀ । ସେଇ ପୂର୍ବାଞ୍ଚଳ ଅଧିବାସୀମାନଙ୍କର ତ୍ରାଣକର୍ତ୍ତା ହୋଇଥିବାରୁ ସେମାନଙ୍କର ନିଃସର୍ତ୍ତ ସମର୍ଥନ ପାଇବେ ବୋଲି ସେ ନିଶ୍ଚିତ ଥିଲେ । ବିଧାନସଭା ନିର୍ବାଚନରେ ପ୍ରାର୍ଥୀପତ୍ର ଦାଖଲ କରିବା ପରେ ଚିତ୍ରାନଦୀ ଉପରେ ପକ୍‌କା ପୋଲ ତିଆରି କରିବେ ବୋଲି ପୂର୍ବାଞ୍ଚଳର ଘରେ ଘରେ ସେ କହିବୁଲିଲେ । ପୋଲବିହୀନ ଚିତ୍ରାନଦୀ, ବାଉଁଶପୋଲ ଓ କାଠପୋଲ ଥିବା ଚିତ୍ରାନଦୀ ତଥା ଏକ ପକ୍‌କା ପୋଲ ସମ୍ବଳିତ ଚିତ୍ରାନଦୀର ଫଟୋ ଥାଇ ବୃହତ୍ ପୋଷ୍ଟରମାନ ସାରା ନିର୍ବାଚନ ମଣ୍ଡଳୀର କାନ୍ଥବାଡ଼ରେ ଲଗାଇଲେ ଓ ଏଇ ପକ୍‌କା ପୋଲ ସ୍ଲୋଗାନ୍‌ଟିକୁ ତେଜି ରଖିଥିଲେ ଶେଷ ପର୍ଯ୍ୟନ୍ତ ।

ବିଧାନସଭାକୁ ବହୁ ଭୋଟରେ ନିର୍ବାଚିତ ହେଲେ କନ୍ଦର୍ପ ଦାସ ।

ବିଧାନସଭା ଦ୍ୱାର ମାଡ଼ିବା ପରେ ପରେ କନ୍ଦର୍ପ ଦାସଙ୍କର ବୁଦ୍ଧି ବଢ଼ିଲା, ଅର୍ଥର ବି ଅଭାବ ରହିଲା ନାହିଁ । ରାଜଧାନୀର ହାୱା ତାଙ୍କୁ ମଦନିଶା ପରି କ୍ରମେ କ୍ରମେ ଘାରିଲା ଓ ସେ ନିର୍ବାଚନ ମଣ୍ଡଳୀ ଉପରେ ସେତେ ଧ୍ୟାନ ଦେଲେ ନାହିଁ । ପୋଲ ଇସ୍ୟୁଟିକୁ ଉଜ୍ଜୀବିତ କରି ରଖିପାରିଲେ ଭୋଟ ପାଇବାରେ ଅସୁବିଧା ହବ ନାହିଁ ମନେକରି ସେ ଅଧିକ ପରିଶ୍ରମ କରିବାକୁ ଚାହିଲେ ନାହିଁ । କିନ୍ତୁ ମଝିରେ ମଝିରେ ନିର୍ବାଚନମଣ୍ଡଳୀରେ ସଭା କରି ପୋଲ ନିର୍ମାଣ ସଂକ୍ରାନ୍ତୀୟ ତାଙ୍କର ପ୍ରଚେଷ୍ଟା ବିଷୟରେ ସେ ଲମ୍ବା ଲମ୍ବା ଭାଷଣ ଦେବା ଅବ୍ୟାହତ ରଖିଲେ । ବିଧାନସଭାରେ ମଧ୍ୟ ଚିତ୍ରାସେତୁ ସଂପର୍କରେ ପ୍ରଶ୍ନ ଉତ୍‌ଥାପିତ କଲେ ଓ ସେସବୁକୁ ଖବରକାଗଜ ଓ ଟି.ଭି.ରେ ଫ୍ଲାସ୍ କରିବାରେ ଲାଗିଲେ । ମଉଜ ମଜଲିସ୍‌ରେ ଏମିତି ଚାରି ବର୍ଷ ବିତିଗଲା ପରେ କନ୍ଦର୍ପ ଦାସଙ୍କର ଚେତା ପଶିଲା: ପୁଣି ନିର୍ବାଚନ, ପୁଣି ପରୀକ୍ଷା । ତେବେ ବିଭାଗୀୟ ମନ୍ତ୍ରୀଙ୍କୁ କୁହାବୋଲା କରି ସେ ଚିତ୍ରାସେତୁର ଶିଳାନ୍ୟାସ କରାଇଦେଲେ । ନିର୍ବାଚନ ପୂର୍ବରୁ କାଠପୋଲକୁ ଲାଗି ପ୍ରାୟ ଦଶ ପନ୍ଦରଟି ପିଲାର୍ ନିର୍ମାଣ ହୋଇଗଲା ମଧ୍ୟ ।

ଫଳରେ କନ୍ଦର୍ପ ଦାସ ପୁନଃନିର୍ବାଚିତ ହେଲେ ।

ଦ୍ୱିତୀୟ ଥର ଏମ୍.ଏଲ୍.ଏ. ହବାରୁ କନ୍ଦର୍ପ ଦାସଙ୍କ ଗୋଡ଼ ତଳେ ଲାଗୁ ନ ଥିଲା । ସେ ନିଜ ଭିତରେ ଉଚ୍ଛୁଳୁଥିଲେ ଓ ଧରାକୁ ସରା ମଣୁଥିଲେ । ଶହ ଶହ ସଭାସମିତିରେ ଭାଷଣ ଦେବାପରେ ସେ ଜଣେ ପକ୍‌କା କୁହାଳିଆ ବନିଯାଇଥିଲେ ଓ ମିଛ ଷ୍ଟାଟିଷ୍ଟିକ୍ସ ଦେଇ ବିଧାନସଭାରେ କିପରି ଚହଳ ପକାଇହୁଏ, ତାଙ୍କୁ ଭଲ ଭାବରେ ମାଲୁମ୍ ହୋଇଯାଇଥିଲା । କ'ଣ କହିଲେ ଖବରକାଗଜର ଆଗ ପୃଷ୍ଠାରେ ସ୍ଥାନ ମିଳେ, ଟି.ଭି.ରେ ମୁହଁ ଦିଶେ, ମୋଟା ଚାନ୍ଦା ମିଳେ– ସେସବୁ କଳାରେ ସେ ପୋଖତ ହୋଇଯାଇଥିଲେ । ଧମକ୍‌ଚମକ, ଟ୍ରାନ୍‌ସଫର, ପୋଷ୍ଟିଂ ଆଦି ଗୁଣରେ ବି ସେ କମ୍ ଧୁରନ୍ଧର ହୋଇ ନ ଥିଲେ ।

ବିଧାନସଭାର ପ୍ରଥମ ଅଧିବେଶନରେ ତେଣୁ ସେ, 'ରାଜ୍ୟରେ ଅସମ୍ପୂର୍ଣ୍ଣ ସେତୁ ସଂଖ୍ୟା କେତେ ଓ ସେଗୁଡ଼ିକ କେବେ ସମ୍ପୂର୍ଣ୍ଣ ହେବ' ପ୍ରଶ୍ନ କରି ବିଭାଗୀୟ ମନ୍ତ୍ରୀଙ୍କୁ ବଡ଼ ଅଡୁଆରେ ପକାଇଲେ । ନିର୍ବାଚିତ ହେବାକ୍ଷଣି ବିଧାୟକ ନିଜ ଅଞ୍ଚଳବାସୀଙ୍କ ହକ୍ ଦାବିକୁ ପ୍ରପର ଫୋରମ୍‌ରେ ଉପସ୍ଥାପିତ କରୁଛନ୍ତି ବୋଲି ଲୋକଙ୍କ ମନରେ ଏକ ଧାରଣା ସୃଷ୍ଟି କରିବା ଥିଲା ତାଙ୍କର ଅସଲ ଉଦ୍ଦେଶ୍ୟ । ହେଲେ ମାସ କେତୋଟି ଭିତରେ ଚିତ୍ରାସେତୁ ଯେ ସଂପୂର୍ଣ୍ଣ ହୋଇଯିବ, ଏକଥା ସେ ଭୁଲ୍‌ରେ କି ଭାବି ନ ଥିଲେ । ଚିତ୍ରାସେତୁର ନିର୍ମାଣ କାର୍ଯ୍ୟ ବିଳମ୍ବିତ ହେଉ– ଏହା ଥିଲା ତାଙ୍କର ଆନ୍ତରିକ ଇଚ୍ଛା । କାରଣ, ତା'ଦ୍ୱାରା ଆଉ ଥରେ ନିର୍ବାଚନ ରଣାଙ୍ଗନରେ ପାଦଦବାର ଅବ୍ୟବହିତ ପୂର୍ବରୁ ହିଁ ସେତୁ ନିର୍ମାଣ ଶେଷ ହୋଇଥାନ୍ତା ଓ ସେ ପୁନଶ୍ଚ ଭୋଟ ପାଇବାର ବାଟ ସୁଗମ ହୋଇପାରିଥାନ୍ତା । କିନ୍ତୁ ପରବର୍ତ୍ତୀ ନିର୍ବାଚନର ବହୁପୂର୍ବରୁ ସେତୁ ନିର୍ମାଣ

କାର୍ଯ୍ୟ ଶେଷ ହୋଇଥିବାରୁ ସେ ଜମା ଖୁସି ହୋଇପାରୁ ନ ଥିଲେ । ଚୋର ମା' ପରି ଆଖି ମଳି ହେଉଥିଲେ ଯାହା ।

କନ୍ଦର୍ପ ଦାସଙ୍କର ରାଜନୈତିକ କାଣ୍ଡଜ୍ଞାନ ଯଥେଷ୍ଟ ବଢ଼ିଯାଇଥିବାରୁ, 'ଲୋକହିତକର କାର୍ଯ୍ୟକଲେ ଭୋଟ ମିଳେ' ପରି ପାରମ୍ପରିକ ସିଦ୍ଧବାକ୍ୟଟି ଉପରେ ଆଦୌ ଭରସା ନ ଥିଲା ତାଙ୍କର । ସେ ଲୋକଚରିତ୍ର ଚିହ୍ନିବାରେ ପଟୁତା ହାସଲ କରିସାରିଥିଲେ । 'ଗୋଟେ ଇସ୍ୟୁକୁ ଲୋକଙ୍କ ଆଗରେ ଝୁଲେଇ ରଖିଲେ ବା ସେମାନଙ୍କ ଦେହରେ ଡାହାଣୀ ହୋଇ ଲାଗି ପୁଣି ଗୁଣିଆ ହୋଇ ଝାଡ଼ିଲେ ହିଁ ଭୋଟ ମିଳେ'– ଏହାକୁ ସେ ଜ୍ୟାମିତିକ ସ୍ୱତଃସିଦ୍ଧତାର ମାନ୍ୟତା ଦେଉଥିଲେ ।

ଅଗତ୍ୟା ଝୁଲନ୍ତ ଡେମୋକ୍ଲିସ୍‌ର ଖଣ୍ଡାଟି ନିଜ ମୁଣ୍ଡ ଉପରେ ଖସିପଡୁଥିବାର ସେ ଅନୁଭବ କରୁଥିଲେ ଓ ମନେମନେ କ୍ଷତାକ୍ତ ହେଉଥିଲେ ।

ନୂଆ କୌଣସି ଇସ୍ୟୁ ବି ତାଙ୍କ ଅକଲରେ ହଠାତ୍ ପଶୁ ନ ଥିଲା । ତାଙ୍କ ନିର୍ବାଚନମଣ୍ଡଳୀରେ ଛତୁ ଫୁଟିଲା ପରି ସ୍କୁଲ୍ କଲେଜ ମାନ ଗଢ଼ି ଉଠିଥିବାରୁ, ନୂଆ କଲେଜକୁ ଆଶ୍ରାକରି ନିର୍ବାଚନ ଜିଣିବା ଯେ ଅସମ୍ଭବ, ଏଥିରେ ସେ ନିଃସନ୍ଦେହ ଥିଲେ । ପୂର୍ବତନ ବିଧାୟକ ଅବଶ୍ୟ ବନ୍ୟାକୁ ଆଶ୍ରାକରି ଦୁଇ ଦୁଇଥର ନିର୍ବାଚନ ଜିଣିଥିଲେ । ସେତେବେଳେ ଚିତ୍ରାନଦୀରେ ପ୍ରତିବର୍ଷ ଆସୁଥିଲା ପ୍ରଳୟଙ୍କରୀ ବନ୍ୟା ଓ ସେହି ବନ୍ୟା ସମୟରେ ହିଁ ପୂର୍ବତନ ବିଧାୟକଙ୍କର ଦେଖା ମିଳୁଥିଲା ନିର୍ବାଚନମଣ୍ଡଳୀରେ । ସେ ଡଙ୍ଗାରେ ଚୁଡ଼ାଚାଉଳ ଧରି ଘରେ ଘରେ ପହଞ୍ଚୁଥିଲେ । ସରକାରୀ ରିଲିଫ୍ ସମୁଦ୍ରକୁ ଶଙ୍ଖେ ବୋଲି ଖବରକାଗଜରେ ବିବୃତି ଦେଉଥିଲେ । ପ୍ରଶାସନର ଅପାରଗତା ଓ ଅପରିଣାମଦର୍ଶିତା ବର୍ଣ୍ଣନା କରି ଶସ୍ତା ଲୋକପ୍ରିୟତା ହାସଲ କରୁଥିଲେ; ଖଦଡ଼ରେ ଆଖିପୋଛି ଭୋଟ ସଞ୍ଚୟରେ ଲାଗିପଡୁଥିଲେ । ହେଲେ ନଦୀର ଉପରମୁଣ୍ଡ ପଡ଼ୋଶୀ ଜିଲ୍ଲାର ଏକ ପାର୍ବତ୍ୟ ଅଞ୍ଚଳରେ ବନ୍ଧ ହେବା ପରଠୁଁ ପୂର୍ବତନ ବିଧାୟକ ଲୋକଲୋଚନର ବହୁଦୂରକୁ ଚାଲିଗଲେ ଯେ ଆଉ ଫେରିପାରିଲେ ନାହିଁ ।

ପୂର୍ବସୂରୀଙ୍କ ଦୁର୍ଭାଗ୍ୟ ନିଜଆଡ଼କୁ ସଂକ୍ରମିତ ହବା ଆଶଙ୍କାରେ ମ୍ରିୟମାଣ ହୋଇପଡୁଥିଲେ କନ୍ଦର୍ପ ଦାସ । ଇତିମଧ୍ୟରେ ଦୁଇଥର ଚା' ପିଇସାରିଥିବା ସତ୍ତ୍ୱେ ତାଙ୍କ ମୁଣ୍ଡ ବ୍ୟଥା ପ୍ରଶମିତ ହୋଇ ନ ଥିଲା । ସେ ଚୌକିଦାରକୁ ଡାକି ଆଉ କପେ ଚା' ପାଇଁ ବରାଦ କଲେ ଓ ଅଦୂରରେ ଧଳାହାତୀ ପରି ଶୋଇରହିଥିବା ଚିତ୍ରାସେତୁ ଆଡ଼େ ଦୃଷ୍ଟି ଲମ୍ବେଇଲେ ।

'ସେତୁଟି ହାତୀ ନୁହେଁ କି ହାତୀପରି ଦୀର୍ଘଜୀବୀ ନୁହେଁ' ଏମିତି ଏକ ଭାବନା ଖୁଦୁବୁଦୁ ହେଲା ତାଙ୍କ ଭିତରେ ଓ ନିଜ ଅଜାଣତରେ ସେ ହସି ପକାଇଲେ ।

''ଆଜିକାଲିର ଚାନ୍ଦାଭେଦା ଯୁଗରେ ସେତୁର ବା ଆୟୁଷ କେତେ ? ଛାତ ପଡୁପଡୁ ପରା କୋଠା ଭୁଶୁଡୁଚି ? ଯେ କୋଉ ବ୍ରିଟିଶ୍ ଅମଳ ହାବୁଡ଼ା ପୋଲ ହୋଇଚି ଯେ ଶହେ ବର୍ଷ ପରେ ବି ଚହଁକିବ ନାହିଁ । ଚିତ୍ରାସେତୁ ଭାଙ୍ଗୁଥିବ, ଗଢ଼ାହେଉଥିବ । ଲୋକ ଯଥାପୂର୍ବ ତାଙ୍କ ଦ୍ୱାରସ୍ଥ ହେଉଥିବେ । ଇସ୍ୟୁଟି ସେମିତି ଝୁଲି ରହିଥିବ, ଲାଷ୍ଟଲିଫ୍ ପରି, ଯେତେ ଝଡ଼ବର୍ଷା ହେଲେ ବି'' କନ୍ଦର୍ପ ଦାସ ନିଜକୁ ଏମିତି ଯେତେ ସାନ୍ତ୍ୱନା ଦେଉଥିଲେ ବି ତାଙ୍କ ମନ ଅବୁଝା ହେଉଥିଲା ।

ସେ ବିରକ୍ତ ହୋଇ ଉଠିଗଲେ ବଙ୍ଗଳା ଭିତରକୁ । ସେଦିନ ରାତିରେ ସେ ପାନୀୟର ମାତ୍ରା ବଢ଼େଇଦେଲେ । ପାହାନ୍ତାରେ କନ୍ଦର୍ପ ଦାସଙ୍କ ନିଦ ଚାଉଁ କରି ଭାଙ୍ଗିଗଲା । ସେ ଅତର୍ଚ୍ଛା କବାଟ ଖୋଲି ବାହାରକୁ ଆସିଲେ ଓ ଆଖି ମଳିମଳି ଚିତ୍ରାସେତୁକୁ ଚାହିଁଲେ । ସେତୁଟି ଏବେ ଧଳାଚଦର ଆବୃତ କଫିନ୍‌ଟେ ପରି ଦିଶୁଥିଲା । ସବୁ ଠିକ୍‌ଠାକ୍ ଥିବା ସତ୍ତ୍ୱେ ବୋମା ବିସ୍ଫୋରଣରେ ସଦ୍ୟ ବିଧ୍ୱସ୍ତ ସେତୁର ଦୃଶ୍ୟ ସେ କାହିଁକି ଦେଖିଲେ ସ୍ୱପ୍ନରେ (?) କନ୍ଦର୍ପ ଦାସ ହଠାତ୍ ଏସବୁର କୂଳକିନାରା ପାଇଲେ ନାହିଁ ।

ସେ ଗାର୍ଡ଼ନ୍ ଚେୟାର୍‌ରେ ନଇମୁହାଁ ହୋଇ ବସିଲେ; ଯେମିତି ସଂଜବେଳେ ବସିଥିଲେ, ଠିକ୍ ସେମିତି । କିଛି ସମୟ ପରେ ସେ ଉଠି ଠିଆହେଲେ ଓ କନ୍ଦର୍ପ ଦାସ ନ ହୋଇ ଆର୍କମିଡିସ୍ ହୋଇଥିଲେ ଚିତ୍କାରକରି ରାଜରାସ୍ତାରେ ଉଲଗ୍ନ ହୋଇ ଦୌଡ଼ିଥା'ନ୍ତେ ବୋଲି ତାଙ୍କର ମନେହେଲା । ସ୍ୱପ୍ନ ଭିତରୁ ଯେମିତି ସେ ଆବିଷ୍କାର କଲେ ଏକ ଅଭିନବ କୌଶଳ ।

'ଆଗାମୀ ନିର୍ବାଚନ ବେଳକୁ ତାଙ୍କର ଲୋକପ୍ରିୟତା ହ୍ରାସ ପାଇଲେ, ଚିତ୍ରାସେତୁକୁ ବୋମା ଫିଙ୍ଗି ଉଡ଼େଇ ଦିଆଯାଇପାରେ', ସେ ଚିନ୍ତାକଲେ । 'ପଶ୍ଚିମାଞ୍ଚଳ ଅଧିବାସୀମାନଙ୍କୁ ପୂର୍ବାଞ୍ଚଳ ଅଧିବାସୀମାନଙ୍କ ବିରୋଧରେ ଟିହାଇ ଦେଲେ କାମଟି ସୁରୁଖୁରୁରେ ହୋଇପାରିବ । ଆଉ ଚିତ୍ରାସେତୁ ଥରେ ଭାଙ୍ଗିଲେ ପୁଣି ଇସ୍ୟୁଟି ମଶାଣିରୁ ଉଠି ଠିଆହେବ । ସେ ବିଧ୍ୱସ୍ତ ଚିତ୍ରା ସେତୁ ଉପରେ ପାଦଥାପି ନିର୍ବାଚନ ନଦୀ ନିଶ୍ଚୟ ପାରି ହୋଇପାରିବେ ।'

କନ୍ଦର୍ପ ଦାସଙ୍କ ଓଠରୁ ଝରିଲା ଆଶ୍ୱସ୍ତିର ହସ । ସେ ହସ କ୍ରମେ ପ୍ରବଳରୁ ପ୍ରବଳତର ହେଲା ଓ ଚିତ୍ରାନଦୀର ତମାମ ତୀରକୁ ମୁଖରିତ କଲା ।

ଖୁସି ମନରେ ଜହ୍ନରେ ଗାଧୋଉଥିବା ନଈପଠା ହଠାତ୍ ଚିହିଁକିପଡ଼ିଲା ଯେମିତି ! କିନ୍ତୁ ନିର୍ବିକାର ଭାବରେ ଆଗକୁ ଚାଲିଥିଲା ଚିତ୍ରାନଦୀ, ଗଭୀର ରହସ୍ୟମୟତାର ଧାରଟିଏ ପରି ।



# ଟାରା

ଇଦ୍‌ରିସ୍ ତା' ପ୍ରିୟ ସହରରେ ପାଦ ଦେଲା, ତିନି ମାସ ପରେ । ମାତ୍ର ତିନି ମାସର ଏଇ ସଂକ୍ଷିପ୍ତ ବ୍ୟବଧାନ ଭିତରେ ଗୋଟେ ସହର କ'ଣ ଏମିତି ବଦଳିଯାଇପାରେ ? ଇଦ୍‌ରିସ୍‌ର ଅତି ଆପଣାର ଏ ସହର ତା' ଆଗରେ ଠିଆ ହୋଇଥିଲା– ଜଣେ ଆଗନ୍ତୁକ ଯେମିତି ! ସହରର ପରିଚିତ ପ୍ରତିଟି ଗଳି ଉପଗଳି ବି ଲାଗୁଥିଲା ଅଚିହ୍ନା ଅଚିହ୍ନା । ଆତ୍ମୀୟ ମୁହଁଟିମାନଙ୍କରୁ କିଏ ଯେମିତି ପୋଛି ଦେଇଥିଲା ଅବାରିତ ହସର ପ୍ରଲେପ ।

ତିନି ମାସ ତଳେ ଏ ସହରର ସୂକ୍ଷ୍ମ ଜୀବନତନ୍ତ୍ରୀକୁ ଦୋହଲାଇ ବହି ଯାଇଥିଲା ନିର୍ମମ ଝଡ଼ଟିଏ । ମହାଦ୍ରୁମ ଏ ସହରର ପ୍ରଲମ୍ବିତ ଶାଖା-ପ୍ରଶାଖାମାନେ ଭୂପତିତ ହୋଇଛନ୍ତି ସେଇଦିନୁଁ । ଲଣ୍ଡା ଗଛଟିଏ ଯାହା ଆଁ କରି ଚାହିଁ ରହିଚି ଫାଙ୍କା ଆକାଶକୁ । ମଧୁ ସମୀରଣର ଆଉ ଗୁଞ୍ଜରଣ ନାହିଁ ସବୁଜ ସ୍ୱପ୍ନର ସ୍ନାୟୁରେ । ବାସଚ୍ୟୁତ ତ୍ରସ୍ତ ବିହଙ୍ଗମମାନଙ୍କର କାକଳି ଅବା ପରିଣତ ହୋଇଛି ନିରବ ଆର୍ତ୍ତନାଦରେ । ଊର୍ଦ୍ଧ୍ୱର ଆକାଶ ଶୂନ୍ୟ ଶୂନ୍ୟ ମହାଶୂନ୍ୟ, ମେଘରହିତ । ଦୁରନ୍ତ ବର୍ଷାର ସମ୍ଭାବନା । ଛାତି ଭିତରର ଝଡ଼କୁ କୌଣସି ପ୍ରକାରେ ସମ୍ଭାଳି ନେଲା ଇଦ୍‌ରିସ୍ । ବସ୍‌ଷ୍ଟାଣ୍ଡର ଚାରି ପାଖରେ ଆଖି ବୁଲେଇଲା ରିକ୍ସାର ସନ୍ଧାନରେ । ଅସୁସ୍ଥତା ଭିତରେ କଲେଜ ପର୍ଯ୍ୟନ୍ତ ଚାଲି ଚାଲି ଯିବା ତା' ପକ୍ଷେ ହୁଏତ ସମ୍ଭବ ନ ଥିଲା । କମୁ ନ ଥିଲା ବି ତା' ମନର ଅସୁସ୍ଥତା, ସଂଶୟର ସଂଘାତରେ । ଇଦ୍‌ରିସ୍ ତେଣୁ ରିକ୍ସା ଖୋଜୁଥିଲା ।

ବସ୍‌ଟିଏ ପହଞ୍ଚିଲେ ରିକ୍ସାମାନେ ସାଲୁବାଲୁ ହୁଅନ୍ତି ଷ୍ଟାଣ୍ଡରେ, ଦୀପ ଚତୁଃପାର୍ଶ୍ୱର ପ୍ରମତ୍ତ ପତଙ୍ଗ ପରି । ଅଥଚ ଆଜି ରିକ୍ସାଟେ ପାଇଁ ଅନୁସନ୍ଧାନ କରିବାକୁ ପଡୁଥିଲା ଇଦ୍‌ରିସକୁ । କଚେରି ବଜାରଆଡୁ ଫେରୁଥିବା ଗୋଟେ ଫାଙ୍କା ରିକ୍ସାକୁ ସେ ହାତ ଠାରିଲା । କିନ୍ତୁ ରିକ୍ସାବାଲାଟି ସାମନ୍ତ ଧୀବର ପରି ଶୁଣି ବି ଶୁଣିଲା ନାହିଁ କିଛି । ଇଦ୍‌ରିସ୍ ଚାଲିବା ଆରମ୍ଭ କଲା ।

ବସ୍‌ଷ୍ଟାଣ୍ଡକୁ ଲାଗି କଚେରି ବଜାର । କଚେରି ବଜାରର ମୁଖ୍ୟରାସ୍ତାର ପୂର୍ବ ପାଖରେ ଶୃଙ୍ଖଳିତ ସୈନ୍ୟମାନଙ୍କ ପରି ଧାଡ଼ି ବାନ୍ଧି ଠିଆ ହୋଇଥିବା କ୍ୟାବିନ୍‌ଗୁଡ଼ିକ ଦଗ୍ଧ, ବିପର୍ଯ୍ୟସ୍ତ । ଇଦ୍‌ରିସ୍ ସେଇଆଡ଼କୁ ବେଶ୍ କିଛି ସମୟ ଧରି ଚାହିଁ ରହିଲା । ଏଇ ଧାଡ଼ିରେ କୋଉଟା ହରି ବାରିକର ସେଲୁନ୍ ବା କୋଉଟା ଉସ୍‌ମାନ ଅଲ୍ଲୀର ସାଇକଲ

ଦୋକାନ, ସେ ଚିହ୍ନିପାରିଲା ନାହିଁ । ସବାଶେଷ ଦୋକାନଟିକୁ ସେ ଅବଶ୍ୟ ଚିହ୍ନିଲା । ସେଇଟା ଗୋଟେ ମାଗାଜିନ୍ ଷ୍ଟଲ୍ ଯୋଉଠୁ ଇଦ୍‌ରିସ୍ କମ୍ପିଟିଟିଭ୍ ପତ୍ରପତ୍ରିକା ପ୍ରାୟତଃ କିଣେ ; ମାଗଣାରେ ଏକାଧିକ ଖବରକାଗଜ ଉପରେ ଆଖି ବୁଲାଏ ।

ଆକାଶର ଓହଳରୁ ସଞ୍ଜ ନଇଁ ଆସୁଥିଲା ଭୟାନକ ନିରବତାର ଅଗ୍ରଦୂତ ପରି । ଝଡ଼ରୁ କୌଣସି ପ୍ରକାରେ ବର୍ତ୍ତି ଯାଇଥିବା ଦୋକାନମାନଙ୍କରୁ ଭାସି ଆସୁଥିବା ସରୁ ଆଲୋକର ଧାରାରେ କିୟଦାଲୋକିତ ହେଉଥିଲା ସହରର ମୁଖ୍ୟରାସ୍ତା । ଅନ୍ଧାରର ସାମ୍ରାଜ୍ୟରେ ଶଙ୍କିତ ଷ୍ଟ୍ରୀଟ୍ ଲାଇଟ୍‌ମାନେ ପ୍ରଜ୍ୱଳିତ ହେବାକୁ ଲଜ୍ଜାବୋଧ କରୁଥିଲେ ବୋଧହୁଏ । ସଞ୍ଜର ଆରତି ତ ଶୁଭୁ ନ ଥିଲା ବିଜୟ ବାଶୁଳୀ ମନ୍ଦିରରୁ । ଅଦୂର ପୀରପୀଠରୁ ଭାସି ଆସୁ ନ ଥିଲା 'ଆଲ୍ଲା ହୋ ଆକ୍‌ବର' ର ଅନୁନାସିକ ଧ୍ୱନି । ସହର ମନେ ହେଉଥିଲା ଶ୍ମଶାନ ପରି ଶୂନ୍‌ଶାନ, କୋଳାହଳ ବିବର୍ଜିତ । ଅବଶ୍ୟ କଚେରି ପଡ଼ିଆର ଅସ୍ଥାୟୀ ପୋଲିସ୍ ଛାଉଣୀରେ ବହୁଭାଷାର ସମ୍ମିଶ୍ରିତ ଆୱାଜରୁ ସୂଚିତ ହେଉଥିଲା, ମୁମୂର୍ଷୁ ହେଲେ ବି ସହରଟା ତଥାପି ଜୀବିତ ।

କଚେରି ବଜାର ପାରି ହୋଇଚି କି ନା, ଇଦ୍‌ରିସ୍ ଉପଲବ୍ଧି କଲା ତାକୁ ଯେମିତି କିଏ ଜଣେ ଜୋର୍ ପାଦରେ ଅନୁସରଣ କରୁଚି । ସେ ମନେ ମନେ ଭୟପାଇଗଲା ଓ ଅସୁସ୍ଥତା ସତ୍ତ୍ୱେ ଜୋରରେ ଚାଲିବାକୁ ଲାଗିଲା । ସେଇ ସମୟରେ ଷ୍ଟ୍ରୀଟ୍ ଲାଇଟ୍ ଜଳିଉଠିବାରୁ ସେ ନିଜ ଭିତରେ ସାହସ ସଞ୍ଚୟ କରି ପଛକୁ ଚାହିଁଲା । ଦେଖିଲା ବେଳକୁ ପଛରେ ଭିକାରି ବୁଢ଼ାଟିଏ । ଇଦ୍‌ରିସ୍ ଉପରେ ନଜର ପଡ଼ିବାକ୍ଷଣି ବୁଢ଼ାଟି କାକୁସ୍ଥ ହୋଇ କହିଲା, ''ବାବୁ, ଆଜି ସାରାଦିନ ଓପାସ । ଗରିବକୁ କିଛି ହେଲେ ଦୟାକର ।'' ଇଦ୍‌ରିସ୍ ପକେଟ୍‌ରେ ଯନ୍ତ୍ରବତ୍ ହାତ ପୂରେଇଲା ଓ ମଇଳା ଦୁଇଟଙ୍କିଆ ନୋଟ୍‌ଟିଏ ବାହାର କରି ବୁଢ଼ା ହାତକୁ ବଢ଼େଇଦେଲା । କୃତକୃତ୍ୟ ଭିକାରି ବୁଢ଼ା ଇଦ୍‌ରିସ୍‌କୁ ଆଶୀର୍ବାଦ କଲା ଓ କହିଲା, ''ଏ ସହରରେ ଆଦୌ ଚଳି ହବନି ବାବୁ । ଏଠି ଆଉ ଆଗ ଗହଳଚହଳ ନାଇଁ । ଭିକ ଦବ କିଏ । ଆଜି ରାତିଗାଡ଼ି ଧରି ଅନ୍ୟ କୋଉ ସହରକୁ ଚାଲିଯିବି ଆଜ୍ଞା ।''

ଇଦ୍‌ରିସ୍‌ର ଦେହ ଶୀତେଇ ଉଠିଲା । ସେ ଯେମିତି ଝଡ଼ର ଭିନ୍ନ ଗୋଟେ ଅବତାର ଦେଖିବାକୁ ପାଇଲା ନୂଆକରି ।

ଟାଉନହଲ୍ ଛକରେ ପହଞ୍ଚିଲାବେଳକୁ ଇଦ୍‌ରିସ୍‌ର ଗୋଡ଼ ହାତ ଅବଶ ଲାଗୁଥିଲା ଓ ସେ ତା' ତଳି ପେଟରେ ଅସମ୍ଭବ ଯନ୍ତ୍ରଣା ଅନୁଭବ କରୁଥିଲା । ଘରେ ଅବଶ୍ୟ ତା' ଆବ୍‌ବା, ଆମ୍ମା ସମସ୍ତେ ମନା କରୁଥିଲେ ଏ ସହରକୁ ଆସିବାପାଇଁ । ଇଦ୍‌ରିସ୍ କିନ୍ତୁ ଜିଦ୍‌ଧରିଲା ସେ ତା' ପ୍ରିୟ ସହରକୁ ନିଶ୍ଚୟ ଥରୁଟିଏପାଇଁ ଆସିବ । ଏ ସହରରେ ରହେ ତା'ର ସ୍ୱପ୍ନସୁନ୍ଦରୀ ରାଧା । ସେ ତା'ର ଏଇ ପ୍ରିୟ ସହରର

ଗଳିକନ୍ଦିରେ ଥରେ ବୁଲିବ, ଶେଷଥରପାଇଁ ଏଇ ସହରର ଆତ୍ମୀୟ ମାଟିର ବିହ୍ୱଳିତ ବାସ୍ନାକୁ ଆଘ୍ରାଣ କରିବ, ବାସ୍ ! କଲେଜର ସ୍ୱପ୍ନିଳ ଉପତ୍ୟକାରେ ରାତିଟିଏ, ମାତ୍ର ରାତିଟି ବିତେଇବ ! ଆଉ ପ୍ରେମିକା ରାଧା ସହ ପଦୁଟିଏ କଥାହବ, ସେତିକି । ତା'ପରେ ଏ ସହରଠୁଁ ଶହେ କିଲୋମିଟର ଦୂର ନିଜ ଗାଁକୁ ଫେରିଯିବ । ଆଉ କେବେ ବି ଆସିବନି ଏ ସହରକୁ, ମଲା ପର୍ଯ୍ୟନ୍ତ ।

ଇଦ୍‌ରିସ୍‌ର ଆଖି ଜକେଇ ଉଠିଲା । ସେ ଏ ସହରକୁ ଭୁଲିପାରିବ, ଏ କଲେଜକୁ ପାସୋରି ଦେବ, ହେଲେ ରାଧାକୁ ?

ରାଧା, ଇଦ୍‌ରିସ୍‌ର ସବୁ ଇଚ୍ଛା/ଅନିଚ୍ଛାର ଛାୟାଚ୍ଛନ୍ନ ଦିଗନ୍ତ, ତା'ର ସବୁ ପ୍ରାପ୍ତି/ଅପ୍ରାପ୍ତିର ମୃଦୁମନ୍ଦ ମଳୟ, ତା' ଜୀବନ/ମୃତ୍ୟୁର ସୁନିବିଡ଼ ଉଦାର ଧରିତ୍ରୀ ! ରାଧା ସହ ସଂପର୍କ-ସେତୁର ଆରମ୍ଭ କେଉଁଠି, ଇଦ୍‌ରିସ୍ ହୁଏତ ବିସ୍ମୃତ । କିନ୍ତୁ ବେଶ୍ କିଛି ଦିନର ସମ୍ପର୍କ ପରେ ଇଦ୍‌ରିସ୍ ଉପଲବ୍ଧି କରିଥିଲା ଯେ ରାଧା ସହ ତା'ର ସମ୍ପର୍କ ନିବିଡ଼ତାରେ ରୂପାନ୍ତରିତ ହୋଇଚି ଏବଂ ନିବିଡ଼ତା ଅଭିନ୍ନତାରେ । ରାଧାକୁ ତେଣୁ କହିଥିଲା ଇଦ୍‌ରିସ୍, ''ଏ ସମ୍ପର୍କ ଏମିତି ସମ୍ପର୍କ ଭିତରେ ହିଁ ରହିଯାଉ ରାଧା, କାରଣ ତମ ମୋ ମଝିରେ ଯେ ଗୋଟେ ଅଲଂଘ୍ୟ ପ୍ରାଚୀର ଠିଆ ହୋଇଚି ।'' ରାଧା କିନ୍ତୁ ସାଫ୍ ସାଫ୍ କହିଦେଲା, ''ମୁଁ ସେ ପ୍ରାଚୀରକୁ ମାନେନା, ଯେହେତୁ ତାହା ଅକୃତ୍ରିମ ନୁହେଁ, ମଣିଷ ତିଆରି ।''

ଇଦ୍‌ରିସ୍ ରାଧାକୁ ବୁଝେଇବାକୁ ଚେଷ୍ଟାକରି କହିଥିଲା, ''କେବଳ ଧର୍ମ ନୁହେଁ, ଶାସ୍ତ୍ର, ପୁରାଣ, ସଂହିତା, ଆଇନକାନୁନ- ଏ ସବୁ ତ ମଣିଷ ତିଆରି । କେବଳ ସେସବୁକୁ ଅଲଂଘନୀୟ ବାଣୀର ମର୍ଯ୍ୟାଦା ଦବା ପାଇଁ ଈଶ୍ୱର ବା ଆଲ୍ଲାଙ୍କର ଦ୍ୱାହି ଦିଆଯାଏ ବା ଲୋକମତ ବା ସାର୍ବଭୌମତ୍ୱ ପରି ଶବ୍ଦମାନ ଯୋଡ଼ି ଦିଆଯାଏ ତା' ସହ । କିନ୍ତୁ ଈଶ୍ୱରଙ୍କ ଅପେକ୍ଷା ଏହି ତଥାକଥିତ ଈଶ୍ୱରବାଣୀ ହିଁ ସମାଜର ସ୍ୱୀକୃତି ଲାଭ କରେ । ତମେ ଈଶ୍ୱରଙ୍କୁ ହୁଏତ ଫାଙ୍କି ଦେଇପାରିବ, କାରଣ ବିଚରା ଈଶ୍ୱର କାହିଁ କେତେକାଳ ଅନ୍ତେ ଥରେ ଅଧେ ଜନ୍ମନିଅନ୍ତି, ମ୍ଳେଚ୍ଛ ନିଧନପାଇଁ, ତାହା ପୁଣି ମଣିଷ ରୂପରେ । କିନ୍ତୁ ଈଶ୍ୱରଙ୍କ ପ୍ରତିନିଧିମାନେ ନିଜର ଫତଓ୍ୱା ବଳରେ ମ୍ଳେଚ୍ଛମାନଙ୍କୁ ଘଣ୍ଟ ଘୋଡ଼ାଇ ସାଧୁମାନଙ୍କୁ ତଳିତଳାନ୍ତ କରନ୍ତି । ଅଥଚ ସମାଜର ଶତକଡ଼ା ଅନେଶତ ଜଣ ଫତଓ୍ୱାକୁ ମାନିନିଅନ୍ତି । ସମାଜରେ ପ୍ରଚଳିତ ଧାରାକୁ ପ୍ରତିହତ କରିବାର ଜ୍ଜୁ କେତେ ଜଣଙ୍କର ଥାଏ, ରାଧା ?

''ମୋର ସେ ଜ୍ଜୁ ଅଛି, ଇଦ୍‌ରିସ୍'' ରାଧା କହିଥିଲା । ''ମୁଁ ଈଶ୍ୱରରେ ବିଶ୍ୱାସ କରେ, ଧର୍ମରେ ନୁହେଁ । ହୁଏତ ବିଶ୍ୱର କେହି ଜଣେ ନିୟନ୍ତା ଅଛି, ହୁଏତ ସେ ସର୍ବଶକ୍ତିମାନ୍ ପ୍ରକାରାନ୍ତରେ ସେ ହିଁ ଈଶ୍ୱର । କିନ୍ତୁ ସେହି ଈଶ୍ୱରଙ୍କୁ ପାଇବାପାଇଁ

ନିର୍ଦ୍ଦିଷ୍ଟ ମାର୍ଗ ଗଢ଼ିବାପାଇଁ କିଏ କହିଚି ଏ ମୁଲ୍ଲା ଓ ମହନ୍ତମାନଙ୍କୁ ? ପୁଣି ସେହି ମାର୍ଗରେ ଚାଲିବାପାଇଁ ବାଧ୍ୟ କରିବାକୁ ତାଙ୍କୁ ଅଧିକାର ଦେଇଚି କିଏ ? ଭିନ୍ନ ମାର୍ଗକୁ ବିରୋଧ କରିବା ଏବଂ ଭିନ୍ନ ମତାବଲମ୍ବୀମାନଙ୍କୁ ଘୃଣା କରିବାପାଇଁ ସେମାନଙ୍କୁ ଶିଖେଇଚି କିଏ ?''

'ଏସବୁ ତ ବିତର୍କ, କେବଳ ବିତର୍କ । ବିତର୍କ କ'ଣ କେବେ ସମାଧାନର ନିକଟବର୍ତ୍ତୀ ହୋଇପାରେ ?' ଇଦ୍‌ରିସ୍ ପ୍ରଶ୍ନ କରିଥିଲା ରାଧାକୁ । 'ଏହା ବିତର୍କ ନୁହେଁ- ସତ୍ୟ, ଦି ଟ୍ରୁଥ୍', ତତ୍‌କ୍ଷଣାତ୍ ଉତ୍ତର ଦେଇଥିଲା ରାଧା । ପୁନଶ୍ଚ କହିଥିଲା, ସେ କୌଣସି ପୁରୋହିତ ବା ମୌଲବିର ଉପସ୍ଥିତିରେ ବିବାହ କରିବ ନାହିଁ, କାରଣ ସେମାନେ ହିଁ  କାଳେ କାଳେ ହିପୋକ୍ରେସିର ନାମାନ୍ତର । ସେମାନେ ଉଚ୍ଚାରଣରେ ସତ୍ୟ ଓ ଅହିଂସାର ଅବତାର, କିନ୍ତୁ ଆଚରଣରେ ସ୍ୱକୀୟ ପ୍ରଭୁତ୍ୱ ଓ ପ୍ରତିପତ୍ତିପାଇଁ ଅନ୍ଧ । ସେଇମାନେ ହିଁ ମହମ୍ମଦଙ୍କ ଜିଭରେ 'ଜେହାଦ' ଲେଖନ୍ତି ଓ 'ସବୁ ଧର୍ମ ଛାଡ଼ି ମୋର ଶରଣାପନ୍ନ ହୁଅ' ବୋଲି ଶ୍ରୀକୃଷ୍ଣଙ୍କ କଣ୍ଠରୁ ଜବରଦସ୍ତ ନିସୃତ କରାନ୍ତି । ସେଇମାନେ ନିଜକୁ ସୁହାଇଲା ଭଳି ତର୍ଜମା କରନ୍ତି ବେଦବେଦାନ୍ତର । ସେଇମାନେ ରାତାରାତ୍ ନୂଆ ପଦ ଯୋଡ଼ିଦିଅନ୍ତି ଉପନିଷଦରେ । ସେଇମାନେ କୋରାନ୍ ଓ ବାଇବେଲ୍‌ର ପୃଷ୍ଠା ଚିରି ଫିଙ୍ଗିଦିଅନ୍ତି ସମୁଦ୍ର ଗର୍ଭକୁ । ସେଇମାନେ ତ ହୀନଯାନ ଓ ମହାଯାନରେ ବିଭକ୍ତ ହୁଅନ୍ତି । ସେଇମାନେ ତ ସବର୍ଣ୍ଣ-ଅସବର୍ଣ୍ଣ, ପ୍ରୋଟେଷ୍ଟାଣ୍ଟ-କ୍ୟାଥଲିକ୍ ଓ ସିହା-ସୁନ୍ନିଙ୍କ ମଝିରେ ଅଲିଭା ଗାରଟିଏ ଟାଣିଦିଅନ୍ତି ।''

ପଦାର୍ଥବିଜ୍ଞାନର କୃତୀ ଛାତ୍ର ଇଦ୍‌ରିସ୍ ସେଦିନ ହାର ମାନିଲା ରାଧା ନିକଟରେ । ରାଧା ଦର୍ଶନର ଛାତ୍ରୀ । ବିଜ୍ଞାନର ସମାପ୍ତିରେ ତ ଦର୍ଶନର ଆରମ୍ଭ । ଇଦ୍‌ରିସ୍ ଯେତେବେଳେ ନିରବ, ଠିକ୍ ସେତିକିବେଳେ ରାଧା ହୁଏ ପ୍ରଗଲ୍‌ଭା ।

'ଅନ୍ଧେରେ ମେଁ କୌନ୍ ହୋ', ଶୁଣି ଚମକି ପଡ଼ିଲା ଇଦ୍‌ରିସ୍ । କ୍ଳାନ୍ତି ମେଣ୍ଟାଇବା ଲାଗି ସେ ବସିପଡ଼ିଥିବା ଗୋଟେ ଭଙ୍ଗା ଚଉକିର ଦୁଇ ପାଖରେ ଦୁଇଜଣ ଲାଠିଧାରୀ ପୋଲିସ୍ । ଇଦ୍‌ରିସ୍‌ର ନାଁ ଗାଁ ଠିକଣା-ସେମାନେ ପଚାରିଲେ ଏକା ନିଃଶ୍ୱାସକେ । ଇଦ୍‌ରିସ୍ ଚଉକିରୁ ଉଠିଲା ନାହିଁ । ଅବିଚଳିତ ଭାବରେ କହିଲା ଯେ ସେ ଏହି ସହରରେ ପାଠ ପଢ଼େ । ତା' ପାଖରେ କଲେଜର ଆଇଡେଣ୍ଟିଟି କାର୍ଡ଼ ଅଛି । ପୋଲିସଦ୍ୱୟ ନିରବୀ ଗଲେ ଓ ପରିହିତ ବୁଟ୍ ସମୂହକୁ ଅପେକ୍ଷାକୃତ ଅଧିକ ମଚ୍ ମଚ୍ କରି ଆଗକୁ ଚାଲିଲେ । ଚାଲି ଯାଉଥିବା ପୋଲିସବାଲାଙ୍କୁ ଚାହିଁ ଇଦ୍‌ରିସ୍ ହସିଲା । ଏଇ କେତେ ଦିନ୍ରୁ ହବ ପୋଲିସ୍‌ବାଲାଙ୍କ ପ୍ରତି ଇଦ୍‌ରିସ୍ ମନରେ ଗୋଟେ ବହଳ ଘୃଣା ଯେମିତି ଜମାଟ ବାନ୍ଧିଚି । ଇଦ୍‌ରିସ୍ ମନକୁ ମନ କହିହେଉଥିଲା, ତିନି ମାସ ତଳର ସେଇ ବିଭୀଷିକାମୟ ରାତିରେ କତିପୟ ଦୁର୍ଦ୍ଦାନ୍ତ ଯୁବକ ଯେତେବେଳେ ତା' ଉପରେ

ଅକଥନୀୟ ଅତ୍ୟାଚାର କରୁଥିଲେ, ସେତେବେଳେ ପୋଲିସ/ମାଜିଷ୍ଟ୍ରେଟ୍- ଏମାନେ ଥିଲେ କେଉଁଠି ? ଏମାନେ ଚାହିଁଥିଲେ କ'ଣ ସେଦିନର ଦଙ୍ଗାକୁ ପ୍ରତିହତ କରିପାରି ନ ଥା'ନ୍ତେ ? 'ନା..' ଇଦ୍‌ରିସ୍ ଭିତରୁ ସ୍ୱତଃସ୍ଫୂର୍ତ୍ତ ଉତ୍ତର ବାହାରି ଆସିଲା ଯେମିତି ! ଏମାନଙ୍କ ହାତରେ ବନ୍ଧୁକ, ହେଲେ ଗୁଳି ଥାଏ ନେତାଙ୍କ ପକେଟ୍‌ରେ । ଏମାନେ କୌରବ ଅନ୍ନରେ ପ୍ରତିପାଳିତ ଗୋଲାମ । ସତ୍ୟକୁ ଉପଲବ୍ଧି କରନ୍ତି, ଅସତ୍ୟକୁ ପ୍ରତିବାଦ କରିପାରନ୍ତି ନାହିଁ ।

ଇଦ୍‌ରିସ୍ ଜାଣେ, ସେଦିନର ସେଇ ଦୁର୍ଘଟଣା ବିଜଡ଼ିତ କାଳରାତ୍ରିରେ, ସ୍ଥାନୀୟ ଏମ୍.ଏଲ୍.ଏ., ମ୍ୟୁନିସିପାଲିଟିର ଚେୟାରମ୍ୟାନ୍ ଓ ଅନ୍ୟାନ୍ୟ ଦଳର ତୁଙ୍ଗ ନେତୃବର୍ଗ- ସଭିଏଁ ଉପସ୍ଥିତ ଥିଲେ ଏ ସହରରେ । ସେମାନେ ଆନ୍ତରିକ ଭାବରେ ଇଚ୍ଛା କରିଥିଲେ କ'ଣ ପଶୁତ୍ୱର ଏ ବିସ୍ଫୋରଣକୁ ରୋକିପାରି ନ ଥାନ୍ତେ ? କିନ୍ତୁ ସେମାନଙ୍କର ଇଚ୍ଛା ଯେ ବିପରୀତ, ଇଦ୍‌ରିସ୍ ସ୍ୱଗତୋକ୍ତି କଲା । ମଣିଷ ପଶୁରେ ପରିଣତ ନ ହେଲେ ସେମାନଙ୍କ ସାମ୍ରାଜ୍ୟ ଯେ ସଙ୍କୁଚିତ ହୋଇଯିବ ! ମଣିଷ ଭିତରେ ଅନ୍ଧତ୍ୱ ଜମାଟ ନ ବାନ୍ଧିଲେ ଦିନକୁ ରାତି ବୋଲି ପ୍ରମାଣିତ କରିବାପାଇଁ ସେମାନେ ଯେ ବିଫଳ ହେବେ । ସେଇଥିପାଇଁ ତ ରାଜନୀତିର ପଶାପାଲିରେ ସାହା-ଇ-ଇମାମ୍‌ଙ୍କୁ ପଶାକାଠି କରି ସେମାନେ ଖେଳ ଜିତନ୍ତି, ଶଙ୍କରାଚାର୍ଯ୍ୟଙ୍କୁ ଶିଖଣ୍ଡୀ ବନେଇ ଯୁଦ୍ଧ ଜିଣିବାକୁ ପ୍ରୟାସ କରନ୍ତି ।

ଇଦ୍‌ରିସ୍ ରାଗିଲେ ତା' ଛାତି ବିନ୍ଧେ । ଅଗତ୍ୟା, ତା'ଛାତିଠାରୁ ତଳିପେଟ ପର୍ଯ୍ୟନ୍ତ ସବୁଠି ସେ ଗୋଟେ ତୀବ୍ର ଯନ୍ତ୍ରଣା ଅନୁଭବ କଲା । ତା'କୁ ଲାଗିଲା ସେ ମରିଯିବ ଯେମିତି ! ସେଇ ପରିତ୍ୟକ୍ତ ଦୋକାନର ମସିଆ ବାରନ୍ଦାରେ ସେ ଚିତ୍ ହୋଇ ଶୋଇପଡ଼ିଲା, ଏୟାର୍‌ବ୍ୟାଗ୍‌ରେ ମୁଣ୍ଡ ଭରା ଦେଇ ।

ଛାଇଛାଇଆ ନିଦର ଦିଗନ୍ତ ବିସ୍ତାରି କୁହେଳି ଭିତରେ ସ୍ୱପ୍ନ ଦେଖିଲା ଇଦ୍‌ରିସ୍ । ପ୍ରଲମ୍ବିତ ଖରା ଛୁଟିରେ ଶୂନ୍‌ଶାନ କଲେଜ କ୍ୟାମ୍ପସ୍ । ଶେଫାଳୀ ନଦୀର ବିଜନ ତଟରେ ସେ ଆଉ ରାଧା । ଦିଗ୍‌ବଳୟ ଆଢୁଆଳରୁ ବିଚ୍ଛୁରିତ ଚନ୍ଦ୍ରିକାରେ ତିଳତଣ୍ଡୁଳିତ ନଈପଠା । ଇଦ୍‌ରିସ୍ କୋଳର ଉପାଧାନ ଉପରେ କେଶବତୀ ରାଧାର ମସ୍ତକ । ଶେଫାଳୀ ନଦୀର ସରୁବାଲିର ସଫେଦ ଶେଯରେ ତା'ର ପୁଷ୍ପ-କୋମଳ ତନୁ, ଅର୍ଦ୍ଧ-ନିମଜ୍ଜିତ ନାଲି ଟୁକ୍ ଟୁକ୍ ଅଳତା ସୁରଞ୍ଜିତ ତା'ର ପାଦଦ୍ୱୟ ଶେଫାଳୀ ନଦୀର ଜ୍ୟୋତ୍ସ୍ନାୟିତ ଜଳଧାରାରେ, ଇଦ୍‌ରିସ୍‌ର କଟିଦେଶରେ ପୁଣି ଛନ୍ଦାୟିତ ତା'ର ହସ୍ତବଲ୍ଲରୀ ।

ଆଦିଗନ୍ତ ଜ୍ୟୋତ୍ସ୍ନାର ସମୁଦ୍ରରେ ପହଁରି ପହଁରି ଥକିପଡ଼ିଲା ବୋଧେ ସ୍ୱପ୍ନ ସାମ୍ରାଜ୍ଞୀ ରାଧା । ପଚାରିଲା, 'ଇଦ୍‌ରିସ୍, ଆମର ପ୍ରଥମ ସନ୍ତାନ ପୁତ୍ର ହେବ ନା

କନ୍ୟା ?' ମହାଶୂନ୍ୟରେ ଉଡ୍‌ଡୀୟମାନ ଇଦ୍‌ରିସ୍ ତଳକୁ ଖସିଲା ଓ କହିଲା, 'ମୁଁ ଚାହେ ପୁତ୍ର ।' 'ମୋର କିନ୍ତୁ କନ୍ୟାଟିଏ ଲୋଡ଼ା', ରାଧା ଅଡ଼ି ବସିଲା । ଇଦ୍‌ରିସ୍ କହିଲା, 'ଠିକ୍ ଅଛି, କନ୍ୟା ହେଲେ ମୋର ଆପତ୍ତି ନାହିଁ, ହେଲେ କନ୍ୟାର ନାମ ଦେବି ମୁଁ ଆଉ ପୁତ୍ର ହେଲେ ତା'ର ନାମକରଣର ଦାୟିତ୍ୱ ତମର ।' ରାଧା ସେତେବେଳେ ଆକାଶକୁ ଚାହିଁଥିଲା ଅନ୍ୟମନସ୍କ ଭାବରେ । ଇଦ୍‌ରିସ୍ କହିଲା, 'ଆକାଶରେ ତମେ କ'ଣ ପୁଅର ନାଁ ଖୋଜୁଚ ? 'ହଁ', ରାଧା ଉତ୍ତର ଦେଲା । 'ମୋ ପୁଅ ହବ ଆକାଶ ପରି ଉଦାର । ତା'ର ନାଁ ରଖିବି ଅନ୍ତରୀକ୍ଷ ।' 'ତା' ହେଲେ ମୁଁ ଝିଅର ନାଁ ଦେବି ଧରିତ୍ରୀ । ସେ ହେବ ଧରିତ୍ରୀ ପରି ସର୍ବଂସହା'– ଇଦ୍‌ରିସ୍ କହିଲାବେଳେ ରାଧା ନାକ ଟେକିଲା ଓ କହିଲା 'ଧରିତ୍ରୀ' ନାଁଟା ସେତେ ଭଲ ଶୁଭୁ ନାହିଁ । ଧରିତ୍ରୀର କ'ଣ ଆଉ କିଛି ପ୍ରତିଶବ୍ଦ ନାହିଁ ? ଖୋଜୁନ ।' ଇଦ୍‌ରିସ୍ କିଛି ସମୟ ନିରବ ରହିଲା ପରେ କହିଲା, 'ବସୁନ୍ଧରା କେମିତି ଶୁଭୁଛି ?' ରାଧା କହିଲା, 'ଓଃ, ଭାରି ରୋମାଣ୍ଟିକ୍ ।' ଇଦ୍‌ରିସ୍ ହସିଲା ।

ଇମିତି ହସୁ ହସୁ ଇଦ୍‌ରିସ୍ କହିଲା, 'ଆଚ୍ଛା ତମର ଏ ସମ୍ଭାବ୍ୟ ପିଲାମାନେ କେଉଁ ଧର୍ମଭୁକ୍ତ ହେବେ ?' 'ଏ ତ ଅତି ମାମୁଲି କଥା', ରାଧା ଉତ୍ତର ଦେଲା । 'ଯଦି ସେମାନେ ନିହାତି ଧର୍ମଭୁକ୍ତ ହେବା ଆବଶ୍ୟକ, ତେବେ ସେମାନଙ୍କର ଧର୍ମ ହେବ ହ୍ୟୁମାନିଜିମ୍ ।' 'ତା'ହେଲେ ତୁମ୍ଭ ପୁତ୍ର ହେବ ଏହି ଅଭିନବ ଧର୍ମର ପ୍ରବର୍ତ୍ତକ ବା ପୟଗମ୍ବର', ଇଦ୍‌ରିସ୍ ବ୍ୟଙ୍ଗ କରି କହିଲା । ରାଧା କିନ୍ତୁ ହଠାତ୍ ସିରିଅସ୍ ହୋଇପଡ଼ିଲା ଓ ଇଦ୍‌ରିସ୍ କୋଳରୁ ମୁଣ୍ଡ କାଢ଼ି ସଳଖି ବସିଲା । କିଛି ସମୟ ନିରବ ରହିଲା ପରେ କହିଲା,'ଜଣେ ପୟଗମ୍ବରର ଜନନୀ ହବାର ସୌଭାଗ୍ୟ ମୋର ଲୋଡ଼ା ନାହିଁ ଇଦ୍‌ରିସ୍ । ଯେତେ ପୟଗମ୍ବର ଏ ପୃଥିବୀରେ ଜନ୍ମ ଗ୍ରହଣ କରିବେ, ସେତେ ସଂଖ୍ୟକ ସଂପ୍ରଦାୟ ସୃଷ୍ଟି ହେବ ସେମାନଙ୍କ ନାଁରେ ଓ ଜନ ସମୁଦାୟ ବହୁଧା ବିଭକ୍ତ ହୋଇ ବିଷାକ୍ତ ବିଶ୍ୱକୁ ଆହୁରି ବିଷମୟ କରିଦେବେ । ତେଣୁ ମୁଁ ଚାହେ, ମୋ ପୁଅ ଦେବତା ବା ଦେବଦୂତ ନ ହୋଇ ଖାସ୍ ମଣିଷଟିଏ ହୋଇ ଜନ୍ମ ହେଉ । ନଚେତ୍ ମୋର ଝିଅଟି ହିଁ ହେଉ, ଯେହେତୁ ସେ କଦାପି ପୟଗମ୍ବର ହୋଇପାରିବ ନାହିଁ ।

'କାହିଁକି ?' ଇଦ୍‌ରିସ୍ ପ୍ରଶ୍ନକଲା ।

ରାଧା ଓଲଟି ପଚାରିଲା, 'ତମ ପୁରୁଷପ୍ରଧାନ ସମାଜ କେବେ କୌଣସି ନାରୀକୁ ପୟଗମ୍ବରର ଆଖ୍ୟା ଦେଲାଣି ।'

'ଓଃ, ତମେ ତା'ହେଲେ କେବଳ ସିକୁଲାରିଷ୍ଟ ନୁହଁ, ଫେମିନିଷ୍ଟ ମଧ୍ୟ' ଇଦ୍‌ରିସ୍ ବ୍ୟଙ୍ଗକଲା ଓ କହିଲା, 'ତମେ ମୌଳବାଦୀମାନଙ୍କ ହାବୁଡ଼ରୁ ବର୍ତ୍ତି ରହିଲେ ହେଲା ।'

ସତକୁ ସତ ଗୋଟେ ମୌଳବାଦୀ ଗୋଷ୍ଠୀ ସେତେବେଳକୁ ସେମାନଙ୍କର ନିକଟତର ହୋଇସାରିଥିଲା । ସେମାନଙ୍କ ଆଖିରେ ଥିଲା ଅଗ୍ନିର ସ୍ଫୁଲିଙ୍ଗ । ରାଧାକୁ

ନଈ ପଠାର ଅଦୂର ଅରମାରେ ଲୁଚିଯିବାକୁ କହି ଇଦ୍‌ରିସ୍ ଏକପ୍ରକାର ସମର୍ପଣ ଭଙ୍ଗୀରେ ଠିଆ ହୋଇ ରହିଲା । ସେମାନଙ୍କ ଭିତରୁ କେହି ଜଣେ ପଚାରିଲା, ''ତୋ ନାଁ ।'' ନିଃସଂକୋଚରେ ନିଜ ନାଁ କହିଲା ଇଦ୍‌ରିସ୍ । ତା'ପରେ ଇଦ୍‌ରିସ୍ କପାଳରେ ଶକ୍ତ ଆଘାତ...

ଇଦ୍‌ରିସ୍ ବିଳିବିଳେଇ ହେଲା ଓ ତା'ର ନିଦ ଭାଙ୍ଗିଗଲା ।

ନିସ୍ପନ୍ଦ ସହର । ନିରବତାର ରୂପ ଯେ ଏଡ଼େ ଭୟଙ୍କର ଇଦ୍‌ରିସ୍ ପ୍ରଥମଥର ପାଇଁ ଅନୁଭବ କଲା । ସେତେବେଳକୁ ବିକଟାଳ ସ୍ମୃତିସିକ୍ତ ହୋଇ ସେ ଗୋଟାପଣେ ଥରୁଥିଲା । କୌଣସି ପ୍ରକାରେ ଇଦ୍‌ରିସ୍ ଭୟ ସମ୍ବରଣ କଲା ଓ ବହୁତ ସମୟ ଧରି ଶୋଇପଡ଼ିଥିବାରୁ ନିଜ ଉପରେ କ୍ଷୁବ୍ଧ ହୋଇ ହାତ ଘଣ୍ଟାକୁ ଚାହିଁଲା । ନିଜ ହାତ ଘଣ୍ଟା ଉପରେ ବି ତା'ର ସନ୍ଦେହ ହେଲା । ସେ ପୁଣି ଥରେ ନିରୀକ୍ଷଣ କଲା ହାତ ଘଣ୍ଟାକୁ । ହଁ, ଘଣ୍ଟା ଠିକ୍ ଚାଲିଚି । ସମୟ ମାତ୍ର ଆଠଟା ପନ୍ଦର ।

ଗୋଟେ ଉତ୍ତୀର୍ଣ୍ଣ ସନ୍ଧ୍ୟାରେ ଏ ସହର ଏମିତି ନିଦ୍ରାଭିଭୂତ ହବାର ଦଲିଲ ନ ଥିଲା ଇଦ୍‌ରିସ୍‌ର ସ୍ମୃତିରେ । ମଧରାତ୍ରି ପରେ ଏ ସହର କେବେ କେମିତି ଘୁମେଇପଡ଼େ ସିନା; ପୁଣି ସକାଳ ହବାର ବହୁ ପୂର୍ବରୁ ଜୀବନ-ସ୍ପନ୍ଦନରେ ଭରପୂର ହୋଇଉଠେ ତା'ର ସମଗ୍ର ସତ୍ତା । ପାହାନ୍ତାର ଡାକ ଗାଡ଼ି ଶୀତାର୍ତ୍ତ ସହରକୁ ବି ପାଣି ସିଞ୍ଚି ଉଠେଇଦିଏ ଯେମିତି !

ଏୟାର୍ ବ୍ୟାଗ୍‌ଟିକୁ କାନ୍ଧରେ ଝୁଲାଇ ସନ୍ତର୍ପଣରେ ଆଗକୁ ଚାଲିଲା ଇଦ୍‌ରିସ୍ । ଟାଉନ୍ ହଲ୍ ଛକ ପାରିହବା ପରେ ମାଲଗୋଦାମ ଅଞ୍ଚଳ, ସହରର ମୁଖ୍ୟ ବେପାର ପେଣ୍ଠ । ରାତି କ'ଣ କେବେ ବୁଝି ନ ଥିବା ଏ ଅଞ୍ଚଳ ଯେମିତି ରାତିର ପ୍ରଗାଢ଼ତାରେ ତନ୍ମୟ ହୋଇଥିଲା । ଆକାଶକୁ ସଦର୍ପ ମୁଣ୍ଡ ଟେକି ଠିଆ ହୋଇଥିବା ସୁବିଶାଳ ବାଣିଜ୍ୟିକ ପ୍ରତିଷ୍ଠାନସମୂହ ଅଦୂରରୁ ବି ମନେ ହେଉଥିଲେ ଅବୃକ୍ଷମାନ ଟାଙ୍ଗରା ପାହାଡ଼ ପଙ୍‌କ୍ତିପରି ନିଛାଟିଆ । ଭ୍ରମରଲାଲ୍ ଆଣ୍ଡ ସନ୍ସ ଲେଖାଥିବା ବିଧ୍ୱସ୍ତ କୋଠାଟି ସ୍ୱକୀୟ ଗାମ୍ଭୀର୍ଯ୍ୟରେ ବାରି ହୋଇପଡୁଥିଲା, ଯଦିଓ ଏହା ଥିଲା ଭୂତକୋଠି ପରି ପରିତ୍ୟକ୍ତ । ହସ୍‌ପିଟାଲ୍ ବେଡ୍‌ରେ ପଡ଼ିରହି ଭ୍ରମରଲାଲ୍ ମାରୁଆଡ଼ିର କୋଠି ଉପରେ ହୋଇଥିବା ବୋମା ବିସ୍ଫୋରଣ କଥା ଶୁଣିବାକୁ ପାଇଥିଲା ଇଦ୍‌ରିସ୍ । କେତେଜଣ ଉଗ୍ର ମୁସଲମାନ ଯୁବକ ସେଦିନର କାଳ ରାତିର ସୁଯୋଗରେ ଭ୍ରମରଲାଲ୍‌ର ଗହଣା ଦୋକାନ ଲୁଟ୍ କରିଥିଲେ । ସେଦିନ ପୁଣି ଭ୍ରମରଲାଲ୍‌ର ପୁଅ ବନଓ୍ୱାରୀଲାଲ୍ ଅନ୍ୟ ସହରକୁ ଯାଇଥିଲା ବେପାର ସଂକ୍ରାନ୍ତୀୟ କୌଣସି ଜରୁରୀ କାମରେ । ଦୁର୍ବୃତ୍ତ ମୁସଲମାନ ଯୁବକମାନେ ଭ୍ରମରଲାଲ୍ ଓ ତା'ର ଆଠ ବର୍ଷର ନାତିକୁ ଦଉଡ଼ିରେ ବାନ୍ଧି ପକାଇ ସେମାନଙ୍କ ସାମ୍ନାରେ ବନ୍‌ଓ୍ୱାରୀଲାଲ୍‌ର ପତ୍ନୀକୁ ଧର୍ଷଣ କରିଥିଲେ ଓ

ପରେ ପରେ ଭ୍ରମରଲାଲ୍ କୋଠି ଉପରକୁ ବୋମା ଫିଙ୍ଗି ଉଭାନ୍ ହୋଇଯାଇଥିଲେ । ତହିଁ ପରଦିନ ବନଓ୍ୱାରୀଲାଲ୍ ଏ ସହରକୁ ଫେରି କୋଠାରୁ ନିଜ ପିତା, ପତ୍ନୀ ଓ ପୁତ୍ରର ଶବ ଉଦ୍ଧାର କରିଥିଲା । ସେହିଦିନଠାରୁ ବନଓ୍ୱାରୀଲାଲ୍‌କୁ ରାଞ୍ଚି ପଠେଇ ଦିଆଯାଇଚି ।

ଇଦ୍‌ରିସ୍ ପୁଣି ଖବରକାଗଜରୁ ପଢ଼ିଥିଲା ଯେ ଭ୍ରମରଲାଲ୍ କୋଠି ଉପରେ ପଡ଼ିଥିବା ବୋମା କୁଆଡ଼େ ଦେଶୀୟ ହାତବୋମା ନୁହେଁ, କୌଣସି ପାକିସ୍ଥାନୀ ସଂସ୍ଥାଦ୍ୱାରା ନିର୍ମିତ ଶକ୍ତିଶାଳୀ ବୋମା । ପାକିସ୍ଥାନୀ ବୋମା କଥା ମନେପଡ଼ିବା କ୍ଷଣି ଇଦ୍‌ରିସ୍ ଛାତି ଭିତରେ କିଏ ବୋମା ଫୁଟେଇଲା ଭଳି ତାକୁ ଲାଗିଲା । ମୁସଲମାନମାନଙ୍କ ପାଖରେ ପାକିସ୍ଥାନୀ ବୋମା ବା ବନ୍ଧୁକ ଥିବା କଥା ଇଦ୍‌ରିସ୍ ଯେତେଥର ଶୁଣେ, ସେତେଥର ତା' ଛାତି ଭିତରେ କମ୍ପନ ସୃଷ୍ଟିହୁଏ ଓ ତା' ନିଜ ଜାତି ପ୍ରତି ତା'ର ଆକଣ୍ଠ ଘୃଣା ଜନ୍ମେ । ଏଇ ଦେଶର ମାଟି, ପାଣି, ପବନରେ ପୁଷ୍ଟ ମୁସଲମାନମାନଙ୍କର ବିଜାତୀୟ ଆନୁଗତ୍ୟ କାହିଁକି (?), ଇଦ୍‌ରିସ୍ ଅନେକବାର ନିଜ ଉପରକୁ ଏଇ ପ୍ରଶ୍ନ ଫିଙ୍ଗେ । ଭାରତ ପାକିସ୍ଥାନ କ୍ରିକେଟ୍ ମ୍ୟାଚରେ ପାକିସ୍ଥାନର ସମ୍ଭାବ୍ୟ ବିଜୟରେ ମସ୍‌ଗୁଲ ହେଉଥିବା ଜନୈକ ବନ୍ଧୁଙ୍କ ଗାଲରେ ସେ ଥରେ ଶକ୍ତ ଚାପୁଡ଼ାଟାଏ ବସାଇଥିଲା । କତିପୟ ଅନ୍ଧ ମୁସଲମାନମାନଙ୍କର କାର୍ଯ୍ୟକଳାପ ପାଇଁ ଯେ ଜାତୀୟତାବାଦୀ ମୁସଲମାନ ସମୁଦାୟ କଳୁଷିତ ହେଉଚି, ଏହା ଥିଲା ସେଦିନ ନିଜ ବନ୍ଧୁଙ୍କ ପ୍ରତି ଇଦ୍‌ରିସ୍‌ର ଚେତାବନୀ ।

କିନ୍ତୁ ଇଦ୍‌ରିସ୍ ଭଲ ଭାବରେ ଜାଣିଥିଲା ଯେ ବନ୍ଧୁଙ୍କର ବଡ଼ଭାଇ ଚୋରା ଅସ୍ତ୍ରଶସ୍ତ୍ରର ଜଣେ କୁଖ୍ୟାତ ବ୍ୟବସାୟୀ, ଯିଏ ନିଜର ବ୍ୟାବସାୟିକ ଫାଇଦାପାଇଁ ଦଙ୍ଗାକୁ ସାଦର ଆମନ୍ତ୍ରଣ ଜଣାନ୍ତି । ଦଙ୍ଗା ମାତିଲେ ତାଙ୍କର କାରବାର ମାତେ । କୌଣସି ଇସ୍ୟୁ ନ ଥାଇ ଦଙ୍ଗା ପାଇଁ ସେ ଯୁବକମାନଙ୍କୁ ଉସ୍‌କାନ୍ତି, ଅଯଥାରେ ମୁସଲମାନମାନଙ୍କ ମନରେ ହିନ୍ଦୁ-ବିଦ୍ୱେଷୀ ମନୋଭାବ ସୃଷ୍ଟି କରାନ୍ତି । ତାଙ୍କ ସହ ତାଳ ଦିଅନ୍ତି ଅନ୍ୟ କେତେଜଣ ଅସାଧୁ ବ୍ୟବସାୟୀ, ପ୍ରଫେସନାଲ୍ ଗୁଣ୍ଡା ଓ ଉଦ୍‌ଭ୍ରାନ୍ତ ଯୁବକ । ଧର୍ମର ଧାର ଧାରୁ ନ ଥିବା ଏହି ଅସାମାଜିକ ବ୍ୟକ୍ତିମାନେ ହଠାତ୍ ଧର୍ମୀୟ ସ୍ଲୋଗାନ୍‌ରେ ମୁଖର ହୋଇପଡ଼ନ୍ତି । ସୂତ୍ରପାତ ହୁଏ ଦଙ୍ଗା । ଦିଆଶିଲି କାଠିର କ୍ଷୀଣ ଶିଖା ବାଡ଼ବାଗ୍ନିର ରୂପନିଏ । ଦଙ୍ଗାବାଜ୍‌ମାନେ କିନ୍ତୁ ବାଡ଼ବାଗ୍ନିର କରାଳ ଜିହ୍ୱାଠାରୁ ଚତୁରତାର ସହ ଦୂରେଇ ରହନ୍ତି । କଚେରି ବଜାରଠାରୁ ଷ୍ଟେସନ ଛକ ପର୍ଯ୍ୟନ୍ତ ଦିନରେ ପଚାଶ ଥର ରିକ୍ସା ଗଡ଼ଉଥିବା ସଲ୍ଲାଲୁଦ୍ଦିନ୍, ନଈ ପଠାରୁ ସୁପରମାର୍କେଟକୁ ଭେଣ୍ଡିଭାର ଆଣୁଥିବା ରଥୀ ମହଲା, ମୁସଲମାନ ବସ୍ତିରେ ଆଇସ୍‌କ୍ରୀମ୍ ବିକୁଥିବା ନନ୍ଦ ଦାସ, ହିନ୍ଦୁବହୁଳ ସୁଦୂର ପଲ୍ଲୀରେ ହରରଙ୍ଗୀ ଶାଢ଼ି ଫେରି କରୁଥିବା ଆସଫ ଅଲ୍ଲୀ– ବିଚରାମାନେ ଅକାରଣେ ନିଆଁରେ ପୋଡ଼ି ମରନ୍ତି ସିନା ! ଆହା ଶବ୍ଦଟିଏ ନିଜ ଅଜାଣତରେ ବିଁ ଖସିପଡ଼ିଲା ଇଦ୍‌ରିସ୍‌ର ପାଟିରୁ ।

ଇଦ୍‌ରିସ୍‌ର ମନେପଡ଼ିଲା ଥରେ ଅଦୂର ସହରର ଦୁଇଜଣ ଯୁବକଙ୍କ ସହ ଜଣେ ମୌଲବି ଆସିଥିଲେ ତାଙ୍କ ଗାଁକୁ । ସେଦିନ ଅଧରାତିରେ ଗୋଟେ ସଭା ବସିଥିଲା ମସ୍‌ଜିଦ୍ ପ୍ରାଙ୍ଗଣରେ । ଅଷ୍ଟମ ଶ୍ରେଣୀରେ ପଢୁଥିବା ସେଦିନର ଅଝଟିଆ ଇଦ୍‌ରିସ୍, ଆବ୍‌ବା ସହ ଯାଇଥିଲା ସେଇ ସଭାକୁ । ହିନ୍ଦୁମାନଙ୍କଦ୍ୱାରା ମୁସଲମାନମାନଙ୍କ ପ୍ରତି ହେଉଥିବା ଅବିଚାର ଓ ଅତ୍ୟାଚାରର ଏକ ଦୀର୍ଘ ଟିପ୍‌ପଣୀ ଦେଇ ମୌଲବି ମହାଶୟ ସଂଖ୍ୟାଲଘୁ ମୁସଲମାନମାନଙ୍କୁ ସଶସ୍ତ୍ର ସଜାଗ ରହିବାପାଇଁ ସତର୍କ କରାଇଦେଇଥିଲେ । ବସ୍ତିର ବଛା ବଛା ଯୁବକମାନଙ୍କୁ ତାଲିମ୍ ପାଇଁ ପଠାଇବାକୁ ମଧ୍ୟ ସେ ବସ୍ତିର ସର୍ଦ୍ଦାର ଅର୍ଥାତ୍ ତା' ଆବ୍‌ବାକୁ ଅନୁରୋଧ କରିଥିଲେ । ବସ୍ତିରେ ଜଣେ ଦୁଇ ଜଣ ଧନାଢ଼୍ୟ ବେପାରୀଙ୍କୁ ବାଦ୍ ଦେଲେ ଅନ୍ୟ କେହି ମୌଲବିଙ୍କ ପ୍ରସ୍ତାବରେ ରାଜି ହୋଇ ନ ଥିଲେ ସେଦିନ । ମୌଲବିଙ୍କ ଉକ୍ତିକୁ ଘୋର ବିରୋଧ କରି ତା' ଆବ୍‌ବା କହିଥିଲେ ଯେ ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ କୌଣସି ବିଭେଦ ନାହିଁ ଏ ଅଞ୍ଚଳରେ, ବରଂ ପାରସ୍ପରିକ ସୌହାର୍ଦ୍ଦ୍ୟ ଭିତରେ ସେମାନେ ଏଠି ଯୁଗ ଯୁଗ ଧରି ଚଳି ଆସୁଛନ୍ତି ।

''ଯୋଉ ଦିନ ସଫିଉଦ୍ଦିନ ଅସୁଖ ହୋଇ ବଡ଼ ଡାକ୍ତରଖାନାକୁ ଯିବା କଥା ଠିକ୍ ହେଲା, ବସ୍ତିର ପାନବେପାରୀ ଅନ୍‌ୱାରକୁ ଜମି ବନ୍ଧକ ଦବାକୁ କୁହାଗଲେ ମଧ୍ୟ ସେ ପଇସାଟିଏ ଦବାକୁ ମନା କରିଦେଲା । ଅଥଚ ଜଗୁ ସାହୁ ବିନା ବନ୍ଧକରେ ସାତ ଶହ ଟଙ୍କା ଗଣି ଦେଇଥିଲା ଅନ୍‌ୱାର୍‌ର ପୁଅ ହାତରେ । ଅନୱାର ମାସେ ବଡ଼ ଡାକ୍ତରଖାନାରେ ପଡ଼ି ଭଲ ହୋଇ ବସ୍ତିକୁ ଫେରିଲା । ସେ ଦିନରୁ ସେ ଜଗୁ ସାହୁର ଧରମ ପୁଅ । ଜଗୁ ସାହୁ ବୁଢ଼ା ମଲା ବେଳକୁ ସେ ତୁଠକୁ ଯାଇଥିଲା, ବ୍ରାହ୍ମଣ ବିଦାକି ଦେଇଥିଲା ଓ ନୂଆଲୁଗା ପିନ୍ଧି ବସ୍ତିକୁ ଫେରିଥିଲା । ସେମିତି ଜଗୁ ସାହୁ ବଡ଼ବୋହୂର ପିଲା ହେଲାବେଳକୁ ପର କିଆରିରେ ମୂଳ ଖଟି ଦୁଇଶ' ଟଙ୍କାର ମିଠା ପଠେଇଥିଲା ଅନ୍‌ୱାର୍, ଜଗୁ ସାହୁ ଘରକୁ ।'' ଏ ସମସ୍ତ ସାମାଜିକ ବନ୍ଧନକୁ କ'ଣ ଭାଙ୍ଗିହବ ମୌଲବି ମହାଶୟ, ଇଦ୍‌ରିସ୍‌ର ଆବ୍‌ବା ସେଦିନ ପ୍ରଶ୍ନ ପଚାରିଥିଲେ । ମୌଲବିଙ୍କ ମୁହଁର ରଙ୍ଗ ଅବଶ୍ୟ ବଦଳି ଯାଇଥିଲା । ତହିଁ ପରଦିନ ବଡ଼ି ଭୋରୁ ମୌଲବି ତାଙ୍କ ସହରକୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

ହିନ୍ଦୁ-ମୁସଲମାନମାନଙ୍କ ଭିତରେ ଥିବା ସେହି ଅତୁଟ ସାମାଜିକ ସମ୍ପର୍କକୁ ପିଲାବେଳୁ ଦେଖି ଆସୁଚି ଇଦ୍‌ରିସ୍ । ହୋରି ବେଳକୁ ସେ ଦାମ, ଗୋପାଳ ଓ ମୁଚୁକୁନ୍ଦ ସହ ରଙ୍ଗ ପିଚକାରୀ ଖେଳିଚି, ସରସ୍ୱତୀ ପୂଜାଦିନ ମଧ୍ୟ ଜରିଆରେ ସେ କେତେଥର ବହିପୂଜା କରିଚି ଭଲ ପାଠହବା ଆଶାରେ । ଦଶମଶ୍ରେଣୀ ବୋର୍ଡ଼ ପରୀକ୍ଷା ବେଳକୁ କି ମୁସଲମାନ କି ହିନ୍ଦୁପିଲା ସମସ୍ତେ ତ ବୁଢ଼ା ପୀର ପାଖରେ ସେରେଣୀ ମନାସନ୍ତି । ମହରମ୍ ବେଳକୁ ତାଜିଆ ଆଗରେ ସବୁଠାରୁ ଭଲ ବାଡ଼ି ଖେଳେ ନଈ ଆରପାରି ଗାଁର

ପାଞ୍ଚହାତିଆ ମର୍ଦ୍ଦ ଗୋଖେଇ ଜେନା । ସାମନ୍ତଘର ବୁଢ଼ା ଶାନ୍ତି କମିଟିର ପ୍ରେସିଡେଣ୍ଟ ହୋଇ ମହରମ୍‌ର ସବୁ ଭଲ ମନ୍ଦ ବୁଝନ୍ତି । ନନ୍ଦିପୁର ଦୁର୍ଗାପୂଜା କମିଟିର କାର୍ପେଟ୍‌ଦାର ତ ହନିଫ୍‌ଚାଚା । ଦୁର୍ଗାଙ୍କ ଆଖି ସରୁ ହୋଇଗଲେ, ମୂର୍ତ୍ତିଗଢ଼ାଳିକୁ ସେ ତାଗିଦ୍ କରନ୍ତି, ''ଆରେ ଶଙ୍କର୍ଷଣ, ତମେ ପରା ମାଧବାନନ୍ଦ ଦାସଙ୍କ ପୁଅ, ଏ କ'ଣ ମହାମାୟାଙ୍କ ଆଖି ? ଏହାକୁ ଆୟତାକ୍ଷୀ କହିବା ?''

ଏମିତି ହିନ୍ଦୁ-ମୁସଲମାନମାନଙ୍କ ଭିତରେ ଯୁଗ ଯୁଗ ଧରି ଗୋଟେ ଦିଆନିଆର ଭାବ, ଗୋଟେ ନିବିଡ଼ ଆତ୍ମୀୟତାର ଆସ୍ତରଣ । କିନ୍ତୁ ବେଳେବେଳେ ଏମତି କ'ଣ ହୁଏ ଯେ କାଚର ଝର୍କାପରି ଝଣଝାଣ ଭାଙ୍ଗିଯାଏ ଏ ଦିଆନିଆର ମହାଭାବ । ହଠାତ୍ ଶୁଖିଯାଏ ଆନ୍ତରିକତାର ଅଥଳ ଦରିଆ । କୋଉଠି ଲୁଚି ରହିଥିବା ପଶୁଟା ସବାର ହୁଏ ନିରୀହ ପାଟକମାନଙ୍କ ମଗଜରେ । ବନ୍ଧୁତ୍ୱର ହାତ ଠେଙ୍ଗା ଧରେ, ଖଣ୍ଡା ଧରେ, ବୋମା ବି ଫିଙ୍ଗିପାରେ !

କଲେଜ ପାଖରେ ପହଞ୍ଚି ଭାବନାମୁକ୍ତ ହେଲା ଇଦ୍‌ରିସ୍ । ଆମ୍ରବକୁଳର ବୀଥିକା ଭେଦି ଠିଆହୋଇଥିବା ଶଙ୍ଖଶ୍ୱେତ କୋଠାସମୂହ ରକ୍ତହୀନ ଶିଶୁପରି ଶେଥା ମନେ ହେଉଥିଲେ ଇଦ୍‌ରିସ୍‌କୁ । କଲେଜର ହଷ୍ଟେଲମାନଙ୍କରୁ ଯୁବସୁଲଭ ଫାଜ୍‌ଲାମିର ଗୁଞ୍ଜରଣ ଶୁଭୁ ନ ଥିଲା ଆଗପରି । କଲେଜରେ ସମଗ୍ର ପରିବେଶ ଲାଗୁଥିଲା ଚିତ୍ରାଙ୍କନର ନିଆଁପରି ଉଷ୍ମତାବିହୀନ, ଶୀତଳ ।

ହଷ୍ଟେଲର ୱାଚମ୍ୟାନ୍ ଇଦ୍‌ରିସକୁ ଦେଖି ଚମକିପଡ଼ିଲା ଯେମିତି ! ମିନିଟ୍‌କ ପରେ ଗ୍ରୀଲ୍ ଖୋଲିଲା ।

ହଷ୍ଟେଲର ଲମ୍ବା ବାରନ୍ଦାରେ ଆଗକୁ ଚାଲୁଥିଲା ଇଦ୍‌ରିସ୍ । ବଶମ୍ବଦ ଅନ୍ତେବାସୀମାନେ ଯେମିତି ଚିହ୍ନିପାରୁ ନ ଥିଲେ ତାକୁ । ଇଦ୍‌ରିସ୍ ବି ଯେମିତି ଭୁଲିଯାଇଥିଲା ସେମାନଙ୍କ ସହ କଥା ହବା ପାଇଁ । ନିଜ ରୁମ୍‌ର ତାଲା ଖୋଲି ସେ ଭିତରକୁ ପଶିଲାବେଳେ ତା' କାନରେ ବାଜିଲା, ''ଆଜି ରାତିରେ ସତର୍କ ରୁହ । ପଠାଣକୁ ବିଶ୍ୱାସ କ'ଣ ?'' ଇଦ୍‌ରିସ୍ ଶୁଣି ବି ନ ଶୁଣିଲା ପରି ପଶିଗଲା ରୁମ୍ ଭିତରକୁ ।

ମୁସଲମାନମାନଙ୍କର ଅବିଶ୍ୱସନୀୟତାକୁ କେନ୍ଦ୍ରକରି ଏମିତି ବହୁକଥା ଶୁଣିଚି ଇଦ୍‌ରିସ୍ । ହିନ୍ଦୁମାନେ କଥାକଥାକେ ଆଉରଙ୍ଗଜେବଙ୍କ ଦୃଷ୍ଟାନ୍ତ ଦିଅନ୍ତି । ପିତାଙ୍କୁ ବନ୍ଦୀ କରି ଓ ଭାଇମାନଙ୍କୁ ନୃଶଂସ ଭାବରେ ହତ୍ୟାକରି ଦିଲ୍ଲୀ ମସ୍‌ନଦ୍‌ରେ ଆରୂଢ଼ ହୋଇଥିଲେ ଆଲମ୍‌ଗିରି ଆଉରଙ୍ଗଜେବ । ଏହା ଐତିହାସିକ ସତ୍ୟ । କିନ୍ତୁ ଏଥିଲାଗି ଆଉରଙ୍ଗଜେବଙ୍କ ଧର୍ମ ଦାୟୀ ନା ଦାୟୀ ତାଙ୍କର କ୍ଷମତାଲିପ୍‌ସା, ଏ ପ୍ରଶ୍ନ ଅଛିଣ୍ଡା ହୋଇ ରହିଯାଏ ଇଦ୍‌ରିସ୍ ପାଖରେ । ଏକୁଟିଆ ରୁମ୍ ଭିତରେ ପଡ଼ିରହି ସେଦିନ ସେଇ ଅଛିଣ୍ଡା ଗଣିତର ସମାଧାନର ସୂତ୍ର ଖୋଜୁଥିଲା ଇଦ୍‌ରିସ୍ ।

ତହିଁ ପରଦିନ ସକାଳେ ଇଦ୍‌ରିସ୍ ଲେଡିଜ୍ ହଷ୍ଟେଲକୁ ଯିବା ବାଟରେ ସୁବ୍ରତ ସହ ତା'ର ଭେଟହେଲା । ସୁବ୍ରତକୁ ଦେଖିଲାକ୍ଷଣି ଆନନ୍ଦରେ କୁରୁଳି ଉଠିଲା ଇଦ୍‌ରିସ୍ । ସୁବ୍ରତ ପାଇଁ ତ ସେଦିନ ଇଦ୍‌ରିସ୍ ତା' ଜୀବନ ଫେରିପାଇଥିଲା । ସପ୍ତାହେ ଧରି ସୁବ୍ରତ ତା'ର ସେବା କରିଥିଲା ଡାକ୍ତରଖାନାରେ । ତା'ର ସେବା ଓ ସାନ୍ତ୍ୱନା ଫଳରେ ଇଦ୍‌ରିସ୍ ବଞ୍ଚି ଯାଇଥିଲା । ଇଦ୍‌ରିସ୍ ଭଲ ହୋଇଯିବା ପରେ ସୁବ୍ରତହିଁ ତାକୁ ତା'ର ଗାଁକୁ ପଠେଇ ଦେଇଥିଲା ନିରାପଦରେ । ସୁବ୍ରତର ଋଣ କ'ଣ ସେ କେବେ ବି ଶୁଝିପାରିବ ? ଅଗତ୍ୟା ଇଦ୍‌ରିସ୍ ସୁବ୍ରତକୁ କୁଣ୍ଢେଇ ଧରି ଲୁହ ଗଡ଼େଇଲା । କିଛି ସମୟ ପରେ ଇଦ୍‌ରିସ୍ ପଚାରିଲା ସୁବ୍ରତକୁ, ''ଭାଇ, ରାଧାର ଖବର କ'ଣ ?'' ସୁବ୍ରତ ଅନେକ ସମୟ ଧରି ନିରବ ରହିଲା ପରେ କହିଲା, ''ରାଧା, ସେହି ଦଙ୍ଗା ଦିନରୁ ନିଖୋଜ ।''

ଗୋଟେ ଅଝଟିଆ ଶିଶୁ ପରି ଇଦ୍‌ରିସ୍ ବେଶ୍ କିଛି ସମୟ କାନ୍ଦିଲା, ସୁବ୍ରତକୁ ଜାବୁଡ଼ି ଧରି । ଗୋଟେ ପାଗଳ ପରି ପ୍ରଳାପ କରି କହିଲା, ''ସୁବ୍ରତ, ଯୋଉଠି ଥିଲେ ବି ରାଧାକୁ ମୁଁ ନିଶ୍ଚୟ ଖୋଜିଆଣିବି ।'' ସୁବ୍ରତ ଇଦ୍‌ରିସ୍‌ର ଆଖିରୁ ଲୁହ ପୋଛୁପୋଛୁ କହିଲା, ''ରାଧା, ଏ ପୃଥିବୀରେ ଥିଲେ ସିନା ତାକୁ ତୁ ଖୋଜିଆଣିବୁ... ।'' ଏହା ଶୁଣି ଇଦ୍‌ରିସ୍ ଅସମ୍ଭବ ଭାବରେ ନିରବ ହୋଇଗଲା ।

ସେଦିନ ପ୍ରାୟ ମଧ୍ୟାହ୍ନ ବେଳକୁ ଇଦ୍‌ରିସ୍‌କୁ ବସ୍ ଚଢ଼େଇଦେଲା ସୁବ୍ରତ । ନାନାବିଧ ଶବ୍ଦର ପରିସମାପ୍ତି ପରେ ବସ୍ ଚାଲିବା ଆରମ୍ଭ କଲାବେଳକୁ ଇଦ୍‌ରିସ୍‌ର ଆଖି ପୂରା ଭିଜିଯାଇଥିଲା । ବସ୍ ଭିତର ଓ ବାହାରର ପରିବେଶ ଥିଲା ଯଥାସମ୍ଭବ ନିରୁଦ୍‌ବିଗ୍ନ । ଅଥଚ, ବସ୍‌ର ଝର୍କାରେ ଦୃଶ୍ୟମାନ କମନୀୟ ଲ୍ୟାଣ୍ଡସ୍କେପ୍ ବିଷାକ୍ତ ମନେ ହେଉଥିଲା ଇଦ୍‌ରିସ୍‌କୁ ! ବସ୍ ଭିତରର ସହଯାତ୍ରୀମାନେ ତାକୁ ବୋଧ ହେଉଥିଲେ ମଣିଷ ମୁଖାପିନ୍ଧା ପିଶାଚ ଯେମିତି । ଇଦ୍‌ରିସ୍ ଆଖି ବୁଜିଦେଲା, ଅନ୍ତତଃ ଏ ବିଷାକ୍ତ ପୃଥିବୀ ଓ ଜିଘାଂସୁ ମଣିଷମାନଙ୍କଠାରୁ ଟିକିଏ ଦୂରେଇ ରହିବାପାଇଁ । କିନ୍ତୁ ଗୋଟେ ତୀବ୍ର ଯନ୍ତ୍ରଣା ତା'ର ସମଗ୍ର ସତ୍ତାକୁ ଦୋହଲେଇ ଦେଉଥିଲା ଅବା ! ସେ ଭାବୁଥିଲା ଯୋଉ ବିଷବୃକ୍ଷର ପ୍ରକୋପରେ ଆଜି ସମଗ୍ର ଦେଶ ଜର୍ଜରିତ, ସେ ବିଷବୃକ୍ଷର ଚାରାଟି ଏ ମାଟିରେ ରୋପିଥିଲା କିଏ ?

ସେଇ ବସ୍ ଭିତରେ ହିଁ ଇଦ୍‌ରିସ୍ ସ୍ଥିରକଲା ସେ ଫିଜିକ୍ସ ଛାଡ଼ି ହିଷ୍ଟ୍ରୀ ପଢ଼ିବ ।



# କାନ୍ଧ

ଯୋଉ ବାର୍ତ୍ତା ପାଇବେ ବୋଲି ଆଂଜନେୟ ଆଶଙ୍କା କରୁଥିଲେ, ଆଶଙ୍କା କାହିଁକି, ଏକପ୍ରକାର ନିଶ୍ଚିତ ଥିଲେ, ଶେଷରେ ସେ ସେଇ ବାର୍ତ୍ତା ହିଁ ପାଇଲେ– 'ଫାଦର୍ ଏକ୍ସପାୟାର୍ଡ଼' । ସଂକ୍ଷିପ୍ତ ଏଇ ବାର୍ତ୍ତାଟି ଆଂଜନେୟଙ୍କ ଛାତି ଭିତରେ ଗୋଟେ ଆକସ୍ମିକ ଘୂର୍ଣ୍ଣିବାତ୍ୟା ପରି କ୍ଷଣକପାଇଁ ଚକ୍କର କାଟି ଥମ୍ ହୋଇଗଲା ଯେମିତି !

ତାଙ୍କର ମନେପଡ଼ିଲା ଆଦ୍ୟ କୈଶୋରରେ ଥରେ ବାପାଙ୍କ ସହ ସେ ଯାଇଥିଲେ ଅଦୂର ସହରକୁ କାଳୀପୂଜା ଦେଖିବାପାଇଁ । ଏକାଧିକ ସୁସଜ୍ଜିତ ମେଢ଼ ଏବଂ ଚିତ୍ତାକର୍ଷକ ବାଣୁଆଳୀ ଦେଖି ଉଲ୍ଲସିତ ହେବା ସଙ୍ଗେ ସଙ୍ଗେ ବେଳାୟ ହାତୀଘୋଡ଼ା କିଣିବାପାଇଁ ବାପାଙ୍କ ପାଖରେ ଅଳି କରୁଥିବା ସମୟରେ ହଠାତ୍ ବାପାଙ୍କ ହାତରୁ ହୁଗୁଳି ସେ ଛିଟିକି ପଡ଼ିଥିଲେ ଜନସମୁଦ୍ର ଭିତରକୁ । ବାସ୍.. ତା'ପରେ କାଳୀପୂଜାର ସମସ୍ତ ରଙ୍ଗଢଙ୍ଗ ତାଙ୍କୁ ମନେ ହୋଇଥିଲା ବିଷମୟ । ସଜଳ ଚକ୍ଷୁରେ ସେ ବାପାଙ୍କ ପରି ପ୍ରତୀୟମାନ ଅନେକଙ୍କୁ ଭିଡ଼ି ଧରୁଥିଲେ ଆତୁର ହୋଇ, ଅଥଚ ବାପାଙ୍କୁ ପାଇ ପାରୁ ନ ଥିଲେ । ଆଉ ତା'ପରେ, ଭୋ' କରି କାନ୍ଦି ଉଠିଥିଲେ ଅସୁମାରି ଅଚିହ୍ନା ମଣିଷର ସୁଅ ଭିତରେ । ସେଦିନର ସେ ଅସହାୟତା ଫସିଲ୍ ହୋଇଯାଇଚି ସ୍ମୃତିର ପ୍ରସ୍ତ ପ୍ରସ୍ତ ମାଟିତଳେ ।

ଅନେକ.. ଅନେକ ଦିନ ପରେ ଅଗତ୍ୟା ଆଂଜନେୟ ପୁଣିଥରେ ନିଜକୁ ବଡ଼ ଅସହାୟ ମନେକଲେ । କିଶୋରସୁଲଭ କ୍ରନ୍ଦନରେ ମଜ୍ଜି ଯାଉ ଯାଉ ସେ ଅଳ୍ପକେ ଅଟକିଗଲେ ଓ ଅଧ୍ୟାପକ ପ୍ରକୋଷ୍ଠ ବାହାରକୁ ଉଠିଆସିଲେ ଚୁପ୍‌ଚାପ୍ ।

ଜରାଗ୍ରସ୍ତ ବାପାଙ୍କ ଚେହେରା ଆଲବମ୍‌ର ପୃଷ୍ଠାପରି ଫିଟି ପଡୁଥିଲା ତାଙ୍କ ଆଖି ଆଗରେ । କୁଞ୍ଚିତ ଅଥଚ ପ୍ରଶସ୍ତ କପାଳ, କୋଟରଗତ ମାତ୍ର ଉଦ୍ଦୀପ୍ତ ଆଖି, କ୍ଷୀଣ ଅଥଚ ଦୃପ୍ତକଣ୍ଠ ଏସବୁର ସମାହାରରେ ଗୋଟେ ନମ୍ର ଅଥଚ ଅବଦମିତ ବ୍ୟକ୍ତିତ୍ୱ ତାଙ୍କ ବାପା । ସ୍ୱଳ୍ପ ଆୟର ନିଗୂଢ଼ ଗଡ଼ ମଧ୍ୟରେ ସେ ମହାସାମନ୍ତ, ସ୍ୱଳ୍ପ ଶିକ୍ଷା ସତ୍ତ୍ୱେ ଜ୍ଞାନର ଔଜ୍ଜ୍ୱଲ୍ୟରେ ଭାସ୍ୱର ସେ ମହାଗୁରୁ– ଅନେକଙ୍କର ଆଦରଣୀୟ ସାଧୁମାଷ୍ଟ୍ରେ ।

ପନ୍ଦର ଦିନ ତଳେ ସେ ଯେତେବେଳେ ଗାଁକୁ ଯାଇଥିଲେ, ତିନିମାସ କାଳ ବିଛଣାରେ ପଡ଼ିରହିବା ପରେ ବି ବାପା ଦିଶୁଥିଲେ ଯଥାପୂର୍ବ ସତେଜ ଓ ଅବିଚଳିତ । ତାଙ୍କର ଚିର ସହଚର ଚେନାଏ ସ୍ମିତହସ ସେମିତି ଲାଗିରହିଥିଲା ତାଙ୍କ ଶୁଖିଲା ଓଠସନ୍ଧିରେ... କଣ୍ଠରେ ସେହି ସୁଲଳିତ ସ୍ନେହବୋଳା ଅନୁଶାସନର ଅରୁଣିମା 'କିରେ ଅଂଜୁ, ତୋର ସେଠି ସବୁ ଭଲ ତ ? ବୋହୂମା' ଓ ପିଲାମାନଙ୍କୁ ଅଯଥା କଷ୍ଟଦେଇ କାହିଁକି ଆଣିଲୁ ଏଠାକୁ ? ତୋ ବୋଉ ଥିବା ଯାକେ ମୋର କି ଅସୁବିଧା ଯେ? କ'ଣ ହବ ଏତେଗୁଡ଼ା ଫଳମୂଳ ? ଔଷଧ ତ ର୍ୟାକ୍‌ରେ ଥାକମରା ହୋଇଚି, ପୁଣି କ'ଣ ଦରକାର ଥିଲା ଏଣୁତେଣୁ ଟନିକ୍ ଆଣିବାରେ ?'

ଗାଁରେ ଅନ୍ୟୂନ ସପ୍ତାହେ ରହିବା ଲାଗି ମନସ୍ଥ କରିଥିଲେ ଆଂଜନେୟ । ହେଲେ ରହିହେଲା ବା କେଉଁଠି ? ଆଗକୁ ଥିଲା ଅଗଷ୍ଟସ୍‌ର ବୋର୍ଡ଼ ପରୀକ୍ଷା, ଯୋଉଥିପାଇଁ ଆବଶ୍ୟକତାଠାରୁ ଅଧିକ ବ୍ୟସ୍ତ ହେଉଥିଲେ ନବନୀତା । କନ୍‌ଭେଣ୍ଟର ଛାତ୍ରୀ ଫ୍ଲୋରାକୁ ଗାଁ ଜମାରୁ ଭଲ ଲାଗୁ ନ ଥିଲା । ସର୍ବୋପରି ସହର ସହ ଆଜନ୍ମ ଜଡ଼ିତା ନବନୀତାଙ୍କ ପାଇଁ ଗାଁର ସମ୍ଭ୍ରାନ୍ତ ନଡ଼ାଛପର ଘର ଥିଲା ବନବାସତୁଲ୍ୟ ମର୍ମନ୍ତୁଦ । ଗାଁରେ ରହିବାର ତୃତୀୟ ଦିନ ହିଁ ଗାଁରୁ ଫେରିଆସିବାପାଇଁ ନବନୀତା ଆଳ ଦେଖାଇ ଏକପ୍ରକାର ଜିଦ୍‌କଲେ । ବାପାଙ୍କ ପାଦରେ ମୁଣ୍ଡ ଛୁଆଁଇ ସେଦିନ ଗାଁରୁ ଫେରିଲା ବେଳେ ତାଙ୍କ ଆଖିର ଅଦୃଶ୍ୟପୂର୍ବ ଆର୍ଦ୍ରତା ଚମକାଇ ଦେଇଥିଲା ଆଂଜନେୟଙ୍କୁ । 'ହଁ, ତୁ ତୋ କଲେଜକୁ ଯା', ଏଠି ରହି ଆଉ ଅଧିକ କ'ଣ କରିବୁ' ବୋଲି ବୋଉ ଯଦିଓ କହୁଥିଲା, ତେବେ କଣ୍ଠଟା କାହିଁକି କେଜାଣି ତା'ର ଶୁଭୁଥିଲା ଭାରୀ ଭାରୀ ।

ସାନଭାଇ ଅନିର୍ବାଣ ଦୁଇଦିନ ତଳେ ଦିନକପାଇଁ ଗାଁକୁ ଆସି ଫେରିଯାଇଥିଲା, ତା' ଚାକିରିକୁ । ତହସିଲଦାର କି ନା ; ବାପାଙ୍କର ରୋଗ କଥା ବୁଝିବାକୁ ତା'ର ତର ବା କାହିଁ । ତା' ସ୍ତ୍ରୀ ମାଷ୍ଟ୍ରାଣୀ । କୋଡ଼ରେ ପିଲାଟେ । ଦୁଇଶହ କିଲୋମିଟର୍ ଦୂର କୋଉ ଅପନ୍ତରା ଅଞ୍ଚଳରୁ ସେମାନେ କେମିତି ବା ଥରକୁ ଥର ଆସିପାରନ୍ତେ ?

ବାପାଙ୍କ ଅସୁସ୍ଥତା ବିଷୟରେ ଲିଲିଦେଈ ପାଖକୁ ବୋଉ ଚିଠି ଦେଇଚି ବୋଲି କହୁଥିଲା । ସେପର୍ଯ୍ୟନ୍ତ ବି ସେ ଆସି ନ ଥିଲା । ରାଉର୍‌କେଲା କ'ଣ କମ୍ ବାଟ ? ପ୍ଲାଣ୍ଟରେ ଛୁଟି କାହିଁ, ଯେ ଭିଣୋଇଙ୍କ ସାଙ୍ଗରେ ସେ ଆସିବ ! ତା' ଛଡ଼ା ତା' ଝିଅ ପ୍ଲସ୍ ଟୁ ପଢୁଚି । ରାଉରକେଲା ଭଳି ଜାଗାରେ କଲେଜ ପଢୁଆ ଝିଅଟାକୁ ଏକା ଛାଡ଼ି ସେମାନେ ଆସିପାରିବା ଦୁରୂହ ।

ବୋଉ ଆଉ ଯେତେ ବିଶ୍ୱସ୍ତ ହେଲେ ବି ଗୋଟେ ଚାକର ହେପାଜତ୍‌ରେ ବାପାଙ୍କୁ ଛାଡ଼ି କଲେଜକୁ ଫେରିଆସିବାପାଇଁ ଆଂଜନେୟଙ୍କ ମନ କହୁ ନ ଥିଲା । ଅଥଚ ସେ ଫେରିଆସିଲେ ।

ଜୀବ ଥାଉଁ ଥାଉଁ ଡେଣ୍ଟୁ ବାପାଙ୍କ ମୁହଁରେ ଟୋପେ ପାଣି ଦେଇ ହେଲାନି, ଏବେ ଶବ ମୁହଁରେ ନିଆଁ ଦବା ଯାହା ବାକି ରହିଲା ! ଆଂଜନେୟଙ୍କ ଆଖିରୁ ସୁବୃହତ୍ ଦୁଇ ବୁନ୍ଦା ଲୁହ ନିଗିଡ଼ି ପଡ଼ିଲା, ଶେଷ ଜ୍ୟେଷ୍ଠର ପ୍ରଥମ ବାରିପାତ ପରି । ସେ ବସାକୁ ବାହୁଡ଼ି ଆସିଲେ ।

ଟ୍ୟାକ୍ସି ଭଡ଼ା କରି ଗାଁକୁ ଫେରୁଥିବା ସମୟରେ ସଫେଦ ଚଦର ତଳେ ନିର୍ବିକଳ୍ପ ସମାଧିସ୍ଥ ବାପାଙ୍କର ଗୌରତନୁର ଦୃଶ୍ୟ ବାରମ୍ବାର ଧକ୍‌କା ଖାଉଥିଲା ଆଂଜନେୟଙ୍କ ମାନସ ଚକ୍ଷୁରେ । ପରିଚିତ ରାସ୍ତାଘାଟର ଅପରିଚିତ ଲୋକାରଣ୍ୟ ଭିତରେ ଯେମିତି ବାରି ହୋଇପଡୁଥିଲେ ବାପା । ଗାଁ ଯେତେ ପାଖେଇ ଆସୁଥିଲା, ଗହଳ ତୋଟାମାଳ, ତମାଳତାଳ ଛାୟାଚ୍ଛନ୍ନ ଦିଗନ୍ତ ଏମିତିକି ନମ୍ର ମେଘମାଳାର ବୈସାଦୃଶ୍ୟ ଭିତରେ ଭରିରହିଥିବା ପରି ମନେହେଉଥିଲା ବାପାଙ୍କର ପ୍ରଚ୍ଛନ୍ନ ଅସ୍ତିତ୍ୱ ! 'ୟୁଅଲ୍ ଫାଦଲ୍ ଇଜ୍ ଡେଡ୍, ଡ୍ୟାଡ୍', ଫ୍ଲୋରାର ଉଚ୍ଚାରଣରେ ଅନ୍ୟମନସ୍କତାରୁ ଓହ୍ଲାଇ ଆସିଲେ ଆଂଜନେୟ । ମ୍ଳାନ ହସି ଫ୍ଲୋରାର ମୁଣ୍ଡରେ ସସ୍ନେହ ପାପୁଲି ବୁଲାଇ ଆଣିଲେ ।

ଫ୍ଲୋରାର ମୁଣ୍ଡ ଆଉଁଶା ଭିତରେ ଫ୍ଲୋରା ବୟସକୁ ଅବା ଫେରିଯାଉଥିଲେ ସେ, ନିଜ ଅଜାଣତରେ ।

ସେତେବେଳେ ତାଙ୍କ ଗାଁରେ ପ୍ରାଥମିକ ସ୍କୁଲଟେ ବି ନ ଥିଲା । ବାପାଙ୍କ ସାଇକେଲ୍ ଫ୍ରେମ୍ ଉପରେ ବସି ପାଖ ଗାଁ ସ୍କୁଲକୁ ସେ ଯାଉଥିଲେ ପ୍ରତିଦିନ । ଫ୍ରେମ୍ ଉପରେ ପଡ଼ିଥାଏ ବାପାଙ୍କ ଖୋର୍ଦ୍ଧା ଗାମୁଛା ଚାରି ଚଉତା ହୋଇ । ପଛ କାରିଅର୍‌ରେ ବସେ ଲିଲିଦେଈ । ଲିଲିଦେଈର ଯେତେବେଳେ ପଞ୍ଚମଶ୍ରେଣୀ, ସେ ପଢୁଥାନ୍ତି ତୃତୀୟରେ । ବାପାଙ୍କଠୁଁ ମଜା ମଜା ଗପ ଶୁଣୁଶୁଣୁ ବାଟ ସରିଯାଏ, ଜଣାପଡ଼େନି । ସେମାନଙ୍କୁ ସ୍କୁଲ ହତାପାଖରେ ଓହ୍ଲେଇ ଦେଇ ସେ ଆହୁରି ଦୁଇ କିଲୋମିଟର ଆଗକୁ ଯା'ନ୍ତି; ତାଙ୍କ ସ୍କୁଲକୁ । ଗୋଟେ ଅତି ପୁରୁଣା ମଧ୍ୟଇଂରାଜୀ ସ୍କୁଲ, ଯୋଉଠି ସେ ଶେଷ ପର୍ଯ୍ୟନ୍ତ ହେଡ୍‌ମାଷ୍ଟର୍ ଥିଲେ ।

ସ୍କୁଲ ଛୁଟି ହବାର କିଛି ସମୟ ଭିତରେ ପୁଣି ଆସି ପହଞ୍ଚିଯା'ନ୍ତି ବାପା । ତାଙ୍କ ସାଇକେଲ୍‌ରେ ଆଗପଛ ହୋଇ ବସନ୍ତି ସେ ଓ ଲିଲିଦେଈ । ବାଟରେ ବେଣୁ ଦୀକ୍ଷିତ ଦୋକାନରେ ବାପା ଚା' ପିଅନ୍ତି; ଲିଲିଦେଈ ନିମକି ଖାଏ ଓ ସେ ଖାଆନ୍ତି ସିଝା ସୋଲା; କେବେକେବେ ପକୋଡ଼ି ।

ବେଳେବେଳେ ହାଟରୁ ଲିଲିଦେଈ ପାଇଁ ଫୁଲପକା ଫ୍ରକ୍ ଆଣିଦିଅନ୍ତି ବାପା । ଫୁଲପକା ଜାମା ଅନିର୍ବାଣ ପାଇଁ । ତାଙ୍କ ପାଇଁ ଅଣାଯାଏ ଧଳାଜାମା, ନୀଳପେଣ୍ଟ ।

ସେ ଅଝଟ କରି ଜାମାପେଣ୍ଟ ଫିଙ୍ଗିଦିଅନ୍ତି ବୋଉ ଉପରକୁ । ବାପା ବୁଝାନ୍ତି, ଝିଅମାନେ ଓ ଟିକି ପୁଅମାନେ ଫୁଲପକା ପୋଷାକ ପିନ୍ଧନ୍ତି । ସ୍କୁଲକୁ ଯାଉଥିବା ପୁଅମାନେ ନୀଳପେଣ୍ଟ ସାଙ୍ଗକୁ ଧଳାଜାମା ପିନ୍ଧିଲେ ଭଲ ମାନେ । କିଶୋର ଆଂଜନେୟଙ୍କ ମନ କେତେବେଳେ ବୁଝିଯାଏ ତ କେତେବେଳେ ଭାରି ଅଁମାନିଆ ହୁଏ । ଗୋଟେ ନୂଆ ଜାମାପାଇଁ ବାପାଙ୍କଠାରୁ ପ୍ରତିଶ୍ରୁତି ନ ମିଳିବାଯାଏ ସେ ଅଝଟ ଜାରି ରଖେ । କଦବା କେମିତି ସେ ମହାର୍ଘ ପ୍ରତିଶ୍ରୁତି ମିଳଥାଏ ବାପାଙ୍କଠାରୁ !

ବାପା କିନ୍ତୁ ନିଜ ପାଇଁ କଦବା କ୍ୱଚିତ୍ ନୂଆ ଧୋତି ପଂଜାବି କିଣନ୍ତି । ଅନେକ ସମୟରେ ତାଙ୍କ ପଞ୍ଜାବି ରଫୁ କରାଯାଏ । କିନ୍ତୁ ଦିନେ ଛଡ଼ା ଦିନେ ତାଙ୍କ ଧୋତି ପଞ୍ଜାବି ସଫାହୋଇ ସେଥିରେ ନୀଳ ଦିଆଯାଏ । ଘରଠାରୁ ପୋଷାକ ଯାଏ ସେ ସବୁବେଳେ ସଫାସୁତରା ରଖନ୍ତି ।

ଦିନେ ଦିନେ ମାଗୁଣି ଚମାରଠାରୁ ତାଳପତ୍ର ପୁଡ଼ିଆରେ ସାଗୁଆଡି ଆଣନ୍ତି ବାପା । ସେମିତି ଦିନରେ ହିଁ ଚୁଲିମୁଣ୍ଡରେ ଦେଖିବାକୁ ମିଳେ ବାପାଙ୍କୁ । ସେ ନିଜେ ମାଂସ ରାନ୍ଧନ୍ତି, ଉଦ୍ଦିଷ୍ଟ ହାଣ୍ଡିରେ । ରୋଷେଇ ସରିଲା ପରେ କଦଳୀପତ୍ରରେ ବଢ଼ାଯାଏ ଭାତ, ଏକ ବୃହତ୍ ରସପାତ୍ରରେ ମାଂସ । ବାପାଙ୍କ ଚାରିକଡ଼ରେ ଘେରି ବସନ୍ତି ସେ, ଲିଲିଦେଈ ଓ ଅନିର୍ବାଣ । ତରକାରିରୁ ଭଲ ମାଂସ ବାଛି ସେ ଆଗତୁରା ଖୋଇଦିଅନ୍ତି ସମସ୍ତଙ୍କୁ । ନିଜର ଖାଇବା ଉପରେ କେବେ ବି ତାଙ୍କର ଗୁରୁତ୍ୱ ନ ଥାଏ ।

ମୁଖ୍ୟ ରାସ୍ତା ଛାଡ଼ି ଅଣଓସାରିଆ ଘେରିବଂଧରେ ଚାଲିଥାଏ ଟ୍ୟାକ୍ସି । ଭାରି ଅଙ୍କାବଙ୍କା ଘେରିବନ୍ଧ, ନଈ ପରି । ଆଂଜନେୟ ଟ୍ୟାକ୍ସି କାଚ ଦେଇ ଦେଖୁଥିଲେ, ଆଗ ବୁଲାଣିକୁ ଲାଗି ତାଙ୍କର ପୈତୃକ ପାଞ୍ଚ ଏକର ପରିମିତ ଚକ ପାଞ୍ଚମାଣିଆ । ବାପା କହନ୍ତି, ସେଠି ସୁନା ଫଳେ । ଭାରୀ ଭାରୀ ଧାନକେଣ୍ଡାରେ ଲହଲହ ଧାନଗଛର ଦୁର୍ବଳ ଦେହ ଶିର୍ ଶିର୍ ଶୀତୁଆ ପବନରେ ଥରିଯାଏ, ରହିରହି । ମାଘୁଆ ଖରାର  କଅଁଳ ପରଶରେ ପୁଣି ଛାଇନିଦରେ ଶୋଇଯାଏ ପାଚିଲା ଧାନକିଆରି । ରବିବାସରୀୟ ଅଳସ ମଧ୍ୟାହ୍ନରେ କେତେବାର ସେ ବୁଲି ଆସିଚନ୍ତି ବାପାଙ୍କ ସାଙ୍ଗରେ । କୈଶୋରର ସେହି ଝାପ୍ସା ଅଥଚ ନିବିଡ଼ ସ୍ମୃତିର ଦୃଶ୍ୟପଟ ଆଙ୍କି ହୋଇଯାଉଥିଲା ଅବା ସେ ଉଙ୍କୁଡ଼ା କ୍ଷେତର ଭୂଗୋଳ ଖାତାରେ ।

ଆଂଜନେୟଙ୍କ ଭାବନା ତୁଟିଗଲା ସେଇଠି । ଚିହ୍ନା ଡ୍ରାଇଭର୍ ଗାଁ ଦାଣ୍ଡରେ ଟ୍ୟାକ୍ସି ଠିଆ କରିସାରିଥିଲା ।

ଭିଡ଼ ଜମିଥିଲା ଗାଁ ଦାଣ୍ଡରେ । ଶବ ସତ୍କାରର ପ୍ରସ୍ତୁତିପର୍ବ । 'ତୁ ଠିକ୍ ବେଳରେ ଆସି ପହଞ୍ଚିଲୁରେ ଅଂଶୁ, ଅଧିକ ଉଛୁର କରିଥିଲେ ବଡ଼ ତକଲିଫ୍ ହୋଇଥାନ୍ତା । ତା'ଛଡ଼ା କାଲି ରାତିରୁ ତ ତିର୍ଲା, ଛୁଆମାନେ ଓପାସ,' ପାଳଦଉଡ଼ି ବଳୁବଳୁ କହିଲେ ମଧୁକକା ।

ନିରୁତ୍ତରିତ ଭାବେ ଆଂଜନେୟ ଘର ଭିତରକୁ ପଶିଗଲେ ଓ ଦାଣ୍ଡଘର ଖଟ ଉପରେ ଚିତ୍ ହୋଇ ପଡ଼ିଥିବା ବାପାଙ୍କ ମୁଣ୍ଡ ପାଖରେ ବସିଲେ ନିରବରେ; ନବନୀତା ଓ ପିଲାମାନେ ସେମିତି ଠିଆହୋଇ ରହିଲେ । ବନ୍ଦ ହୋଇଯାଇଥିବା ବୋଉର କୋହ ପୁଣି ଉପୁଚି ଉଠିଲା । ନବନୀତା ପଣତରେ ଆଖି ପୋଛୁଥିଲେ । ଅଗଷ୍ଟସ୍‌ର ମୁହଁ ଶୁଖିଯାଇଥିଲା ଏବଂ ପ୍ରଗଲ୍‌ଭା ଫ୍ଲୋରାର ଓଠରେ ଯେମିତି ଲଗାଯାଇଥିଲା ଜଉମୁଦ ।

''ଗାଲରେ ଏମିତି କାହିଁକି ହାତ ଦେଇଚୁରେ ବାପା, ଚିନ୍ତା କରି ଆଉ କ'ଣ ହବ ? 'ସେ କାଳ ବଳେ ସର୍ବେ ଚଳି, ପବନେ ଯେହ୍ନେ ଘନାବଳୀ ।' ସାଧୁଭାଇ ଚାଲିଗଲେ, ମୋର ବି ଯିବାବେଳ ହେଇ ଆସୁଚି । ଖାଲି ଆଗ ପଛ ଯାହା । କୋକେଇ ବନ୍ଧା ସରିଲାଣି । ଆଉ ଡେରିକଲେ ଚଳିବନି'', ମଧୁକକା କହୁଥିଲେ । କଣ୍ଠ ଥିଲା ଭାରୀ ଓ ଆର୍ଦ୍ର ।

ପଡ଼ିଶା ଘରର ଖୁଡ଼ୀ-ବଡ଼ମା'ମାନେ ବୋଉକୁ ଘୋଷାଡ଼ି ନେଉଥିଲେ ବାରିଆଡ଼କୁ । କାଠହଣା ଶବ୍ଦ ଘନେଇ ଆସୁଥିଲା । ବୋଧେ ରାମସେଠୀର ଶକ୍ତିଆ କୁରାଢ଼ି ଚୋଟ ।

ଆଂଜନେୟ ଧୋତି ପିନ୍ଧିଲେ ।

ମଧୁକକା ଓ ଅନ୍ୟମାନେ ବାପାଙ୍କର ଶବକୁ ଉଠେଇ ଥୋଇଦେଲେ କୋକେଇ ଉପରେ । ତା'ପରେ 'ରାମନାମ ସତ୍ୟ ହୈ'ର ଧ୍ୱନି । କୋକେଇ ଉଠିଲା । ଆଗେ ଆଗେ ସଂକୀର୍ତ୍ତନ । ଘର ଭିତରୁ ଭାସିଆସିଲା ସମବେତ କାନ୍ଦଣାର ଲହରୀ । ଆଂଜନେୟ କୋକେଇରେ କାନ୍ଧ ଲଗେଇଲେ ।

ମଶାଣିରୁ ଫେରିଲା ବେଳକୁ ଡେଙ୍ଗା ତାଳଗଛ ଅଗବରଡ଼ାରେ ଲାଖି ରହିଥିଲା କେଇବୁନ୍ଦା ରକ୍ତଅବିର, ଶେଷ ସୂର୍ଯ୍ୟରଶ୍ମି ।

ଗଙ୍ଗାଜଳିଆମାନଙ୍କର ଜଳପାନ ଶେଷ ହେଲାବେଳକୁ ମୁହଁସଂଜ । ସଂଜ ଅନ୍ଧାରର ଛାତି ଚିରି ଜିପ୍‌ଟିଏ ଆସି ଠିଆ ହେଲା ଦାଣ୍ଡ ମଝିରେ । ଅନିର୍ବାଣ ଓ ତା'ର ପିଲାମାନେ ଗାଡ଼ିରୁ ଓହ୍ଲେଇଲେ । ଆଂଜନେୟ ଓ ଅନିର୍ବାଣ ପରସ୍ପରକୁ ଭିଡ଼ିଧରିଲେ ବେଶ୍ କିଛି କ୍ଷଣ । କେବଳ ଭାରୀ ନିଃଶ୍ୱାସ ବାରି ହେଉଥିଲା । ବୋଉର କାନ୍ଦଣା ପୁଣି ହେଲା ଉଚ୍ଚାଟିତ ।

ମଧୁକକା ଓ ଅନ୍ୟ କେତେଜଣ ମୁରବିଙ୍କୁ ଡକାଯାଇଥିଲା ତହିଁ ପରଦିନ ଅପରାହ୍ଣକୁ, କ୍ରିୟା ସଂକ୍ରାନ୍ତୀୟ ଆଲୋଚନା ପାଇଁ । ବେଳ ରତରତ ହେଉଥାଏ, ମଧୁକକାଙ୍କ ପାଟି ଶୁଭିଲା । ଦାଣ୍ଡ ପିଣ୍ଡାରେ ସପ ପାରିଦେଲା ବୋଉ । ସେମାନେ ବସିଲା ପରେ ବୋଉ ଗଲା ପାନ ଭାଙ୍ଗିବାକୁ । ନବନୀତା ଚୁପଚୁପ୍ କରି କହିଲେ ଆଂଜନେୟଙ୍କୁ, 'ବୁଝିଲ, ଏ ଗାଁ ମାମଲତକାରଙ୍କ ସହ ଜଗିରଖି କଥାହବ । ଏଇନେ କ'ଣ ନା କ'ଣ କରିବାକୁ ବରାଦ୍ କରିବେ । ତମେ ଯୋଉଲୋକ ଘର ତିଆରିପାଇଁ ଲୋନ୍ କରିଥିବା ସବୁ ଟଙ୍କା ଏଠି ଉଡ଼େଇ ଦବ । ତା' ଛଡ଼ା ଅନୁ ଯେତେବେଳେ ତହସିଲଦାର, ସେ ବେଶି କିଛି ଖର୍ଚ୍ଚକରୁ ।' ନବନୀତାଙ୍କ ମୁହଁକୁ ଉଦାସ, ବିବଶ ଦୃଷ୍ଟିରେ ଚାହିଁଲେ ଆଂଜନେୟ, ନିରବରେ । ନାରୀ ଚରିତ୍ର ବିଷୟରେ ସେ ଥିଲେ ଅନୁଭୂତିସଂପନ୍ନ । ଶବ୍ଦଟିଏ ବି ଉଚ୍ଚାରିଲେ ନାହିଁ ।

ଆରଘରୁ ବି ସେମିତି ଚୁପିଚୁପି କଥା ଶୁଭୁଥାଏ । ଅନିର୍ବାଣକୁ ସେହିପରି କ'ଣ ବୋଧେ କହୁଚି ତା'ର ସ୍ତ୍ରୀ । ଆଂଜନେୟ ଦାଣ୍ଡକୁ ବାହାରିଲେ । ପାନ ରେକାବି ଧରି ପହଞ୍ଚିଲା ବୋଉ ପଛେପଛେ ଅନିର୍ବାଣ ।

ବାପାଙ୍କର ହିସାବରେ ପୁତୁରା, ମଧ୍ୟବୟସ୍କ କାଳୀଚରଣ, କଳେ ପାନ ଜାକି କହିଲେ, ''ସାଧୁକା'ଙ୍କ ପରି ଜଣେ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ କ୍ରିୟାରେ ଅନ୍ୟୂନ ଶହେ ମୂର୍ତ୍ତି ବ୍ରାହ୍ମଣ ଆପ୍ୟାୟିତ ହବା କଥା ।''

''ତା' ନୁହେଁ କ'ଣ, ସାଧୁଭାଇଙ୍କର ତ ପାଞ୍ଚଖଣ୍ଡ ମୌଜାରେ ନାଁ-ଡାକ । ବ୍ରାହ୍ମଣ ଶହେ ମୂର୍ତ୍ତିଙ୍କ ବାଦ୍, ସାଇପଡ଼ିଶା, ଭଦ୍ରଲୋକ, ପିଲାଛୁଆ ଏମିତି ଅନ୍ତତଃ ଦୁଇହଜାର ଲୋକଙ୍କପାଇଁ ପଙ୍ଗତ ବ୍ୟବସ୍ଥା ବି ହବନା'', କହିଲେ ମଧୁକକା । ବିଶ୍ଵ ମହାନ୍ତି ବୁଢ଼ା, ମଧୁକକାଙ୍କ ଉକ୍ତିରେ ସହମତି ପ୍ରକାଶ କଲେ । କେବଳ ଯାହା ଯୋଡ଼ିଲେ, 'ସାଧୁମାଷ୍ଟ୍ରଙ୍କର ଦୁଇପୁଅ ତ ଧନୁର୍ଦ୍ଧର, ଅଭାବ କ'ଣ ଯେ ସେମାନେ କାଟିହେବେ । ସାଧୁମାଷ୍ଟ୍ରେ ପିଲାମାନଙ୍କପାଇଁ କ'ଣ ନ କରିଚନ୍ତି ନା କ'ଣ ନ ରଖିଚନ୍ତି ।''

ନିମନ୍ତ୍ରଣପତ୍ର ମୁଦ୍ରଣଠାରୁ ଗଙ୍ଗାରେ ଅସ୍ଥି ବିସର୍ଜନ ପର୍ଯ୍ୟନ୍ତ ଯାବତୀୟ ବିଷୟ ଆଲୋଚନା ହେଲା ସେଦିନ । ଲୁଗାପଟା କିଣାଠାରୁ ଧୋବା-ବାରିକଙ୍କ ବିଦାକି ପର୍ଯ୍ୟନ୍ତ କୌଣସି କଥା ବାଦ୍ ଗଲା ନାହିଁ ।

ବିରକ୍ତିରେ ଘରବାହାର ହେଉଥାଏ ଅନିର୍ବାଣ ।

ମୁଣ୍ଡବ୍ୟଥା ପ୍ରକାଶ ନ କରି ମଧୁକକାଙ୍କୁ ସମର୍ଥନ କରୁଥାନ୍ତି ଯାହା ଆଂଜନେୟ । ଚା'ପାନ ସେବନ ପରେ ମୁରବିଗଣ ବିଦାୟ ନେଲାବେଳକୁ ରାତି ପ୍ରହରକୁ ଡେଇଁ

ଯାଇଥାଏ । ରାତିରେ ଭୋଜନ ନିଷିଦ୍ଧ । ବେଳସୁ କ'ଣ ଖାଇ ପିଲାମାନେ ଯିଏ ଯାହା ବିଛଣା ଧରିଯାଇଥିଲେ ।

ସାମୟିକ କ୍ଳାନ୍ତି ମେଣ୍ଟାଇବାପାଇଁ ପଲଙ୍କ ବାଡ଼ରେ ମୁଣ୍ଡ ଢାକି ପଡ଼ିରହିଲେ ଆଂଜନେୟ । ଏତେବଡ଼ କାମଟା କେମିତି ଉଠିବ, ତାହା ଥିଲା ତାଙ୍କର ଏକମାତ୍ର ଚିନ୍ତା । ଲିଲିଦେଈର ବାହାଘରଠାରୁ ଜେଜେମା'ର ଦଶାହ ପର୍ଯ୍ୟନ୍ତ ଯେତେ କାମ ସବୁ ବାପାହିଁ ସମ୍ଭାଳିଥିଲେ । ତାଙ୍କୁ କୌଣସିରେ ମୁଣ୍ଡ ଖେଳେଇବାକୁ ପଡ଼ି ନ ଥିଲା । ଏବେ କିନ୍ତୁ ସ୍ୱତଃ ସବୁ ଲଦି ହୋଇଯାଉଚି ତାଙ୍କ ମୁଣ୍ଡ ଉପରେ । କାମ ନ ସରୁଣୁ ବନ୍ଧୁବାନ୍ଧବଙ୍କ ରାଗରୋଷ ଆରମ୍ଭ ହୋଇଯିବ ହୁଏତ । ତା'ପରେ କୋଉ ଜମି କାହାକୁ ଭାଗରେ ଦିଆଯିବ, କୋଉ ଆମ୍ବତୋଟା କାହା ମାର୍ଫତ୍‌ରେ ଛଡ଼ାଯିବ ସେସବୁ ବ୍ୟାପାର ବି ତୁଟେଇବାକୁ ପଡ଼ିବ । କେତେବେଳେ ପୁଣି ଅଞ୍ଚଳ ଅଫିସ୍‌ରେ କାମ ପଡ଼ିବ ତ କେତେବେଳେ କଚେରିରେ । କେବେ ପୁଣି ଡକରା ଆସିବ ଚକବନ୍ଦୀ ଶିବିରରୁ । ଆଂଜନେୟ ଆକ୍ରାମାକ୍ରା ବୋଧକଲେ ।

ତରବର ହୋଇ ବୋଉ ଆସି ପହଞ୍ଚିଲା ଓ ଲାଇଟ୍ ଜଳେଇଲା । କହିଲା, ''ବୁଝିଲୁନା'ରେ ଅଂକୁ, ଆମ ଚାଳଟା କାହିଁକି ଦବି ଦବି ଯାଉଚିରେ । କେତେ ପୁରୁଣା ଘର ; ଖୁଣ୍ଟସବୁ ବୋଧେ ଦୁର୍ବଳିଆ ହୋଇଗଲାଣି ।'' ପଛେ ପଛେ ଆସି ଅନିର୍ବାଣ ବୋଉ କଥାରେ ହଁ ଭରିଲା । କହିଲା, ''ଦଶାହ ପରେ ମିସ୍ତ୍ରି ଡାକି କାଠଖୁଣ୍ଟ ପରିବର୍ତ୍ତେ, ସିମେଣ୍ଟ ଖୁଣ୍ଟ ବସାଇଲେ ଭଲହେବ ।'' ଆଂଜନେୟ ଏଥିରେ ବିଶେଷ ଆଗ୍ରହ ପ୍ରକାଶ କଲେ ନାହିଁ । 'ଆଗ କାମଦାମ ସରୁ', ଏତିକି କହିଲେ ।

ଅନିର୍ବାଣ ଓ ବୋଉ ଚାଲିଗଲା ପରେ ଆଂଜନେୟ ପୁଣି ଲାଇଟ୍ ଲିଭାଇଲେ । ଭିଡ଼ିମୋଡ଼ି ହେଲେ ଓ ଅନ୍ଧାରରେ ଚାଳକୁ ଚାହିଁଲେ । ତାଙ୍କୁ ଲାଗିଲା, ସତରେ ଯେମିତି ଉଞ୍ଚା ମଥାନଟା ନଇଁ ନଇଁ ଆସୁଚି । ତାଙ୍କ ଆଖି ବୁଜି ହୋଇଗଲା ।

ଖୁଣ୍ଟ ବଦଳାଇବା କଥାଟା କିନ୍ତୁ ତାଙ୍କ ମନକୁ ଆଦୌ ପାଉ ନ ଥିଲା ।

''ଏଡ଼େ ବଡ଼ ଚାଳଟାକୁ ଏଡ଼େ ଦୁର୍ବଳ ମଣିଷଟାର କାନ୍ଧ, ଯାହା ଖୁଣ୍ଟ ହୋଇ ସମ୍ଭାଳିଥିଲା ଏତେଦିନ, ସେ'ତ ଚାଲିଗଲା । ଆଉ କୋଉ ଖୁଣ୍ଟ ତା'ର ସରିହବ, କାଠ ନା ସିମେଣ୍ଟ ? ଚାଳ ଦବିବ ହିଁ ଦବିବ''– ଏମିତି ଏକ ଧାରଣା ଆଂଜନେୟଙ୍କ ଭିତରେ ଯୁଗପତ୍ ହେଉଥିଲା ଘନୀଭୂତ । ସେସବୁର ବାପା ନାମକ ମଣିଷର ତ୍ୟାଗ ଓ ଆତ୍ମବିଶ୍ୱାସର କାନ୍ଧ ଆଗରେ ପୃଥିବୀର କୋଉ ପାହାଡ଼ଟା ଅବା ଭାରୀ ଯେ !



# ଅନେକ ଦିନ ପରେ ବର୍ଷା

ବର୍ଷା ଛାଡ଼ି ଯାଇଥିଲା । ଥମି ଯାଇଥିଲା ଝଡ଼ । ଶୁଭଙ୍କର ଚାଲି ଯାଇଥିଲା । ନିଦରେ କୁଙ୍କୁରିକାଙ୍କୁରି ହେଉଥିଲା ବୁବୁନ୍ । ବିଜୁଳି ନ ଥିଲା । ଗହନ ରାତି, ବହଳ ଅନ୍ଧାର । ଶୂନ୍‌ଶାନ ଚାରିଆଡ଼ । ଘର ଭିତରେ ଯାହା ଗୋଟେ କିରାସିନି ଡିବିରିର ମହଳ ଆଲୁଅ ।

ଭିଜାମାଟିର ଗନ୍ଧ ଚହଟୁଥିଲା ଚଉପାଶ । ଦୀର୍ଘ ବର୍ଷ ପରେ ଏ ବର୍ଷର ଇଏ ପ୍ରଥମ ବର୍ଷା ! ଝଡ଼ ରୂପାନ୍ତରିତ ହେଉଥିଲା ମୃଦୁ ହିଲ୍ଲୋଳରେ । ଥଣ୍ଡା ଥଣ୍ଡା ଲାଗୁଥିଲା ।

ବତୁରି ଯାଇଥିଲା ନୟନିକା ଦେହ, ଠିକ୍ ଓଦାମାଟି ଯେମିତି । ପୁଲକ ମରି ନ ଥିଲା ମନରୁ; ଛାତିରୁ ଲିଭି ନ ଥିଲା ଶୀତ୍କାର । କଦମ୍ବ ବନରେ ବାଟବଣା ହୋଇ ରାହା ଖୋଜୁଥିଲା ନୟନିକା ।

ଯାହା ହବାର ନ ଥିଲା, ହୋଇଗଲା– ଗୋଟେ ପଶ୍ଚାତ୍ତାପ, ପାପବୋଧର ଝଡ଼ ରହି ରହି ଗୁମୁରୁଥିଲା ନୟନିକା ଭିତରେ ।

ପାଞ୍ଚବର୍ଷ କ'ଣ କମ୍ ଗୋଟେ ବ୍ୟବଧାନ ? ଏତେଦିନ ପରେ ମଲା ନଈରେ ପୁଣି ବନ୍ୟା ଆସିବ, ନୟନିକା ଭାବିଥିଲା କି ? ଭାବିଥିଲା କି ବନ୍ୟା କୂଳକିନାରା ମାନେ ନାହିଁ ? ବନ୍ୟା ତ ବନ୍ୟା ! ବର୍ଷାର ଛନ୍ଦ ଓ ଝଡ଼ର ମୂର୍ଚ୍ଛନା ଭିତରେ ନିଜକୁ ଏମିତି ଭୁଲିଯାଇ ହୁଏ ବୋଲି ସେ ଜାଣିଥିଲା କି ? ନ ହେଲେ ଶୁଭଙ୍କରର ଆଶ୍ଲେଷ କାଉଁରୀରେ ସେ ଜ୍ଞାନଶୂନ୍ୟ ହୋଇଯାଇଥା'ନ୍ତା କି, ମହାକାଳକୁ ଉପେକ୍ଷା କରି, ମୁହୂର୍ତ୍ତକ ପାଇଁ ?

ବେଡ୍‌ରୁମ୍‌ରେ ଚନ୍ଦନ-ଚର୍ଚ୍ଚିତ ତାଙ୍କ ଫଟୋ । ସବୁ ଦେଖୁଥିବ ନିର୍ଲିପ୍ତ ସେଇ ଆଖିଯୋଡ଼ିକ ।

ପାଞ୍ଚବର୍ଷ ହେଲା ସେ ଚାଲିଗଲେଣି, ଅଥଚ ତାଙ୍କ ଭାବନାରୁ ପାଞ୍ଚ ମିନିଟ୍ ପାଇଁ ବି ଦୂରେଇପାରିନି ନୟନିକା । ତାଙ୍କର କ'ଣ କେହି ଦ୍ୱିତୀୟ ଥାଇପାରେ ? ଆଃ... କେତେ ଭଲ ପାଉଥିଲେ ସେ ନୟନିକାକୁ । ତା'ରି ପାଇଁ ତ ଘରଦ୍ୱାର ଛାଡ଼ିଲେ; ବାବା, ମା, ସାଇପଡ଼ିଶା, ବନ୍ଧୁବାନ୍ଧବ– ସମସ୍ତଙ୍କୁ ଉପେକ୍ଷା କଲେ; କୁତ୍ସା ଅପବାଦକୁ ଏଡ଼େଇ ଦେଲେ ପାଦରେ ।

ନୟନିକାର ଗାଆଁ ଆଉ ତାଙ୍କ ଗାଆଁ ମଝିରେ ଯାହା, ପାଞ୍ଚ ଖଣ୍ଡ ଧାନବିଲ, ଗୋଟେ ମଶାଣି ଆଉ ଧାଡ଼ିଏ ଡେଙ୍ଗା ତାଳଗଛର ଦୂରତା । ଏ ଗାଆଁରୁ ସେ ଗାଆଁକୁ ଲମ୍ବିଥାଏ ସରୁ ସଳଖ ରାସ୍ତାଟିଏ, ଦୁଇ ଆତ୍ମୀୟ ଶବ୍ଦକୁ ଯୋଡୁଥିବା ହାଇଫାନ୍‌ଟେ ପରି । ଏଇ ରାସ୍ତାରେ ନୟନିକା ତାଙ୍କ ଗାଆଁକୁ ନିତି ଯାଏ ଛାତିରେ ବହିଜାକି । ସେତେବେଳକୁ ତାଙ୍କର କଲେଜ ପଢ଼ିବା ସମୟ । ସେ ଗାଆଁକୁ ଏତେ ଭଲ ପାଉଥିଲେ ଯେ ଯେତେବେଳେ ନାହିଁ ସେତେବେଳେ କଲେଜ ହଷ୍ଟେଲରୁ ଛୁ' ମାରୁଥିଲେ ଗାଆଁକୁ । ଗାଆଁରେ ପହଞ୍ଚିଲାକ୍ଷଣି ସେ ସ୍କୁଲକୁ ହିଁ ଆଗେ ଆସୁଥିଲେ ।

ନୂଆ ଖୋଲିଥିବା ଗାଆଁ ହାଇସ୍କୁଲର ତାଙ୍କ ବାପା ଥିଲେ ସେକ୍ରେଟାରୀ । ଗାଆଁର ପୁରୁଣା ଜମିଦାର ଭାବରେ ତାଙ୍କ ବାପାଙ୍କର ନାଆଁଡାକ ଥିଲା । ତାଙ୍କ ଗୋରା ମୁହଁକୁ ଲମ୍ବା ନିଶ ଭାରି ମାନେ । ତାଙ୍କ ନିଶ ଯେମିତି ଲମ୍ବା, ମନ ସେମିତି ଚଉଡ଼ା । ଜମି ବିକ୍ରି କରି ଗାଆଁରେ ସ୍କୁଲ ଖୋଲିଥିଲେ । ଜମି, ତୋଟା ବିକିବିକି ନିଃସ୍ୱ ହୋଇଯାଇଥିଲେ ବି ତାଙ୍କର ଜମିଦାରୀ ଢାଞ୍ଚା ଯାଇ ନ ଥିଲା ।

ସେକ୍ରେଟାରୀଙ୍କ ପୁଅ ପାଇଁ ସ୍କୁଲର ସବୁ ଦୁଆର ଥିଲା ମୁକୁଳା । ସେ ଲାଇବ୍ରେରୀରୁ ବହି ନିଅନ୍ତି । ମନହେଲେ କ୍ଲାସ୍ ଭିତରକୁ ପଶିଆସି ପିଲାମାନଙ୍କୁ ପାଠ ପଚାରନ୍ତି । ବିଶେଷକରି ଇଂରାଜୀ, ଯାହାକୁ ପିଲାମାନେ ବେଶି ଭୟ କରନ୍ତି । ଦିନେ ଦଶମ ଶ୍ରେଣୀରେ ସେ ପିଲାମାନଙ୍କୁ ଯୋଉ କେତୋଟି ଇଂରାଜୀ ଶବ୍ଦର ଅର୍ଥ ପଚାରିଥିଲେ, ନୟନିକା କେବଳ ସେସବୁର ଠିକ୍ ଉତ୍ତର ଦେଇପାରିଥିଲା । ତା' ପରଠୁଁ ନୟନିକା ସହ ତାଙ୍କର ସମ୍ପର୍କ ଦାନା ବାନ୍ଧିଥିଲା ଓ କଲେଜରେ ସେହି ସମ୍ପର୍କ ହୋଇଥିଲା ନିବିଡ଼ତର ।

ମୁରବିମାନଙ୍କଠାରୁ ଦୂରରେ ରହି କଲେଜରେ ସେମାନେ ବେପରୁଆ ଭାବରେ ମିଳାମିଶା କରିଥିଲେ । ହଷ୍ଟେଲ ସାମ୍ନାରେ, ଲାଇବ୍ରେରୀରେ, କଲେଜ କ୍ୟାଣ୍ଟିନ୍‌ରେ ଗପ କରୁକରୁ ପୂଜା ଛୁଟି ଯାଇ ଗ୍ରୀଷ୍ମ ଛୁଟି ଆସିଯାଉଥିଲା । କଲେଜରେ ସ୍ପ୍ରିଙ୍ଗ୍ ଫେଷ୍ଟିଭାଲ୍ ରାତିର କୋମଳ ଅନ୍ଧାରରେ ତାଙ୍କ ପ୍ରଥମ ଚୁମ୍ବନରେ ବିବଶ ହୋଇଯାଇଥିଲା ନୟନିକା । ମନେ ପଡ଼ିଲେ, ଏବେ ବି ନୟନିକାର ସର୍ବାଙ୍ଗରେ ଧୂଳିଫୁଲ ଫୁଟେ ।

ଗ୍ରାଜୁଏସନ୍ ପରେ ସେ କିରାଣି ହେଲେ, ଫୁଟା ଡଙ୍ଗା ପରି ବୁଡ଼ି ଯାଉଥିବା ଗୋଟେ ଜମିଦାର ପରିବାରକୁ ଆଡ଼ିରେ ଲଗେଇବାପାଇଁ । ଆଉ ଯୁକ୍ତ ଦୁଇ ପରେ ନୟନିକା ଘରେ ରହିଲା ।

ସେ ଭାରି ସାହସୀ, ବେପରୁଆ; କି ପ୍ରେମ କରିବାରୁ ସାହସ ହୋଇଗଲା କେଜାଣି ? ନୟନିକା ବାପାଙ୍କ ମାର୍ଫତରେ ସେ ଚିଠି ଦେଲେ ସହରରୁ । ଚିଠିରୁ ଘରଲୋକେ ସନ୍ଦେହ କଲେ । ସତ ଲୁଚିଲା ନାହିଁ । ଦୁଇ ଗାଆଁରେ ନାଗରା ବାଜିଲା ।

ବାପା, ବୋଉକୁ ବହେ ଗାଳିଦେଲେ । ବାଂଝ ନ ହୋଇ ଗୋଟେ ରାଧାକୁ କାହିଁକି ଜନ୍ମଦେଲା ବୋଲି କହି ତା' ମାତୃତ୍ୱକୁ ଧିକ୍କାରିଲେ । ପୁଣି କହିଲେ, 'ଜମିଦାର ହେଲେ ବି ସେମାନେ ନୀଚ ଜାତି । ପୁରୋହିତର ଝିଅ ଯଜମାନର ପୁଅକୁ ବାହାହେବ ? ଧର୍ମ ସହିବ ନା ? ମୋ ପାଦ ଧୂଳିରେ ତାଙ୍କ ଉଆସ ପବିତ୍ର ହୁଏ । ଗୋସେଇଁ କହି ସେମାନେ ମୋ ପାଦରେ ମୁଣ୍ଡ ଲଗାନ୍ତି । ମୋ ଆଶୀର୍ବାଦରେ ତାଙ୍କର ବଢ଼ତି । ସେହି ଘରକୁ ମୋ ଝିଅ ଯିବ ବୋହୂ ହୋଇ ।' ବୋଉ ଖାଲି କାନ୍ଦିଲା । ବଡ଼ଭାଇ ରକ୍ତଚାଉଳ ଚୋବେଇଲା । ଅପାଠୋଇ ଭାଉଜ ପାଠର ଦୋଷ ଦେଲା ।

ତାଙ୍କ ବାପାଙ୍କ ଜମିଦାରୀ ଆଟୋପ ବି କମ୍ ବିସ୍ଫୋରିତ ହେଲା ନାହିଁ । ସେ କୁଆଡ଼େ କହିଲେ, ''ଗୋସେଇଁ ବ୍ରାହ୍ମଣ ହେଲେ ବି ଭିକାରି । ମୁଁ ଉର୍ଦ୍ଧ୍ୱହାତ ହୋଇ ଟେକି ଦେଉଥିବା ଦାନ-ଦକ୍ଷିଣାରେ ସେ ବଞ୍ଚନ୍ତି । ମୋ ସ୍ତବପାଠ କରିବା ତାଙ୍କର ବୃତ୍ତି । ମୋ ଜାଗିରି ଜମିରେ ତାଙ୍କ କୁଡ଼ିଆ । ମୋ ଦିନକ ପାନଖର୍ଚ୍ଚରେ ତାଙ୍କର ମାସକ ଚଳଣି । ସେଇ ଦୁଃସ୍ଥ ଗୋସେଇଁର ଝିଅ ହବ ମାନ୍ଧାତା ଖାନ୍‌ଦାନ୍‌ର କୁଳବଧୂ ?''

ବାପା ତାଙ୍କ ଘରକୁ ଆଉ ପୂଜା କରି ଗଲେ ନାହିଁ । ବଳୀକକାଙ୍କୁ କାମ ଚଳେଇବା ପାଇଁ ପଠେଇଲେ । ସଂସ୍କୃତରେ ଶ୍ଳୋକ ଗାଇ ବୁଲିଲେ, ଉଦୟତି ଯଦି ଭାନୁ ପଶ୍ଚିମେ ଦିକ୍ ବିଭାଗେ, ବିକଶତି ଯଦି ପଦ୍ମଂ ପର୍ବତାନାଂ ଶିଖାଗ୍ରେ.... ତଥାପି ମାନ୍ଧାତା ଘରେ ବନ୍ଧୁ ବାନ୍ଧିବା ଅସମ୍ଭବ । ତାଙ୍କ ବାପା ବି କହିଦେଲେ, କ୍ଷତ୍ରୀ ମୁହିଁ, କ୍ଷାତ୍ର ବାକ୍ୟ ନୋହିବ ଅନ୍ୟଥା ।

ଗାଆଁ ମାଇପିଏ ନଈତୁଠରେ ତ ଟୋକାଏ ଛକରେ ବାବଦୂକ ସାଜିଲେ । ବୟସ୍କ ମିଣିପେ ମାଳିକା ଗାଇଲେ ।

ସେ ଆଉ ଡାକରେ ଚିଠି ଦେଲେନି । ଗାଆଁକୁ ଆସି ଲୁଚେଇ ଲୁଚେଇ ଚିଠି ପଠେଇଲେ । ଲେଖିଲେ, ବ୍ୟସ୍ତ ହବନି । ଟହଟହ ସୁନା ଆମ୍ବକୁ ଚଞ୍ଚୁରେ ଧରି ମୁଁ କେତେବେଳେ ଉଡ଼ିଯାଇଥିବି, କେହି ଜାଣିପାରିବେନି ।

ସେ ଯାହା କହିଥିଲେ, ତାହାହିଁ କଲେ ।

ସେଦିନ ଗାଆଁ ମୁଣ୍ଡ ମେଲଣ ପଡ଼ିଆରେ ଅପେରା ହେଉଥିଲା । ଠାକୁର ବିମାନ ସବୁ ଧାଡ଼ି ହୋଇ ବସି ସାରିଥିଲେ । ହରରଙ୍ଗୀ ଦୋକାନରେ ମେଲଣ ପଡ଼ିଆ ଉଚ୍ଛୁଳୁ ଥିଲା । କେତେ ଚିହ୍ନା ଅଚିହ୍ନା ଲୋକଙ୍କର ଭିଡ଼ ଜମିଥିଲା । ଗାଆଁ ଝିଅମାନଙ୍କ ସାଙ୍ଗରେ ସିଏ ବି ଯାଇଥିଲା ଅପେରା ଦେଖି ।

ଜାଣି ଜାଣି ସେ ମଞ୍ଚଠାରୁ ଦୂରେଇ ବସିଥିଲା । ଅନ୍ଧାରିଆ ଜାଗାରେ । ପୂର୍ବ ଯୋଜନା ମୁତାବକ, ଅପେରା ଅଧାଅଧି ହେଲା ବେଳକୁ ସେ ଆସି ପହଞ୍ଚିଯାଇଥିଲେ । ସେଠୁ ଦୁହେଁ ମଝି ବିଲରେ ଚାଲିଚାଲି ପାହାନ୍ତାକୁ ପହଞ୍ଚିଥିଲେ ପାଖ ଷ୍ଟେସନରେ ଓ ମେଲ୍ ଧରିଥିଲେ ।

ସହରରେ ପହଞ୍ଚି ସେହିଦିନ ତାଙ୍କର ବାହାଘର ହେଇଥିଲା ଦେବୀ ମନ୍ଦିରରେ ।

ଖବର ପାଇ ତାଙ୍କ ବାପା ସହରକୁ ଆସିଥିଲେ । ବାହାଘର ସରିଥିବା ଜାଣି ସେ ନିଆଁବାଣ ହୋଇଗଲେ । ପରେ ତାଙ୍କୁ ତ୍ୟାଜ୍ୟପୁତ୍ର କଲେ । ଆଉ ନୟନିକାର ବାପା ବି ଝିଅମୁହଁ ଚାହିଁବେନି ବୋଲି ସୂର୍ଯ୍ୟଙ୍କୁ ସାକ୍ଷୀ ରଖି ପ୍ରତିଜ୍ଞା କରିଥିଲେ ।

ନୟନିକାର ଦମ୍ଭ କିନ୍ତୁ ଭାଙ୍ଗି ନ ଥିଲା ।

ତାଙ୍କ ଗହଣରେ ଜୀବନ ଥିଲା ଭରପୂର, ଶ୍ରାବଣର ନଈଟେ ପରି । ପ୍ରତିମାସ ବେତନରୁ କିଛି କିଛି ସଂଗ୍ରହ କରି, ସେ ଛୋଟ ଘରଟିକୁ ଆସବାବପତ୍ରରେ ପୂର୍ଣ୍ଣ କରିଥିଲେ । ନୟନିକା ନିଜ ହାତରେ ଘରଟିକୁ କେଡ଼େ ଯତନରେ ସଜେଇଥିଲା । ଶାଢ଼ି, ଗହଣା, ପ୍ରସାଧନ– କୋଉଥିରେ ତା'ର ଅଭାବ ନ ଥିଲା କେବେ । ତାଙ୍କର ଅବଶ୍ୟ କିରାଣି ଚାକିରିକୁ ସ୍ୱଳ୍ପ ବେତନ । ସ୍ୱଚ୍ଛଳତା ନ ଥିଲା । ହେଲେ, ପ୍ରେମର ପ୍ରାଚୁର୍ଯ୍ୟ ଭିତରେ ଛୋଟମୋଟ ଅଭାବ ସବୁ କାହିଁ କୁଆଡ଼େ ଲୁଚି ଯାଉଥିଲା ।

ବର୍ଷକ ପରେ ବୁବୁନ୍ ଆସିଥିଲା ତାଙ୍କ ସଂସାର ଭିତରକୁ ସ୍ୱପ୍ନର ଗୋଟେ ମାଇଲ୍‌ଖୁଣ୍ଟ ପରି । ତା'ରି ଆଗମନରେ ବର୍ଷକ ତଳର ତିକ୍ତତା ଦୁଃସ୍ୱପ୍ନ ପରି ଆସ୍ତେ ଅପସରି ଯାଉଥିଲା । ଶ୍ୱଶୁରଙ୍କ ମନରୁ ପୁରୁଣା ରାଗ ସବୁ ଉଭେଇ ଯାଇଥିଲା । ନିଜେ ନ ଆସିଲେ ବି ଶାଶୂଙ୍କୁ ପଠେଇଥିଲେ ବୁବୁନ୍‌ର ଏକୋଇଶିଆ ବେଳକୁ । ମଝିରେ ମଝିରେ ଦିଅର ବି ଆସୁଥିଲେ । ଗାଆଁରୁ ତା' ବାପାଙ୍କ ମନୋଭାବ ବି ବଦଳି ଯାଇଥିଲା । ଭାଇ ଆସି ବୁବୁନ୍‌ର ଜନ୍ମ ଲଗ୍ନ ଟିପିନେଇଥିଲା, ବାପା ନିଜେ ଗଣନା କରି କୋଷ୍ଠୀ କଷିବେ ବୋଲି । ଆଉ ୟାଙ୍କ ଖୁସି ତ କହିଲେ ନ ସରେ । କରଜ କରି ଏକୋଇଶିଆ ପୂଜା ଧୁମ୍‌ଧାମ୍‌ରେ କରିଥିଲେ । ତାଙ୍କ ପରି କିରାଣି ନ ହୋଇ ପୁଅ ତାଙ୍କର ବଡ଼ ହାକିମ ହବ ବୋଲି କହୁଥିଲେ ।

ଅକସ୍ମାତ୍ ସ୍ୱପ୍ନସବୁ ଏମିତି ବୃନ୍ତଚ୍ୟୁତ ହେବ ବୋଲି କିଏ ବା ଭାବିଥିଲା ।

ମାର୍ଚ୍ଚ ମାସରେ ଅଫିସ୍‌ର ଯୋଉ ବ୍ୟସ୍ତତା, ସେଥିରେ ସେ କାମ ସାରି ସେଦିନ ଫେରିଲା ବେଳକୁ ରାତି । ସାଇକେଲ ଚଢ଼ି ହାଇୱେ କ୍ରସ୍ କଲାବେଳେ ଟ୍ରକ୍ ଚକ ତଳେ.. ନୟନିକା ଆଉ ଭାବିପାରିଲା ନାହିଁ । କିନ୍ତୁ ବୀଭତ୍ସ ସେ ସ୍ମୃତିରୁ ନିସ୍ତାର ନ ଥିଲା ତା'ର । ସେ ଭୟରେ ଥରିଲା ଓ ବୁବୁନ୍ ଉପରେ ପଣତ ଢାଙ୍କି ଶୋଇବାକୁ ଚେଷ୍ଟା କଲା । ତା' ସତ୍ତ୍ୱେ ତା' ଦେହରୁ ଝାଳ ବୋହୁଥିଲା ଅବିରତ । ନିଦ ହେଉ ନ ଥିଲା ଜମା ।

ସେ ଚାଲିଗଲେ ନାହିଁ ଯେ କାଗଜଡଙ୍ଗାଟାକୁ ନଈରେ ଭସେଇ ଦେଇଗଲେ । ତରଳି ଯାଉଥିବା ଶ୍ୱଶୁରଙ୍କ ମନ ପୁଣି ପଥର ପାଲଟିଗଲା । ଶାଶୂ କହିଲେ, 'ଅଲକ୍ଷଣୀ, ମୋ ପୁଅକୁ ଖାଇଲୁ ।' ବୋଉ ଯାହା କାନ୍ଦି କାନ୍ଦି ଆଖି ଫୁଲେଇଲା । ବାପା ଭାଇ ଚୋର ମା' ପରି ଆଖି ମଳିମଳି ହେଲେ । ସାଇପଡ଼ିଶାଙ୍କ ମୁହଁରେ ବାଡ଼ବତା ରହିଲା ନାହିଁ ।

ଦଶାହର ସପ୍ତାହେ ପରେ ବୁବୁନ୍‌କୁ ଧରି ନୟନିକା ଫେରିଆସିଥିଲା ସରକାରୀ କ୍ୱାର୍ଟର୍ସକୁ । ସାଙ୍ଗରେ ବି ଆସିଥିଲେ ବାପା, ବୋଉ । କେତେ ଆପଣାର ସେଇ କ୍ୱାର୍ଟର୍ସ ଲାଗୁଥିଲା ଭାରି ଶୂନ୍‌ଶାନ । ଯେମିତି ମଶାଣି । ବ୍ୟସ୍ତ କଲୋନୀର ଗହଳ ଚହଳ ବି କାନରେ ପଡୁଥିଲା । ବାପା ଫେରିଯାଇଥିଲେ ଦିନକ ପରେ । ବୋଉ ମାସେ ଖଣ୍ଡେ ପାଖରେ ରହିଥିଲା । ଭାଇ, ଚାକିରିର କାଗଜପତ୍ର ଯୋଗାଡ଼ କରିଥିଲା । ଅଫିସର୍ ଓ ଷ୍ଟାଫ୍‌ମାନଙ୍କ ସହୃଦୟତାରୁ ମାସକ ପରେ ସେ ତାଙ୍କ ଅଫିସ୍‌ରେ ଜଏନ୍ କଲା । ବୋଉ ଗଲା ପରେ ଗାଆଁରୁ ବୁଢ଼ୀଟିଏ ଆସି ପାଖରେ ରହୁଥିଲା । ଅଫିସ୍ ସମୟରେ ବୁବୁନ୍‌ର ଦାୟିତ୍ୱ ସମ୍ଭାଳୁଥିଲା । ପ୍ରଥମେ ବୁଢ଼ୀ ଭାରି ନିଜର ହୋଇ ରହିଲା । କିଛି ଦିନ ପରେ ସବୁ କଥାରେ ଖୁଣ କାଢ଼ିଲା । ବିଦାହୋଇ ଗାଆଁକୁ ଚାଲିଗଲା । ଚାକର ପିଲାମାନେ ବି ସେମିତି କେତେ ଗଲେଣି ।

ପରେ ପରେ ଅଫିସରଙ୍କ ବଦଳି ହେଲା । ପାଖ କ୍ୱାର୍ଟର୍ସରୁ ପୁରୁଣା ଲୋକ ଗଲେ, ନୂଆ ଲୋକ ଆସିଲେ । ଷ୍ଟାଫ୍‌ମାନଙ୍କର ବି ଅଦଳବଦଳ ହେଲା । ସମୟ ଗଡ଼ି ଚାଲିଲା ବେଳକୁ ତା'ପ୍ରତି ଅନ୍ୟମାନଙ୍କର୍ ସମ୍ବେଦନଶୀଳତା ହାଲୁକା ହୋଇଆସିଲା । ଘର ଲୋକଙ୍କ ଆସିବା କମିଗଲା । ଚିଠିପତ୍ର ବିଳମ୍ବିତ ହେଲା । ଘରେ ବାହାରେ, ଯୋଉ ଖାଁ ଖାଁକୁ ସେଇ ଖାଁ ଖାଁ ।

ନୟନିକା ଦୈନିକ ଅଫିସ୍ ଯାଏ, ବୁବୁନ୍‌କୁ ନର୍ସରୀ ସ୍କୁଲକୁ ପଠାଏ । ରାନ୍ଧେ, ଖାଏ । ଅଫିସ୍‌ରେ ଚା' ପିଏ । ଗପ କରେ, ପତ୍ରିକା ପଢ଼େ । ଟି.ଭି. ସିରିଏଲ୍ ଦେଖେ । କେବେ କେବେ ସିନେମା ବି ଯାଏ । କିନ୍ତୁ ଭିତରେ ଭିତରେ ଗୋଟେ ଅସହାୟ ଭାବ ତାକୁ ଘାରେ । ଅଫିସ୍‌ରେ ଏତେ ଷ୍ଟାଫ୍, କଲୋନୀରେ ଏତେ ଲୋକ, ବଜାରଘାଟରେ ଏତେ ଭିଡ଼– ଏସବୁ ସତ୍ତ୍ୱେ ନୟନିକା ନିଜକୁ ଭାରି ଏକୁଟିଆ ମନେକରେ, ଯେମିତି ତା' ଆଗରେ ପଛରେ ସବୁଆଡ଼େ ଖାଲିଗୋଟେ ବୁକୁଫଟା ନିରବତା ।

ଅଫିସ୍‌ରୁ ଫେରିଲା ପରେ ଆଉ ବୁବୁନ୍‌କୁ ପଢ଼େଇ ପାରେନି ନୟନିକା । ବୁବୁନ୍ ପାଇଁ ତେଣୁ ଟ୍ୟୁସନ୍ ମାଷ୍ଟରଟେ ଯୋଗାଡ଼ କରିବାପାଇଁ ସେ ଅଫିସ୍‌ର ଷ୍ଟାଫ୍ କେତେଜଣଙ୍କୁ କହିଲା ।

ଏମ୍.ଏ. ପାସ୍ ପରେ ସେଇ ସହରରେ ଚାକିରି ଅନ୍ୱେଷଣରେ ଥିବା ଶୁଭଙ୍କର ଆସିଲା ବୁବୁନ୍‌ର ଟ୍ୟୁସନ୍ ମାଷ୍ଟର ହୋଇ । ଶୁଭଙ୍କର ଭାରି ଲାଜକୁଳା ମନେହୁଏ । କମ୍ କଥା କହେ । ଅନେକ ସମୟରେ ଅନ୍ୟମନସ୍କ ରହେ । କାହାସହ ମିଶିପାରେନି ସହଜରେ । ପ୍ରଥମେ ପ୍ରଥମେ ସେ ତ ଜମାରୁ କଥା କହୁ ନ ଥିଲା । ଚୁପ୍‌ଚାପ୍ ବୁବୁନ୍‌କୁ ପଢ଼େଇ ସାରି ଚାଲିଯାଉଥିଲା । ଚା' କପେ ବି କୁଣ୍ଠାରେ ପିଉଥିଲା । କମ୍ ଦିନ

ଭିତରେ କିନ୍ତୁ ବଦଳି ଯାଇଥିଲା ଶୁଭଙ୍କରର ସ୍ୱଭାବ । ସେ ବୁବୁନ୍‌କୁ ମିଠାମିଠା ଗପ କହୁଥିଲା । କୋଳରେ ବସେଇ ଗେହ୍ଲା କରୁଥିଲା । ସାର୍ଟରେ ମଇଳା ଲାଗିଥିଲେ, ଝାଡ଼ି ଦେଉଥିଲା । ବୁବୁନ୍ ବି ଭାରି ଆଦରିଥିଲା ତାକୁ ।

ମାସ କେତୋଟି ଭିତରେ ସେ ନୟନିକାର ଛୋଟ ପରିବାରର ଜଣେ ସଦସ୍ୟ ପାଲଟିଗଲା ଯେମିତି । ଗପସପ, ହସଖୁସିରେ ଭାଗ ନେଲା । ଓଷାବାରରେ ଖାଇବାକୁ ଆପତ୍ତି କଲା ନାହିଁ । ବୁବୁନ୍‌ର ପାଠପଢ଼ା ଛଡ଼ା, କେତେବେଳେ କେମିତି ବାହାରିଆ କାମଟେ କରିଦବାକୁ ପଛେଇଲା ନାହିଁ ।

ଶୁଭଙ୍କର ଆସିବା ଦିନଠୁ ନୟନିକା ମନରୁ କାହିଁକି କେଜାଣି ପୂର୍ବରୁ ସେ ଏକୁଟିଆ ଭାବ ଆସ୍ତେ ଆସ୍ତେ ଘୁଞ୍ଚିଯାଉଥିଲା, ସକାଳର ଝାପ୍‌ସା କୁହୁଡ଼ି ପରି ।

ଏବେ ସଂଜ ହେଲାକ୍ଷଣି ଗେଟ୍ ଖୋଲିବାର ଶବ୍ଦ ହୁଏ ଓ ସାଇକେଲ୍‌ଟିଏ ଷ୍ଟାଣ୍ଡ କରାଯାଏ । ନୟନିକା ପ୍ରତି ସଂଜର ଏଇ ପରିଚିତ ଶବ୍ଦକୁ କେମିତି ଗୋଟେ କାନେଇଥାଏ । ପର୍ଦା ଟେକି ବାହାରକୁ ଚାହେଁ । ପଛଆଡୁ ଶୁଭଙ୍କର ତାଙ୍କ ପରି ଲାଗେ । ନୟନିକାର ମନ ମୁହୂର୍ତ୍ତକ ପାଇଁ ହେଲେ ବି ଚହଲିଯାଏ !

ଟ୍ୟୁସନ୍ ଅଙ୍କଲ୍ ଆସିଲେ ବୋଲି କହି ବୁବୁନ୍ ବହେ ନାଚେ ।

ବୁବୁନ୍‌ର ପଢ଼ା ସମୟରେ କେବେ କେମିତି ନୟନିକା ଡ୍ରଇଂରୁମ୍‌ରେ ବସିପଡ଼େ । ଅନ୍ୟମନସ୍କତାର ସୁଯୋଗ ନେଇ ଶୁଭଙ୍କରକୁ ସାମ୍ନାରୁ ଚାହେଁ । ଶୁଭଙ୍କରର ମୁହଁଟା ହଠାତ୍ ତାଙ୍କ ମୁହଁରେ ରୂପାନ୍ତରିତ ହୋଇଯାଏ ଯେମିତି । ମଗ୍ନ ହୋଇଯାଏ ନୟନିକା । ଧରା ପଡ଼ିଯାଇଥିବ ଥରେ ଅଧେ । ନିଜକୁ ଫେରିପାଇ ସେ ଲଜ୍ଜିତ ହୁଏ, ଦୃଷ୍ଟି ନୁଆଁଏ ।

ଶୁଭଙ୍କର ସ୍ୱଭାବତଃ ଅନ୍ୟମନସ୍କ ନା ଏଠାକୁ ଆସିଲେ ତାକୁ ଅନ୍ୟମନସ୍କତା ଗ୍ରାସେ, ଏପରି ଏକ ରୁକ୍ଷ ପ୍ରଶ୍ନବାଚୀ ବେଳେବେଳେ ନୟନିକା ମନ ଭିତରେ ଲହଡ଼ି ଭାଙ୍ଗେ । ଆଉ ସେଇସବୁ ଅବାନ୍ତର ଚିନ୍ତା ସବାର ହବାର ଉପକ୍ରମ ହେଲାକ୍ଷଣି ନୟନିକା ରୋଷେଇଘରକୁ ପଶିଯାଏ ଓ ଚା' କରିବାରେ ମନ ଦିଏ ।

ଏମିତି ସବୁ ତୁଚ୍ଛ ଗତାନୁଗତିକତା ଭିତରେ ଯେ ଅହେତୁକ ଏକ ଆକର୍ଷଣର ଚାରା କଅଁଳି ସାରିଥିଲା, ନୟନିକା ଜାଣିପାରି ନ ଥିଲା ମୁହୂର୍ତ୍ତ କେତୋଟି ଆଗରୁ ।

ସ୍କାଏଲାଇଟ୍ ରନ୍ଧ୍ର ଦେଇ ସକାଳର ସୁନାଖରା ବେଡ୍‌ରୁମ୍ କାନ୍ଥରେ ଗୋଟେ ମଡର୍ଣ୍ଣ ଆର୍ଟର ସ୍କେଚ୍ ଆଙ୍କିବା ପର୍ଯ୍ୟନ୍ତ ବି ନୟନିକାର ଆଖିଥିଲା ତଂଦ୍ରାଶୂନ୍ୟ ।

ସେ ଧଡ଼ପଡ଼ ହୋଇ ଉଠିଲା ଓ କବାଟ ଖୋଲି ବାହାରକୁ ଗଲା । ଝଡ଼ବିଧ୍ୱସ୍ତ କଲୋନୀର ଭୂଗୋଳ ଦିଶୁଥିଲା ଅସମ୍ଭବ ଭାବରେ ଦୟନୀୟ । ନୟନିକାକୁ ଭାରି

ଡର ଲାଗିଲା । ସେ ମୁହଁ ଧୋଇ ନିଜକୁ ଦର୍ପଣରେ ଦେଖିଲା । ସବୁ ଠିକ୍ ଥିଲା ତ ? କିନ୍ତୁ ତା' ନିଜ ମୁହଁ କାହିଁକି କେଜାଣି ତାକୁ ଭାରି ଅସ୍ୱାଭାବିକ ମନେହେଲା ।

ବୁବୁନ୍ ଉଠି ବାହାରକୁ ଗଲା । ପରିସ୍ରା କଲା । ମୁହଁ ଧୋଇ ସାରି ନୟନିକା କାନରେ ମୁହଁ ଲୁଚେଇଲା ଅଭିମାନରେ ।

କ'ଣ ହେଲା କି ବୋଲି ନୟନିକା ପଚାରିବାରୁ ବୁବୁନ୍ କହିଲା, 'ମୁଁ ଆଜିଠୁଁ ଟ୍ୟୁସନ୍ ଅଙ୍କଲଙ୍କ ସାଙ୍ଗରେ କଥା ହେବିନି ।'

'କାହିଁକି ?' ନୟନିକା ଦୋହରା ପ୍ରଶ୍ନ କଲା ।

'କାଲି ରାତିରେ ସେ ତୋ ମୁଣ୍ଡରେ ହାତରଖି ଗେଲ କଲେ, ବୋକ ଦେଲେ, କିନ୍ତୁ ମୋତେ... ?' ବୁବୁନ୍ କହୁକହୁ ଅଟକିଗଲା । ନୟନିକାର ପାଦତଳର ମାଟି ଧସିପଡ଼ିଲା ଯେମିତି ! କୌଣସି ପ୍ରକାରେ ନିଜକୁ ସମ୍ଭାଳି ନୟନିକା କହିଲା, 'ଆରେ ପାଗଳା, ତୁ ତ ଢୁଳୋଉଥିଲୁ; ଟ୍ୟୁସନ୍ ଅଙ୍କଲ୍ ଝଡ଼ବର୍ଷା ନ ମାନି ପରା ତାଙ୍କ ବସାକୁ ପଳେଇଲେ ।''

'ତମେ ମିଛ କହୁଚ ମମ୍ମି', ବୁବୁନ୍ ଅଭିଯୋଗ କରୁଥିବାବେଳେ 'କ'ଣ ସବୁ ତୁ ସ୍ୱପ୍ନରେ ଦେଖିଥିବୁ', ବୋଲି ଭାରି ସଂକ୍ଷେପରେ କହିଲା ନୟନିକା ।



# ଅଥଚ ଅନ୍ତରଙ୍ଗ

ବିଜୟାନନ୍ଦରୁ ବିଜୁ, ସଚ୍ଚିଦାନନ୍ଦରୁ ସଚ୍ଚି ଅଥବା ଦ୍ୱୈପାୟନରୁ ଦୀପୁ ପରି ହାତଗଣତା କେତୋଟି ନାଁକୁ ବାଦ୍‌ଦେଲେ, ବାକି ଶହେରୁ ଅନେଶତ ନାଁର ଡାକନାଁ ଅସମ୍ଭବ ଭାବରେ ବିକୃତ ଏବଂ ବିରକ୍ତିକର । ଯେମିତି ପୁରୁଷୋତ୍ତମରୁ ପୁରିଆ, ପାତଞ୍ଜଳିରୁ ପାତିଆ, ତ୍ରୈଲୋକ୍ୟନାଥରୁ ତଉଲା ବା ପଞ୍ଚାନନରୁ ଖାସା ପଚା । ଅବଶ୍ୟ, କୌଣସି କୌଣସି କ୍ଷେତ୍ରରେ ଏକ ମାର୍ଜିତ ନାମ ସହ ଯୋଡ଼ା ଯାଇଥାଏ ଅନ୍ୟ ଏକ ସଂଭ୍ରାନ୍ତ ଡାକ ନାଁ ।

ପୁଣି ସ୍ଥଳ-ବିଶେଷରେ ମଧ୍ୟ ଏକ ଅପରିଚ୍ଛନ୍ନ ଡାକନାଁ ରେକର୍ଡ଼ପତ୍ରରେ ଗୃହୀତ ହୋଇଥାଏ ଭଲନାଁ । ଭାବରେ । ଏମନ୍ତ ନାଁଟିକୁ ଅଜାଗା ଘା'ପରି ଦେଖେଇ ହୁଏନି କି ଲୁଚେଇ ହୁଏନି । ଗେଣ୍ଡୁଆବାବୁଙ୍କର ଇଦାନୀନ୍ତନ ଅବସ୍ଥା ତଦ୍ରୂପ ।

ରାଜ୍ୟ ସଚିବାଳୟର ଅର୍ଥବିଭାଗ ଅଧୀନସ୍ଥ ପେନ୍‌ସନ୍ ଉପବିଭାଗରେ କାର୍ଯ୍ୟରତ ଯୁବ କନିଷ୍ଠ କିରାଣି ଗେଣ୍ଡୁଆ ସାହୁ, ନିଜ ନାଁଟି ପାଇଁ ହିଁ ଅନେକ ସମୟରେ ଲଜ୍ଜାବୋଧ କରନ୍ତି; ଏପରିକି ସ୍ୱକୀୟ ଶାରୀରିକ ସୌନ୍ଦର୍ଯ୍ୟ ତଥା ଆର୍ଥିକ ସ୍ୱଚ୍ଛଳତା ସତ୍ତ୍ୱେ ନିଜକୁ ବଡ଼ ଅସହାୟ ମଣନ୍ତି । ଟାଆଁଶିଆ ଶଁବାଳୁଆ ସମ ନାଁଟିର ଆଭରଣ ଭେଦି ସେ କ'ଣ ଗୋଟେ ରଙ୍ଗରଙ୍ଗିଆ ପ୍ରଜାପତି ତୁଲ୍ୟ ନାଁରେ ରୂପାନ୍ତରିତ ହୋଇ ପାରନ୍ତେ ନାଇଁ– ଏମିତିକା ପ୍ରଶ୍ନବ୍ୟାଧିରେ ସେ ବେଳେବେଳେ ପୀଡ଼ିତ ହୁଅନ୍ତି । କିନ୍ତୁ କେମିତି ବା ଏ ଆବାଲ୍ୟ ବିଜଡ଼ିତ ପୈତୃକ ନାଁଟିକୁ ଉଜେଇଁ ଦେଇ ହବ? ସୁତରାଂ ଗେଣ୍ଡୁଆବାବୁ ଅନନ୍ୟୋପାୟ ହୋଇ ମଧ୍ୟେ ମଧ୍ୟେ କାନ୍ଦିପକାନ୍ତି । ଏବଂ ସେ କାନ୍ଦିଲାକ୍ଷଣି ହିଁ ଶୈଶବର ସ୍ମୃତି ତାଙ୍କୁ ହଲାପଟା କରେ ।

ଆଖି ସାମ୍ନାରେ ଭାସିଉଠେ, ଭଙ୍ଗାକାନ୍ଥ ପରିବେଷ୍ଟିତ ଏକ ନୁଆଁଣିଆ ଚାଳଘର– ତାଙ୍କ ଗାଁ ପ୍ରାଇମେରୀ ସ୍କୁଲ । ସେଠି ଧୋତିପିନ୍ଧା ନିଶୁଆ ମାଷ୍ଟର । ସେ ଆଖି ଡିମା କରି ଯେତେ ଥର ପଚାରନ୍ତି ତୋ' ନାଁ କ'ଣ, ଦ୍ୱିତୀୟ ଶ୍ରେଣୀର ଛାତ୍ର ବାଳକ ଗେଣ୍ଡୁଆ ଉତ୍ତର ଦିଏ, 'ଗେନ୍ଦୁଆ' । ସେ ଆଖି ଆହୁରି ଡିମା କରନ୍ତି ଓ କହନ୍ତି, କହ ଗେଣ୍ଡୁଆ । ଉତ୍ତର ମିଳେ 'ଗେନ୍ଦୁଆ' । ଦିନେ ଏପରି ରହିର୍ସାଲ୍ ବେଳେ ମାଷ୍ଟ୍ରେ ରାଗିଯାଇ ଗେଣ୍ଡୁଆର ଗାଲରେ ଦେଲେ ଯେ ଚଟକଣିଟାଏ, ତତ୍‌କ୍ଷଣାତ୍ 'ଏକ' ରେ ପ୍ୟାଣ୍ଟ ତ ପ୍ୟାଣ୍ଟ, ତା'ର ବସ୍ତାନି ବି ଭିଜିଯାଇଥିଲା ।

ସଜଳ ନୟନରେ ଶୈଶବର ଏ ଚଳଚ୍ଚିତ୍ର ଦେଖି ଗେଣ୍ଡୁଆବାବୁ ଅସହାୟତା ସତ୍ତ୍ୱେ ହସିପକାନ୍ତି ।

ମନକୁ ମନ ବୁଝାନ୍ତି, ଖାସ୍ ନାଁଟା ପାଇଁ ଏତେ ଦୁଃଖକରି ଲାଭ କ'ଣ ? ଖାଲି ନାଁଟା ତ ଜଣକର ବ୍ୟକ୍ତିତ୍ୱର ମାପକାଠି ନୁହେଁ ? ଦିବ୍ୟଲୋଚନ ନାମଧାରୀ କଣା ବା ଅନ୍ଧଙ୍କର କ'ଣ ଅଭାବ ଅଛି, ସଂସାରରେ ? ଅ-ଅକ୍ଷର ବିବର୍ଜିତ ବ୍ୟକ୍ତିଟିର ନାଁ ବି ହୋଇପାରେ ବିଦ୍ୟାଭୂଷଣ ! ଫକୀର ନାମକ ଅନେକ ଲୋକ ହର୍ମ୍ୟ-ନିବାସୀ; ପୁଣି ଅସଂଖ୍ୟ ଧନେଶ୍ୱରଙ୍କର ମୁଣ୍ଡ ଗୁଞ୍ଜିବାକୁ ବି ଚାଳ ନ ଥାଏ । ଏଇ ଯେମିତି ଅଲ୍ଲୀନଗର ଛକର ବାଦ୍‌ଶା ମିଆଁ ରିକ୍ସା ଟାଣେ । ସୁଶୀଳା ନାମ୍ନୀ ଉଦଣ୍ଡୀ ଝିଅମାନଙ୍କର ସଂଖ୍ୟା କୋଉ କମ୍ କି ? ତାଙ୍କ ସେକ୍‌ସନ୍‌ର ବଡ଼ବାବୁଙ୍କ ଝିଅ ସୀତା ତ ପୁଣି ବିବାହ ପୂର୍ବରୁ ମା' ହେଇଥିଲା । ନାଁରେ ଗୋଟେ ଯାଏ କେତେ, ଆସେ କେତେ ? ଗେଣ୍ଡୁଆବାବୁଙ୍କର ମନେ ପଡ଼ିଯାଏ, ଇଣ୍ଟରମିଡ଼ିଏଟର ସେ ଟିମା ଲଜିକ୍ ଲେକ୍‌ଚରର୍ କଥା, ଯିଏ ବୁଝାଉଥିଲେ, ''ପ୍ରୋପର୍ ନେମ୍‌ସ ଆର୍ ନନ୍‌କନୋଟେଟିଭ୍ ।''

ତଥାପି କ'ଣ ଗେଣ୍ଡୁଆବାବୁଙ୍କର ମନ ବୁଝେ ?

ବିବେକାନନ୍ଦ ନାଁର ଗାମ୍ଭୀର୍ଯ୍ୟ କ'ଣ ନରେନ୍ଦ୍ର ନାଁରୁ ମିଳିବ ? ଗଜପତି, ବାହୁବଳେନ୍ଦ୍ର ଏପରିକି ରାୟବାହାଦୁର ଆଦି ନାମ ଭୂଷଣ କ'ଣ ନିହାତି ଅର୍ଥହୀନ ? ରାଜା ମହାରାଜାମାନେ ବୀରୋଚିତ ନାମ ଓ ଉପାଧିମାନ ଗ୍ରହଣ କରୁଥିଲେ କ'ଣ କେବଳ ଆତ୍ମବଡ଼ିମାପାଇଁ ? ତେବେ ସାଧୁସନ୍ଥମାନେ ଋଷିସୁଲଭ ନାମ ଧାରଣ କରିବା ବି କ'ଣ ଏକ ଏକ ଆଟୋପର ନିଦର୍ଶନ ?

ଗେଣ୍ଡୁଆବାବୁଙ୍କ ମଗଜରେ ଏକ ଅଛିଣ୍ଡା ଗଣିତ ଜଡ଼ିଯାଏ । ନିଜ ବାପାବୋଉଙ୍କ ଉପରେ ସେ ଚିଡ଼ି ଉଠନ୍ତି । ହିନ୍ଦୁମାନଙ୍କର ତେତ୍ରିଶକୋଟି ଦେବତାଙ୍କ ନାଁରୁ ଗୋଟେ ବି ତାଙ୍କର ମନେ ପଡ଼ିଲାନି ? ଏତେ ମହାପୁରୁଷ, ସ୍ୱାଧୀନତା ସଂଗ୍ରାମୀ, କବି, ନାଟ୍ୟକାର, ମୁନିଋଷି, ରାଜାଜମିଦାର– କାହାର ନାଁରୁ ଗୋଟେ ବାଛିଥିଲେ କ'ଣ ହୋଇ ନ ଥାନ୍ତା ? ନୋହିଲେ, ଜ୍ୟୋତିଷ, ପୁରୋହିତ, ଫେରିବାଲା, ଧାଈ କିମ୍ବା ଗାଁ ଡାଉଟର– ଯାହାକୁ ପଚାରିଥିଲେ, ସେ ନିଶ୍ଚେ ଗୋଟେ ନାଁ ବାଛିଥାନ୍ତା । ତେବେ 'ଗେଣ୍ଡୁଆ' ପରି ଏଡ଼େ କୁତ୍ସିତ ନାଁ ଦବାକୁ କେହି ପସନ୍ଦ କରି ନ ଥାନ୍ତା ।

ବୋଉକୁ ଏକଥା ପଚାରିଲେ, ସେ କାନ୍ଦିପକାଏ । (କୈଶୋରରେ ସହପାଠୀମାନଙ୍କଦ୍ୱାରା ବହୁଧା ଉପହସିତ ହୋଇ ଗେଣ୍ଡୁଆବାବୁ ଏକାଧିକବାର ତାଙ୍କ ବୋଉକୁ ନିଜ ନାମକରଣ ସଂପର୍କରେ କୈଫିୟତ୍ ମାଗିଚନ୍ତି ।) ସେ କହେ ଧନରେ, ତୋ ଆଗରୁ ତୋ'ର ଛ'ଛ'ଟା ଭାଇଭଉଣୀ କିଏ ପେଟରୁ ତ କିଏ ଭୂଇଁରେ ପଡ଼ି ମରି ଯାଇଚନ୍ତି । ତୁ ବଞ୍ଚି ରହିବୁ ବୋଲି ମୋର କୋଉ ବିଶ୍ୱାସ ଥିଲାରେ ? ତେଣୁ ଷଠୀ-ଭଉଣୀଙ୍କ କୋପଆଖି ଉହାଡ଼ରେ ରଖିବାପାଇଁ ପଡ଼ିଶା ଘରକୁ

ତୋତେ ବିଦା କରିଥିଲିରେ ଧନ, ତୁ ଯେତେବେଳେ ଦି' ଦିନର ପିଲା । ତୋ' ପାଇଁ ଜ୍ୟୋତିଷ ଡାକିନି କି ପୁରୋହିତ ଡାକିନି । ଏକୋଇଶା ପୂଜା କରିନି କି, ତୋ ଜାତକ ଲେଖେଇନି । ମାସେ ପରିଯନ୍ତ ତୋ ବାପ ପାଖକୁ ବି ବେଉରା ପଠେଇ ନ ଥିଲିରେ ଧନ; ତୋ ମଉଳା ଘରକୁ ଖବର ଦେଇ ନ ଥିଲି । ତିନିମାସ ପରିଯନ୍ତ ତୋତେ କୋଳେଇ ନ ଥିଲି କି ତୋ' ମୁହଁରେ ଅନ ଦେଇ ନ ଥିଲି । କୁକୁରଛୁଆପରି ତୋତେ ଏ ଓଳା ସେ ଓଳା କରିଥିଲିରେ; ତୋ'ର ନାଁ ଦେଇ ନ ଥିଲି ।

ଜନମ ବେଳୁ ତୁ ଗୋରା ତକତକ ରାଜାପୁଅ ପରି ଦିଶୁଥିଲୁରେ ବାପ । ତୋ' ଉପରେ ତେଣୁ ମୋର ପରତେ ନ ଥିଲା । ପଡ଼ିଶା ଘରର ମୋର ବଡ଼ ଜାଆ, ଯାହାକୁ ତୁ ଦଧିବୋଉ ବୋଲି ଡାକୁ, ସେ ତୋତେ ଅନ ଦେଇ ଜିଏଁଇଥିଲା । ପିଲାବେଳେ ତୋ' ନାହିରେ ଛୋଟ ଗେଣ୍ଡୁଟିଏ ଓହଳିଥିଲା । ତୋ' ଦଧିବୋଉ ସେ ଗେଣ୍ଡୁଟିରେ ଚୁମାଦେଇ ତୋତେ ଗେଣ୍ଡୁଆ, ଗେଣ୍ଡୁଆ ବୋଲି ଡାକ ଛାଡୁଥିଲା । ତା' ଦେଖାଦେଖିରେ ସାଇପଡ଼ିଶା ତୋତେ ସଭିଏଁ ଡାକିଲେ ଗେଣ୍ଡୁଆ ବୋଲି । ସେ ନାଁ ତୋ'ର ରହିଗଲାରେ ଧନ ।

ଉପହାସର ଉତ୍ସ ନିଜ ନାଁଟି ପଛରେ ଥିବା କରୁଣ କିମ୍ବଦନ୍ତୀଟି ମନେ ପକାଇ କଦାଚିତ ଭାବଗମ୍ଭୀର ହୋଇଉଠନ୍ତି ଗେଣ୍ଡୁଆବାବୁ । ତାଙ୍କ ମନରେ ଗେଣ୍ଡୁଆ ନାଁଟି ପ୍ରତି ଥିବା ଘନୀଭୂତ ବିତୃଷ୍ଣା ଅକସ୍ମାତ ତରଳିଯାଏ । ତେବେ ତାଙ୍କ ଡାକନାଁଟି କେବଳ ଗେଣ୍ଡୁଆ ରଖାଯାଇଥିଲେ ତାଙ୍କର କୌଣସି ଆପତ୍ତି ନ ଥା'ନ୍ତା । କିନ୍ତୁ ଗେଣ୍ଡୁଆ ଯେ ତାଙ୍କ ରେକର୍ଡ଼ଭୁକ୍ତ ନାଁ ! ତେବେ ସେ ନାଁଟି ରେକର୍ଡ଼ଭୁକ୍ତ ହେବା ପ୍ରସଙ୍ଗରେ ପ୍ରଚଳିତ ପ୍ରବାଦଟି ମଧ୍ୟ ଗେଣ୍ଡୁଆବାବୁଙ୍କର ମୁଖସ୍ଥ ।

ଗେଣ୍ଡୁଆବାବୁ ପ୍ରାଇମେରୀ ସ୍କୁଲରେ ନାମ ଲେଖାଇବାର ବୟସମାତ୍ର ହେଲାବେଳକୁ ତାଙ୍କ ବାପା ଥିଲେ ପ୍ରବାସରେ । ଗାଁର ଜନୈକ ବୃଦ୍ଧ ଯେତେବେଳେ ତାଙ୍କୁ ପ୍ରଥମେ କାନ୍ଧରେ ବସାଇ ସ୍କୁଲକୁ ନେଇଥିଲେ, ସେ ବହୁ ପ୍ରସାରିତ ଗେଣ୍ଡୁଆ ନାଁଟିକୁ ପଞ୍ଜୀକୃତ କରିବାପାଇଁ ହେଡ୍‌ପଣ୍ଡିତଙ୍କୁ ନିର୍ଦ୍ଦେଶ ଦେଇଥିଲେ । ହେଡ୍‌ପଣ୍ଡିତ ମହାଶୟ କୁଆଡ଼େ ଏକ ରୁଚିଶୀଳ ନାମ ରଖିବାପାଇଁ ବୃଦ୍ଧଙ୍କୁ ପ୍ରବର୍ତ୍ତାଇଥିଲେ । କିନ୍ତୁ ସତ୍ୟାଶ୍ରୟୀ ବୃଦ୍ଧ ବାଳକର ଗାର୍ଜନର ବିନାନୁମତିରେ ନାମାନ୍ତର ପ୍ରସ୍ତାବକୁ ନାମଂଜୁର କରିଦେଇଥିଲେ ।

ଜୀବନଜଂଜାଳଜନିତ କ୍ରୋଧ ହେତୁ ଗେଣ୍ଡୁଆବାବୁଙ୍କ ବାପା, ତିନିବର୍ଷ ଅନ୍ତେ ପ୍ରବାସରୁ ପ୍ରତ୍ୟାଗମନ କରିଥିଲେ । ସେତେବେଳକୁ ବାଳକ ଗେଣ୍ଡୁଆ ତୃତୀୟ ଶ୍ରେଣୀର ବୃତ୍ତି ପରୀକ୍ଷାରେ କୃତକାର୍ଯ୍ୟ ହୋଇସାରିଥାଏ । ତେଣୁ, ପୁଅର ଏକ ସମାଦୃତ ନାଁ ଦବାପାଇଁ ବହୁ ଚେଷ୍ଟାକରି ମଧ୍ୟ ଗେଣ୍ଡୁଆବାବୁଙ୍କ ବାପା ହେଲେ ବିଫଳ ମନୋରଥ । ସେହିଦିନଠାରୁ ଗେଣ୍ଡୁଆବାବୁଙ୍କ ନାଁ ଏକ 'କ' ଶ୍ରେଣୀୟ ସରକାରୀ ଦସ୍ତାବିଜର ମର୍ଯ୍ୟାଦା ଲାଭକଲା ଯେସନ ।

ପ୍ରସଙ୍ଗଟି ମନେ ପଡ଼ିଲେ ଗେଣ୍ଠୁଆବାବୁଙ୍କର ତରଳୁଥିବା ବରଫମନ ପୁଣି ଜମାଟ ବାନ୍ଧେ । ତାଙ୍କ ମାନସିକ ସନ୍ତୁଳନ ବ୍ୟାହତ ହୁଏ । ଆହା, ତାଙ୍କ ବାପା ଯଦି ତିନି ବର୍ଷ ପୂରିବାର ତିନି ମାସ ପୂର୍ବରୁ ପ୍ରବାସରୁ ଫେରିଥାନ୍ତେ, ଜୀବନର ପ୍ରତି ପାହାଚରେ ବୋଧେ ତାଙ୍କୁ ଏମିତି ବିଫଳତା ଓ ଲଜ୍ଜାବୋଧକୁ ସାମ୍ନା କରିବାକୁ ପଡ଼ୁ ନ ଥା'ନ୍ତା ! ଗେଣ୍ଠୁଆବାବୁ ଭାଳି ହୁଅନ୍ତି ।

ସତରେ, ଖାସ୍ ନାଁ ଗୋଟାକ ପାଇଁ କ'ଣ କିଛି କମ୍ ହରେଇଚନ୍ତି ଜୀବନରେ ! କଲେଜରେ ପଢୁଥିବା ବେଳର କଥା । ପ୍ରତ୍ୟହ ଆରକ୍ତ ଗୋଧୂଳିରେ ସେ ହାଫ୍‌ପ୍ୟାଣ୍ଟ୍ ଓ ବ୍ୟାନିୟନ୍ ପିନ୍ଧି କଲେଜ ପଡ଼ିଆରେ ବ୍ୟାୟାମ୍ କରନ୍ତି । ସେହି ପଡ଼ିଆର ବାଁ କଡ଼କୁ ଲେଡିଜ୍ ହଷ୍ଟେଲ୍ । ପ୍ରାୟ ସେହି ସମୟରେ, ତଳକ୍ଲାସ୍‌ରେ ପଢୁଥିବା ଗୋଟେ ସୁନ୍ଦରୀ ଝିଅ ତାଙ୍କ ଲେଡିଜ୍ ହଷ୍ଟେଲ୍ ଛାତ ଉପରୁ ନିର୍ନିମେଷ ନୟନରେ ଚାହିଁ ରହେ । ତାଙ୍କର ବଳିଷ୍ଠ ବାହୁ ଓ ଶ୍ମଶ୍ରୁଳ ଛାତିସଂପନ୍ନ ପୌରୁଷ କୋଉ କଲେଜପଢୁଆ ଝିଅ ହୃଦୟରେ ମୃଦୁ ଶିହରଣ ସୃଷ୍ଟି କରି ନ ଥା'ନ୍ତା ଯେ । ସତକୁ ସତ, ଦିନେ ଗୋଧୂଳିର ଶେଷଲଗ୍ନରେ ଝିଅଟି ତାଙ୍କୁ ସାକ୍ଷାତ କଲା ଓ ଅବିଚାରିତ ଭାବରେ କହିଲା, 'ଆଇ ଲଭ୍ ୟୁ' । ଗେଣ୍ଠୁଆବାବୁ ସମ୍ମତିସୂଚକ ହସ ଫିଙ୍ଗିଲେ । ସେଦିନ ଉତ୍ତୀର୍ଣ୍ଣ ସଂଧ୍ୟା ପର୍ଯ୍ୟନ୍ତ କେହି କାହାରିଠାରୁ ଦୂରେଇ ଯାଇପାରି ନ ଥିଲେ । ତହିଁପରଦିନ ସଂଧ୍ୟାରେ ପୁଣି ସେହି ଅନ୍ତରଙ୍ଗ ଭାବ ବିନିମୟ । ସେଦିନ ଫେରିଲାବେଳେ ଝିଅଟି ପଚାରିଲା, ତମ ନାଁ ? ଗେଣ୍ଠୁଆବାବୁଙ୍କ ସାମ୍ନାରେ ଯେମିତି ନକ୍ଷତ୍ରମୟ ଆକାଶଟା ଛିଡ଼ିପଡ଼ିଲା । ତାଙ୍କ ଓଠଧାରରେ ସେପର୍ଯ୍ୟନ୍ତ ଲେସି ହୋଇ ରହିଥିବା ମୃଦୁ ହସ ଅକସ୍ମାତ ଫିକା ପଡ଼ିଗଲା । ସେ କହିଲେ, ମୋତେ ସମସ୍ତେ ଗେଣ୍ଠୁଆ ବୋଲି ଡାକନ୍ତି । ଝିଅଟି ପୁଣି ପଚାରିଲା, 'ତମ ଭଲ ନାଁ ? ଗେଣ୍ଠୁଆବାବୁ ଆହୁରି ବିମର୍ଷ ଦିଶିଲେ ଓ କହିଲେ, ମୋର ଭଲ ନାଁ ବି ସେହି ଗେଣ୍ଠୁଆ, ଗେଣ୍ଠୁଆ ସାହୁ । ଏଥର ଝିଅଟି ଫିକ୍ କରି ହସିଦେଲା । ପରେ ପରେ 'ବାୟ୍' ବୋଲି କହି ଲେଡିଜ୍ ହଷ୍ଟେଲ୍ ଆଡ଼େ ମୁହେଁଇଲା ।

ତହିଁ ପରଦିନ ସ୍ତିମିତ ଗୋଧୂଳିରି ଝାପ୍‌ସା ଆଲୁଅରେ ସେ ଝିଅଟିକୁ ଅନେକ ଖୋଜିଚନ୍ତି । ତହିଁ ପରଦିନ, ତହିଁ ପରଦିନ ମଧ୍ୟ... ଝିଅଟିର ସେଦିନର ସେଇ ଶେଷହସ ଗେଣ୍ଠୁଆବାବୁଙ୍କ ମନରେ ଗାଢ଼ କ୍ଷତଟିଏ ହୋଇ ଏବେବି ରହିଚି !

ଗେଣ୍ଠୁଆବାବୁ ପଢୁଥିଲାବେଳେ କଲେଜ୍‌ର ଆଥ୍‌ଲେଟିକ ଚଂପିଆନ୍, ହେଲେ ସେ କୋଉ ବା' ଆଥ୍‌ଲେଟିକ୍ ସେକ୍ରେଟାରୀ ହୋଇପାରିଲେ ? ନାଁଟା ପାଇଁ ସିନା ଗୋଟେ ଧଇଁଆ ଟୋକାଠାରୁ ସେ ଦୁଇ ଶହରୁ ଅଧିକ ଭୋଟ୍‌ରେ ହାରିଲେ ।

ଖାଲି ନାଁଟା ପାଇଁ ଛାତ୍ର ଜୀବନରୁ ଏପର୍ଯ୍ୟନ୍ତ ବହୁକ୍ଷେତ୍ରରେ ଗେଣ୍ଠୁଆବାବୁ ହାରିଚନ୍ତି, ବହୁବାର ଲାଞ୍ଛିତ ହୋଇଚନ୍ତି । ଏବେ ବି ତ ପ୍ରତି ପାଦରେ ବନ୍ଧା ତାଙ୍କର ଗୋଟେ ତାଚ୍ଛଲ୍ୟର ଘୁଙ୍ଗୁର । ଶଳା, ବୁଢ଼ା ହେଡ୍ କିରାଣି ସାହୁବାବୁ ବୋଲି ନ ଡାକି,

କେଉଁ ପାଟିରେ ଡାକ ଛାଡ଼ିବ, ହଇହୋ, ଗେଣ୍ଡୁଆବାବୁ, ଟିକେ ଅମୁକ ଫାଇଲ୍‌ଟା ଆଣିଲ । ଡାକଟା ଶୁଣିଲାକ୍ଷଣି ସେ ଅଧାବୟସୀ ବିଧବା ପିଅନ୍‌ଟା ମୁହଁ ଲୁଚେଇ ହସେ । ତା' ଦେଖାଦେଖିରେ ଡାଇରିଷ୍ଟ ମଧୁ ଜେନା ଗଳା ଖଂକାରି ହୁଏ । ଏ ସମସ୍ତ ପରିହାସକୁ ଫାଇଲ୍‌ରେ ମୁହଁ ଗୁଞ୍ଜି ନୀରବରେ ହଜମ କରନ୍ତି ଗେଣ୍ଡୁଆବାବୁ । ତୁଚ୍ଛା ଝଗଡ଼ାରେ ଲାଭ କ'ଣ ?

ସେହି ମୁହୂର୍ତ୍ତରେ ହିଁ ନାଁଟାକୁ ଆଫିଡେଭିଟ କରି ବଦଳାଇ ଦବାକୁ ତାଙ୍କର ପ୍ରବଳ ଇଚ୍ଛା ହୁଏ । ହେଲେ ଦିନସାରା ଫାଇଲ୍‌ରେ ଟିପ୍‌ପଣୀ ଲେଖିଲେଖି ସେ ନୟାନ୍ତ ହୋଇ ପଡ଼ନ୍ତି ଓ କ୍ରିକେଟ ଆଦି ସିରିଏଲ୍ ଦେଖିବାରେ ବ୍ୟସ୍ତ ରହି ଆଫିଡେଭିଟ୍ କଥାଟାକୁ ପାସୋରି ପକାନ୍ତି ।

ଏବେ କିନ୍ତୁ ନାଁଟା ବଦାଳଇବା ପାଇଁ ଘର ତରଫରୁ ପ୍ରଚଣ୍ଡ ପ୍ରେସର୍ । ନବବିବାହିତା ନବନୀତା ପତ୍ନୀଙ୍କର ଗେଣ୍ଡୁଆ ନାଁ ପ୍ରତି ଅଦମ୍ୟ ଘୃଣା ।

ଗେଣ୍ଡୁଆବାବୁଙ୍କ ତୁଳନାରେ ତାଙ୍କ ପତ୍ନୀ ସେତେ ସୁନ୍ଦର ନ ହେଲେ ବି ନାଁଟା ତାଙ୍କର ବଡ଼ ଆକର୍ଷଣୀୟ । ମାଷ୍ଟର ବୋପା ତ, ପଦ ପକେଇ ନାଁ ରଖିଚନ୍ତି । ମଧୁସ୍ମିତା, ଡାକ ନାଁ ସ୍ମିତା । ଗୋଟେ ସ୍ମାର୍ଟ ନାଁ ପ୍ରାପ୍ତିର ଆକସ୍ମିକତାରେ ସେ ନିଜକୁ ବଡ଼ ସ୍ମାର୍ଟ ମନେ କରନ୍ତି ମଧ୍ୟ । ନାଁଟା ବଦଳାଇବା ପାଇଁ ତାଙ୍କର ନିତି ତାଗିଦା । ନାଁ ବଦଳାଇବା ପ୍ରସଙ୍ଗଟିକୁ ଏଡ଼େଇଦେଲେ, ଏଣିକି ସେ ରାଗନ୍ତି, ଅଭିମାନ କରନ୍ତି । ତା'ଛଡ଼ା ବାଲ୍ୟସ୍ମୃତି ସଜଳ ସେ ନାଁଟି ପ୍ରତି ଗେଣ୍ଡୁଆବାବୁଙ୍କର ଆକର୍ଷଣ ଅପେକ୍ଷା ଅନାସ୍ଥାଭାବ ଅଧିକ । ନାଁ ବଦଳାଇବାର ପ୍ରଚ୍ଛନ୍ନ ପୁରାତନ ଇଚ୍ଛାଟିକୁ ତାଙ୍କ ପତ୍ନୀ ମଧୁସ୍ମିତା କେବଳ ଉଖାରି ଦିଅନ୍ତି ସିନା !

ଅଗତ୍ୟା, ଗେଣ୍ଡୁଆବାବୁ ନାଁ ବଦଳାଇବା ଯୋଜନାଟି ବିଧିବଦ୍ଧ ଭାବେ ହାତକୁ ନେଲେ ।

ଏହି ଯୋଜନାର ପ୍ରଥମ ପାହାଚ ହେଲା ନୂତନ ନାମ ଚୟନ । ଗେଣ୍ଡୁଆବାବୁ ପତ୍ନୀଙ୍କୁ କହିଲେ– ଦେଖ, ଇଂରାଜୀରେ ମୋ ସଂକ୍ଷିପ୍ତ ନାଁ ଜି. ସାହୁ । ଅନ୍ତତଃ ଜି.ସାହୁ ଶବ୍ଦ ଦ୍ୱୟ ଅକ୍ଷତ ରଖାଗଲା ପରି ନାଁ ବଛାଯାଇପାରେ ।

ମଧୁସ୍ମିତା କହିଲେ, ଗୋପାଳ, ଗଙ୍ଗାଧର ବା ଘନଶ୍ୟାମ ଆଦି ନାଁଗୁଡ଼ିକ ନିହାତି ଘଷରା । ବରଂ ଖୁବ୍ କମ୍ ଲୋକଙ୍କର ନାଁ ଅଛି ଗୋବର୍ଦ୍ଧନ । ଏହାଶୁଣି ଗେଣ୍ଡୁଆବାବୁ କହିଲେ, ବୁଝିଲ, ଗୋବର୍ଦ୍ଧନରୁ ପୁଣି ମୁଁ ଗୋବରା ହୋଇଯିବି ଯେ । ଗେଣ୍ଡୁଆ ଠାରୁ ବଳି ହୀନସ୍ତା ସେ ନାଁ । ଗଣପତି ବା ଗଣନାଥ ନାଁ ବରଂ ରହୁ । ମଧୁସ୍ମିତା କୋଉ ଛାଡ଼ିବା ଝିଅ ? କହିଲେ, ଗଣପତି ବା ଗଣନାଥରୁ ତୁମେ ପୁଣି ଗଣିଆ ହୋଇ ନ ଯିବ ବା କାହିଁକି ? ଉଭୟ ହସିଉଠିଲେ ଓ ପୁଣି ନିରବରେ ନାଁ ଅନ୍ୱେଷଣରେ ମଗ୍ନ ହେଲେ ।

'ଗ' ବା 'ଘ' ଆଦ୍ୟ ଅକ୍ଷର ଥାଇ ଯେତେଗୁଡ଼ିଏ ମାମୁଲି ନାଁ ମନକୁ ଆସିଲା ସେଗୁଡ଼ିକୁ ପ୍ରାୟତଃ ବିକୃତ ଭାବରେ ଉଚ୍ଚାରିତ ହେବାର ସମ୍ଭାବନା ଦୃଷ୍ଟିରୁ ଅଗ୍ରାହ୍ୟ କରାଗଲା– ଯଥା, ଗିରିଧାରୀରୁ ଗିରିଆ ବା ଗୌରାଙ୍ଗରୁ ଗଉରା ନାମିତ ହେବାର ଆଶଙ୍କା । ମଧୁସ୍ମିତା ଅନେକ ଚିନ୍ତାକରି କହିଲେ, ଆଚ୍ଛା, ତମ ନାଁ ଗନ୍ଧର୍ବ ରଖାଗଲେ କ୍ଷତି କ'ଣ ?

ଗନ୍ଧର୍ବ ଅବଶ୍ୟ ରେୟାର୍ ନେମ୍ । ହେଲେ ଯକ୍ଷ, କିନ୍ନର, ଗନ୍ଧର୍ବ ଆଦି ସ୍ପେଶିସ୍‌ଗୁଡ଼ିକ ପ୍ରତି ମୋର ଆଦୌ ସହାନୁଭୂତି ନ ଥାଏ, ତା'ଛଡ଼ା ଗନ୍ଧର୍ବ ନାଁଟି ଉଚ୍ଚାରଣ କାଠିନ୍ୟ ହେତୁ ଗନ୍ଧିଆରେ ପରିଣତ ହେବା ଅତି ସହଜ । ଏକଥା କହି ଗେଣ୍ଠୁଆବାବୁ ଚୁପ୍ ରହିଲେ ।

ଏଥିରେ ମଧୁସ୍ମିତା ବୋଧେ ମୃଦୁ ଆଘାତ ପାଇଲେ । କହିଲେ, ଯେକୌଣସି ନାଁ– ମାର୍ଜିତ ବା ବିକୃତ ଭାବରେ ଉଚ୍ଚାରିତ ହେଉ ପଛକେ, ଗେଣ୍ଠୁଆ ନାଁ ଠାରୁ ଅନ୍ତତଃ ଭଲ । ତେଣୁ ବହୁ ପ୍ରଚଳିତ ହେଲେ ବି ତମ ନାଁ ଗୋପବନ୍ଧୁ ରଖାଯାଉ । ପୁଣ୍ୟାତ୍ମା ଗୋପବନ୍ଧୁ ଦାସ ଏବଂ ଋଷିପ୍ରତିମ ଗୋପବନ୍ଧୁ ଚୌଧୁରୀଙ୍କ ନାମାନୁସାରେ ନାମିତ ହେବା କମ୍ ଗୌରବର କଥା ନୁହେଁ ।

ଏଥର ଗେଣ୍ଠୁଆବାବୁ ଉଲ୍ଲସିତ ଦେଖାଗଲେ । ନିଜ ମୁହଁରେ ଗୋପବନ୍ଧୁଦ୍ୱୟଙ୍କର ଶ୍ମଶ୍ରୁ ପରିକଳ୍ପନା କରି ସେ ମୁରୁକୁନ୍ଦ ହସରୁ କ୍ଷାନ୍ତ ହୋଇପାରିଲେ ନାହିଁ ।

ତହିଁ ପରଦିନ ଯୋଜନା ମୁତାବକ, ଅସୁସ୍ଥତାଜନିତ ସାମୟିକ ଛୁଟି ଦରଖାସ୍ତଟି ସଚିବାଳୟକୁ ପ୍ରେରଣ କରି ଗେଣ୍ଠୁଆବାବୁ ସିଧା ଧାଇଁଲେ କଚେରି ଅଭିମୁଖେ । ଚନ୍ଦନଚର୍ଚ୍ଚିତ ଗୌରବର୍ଣ୍ଣା ମୋହରିରଟି ପାଖରେ ପହଞ୍ଚି ଗେଣ୍ଠୁଆବାବୁ ନିଜ କାର୍ଯ୍ୟ ସଂପର୍କରେ ବୟାନ କଲେ । ଅଶୋକସ୍ତମ୍ଭ ମାର୍କା କାଗଜ ଉପରେ ମୋହରିର ମହାଶୟ ଅବିଳମ୍ବେ ଲେଖି ଚାଲିଲେ, "ଆମ୍ଭେ ଶ୍ରୀ ଗେଣ୍ଠୁଆ ସାହୁ, ପି. ସନାତନ ସାହୁ, ମୁକାମ ବାଲିଘର, ଜିଲ୍ଲା ଖୋରଧା ; ସୁସ୍ଥ ମସ୍ତିଷ୍କ ଏବଂ ସ୍ଥିର ଚିତ୍ତରେ ଘୋଷଣା କରୁଅଛୁଁ କି ଆଜିଠାରୁ ଆମ୍ଭେ ଗେଣ୍ଠୁଆ ସାହୁ ପରିବର୍ତ୍ତେ ଗୋପବନ୍ଧୁ ସାହୁ ଭାବରେ ଲୋକସମାଜରେ ପରିଚିତ ହେବୁ । ସମସ୍ତ ସରକାରୀ ରେକର୍ଡ଼ପତ୍ର ତଥା ଜମିଜମା କାଗଜାତ୍‌ରେ ଆମ୍ଭର ଏହି ନୂତନ ନାମ ଦରଜ ହେବ ।" ଇତ୍ୟାଦି ।

ତପ୍‌ରେ ଗେଣ୍ଠୁଆବାବୁ ମୋହିରର ଓ ଓକିଲଙ୍କ ସହ ଯାଇ ଚନ୍ଦାମୁଣ୍ଡିଆ ମାଜିଷ୍ଟ୍ରେଟ୍‌ଙ୍କ ଇଜଲାସ୍‌ରେ ହାଜର୍‌ହୋଇ କାଠଗଡ଼ାରେ ଭର୍ତ୍ତି ହେଲେ ଏବଂ ଓକିଲଙ୍କ କହିବାମତେ ସତ୍ୟପାଠ କଲେ । ଓକିଲ ଫି, ପେଶ୍‌କାରୀ ହାତଗୁଂଜା ଏବଂ ଷ୍ଟାମ୍ପକାଗଜ ଦେୟ ପଇଠ କରି, ଗେଣ୍ଠୁଆବାବୁ ଆଶ୍ୱସ୍ତିରେ ଗୋଟେ ନିଃଶ୍ୱାସ ମାରିଲେ । ଯାହାହେଉ, ଆଜି ଠାରୁ ତାଙ୍କ ନାଁ ଜନିତ ଯାବତୀୟ ଲାଞ୍ଛନାରୁ ମୁକ୍ତି ମିଳିବ,

ପତ୍ନୀ ମଧୁସ୍ମିତା ବି ସମବୟସୀମାନଙ୍କ ପରିହାସରୁ ତ୍ରାହି ପାଇବେ । ସର୍ବୋପରି, ପୁତ୍ରପୌତ୍ରାଦିଗଣ ଭବିଷ୍ୟତରେ ନିଜ ପିତା, ପିତାମହଙ୍କ ନାମ ଉଚ୍ଚାରଣ କରିବାକୁ କୁଣ୍ଠାବୋଧ କରିବାର ସଂତ୍ରସ୍ତ ଆଶଂକାଟି ବି ଆଜିଠାରୁ ମୂଳପୋଛ ହେଲା । ଅନ୍ତତଃ, ତିନି ପୁରୁଷ ସହ ସଙ୍ଗତ ଏହି ଅସଂଯତ ନାଁଟିର ନିର୍ବାଣ ହୋଇଗଲା !

ଏବେ ଶେଷ ପର୍ଯ୍ୟାୟର କାର୍ଯ୍ୟଟି ବାକି ରହିଲା ଯାହା । ଗେଣ୍ଠୁଆବାବୁ ମିଠାକଡ଼ା ପାନଟିଏ ଗାଲରେ ଜାକି, ନାମଜାଦା ସମ୍ବାଦପତ୍ରଗୁଡ଼ିକର ପ୍ରତିନିଧିମାନଙ୍କ ନିକଟକୁ ଯିବାପାଇଁ ଉଦ୍ୟତ ହେଲେ । ଦୁଇପାଦ ଚାଲିଚନ୍ତି କି ନା, 'ଗେଣ୍ଠୁଆବାବୁ', 'ଗେଣ୍ଠୁଆବାବୁ' ବୋଲି କିଏ ହୁରି ଛାଡ଼ିବା ତାଙ୍କର କର୍ଣ୍ଣପାତ ହେଲା । ଗେଣ୍ଠୁଆ ବାବୁ ଟିକେ ଅଟକିଗଲେ । ଭାବିଲେ, ଏ ତ ସେହି ମୋହରିରର ଡାକ । ସେ ଖପା ହେଲେ । ଶଃ, ସବୁ ପଇସା ତ ପାଇସାରିଚି, ପୁଣି କାହିଁକି ରଡ଼ି କରୁଚି । ଏତେ ପଇସା ନେଲା ପରେ ଶଳା, ତା' ତୁଣ୍ଡରେ ଗୋପବନ୍ଧୁ ଶବ୍ଦଟା ପଶୁ ନାହିଁ ଯେ ଗେଣ୍ଠୁଆବାବୁ, ଗେଣ୍ଠୁଆବାବୁ ବୋଲି ଚିଲଉଚି ।

ଗେଣ୍ଠୁଆବାବୁ ଶୁଣି ନ ଶୁଣିଲା ପରି କଚେରି ହତାର ଜନଗହଳି ଭିତରେ ମିଶିଗଲେ ।

କିନ୍ତୁ ସେ ମୋହରିରର କେଉଁ କୁହୁକ ଡାକରେ ଗେଣ୍ଠୁଆବାବୁଙ୍କର ମୁହୂର୍ତ୍ତକ ପୂର୍ବର ସବୁ ଉଲ୍ଲାସ ଉଦ୍ଦୀପନା କୁଆଡ଼େ ଉଭେଇଗଲା ଯେମିତି ! ଗେଣ୍ଠୁଆ ନାଁଟା ଅବା ତାଙ୍କୁ ଛାଡ଼ି ଯିବାକୁ ପ୍ରସ୍ତୁତ ନୁହେଁ !

ପୁଣି ସାମ୍ବାଦିକମାନଙ୍କ ପାଖକୁ ଯାଇ ଅଯଥା ଅର୍ଥଶ୍ରାଦ୍ଧ କରିବାର କ'ଣ କିଛି ମାନେ ହୁଏ ; ନିଜକୁ ବଡ଼ କରୁଣ ଭାବରେ ପ୍ରଶ୍ନକଲେ । ''ମାଜିଷ୍ଟ୍ରେଟଙ୍କ ଇଜ୍‌ଲାସ୍‌ରେ ସତ୍ୟପାଠ କରି ବା ସତ୍ୟପାଠର ନକଲ ଏକାଧିକ ସମ୍ବାଦପତ୍ରରେ ପ୍ରକାଶ କରି କ'ଣ ଲୋକମାନଙ୍କର ତୁଣ୍ଡକୁ ବଦଳେଇ ହବ ?'' ଗେଣ୍ଠୁଆବାବୁଙ୍କ ସାମ୍ନାରେ ଏହା ଥିଲା ଏକ ହିମାଳୟୋପମ ପ୍ରଶ୍ନବାଚୀ !

ଜନଗହଳିପୂର୍ଣ୍ଣ କଚେରି ହତା ଭିତରେ ଗେଣ୍ଠୁଆବାବୁ ପିଲାଟିଏ ପରି କାନ୍ଦି ଉଠିଲେ ।

ସେତେବେଳକୁ ପବନରେ ଉଡୁଥିଲା ସତ୍ୟପାଠ କାଗଜର ଛିନ୍ନ ଟୁକୁରାମାନ ।

କଚେରିହତାର ଝଂକାଳିଆ ବରଗଛମୂଳ ସିମେଣ୍ଟ ଚଟାଣ ଉପରେ ସେ ଲଥ୍‌କରି ବସିପଡ଼ିଲେ । ବ୍ରହ୍ମାଣ୍ଡ ଗୋଟାକର ଭାରରେ ଅବା ଚାପି ହୋଇଯାଉଥିଲା ତାଙ୍କର କୁନି ମୁଣ୍ଡଟି । ଅଥଚ ତାଙ୍କ କାନରେ ଯୁଗପତ୍ ବିସ୍ଫୋରିତ ହେଉଥିଲା ବହୁ ଆତ୍ମୀୟ କଣ୍ଠରୁ 'ଗେଣ୍ଠୁଆ' ସମ୍ବୋଧନର ଅନ୍ତରଙ୍ଗ ଉଚ୍ଚାରଣ ।



# ଅନ୍ଧାର

ରାସ୍ତାକଡ଼ ବିଜୁଳିବତି ସବୁ ଫିକା ଦିଶିବା ଆରମ୍ଭ କରିଥିବେ କି ନାହିଁ; ଗୋଟେ ଅଧେ ଆଞ୍ଚରୁ ଧୂଆଁ ଉଠୁଥିବ କି ନାହିଁ, ଯାହା ଖାଲି ମୋଟର୍ ହର୍ଣ୍ଣ କେତେଟା ରହିରହି ଗୁମୁରୁଥିବ । ଝୁକୁଝୁକୁ ଝୁକୁଝୁକୁ ଶବ୍ଦ ପହଁରି ଆସୁଥିବ ଅନେକ ଦୂରରୁ ।

ଆକାଶ ଫର୍ଚ୍ଚେଇବା ଡେରିଥିବ ।

ତୋଫାନ୍ ମେଲ୍ ପରି ବିଶ୍ବ ମହାଳିକ ରିକ୍ସା ଗଡ଼େଇଥିବ ଷ୍ଟେସନ୍ ଆଡ଼କୁ, ଅତର୍ଚ୍ଛା । ତା'ପାଇଁ ଟିକେ ବି ଡେରି କରିବାର ବେଳ ଏ ନୁହେଁ । କରମଣ୍ଡଳ ଲାଗିଯାଇଥିଲେ କଥା ସରିଲା । ବଗା, ଇସ୍‌ଲାମ, ମଙ୍ଗୁଲୁ– ଏମାନଙ୍କର କଟେବାର ହୋଇଯିବ । ସେ ଆଉ କି ଭଡ଼ା ପାଇବ ଯେ ? ସକାଳଟା ପାଣିଚିଆ ପାଲଟିଯିବ !

ବିଶ୍ବ ଧଇଁସଇଁ ହୋଇ ପାହାନ୍ତିଆ ଟ୍ରେନ୍ ପ୍ଲାଟଫର୍ମ ଧରିବା ପୂର୍ବରୁ ହିଁ ଷ୍ଟେସନ୍‌ରେ ପହଞ୍ଚିଯାଏ । ମେନ୍‌ଗେଟ୍‌କୁ ସଟେଇ ରିକ୍ସା ଲଗାଏ । ଥାର୍ଡ଼ ବେଲ୍ ହୋଇ ନ ଥିବା ଜାଣିଲେ ଧୂଆଁ ଧରେ, ନ ହେଲେ ନାହିଁ ।

ରାତି ଅନିଦ୍ରା ହୋଇ ତିର୍ଲାଛୁଆ ସାଙ୍ଗରେ ଧରି କାହିଁ କେତେଦୂରରୁ ଆସୁଥିବା ଯାତ୍ରୀମାନେ ସକାଳୁ ସକାଳୁ ଭଡ଼ା ବାବଦ ଏତେ କାଟିକୁଟି ହୁଅନ୍ତି ନାହିଁ । ପାଟିରୁ ଥରେ ବାହାରିଯାଇଥିବା ଭଡ଼ା କାଏମ୍ ରହେ । ଭଲ ଦି'ପଇସା ମିଳେ । ସକାଳ ଅନୁକୂଳ ଭଲ ହେଲେ ପୁଣି ସାରା ଦିନଟା ଭଲରେ ଯାଏ । ପକେଟ୍ ଗରମ ରହେ । ରାତିରେ ଫେରିଲାବେଳକୁ ଭଲ କରି ଦି'ଗ୍ଲାସ୍ ପିଇବାକୁ ବି ବାଧେ ନାହିଁ ।

ଖାସ୍ କରମଣ୍ଡଳ ଟାଇମ୍‌କୁ ପହଞ୍ଚିବାପାଇଁ ବିଶ୍ବ ରାତି ଦି'ଘଡ଼ି ଥିବ ଉଠେ । ଟେଳାଏ ଆକବରୀ ଧରି ଅନ୍ଧାରିଆ ରାସ୍ତାକଡ଼କୁ ବାହାରିଯାଏ । କି ଶୀତ, କି ବର୍ଷା, ରାସ୍ତାକଡ଼ ଟେପ୍‌ରେ ଗାଧୋଇ ସାରି ହିଁ ଫେରେ । ଫେରିଲାବେଳକୁ ବସ୍ତିର ତା' ନୁଆଁଣିଆ ପଲିଥିନ୍ ଢଙ୍କା ଚାଳରୁ ଧୂଆଁ ବାହାରୁଥିଲେ ଭଲ । ନ ହେଲେ ସେ ଚମ୍ପାର ଶତାଣ୍ଡି ପୁରୁଷ ଉଠେଇ ଗାଳିଦିଏ । ତା' ଚରିତ୍ର ଉଝାଳେ । ବାଳଧରି ଝିଙ୍କେ । ପାହାନ୍ତାରୁ କଂସେ ନାଲି ଚା' ଆଉ ଭୁଜା ମୁଠେ ହୋଇଗଲେ, ତା'ର ମହାଆନନ୍ଦ । ସେତକର ବ୍ୟତିକ୍ରମ ହେଲେ ଚମ୍ପା ତ ଚମ୍ପା, ଛୁଆ ଦି'ଟାଙ୍କୁ ବି' ଗୋଇଠା ନ ମାରିଲେ ତା' ରାଗ ଶାନ୍ତ ହୁଏନି ।

ଗତ ସାତ ବର୍ଷ ଧରି ବିଶ୍ବୁ ମହାଲିକର ଏ ଜବର ରୁଟିନ୍ । ସୂର୍ଯ୍ୟ ଚନ୍ଦ୍ର ପରି ବେସାଲିସ୍ ।

କିନ୍ତୁ ସାତବର୍ଷ ଭିତରେ ସେ ସାତଥର ବି ଗାଁକୁ ଯାଇ ନ ଥିବ । କେମିତି ଯିବ ? ଫୁରୁସତ୍ କାହିଁ । ଦିନଟିଏ ରିକ୍ସା ବନ୍ଦ ମାନେ ନାହିଁ ନ ଥିବା ଅନଟନ ! ରୋଜଗାରକୁ ଖର୍ଚ୍ଚ ସବୁବେଳେ ବୁକେଇ ପଡ଼େ । ତା'ଛଡ଼ା ତ ଦେହପା' ରହିଚି । ମଝିରେ ମଝିରେ ପୁଣି ଗାଁକୁ ଟଙ୍କା ପଠେଇବାକୁ ହୁଏ, ବା' ପାଖକୁ । ନ ହେଲେ ବୁଢ଼ାଟା ଚଳିବ କେମିତି । ତା'ର ପୁଣି ଧଇଁବେମାରି ।

ପୋଷ୍ଟ ଅଫିସ୍ ଯାଇ ଟଙ୍କା ମନିଅର୍ଡ଼ର କଲାବେଳେ ବିଶ୍ବୁର ବା' କଥା ଭାରି ମନେପଡ଼େ । ଗାଁ କଥା ବି । କୋଉଠି ଲୁଚିଥିବା ପିଲାଦିନର ଖିଆଲ ସବୁ ଉଠୁରିପଡ଼େ । ଆଖି ଆଗରେ ଝଲସିଉଠେ ଗାଁର ଦୃଶ୍ୟ– ଗହୀର ବିଲ ଶେଷରେ ଧୂଆଁଳିଆ ପାହାଡ଼ ପରି, ଯାହାକୁ ଆବୋରି ଥାଏ ଆକାଶର ନଇଁଲା ମଥା । ଉଦୁଉଦିଆ ଖରାବେଳେ ସା'ନ୍ତରା ଘର ଆମ୍ବତୋଟାରୁ ପାଚିଲା ଆମ୍ବ ଚୋରେଇବା ଠାରୁ ଦାନ୍ତରେ ଦାନ୍ତ ନ ବାଜିଲା ପର୍ଯ୍ୟନ୍ତ ନଈ ପହଁରା ଆଦିର କିସମ କିସମ ଅନୁଭୂତି ଯାହା ଏବେ ଏଇ ସହରରେ ଖୋଜିଲେ ମିଳେନି । ଖୋଜିଲେ ବି ମିଳେନି ନଈପଠାର ସେଇ କାଶତଣ୍ଡୀ ଫୁଲର ପଟୁଆର, ରଜ ସମୟରେ ବାଜିମରା ବାଗୁଡ଼ିଖେଳ, ପୁଣି ଦୋଳପୁନେଇଁ ଦିନ ମେଳନ ପଡ଼ିଆରେ ଅବିର ବୋଳାବୋଳି, କୋଳାକୋଳି । ଗାଁ ବାଡ଼ର ଜହ୍ନି ଫୁଲ ଓ ଗାଁର ଜହ୍ନରାତି, ସହରର ଚିକିମିକିଆ ବିଜୁଳି ଆଲୁଅ ଠାରୁ କାହିଁ କେତେଗୁଣରେ ଆପଣାର; ବେଳେବେଳେ ମନେପଡ଼ିଯାଏ ବିଶ୍ବୁ ମହାଲିକର । ମନେପଡ଼ିଯାଏ, ତାଙ୍କ ଅଧାଭଙ୍ଗା ଘର । ଗୋବରରେ ଲିପାପୋଛା ହୋଇ ଚହଟୁଥାଏ ସବୁବେଳେ । ତୁଳସୀ ଚଉଁରା ମୂଳରେ ବୋଉର ସଞ୍ଜବତି, ଅପାଠୁଆ ବା' କଣ୍ଠରୁ କୋଉ ପୁରୁଣାକାଳିଆ ଚଉପଦୀର ଲହର, ଦେଈର କାନ୍ଦଣା ଶିଖା । ସବୁର ଫେଣ୍ଟାଫେଣ୍ଟିରେ ଘର ଯେମିତି ଗୋଟେ ସଂଜୁଆଁ ସରଗ !

ସେଇ ମାଟିକାଦୁଅର ମୋହକୁ ତୁଟେଇ, ଇଟା ପଥରର ଏ ଦାରୁଣ ଦୁଆରେ ପାଦ ଦବାକୁ କ'ଣ ତାକୁ ଭଲ ଲାଗୁଥିଲା ?

ସେ ଅଷ୍ଟମରେ ପଢୁଥିଲାବେଳେ ବୋଉ ମରିଗଲା । ପରେ ପରେ ବା'ର ବାହାରିଲା ଧଇଁ । କେତେ ଡାକ୍ତର ବଇଦ ଦେଖିଲେ, ବା' ଚିକିଛାରେ ରହିଲା । ଧଇଁ କାହିଁକି ଶୁଣିବ ? ବା' ସେଇଠୁ ଅଫିମ ଧଇଲା । ଅଫିମ ଧଇଲା ନାଇଁ ଯେ ଜମି ବିକିବା ସୁରୁ କଲା । ଦେଈ ବା'ଘର ବେଳକୁ ଦୁଇମାଣ ଜମିରୁ ମାଣେ ଯାଇ ସାରିଥିଲା । ଆଉ ମାଣକ ବିକା ହେଇ ଦେଈ ବା'ଘର ହେଲା । ତା' ସାଙ୍ଗକୁ ବିଶ୍ବୁର ନଥିରେ ଡୋର ବନ୍ଧା ବି ହେଲା । ହାୟ ମେଟ୍ରିକ୍ ଖଣ୍ଡକ ସେ ଡେଇଁ ଥା'ନ୍ତା ଭଲା;

କୋଉଠି ହେଲେ ପିଅନଟେ କି ଚପ୍ରାସୀଟେ ହେଇଥା'ନ୍ତା ! ଏବର ବି.ଏ. ଏମ୍.ଏ. ବାଲାତ ବେକାର, ଅଣ୍ଡର୍ ମେଟ୍ରିକ୍‌କୁ ପଚାରେ କିଏ ?

ବା' ଭାଗ-ବଖରା କଲା । ମଙ୍କୁରି ଲାଗିଲା । ତଥାପି ତା' ମଗଜ ଥଣ୍ଡା ହେଲା ନାଇଁ ଯେ, ପଚରା ନାଇଁ, ଉଚରା ନାଇଁ, ବା'ଘର ପକ୍‌କା କରିଦେଲା । ପଚାରିଲେ କହିଲା, ମୁଁ ବିଲରେ ଖଟିବି ନା ଚୁଲିମୁଣ୍ଡରେ ବସିବି ?

ବିଶ୍ବ ବା' ହେଲା । ନିଶ ଗଙ୍କୁରିବା ସରି ନ ଥାଏ, ସେ ହେଲା ପିଲାର ବାପା ।

ତା' ମାଇପ ଚମ୍ପା ଦିନେ କହିଲା, ''ପିଲାର ବାପ ହେଲୁ, ଚେତା ପଶୁନି । ନିଜ ଗୋଡ଼ରେ ଠିଆ ହ' । ବୁଢ଼ା ବାପ ଗାଲରେ କେତେଦିନ ପିଠା ଖାଇବୁ ଆଉ ?''

ବିଶ୍ବ ଭାବିଲା, ବ୍ଲକ ଜରିଆରେ ରଣ କରି ଗାଁ ମୁଣ୍ଡ ଛକରେ ଗୋଟେ ଭୁଷାମାଲ ଦୋକାନ ଖୋଲିବ । ବି.ଡି.ଓ.ଙ୍କୁ ଦେଖା କରିବାରୁ, ସେ କହିଲେ, ଗ୍ରାମସେବକକୁ କହ । ଗ୍ରାମସେବକ କହିଲା, ନେତାଙ୍କୁ ଧ' । ବିଶ୍ବ ଓ୍ବାର୍ଡ଼ମେମ୍ବର ନିଧି ମହାନ୍ତିକି ନେହୁରା ହେଲା । ମହାନ୍ତି ପ୍ରଥମେ ଧରାଛୁଆଁ ଦେଲାନି । ଆଡ଼େଇଲା । ପରେ କହିଲା, ଟଙ୍କା ଲାଗିବ । ବିଶ୍ବ ରାଜି ହେଲା । ଚମ୍ପାର ପାଉଁଜି ବନ୍ଧା ପକେଇ ମହାନ୍ତିକି ଟଙ୍କା ଦେଲା । ବ୍ଲକ୍‌କୁ ଦୌଡ଼ିଲା । ବ୍ୟାଙ୍କ ଦୌଡ଼ିଲା । ମହାନ୍ତିକି ହୋଟେଲରେ ଖୁଆଇଲା । ଗାଁର ଦୁଇ ଚାରିଜଣ ରଣ ପାଇଲେ, ଅଥଚ ତା'ର କିଛି ହେଲା ନାହିଁ । ମହାନ୍ତି କହିଲା, ମୁଁ କହିଥିଲି, ଶଳା, ବ୍ୟାଙ୍କ ମେନେଜର କାଟିଦେଲା । ଗ୍ରାମସେବକ ପନ୍ଦରଦିନ ଗାଁ ମାଡ଼ିଲା ନାଇଁ । ବି.ଡି.ଓ. କହିଲେ, ଆର ଥରକୁ ଦେଖିବା ।

ମହାନ୍ତି ଟଙ୍କା ଫେରେଇବ କହି ଦିନ ଗଡ଼େଇ ଚାଲିଲା । ଚମ୍ପା ରାଉ ରାଉ ହେଲା । ପିଲା ହଗି ହେଲା । ବା'ର ଧଇଁ ବଢ଼ିଲା । ମହାଜନ ଦାଣ୍ଡଦୁଆରେ ବସିଲା । ବିଶ୍ବ ମୂକ ପରି ଖାଲି ଗାଲରେ ହାତଦେଇ ରହିଲା । ହଠାତ୍ ଦିନେ ରାତିରେ ସେ ଛୁ ମାରିଲା ସହରକୁ ।

ସେଇଦିନରୁ ବିଶ୍ବ ଆଉ ଗାଁକୁ ଫେରି ଚାହିଁନି । ଏଠି ସେ ପ୍ଲାଟଫର୍ମରେ ଶୋଇଚି । ହୋଟେଲରେ ଅଇଁଠା ବାସନ ମାଜିଚି । ବସ୍‌ଷ୍ଟାଣ୍ଡରେ ଗାଡ଼ି ବି ଧୋଇଚି । ଶେଷରେ କରିମ୍‌ଚାଚା ଦୟାରୁ ରିକ୍‌ସା ଟଣାକୁ ବେଉସା କରି ଜିଇଁଚି ।

ରିକ୍‌ସାଟାଣି ଦୁଇପଇସା କମେଇବା ପରେ ହିଁ ସେ ଆଶ୍ବସ୍ତ ହେଲା । ଘରୁ ପଳେଇ ଆସିବାର ଛ'ମାସ ପରେ ଯାଇ ଗାଁକୁ ଫେରିଲା । ବା' ହୁଲିଆ ଲଗେଇ ଥକି ପଡ଼ିଥିଲା ସେତେବେଳକୁ । ଚମ୍ପା ନାହାକ, ଜ୍ୟୋତିଷ, ଗୁଣିଗାରେଡ଼ି– ସବୁଥିରୁ ଆସ୍ଥା ହରେଇ ସାରିଥିଲା । ବିଶ୍ବ ଫେରିଲା ପରେ ସେମାନଙ୍କ ପିଣ୍ଡରେ ଯେମିତି ପ୍ରାଣ ପଶିଲା । ଭୁଲି ଯାଇଥିବା ଚଉପଦୀ ତା'ର ମନେପଡ଼ିଲା । ଚମ୍ପାଫୁଲ ପରି

ପୁଣି ଚହଟିଲା ଚମ୍ପା । ମାଗିଆଣି ପିନ୍ଧିଥିବା ବିଶୁର ପେଣ୍ଟସାର୍ଟ ଦେଖି ଗାଁ ଲୋକେ ତାଟକା ହେଲେ । ଦୂର ସହରରେ ଚାକିରି ବାକିରି କାମଧନ୍ଦା ମିଳୁଚି କି ବୋଲି ଗାଁର ବେକାର ଟୋକାଏ ପଚାରି ବୁଝିଲେ । ବା' କିନ୍ତୁ ସନ୍ଦେହ କଲା ବିଶୁର ହାବଭାବକୁ । କହିଲା, ''ତ ପୁଅମାଇପଙ୍କୁ ସାଙ୍ଗରେ ଧରି ତୁ ସହରକୁ ଯା' । ମୁଁ ବରଂ ହାତେ ଫୁଟେଇ ଖାଇବି । ଅସୁଖ ହେଲେ ଝିଅ ଓଳାରେ ମୁଣ୍ଡ ଗୁଞ୍ଜିବି ।''

ବିଶୁ ସତକୁ ସତ ସେଇ ଛ'ମାସ ଭିତରେ ପିଆପିଇ ଆରମ୍ଭ କରିଦେଇଥିଲା । ବେଳେବେଳେ ଅନ୍ଧାରିଆ ତେଲେଙ୍ଗା ବସ୍ତିକି ବି ଯାଉଥିଲା ।

ବଡ଼ି ଭୋ'ରୁ ଅଧ ରାତିଯାଏ ତା' ରିକ୍‌ସା ଚାଲିଥାଏ ଅନବରତ– ଷ୍ଟେସନରୁ କଚେରି ବଜାର, କଚେରି ବଜାରରୁ ବସ୍‌ଷ୍ଟାଣ୍ଡ, ବସଷ୍ଟାଣ୍ଡରୁ କଲେଜ, କଲେଜରୁ ଟ୍ରେନିଂ ସ୍କୁଲ, ସେଠୁ ପୁରୁଣା ବଜାର, ପୁଣି ମୋତିମହଲ, ସେଠୁ ପୁଣି ମିଆଁପାଟଣା– ପୁଣି ଷ୍ଟେସନ୍, ଆଉ ଥରେ କଚେରି । ବଜାର ମଝିରେ ଫାଙ୍କାଦେଖି ସେ ହୋଟେଲରେ ଗଣ୍ଡେ ଖାଇ ନିଏ । କ୍ଳାନ୍ତ ହୋଇପଡ଼ିଲେ, ଚା' ପିଏ, ବିଡ଼ି ଟାଣେ, କେବେକେବେ ଚାଟ୍ ଖାଏ । ଆଉ ରାତିରେ ବସ୍ତିକୁ ଫେରିଲାବେଳେ ଭଜନା ଭାଟିରୁ ପେଟେ ପିଏ ।

ବେଳେବେଳେ ସିନେମା ଛକର ସେ ଝାଙ୍କୁଲା କଦମ୍ବଗଛ ମୂଳରେ ରିକ୍‌ସା ଥୋଇ ସେ ଟିକେ ବିଶ୍ରାମ ନିଏ । କେବେ କେମିତି ଆଖିବୁଜି ଘୁଙ୍ଗୁଡ଼ିମାରେ, ନ ହେଲେ ସ୍ୱପ୍ନ ଦେଖେ ।

ସହରୀ ବାବୁମାନଙ୍କୁ ଦେଖିଦେଖି ବାବୁ ହବାକୁ ତା'ର ଭାରି ଇଚ୍ଛାହୁଏ ।

ସେ ଇସ୍ତ୍ରିଦିଆ ପେଣ୍ଟସାର୍ଟ ପିନ୍ଧନ୍ତା, ଟାଇ ବାନ୍ଧନ୍ତା, ଖଣ୍ଡିଆ ଇଂରାଜୀରେ କଥା କହନ୍ତା । ସହର ମଝିରେ ଗୋଟେ ଛୋଟ କୋଠାଘର କରି ରହନ୍ତା । ଘର ଆଗରେ ଛୋଟ ବଗିଚାଟିଏ କରି ସେଠି ଫୁଲଗଛ ଲଗାନ୍ତା । ବଗିଚା ଭିତରେ ଆରାମ ଚେୟାରରେ ବସି ସକାଳୁ ସକାଳୁ ଖବରକାଗଜ ପଢ଼ନ୍ତା । ମଟରସାଇକେଲ ଚଢ଼ି ସହରରେ ବୁଲନ୍ତା । ଚମ୍ପା ଗୋଟେ କାଉଁରି କଥାର ନାୟିକା ପରି ଅକସ୍ମାତ ଭାରି ସୁନ୍ଦରୀ ହୋଇଯାଆନ୍ତା, ଯାହାକୁ ସାଙ୍ଗରେ ଧରି ସେ ସିନେମା ଯା'ନ୍ତା କେବେକେବେ ।

କିନ୍ତୁ ଚମ୍ପା କଥା ମନେ ପକାଇଲାକ୍ଷଣି ସେ ଧଡ଼ପଡ଼ ହୋଇଉଠେ । ''ଧ୍ୟାତ୍ ଶାଳୀ ମାଇକିନାଟା ନା ରୂପର ନା ରଙ୍ଗର'', ସେ ମନେ ମନେ ବିଗିଡ଼ିଯାଏ । ସେ କେତେ ସୁନ୍ଦରୀ ଝିଅ ଓ ବୋହୂଙ୍କୁ ନିତି ନିତି ତା' ରିକ୍‌ସାରେ ବୁହେ । କା' ବାଳ ନଇଁଲା ମେଘପରି ଗାଢ଼ କଳା ତ କା' ମୁହଁ ଗେଣ୍ଡୁଫୁଲ ପରି ହଳଦିଆ ।

କିଏ ହସିଦେଲେ ମଲ୍ଲୀମାଳଟା ଖସିପଡ଼େ ତ କାହା ସ୍ୱରରେ ସିନେମା ସଙ୍ଗୀତ ହାର ମାନେ । ନୂଆ ବଜାରରୁ ଯୋଉ ଦିଦୀଙ୍କୁ ସେ କେତେଥର ଆଣିଚି ମିଶନ୍ ସ୍କୁଲ୍‌କୁ, ତାଙ୍କର ଅଳତାମଖା ପାଦ ଦି'ଟା ନା ପଦ୍ମଫୁଲଠାରୁ ଆହୁରି ସୁନ୍ଦର ! ଅମିୟ ମାଷ୍ଟର ଶାଳୀ ତ ପ୍ରାୟ ତା' ରିକ୍‌ସାରେ କଲେଜକୁ ଯାଏ । ତା' ଛାତି ଯେମିତି ଉଚ୍ଚା, କଟୀ ସେମିତି କ୍ଷୀଣ ! ଆହା.... ସେ ରିକ୍‌ସାରେ ବସିଥିଲେ, ବିଶ୍ୱ ଭାବେ କଲେଜ ଯାହା ଘୁଞ୍ଚି ଯାଉନି ! ଆଉ ସେ ହାଡ଼ଭଙ୍ଗା ଡାକ୍ତରର ଝିଅ ଯେତେବେଳେ ତା' ରିକ୍‌ସାରେ ବସେନା, ବିଶ୍ୱ ମନେକରେ ସେ ଯେମିତି ରିକ୍‌ସା ଚଲଉ ନାଇଁ ଯେ ମେଘ ରାଇଜକୁ ଉଡ଼ି ଉଡ଼ି ଯାଉଚି ଗୋଟେ ପରୀ ସାଙ୍ଗରେ । ସେ ଚଷମା ଖୋଲିଲେ ଲାଗେ, ତା' ଆଖି ଯୋଡ଼ିକ ଯେମିତି ଦୁଇ ଧାଡ଼ି ଢେଉ ! ଭାରି ନୀଳ, ଚଞ୍ଚଳ ବି !

ଷ୍ଟେସନ୍ ମାଷ୍ଟର ଯୋଉ ତେଲେଙ୍ଗା ବୁଢ଼ା, ତା' ଝିଅ ଏଠି କୋଉଠି ଗୋଟେ ଟାଇପ୍ ଶିଖିବାକୁ ଯାଏ । ଥରେ ଅଧେ ତା' ରିକ୍‌ସାରେ ବସିଥିବ । ରଙ୍ଗ ସିନା କଳା, ହେଲେ ଗଢ଼ଣ । ପୁରୁଣା କୋଉ ଦେଉଳର ପଥର ମୂର୍ତ୍ତି ଯେମିତି! ଇସ୍ପାତ ନିଗମର ଗୋଟେ ବଙ୍ଗାଳୀ ବାବୁ ଆଉ ତା' ସ୍ତ୍ରୀ ନିତି ବଜାର ବୁଲି ଯା'ନ୍ତି ଗୋଟେ ଭାରି ଡଉଲ ଡାଉଲ ପିଲାସହ । ସିନେମା ଛକରେ ପ୍ରାୟ ଚାଟ୍ ଖାଆନ୍ତି । ବେଳେବେଳେ ରିକ୍ସାରେ ଫେରନ୍ତି । ସେ ସ୍ତ୍ରୀଲୋକଟା ଢମ୍ମାରୁ ହସେନି । କ'ଣ ଗୋଟେ ଚିନ୍ତା କେଜାଣି ତାକୁ ଘାରିଥାଏ । କିନ୍ତୁ ସେ ରିକ୍‌ସାରେ ବସିଲେ କେମିତିକା ସୁନ୍ଦର ବାସ୍ନାଟେ ଚହଟେ । ଭାରି ଭଲ ଲାଗେ ।

ଭାବୁ ଭାବୁ ବିଶ୍ୱର ମନଟା ଚେଙ୍ଗା ଧରେ । ଦେହ ଶିର୍ ଶିରେଇ ଯାଏ ।

'ଏୟ ରିକ୍‌ସା', ବୋଲି କାହାର ଆବାଜରେ ସେ ଚେତା ଫେରିପାଏ ।

ମୁହଁ କୁଞ୍ଚା କରେ । ସେମିତି ଶୋଇରହେ । ଚଙ୍କେ ନାଇଁ ଜମା । ଲୋକଙ୍କୁ ହେଣ୍ଟାଏ । ଭଡ଼ା ପାଇବାର ମୋହ ତା'ର କାହିଁ କେତେ ଦୂରକୁ ଘୁଞ୍ଚିଯାଇଥାଏ ସେତେବେଳେ । ସେ ପୁଣି ଭାବ ସମୁଦ୍ରରେ ନାଆ ବାହେ ।

ଭାବନାର ସବୁ ଆନନ୍ଦ ହଠାତ୍ ମିଳେଇଯାଏ ବିଶ୍ୱ ଘରେ ପହଞ୍ଚିଲାକ୍ଷଣି ।

ସେତେବେଳକୁ ରାତି ପାକଳ ହେଉଥିବ, ବସ୍ତି ନିଶୂନ । ଛୁଆ ଦି'ଟା ମାଛିପରି ପଡ଼ିଥିବେ ବିଛଣାରେ । ଚମ୍ପା ଢୁଳଉଥିବ, ନ ହେଲେ ତା' ଅଳରା ବାଳରୁ ଉକୁଣି ମାରୁଥିବ । ତା' ନଖରେ ମଳି ଜମି କଳା ଦିଶୁଥିବ । ନିଦୁଆ ଆଖିରେ ତା'ର ଲେଞ୍ଜରା ବି ଲାଗିଥିବ କେବେ କେବେ । ତା' ପାହୁଲ ଫାଟି ଆଁ କରିଥିବ, ଖରାଟିଆ ବିଲପରି । ପାପୁଲିରେ କନ୍ଦାଘା' ଭରପୂର ତ ହାତରେ ଶିର ଠିଆ ହୋଇଥିବ । ତା' ଶେତା ଗାଲରେ କଳାକଳା ଦାଗସବୁ ଫୁଟି ବାହାରୁଥିବ । ଶୁଖିଯାଇଥିବା

ତା' ଓହଳ ଥନ ଶାଢ଼ିର ଆକଟ ମାନୁ ନ ଥିବ । ତା' ଗହୀର ନାହି ପୋତି ଯାଇଥିବ, ମଲା ନଈର ମୁହାଁଣପରି ।

ବିଶ୍ବ ଔଷଧ ରାଗରେ ବେଜାୟ ତାଟିଆ କାମୁଡ଼ିବ ।

ଥାଳି ଫିଙ୍ଗିବ, ହାଣ୍ଡି ଭାଙ୍ଗିବ । ଚମ୍ପାର ହାଡୁଆ ପିଠିରେ ପାହାର କଷିବ । ଲକ୍ଷ୍ମୀଛାଡ଼ି, ଛିଣ୍ଡାଳୀ ବୋଲି ଗାଳି ଦବ । ତା'ପରେ ଯାଇ ବିଛଣା ଧରିବ ।

ବିଛଣାରେ ଶୋଇ ରହି ବିଶ୍ବ କେତେବେଳେ ଚମ୍ପାକୁ ଘୋଷାଡ଼ି ଆଣିବ ପାଖକୁ । ଚୁମା ଖାଇବ । ଭିଡ଼ି ଧରିବ ଜୋର୍‌ରେ । ଚମ୍ପା ବି ତରଳି ଯିବ । ତା' ଶିରାଳ ହାତକୁ ଜଡ଼େଇ ଧରିବ ବିଶ୍ବର ଝାଲୁଆ ଦେହରେ । ଚମ୍ପାର ଗାଢ଼ ଆଶ୍ଳେଷ ଭିତରେ କିନ୍ତୁ ବିଶ୍ବ ମନରେ ବସା ବାନ୍ଧିଥିବ ଅମିୟ ମାଷ୍ଟର ଶାଳୀ, ନ ହେଲେ ହାଡ଼ଭଙ୍ଗା ଡାକ୍ତର ଝିଅ କିମ୍ବା ବଙ୍ଗାଳୀବାବୁର ସ୍ତ୍ରୀ !

ରାତି ବୁଢ଼ୀ ହୋଇ ଆସୁଥିବ ।

ଦିନେ ଭାରି ଜୋରରେ ବର୍ଷା ହଉଥିବ । ବିଶ୍ବ ଫେରୁଥିବ ବସ୍ତିକୁ । ରାତି ହୋଇଥିବ ଗହନ, ରାସ୍ତା ନିର୍ଜନ । ହଠାତ୍ ବସ୍‌ଟିଏ ଠିଆହବ ଓ କେତେଜଣ ଯାତ୍ରୀ ଓହ୍ଲେଇବେ ବସରୁ । ବିଶ୍ବ ଅଟକିଯିବ । ଯାତ୍ରୀମାନଙ୍କ ଭିତରେ ଥିବ ଝିଅଟେ । ସେ ଭିଜିଯାଉଥିବ ଓ ଏଣେତେଣେ ଚାହୁଁଥିବ । ରିକ୍‌ସା ଉପରେ ଆଖି ପଡ଼ିଲାକ୍ଷଣି ସେ ହଠାତ୍ ଠାରିବ ।

ବିଶ୍ବ ଝିଅଟିର ଭିଜିଲା ଦେହକୁ ବିଜୁଳି ଆଲୁଅରେ କଟମଟ କରି ଚାହିଁବ । ଏକୁଟିଆ ସେ ଝିଅଟି ତା' ଜିନିଷପତ୍ର ସହ ରିକ୍‌ସାରେ ବସିଲା ପରେ ବିଶ୍ବ ପର୍ଦ୍ଦା ଟାଣିଦବ ଓ ରିକ୍ସା ଚଲେଇବ ।

ବେଶ୍ କିଛି ସମୟପରେ ଝିଅଟି ପର୍ଦ୍ଦା ଆଡ଼େଇ କହିବ, 'ଏଣେ କୁଆଡ଼େ ରିକ୍‌ସା ଚଲଉଚ, ମୋ କଥା ତମକୁ ଶୁଭୁନି କି ?' ବିଶ୍ବ କିନ୍ତୁ କିଛି ଶୁଣୁ ନ ଥିବ । ଝିଅଟି ଚିତ୍କାର କରିବ । ବିଶ୍ବ କିନ୍ତୁ କିଛି ଶୁଣୁ ନ ଥିବ ।

ସହର ଉପକଣ୍ଠର ସେ ଅଞ୍ଚଳ ଥିବ ଜନଶୂନ୍ୟ । ବର୍ଷା ବଢୁଥିବ । ଅନ୍ଧାରରେ କିଛି ଦିଶୁ ନ ଥିବ ।



# ଚେର

ଗୋଟିଏ ପାଖରେ ସ୍ମୃତି-ସଜଳ ଅତୀତ ଯାହାକୁ ସେ ଅସ୍ୱୀକାର କରିପାରୁ ନ ଥିଲେ, ଅନ୍ୟ ପାଖରେ ବିଦୀର୍ଣ୍ଣ ବର୍ତ୍ତମାନ, ଯାହାକୁ ସେ ଏଡ଼େଇ ବି ପାରୁ ନ ଥିଲେ । ଗୋଟେ ଅସମାହିତ ଦ୍ୱନ୍ଦ୍ୱର ସୁଦୀର୍ଘ ସୁଡ଼ଙ୍ଗ ଭିତରେ ଅଣନିଃଶ୍ୱାସୀ ହୋଇପଡୁଥିଲେ ସମରେନ୍ଦ୍ର ।

ଗାଁରୁ ଆସିବା ଦିନ ବୋଉ ଯେମିତି କାନିରେ ବାନ୍ଧି ଆଣିଥିଲା ଅଶାନ୍ତିର ପୁଟୁଳାଟାଏ ଯେ ତାକୁ ବିଞ୍ଚୁରି ଦେଇଚି ଘରସାରା । ଶୈବାଳିନୀଙ୍କ ମୁହଁ ରାଗରେ ଲାଲ, ବରେଣ୍ୟ ତା' 'ଷ୍ଟଡ଼ି' ଅପେକ୍ଷା ଅଧିକ ସମୟ ବିତଉଛି ବାହାରେ କୋଉ ଲାଇବ୍ରେରୀରେ । ଅସମ୍ଭବ ଭାବରେ ନୀରବି ଯାଇଚି ପ୍ରଗଲ୍‌ଭା ମଞ୍ଜୁ ।

କଡ଼ ଲେଉଟାଇଲେ ସମରେନ୍ଦ୍ର । ଆଖିରେ ନିଦ ନାହିଁ । ଶୈବାଳିନୀ ଶୋଇଗଲେଣି ନା ଚେଇଁଛନ୍ତି ? ବରେଣ୍ୟ ପଢୁଛି ବୋଧେ । ତା' ଷ୍ଟଡ଼ିରୁମ୍‌ରୁ ଲାଇଟ୍ ଲିଭି ନାହିଁ । ମଞ୍ଜୁ କିନ୍ତୁ ଶୋଇ ଯାଇଥିବ ମାଛି ପରି । ସଞ୍ଜବେଳୁ ତ ତା' ଆଖିପତା ଭାରୀ ହୋଇଯାଏ । ଖୁଁ ଖୁଁ ହଉଛି ବୋଉ । ତା' ପାଇଁ ରାତି କ'ଣ, ଦିନ କ'ଣ ? ଭଲ ଦିଶୁନି ତା' ଆଖିକୁ । କିଛି ସମୟ ପରେ ହୁଏତ ସେ ଆଲୁରୁ ବାଲୁରୁ ଗପିବ । କାନ୍ଥବାଡ଼ ସାଙ୍ଗରେ କଥା ହବ ।

ବୁଢ଼ୀ ହବାଦିନୁଁ ବଡ଼ ଉତ୍ପାତ କରୁଛି ବୋଉ । ଯାହା ନାହିଁ ତାହା ଗପୁଛି । ୟାକୁ ତାକୁ ଗାଳି ଦଉଛି, ଚିଡୁଛି । ୟା' ତା' କଥାକୁ କାନଉଛି । ବୟସ ସତୁରି ଟପିଲାଣି । ମତିଭ୍ରମ ହେଲାଣି ତା'ର । ନା... ନା... ତା' ମୁଣ୍ଡ କାହିଁକି ବିଗିଡ଼ିବ ? ପଚାଶ ବର୍ଷ ତଳର କଥା କେମିତି ଅବିକଳ କହିଦଉଚି ! ଲେଖାଯୋଖା ଲୋକଙ୍କୁ କେମିତି ଚିହ୍ନୁଚି । ଧେତ୍.. ବାଲିଙ୍ଗି ହଉଚି ବୋଉ । ଔଷଧ ଖା ଖା କହିଲେ ଖାଇବନି । ଔଷଧ ନ ଦେଲେ କହିବ, ମୋତେ କେହି ଦେଖିପାରୁନ । ଦ୍ୱିପ୍ରହରବେଳେ କହିବ, ଚା' ପିଇବି । ସଞ୍ଜବେଳକୁ ଭାତ ମାଗିବ । ରାତିରେ ଖୋଜିବ ପଖାଳ । ମାସ କେତେଟାରେ ସମସ୍ତେ ଚିଡ଼ିଗଲେଣି ।

ବୋଉ ଇମିତି ଜମାରୁ ନ ଥିଲା ।

ପିଲାବେଳୁ ସମରେନ୍ଦ୍ର ଦେଖିଛନ୍ତି, ବୋଉ ସବୁବେଳେ ହାତେ ଲମ୍ୱା ଓଢ଼ଣା ଟାଣିଥାଏ । ବାପାଙ୍କ ଆଗରେ ଜୋର୍‌ରେ କଥା କହେନି । ସକାଳୁ ରାତିଯାଏ ଖାଲି

ଲାଗିଥାଏ କାମରେ । ରୋଷେଇବାସ, ଘର ଲିପା, ଗାଈଦୁହାଁ, ଧାନ ଉଷାଁ ସବୁଥିରେ ବୋଉ ନିପୁଣା । ତା' ହାତ ଲାଗିଲେ ମାଟି ସୁନା ପାଲଟିଯାଏ । ତା' ହାତରନ୍ଧା ତିଅଣ, ଆହା... କି ସୁଆଦିଆ । ଶୈବାଳିନୀ ମାସରେ ପାଞ୍ଚ କେ.ଜି. ସୋରିଷତେଲ, ବେଜାୟ ମସଲା ସାରିଲେ ବି କ'ଣ ସେମିତି ରାନ୍ଧି ପାରିବେ ?

ବୋଉର ଦ୍ୱିତୀୟ କ'ଣ କେହି ଗାଁ ଗୋଟାକରେ ଥିଲେ ? ଦୁଃଖୀରଙ୍କୀ, ଭାଟଭିକାରି, ଇମିତିକି ଚଢ଼େଇ ଚିରୁଗୁଣୀଙ୍କ ଦୁଃଖ ସେ ବୁଝେ । କୁଣିଆ ବନ୍ଧୁବାସ ଆସିଲେ ତ ସେ ଫୁଲିଫୁଲି ଫାଟିଯାଏ ଯେମିତି ! ନ' ତରକାରି ଛ'ଭଜାକରି ଖୁଆଏ । କଲେଜରେ ପଢୁଥିଲାବେଳେ ସେ ଆଉ ଅମରେନ୍ଦ୍ର ଯେତେବେଳେ ଘରକୁ ଆସନ୍ତି ଖରାଛୁଟିରେ, ବୋଉ ଗୋଡ଼ ତଳେ ଲାଗେନି ପରା ! ବାପାଙ୍କୁ ଲଗେଇଥିବ, କେଉଟ ଡାକି ପୋଖରୀରୁ ମାଛ ଧରୁନ । ଛୁଆ ଦି'ଟା ହଷ୍ଟେଲରେ ଡାଲିପାଣି ଖାଇ ଖାଇ କେମିତି ଭାଙ୍ଗି ଯାଇଚନ୍ତି, ତମ ଆଖିକି ଦୁଶୁଚି ନା ?'' ମାଛ ଧରା ହେଲେ ତ ପତରପୋଡ଼ାଠାରୁ ବିହନବରା ପର୍ଯ୍ୟନ୍ତ ରକମ ରକମ ତରକାରି ରାନ୍ଧେ ବୋଉ । ବୋଉ ତ ମାଗୁର ମାଛକୁ ଧାନଉଷୁଁଆ ହାଣ୍ଡିରେ ଜିଏଇଁ ରଖେ ହପ୍ତେ ଦି'ହପ୍ତା ।

ପୂଜା ଛୁଟି ବେଳେ ବି ସେମିତି । ଛୁଟିସାରା ତ ବୋଉ ପ୍ରତିଦିନ ସଞ୍ଜରେ ପିଠା କରେ । ନାନା କିସମର ପିଠା । କୋଉଦିନ ବିରିଚକୁଳି ତ କୋଉଦିନ ମଣ୍ଡା । ଆଉ କୋଉଦିନ ପୁଣି ଆରିସା ନ ହେଲେ କାକରା । ଖୋଇ ଖୋଇ ଆର୍ଟୁଆ କରିଦିଏ ।

ଆଉ ଦେହ ପା' ବେଳେ ? ଜ୍ୱର ଟିକିଏ ହେଲେ ତ ବୋଉ ମୁଣ୍ଡ ପାଖରେ ଜଗି ବସେ ରାତିରାତି । ସବୁ ଦିଅଁ ଦେବତାଙ୍କୁ ଡାକେ । ସମସ୍ତେ ଶୋଇଲାପରେ ଆଖିରୁ ଲୁହ ପୋଛେ । ବେକରୁ ହାର କାଢ଼ିଦିଏ ବାପାଙ୍କୁ, ଟଙ୍କା ଦରକାର ବେଳେ । ତା'ର କାହିଁରେ କେତେ ଗହଣା ଥିଲା । ବୋଉ ସରବରାକାର ଘରର ଝିଅ । ବାହାଘର ବେଳେ ଅଜା କୁଆଡ଼େ ଗହଣାଗାଣ୍ଠି ଅଜାଡ଼ି ଦେଇଥିଲେ । ବୋଉ କ'ଣ କିଛି ରଖିଛି । ଅପା ବାହାଘର ଆଉ ତାଙ୍କ ପାଠପଢ଼ାରେ ତ ସବୁ ସାରିଛି । ବୋଉର କେବେ କିନ୍ତୁ ଦୁଃଖ ନ ଥାଏ ସେଥିପାଇଁ ।

ପୁଅ ଝିଅଙ୍କ ପାଇଁ ସଳିତାଟେ ପରି ଜଳି ଜଳି ନିଃଶେଷ ହୋଇଯାଇଥିବା, ଖୁବ୍ ପାତେଳୀ, ରୁଗ୍‌ଣା ଗୋଟେ ଗାଉଁଲି ସ୍ତ୍ରୀଲୋକର ନାଁ ତ ବୋଉ । ଶୈବାଳିନୀ ତାକୁ କେତେ ବା ଚିହ୍ନିଛନ୍ତି ? ପିଲାମାନଙ୍କ କଥା ଭିନ୍ନ । ସେମାନେ ଚେଷ୍ଟା କରି ବି ଚିହ୍ନି ପାରିବେ ନାହିଁ । ଆକାଶମୁହାଁ ତାଳପତ୍ର ଗୁଡ଼ା, ମାଟିକୁ ନଜର ନାହିଁ, ଚେରକୁ କେମିତି ଚିହ୍ନିବେ ?

ମାଟିକୁ ଆଉ ଜାବୁଡ଼ି ଧରିପାରୁନି ଚେର । ହୁଗୁଳି ଗଲାଣି । କେହି କିନ୍ତୁ କିଛି ବୁଝୁ ନାହାନ୍ତି !

ବରେଣ୍ୟର କମ୍ପିଟିଟିଭ୍ ପ୍ରସ୍ତୁତି ବ୍ୟାହତ ହେଉଛି ନିଶ୍ଚୟ । ଘର ଭିତରେ ସବୁବେଳେ ଅଶାନ୍ତି; ପିଲାଟା ପାଠ ପଢ଼ିବ କେମିତି ? ଦି'ଥର ଭାଇଭାରେ କଟିଲାଣି । ଏଇଟା ତା'ର ସିଭିଲ୍‌ର ଶେଷ ଚାନ୍ସ । କାଲେ ହବ ନ ହବ, ଏଥର ତେଣୁ ସେ ଓ.ଏ.ଏସ୍. ପାଇଁ ଆପ୍ଲାୟ୍ କରିଦେଇଚି । ଲେକ୍‌ଚରରସିପ୍ କଥା ତ ସେ ମନରୁ ପୋଛିଦେଇଚି ପୂରାପୂରି । ସେଇଟା ଏବେ ଗୋଟେ ପଞ୍ଚବାର୍ଷିକ ଯୋଜନା !

ବରେଣ୍ୟ ପରି ଏତେ ବ୍ରିଲିଆଣ୍ଟ ନ ହେଲେ ବି ମଞ୍ଜୁ ଭଲ ଛାତ୍ରୀ । ବଟ୍‌ନୀ ଅନର୍ସ ରଖିଚି । ମିନିମମ୍ ଫାଷ୍ଟକ୍ଲାସଟେ ନ ପାଇଲେ ବାଣୀବିହାରରେ ସିଟ୍ ମିଳିବନି ତାକୁ । ଟ୍ୟୁସନରେ ଯାହା ପଢୁଚି ସେତିକି, ଘରେ ତ ପାଠ ପଢ଼ାର ପରିବେଶ ନାହିଁ । ବୋଉ ସବୁବେଳେ ଡ୍ରଇଁ ରୁମ୍‌ରେ ବସି ବକର୍ ବକର୍ ହେଉଥିବ । ଶୈବାଳିନୀଙ୍କ ପାଟି ବି କିଛି କମ୍ ନୁହେଁ । ବୁଢ଼ୀଟା ସାଙ୍ଗରେ ବି ଛିଗୁଲେଇ ଲାଗିଥିବେ । ତୁ'ତାକର କରୁଥିବେ ।

କାହିଁକି କେଜାଣି ଶୈବାଳିନୀ ମୂଳରୁ ବୋଉକୁ ଦେଖିପାରନ୍ତି ନାହିଁ । ବୋଉ ଗାଉଁଲି, ତା'ଠି ସଫିଷ୍ଟିକେଶନର ଅଭାବ ଏଇଥିପାଇଁ ତ ?

ବୋଉ ଆଗରୁ ଅନେକ ଥର ଆସିଚି ସହରକୁ । ବୋଉ ଆସିଲା ମାନେ ସାଙ୍ଗରେ ଧରି ଆସିଥିବ ବଇଁଚ କୋଳିଠୁଁ ଗେଡ଼ିଗଛ ମିଠା ଆମ୍ବ ପର୍ଯ୍ୟନ୍ତ । ତା' ଗଣ୍ଠିଲି ଉପରେ ଥାଏ ସମସ୍ତଙ୍କର ଆଖି, ହେଲେ ତା' ଉପରେ ସମସ୍ତେ ଗରଗର । ଶୈବାଳିନୀଙ୍କ ହସ ହସ ମୁହଁ ହଠାତ୍ ପାଉଁଶିଆ ପଡ଼ିଯାଏ ବୋଉକୁ ଦେଖିଲେ । ଖାଲି ଦେଖେଇ ଦେଖେଇ କହି ହେଉଥିବେ, ''ତମ ବୋଉ କେମିତି ଡ୍ରଇଁରୁମ୍‌ରେ ସୋଫାରେ ନ ବସି କାର୍ପେଟ୍ ଉପରେ ଗୋଡ଼ୁ ଲମ୍ବେଇ ବସିଚନ୍ତି ଦେଖ । ଏଇ ଦେଖୁଚନା, କେମିତି ଏଠି ସେଠି ପାନପିକ ପକଉଛନ୍ତି । ଦେଖ, କେମିତି ଏଇନେ ଜୋତା ନ ମାଡ଼ି ପାଇଖାନାରେ ପଶିଲେ ।'' ବୋଉର ମରହଟ୍ଟୀ ଅଭ୍ୟାସକୁ ଆଦୌ ସହି ପାରନ୍ତି ନାହିଁ ଶୈବାଳିନୀ ! ବୋଉକୁ ବି ସହରର ନିବୁଜ ଘର ଭଲ ଲାଗେନି । ଗାଁକୁ ଫେରିଯିବା ପାଇଁ ସେ ଛାଟିପିଟି ହୁଏ ।

ବାପା ଚାଲିଯିବା ପରଠୁଁ ବୋଉକୁ ଗାଁ ବୋଧେ ଭାରି ଏକୁଟିଆ ଏକୁଟିଆ ଲାଗେ । ଜେଜେଙ୍କ ଅମଳର ବିରାଟ ପୁରବନ୍ଦୀ ଘର, ଗାଁରେ । ଘର ନୁହେଁ ତ ଛୋଟକାଟର ଗୋଟେ ଉଆସ । ସେଠି ବୁଢ଼ୀଟେ ଏକେଲା କେମିତି ରହିପାରିବ ଭଲା । ବୋଉ ତେଣୁ ଗାଁରୁ ବାରମ୍ବାର ଚିଠି ଲେଖେ, 'ରବିବାର ଦେଖି ଗାଁକୁ ଆସି ବୁଲିଯିବୁରେ ବୁଢ଼ା', ହେଲେ ସେ କୋଉ ଯାଇପାରନ୍ତି ଯେ ? ପ୍ରିନ୍ସିପାଲ୍ ତାଙ୍କୁ ଧରେଇ ଦେଇଚନ୍ତି ଏନ୍.ଏସ୍.ଏସ୍.ର ଦାୟିତ୍ୱ ଯେ ରବିବାର ବି ସେ ଫ୍ରି ହୋଇପାରନ୍ତି ନାହିଁ । ତାଙ୍କର ଗାଁକୁ ଯିବା ଡେରି ହେଲେ ବୋଉ ନିଜେ ଚାଲିଆସେ ଏଠିକି । ବସ୍‌ରେ ଯାହା ଚଢ଼େଇ ଦିଅନ୍ତି ଧନୀକକା ।

ତଥାପି ତ ସେ ମଝିରେ ମଝିରେ ଗାଁକୁ ଯା'ନ୍ତି । ଜମିବାଡ଼ି, ଭାଗଚାଷ ଆଦି କଥା ବୁଝନ୍ତି । ହେଲେ ଅମରେନ୍ଦ୍ର ଦୁଇତିନି ବର୍ଷରେ ଥରେ ବି ଗାଁକୁ ଆସିପାରେନି । ବମ୍ବେରୁ ଗାଁ କ'ଣ କମ୍ ବାଟ ! ସେଥିରେ ପୁଣି ତା'ର କମ୍ପାନୀ ଚାକିରି । ତା'ଛଡ଼ା ବମ୍ବେରେ ରହିବାରେ ଅଭ୍ୟସ୍ତ ତା'ର ପିଲାମାନେ ଓଡ଼ିଶାର କୌଣସି ବି ସହରରେ ରହିବାକୁ ପସନ୍ଦ କରନ୍ତି ନାହିଁ । ଗାଁରେ ରହିବାର ପ୍ରଶ୍ନ ଉଠୁଚି କୋଉଠି ! ସାନ ଭଉଣୀ ରୁନି ବି ଚେଷ୍ଟା କରି ଆସିପାରେନି ଗାଁକୁ । ତା'ର ତ ପଣେ ଛୁଆ । ଭିଣୋଇ ବାବୁଟି ପୁଣି ନେତା । ତା' ଘରେ ତେଣୁ ନିତି ଯାତରା । ତାକୁ ତ ମରିବାକୁ ଫୁରୁସତ୍ ନ ଥାଏ, ସେ କୋଉ ଆସି ବୋଉର ଯତ୍ନ ନେଇପାରିବ ? ଆଉ ବାକି ବଡ଼ଅପା । ସେ ତ ନିଜେ ବୁଢ଼ୀ ହେଲାଣି । ତାକୁ ସମ୍ଭାଳିବାପାଇଁ ଲୋକ ଦରକାର ।

ବୋଉ ତେଣୁ ତାଙ୍କରି ଲାଞ୍ଜରେ ବନ୍ଧା ।

ଶୈବାଳିନୀଙ୍କ ଡରରେ ବୋଉକୁ ସେ ଧନୀକକା ମାର୍ଫତରେ ରଖେଇଥିଲେ ଗାଁରେ । ଚାଷବାସ, ତୋଟା, ଗାଡ଼ିଆ ସବୁକଥା ବୁଝନ୍ତି ଧନୀକକା । ବୋଉକୁ ମାନନ୍ତି । ବାପାଙ୍କ ଯୋଗୁଁ ମଣିଷ ହୋଇଥିଲେ ତ, ସେଇଥିପାଇଁ । ବୋଉର ବିଶେଷ କିଛି ଅସୁବିଧା ହେଇ ନ ଥିଲା ଗାଁରେ । ଧନୀକକାଙ୍କ ସ୍ତ୍ରୀ ମାଳତୀଖୁଡ଼ୀ ବୋଉର ଖିଆପିଆ, ଘଷାମୋଡ଼ା, ଦେହପା' ସବୁ ବୁଝୁଥିଲେ । ଏଇ କେତେଦିନ ହେଲା ବୋଉର ମତିଗତିରେ ସମସ୍ତେ ଖପ୍ପା । ଗାଁରେ ବୋଉ କୁଆଡ଼େ ମାଳତୀଖୁଡ଼ୀ ଆଉ ତା' ପିଲାମାନଙ୍କୁ ନିତି ଗାଳି ମନ୍ଦ କଲା । ଧାନ ଚାଉଳ, ବିରିମୁଗ ସବୁ ଧନୀ ଖାଇ ଯାଉଚି ବୋଲି ଗାଁ ସାରା କହିବୁଲିଲା । ସେମାନେ ଯେତେହେଲେ ବି ପରଲୋକ । କେତେ ସହିବେ ବୋଉର ଗଞ୍ଜଣା । ତା'ଛଡ଼ା ନିଜ ପୁଅବୋହୂ ତ ବୁଢ଼ାବୁଢ଼ୀଙ୍କ ପାଖ ପଶୁ ନାହାନ୍ତି ଆଜିକାଲି ! ସେମାନେ କେତେ ସେବା କରିବେ ? କେତେଥର ଡାକ୍ତର ବଇଦ ପାଖକୁ କମେଇ କୁହୁଡ଼ା ହୋଇ ଦୌଡ଼ିବେ ?

ବୋଉକୁ ନେଇଆସିବାପାଇଁ ଧନୀକକା ଚିଠି ଲେଖିଲେ, ବୁଲେଇ ବଙ୍କେଇ । ଚିଠି ପାଇ ସମରେନ୍ଦ୍ର ଗାଁକୁ ଯାଇ ବୁଲି ଆସିଲେ । କିନ୍ତୁ ବୋଉକୁ ଆଣିବା ପ୍ରସଙ୍ଗ ଗଡ଼େଇ ଚାଲିଲେ । ଦିନେ କ'ଣ ଭାରି ଜୋର୍‌ରେ ବୋଉ, ଖୁଡ଼ୀ ସହ ଝଗଡ଼ାକଲା ଯେ ଧନୀ କକା ବାଧ୍ୟ ହୋଇ ବୋଉକୁ ସାଙ୍ଗରେ ଧରି ଦିନେ ସକାଳୁ ସକାଳୁ କ୍ୱାର୍ଟର୍ସରେ ଆସି ହାଜର । ଓଳିଏ ରହି ସେ ବାହୁଡ଼ିଗଲେ ଗାଁକୁ । ସେହିଦିନଠୁଁ ବୋଉ ରହିଛି ଏଇଠି ।

ଡାକ୍ତର ଦେଖାଇ ନିୟମିତ ଔଷଧ ଖୁଆଇବାପରେ ବୋଉର ଅବସ୍ଥା ଟିକିଏ ସୁଧୁରିଛି ଅବଶ୍ୟ । ତା'ର ଆଉ ବିଛଣାରେ ହଗାମୂତା ନାହିଁ । ଚଷମା ଲଗେଇବା ପରଠୁଁ ନିଜେ ବି ଯା'ଆସ କରିପାରୁଚି । ହେଲେ ତା'ର ବାଚାଳତା କମୁ ନାହିଁ ଯାହା !

ବୋଉ ଏଠିକି ଆସିବା ଦିନଠୁଁ ପ୍ରାୟ ପ୍ରତିଦିନ ଗୋଟେ ଲେଖାଏଁ ଅଜବ ଘଟଣା ଘଟେଇ ଚାଲିଚି । ଦିନେ ଦ୍ୱିପ୍ରହର ବେଳେ କାହାକୁ କିଛି ନ କହି ଘରୁ ବାହାରିଯାଇ ସାରା କଲୋନୀଟା ବୁଲିଲା ଖରାଟାରେ । ସାମନ୍ତରାୟବାବୁଙ୍କ ଘରେ ପହଞ୍ଚି ସେଠି ଚା' ମାଗି ପିଇଲା । ଶୈବାଳିନୀ ତାକୁ ଦେଖିପାରନ୍ତି ନାହିଁ ବୋଲି ସାମନ୍ତରାୟବାବୁଙ୍କ ସ୍ତ୍ରୀ ପାଖରେ ଗପିଲା । ବହୁ ଖୋଜାଖୋଜି ପରେ ବୋଉକୁ ସେଦିନ ଠାବ କରାଯାଇଥିଲା ସାମନ୍ତରାୟବାବୁଙ୍କ ଘରେ । ଗତ ରବିବାର ଦିନ ବି ସେମିତି ଉପରେ ପଡ଼ି ଝଗଡ଼ା କଲା ବୋଉ । ସେଦିନ ଶୈବାଳିନୀଙ୍କୁ ସାଙ୍ଗରେ ଧରି ସେ ବାହାରିଥିଲେ ଗୋଟେ ବାହାଘର ଭୋଜିକୁ । ବାହାରିବାକ୍ଷଣି ଡ୍ରଇଁରୁମରେ ବସି ଏଣୁତେଣୁ ଗପୁଥିବା ବୋଉ ପଚାରିଲା, ''କୁଆଡ଼େ ଯାଉଚ ? ବଜାର ବୁଲି । ହଉ ଯାଅ, ମତେ କାହିଁକି ସାଙ୍ଗରେ ନବ ? ତମେ ତମର ଅୟସ କର । ମୁଁ ଏଠି ଚଉକାନ୍ଥ ଭିତରେ ପଡ଼ିଥାଏ ।'' ବୋଉ କଥାରେ ଶୈବାଳିନୀଙ୍କ ମୁଡ୍ ବିଗିଡ଼ିଗଲା । ସେଦିନ ଭୋଜିକୁ ଯିବା ବନ୍ଦ ହେଲା । ଘରେ ବନ୍ଦ ହେଲା ରୋଷେଇ ।

ପିଲାମାନେ କ'ଣ କେତେବେଳେ ଖାଇଲେ, ବୋଉ ତାଙ୍କ ଖାଇବା ଥାଳିକୁ ଚାହିଁ ରହିଥିବ ଯେମିତି । ତା'ର ଧାରଣା, କିଏ କ'ଣ ଭଲ ଜିନିଷ ଖାଉଛନ୍ତି, ତାକୁ ବୋଧେ ଦଉ ନାହାନ୍ତି । ପୁଣି ଶୈବାଳିନୀଙ୍କ ଉପରେ ତା'ର ଏତେ ଅବିଶ୍ୱାସ ଯେ ସେ ତାଙ୍କ ହାତରୁ ପାଣି ବି ଛୁଇଁବ ନାହିଁ । କାଳେ ତାକୁ ବିଷ କିମ୍ବା ପାଣିମନ୍ତୁରା ଦେଇଦେବେ ଶୈବାଳିନୀ ! ମଞ୍ଜୁ ହାତରୁ ଆଗରୁ ମନଭରି ଖାଉଥିଲା ବୋଉ । ହେଲେ ଆଜିକାଲି ତା' ଉପରେ ବି ଭାରି ରାଗୁଚି । ଯାହା ତାହା ଗାଳି ଦଉଚି ।

ଏହି ଦୁଇ ତିନି ଦିନ ତଳେ ବୋଉ ମସ୍ତ ଅଘଟଣଟିଏ ଘଟେଇଲା । ମଂଙ୍କୁର ଅନର୍ସମେଟ୍ ପ୍ରକାଶକୁ ନେଇ ମିଛଟାରେ ଗୋଟେ ଝଡ଼ ଭିଏଇଦେଲା ଅକସ୍ମାତ୍ । ପ୍ରକାଶ ମଝିରେ ମଝିରେ କ୍ୱାର୍ଟର୍ସକୁ ଆସେ । ମଂଙ୍କୁ ଓ ସେ ଅନର୍ସ ବିଷୟରେ ଆଲୋଚନା କରନ୍ତି । ଗପସପ ହୁଅନ୍ତି । ବୋଉ ଆଖିରେ କୁଆଡୁ ଏସବୁ ଯିବ । ଆଗରୁ ଥରେ ଦୁଇଥର ସେ ବିଗିଡ଼ିଥିଲା । ଏଥର ପ୍ରକାଶ ଉପସ୍ଥିତିରେ, 'କୋଉ ଘଇତା ସାଙ୍ଗରେ ଗପୁଚୁଲୋ ମଉନମୁହିଁ' ବୋଲି କହି ପାଟିକଲା । ଶୈବାଳିନୀ ପ୍ରତିବାଦ କରିବାରୁ ଶାଶୂ ବୋହୂଙ୍କର ଲାଗିଲା ଯେ ଝଗଡ଼ା ପଡ଼ୋଶୀମାନଙ୍କ କାନକୁ ବି କଥା ଗଲା । ପଡ଼ୋଶୀ ଘରର ସ୍ତ୍ରୀ ପିଲାଙ୍କ ଭିତରେ ଝଗଡ଼ାଟି ଆମୋଦ ଆଳାପର ରୂପ ନେଇଚି ଏବେ । ସେହିଦିନଠାରୁ ମଞ୍ଜୁ ଭାରି ଚୁପ୍‌ଚାପ୍ । ଅତୀତରେ ମଂଙ୍କୁ କେତେ ଖରାଛୁଟି ବିତେଇଥିବ ଗାଁରେ ଜେଜେମା ପାଖରେ । ରାଜାରାଣୀ ଗପ ଶୁଣିଥିବ ତା'ଠାରୁ । ସେ କଳସୀରେ ସାଇତି ରଖିଥିବା ଆମ୍ବ ଆଚାର ଲୁଚେଇ ଲୁଚେଇ ଖାଇଥିବ ଖରାବେଳେ । ସେ ଜେଜେମା ପ୍ରତି ମଂଙ୍କୁ ମନରେ ଏବେ ଅପ୍ରମିତ ଘୃଣା !

ଶୈବାଳିନୀ କେବେ ବି ତ ବୋଉକୁ ଭଲପାଉ ନ ଥିଲେ । ଲୋକଲଜ୍ଜା ଭୟରେ କୌଣସି ପ୍ରକାରେ ସହି ଯାଉଥିଲେ ତା' ଉପସ୍ଥିତିକୁ । କିନ୍ତୁ ଗୋଟାକ ପରେ ଗୋଟେ ଅଘଟଣ ଘଟିଗଲା ପରେ, ତାଙ୍କୁ ଆଉ ସମ୍ଭାଳେ କିଏ ? ସେ ଯେମିତି ବୋଉକୁ ମାରିବେ କି ମରିବେ ? ସେହିଦିନ ହିଁ କହିଦେଲେ ସାଫ୍ ସାଫ୍, 'ତମେ ତମ ମା'ଙ୍କ କଥା ବୁଝ । ତୁରନ୍ତ କିଛି ଗୋଟେ ବ୍ୟବସ୍ଥା କର । ଜାଣୁ ଜାଣୁ ମୁଁ ମୋ ପିଲାମାନଙ୍କ ଭବିଷ୍ୟତ ନଷ୍ଟ କରିବାକୁ ଦେବି ନାହିଁ ।'

ବ୍ୟବସ୍ଥାଟା ଆଉ କ'ଣ ବା ହୋଇପାରେ, ଚିନ୍ତା କରିପାରୁ ନ ଥିଲେ ସମରେନ୍ଦ୍ର । ବଡ଼ଅପା, ଗୁନି ବା ଅମରେନ୍ଦ୍ର କେହି ତ ବୋଉର ଦାୟିତ୍ୱ ତୁଲେଇପାରିବେ ନାହିଁ । ଧନୀକକାଙ୍କ ହେପାଜତରେ ସେ ଆଉ କେମିତି ବା ବୋଉକୁ ଛାଡ଼ିପାରିବେ ? ଗାଁ-ଗଣ୍ଡାର ଲୋକେ କହିବେ କ'ଣ ? ମଝି ନଈରେ ଭାସି ଯାଉଥିବା ଲୋକଟେ ପରି ଯେମିତି କୂଳକିନାରା ପାଉ ନ ଥିଲେ ସମରେନ୍ଦ୍ର !

ୟା'ଭିତରେ ଶୈବାଳିନୀ ବି ତାଙ୍କ ଶେଷ ନିଷ୍ପତ୍ତି ଶୁଣେଇ ଦେଇଥିଲେ, 'ଏ ଘରେ ମୁଁ ରହିବି, ନ ହେଲେ ତମ ମା' ରହିବ ।'

କ'ଣ କହିବେ, କ'ଣ କରିବେ ବୋଲି ଜପି ହେଉଥିଲେ ସିନା ହେଲେ କୌଣସି ସିଦ୍ଧାନ୍ତରେ ପହଞ୍ଚିପାରୁ ନ ଥିଲେ ସମରେନ୍ଦ୍ର । ଜନ୍ମକଲା ମା'କୁ ଘରୁ ତଡ଼ି ଦେଇପାରିବେ ନା ବିଷଦେଇ ମାରିପାରିବେ ?

ବରେଣ୍ୟ କିନ୍ତୁ କହୁ କହୁ କହିପକେଇଲା, ବୁଢ଼ୀକି ସ୍ଲୋ ପଏଜନ୍ ଦବା ଛଡ଼ା ଆଉ ଉପାୟ କ'ଣ ? ମଂଟୁ କିନ୍ତୁ ପ୍ରତିବାଦ କଲା । କହିଲା, ନା ବୁଢ଼ୀକି ମାରିଲେ ପାପ ଲାଗିବ ବାପାଙ୍କୁ । ତାକୁ ଓଲ୍ଡ ଏଜ୍ ହୋମ୍‌ରେ ଛାଡ଼ିବା ବରଂ ଭଲ ।

ପିଲା ଦୁହିଁଙ୍କ କଥାକୁ ହେଜିହେଲେ ସମରେନ୍ଦ୍ର । କିନ୍ତୁ ବିଚଳିତ ହେଲେ ନାହିଁ । ବଦଳି ଯାଉଥିବା ସମୟର ଦୁର୍ଦ୍ଦାନ୍ତ ପଟୁଆର ଆଗରେ ଠିଆହବାର କ୍ଷମ ନ ଥିଲା ତାଙ୍କର । ଅତଏବ୍, ଯନ୍ତ୍ରଚାଳିତ ହେଲାପରି ସେ ଧାଇଁଲେ 'ଓଲ୍ଡ ଏଜ୍ ହୋମ୍'କୁ ।

ସେଠାରେ ମ୍ୟାନେଜର୍‌ଙ୍କ ସାଥିରେ କଥା ସରିଚି । ରାତି ପାହିଲେ ବୋଉକୁ ତଡ଼ି ଦିଆଯିବ ସହର ଉପାନ୍ତର ସେ ବାର୍ଦ୍ଧକ୍ୟ ସାମ୍ରାଜ୍ୟକୁ ।

ସାରାରାତି ଶୋଇପାରିଲେ ନାହିଁ ସମରେନ୍ଦ୍ର । ସକାଳୁ ଉଠିବାର ଅଭିନୟ କଲେ ମାତ୍ର । ପ୍ରାୟ ଆଠଟା ବେଳକୁ ବରେଣ୍ୟ ରିକ୍ସା ଡାକିଆଣିଲା । ବଡ଼ ଡାକ୍ତରଖାନାକୁ ନେଇଯିବା ବାହାନାରେ ବୋଉକୁ ସାଙ୍ଗରେ ଧରି 'ଓଲ୍ଡ ଏଜ୍ ହୋମ୍' ଆଡ଼େ ମୁହାଁଇଲେ ସମରେନ୍ଦ୍ର । ସେଠାରେ ପହଞ୍ଚିଲାକ୍ଷଣି ମ୍ୟାନେଜର ତାଙ୍କୁ ସ୍ୱାଗତ କଲେ । ନିର୍ଦ୍ଦିଷ୍ଟ ଗୋଟେ କ୍ୟାବିନ୍‌ର ଖଟ ପାଖକୁ ନିଆଗଲା ବୋଉକୁ । ବୋଉ ସେଇଠୁ କହିଲା,

''ମୋତେ ଖାଲି ଡାକ୍ତର ଦେଖେଇ ନେଇଯିବୁରେ ବୁଢ଼ା, ମୁଁ ଏଠି ରହିବି ନାହିଁ । ଡାକ୍ତରଗୁଡ଼ାକ ନା ଭାରି ଚଣ୍ଡାଳ; ଖାଲି ଇଂଜେକ୍ସନ୍ ଫୋଡ଼ିବେରେ'' ସମରେନ୍ଦ୍ର କହିଲେ, 'ତୁ ଜମାରୁ ଅସ୍ଥିର ହ'ନା ବୋଉ । ଏଠି କିଛି ଦିନ ପାଇଁ ରହିବୁ । ଦେହ ଭଲ ହୋଇଗଲେ ଘରକୁ ନେଇ ଯିବିନି ? ମୁଁ ନିତି ଆସୁଥିବି ଯେ ! ତୋର କିଛି ଅସୁବିଧା ହବନି ଏଠି ।

ଖଟ ତଳେ ବୋଉର ଜିନିଷପତ୍ର ସବୁ ରଖିସାରି ଚୁପ୍‌ଚାପ୍ ଫେରିଆସିଲେ ସମରେନ୍ଦ୍ର । ରିକ୍ସାରେ ବସିଲାପରେ ସେ ଥରେ ଦୁଇଥର ରୁମାଲ୍‌ରେ ମୁହଁ ପୋଛିଲେ । ଦଶବର୍ଷ ତଳେ ବାପାଙ୍କ ଶବ ସତ୍କାର କରି ଫେରୁଥିବା ସମୟର ଅସହାୟତା ଯେମିତି ପୁଣିଥରେ ସବାର୍ ହେଉଥିଲା ତାଙ୍କ ଉପରେ ।

ବୋଉର ଅବର୍ତ୍ତମାନରେ ଘରଟା ଭାରି ଶୂନ୍‌ଶାନ୍ ଲାଗିଲା ସମରେନ୍ଦ୍ରଙ୍କୁ । ମୁହୁର୍ମୁହୁଃ ତାଙ୍କର ମନେ ପଡ଼ିଲା ବୋଉର କ୍ଷୟିଷ୍ଣୁ ଚେହେରା । ବେଳେବେଳେ ଅଧ ରାତିରେ ବୋଉର ଆଲୁରୁ ବାଲୁରୁ କଥା କାନରେ ଝଣଝଣ ହେଲା । ପ୍ରଥମେ ଦିନେ ଦୁଇଦିନ ସମରେନ୍ଦ୍ର ଭାରି ଅନ୍ୟମନସ୍କ ରହିଲେ ଓ କଲେଜକୁ ଗଲେ ନାହିଁ । କାହା ସାଙ୍ଗରେ ବିଶେଷ କଥାବାର୍ତ୍ତା ବି କଲେ ନାହିଁ ।

ଏମିତି ଦିନ କେତୋଟି ଗଲାପରେ ବୋଉ ଆସ୍ତେ ଝାପ୍‌ସା ହୋଇ ଆସିଲା ତାଙ୍କ ମାନସପଟରୁ, ଭଙ୍ଗା ସିଲଟ ଉପରେ ଅବୋଧ କେଉଁ ଶିଶୁର ଅସ୍ପଷ୍ଟ ହସ୍ତାକ୍ଷର ପରି । ତଥାପି ବୋଉକୁ ଦେଖିବାପାଇଁ ବ୍ୟାକୁଳ ହେଉଥିଲେ ସମରେନ୍ଦ୍ର । କେମିତି ଥିବ ବୋଉ । କନ୍ଦାକଟା କରୁଥିବ କି ? କ'ଣ ଖାଉଥିବ ? ସେବିକାମାନେ କ'ଣ ଠିକ୍ ଯତ୍ନ ନେଉଥିବେ ବୋଉର ? ଏମିତି ଭାବିଲାବେଳେ ସମରେନ୍ଦ୍ରଙ୍କ ମନ ବତୁରି ଯାଉଥିଲା ଭିଜାମାଟି ପରି । ବରେଣ୍ୟର କଂପିଟିଟିଭ୍ ପ୍ରସ୍ତୁତି ବ୍ୟାହତ ହେଉ କି ମଂକୁର ମୁହଁ ତଳକୁ ହେଉ, ସେ ଆଉ ଫେରେଇ ଆଣିବେ କି ବୋଉକୁ ? ତେଣିକି ଶୈବାଳିନୀ ଯେତେ ରାଗିଲେ ରାଗୁଥାନ୍ତୁ ପଛକେ । ବୋଉ ପାଇଁ ସମରେନ୍ଦ୍ରଙ୍କ ମନ ଥୟ ଧରୁ ନ ଥିଲା । ଅଥଚ ବୋଉକୁ ସାମ୍ନା କରିବାପାଇଁ ସାହସ ନ ଥିଲା ତାଙ୍କର !

ଦିନେ ଉଷ୍ମ ଚା' ଓ ଖବରକାଗଜ ଗଂଧରେ ବିଭୋର ସମରେନ୍ଦ୍ର ବଡ଼ି ଭୋର୍‌ର ଅପ୍ରତ୍ୟାଶିତ କଲିଂବେଲ୍ ଶବ୍ଦରେ ଚହିଙ୍କି ପଡ଼ିଲେ । କବାଟ ଖୋଲି ଦେଖନ୍ତି ତ ଆଗରେ 'ଓଲ୍‌ଡ଼ ଏଜ୍ ହୋମ୍'ର ମ୍ୟାନେଜର ସ୍ୱୟଂ । ବୋଉର କିଛି ହୋଇଗଲା କି ଆଉ ବୋଲି ଭାବି ସମରେନ୍ଦ୍ରଙ୍କ ଓଠ ଶୁଖିଗଲା । ସେ ପାଟି ଖୋଲିବା ପୂର୍ବରୁ କିନ୍ତୁ ମ୍ୟାନେଜର ବିବ୍ରତ ଭାବରେ କହିଲେ 'ସାର୍, ଆପଣଙ୍କ ମା' ଏଠାକୁ ଚାଲି ଆସିଛନ୍ତି କି ?'



# ବିପ୍ରଲବ୍ଧ

ସେଇ ଗୋଟିଏ ସ୍ୱପ୍ନକୁ ବାରମ୍ୱାର ଦେଖୁଥିଲେ ବିଦିଶା ଓ ଅଧ ରାତିରେ ତାଙ୍କ ନିଦ ଭାଙ୍ଗି ଯାଉଥିଲା ।

ଯେଉଁଦିନ ପ୍ରଭଞ୍ଜନ ରିସର୍ଚ୍ଚ କାମରେ ମାଲ୍‌କାନଗିରି ଗଲେ ସେଦିନ ରାତିରେ ପ୍ରଥମେ ସ୍ୱପ୍ନଟି ଦେଖିଥିଲେ ବିଦିଶା । କିନ୍ତୁ ତା'ଉପରେ ସେ ଆଦୌ ଗୁରୁତ୍ୱ ଦେଇ ନ ଥିଲେ । ସ୍ୱପ୍ନ ଦେଖିବାଟା ମଣିଷର ସହଜାତ ନୁହେଁ କି ? ମଣିଷ ତା' ଜୀବଦ୍ଦଶା ଭିତରେ ଅସଂଖ୍ୟ ସ୍ୱପ୍ନ ଦେଖେ, ସେଗୁଡ଼ିକୁ ଭୁଲିଯାଏ ମଧ୍ୟ । ଗୋଟେ ସ୍ୱପ୍ନ ଉପରେ ତେଣୁ ଅଯଥା ଗୁରୁତ୍ୱ ଦବାର ଆବଶ୍ୟକତା କ'ଣ ? କିନ୍ତୁ ତା' ପରଦିନ ଅବିକଳ ସେହି ସ୍ୱପ୍ନଟି ଦେଖିଲେ ବିଦିଶା ପୁଣି । ସେ ତେଣୁ ସ୍ୱପ୍ନ-ସଚେତନ ହୋଇପଡ଼ିଲେ । ତାଙ୍କ ଜୀବନ ସହ ଏମିତି ଗୋଟେ ସ୍ୱପ୍ନର କ'ଣ କିଛି ସମ୍ପର୍କ ଅଛି ? ଏମିତି ଭାବୁ ଭାବୁ ସେ ପୁଣି ଶୋଇପଡ଼ିଲେ ଓ ସ୍ୱପ୍ନ ବିଷୟ ଭୁଲିଗଲେ ସକାଳକୁ ।

କିନ୍ତୁ ତା'ପର ଦିନ ମଧ୍ୟ ସେହି ସ୍ୱପ୍ନର ପୁନରାବୃତ୍ତି ଘଟିଲା । ତା'ପର ଦିନ... ତା'ପରଦିନ ମଧ୍ୟ । ବିଦିଶା ଅସ୍ଥିର ହୋଇପଡ଼ିଲେ ନିଜ ଭିତରେ । ଏମିତି ଗୋଟିଏ ସ୍ୱପ୍ନକୁ ସେ ତ କେବେ ବି ଦେଖି ନାହାନ୍ତି ବାରମ୍ୱାର ।

ବାଣୀବିହାରରେ ପଢୁଥିଲାବେଳେ ସେ ଗୋଟେ ଧୁମ୍‌ଧାମ୍ ବର୍ଷାଭିଜା ରାତିର ସ୍ୱପ୍ନ ଅବଶ୍ୟ ଦେଖିଥିଲେ କେତେଥର । କିନ୍ତୁ ଏମିତି ପ୍ରତିଦିନ ନୁହେଁ । ଝିପିଝିପି ବର୍ଷାର ସୁଲଳିତ ସଂଗୀତ ଏବଂ ପବନର ସାହାନାଇ ପ୍ରତି କାହିଁକି କେଜାଣି ପିଲାଦିନୁଁ ତାଙ୍କର ଆକର୍ଷଣ ଥିଲା ଅଦମ୍ୟ । ସେହି ଆକର୍ଷଣ ବହୁଗୁଣିତ ହୋଇଥିଲା ସେ କଲେଜରେ ଫାଷ୍ଟଇୟର୍ ପଢ଼ିଲାବେଳେ । ପରେ ପରେ ସେହି ଆକର୍ଷଣ ଗୋଟେ ସବୁଦିନିଆ ବସା ବାନ୍ଧିଥିଲା ଯେମିତି ତାଙ୍କ ମନଗହନରେ । କିନ୍ତୁ ବର୍ଷାଭିଜା ରାତି କେବେବି ଗ୍ରାସି ନ ଥିଲା ତାଙ୍କ ଅବଚେତନ ମନକୁ ।

ବାଣୀବିହାର କ୍ୟାମ୍ପସ୍‌ର କୃଷ୍ଣଚୂଡ଼ା, କଟକର ବର୍ଷା, ପୁରୀ ସମୁଦ୍ର ଆଦିକୁ ନେଇ କବିତା ଲେଖୁଥିବା ପ୍ରବୀର ଦାସ ସହ ସାକ୍ଷାତ ହବା ପରେ ବର୍ଷାଋତୁ ଯେମିତି ଲମ୍ୱା ଗୋଟେ ସ୍ୱପ୍ନରେ ରୂପାନ୍ତରିତ ହୋଇଯାଇଥିଲା ଆପେ ଆପେ ! କିନ୍ତୁ ବାଣୀବିହାର ଛାଡ଼ିବା ପରେ ପ୍ରବୀର ଦାସ ଆଉ ତା'ର କବିତା କେଉଁଆଡ଼େ ଉଭାନ୍ ହୋଇଗଲେ

ଯେ ବିଦିଶା ଆଉ ତା'ର ଖବର ରଖିପାରି ନ ଥିଲେ । ବାଣୀବିହାରର ପ୍ରେମ, କବିତା, ସ୍ୱପ୍ନ ସବୁ ତ ରୋମରେ ରୋମାଞ୍ଚ ପରି ସାମୟିକ ! ବିଦିଶା କେବେଠୁଁ ଭୁଲି ଯାଇଥିଲେ ପ୍ରବୀର ଦାସର ଅସଂଯତ ଶ୍ମଶ୍ରୁବହୁଳ ମୁହଁ, ଭିଜାମାଟି ପରି ତା' କବିତାର ବାସ୍ନା !

ଅଧ୍ୟାପକ ପ୍ରଭଞ୍ଜନ ପରିଡ଼ାଙ୍କୁ ବାହାହବା ପରେ କୌଣସି ସ୍ୱପ୍ନର ଠିକଣା ଖୋଜିବାର ଆଉ ଆବଶ୍ୟକତା ନ ଥିଲା ବିଦିଶାଙ୍କ ପାଇଁ । ସ୍ୱପ୍ନବିଭୋର ଥିଲା ତାଙ୍କ ଜୀବନ । ପୁଣି ପପୁଲ୍‌ର ଆଗମନ ପରେ ଗୋଟେ ପରିପୂର୍ଣ୍ଣତାର ଛିଟାରେ ରଙ୍ଗିନ୍ ହୋଇଯାଇଥିଲା ସାରା ସଂସାର ତାଙ୍କର । ବୈବାହିକ ଜୀବନର ପାଞ୍ଚ ବର୍ଷ ଭିତରେ ସେ ଛାଇପରି ପ୍ରଭଞ୍ଜନଙ୍କ ପାଖେ ପାଖେ ଥିଲେ । କେବେ ଦିନେ ଦୁଇ ଦିନ ପାଇଁ ବି ସେ ଦୂରେଇ ରହି ନ ଥିଲେ ପ୍ରଭଞ୍ଜନଙ୍କଠାରୁ ।

ଏବେ ମାତ୍ର ସପ୍ତାହକର ବ୍ୟବଧାନ ଶତାବ୍ଦୀଟିଏ ପରି ଦୀର୍ଘ ମନେ ହେଉଥିଲା ବିଦିଶାଙ୍କୁ । ତା' ସାଙ୍ଗକୁ ଅଜବ୍ ଗୋଟେ ସ୍ୱପ୍ନର ପୁନରାବୃତ୍ତି ତାଙ୍କ ଚିତ୍ତଚାଞ୍ଚଲ୍ୟକୁ ଦ୍ରୁତତର କରୁଥିଲା ଯାହା ।

ପ୍ରଥମେ ଯେତେବେଳେ ପ୍ରଭଞ୍ଜନ ରିସର୍ଚ୍ଚ ପ୍ରସଙ୍ଗ ଉଠେଇଥିଲେ, ବିଦିଶା ବେଶ୍ ଖୁସି ହୋଇଥିଲେ । ଖୁସି ହୋଇଥିଲେ ଏଇଥିପାଇଁ ଯେ ପ୍ରଭଞ୍ଜନଙ୍କ ନାମ ପୂର୍ବରୁ ଅନ୍ତତଃ 'ଡକ୍‌ଟର' ପଦବୀଟି ଲାଗୁ ଏବଂ ତାଙ୍କର ନିବନ୍ଧମାନ ବିଭିନ୍ନ ନାମଜାଦା ପତ୍ରପତ୍ରିକାରେ ସ୍ଥାନିତ ହେଉ । ପ୍ରଭଞ୍ଜନ ଯା' ଭିତରେ ଅନେକ ନିବନ୍ଧ ରଚନା କରି ବିଭିନ୍ନ ସେମିନାର୍‌ରେ ପାଠ କରିଥିଲେ ମଧ୍ୟ ଡକ୍ଟର ପଦବୀର ଅନୁପସ୍ଥିତି ଯୋଗୁଁ ହେଉ ବା ଧରାଧରିରେ ନୈପୁଣ୍ୟର ଅଭାବ ହେତୁ ହେଉ, ସେଗୁଡ଼ିକ ରିସର୍ଚ୍ଚ ଜର୍ଣ୍ଣାଲମାନଙ୍କରେ ସ୍ଥାନ ପାଇପାରୁ ନ ଥିଲା । ସେଥିଲାଗି ପ୍ରଭଞ୍ଜନଙ୍କ ମନ ଊଣା ହବା ଥିଲା ସ୍ୱାଭାବିକ୍ । ତା'ଛଡ଼ା ଡକ୍‌ରେଟ୍ ସହ ଦ୍ରୁତ ଦରମା ବୃଦ୍ଧିର ଘନିଷ୍ଠତା ହେତୁ ଆଜିକାଲି ରିସର୍ଚ୍ଚ କରିବାଟା ଅଧ୍ୟାପକମାନଙ୍କ ପାଇଁ ଏକପ୍ରକାର ବାଧ୍ୟବାଧକତାରେ ପରିଣତ ହୋଇଯାଇଥିଲା । ସୁତରାଂ ପ୍ରଭଞ୍ଜନଙ୍କ ରିସର୍ଚ୍ଚ କରିବା ଯୋଜନାକୁ କେମିତି ବା ତାରିଫ୍ କରି ନ ଥା'ନ୍ତେ ବିଦିଶା ?

କିନ୍ତୁ ପ୍ରଭଞ୍ଜନଙ୍କ ରିସର୍ଚ୍ଚ ଟପିକ୍‌କୁ ସେ ଆଦୌ ପସନ୍ଦ କରିପାରୁ ନ ଥିଲେ । ଯେକୌଣସି ଗୋଟେ ସହଜ ଟପିକ୍ ନେଇ ଆଜିକାଲି ଡକ୍ଟରେଟ୍ ପାଇବା କୋଉ ବା କଷ୍ଟକର ବ୍ୟାପାର । ପିଏଚ୍.ଡି. ଥେସିସ୍ ତ ଆଜିକାଲି କୁଆଡ଼େ ବଜାରରେ ବିକ୍ରି ହେଲାଣି ! ଗାଇଡ୍‌କୁ ସନ୍ତୁଷ୍ଟ କରିପାରିଲେ ଘରେ ବସି ବସି ପିଏଚ୍.ଡି. ଚାଷ ସମ୍ଭବ । ଚାଷ ଯାହାହେଉନା କାହିଁକି, ଫସଲ ଆମଦାନୀ ହବ ହିଁ ହବ । ଏକ୍ସଟର୍ନାଲ୍ ଭାବରେ ଯୋଉ ବିଶାରଦ ଆସନ୍ତୁନା କାହିଁକି, ଉଦାର ଉପହାର ବଳେ, କିବା ଅସାଧ୍ୟ

ମହୀତଳେ ? ନାଁ ରେଜେଷ୍ଟ୍ରିର ତିନି ବର୍ଷ ଭିତରେ ପିଏଚ୍.ଡି. ଫସଲ ଫଳିବ ନିଶ୍ଚୟ । ଧୋଇ-ମଗୁଡ଼ିର ସଂପର୍କ ନାହିଁ ଏ ଫସଲ ସାଙ୍ଗରେ । ପ୍ରଭଞ୍ଜନ ଏସବୁ ସହଜ ସତ୍ୟକୁ ଗ୍ରହଣ ନ କରି ଏଡ଼େ ଜିଟିମିଟିଆ ବିଷୟଟେ ବାଛିବାର ଆବଶ୍ୟକତା କ'ଣ ଥିଲା । ଆନ୍ଥ୍ରପଲଜିକାଲ୍ ଷ୍ଟଡ଼ିଜ୍ ଅନ୍ ବଣ୍ଡାଜ୍ । ବଣ୍ଡାମାନଙ୍କ ଉପରେ ମୂଲ୍ୟବାନ୍ ସନ୍ଦର୍ଭଟେ ଲେଖି ଦେଲେ ଯେମିତି ତାଙ୍କୁ କୋଉ ୟୁନିଭର୍ସିଟିରେ ପ୍ରଫେସର୍‌ସିପ୍ ମିଳିଯିବ !

ଏମିତିକା ଏକ ଟପିକ୍ ପାଇଁ ଲାଇବ୍ରେରୀ ଅପେକ୍ଷା ଫିଲ୍ଡ଼ ଷ୍ଟଡ଼ିର ଆବଶ୍ୟକତା ବେଶି । ଏହା ଜାଣି ମଧ୍ୟ ପ୍ରଭଞ୍ଜନ ସେଇ ଟପିକ୍‌ଟିକୁ ବାଛିଲେ । ତେଣୁ ବଣ୍ଡା ଅଞ୍ଚଳକୁ ଚାଲିଲେ ତିନିମାସିଆ ଗସ୍ତରେ ।

ଏ'ଠି ଏହି ଉପାନ୍ତ ସହରରେ ନା ତାଙ୍କର ଘର ଅଛି ନା ଅଛନ୍ତି କେହି ଆତ୍ମୀୟ ! ସହକର୍ମୀମାନଙ୍କ ସହ ଏତେ ଆତ୍ମୀୟତା ଥିଲେ ବି କେହି କ'ଣ ନିତି ଆସି ତାଙ୍କ ଘରଂ କଥା ବୁଝିପାରିବେ ? ତା'ଛଡ଼ା ସରକାରୀ କଲୋନୀରେ ରହୁଥିଲେ ହୁଏତ ଭିନ୍ନ ହୋଇଥା'ନ୍ତା ସଂପର୍କର ସେତୁ । ତାଙ୍କର ଏ ଭଡ଼ାଘର ଜଣେ ଦୁଇଜଣ ଅଧ୍ୟାପକଙ୍କ ଛଡ଼ା ଆଉ କେହି ତ ଦେଖି ନାହାନ୍ତି । ଅବଶ୍ୟ ସେ ପ୍ରୌଢ଼ ଘରମାଲିକ ସପରିବାର ଉପର ମହଲାରେ ରହେ ଓ ଲୋକଟା ନିହାତି ଭଦ୍ର । ଦୁଇ ତିନିଟା ବିଲ୍ଡ଼ିଂ ପରେ ଦର୍ଶନ ଅଧ୍ୟାପକ ଦାସମହାପାତ୍ର ରହନ୍ତି ଏଇ ଲାଇନ୍‌ରେ । ସେ ତ ଅନ୍ୟ ଗୋଟେ ଜଗତର ମଣିଷ ପରି । ତଳ ମୁହାଁ । ଚୁପ୍‌ଚାପ୍ । ଆଡ଼ବାୟା କହିଲେ ଚଳିବ । ତାଙ୍କ ସ୍ତ୍ରୀ ପୁଷ୍ପା ସହ ଅବଶ୍ୟ ବିଦିଶାଙ୍କର ଖୁବ୍ ଭଲ ସମ୍ପର୍କ । ପ୍ରାୟ ସମବୟସୀ ତ; ସେଇଥିପାଇଁ । ହେଲେ ସେମାନେ କ'ଣ ସାହାଯ୍ୟ କରିପାରିବେ ?

ତେଣୁ ବିଦିଶା ଚିନ୍ତା କଲେ, ତାଙ୍କ ସାନଭାଇ ଏ'ଠି ଦୁଇ/ତିନି ମାସ ରହିଲେ ଭଲ । କଟକରେ କଂପିଟିଟିଭ୍ ପାଇଁ ପ୍ରସ୍ତୁତ ହେଉଥିବା ମୁନାକୁ ତେଣୁ ଏଠାକୁ ଡକାଗଲା । ସେ ତା' ବହିପତ୍ର ସହ ଆସିଲା ପରେ ଯାଇ ପ୍ରଭଞ୍ଜନ ଫିଲ୍ଡ଼ ଷ୍ଟଡ଼ିରେ ଗଲେ ।

ପ୍ରଭଞ୍ଜନ ସେଇ ଯୋଉ ଗଲେ ଯେ ଗଲେ, ସପ୍ତାହଟେ ବିତି ଯାଇଥିଲେ ବି ଚିଠି ଖଣ୍ଡେ ନାହିଁ । ଅନ୍ତତଃ ଘର ମାଲିକ ଫୋନ୍‌ରେ କଥାପଦେ ତ ହୋଇପାରିଥା'ନ୍ତେ ! ସେ ଭଲରେ ପହଞ୍ଚିଲେ କି ନାହିଁ, ତାଙ୍କ ସବ୍‌କଲେକ୍ଟର ବନ୍ଧୁ ରହିବା ବନ୍ଦୋବସ୍ତ କଲେ କି ନାହିଁ, ତାଙ୍କ ରିସର୍ଚ୍ଚ କାମ ଆରମ୍ଭ ହେଲା କି ନାହିଁ ଏସବୁ ଜଣେଇବା କ'ଣ ତାଙ୍କର କର୍ତ୍ତବ୍ୟ ନୁହେଁ ? ତା'ଛଡ଼ା ପପୁଲ ଖବର ବୁଝିବାପାଇଁ ତାଙ୍କର କେମିତି ମନ ଗୁଡ଼େଇ ହଉନି ଯେ ! ବିଦିଶା ଭାବୁଥିଲେ, 'ଆଉଟ୍ ଅଫ୍ ସାଇଟ୍, ଆଉଟ୍ ଅଫ୍ ମାଇଣ୍ଡ' ଉକ୍ତିଟି ପୁରୁଷମାନଙ୍କପାଇଁ ମୁଖ୍ୟତଃ ପ୍ରଯୁଜ୍ୟ ।

ତଥାପି ସେଲାଗି ସେ ଏତେଟା ଅସ୍ଥିର ହେଉ ନ ଥିଲେ । ଆଜି ନ ହେଲେ କାଲି ଯେ ଚିଠି ଖଣ୍ଡେ କି ଫୋନ୍‌କଲ୍‌ଟେ ଆସିବ, ସେଥିରେ ସନ୍ଦେହ ନ ଥିଲା ବିଦିଶାଙ୍କର । ଅଜଣା ସ୍ଥାନରେ ନିଜେ ରହି ସାରିଲେ ତ ଯାହା କିଛି କରିବେ ପ୍ରଭଞ୍ଜନ ! ତା'ଛଡ଼ା ସେଠାରେ ନିକଟରେ କୋଉଁଠି ଫୋନ୍ ଥିବ କି ନାହିଁ, ପୋଷ୍ଟ ଅଫିସ୍ କେତେ ଦୂର ହୋଇଥିବ– ଏମିତି ସମ୍ଭାବନା ସବୁକୁ ବିଶ୍ଳେଷଣ କରି ନିଜ ମନକୁ ଅବଶ୍ୟ ବୁଝେଇ ଦେଉଥିଲେ ବିଦିଶା । ହେଲେ ପୁନଃ ପୁନଃ ଦେଖୁଥିବା ଅଜବ୍ ସ୍ୱପ୍ନଟି ତାଙ୍କ ମନକୁ ଅଯଥା ଭାରାକ୍ରାନ୍ତ କରୁଥିଲା ଓ ସେ ସ୍ୱପ୍ନମନସ୍କତାରୁ ମୁକୁଳିପାରୁ ନ ଥିଲେ ଜମା ।

ୟା' ଭିତରେ ବିଦିଶା ନିଜ ସ୍ୱପ୍ନ ବିଷୟରେ ପୁଷ୍ପା ଓ ଘର ମାଲିକଙ୍କ ସ୍ତ୍ରୀଙ୍କୁ କହି ସାରିଥିଲେ ।

ସ୍ୱ ୍ନ କଥା ଶୁଣି ପୁଷ୍ପା ତ ହସରେ ଫାଟିପଡ଼ିଲା । ବିଦିଶା ଯେତେ ସିରିଅସ୍ ହୋଇ କହିଲେ ବି ସେ ଆଦୌ ସିରିଅସ୍ ହେଲା ନାହିଁ ବରଂ ଟିହେଇଲା ଭଳି କହିଲା, କୋଉ ମନ୍ଦିର ବେଢ଼ାରେ କେବେ ମନ ଦିଆନିଆ ହୋଇଥିଲା କି ଗୋ ବିଦିଶା ଦେବୀ ? ନ ହେଲେ ମନ୍ଦିର ସ୍ୱପ୍ନ କାହିଁକି ଦେଖନ୍ତ ? ବିଦିଶା ପୁଷ୍ପାକୁ ଅଧିକ କିଛି କହିବାର ସୁଯୋଗ ନ ଦେଇ ଫେରିଆସିଲେ ।

ସେଦିନ ତାଙ୍କର ମନେ ହେଲା, ଘର ମାଲିକଙ୍କ ସ୍ତ୍ରୀଙ୍କୁ ସ୍ୱପ୍ନ ସମ୍ପର୍କରେ କୁହାଗଲେ କ୍ଷତି ନାହିଁ । ପାଠଶାଠ କମ୍ ହେଲେ ବି ସେ ମାଉସୀ ବଡ଼ ଅଭିଜ୍ଞ ଲାଗନ୍ତି । ପୁଅ ଝିଅ ବାହା କରେଇ ନାତିନାତୁଣୀ ଦେଖିଲେଣି । ସ୍ୱପ୍ନ ବିଷୟରେ ହୁଏତ ତାଙ୍କର କିଛି ଧାରଣା ଥିବ । ସଂଜବେଳେ ତାଙ୍କୁ ନିରୋଳାରେ ପାଇ ନିଜ ସ୍ୱପ୍ନ କଥା ବର୍ଣ୍ଣନା କଲେ ବିଦିଶା । ସବୁ ଶୁଣି ସାରି ମାଉସୀ କହିଲେ, 'ସେ ଯେତେଦୂର ଜାଣନ୍ତି ମନ୍ଦିର ସ୍ୱପ୍ନ ଦେଖିବା ଆଦୌ ଭଲ ନୁହେଁ । ବେଳେବେଳେ କୌଣସି ଦେବଦେବୀଙ୍କ ନିକଟରେ ମାନସିକ ରଖି ତାହା ପୂରଣ କରି ନ ଥିଲେ, ଏମିତି ସ୍ୱପ୍ନ ସବୁ ଦେଖାଦିଏ । ଏହାର ପ୍ରତିକାରସ୍ୱରୂପ ଯଥାଶୀଘ୍ର ରୁଦ୍ରଶାନ୍ତି କରାଇଦବା ଉଚିତ । ନ ହେଲେ ଏହାର ପ୍ରତିକୂଳ ପ୍ରଭାବ ସାରା ପରିବାର ଉପରେ ପଡ଼ିପାରେ ।'

ବିଦିଶା ମନେ ମନେ ଡରିଗଲେ । ପ୍ରଭଞ୍ଜନ ହୁଏତ କେଉଁ ପାହାଡ଼ ଖୋଲରେ ବଣ୍ଡାମାନଙ୍କ ଗହଣରେ ବୁଲୁଥିବେ । ବଣ୍ଡାମାନେ କୁଆଡ଼େ ଭାରି ହିଂସ୍ର । ସଭ୍ୟ ଜଗତଠାରୁ ଅନେକ ଦୂରରେ । ପୁଣି ସେ ଅଞ୍ଚଳ ଶ୍ୱାପଦ ସରୀସୃପରେ ଭରପୂର । ପ୍ରଭଞ୍ଜନଙ୍କର କେଉଁଠି କିଛି ଅସୁବିଧା ହେବ ନାହିଁ ତ ? ତାଙ୍କ ମନକୁ କେତେ ପ୍ରକାରର ପାପ ଛୁଉଁଥିଲା । ସେ ମନେ ମନେ ବହୁ ଦେବଦେବୀଙ୍କୁ ସ୍ମରଣ କରୁଥିଲେ ଓ ପିଏଚ୍.ଡି. ନ ହେଲେ ବରଂ ନ ହେଉ, ପ୍ରଭଞ୍ଜନ ଯେମିତି ଭଲରେ ଭଲରେ ଫେରି ଆସନ୍ତୁ, ତାହାହିଁ ମନାସୁଥିଲେ ।

ଅଗତ୍ୟା ସେ ସେହି ସ୍ୱପ୍ନଟିକୁ ପୁଣି ଥରେ ଦେଖିଲେ ଓ ତାଙ୍କ ନିଦ ଭାଙ୍ଗିଗଲା । ଏଥର ସ୍ୱପ୍ନର ସେ ମନ୍ଦିରଟି ଦିଶିଥିଲା ଆହୁରି ସୁନ୍ଦର । ମନ୍ଦିରଟି ନିହାତି ବଡ଼ ନ ହେଲେ ବି ଛୋଟ ନ ଥିଲା । କଳା ମୁଗୁନି ପଥରରେ ନିର୍ମିତ ନିଟୋଳ ମନ୍ଦିରଟି । କିନ୍ତୁ ଭାରି ପ୍ରାଚୀନ ପ୍ରାଚୀନ ଲାଗୁଥିଲା ମନ୍ଦିରର ଚେହେରା । ମନ୍ଦିରଗାତ୍ରରେ କେଉଁଠି କେମିତି ଆବଡ଼ା ଖାବଡ଼ା ଚିହ୍ନ । ମନ୍ଦିରର ଦ୍ୱାର ନିବୁଜ । ଦ୍ୱାର ଅଛି କି ନାହିଁ କେଜାଣି ! ସମ୍ଭବତଃ, ଅମୁହାଁ ଦେଉଳ । ମନ୍ଦିର ଚାରିପାଖରେ ଅରମା ବଣ ।

ବିଦିଶା ଦେଖିଥିବା କୌଣସି ମନ୍ଦିର ସହ ସ୍ୱପ୍ନର ଏହି ମନ୍ଦିରର ତିଳେ ବି ସାମଞ୍ଜସ୍ୟ ନ ଥିଲା । ବିଦିଶା ଆଶ୍ଚର୍ଯ୍ୟ ହେଉଥିଲେ ମନେ ମନେ । ପୁରୀ, କୋଣାର୍କ, ଭୁବନେଶ୍ୱର ସାନ ବଡ଼ କାହିଁ କେତେ ମନ୍ଦିର ଦେଖିଛନ୍ତି ସେ । ଗାଁରେ ପିଲାଦିନୁ ଦେଖିଆସିଛନ୍ତି ବିରଞ୍ଚିନାରାୟଣଙ୍କ ତୁଙ୍ଗ ମନ୍ଦିର । ଉତ୍ତର ଓ ଦକ୍ଷିଣ ଭାରତର କିଛି କିଛି ମନ୍ଦିର ବି ଦେଖିଛନ୍ତି ଏକ୍ସକରସନ୍ ସମୟରେ । ବହିରେ ଦେଖିଛନ୍ତି କାହିଁ କେତେ ପ୍ରକାର ମନ୍ଦିରର ଛବି । ପଢ଼ିଛନ୍ତି ମନ୍ଦିର ନିର୍ମାଣର ବିଭିନ୍ନ ଶୈଳୀ ସମ୍ପର୍କରେ । ଇତିହାସର ଛାତ୍ରୀ ଥିଲେ କିନା ? କିନ୍ତୁ ସ୍ୱପ୍ନର ମନ୍ଦିରଟି ଥିଲା ନିଆରା । ସବୁଠୁଁ ଭିନ୍ନ । ପୁଣି ବିଚିତ୍ର !

ମନ୍ଦିର ଯେଉଁ ସ୍ଥାନରେ ଅବସ୍ଥିତ, ସେହି ସ୍ଥାନଟିକୁ ଗଭୀରଭାବରେ ମନେ ପକାଇବାକୁ ଲାଗିଲେ ବିଦିଶା । କିନ୍ତୁ ନା... ତାଙ୍କର ସବୁ ସ୍ମୃତି ବୃଥା ହେଲା ଯେମିତି । ଦୀର୍ଘ ଅଠେଇଶ ବର୍ଷ ଜୀବନ ଭିତରେ ସେ ଦେଖୁଥିବା କୌଣସି ସ୍ଥାନ ସହ ସେହି ମନ୍ଦିର ପୃଷ୍ଠଭୂମିର କିଛି ବି ସମ୍ପର୍କ ନ ଥିଲା । ତା' ଛଡ଼ା ସେ ଦେଖୁଥିବା ସ୍ୱପ୍ନଟି କେଉଁ ସମୟର, ତାହା ବି ନିର୍ଣ୍ଣୟ କରିପାରୁ ନ ଥିଲେ ବିଦିଶା । ସେ ଦୃଶ୍ୟଟି ସଂଜର ନା ସକାଳର ? ଗଭୀର ନିଶୀଥର ନା ଦଗ୍ଧ ମଧ୍ୟାହ୍ନର ? ବର୍ଷାର ନା ବସନ୍ତର ? ବାରମ୍ବାର ଦେଖୁଥିବା ଦୃଶ୍ୟରୁ କିନ୍ତୁ ମିଳୁ ନ ଥିଲା ସମୟର କୌଣସି ସଂକେତ !

କିନ୍ତୁ ରାତି ପତଳା ହବାର ସଂକେତ ଦେଉଥିଲା ବିଦିଶାଙ୍କ ବେଡ୍‌ରୁମ୍‌ର କାନ୍ଥଘଣ୍ଟା । ବିଛଣାର ଗୋଟିଏ କୋଣରେ କୁଙ୍କୁରି କାଙ୍କୁରି ହେଉଥିଲା ପପୁଲ୍ । ମୁନା ରୁମ୍‌ରେ ଲାଇଟ୍ ଜଳୁଥିଲେ ବି ସ୍ୱର ଶବ୍ଦ କିଛି ଶୁଭୁ ନ ଥିଲା । ଅଧିକ ରାତି ପର୍ଯ୍ୟନ୍ତ ଅନିଦ୍ରା ହୋଇ ବ୍ୟାଙ୍କ୍ ପରୀକ୍ଷାପାଇଁ ଅଙ୍କ କଷୁଥିବା ମୁନା, ଲାଇଟ୍ ଲିଭାଇ ହୁଏତ ଶୋଇଯାଇଛି । ସେମିତିକା ବଦଭ୍ୟାସ ତା'ର ମୂଳରୁ ।

ପୁଷ୍ପା ବା ଘରବାଲୀ ମାଉସୀର ସ୍ୱପ୍ନ ବିଶ୍ଳେଷଣରେ ଅସନ୍ତୁଷ୍ଟ ହୋଇ ବିଦିଶା ମନେ ପକାଉଥିଲେ 'ମିଷ୍ଟ୍ରି ଅଫ୍ ଡ୍ରିମ୍ସ' ବହିଟି ସେ କେଉଁଠି ଦେଖିଥିଲେ । ହୁଏତ ସେହି ବହିରେ ସେ ଦେଖୁଥିବା ସ୍ୱପ୍ନର ରହସ୍ୟ ସଂପର୍କରେ କୌଣସି ତଥ୍ୟ ମିଳିପାରେ । ବାଣୀବିହାରରେ ତାଙ୍କ ରୁମ୍‌ମେଟ୍ ଥିବା ମନସ୍ତତ୍ତ୍ୱ ଛାତ୍ରୀ ନୀଳିମା ଚୌଧୁରୀ ପାଖରେ

ବୋଧେ ସେ ବହିଟିକୁ ପ୍ରଥମେ ଆବିଷ୍କାର କରିଥିଲେ ବିଦିଶା । ସେ ତ କାହିଁ କେତେ ଦିନ ତଳର କଥା । କିନ୍ତୁ ତା'ପରେ ସେହି ବହିଟିକୁ ସେ ପୁଣି ଥରେ କୋଉଠି ଦେଖିଥିଲେ । ଯେତେ ଦୂର ମନେ ପଡୁଥିଲା ବିଦିଶାଙ୍କର, ଖୁବ୍ କମ୍ ଦିନ ହେଲା ବହି ଖଣ୍ଡିକ ତାଙ୍କ ନଜରରେ ପଡ଼ିଥିଲା । ବଡ଼ ଗଭୀର ଭାବରେ ନିଜ ସ୍ମୃତିକୁ ଉଖାରିଲେ ବିଦିଶା । କେଉଁଠି, କେଉଁଠି ଦେଖିଥିଲେ ସେ ବହିଟିକୁ ।

ନିଜର ଦୁର୍ବଳ ସ୍ମୃତିକୁ ଭର୍ତ୍ସନା କଲେ ବିଦିଶା ମନେ ମନେ । ବହି ପ୍ରତି ଥିବା ଅନାଦର ଭାବ ପାଇଁ ବି ନିଜକୁ ଦୋଷୀ ମଣୁଥିଲେ । ଅନ୍ତତଃ ଜଣେ ଅଧ୍ୟାପକଙ୍କ ପତ୍ନୀ ଭାବରେ ବହି ପ୍ରତି ତାଙ୍କର ଏତେଟା ଖାମ୍‌ଖିଆଲ ମନୋଭାବ ବୋଧେ କ୍ଷମଣୀୟ ନୁହେଁ !

ତାଙ୍କର ମନେହେଲା, ପ୍ରଭଞ୍ଜନଙ୍କ ବହି ଆଲମାରି ଦରାଣ୍ଡିଲେ ହୁଏତ ବହିଟିର ସନ୍ଧାନ ମିଳିପାରେ । ସମାଜତତ୍ତ୍ୱ ସହ ମନସ୍ତତ୍ତ୍ୱର ନିବିଡ଼ ସମ୍ପର୍କ ହେତୁ ଅନେକ ସମୟରେ ପ୍ରଭଞ୍ଜନ ମନସ୍ତତ୍ତ୍ୱଭିତ୍ତିକ ବହିଗୁଡ଼ିକ ପଢ଼ନ୍ତି । ଗୋଟେ ଆଟେମ୍ପ୍‌ଟ୍ ନେଲେ କ୍ଷତି କ'ଣ ? ଡ୍ରେସିଂ ଟେବୁଲ ଡ୍ରରେ ଥିବା ଆଲମିରା ଚାବି ବାହାର କଲେ ବିଦିଶା ।

ଆଲମିରାର ତଳ ଦୁଇ ଥାକରେ ଥିବା ମୋଟା ବହିଗୁଡ଼ିକ ଖେଳେଇବା ଦରକାର ପଡ଼ିଲା ନାହିଁ । ବିଦିଶା ସ୍ପଷ୍ଟ ମନେ ରଖିଥିଲେ ଯେ ବହିଟି ଶହେ କି ଦେଢ଼ଶହ ପୃଷ୍ଠା ସମ୍ବଳିତ ପେପର୍‌ବ୍ୟାକ୍ ଡିଜାଇନ୍‌ର । ପେଙ୍ଗୁଇନ୍ ପରି କୌଣସି ସଂସ୍ଥା ଦ୍ୱାରା ସମ୍ଭବତଃ ପ୍ରକାଶିତ । ଲେଖକ ତ ନିଶ୍ଚିତ ଜଣେ ବିଦେଶୀ । କଭର୍ ପେଜ୍‌ରେ ଗୋଟେ ମଣିଷର ଚିତ୍ରବିଚିତ୍ର ମୁଣ୍ଡର ଛବି । ଆଲମିରାର ପର ଥାକରେ ଥିବା ସେହି ଧରଣର ଛୋଟ ଛୋଟ ବହିଗୁଡ଼ିକ ଉପରେ ପ୍ରଥମେ ନଜର ଢାଳିଲେ ବିଦିଶା । ଖବରକାଗଜଦ୍ୱାରା ମଲାଟ କରାଯାଇଥିବା କେତୋଟି ବହି କାଢ଼ି ସେଗୁଡ଼ିକର ଶିରୋନାମ ପଢ଼ିଲେ । ମୋଟାମୋଟା ବହିପଛରେ ରହିଥିବା ଛୋଟ ବହି ସବୁକୁ ବି ଖୋଜିଲେ । ପର୍ଯ୍ୟାୟକ୍ରମେ ସେ ଆଲମିରା ଯାକ ବହି ଦେଖିନେଲେ । ଅଥଚ ବହିଟିର ସନ୍ଧାନ ମିଳିଲା ନାହିଁ । ପଢ଼ା ଟେବୁଲ୍, କାନ୍ଥରେ ଝୁଲୁଥିବା କେତୋଟି ଛୋଟ ର୍‍ୟାକ୍, ଏପରିକି ଖଟତଳେ ଥିବା ବହି ପେଟିଗୁଡ଼ିକୁ ତନ୍ନତନ୍ନ କରି ପରୀକ୍ଷା କରିନେଲେ ବିଦିଶା । ତଥାପି ବହିଟି ନଜରକୁ ଆସିଲା ନାହିଁ ।

ବିଦିଶା ସେତେବେଳକୁ ଥକ୍କି ପଡ଼ିଥିଲେ । ବହି ଖୋଜାଖୋଜିର ମୃଦୁ ଗୁଞ୍ଜରଣରେ ପପୁଲ ଥରେ ଦୁଇଥର କାନ୍ଦି ସାରିଥିଲା । ପାହାନ୍ତିଆ ବସ୍ ଗୋଟେ ଯୋଡ଼େର ଲମ୍ବା ହର୍ଣ୍ଣରେ ଚହଲି ଯାଉଥିଲା ରାତ୍ରିର ନିସ୍ତବ୍ଧତା । ଆଉ ଘଣ୍ଟାଏ ଶୋଇଯିବାକୁ ଇଚ୍ଛା ହେଲା ବିଦିଶାଙ୍କର ।

ବାହାରେ ରିକ୍ସାଟିଏ ଯାଉଥିବାର ଶବ୍ଦ ଶୁଣିଲେ ସେ । ନା– ରିକ୍ସାଟା ରହିଲା ବୋଧେ ଠିକ୍ ତାଙ୍କ ଗେଟ୍ ପାଖରେ । ବିଦିଶା କାନ ପାରିଲେ । ତା'ପରେ କଲିଂ ବେଲ୍‌ର ଆବାଜ୍ । ସେ ଝର୍କା ଖୋଲି ବାହାରକୁ ଚାହିଁଲେ । ଅସ୍ପଷ୍ଟ ଆଲୋକରେ କିନ୍ତୁ ସ୍ପଷ୍ଟ ଦିଶୁଥିଲେ ପ୍ରଭଞ୍ଜନ । ବିଜୁଳି ଝଲକଟେ ସଂଚରିଗଲା ବିଦିଶାଙ୍କ ଦେହସାରା । ସେ କବାଟ ଫିଟାଇଲେ । ଜାଫ୍ରିର ଚାବି ଖୋଲି ପ୍ରଭଞ୍ଜନଙ୍କ ଆଟାଚିଟା ଧରିଲେ ।

ଖୋଲା ଆଲମିରା ଓ ଇତସ୍ତତଃ ବହି ର୍ୟାକ୍‌କୁ ଦେଖି ମନେ ମନେ ଆଶ୍ଚର୍ଯ୍ୟ ହେଉଥିଲେ ପ୍ରଭଞ୍ଜନ । 'କ'ଣ ଶୋଇ ନ ଥିଲ କି' ବୋଲି ପଚାରୁ ପଚାରୁ ସେ ବସିପଡ଼ିଲେ ବିଛଣାରେ । ବିଦିଶା କହିଲେ, 'ନା, ନିଦ ଭାଙ୍ଗିଗଲା ରାତି ଅଧରେ । ଗୋଟେ ବହି ଖୋଜୁଥିଲି ।' ବିଦିଶାଙ୍କ ବହି ନିଶା ବଡ଼ ଅଜବ୍ ମନେ ହେଉଥିଲା ପ୍ରଭଞ୍ଜନଙ୍କୁ । କି ବହି ଖୋଜୁଥିଲ ଶୁଣେ, ସେ କୁତୂହଳୀ ହୋଇ ପଚାରିଲେ । 'ମିଷ୍ଟ୍ରି ଅଫ୍ ଡ୍ରିମ୍ସ', ବିଦିଶାଙ୍କ ଠୁଁ ଶୁଣିଲାକ୍ଷଣି ଚିହିଁକି ପଡ଼ିଲେ ପ୍ରଭଞ୍ଜନ ଓ କହିଲେ, 'ମୁଁ ତ ମାଲକାନଗିରିର ସେ ନିର୍ଜନ ଡାକବଙ୍ଗଳାରେ ସ୍ୱପ୍ନ ଦେଖି ଦେଖି ବୋର୍ ହୋଇଗଲି ଯେ ରିସର୍ଚ୍ଚ କାମଛାଡ଼ି ଚାଲିଆସିଲି । ତମେ ବି କ'ଣ ଏଠି ସ୍ୱପ୍ନ ଦେଖୁଥିଲ ?' ପ୍ରଭଞ୍ଜନଙ୍କ ପ୍ରଶ୍ନର ଉତ୍ତର ନ ଦେଇ ତାଙ୍କ ପାଖକୁ ଲାଗି ବସିପଡ଼ିଲେ ବିଦିଶା ଓ ସେ କି ସ୍ୱପ୍ନ ଦେଖୁଥିଲେ ଶୁଣିବାପାଇଁ, ଗୋଟେ ଗପକୁହା ବୁଢ଼ୀମା' ନିକଟରେ କୁନି ନାତୁଣୀଟେ ପରି ଅଳି କଲେ । 'ଗହଳ ତରୁରେ ତୀରଭର୍ତ୍ତି ଗୋଟେ ନଈ', ପ୍ରଭଞ୍ଜନ କହୁଥିଲାବେଳେ ସ୍ୱପ୍ନ ପରି ରହସ୍ୟମୟ ହୋଇଉଠୁଥିଲେ ବିଦିଶା ଯେମିତି !



# ସାନସାଆନ୍ତେ

ଭୁବନେଶ୍ୱରରୁ ଭଦରଖ, ସେଠୁ ପୁଣି ଖାଙ୍କିହାଟ ହେଇ କଥା ପହଞ୍ଚିଲା କୁବେରୀ ଗାଁରେ । ହାଟବାହୁଡ଼ା ଗାଁ-ମିଣିପେ ଯେଝା ଯେଝା ଭାରିଯାମାନଙ୍କ କାନରେ କହିଥିଲେ କଥାଟା, ଅଧ ରାତିରେ । ହେଲେ, ମାଇପିମାନଙ୍କ ପେଟରେ କ'ଣ କଥା ପଚେ । କଥାଟା ପହିଲେ ନଣ୍ଡାଭାରିଯା ପାଖରୁ କୁଆଡ଼େ ପ୍ରଘଟ ହୋଇଥିଲା । ସେ କିଛି କଥା ପେଟରେ ରଖିପାରେନି । ସକାଳୁ ସକାଳୁ ଯେମିତି ତା' ଜିଭ ଖଲବଲ ହେଲା । ଚମ୍ପାବୋଉ ଆଗରେ ସେ କଥାଟା ଗୁଣୁଗୁଣୁ କରି କହିଲା, ରାଣନିୟମ ପକେଇ । ଆଉ ଚମ୍ପାବୋଉ ପାଟିଖଣ୍ଡକ ତ ଆକାଶବାଣୀ, କଟକକୁ ବଳି ! ତହୁଁ କଥାଟା କାନକୁ କାନ ଚରି ସାରା ଗାଁକୁ ବ୍ୟାପିଗଲା । ତା'ପରେ ଗାଁଦାଣ୍ଡ ଖାଲି ଉଠିଲା ପଡ଼ିଲା ।

ବୁଦ୍ଧିଆବୋଉ କାନରେ କଥା ପଡ଼ିଲାରୁ ତା' ମଗଜରେ ନିଆଁ ଲାଗିଲା ଯେମିତି । ସେ ତ ମାରିବ କି ମରିବ ହେଲା । ଅଣ୍ଟାରେ ଲୁଗାଗୁଡ଼େଇ ବାହାରିଗଲା ଦାଣ୍ଡକୁ । କହିଲା, ''ମୋ ପୁଅ ଜିଅଲ ଯିବା ଦେଖିଚ ନା ଲୋ ରାଣ୍ଡଆଣ୍ଟୁକୁଡ଼ୀଏ ? ବୁଦ୍ଧିଆ ପରି ସୁଧାର ପିଲା ନାଁରେ ଅକଥା କହିବାକୁ ତମ ଜିଭ ଲେଉଟିଲା କେମିତି ? ତମକୁ ଧର୍ମ ସହିବ ନା ଲୋ । ତମ ଜିଭ ଛିଡ଼ିପଡ଼ିବ, ଏମିତି ମିଛକଥା କହୁଚ । ମଲାବେଳକୁ ତମ ପାଟିରେ ପୋକ ପଡ଼ିବ ଲୋ, ରାଣ୍ଡେ ।'' ବୁଦ୍ଧିଆବୋଉ ଗାଳି ଦେଇ ଦେଇ ଦି'ତିନିଥର ଲଟରପଟର ହେଲା ଗାଁଦାଣ୍ଡରେ ! ହେଲେ ତମାମ ଗାଆଁର ମାଇପେ ମିଣିପେ କେହି ଉଁ କି ଚୁଁ ହେଲେ ନାହିଁ । ବୁଦ୍ଧିଆବୋଉ ତୁଣ୍ଡ ନା ମେଣ୍ଢାମୁଣ୍ଡ– କାହାର ଗରଜ ପଡ଼ିଚି ଯେ ନିଆଁକୁ ଡାକି ଅଣ୍ଟାରେ ଖୋସିବ ?

ବୁଦ୍ଧିଆବୋଉ ଦେଖିଲା ଗାଁମାଇପେ ଡରେ ଘରେ ପଶିଲେଣି; ମିଣିପେ ବି ଚୁପ୍ । ଆଗ ବଳବୟସ ଥିଲେ ସେ ଦିନେଓଳିଏ ଲଗେଇପଟେଇ ଗାଳି ଦେଇଥା'ନ୍ତା । ସମସ୍ତଙ୍କ ବଉଁଶର ଗୋହି ଖୋଳିଥା'ନ୍ତା । ହେଲେ, ଏବେ ବେଶି ବକ୍‌ବକ୍ ହେଲେ ତା' ତଣ୍ଟି ଶୁଖିଯାଉଥିଲା । ସେଇଠୁ ସେ ତୁନି ହେଇ ଘରକୁ ଫେରିଆସିଲା । ଉପରକୁ ଯେତେ ମୁହଁ ଦେଖେଇହେଲେ ବି ତା'ଛାତିରେ ଛନକା ପଶୁଥିଲା । ସତରେ କ'ଣ ବୁଦ୍ଧିଆକୁ ଜିଅଲ ହେଇଚି ? କ'ଣପାଇଁ ଜିଅଲ ହବ

ତାକୁ ? ସେ ତ ଚୋରିନାରୀ କରିବା ପିଲା ନୁହେଁ– ଖାଲିଖାଲିଟାରେ ସେ ଜିଅଲ ଯିବ କାହିଁକି ? ତା'ଛଡ଼ା ସାନସାଆନ୍ତେ ଥାଉ ଥାଉ କୋଉ ପୁଅର ବହପ ହବ ବୁଦ୍ଧିଆ ହାତରେ କଡ଼ି ପିନ୍ଧେଇବାପାଇଁ ?

ସାନସାଆନ୍ତେ ତ ଏ ଯୁଗର ରଜା– ରଜା ନୁହନ୍ତି ତ ଆଉ କ'ଣ ? ବାପେ ରଜା ଥିଲେ, ପୁଅ ବି ରଜା । ବାପେ ବଡ଼ସାଆନ୍ତେ ଥିଲେ ବଡ଼ ଜମିଦାର । ପଟ୍ଟନାୟକ ବୋଲି ଖଣ୍ଡମଣ୍ଡଳରେ ନାଁଡାକ ଥିଲା । ତାଙ୍କ ପିସାବରେ ଦିହୁଡ଼ି ଜଳୁଥିଲା ବୋଲି କଥାଅଛି । ସେ ଥିଲେ ଦାତାପଣରେ ହରିଶ୍ଚନ୍ଦ୍ର, ଦଣ୍ଡିବାରେ ଇନ୍ଦ୍ର । ମଝିରେ ଉଆକା ଉଠିଲା, ସେ ଆଉ ଜମିଦାର ନାହାନ୍ତି, ଦେଶ କ'ଣ ସ୍ୱାଧୀନ ହେଇଗଲା । ଲୋକେ ନିଜେ ନିଜର ଶାସକ ହେଲେ । ଏ କି କଥାଲୋ ମା' ? ବଡ଼ସାଆନ୍ତେ କିନ୍ତୁ ମଲା ପରିଯନ୍ତ ଜମିଦାର ପରି ଖାତିର ପାଉଥିଲେ, ରଜାପରି ଚଳୁଥିଲେ । ତାଙ୍କ ପୁଅ ସାନସାଆନ୍ତେ ଆଉ ରଜା ନ ହୁଅନ୍ତେ କି ? 'ଯା' ବାପ ଚଢ଼େ ଘୋଡ଼ା, ତା' ପୁଅ ଥୋଡ଼ା ଥୋଡ଼ା' । ରଜା ନ କହି ତାଙ୍କୁ ମନ୍ତିରୀ କହୁଚନ୍ତି । କୁହନ୍ତୁ, ଏକାକଥା– 'ଆରେ ଚଷା, ତମ ଆଡ଼େ ଯାହା ହାଣ୍ଡିଆଟିକା, ଆମ ଆଡ଼େ କଂସା' । ସତରେ ରଜାଠାରୁ କୋଉଗୁଣରେ କମ୍ ନୁହନ୍ତି ତ ସାନସାଆନ୍ତେ !

ବଡ଼ସାଆନ୍ତଙ୍କ ପରି ଲମ୍ବା ଚଉଡ଼ା ପାଞ୍ଚହାତିଆ ମର୍ଦ ସାନସାଆନ୍ତେ । ବାପଙ୍କ ପରି ଖଣ୍ଡାଧାର ନାକ, ଲମ୍ବା ହାତ, ଟାଇଁଟାଇଁ କଥା, ବେଖାତିର ଚାଲି... । ଏୟା କ'ଣନା ବଡ଼ସାଆନ୍ତେ ପାଟମଠା ପିନ୍ଧୁଥିଲେ, ସାନସାଆନ୍ତେ ଧୋତି ପଞ୍ଜାବି ପିନ୍ଧୁଚନ୍ତି; ବଡ଼ସାଆନ୍ତଙ୍କ ମୁଣ୍ଡରେ ଶିରିପା ଶୋଭାପାଉଥିଲା, ସାନସାଆନ୍ତଙ୍କ ମୁଣ୍ଡକୁ ସଫା ଖଦଡ଼ ଟୋପି ବେଶ୍ ମାନୁଚି । ବଡ଼ସାଆନ୍ତେ ମରହଟ୍ଟୀ ପାଣ୍ଡୋଇ ପିନ୍ଧୁଥିଲେ, ସାନସାଆନ୍ତେ ପାଦରେ କିନ୍ତୁ ସାଦା ଚପଲ ହଳେ । ବଡ଼ସାଆନ୍ତେ ଘୋଡ଼ା ଚଢୁଥିଲେ, ସାନସାଆନ୍ତେ ଗାଡ଼ି ଚଢୁଛନ୍ତି । ପ୍ରଜାମାନେ ବଡ଼ସାଆନ୍ତଙ୍କର ଜୟଜୟକାର କରୁଥିଲେ, ସାନସାଆନ୍ତଙ୍କର ଜିନ୍ଦାବାଦରେ ଏବେ ମେଦିନୀ କମ୍ପୁଚି । ହାକିମହୁକୁମା, ଦାରୋଗାଦିପୋଟି ବଡ଼ସାଆନ୍ତଙ୍କ କଥାକୁ ଆଜ୍ଞା ମଣୁଥିଲେ ପରା, ସେମିତି ବି.ଡି.ଓ., ତହସିଲଦାର, ଏସ୍.ପି., କଲେକ୍ଟର ସାନସାଆନ୍ତଙ୍କ କଥାକୁ ହାତଯୋଡ଼ିଥା'ନ୍ତି । ଏମିତିକା ସାଆନ୍ତଙ୍କର ଆଜ୍ଞାବହ ବୁଦ୍ଧିଆ, ତାକୁ କିଏ ହାଜତକୁ ପଠେଇବ !

ଛି.....ଛି......, ଏସବୁ ଗାଁ ମାଇପିଙ୍କ କରାମତି । କୁଆଟେ ଉଡ଼ିଗଲେ ତ ତାଙ୍କୁ ଛୁଆଟେ ଉଡ଼ିଗଲା ପରି ଦିଶେ । ବୁଦ୍ଧିଆର ବଡ଼ତି ଦେଖିପାରୁ ନାହାନ୍ତି । ଅସହଣୀଗୁଡ଼ାକ । ତମ ପିଲାଗୁଡ଼ା ଜମିବାଡ଼ିରେ ଖଟିଲେ, ସେମିତି ମଳିମୁଣ୍ଡିଆ ହେଇ ରହିଲେ; ହେଲେ ବୁଦ୍ଧିଆର ଭାଗ୍ୟ, ସେ ନାପିତରୁ ନେତା ହେଲା ।

ଏସବୁ ସେହି ସାନସାଆନ୍ତଙ୍କ କରୁଣାରୁ । ତମ ଛାତିରେ କାହିଁକି ଛୁରି ଚାଲିଯାଉଚି ? ମଉରାଖାଇକି ମରୁନ ଲୋ । ଏମିତି ଗୁଣୁଗୁଣୁ ହଉଥିଲା ସିନା ବୁଦ୍ଧିଆବୋଉ, ହେଲେ ତା' ମା' ମନ ଥ' ହଉ ନ ଥିଲା ।

ଦୀନା ବାରିକ ମନ ବି ଥୟ ହଉ ନ ଥିଲା । ବୁଢ଼ୀ କାଳେ କନ୍ଦାକଟା କରିବ, ସେଥିଲାଗି ସେ ଚୁପ୍ ଥିଲା । ହେଲେ, ବୁଦ୍ଧିଆବୋଉ ତାକୁ ଛିଗୁଲେଇଲା, ''ତମେ ବାପ ନା କଂସେଇ ମ ! ତମ କାନରେ ସବୁକଥା ବାଜୁଥିବ, କିନ୍ତୁ ତୁମେ ଯେମିତି କିଛି ଶୁଣିପାରୁ ନ ଥିବ । ଇମିତି ଦାରୁଭୂତମୁରାରି କେଉଁଠି ସଂସାରରେ ଥିବେ ନା ? କଥା କ'ଣ ଯାଇ ବୁଝିଆସୁନ ଭୁବନେଶ୍ୱରରୁ । ଆଗ ଯୁଗ ହେଇଚିନା, ତମକୁ ଯିବାଆସିବା ବାଧିବ । ଗମ୍ଭୁ ସା'କୁ କହିଲେ, ଭୋ'ରୁ ରିକ୍ସା ନେଇ ସେ ଖାଙ୍କିହାଟରେ ଛାଡ଼ିଦେଇଆସିବ ତମକୁ । ସେଠୁ ତ ଗୋଟେ ବସ୍‌ରେ ବସି ତମେ ଯାଇ ପହଞ୍ଚିବ ବୁଦ୍ଧିଆ ପାଖରେ । ସାଆନ୍ତଘର ଖାନ୍‌ଦାନି ନାପିତ ତମେ, ଚାରିଆଡୁ ଶିଆଣ । ତମର ବଳ ହଟିଲେ ବି ବୁଦ୍ଧି କ'ଣ ହଟିଚି ? ଯାଉନ ।''

ଦୀନା ବାରିକର ଆଉ ଚାରା ନ ଥିଲା । ହଁ ନ ମାରିଲା ପର୍ଯ୍ୟନ୍ତ ତାକୁ କ'ଣ ବୁଦ୍ଧିଆବୋଉ ଛାଡ଼ିବ ?

''ହଉ ହେଲା, ମୁଁ କାଲି ସକାଳକୁ ବାହାରିବି, ହ୍ୟାପ୍, ତୁ ଆଉ ପାଟି ଉଚ୍ଛାଳ କର ନା'', ଦୀନା ବାରିକ ପାକୁଆପାଟିରେ ଫିସ୍‌ଫାସ୍ କରି କହିଲା । କିନ୍ତୁ ବୁଦ୍ଧିଆବୋଉ କଥାରୁ ତା' ଦିହକୁ ବି ଶଙ୍କା ଡେଇଁଲା । ନିଆଁ ନ ଥିଲେ ଧୂଆଁ ଆସିବ କାହୁଁ ? ତା' ଭିତରଟା ଗୋଳେଇଘାଣ୍ଟି ହେଲା । ଦୀନାଟା କେମିତି କେମିତି ଭାରି ଉଦାସିଆ ଲାଗିଲା ।

ଦୀନା ବାରିକ କିନ୍ତୁ ଭାରି ଦମ୍ଭିଲା ମଣିଷ । ବଡ଼ସାଆନ୍ତଙ୍କ ପାଖରେ ପଚାଶବର୍ଷ ଖଟିଚି– ତାକୁ ଏ ଅଞ୍ଚଳରେ ନ ଚିହ୍ନେ କିଏ ? ସାଆନ୍ତଙ୍କ ବୁଦ୍ଧିବଣା ହେଲେ ସେ ପୁରୋହିତ, ଗୁମାସ୍ତା କାହାରିକୁ ନ ପଚାରି ତା' ପରାମର୍ଶ ଲୋଡୁଥିଲେ । ସାଆନ୍ତଙ୍କୁ କହି ବହୁଲୋକଙ୍କୁ ସେ ମାଫିଦିଆ କରେଇଥିଲା । ଓକିଲ ମୁକ୍ତାରଙ୍କ ଆଗରେ ବି ଜବାବ ଦଉଥିଲା । ସାଆନ୍ତଙ୍କ ଛଡ଼ା ଆଉ କାହାରିକୁ ଖାତିର୍ ନ ଥିଲା ତା'ର । ଏବେ ବଦଳି ଯାଇଥିବା ଯୁଗକୁ ସେ ହୁଏତ ଠିକ୍ ବୁଝିପାରୁ ନ ଥିଲା । ପୁଣି ପୁଅ ଜେଲ୍ ଯିବାକଥା ଶୁଣି ଦବିଯାଉଥିଲା ତା' ମନ ।

ବଡ଼ସାଆନ୍ତଙ୍କ ଅନ୍ତେ ସାନସାଆନ୍ତଙ୍କ ଉପରେ ଦୀନା ବାରିକର ଥିଲା ଅତୁଟ ଆସ୍ଥା । ସାନସାଆନ୍ତଙ୍କୁ କହିବୋଲି ସେ ବୁଦ୍ଧିଆଟାକୁ ଏକପ୍ରକାର କୂଳରେ ଲଗେଇଥିଲା । ନ ହେଲେ ସେ ନିର୍ବୁଦ୍ଧିଆଟା ଅଥଳ ପାଣିରେ ଭାସିଥା'ନ୍ତା ।

ପୈତୃକ ବୃତ୍ତି ଶିଖିଲା ନାହିଁ– ପାଠପଢ଼ିବା ନାଁରେ । ହେଲେ ଭଲ ଦି'ଅକ୍ଷର ପାଠ ବା କେଉଁଠି ପଢ଼ିଲା । ମେଟ୍ରିକ୍‌ରେ ଫେଲ୍ ହେଇ ହେଇ ପାଞ୍ଚଥରକେ ପାସ୍ କଲା । ସେତେବେଳକୁ ପାଳିଆରେ କଲେଜ ଖୋଲିଯାଇଥିଲା ବୋଲି ସିନା ସେ କଲେଜ ଦରଜା ମାଡ଼ିଲା, ନ ହେଲେ କଲେଜ କିଏ, ସିଏ କିଏ ? ଭଦରଖରେ କୋଉ ସିଟ୍ ମିଳିଥା'ନ୍ତା ତାକୁ ?

କଲେଜରେ ନିର୍ବୁଦ୍ଧିଆ ବୁଦ୍ଧିଆ ସତରେ ବୁଦ୍ଧିଆ ପାଲଟିଗଲା । ପାଠଶାଠ ସିନା ପଢ଼ିଲା ନାହିଁ, ହେଲେ ନେତା ବନିଗଲା । କ'ଣ ଗୋଟେ ପଦପଦବୀ ପାଇଲା । ଭାଷଣ ଦବା ଜାଣିଲା । ତା' ସାଙ୍ଗକୁ ଚାନ୍ଦାଭେଦା ଆଦାୟ କରିବା, ମେଳିବାନ୍ଧିବା ଶିଖିଲା । ପଇସା ଉଡ଼େଇଲା ପାଣି ପରି । କିନ୍ତୁ ଅସଲ କଥାକୁ ମନଦେଲାନି ଜମା । ଦି'ବର୍ଷ ପରେ ଆଉ କଲେଜ ଗଲା ନାହିଁ, ପାସ୍ ବି କଲା ନାହିଁ । ଦୀନା ବାରିକ ଦୁଃଖରେ ଦୀର୍ଘଶ୍ୱାସ ଛାଡ଼ି କହିଲା, 'ବାପରେ, ଏ କୁଳ ହେଲୁନି କି ସେ କୁଳ ହେଲୁନି– କରିବୁ କ'ଣ ? ପେଟ ଚାଖଣ୍ଡକ ପାଇଁ କାହାପାଖରେ ହାତ ପତେଇବୁ ?' ବୁଦ୍ଧିଆର କିନ୍ତୁ ସେସବୁ ଚିନ୍ତା ନ ଥିଲା– ବାପ ପଇସାରେ ହାଟବାଟ ନା ବହିଯାଉଚି ଗେହ୍ଲନାଟ । ଦୀନା ବାରିକ ବୁଝିଲା, ବୁଦ୍ଧିଆର ଯୋଉ ଅବାଟରେ ଯିବା ଆରମ୍ଭ ହେଇଚି ତା'ର ଶେଷ ନାହିଁ । କ'ଣ କରିବ, ଭାବି ଭାବି ସେ ସାନସାଆନ୍ତଙ୍କ ପାଖରେ ପହଞ୍ଚିଲା । ଗୁହାରିକଲା– ସାଆନ୍ତେ, ମୋ' ବୁଦ୍ଧିଆଟାକୁ କୋଉଠି ହେଲେ ଲଗେଇଦିଅ– ବରଂ ପିଅନ ଚପ୍ରାସୀଟେ ହଉ । ନ ହେଲେ ସେ ଭବିଷ୍ୟତରେ ପେଟ ପାଳିବ କେମିତି ?

ସାନସାଆନ୍ତଙ୍କୁ ବୁଦ୍ଧିଆ ବିଷୟରେ ଏତେକଥା ମାଲୁମ୍ ବୋଲି ଦୀନା ବାରିକକୁ ଜଣା ନ ଥିଲା । ସାଆନ୍ତେ କହିଲେ, ''ଦୀନବନ୍ଧୁ, ବୁଦ୍ଧିରାମର ପ୍ରତିଭା ଅଛି । ସେ କ'ଣ ଚପ୍ରାସୀ ହବ ? ତା' ଦାୟିତ୍ୱ ମୋ'ର । ଚିନ୍ତା ତମେ ମନରୁ ପୋଛିଦିଅ ।'' ସାନସାଆନ୍ତଙ୍କଠାରୁ ଅଭୟବାଣୀ ଶୁଣିଲାପରେ ଦୀନା ବାରିକ ଉତ୍‌ଫୁଲ୍ଲିତ ହେଲା । ବଡ଼ସାଆନ୍ତଙ୍କ ପରି ସାନସାଆନ୍ତଙ୍କ କଥା ବେଦରଗାର ।

ସେହିଦିନରୁ ବୁଦ୍ଧିଆ ସାନସାଆନ୍ତଙ୍କ ପାଖରେ ଛାଇପରି ଲାଗିରହିଲା । ଦି'ଦି'ଟା ଇଲେକ୍ସନର ସବୁ ଦାୟିତ୍ୱ ବୁଦ୍ଧିଆ ଉପରେ ଲଦିଦେଇଥିଲେ ସାଆନ୍ତେ । କୋଉ ଗାଆଁରେ କୋଉଦିନ ଭୋଜିଭାତ ହବ, କୋଉ କ୍ଲବ୍‌ଟୋକାଙ୍କୁ ବଲବ୍ୟାଟ୍ ଦିଆଯିବ, କୋଉ ଗାଁ ରାସ୍ତାରେ ଆଗତୁରା ମୋରମ ପଡ଼ିବ, କୋଉ ମାମଲତକାରକୁ ହାତଗୁଞ୍ଜା ଦବାକୁ ହବ– ସବୁ ବୁଝୁଥିଲା ବୁଦ୍ଧିଆ । ଗାଁ ଗାଁ ବୁଲି ସାଆନ୍ତଙ୍କପାଇଁ ଭୋଟ୍ ପ୍ରଚାର କରିବା, ସଭାସମିତିକୁ ଲୋକ ବୋହିବା, ପୋଷ୍ଟର ଲଗେଇବା, ପୁଣି ଦରକାରବେଳେ ଠେଙ୍ଗା ଉଠେଇବା– କୋଉ କାମ ନ କରିଛି ଟୋକାଟା !

ସ୍ଲୋଗାନ୍ ଦେଇ ଦେଇ ତ ତଣ୍ଟି ଫଟେଇଥିଲା । ଆକ୍ସିଡେଣ୍ଟରେ ହାତ ଭାଙ୍ଗିଥିଲା ତା'ର । ମୁଣ୍ଡ ଫାଟିଥିଲା ପୁଣି ଭୋଅଟ୍ ଦିନ । ସାଆନ୍ତେ ସେଥର ଏମ୍.ଏଲ୍.ଏ. ହେଲେ, ହେଲେ ବି ମନ୍ତ୍ରୀ ।

ମନ୍ତ୍ରୀ ହେଲା ପରେ ବି ସାଆନ୍ତେ କଥା ଛୁଡ଼ିଲେ ନାହିଁ । ଭୁବନେଶ୍ୱରରେ ବଡ଼ ଦୋକାନଘରଟେ କରେଇଦେଲେ ବୁଦ୍ଧିଆ ନାଁରେ । ବୁଦ୍ଧିଆ ସେଠି ଗୋଟେ ବଡ଼ ସେଲୁନ୍ ଖୋଲିଲା । ବନ୍ଧୁବାନ୍ଧବ, ସାଇପଡ଼ିଶାର ଦଶଜଣ ପିଲାଙ୍କୁ ଲଗେଇଲା କାମରେ । ନିଜେ ଖାଲି ମାଲିକ ହେଇ ବସିଲା । ପରେ ପରେ ଦି'ଟା ଗାଡ଼ି କିଣି ଲଗେଇଲା ଭଡ଼ାରେ । ବେଶ୍ ଦି'ପଇସା ରୋଜଗାର କଲା । ତା'ର ରୋଜଗାର ଯେମିତି  ଖର୍ଚ୍ଚ ବି ସେମିତି । ସାଆନ୍ତଙ୍କ ତରଫରୁ ସେ ତ ଗରିବଗୁରୁବାଙ୍କୁ ଖାଲି ଟଙ୍କା ବାଣ୍ଟିଚାଲିଲା । ସାଆନ୍ତଙ୍କ ପ୍ରତିନିଧି ହେଇ କେତେ ବଡ଼ବଡ଼ିଆଙ୍କ ସାଙ୍ଗରେ ବସିଲା, ମିଶିଲା । ଲୋକବାକ ତ ପିମ୍ପୁଡ଼ିପରି ଧାର ଲଗେଇଲେ ତା'ପାଖକୁ ।

ତା'ପର ଥର ଇଲେକ୍ସନ୍‌ରେ ସାଆନ୍ତେ କିନ୍ତୁ ହାରିଗଲେ । ବୁଦ୍ଧିଆର ସବୁ ପରିଶ୍ରମ ପାଣିରେ ପଡ଼ିଲା । ଲୋକେ କହିଲେ, ସାଆନ୍ତେ ଆମକୁ ପଚାରିଲେ ନାହିଁ, ଆମ ଦୁଃଖ ବୁଝିଲେ ନାହିଁ । ଆମପାଇଁ ରାସ୍ତା କଲେ ନାହିଁ, ନାଳ ସଫା କଲେ ନାହିଁ, କୂଅ ଖୋଳେଇଲେ ନାହିଁ, ଆମ ପିଲାଙ୍କୁ ଚାକିରି ଦେଲେ ନାହିଁ, ଆଉ ଶଳାଶାଳୀଙ୍କୁ କୋରାପୁଟରୁ ବଦଳି କରି ଆଣିଲେ ନାହିଁ । ଆମପାଇଁ ଥାନାକୁ ଗଲେ ନାହିଁ । ଆମ କେସ୍‌କାସ୍ କଥା ହାକିମକୁ କହିଲେ ନାହିଁ ।

ଏ ଲୋକଗୁଡ଼ା ତ ଭାରି ବେଇମାନ୍ । ରାସ୍ତାଘାଟ କ'ଣ କମ୍ କରିଛନ୍ତି ସାଆନ୍ତେ ? କମ୍ ଲୋକଙ୍କୁ କ'ଣ ଇନ୍ଦିରାଘର ବାଣ୍ଟିଛନ୍ତି ନା କମ୍ ରାଣ୍ଡୀଖଣ୍ଡୀଙ୍କୁ ଭତ୍ତା କରେଇଛନ୍ତି ? ହେଲେ କ'ଣ ହେବ, ଲୋକେ ତ ଖାଲି କହିଲେ- ସାଆନ୍ତେ ଉପରମୁହାଁ । ଶଃ... ଆରେ ସାଆନ୍ତେ ଜମିଦାର ଛୁଆ, ଉପରମୁହାଁ ନ ହେଇ କ'ଣ ତଳମୁହାଁ ହେଇଥାନ୍ତେ ? ତମକୁ କ'ଣ କାନ୍ଧରେ ବସେଇଥାନ୍ତେ ! ପୁଣି ଥୋକେ କହିଲେ, କ'ଣନା, ସାଆନ୍ତେ ମଦ ପିଅନ୍ତି । ହଇହୋ, ସାଆନ୍ତେ ମଦ ପିଇଲେ କ'ଣ ତମ ପଇସାରେ । ଆରେ, ତାଙ୍କ ବାପେ ଗୋରା ସାହେବଙ୍କ ସାଙ୍ଗରେ ବସି ମଦ ପିଉଥିଲେ, ପୁଅ ନ ହେଲେ ସେମିତି କ'ଣ ଟିକେ କଲେ, ସେଇଠୁ ତମେ କହିବ ସାଆନ୍ତେ ମଦୁଆ, ଆମେ ତାଙ୍କୁ ଭୋଟ୍ ଦବୁନି !

ସାଆନ୍ତଙ୍କ ବିରୋଧୀବାଲା ତ ଲଗେଇଲୁଟେଇ ଆହୁରି କେତେକଥା କହିଲେ... କ'ଣ ନା ସାଆନ୍ତେ କୋଠା ଉପରେ କୋଠା ତୋଳିଛନ୍ତି ଭୁବନେଶ୍ୱରରେ, ଫାର୍ମ ହାଉସ୍ କରିଛନ୍ତି ଖୋର୍ଦ୍ଧାରେ, ସିନେମାହଲ କରିଛନ୍ତି କଟକରେ, ହୋଟେଲ୍

ବନେଇଛନ୍ତି ପୁରୀରେ... କିହୋ, ସାଆନ୍ତେ କୋଠା କରନ୍ତେନି, କ'ଣ ତମେ କରନ୍ତ ? ତାଙ୍କ ବାପାଙ୍କର କ'ଣ ଧନସମ୍ପତ୍ତି ନ ଥିଲା କୋଠା କରିବାକୁ । ବଡ଼ସାଆନ୍ତଙ୍କର ଯେତେ ଜମି ବିକ୍ରି ହେଇଥିଲା, ସେ ଟଙ୍କା କ'ଣ ଟଙ୍କା ନୁହେଁ ? ବଡ଼ସାଆନ୍ତେ ପରା ସରକାରକୁ ଲୁଚେଇ ଦଶମାଣ ଜମି ଏକା ଏ ଦୀନା ବାରିକ ନାଁରେ କରିଦେଇଥିଲେ । ସରକାର ସେତେବେଳେ ଡାଳେଡାଳେ ଗଲେ ବଡ଼ସାଆନ୍ତେ ଯାଉଥିଲେ ପତ୍ରେପତ୍ରେ । ପରେ ପରେ ସେସବୁ ଜମି ବିକାହେଲା । ଏ ନାପିତ ନିମକହାରାମ୍ ହେଲା ନାହିଁ, ସଇ କଲା କବଲାରେ– ଟଙ୍କା ନେଲେ ବଡ଼ସାଆନ୍ତେ । ସେ ଟଙ୍କା କ'ଣ ସାନସାଆନ୍ତଙ୍କୁ ସେ ଦେଇ ନ ଥିବେ କି ? ପୁଅ ବୋଲି ତ ଗୋଟିଏ, କୋଉ ନ'ଟା ନା ଛ'ଟା । ବଡ଼ସାଆନ୍ତାଣୀଙ୍କର ତ ସିନ୍ଦୁକରେ ସିନ୍ଦୁକେ ଗହଣାଗାଣ୍ଠି ଥିଲା । ସେସବୁ କ'ଣ ସମ୍ପତ୍ତି ନୁହେଁ ? ପାଞ୍ଚଖଣ୍ଡ ମୌଜାରେ ଯୋଉ ଜମି, ସବୁତ ବିକିଚନ୍ତି ସାନସାଆନ୍ତେ । ତମେ ଓଲଟି କହୁଚ, ସାଆନ୍ତେ ଲୋକଙ୍କ ପଇସା ଖାଇଗଲେ । ଯଦି କୋଉଠି କ'ଣ ଖାଇଲେ, ଖାଇଲେ । ସେ ପାଇଁ କ'ଣ ପୃଥ୍ୱୀ ଓଲଟିପଡ଼ିଲା ? ବଡ଼ସାଆନ୍ତେ ଜମିଦାର ବୋଲି ତଣ୍ଡେଇ ଖାଉଥିଲେ, ନ ହେଲେ ସାନସାଆନ୍ତେ ଭଣ୍ଡେଇ ଖାଇଲେ, ତୁମେ ଖୁଣ କାଢ଼ିବାକୁ କିଏ ? ସେ ଖାଇଲେ ବି କ'ଣ ଖୋଉ ନାହାନ୍ତି କି ? ବଡ଼ସାଆନ୍ତେ ଥିଲାବେଳେ ଦୁଃଖୀରଙ୍କୀ ତାଙ୍କ ପାଖରୁ ଖାଲି ହାତରେ ଫେରୁଥିଲେ କି ? ବ୍ରାହ୍ମଣ, ବଇଷମ, ଯୋଗୀବଇରାଗୀ ଅଖିଆ ବାହୁଡୁଥିଲେ କି ? ସେମିତି ସାନସାଆନ୍ତଙ୍କ ଭୁବନେଶ୍ୱର ଘରଠାରୁ ଉଆସ ପର୍ଯ୍ୟନ୍ତ ସବୁଆଡ଼େ ତ ଖନ୍ଦା ଲାଗିଚି ନିତି– ଯିଏ ଗଲା ଖାଇଲା– ବେଇମାନ୍‌ଗୁଡ଼ା, ପୁଣି ଓଲଟି ଗାଉଚ?

ଯୁଗ ତ ଖରାପ, ଲୋକେ ଆଉ କରିବେ କ'ଣ ? ମାଳିକା କହିନି, ଅରାଇଜ ରାଇଜ ହବ, ଅମଣିଷ ମଣିଷ ହେବ । ସେୟା ହେଲାନି କି ? ମା' ଧାନକୁଟୀ ପୁଅ ନାଗର । ଦେଖୁନ, ଦାମ ମହାକୁଡ଼ ପୁଅ ଶାମ ଏମ.ଏଲ.ଏ. ହେଲା, ସାଆନ୍ତେ ହାରିଗଲେ । ଏଣେ ସାଆନ୍ତଙ୍କ ସିନ୍ଦୁକ ଫାଙ୍କା, ତେଣେ ବାକ୍ସରେ ଭୋଟ୍ ଫାଙ୍କା ! ହଉ, ହଉରେ ପୁଅ, ଏକା ମାଘକେ କ'ଣ ଶୀତ ଯାଏ ? ପୁଣି ଆରଥରକୁ ଦେଖାଯିବନି ? ଏବେ ପରା ଶାଶୂର ପାଳିଏକୁ ବୋହୂର ପାଳିଏ । ଇମିତି ତ ଚାହୁଁ ଚାହୁଁ ତିନି ବରଷ ଗଲାଣି– ଆଉ ଦି' ବରଷ କୁଆଡ଼େ ପଳେଇବ । ସାନସାଆନ୍ତେ ପୁଣି ହେବେ ମନ୍ତ୍ରୀ ।

ମନ୍ତ୍ରୀ ନ ଥାଇ ବି ସାନସାଆନ୍ତଙ୍କର ପାବାର କମ୍ କି ? ଏବେ ବି ତ ବଡ଼ ଅଫିସର୍‌ମାନେ ତାଙ୍କ ଆଗରେ ଠିଆହୋଇ ହାତମଳି କଥାହୁଅନ୍ତି । ପଦେ କଥାରେ ତିନିଥର ସାର୍ ସାର୍ କୁହନ୍ତି । ଆରେ ସାଆନ୍ତେ ତ ପାଟହାତୀ, ଜିଇଁଥିଲେ ଲକ୍ଷେ ଟଙ୍କା ମଲେ ବି ଲକ୍ଷେ ଟଙ୍କା । ମନ୍ତ୍ରୀ ଥିଲାବେଳେ ଯେମିତି ତାଙ୍କର କାଟ୍‌ତି

ଥିଲା, ମନ୍ତ୍ରୀ ନ ଥିଲେ ବି ତାଙ୍କ ଭାଉ ଉଣା ପଡ଼ିଯାଇ ନାହିଁ ତ ! ବୁଦ୍ଧିଆକୁ ସତରେ ଯଦି ଜେଲ୍ ହୋଇଥାଏ, ସାଆନ୍ତେ ତାକୁ ବଳେ ମୁକୁଳେଇ ଆଣିବେନି । ଆଉ ଜେଲ୍ ହେଇଥିଲେ ତ ହେଇଥିବ ତାଙ୍କରିପାଇଁ । ତାଙ୍କୁ କିଏ କିଛି କହିଲେ ବୁଦ୍ଧିଆ ସହିପାରେନି– ହାତ ଉଠେଇ ଦେଇଥିବ କାହା ଉପରକୁ । ସେଠୁ ପୁଲିସ୍ ଆସି ତାକୁ ଡାକିନେଇଥିବ ଥାନାକୁ । ନ ହେଲେ ସାଆନ୍ତଙ୍କ ସଙ୍ଗରେ କୋଉଠି ବିକ୍ଷୋଭକୁ ଯାଇଥିବ । ପୁଲିସ ସାଙ୍ଗରେ ଲାଗିଥିବ, ଶହେ ଚୌରାଳିଶ ଭାଙ୍ଗିଥିବ ।

ନିଜ ଅବୁଝା ମନକୁ ବହଲଉଥିଲା ଦୀନା ବାରିକ । ବୁଦ୍ଧିଆର କିଛି ହୋଇ ନ ଥିବ, ହେଇ ବି ପାରିବ ନାହିଁ । ଭଲମନ୍ଦକୁ ତ ସାଆନ୍ତେ ସାହା । ଡର କାହାକୁ ସାଆନ୍ତେ ଅଛନ୍ତି ଚଉବାହାକୁ । ପୁଲିସକୁ ଗୋଟିଏ ଫୋନ୍ କଲେ, ସବୁ ଦଫା ପରା ରଫା ହୋଇଯିବ ।

ସକାଳୁ ସକାଳୁ ଅଣ୍ଟାଗାଧୁଆ ହେଇ ଖାଙ୍କିହାଟ ବାହାରିଗଲା ଦୀନା ବାରିକ ଗମ୍ଭୁସା' ରିକ୍ସାରେ । ଖାଙ୍କିହାଟ ଡାକେ ବାଟ ଥିବ, ଫାଷ୍ଟବସ୍ କିନ୍ତୁ ବାହାରିଗଲା । ଗମ୍ଭୁସା' କହିଲା, ''ଦୀନାଦା', ୟା' ପର ବସ୍‌ଟା ଭାରି ବଢ଼ିଆ । ସେଥିରେ ଆରାମ୍‌ରେ ଯିବ । ଚିନ୍ତାକରନି ।'' ଦୀନା ମୁଣ୍ଡ ଟୁଙ୍ଗାରିଲା ଓ ଜଲଦି ରିକ୍ସା ଗଡ଼େଇବାକୁ ତାଗିଦ୍ କଲା ।

ସେକେଣ୍ଡ ବସ୍ ଧରି ଦୀନା ବାରିକ ଭୁବନେଶ୍ୱରରେ ପହଞ୍ଚିଲା ବେଳକୁ ପାଖାପାଖି ଦି'ପହର । ଭୁବନେଶ୍ୱରର ଫାଙ୍କା ରାସ୍ତାରେ ବୈଶାଖୀ ଖରା ବେଶ୍ ବାଧୁଥିଲା ତାକୁ । ଠିକ୍ ବେଳରେ ସେ ପହଞ୍ଚିଗଲା ବୁଦ୍ଧିଆ ବସାରେ । ବୁଦ୍ଧିଆ ବୋଧେ ବାହାରୁଥିଲା କୁଆଡ଼େ ଯିବାପାଇଁ । କିଏ କହୁଥିଲା ବୁଦ୍ଧିଆ ଜେଲ୍‌ଯାଇଚି ବୋଲି, ଦୀନା ବାରିକ ମନେ ମନେ କହିହେଲା । ବୁଦ୍ଧିଆ ମୁଣ୍ଡରେ ହାତଆଉଁଶି ପଚାରିଲା, ''ବାବା, ସବୁ ଭଲ ତ ? ଏଣୁତେଣୁ କଥାଶୁଣି ମୁଁ ରହିପାରିଥା'ନ୍ତି କେମିତି ? ଚାଲିଆସିଲି ।''

'ଶାମ ମହାକୁଡ଼ ତା'ହେଲେ କଥାଟାକୁ କନ୍‌ଷ୍ଟିଚୁଏନ୍‌ସି ଯାଏ ଲମ୍ବେଇ ଦେଇଛି'– ବୁଦ୍ଧିଆ ଦାନ୍ତ କଡ଼ମଡ଼ କରି କହିଲା । ''ହେଲେ କ'ଣ ହବ, ତା'ର ସବୁ ପ୍ଲାନ୍ ଫେଲ୍ ମାରିଲା । ଟୋକା ଭାବିଥିଲା ସାର୍‌ଙ୍କୁ ବଦ୍‌ନାମ କରିଦେଇ ପୁଣି ଥରେ ଜିତିଆସିବ । ଲୋକଙ୍କପାଇଁ ତ କିଛି କାମ କରିପାରୁନି, ତାକୁ ବି.ଡି.ଓ., ତହସିଲଦାର ପଚାରୁ ନାହାନ୍ତି । ତେଣେ ଚେୟାରମ୍ୟାନ୍ ସାଙ୍ଗରେ ତା'ର ଅପଢ଼ । କଣ୍ଟ୍ରାକ୍ଟର, ଡିଲରଙ୍କ କଥାରେ ବାଟ ଚାଲୁଚି । ହେଲେ, ସାର୍‌ଙ୍କ ପଛରେ ବେଟା ଜୋର୍‌ସୋର୍ ଲାଗିଥିଲା । ସାର୍‌ଙ୍କ ବୁଦ୍ଧି ଆଉ ତା'ବୁଦ୍ଧି । ଏଥର ତା'ମନ ପୂରା ଘର ଧରିଯାଇଥିବ'', ବୁଦ୍ଧିଆ କଥା ଯୋଡ଼ିଲା ।

ଦୀନା ବାରିକ ପୁଅକଥାର ବିନ୍ଦୁବିସର୍ଗ ବୁଝିପାରୁ ନ ଥିଲା । ବୁଦ୍ଧିଆକୁ ଜେଲ୍ ହବା, ପୁଣି ସାଆନ୍ତଙ୍କୁ ବଦ୍‌ନାମ କରିବାର ଚାଲ– ୟା' ଭିତରେ କି ସମ୍ପର୍କ ? ଶାମ ମହାକୁଡ଼ର ପୁଣି ଏଥିରେ କି ହାତ ? ଫ୍ୟାନ୍ ହାଓ୍ୱାରେ ଝାଳମାରି ଦୀନା କହିଲା, 'ବାପା, ମତେ ସବୁ ବୁଝେଇ କହ– ମୁଁ ତୋ କଥାର ଆଦିଅନ୍ତ ପାଉ ନାହିଁ ।'

ବୁଦ୍ଧିଆ କହିଲା– ବାପା, ତମେ ଏତେସବୁ ଗହନକଥା ବୁଝିବା ଦରକାର ନାହିଁ । ଖାଲି ଏତିକି ଜାଣିଥାଅ, ଆମ ସା'ରେ ଟଙ୍କା ଖାଉଚନ୍ତି ବୋଲି ପ୍ରମାଣ କରିବାପାଇଁ ଶାମ ମହାକୁଡ଼ ଅଣ୍ଟା ଭିଡ଼ିଥିଲା । ଭାବିଥିଲା ସା'ରେ ଆମର ବଦନାମ୍ ହେଇଗଲେ ତା'ର ନାଁ ହବ । ତେଣୁ ମୁଖ୍ୟମନ୍ତ୍ରୀଙ୍କୁ କହି ପୁଲିସ ଲଗେଇଥିଲା ସାର୍‌ଙ୍କ ବିରୋଧରେ, କ'ଣନା, ସା'ରେ କୁଆଡ଼େ ମନ୍ତ୍ରୀ ଥିଲାବେଳେ ସରକାରୀ ପଇସା ଆତ୍ମସାତ୍ କରି ଢେର୍ ଢେର୍ ସମ୍ପତ୍ତି ଠୁଳ କରିଛନ୍ତି । ଏହାଦ୍ୱାରା ସାର୍‌ଙ୍କୁ କନ୍‌ଷ୍ଟିଚୁଏନ୍‌ସିର ଲୋକମାନେ ଛି'ଛାକର କରିଥା'ନ୍ତେ । ଭୋଅଟବେଳେ ଏକଥା ସବୁ ପ୍ରଚାର କରି ସେ ତପ୍ତ ବୈତରଣୀ ପାରିହେଇଥା'ନ୍ତା । କିନ୍ତୁ ତା'ର ସବୁ ଯୋଜନା ପଣ୍ଡ ହୋଇଗଲା । ପୁଲିସବାଲା ସାର୍‌ଙ୍କ ସମ୍ପତ୍ତି କିଛି ଠାବ କରିପାରିଲେ ନାହିଁ ।

ଏ ବଡ଼ କୋଠା କାହାର ? ସାର୍‌ଙ୍କର ନୁହେଁ । ସେ ହେଟେଲ୍ କା' ନାଁରେ ? ସାର୍‌ଙ୍କ ନାଁରେ ନୁହେଁ ? ମଦଦୋକାନ କ'ଣ ସାର୍‌ଙ୍କର କି ? ନା, ତା'ନୁହେଁ । ଫାର୍ମ ହାଉସ୍‌ର ମାଲିକ କିଏ ? ସାର୍ ନୁହନ୍ତି । ବାଇଆ ହେଇଗଲେ ପୁଲିସବାଲା ।

''ସେଇଠୁ ।''

''ସେଇଠୁ ଆଉ କ'ଣ ? ସାର୍‌ଙ୍କ ଭାବମୂର୍ତ୍ତି ନିର୍ମଳ ବୋଲି ସମସ୍ତେ ଜାଣିଲେ । ଆଜିକାଲି ଭିତରେ ସବୁ ଖବରକାଗଜରେ ସେ କଥା ବାହାରିଯିବ । ଆଉ ଇଲେକ୍ସନ୍‌ରେ ସେ ବହୁ ଭୋଟ୍‌ରେ ଜିତିବେ, ମନ୍ତ୍ରୀ ହେବେ । କ୍ୟାବିନେଟ୍‌ର ଏକନମ୍ବର ମନ୍ତ୍ରୀ । ଆଉ ଶାମ ମହାକୁଡ଼ ଗାଁକୁ ଫେରି ଖାଙ୍କିହାଟରେ ଆଗପରି ଦୁଧବେପାର କରିବ ।'' ବୁଦ୍ଧିଆ କହୁ କହୁ ଉତ୍ତେଜିତ ହୋଇପଡୁଥିଲା ।

'ଏସବୁ ତ ବୁଝିଲି, ହେଲେ ତୋତେ କାହିଁକି ପୁଲିସ ବାନ୍ଧିଲା' ବୋଲି ଦୀନା ପୁଣି ପଚାରିବାରୁ ବୁଦ୍ଧିଆ ରାଗରେ ପାଚି ଲାଲ୍ ପଡ଼ିଗଲା । କହିଲା, ''ପୁଲିସର ଦମ୍ ଅଛି ନା ମୋତେ ବାନ୍ଧିବ ? ତମେ ବି ସେ ଶାମ ମହାକୁଡ଼ ଚେଲାଚାମୁଣ୍ଡାଙ୍କ କଥାରେ ପଡ଼ିଲ ? ପୁଲିସ ମୋତେ ପଚରାଉଚୁରା କରୁଥିଲା । ପଚାରନ୍ତା ନାହିଁ କି ? ସାର୍‌ଙ୍କର ଏ ଯେତେ ସବୁ ସମ୍ପତ୍ତିବାଡ଼ି, ବେପାରବଣିଜ ସବୁ ପରା ମୋ ନାଁରେ ।''



# ନୀଡ଼ ନିବିଡ଼

ଯାହା ଜାଣିବା ଶୁଣିବା ଲୋକମାନେ ଆଶଙ୍କା କରୁଥିଲେ, ଆଶଙ୍କା କାହିଁକି ଏକ ପ୍ରକାର ନିଶ୍ଚିତ ଥିଲା, ତାହାହିଁ ଘଟିଲା ରବିବାର ଦିନ ଉପରବେଳା । ସେତେବେଳେ ଝିପି ଝିପି ବର୍ଷା ହେଉଥିଲା ବାହାରେ । ନେତ୍ରାନନ୍ଦଙ୍କ ମୁଣ୍ଡ ପାଖରେ ବସିଥିଲେ ଶାଶୂ । ଲେଖାଯୋଖାର ନଣନ୍ଦ ମିନୁ ଆଉଁଶି ଦେଉଥିଲା ତାଙ୍କ ଦେହ । ଗୋସେଇଁଶାଶୂ ଶୋଇବାଘର ଦ୍ୱାରବନ୍ଧକୁ ଲାଗି ପଡ଼ିଥିଲେ କୁଞ୍ଚାକୁଞ୍ଚି ହୋଇ, ଧାନ ଟୋକେଇଟେ ପରି । ଶଶୁର ଯାଇଥିଲେ ନିଶାପକୁ । ଖେଳ ଖୁଆଡ଼ରୁ ଫେରି ନ ଥିଲା ଜିତୁ । ଜିତାକୁ ଖୋଇଦଉଥିଲା ପ୍ରବାସିନୀ । ନେତ୍ରାନନ୍ଦ ସେମିତି ବାଉଳି ହଉଥିଲେ, ଉଃ ଆଃ କହୁଥିଲେ ମଝିରେ ମଝିରେ । ଶାଶୂ ହଠାତ୍ ହୁରି ଛାଡ଼ିଲେ । ପ୍ରବାସିନୀ ଜିତାକୁ ଛାଡ଼ି ଦୌଡ଼ିଗଲା ନେତ୍ରାନନ୍ଦଙ୍କ ପାଖକୁ ଓ ହଲେଇଦେଲା ଥରେ ଦୁଇଥର । ତା'ପରେ ସେ କଚାଡ଼ି ହୋଇପଡ଼ିଲା ଖଟ ଉପରେ । ସେଇଠୁ କାନ୍ଦବୋବାଳି ପଡ଼ିଗଲା ସାରା ଘରେ, ବାହାରେ ।

ପ୍ରବାସିନୀର ଚେତା ନ ଥିଲା । ମୁହଁରେ ପାଣିଛାଟି ତାକୁ ସାଷ୍ଟମ କଲାବେଳେ ସେ ମୁଣ୍ଡକୋଡ଼ି କାନ୍ଦୁଥିଲା ଓ ତା'ପରେ ପୁଣି ଚେତା ହରଉଥିଲା । ଜିତା କିଛି ବୁଝି ନ ପାରି ରାହା ଧରିଥିଲା । ଖେଳରୁ ଫେରି ଜିତୁ ତା' ଜେଜେଙ୍କ ଆଖିରେ ପ୍ରଥମ କରି ଲୁହ ଦେଖିଲା ।

ଯା'ଭିତରେ ପ୍ରବାସିନୀର ଅନେକଥର ଚେତା ଯାଇଥିବ ଓ ଆସିଥିବ । କିନ୍ତୁ ଏଥର ଚେତା ଆସିଲାବେଳକୁ ଦାଣ୍ଡଦୁଆର ସାମ୍ନାରେ ନେତ୍ରାନନ୍ଦ କୋକେଇରେ ଶୋଇଥିବା ସେ ଦେଖିଲା । କୋକେଇ ସହିତ ପ୍ରାୟ ମିଶିଯାଇଥିଲା ତାଙ୍କ ଦେହ । ଧଳା ଚଦରରୁ କୌଣସିପ୍ରକାର ବର୍ତ୍ତିଯାଇଥିବା ମୁହଁଟି ଲାଗୁଥିଲା ଭାରି ଜୀବନ୍ତ । ସେହି ଆତ୍ମୀୟ ମୁହଁକୁ ଚାହିଁପାରୁ ନ ଥିଲା ସେ । ତାକୁ ଭିଡ଼ିଧରିଥିବା ସାଇପଡ଼ିଶାର ସ୍ତ୍ରୀଲୋକମାନେ ତା' ସିଛାରୁ ସିନ୍ଦୂର ପୋଛିଦେଲେ ଓ ଚୁଡ଼ିଯାକ ଭାଙ୍ଗିଦେଲେ । ବାଧା ଦବାପାଇଁ ବା ହୁରି କରିବାକୁ ପ୍ରବାସିନୀ ଦେହରେ ଆଉ ବଳ ନ ଥିଲା । ଆଖିଦୁଇଟି ନୀରବ ବନ୍ୟାରେ ଉବୁଟୁବୁ ହେଉଥିଲେ ଯାହା । କୋକେଇରେ କିଏ ସବୁ କାନ୍ଧ ଲଗାଇଲେ ଦେଖିବାପାଇଁ ଚେତା ରହିଲା ନାହିଁ ତା'ର ?

ପ୍ରବାସିନୀ କ'ଣ ଜାଣି ନ ଥିଲା ଏସ୍‌ବୁ ଘଟିବ ବୋଲି ? ଅଠତିରିଶ ବର୍ଷ ବୟସରେ ହୃଷ୍ଟପୁଷ୍ଟ ଯୁବକଜଣକ କେମିତି ରିକ୍ତ ହୋଇଆସୁଥିଲେ ଆସ୍ତେ ଆସ୍ତେ,

ସେକଥା ତା' ଠାରୁ ଆଉ ଅଧିକ କିଏ ବା ଲକ୍ଷ୍ୟ କରିଥିଲା ! ପଥରମୂର୍ତ୍ତି ପରି ବଳିଷ୍ଠ ଦେହ ମାଟିମେଞ୍ଚା ପରି ଧୋଇ ହୋଇଯାଉଥିଲା ଚାହୁଁ ଚାହୁଁ; ଗୋଲଗାଲ ମୁହଁ । ଆଖି ପଶିଯାଉଥିଲା ଭିତରକୁ ଓ ସଳଖ ନାକଟା ଦବି ଦବି ଯାଉଥିଲା । ଘିଅ ସରି ଆସୁଥିବା ଗୋଟିଏ ଦୀପର ବିକଳତା ଛାଇ ଯାଇଥିଲା ନେତ୍ରାନନ୍ଦଙ୍କ ଅସ୍ତିତ୍ୱରେ । ତଥାପି ଜୀବନର ଉଷ୍ମତା ଉପରୁ ଆସ୍ଥା ହରାଇ ନ ଥିଲା ପ୍ରବାସିନୀ ।

ବେଶ୍ କିଛିଦିନ ତଳୁ ନେତ୍ରାନନ୍ଦ ଅସୁସ୍ଥତା ଅନୁଭବ କରୁଥିଲେ । କେତେବେଳେ ଜ୍ୱର ତ କେତେବେଳେ ଝାଡ଼ା ଲାଗି ରହୁଥିଲା । ସ୍ଥାନୀୟ ଡାକ୍ତରମାନଙ୍କ ପରାମର୍ଶ ଅନୁସାରେ ସେ ଔଷଧ ଖାଉଥିଲେ । ଲଗାତାର ଏଲୋପ୍ୟାଥିକ୍ ଚିକିତ୍ସା ସତ୍ତ୍ୱେ ତାଙ୍କ ଦେହ ଭଲ ହେଲା ନାହିଁ । ପ୍ରବାସିନୀର ସହଶିକ୍ଷୟିତ୍ରୀ ମମତା ଦିଦୀଙ୍କ କହିବା ଅନୁଯାୟୀ ସେ ଗୋଟେ ବୁଢ଼ା ବଙ୍ଗାଳୀ ହୋମିଓପ୍ୟାଥି ଡାକ୍ତର ପାଖକୁ ଯାଇଥିଲା ନେତ୍ରାନନ୍ଦଙ୍କୁ ସାଙ୍ଗରେ ନେଇ । ବଙ୍ଗାଳୀ ଡାକ୍ତର ଚିକିତ୍ସାରେ ନେତ୍ରାନନ୍ଦଙ୍କ ଦେହ ଭଲ ହୋଇଆସୁଥିଲା । ହଠାତ୍ କ'ଣ ହେଲା କେଜାଣି, ତାଙ୍କ ଦେହ ପୁଣି ଭାରି ବିଗିଡ଼ିଗଲା । ହୋମିଓପ୍ୟାଥିରୁ ଆଉଥରେ ଏଲୋପ୍ୟାଥିକୁ ଫେରିବାକୁ ପଡ଼ିଲା । କିନ୍ତୁ ଏଲୋପ୍ୟାଥି ଟ୍ୟାବଲେଟ୍ ଖାଇ ଖାଇ ସେ ବଡ଼ ବିରକ୍ତି ଅନୁଭବ କଲେ । କିଛିଦିନପାଇଁ ଆୟୁର୍ବେଦ ଚିକିତ୍ସାରେ ମଧ୍ୟ ତାଙ୍କୁ ରଖାଗଲା । ଶ୍ୱଶୁରଙ୍କର ଜଣେକ ମୁସଲମାନ ନେତାଙ୍କ ସହ ଭଲ ସଂପର୍କ ଥିଲା । ସେ ନେତ୍ରାନନ୍ଦଙ୍କ ଅସୁସ୍ଥତା ବିଷୟରେ ଜାଣିବା ପରେ ଗୋଟେ ୟୁନାନି ଡାକ୍ତରର ଠିକଣା ବତେଇଥିଲେ । ଦିନେ ଛୁଟିଦିନ ଦେଖି ସେ ଦୁହେଁ ୟୁନାନି ଡାକ୍ତର ପାଖକୁ ମଧ୍ୟ ଯାଇଥିଲେ । ମାସେ ପାଖାପାଖି ୟୁନାନି ଔଷଧ ଖାଇଥିଲେ ନେତ୍ରାନନ୍ଦ । କିନ୍ତୁ କୌଣସି ଔଷଧ ତାଙ୍କୁ କାଟୁ କରୁ ନ ଥିଲା । କ୍ରମେ ଅସୁସ୍ଥତା ବଢ଼ି ବଢ଼ି ଯାଉଥିଲା । ସେ ଖୁବ୍ ଦୁର୍ବଳ ହୋଇପଡୁଥିଲେ ଓ ଅନେକ ସମୟରେ ଚିନ୍ତିତ ରହୁଥିଲେ ।

ପ୍ରବାସିନୀ ମନରେ ଛନକା ପଶିଲା । ନେତ୍ରାନନ୍ଦଙ୍କ ପରି ଚଳଚଞ୍ଚଳ ଓ ଫୂର୍ତ୍ତି ଲୋକ ଖୁବ୍ କମ୍ ଦେଖିଥିଲା ସେ । ବିବାହର ବହୁପୂର୍ବରୁ ନେତ୍ରାନନ୍ଦଙ୍କ ସହ ତା'ର ପରିଚୟ । କଲେଜରେ ଦୁଇ ବ୍ୟାଚ୍ ଉପରେ ସେ ପଢୁଥିଲେ । ସେତେ ଭଲ ଛାତ୍ର ନ ଥିଲେ ବି ଡ୍ରାମା କରିବା ଓ କବିତା ଲେଖିବାରେ ସେ ଥିଲେ ଆଗୁଆ । ସାରା କଲେଜର ଛାତ୍ରଛାତ୍ରୀ ତେଣୁ ତାଙ୍କୁ ଚିହ୍ନିଥିଲେ । କଲେଜ ଛାଡ଼ିଗଲା ପରେ ସେ ଆଉ କ'ଣ କଲେ, ସେ ଖବର କିଛି ରଖି ନ ଥିଲା ପ୍ରବାସିନୀ । ଏପରିକି ନେତ୍ରାନନ୍ଦଙ୍କ ସହ ତା'ର ବିବାହ ପ୍ରସ୍ତାବ ପଡ଼ିଥିବା କଥା ତାକୁ ଜଣା ନ ଥିଲା । ଯେଉଁଦିନ ନେତ୍ରାନନ୍ଦ ତାକୁ ଦେଖିବାପାଇଁ ତାଙ୍କର ଜଣେ ଦୁଇଜଣ ସାଙ୍ଗଙ୍କ ସହ ଆସିଥିଲେ ସେଦିନ ନେତ୍ରାନନ୍ଦ ତାଙ୍କୁ ଚିହ୍ନନ୍ତୁ ନ ଚିହ୍ନନ୍ତୁ, ସେ କିନ୍ତୁ ଠିକ୍ ଚିହ୍ନିପାରିଥିଲା । ସେତେବେଳେ ନେତ୍ରାନନ୍ଦ ଗୋଟେ ଘରୋଇ କଲେଜରେ ଅଧ୍ୟାପନା କରୁଥିଲେ ।

ଘରୋଇ କଲେଜର ଅଧ୍ୟାପକ ଜଣଙ୍କୁ ବାହାହବା ପାଇଁ ପ୍ରବାସିନୀର ଜମା ଆଗ୍ରହ ନ ଥିଲା । କାରଣ ସେ ନିଜେ ଗୋଟେ ଘରୋଇ ହାଇସ୍କୁଲରେ ଶିକ୍ଷୟିତ୍ରୀ ଥିବାରୁ, ଘରୋଇ ଅନୁଷ୍ଠାନଗୁଡ଼ିକର ଦୌରାତ୍ମ୍ୟ ବିଷୟରେ ତା'ର ପ୍ରତ୍ୟକ୍ଷ ଧାରଣା ଥିଲା । ବାପାଙ୍କୁ କିଛି ନ କହିପାରିଲେ ବି ବୋଉ ଆଗରେ ନିଜ ମନକଥା ଖୋଲି କହିବ ବୋଲି ସେ ଭାବିଥିଲା । କିନ୍ତୁ ନେତ୍ରାନନ୍ଦଙ୍କ ପାଇଁ କେମିତି କେଜାଣି ଖଣ୍ଡେ ଜାଗା ପଡ଼ିରହିଥିଲା ତା' ମନଗହନରେ କାହିଁ କେତେ ଦିନରୁ ! ଏବଂ ସବୁ ଇଚ୍ଛା-ଅନିଚ୍ଛା ସେଠି ଏକାକାର ହୋଇଯାଉଥିଲା ।

ଗୋଟେ ନରମ ଶୀତ ରାତିରେ ନେତ୍ରାନନ୍ଦଙ୍କ ହାତରେ ତା'ହାତ ଯୋଡ଼ା ହୋଇଗଲା । ସେତେପର୍ଯ୍ୟନ୍ତ ନେତ୍ରାନନ୍ଦଙ୍କର ଡ୍ରାମା କରିବା ଓ କବିତା ଲେଖିବା ଝୁଙ୍କ ମରି ନ ଥିଲା । ସ୍କୁଲ ପାଖରେ ପ୍ରବାସିନୀ ସହିତ ଭଡ଼ାଘରେ ନେତ୍ରାନନ୍ଦ ରହୁଥିଲେ ଓ ସେଠୁ ପ୍ରାୟ ପଚିଶ କିଲୋମିଟର ଦୂର ତାଙ୍କ କଲେଜକୁ ଯିବାଆସିବା କରୁଥିଲେ । ସେଠି କୋଉ ଗୋଟେ କ୍ଲବ୍‌ରେ ଡ୍ରାମା ଶିଖାଉଥିଲେ ଯେ ଦିନେ ଦିନେ ଫେରୁଫେରୁ ରାତି ଅଧ କି ପାହାନ୍ତା ହଉଥିଲା । ସ୍କୁଲରେ ପ୍ରବାସିନୀର ଯୋଡ଼େ ତିନିଟାରୁ ଅଧିକ କ୍ଲାସ୍ ପଡୁ ନ ଥିବାରୁ ସେ ତା' ବସାଘରେ ଏକା ଏକା ଭାରି ବୋର୍ ହେଉଥିଲା । ସେତେବେଳକୁ ଜିତୁ କି ଜିତା ଜନ୍ମ ହେଇ ନ ଥିଲେ । ସ୍କୁଲଠାରୁ ନେତ୍ରାନନ୍ଦଙ୍କ ଘର ପନ୍ଦର କିଲୋମିଟର ଅଧିକ ଦୂର ନ ଥିଲା । ହେଲେ ଶ୍ୱଶୁର ଏତେ ଗାଆଁମନସ୍କ ଥିଲେ ଯେ ଘଣ୍ଟେପାଇଁ ବି ଘରଛାଡ଼ି ପୁଅବୋହୂଙ୍କ ପାଖକୁ ଆସୁ ନ ଥିଲେ । ପ୍ରବାସିନୀ ବେଳେ ବେଳେ ନେତ୍ରାନନ୍ଦଙ୍କ ଭୁଲାପଣପାଇଁ ଅସ୍ଥିର ହେଉଥିଲା । କେତେଥର ସେ ଭାବିଥିବ ନେତ୍ରାନନ୍ଦଙ୍କୁ ଟାଣକରି କହିବ ଡ୍ରାମାଫ୍ରାମା ଆଡ଼କୁ ଆଉ ମନ ନ ଦେବାପାଇଁ । ହେଲେ ଉଛୁର ରାତିକୁ ଫେରି ନେତ୍ରାନନ୍ଦ ଏମିତି ଗୋଟେଯୋଡ଼େ ଡାଇଲଗ୍ ମାରୁଥିଲେ ଯେ ପ୍ରବାସିନୀ ହସି ହସି ଗଡ଼ି ଯାଉଥିଲା ଓ ନେତ୍ରାନନ୍ଦଙ୍କୁ ଭାବିଥିବା କଥା କିଛି ବି କହିପାରୁ ନ ଥିଲା ।

ଦିନେ ଭାରି ସହଳ ନେତ୍ରାନନ୍ଦ ଫେରିଆସିଲେ କଲେଜରୁ । ଗଲାବେଳକୁ କହିଯାଇଥିଲେ ଆସିବା ଡେରିହବ ବୋଲି । ଏତେଶୀଘ୍ର କାହିଁକି ଫେରିଆସିଲେ ବୋଲି ପ୍ରବାସିନୀ ଭାବିହେଲା । ଓଃ... ତାକୁ ନେଇ ଡାକ୍ତରଙ୍କ ପାଖକୁ ଯିବେ ବୋଲି ଆଜି ସହଳ ଫେରିଆସିଲେ ପରା ! ପ୍ରବାସିନୀ ମନକୁ ମନ କହିଲା ଓ ଲାଜେଇଗଲା, କାରଣ ସେତେବେଳକୁ ଜିତୁ ଗର୍ଭରେ ଥିଲା । କିନ୍ତୁ ଜାଣିଲା ବେଳକୁ କଥା ଅଲଗା । ଗଭର୍ଣ୍ଣିଂବଡ଼ିର ପ୍ରେସିଡେଣ୍ଟଙ୍କ ସହ କ'ଣ ଯୁକ୍ତିତର୍କ କରି ପ୍ରିନ୍‌ସିପାଲ୍‌ଙ୍କୁ ଗୋଟେ ଇସ୍ତଫାପତ୍ର ଧରେଇ ସେ କଲେଜରୁ ଫେରିଆସିଥିଲେ ସେଦିନ । କୋଉ କଥାରେ ବା କଥା, ସେଥିରେ କ'ଣ କେହି ଚାକିରି ଛାଡ଼ନ୍ତି ? ତିନି ଶହ ଟଙ୍କାନେଇ ରେଜିଷ୍ଟର୍‌ରେ ଦେଢ଼ହଜାର ଟଙ୍କା ଦରମା ବୋଲି ସବୁ ଅଧ୍ୟାପକ ଦସ୍ତଖତ କରୁଥିଲେ– ନେତ୍ରାନନ୍ଦ

କିନ୍ତୁ ସେପରି କରିବାକୁ ମନା କରୁଥିଲେ । ଏହି କଥାକୁ ନେଇ ସେଦିନ କଲେଜକୁ ଆସିଥିବା ଗଭର୍ଣ୍ଣିଂବଡ଼ିର ପ୍ରେସିଡେଣ୍ଟଙ୍କ ସହ ତାଙ୍କର କଥା କଟାକଟି ହେଲା । ଏହି ସାମାନ୍ୟ କଥାରେ ସେ ଯୋଉ ଇସ୍ତଫା ଦେଇଥିଲେ, ଗଭର୍ଣ୍ଣିଂବଡ଼ିର ଲିଖିତ ଅନୁରୋଧ ସତ୍ତ୍ୱେ ଆଉ କେବେ ବି କଲେଜ ମାଡ଼ିଲେ ନାହିଁ ।

ଏମିତି ଗୋଟେ ଜିଦ୍‌ଖୋର୍ ଲୋକ, ବେପରୱା ମଣିଷ ଥିଲେ ନେତ୍ରାନନ୍ଦ ମୂଳରୁ । ଚାକିରି ଗଲା କି ରହିଲା ସେଥିକୁ ଟିକେ ଚିନ୍ତା ନ ଥିଲା ତାଙ୍କର । ଜୀବନକୁ ଏତେ ହାଲୁକାଭାବରେ ସେ ଗ୍ରହଣ କରୁଥିଲେ ଯେ ତାଙ୍କୁ ଠିକ୍‌ଭାବରେ ଜାଣି ନ ଥିବା ଲୋକ ଭୁଲ୍‌ରେ ବି ତାଙ୍କୁ ବୁଝିପାରିବ ନାହିଁ । ହଠାତ୍ ତାଙ୍କର କ'ଣ ହେଲା କେଜାଣି ଦିନେ ଗୁଡ଼ାଏ ରକ୍ତବାନ୍ତି କରି ହାଲିଆ ହୋଇପଡ଼ିଲେ । ପ୍ରବାସିନୀ ଅସ୍ଥିର ହୋଇପଡ଼ିଲା ଓ ଶ୍ୱଶୁରଙ୍କୁ ଡକାଇଲା ଗାଁରୁ । ଶ୍ୱଶୁର ଆସି ତା' ବସାରେ ପହଁଚିଲା ପରେ ନେତ୍ରାନନ୍ଦଙ୍କୁ କଟକର କୌଣସି ମେଡିସିନ୍ ସ୍ପେଶାଲିଷ୍ଟଙ୍କ ପାଖକୁ ନବାପାଇଁ ସ୍ଥିର କରାଗଲା । ଶ୍ୱଶୁର ବାହାରିଲେ ସାଙ୍ଗରେ ଯିବାପାଇଁ । ପ୍ରବାସିନୀ କିନ୍ତୁ ମନାକଲା । କହିଲା, "ଆପଣ ନିଜେ ତ ବେମାରିଆ ଲୋକ– କାହିଁକି ଯିବେ ଏତେ ବାଟ ? ମୋ ଭାଇ ତ କଟକକୁ ଏବେ ବଦଳି ହୋଇ ଆସିଛନ୍ତି । ରହୁଛନ୍ତି ତୁଳସୀପୁରରେ । ସେଠି ପହଞ୍ଚିଲେ ସେ ସବୁ ବନ୍ଦୋବସ୍ତ କରିଦେବେ । ଜିତୁ ଓ ଜିତାଙ୍କୁ ଆପଣ ଗାଆଁକୁ ନେଇଯାଆନ୍ତୁ ।"

ପ୍ରବାସିନୀ ତା'ଭାଇଙ୍କ ପାଖକୁ ଫୋନ୍ କରି ସବୁକଥା କହିଲା ଓ ତହିଁ ଆରଦିନ ନେତ୍ରାନନ୍ଦଙ୍କୁ ସାଙ୍ଗରେ ଧରି କଟକରେ ପହଞ୍ଚିଲା । ଭାଇ ଯୋଉ ବ୍ୟାଙ୍କ୍‌ରେ ମ୍ୟାନେଜର୍, ସେହି ବ୍ୟାଙ୍କର ଡେପୁଟି ମ୍ୟାନେଜର୍‌ଙ୍କ ବଡ଼ ଭିଣୋଇ ଥିଲେ ଏସ୍.ସି.ବି. ମେଡିକାଲ୍ କଲେଜର ପ୍ରଫେସର– ମେଡିସିନ୍ ସ୍ପେଶାଲିଷ୍ଟ । ଭାଇ ଓ ତାଙ୍କ ସାଙ୍ଗ ନେତ୍ରାନନ୍ଦଙ୍କୁ ନେଇଗଲେ ତାଙ୍କରି ପାଖକୁ । ରୋଗୀ ଦେଖିଲା ପରେ ସେ ବିଭିନ୍ନ ଟେଷ୍ଟ କରିବାକୁ କହିଲେ । ତା'ପରଦିନ ପ୍ରବାସିନୀ ଡକ୍ଟର ପ୍ରତିଭା ସାହୁଙ୍କ କ୍ଲିନିକ୍‌କୁ ଗଲା ନେତ୍ରାନନ୍ଦଙ୍କୁ ସାଙ୍ଗରେ ଧରି । ସେଠାରେ ରକ୍ତ, ମଳ, ମୂତ୍ର ଆଦି ସବୁପ୍ରକାର ପରୀକ୍ଷା କରାଗଲା । ସଞ୍ଜବେଳକୁ ଭାଇ ବ୍ୟାଙ୍କରୁ ଫେରିଲା ବାଟରେ ରିପୋର୍ଟ ଧରି ଆସିଲେ ।

ରିପୋର୍ଟରେ କ'ଣ ସବୁ ବାହାରିଛି ବୋଲି ପଚାରିବାରୁ ଭାଇ କିଛି କହିଲେ ନାହିଁ । ଚା' ଟିକେ ପିଇ ପୁଣି ବାହାରିଲେ ମେଡିସିନ୍ ସ୍ପେଶାଲିଷ୍ଟଙ୍କ ପାଖକୁ ଓ ଫେରିଲେ ଅନେକ ବିଳମ୍ବରେ । ତା'ପରଦିନ ଔଷଧ କିଣାଗଲା । ଇଂଜେକ୍ସନ୍ ଗୋଟାକ ଆଠ ହଜାର ଟଙ୍କା । ପ୍ରତି ସପ୍ତାହରେ ଗୋଟେ ଲେଖାଁ ଇଂଜେକ୍ସନ୍ ତିନିମାସପାଇଁ ନବାକୁ ପଡ଼ିବ ବୋଲି ଡାକ୍ତର କହିଥିଲେ । ସେଇ ଇଂଜେକ୍ସନ୍ କିଣିଦେଲେ । କହିଲେ, ସପ୍ତାହରେ ଥରେ କଟକ ଆସି ଚେକ୍ ଅପ୍ କରିବାକୁ ପଡ଼ିବ, ଦରକାର ହେଲେ ଔଷଧ ବଦଳାଯିବ । କିନ୍ତୁ ରୋଗ କ'ଣ ବୋଲି ଭାଇଙ୍କୁ ଯେତେ ପଚାରିଲେ ବି ସେ କଥାଟାକୁ ବାଆଁରେଇ ଦେଉଥିଲେ । ନୂଆବୋଉ କହୁଥିଲେ, 'ତମେ ଚିନ୍ତା କର ନାହିଁ, ସବୁ ଠିକ୍

ହୋଇଯିବ ।' କିନ୍ତୁ ଭାଇ ଓ ନୂଆବୋହୂ ଦି'ଜଣଯାକ ଭାରି ଗମ୍ଭୀର ଜଣାପଡୁଥିଲେ । କାନ୍ଦ କାନ୍ଦ ହୋଇପଡୁଥିଲା ପ୍ରବାସିନୀ । ନିଜ ରୋଗ ବିଷୟରେ ଅଜ୍ଞ ଥିଲେ ବି ପରିସ୍ଥିତିର ଗମ୍ଭୀରତାକୁ ବୁଝିପାରୁଥିଲେ ନେତ୍ରାନନ୍ଦ– କିନ୍ତୁ ସେ ଚୁପ୍‌ଚାପ୍ ରହୁଥିଲେ ।

ନେତ୍ରାନନ୍ଦଙ୍କ ସହ ଗାଆଁକୁ ଫେରିଲା ପ୍ରବାସିନୀ । ଘରେ ପହଞ୍ଚୁ ପହଞ୍ଚୁ ତା' ଆଖି ଜକେଇଗଲା । ତଥାପି ସେ ଶାଶୂ-ଶ୍ୱଶୁରଙ୍କ ସହ ସ୍ୱାଭାବିକ ଭାବରେ କଥାହେଲା । ଇଂଜେକ୍ସନ୍ ନେବାପରେ ନେତ୍ରାନନ୍ଦ ଭଲ ହୋଇଯିବେ ବୋଲି ଶ୍ୱଶୁରଙ୍କୁ ବୁଝାଇଲା । ତା' ପରଦିନ ପିଲା ଦୁହିଁଙ୍କୁ ସାଥିରେ ଧରି ସେମାନେ ବସାଘରକୁ ଫେରିଲେ । ସଂପର୍କୀୟ ନଣନ୍ଦ ମିନୁ ବି ଆସିଲା ସାଥିରେ । ଅନ୍ତତଃ ପ୍ରବାସିନୀ ସ୍କୁଲ ଯିବା ସମୟତକ ସେ ନେତ୍ରାନନ୍ଦଙ୍କର ଯତ୍ନ ନେବ, ଜିତୁ ଓ ଜିତାକୁ ସମ୍ଭାଳିବ ।

ଇଂଜେକ୍ସନ୍ ନେବା ପରେ ନେତ୍ରାନନ୍ଦଙ୍କ ସ୍ୱାସ୍ଥ୍ୟରେ ପରିବର୍ତ୍ତନ ଘଟିଲା । ସେ ବେଶ୍ ସୁସ୍ଥ ଅନୁଭବ କଲେ ଓ ଗୋଟେ ଲୋକାଲ ଖବରକାଗଜରେ ରିପୋର୍ଟିଂ ଆରମ୍ଭ କଲେ । କିନ୍ତୁ ପ୍ରବାସିନୀ ମନ ଭିତରେ ଗୋଟେ ପ୍ରଶ୍ନ ନିରନ୍ତର ବସା ବାନ୍ଧିଥିଲା । ନେତ୍ରାନନ୍ଦଙ୍କର ହୋଇଛି କ'ଣ ? ମଝିରେ ଟେଷ୍ଟପାଇଁ କଟକ ଗଲାବେଳେ ଭାଇ ଇଂଜେକ୍‌ସନ୍ କିଣି ଦେଉଥିଲେ, କିନ୍ତୁ ରୋଗ ବିଷୟରେ କିଛି ବି ଆଲୋଚନା କରୁ ନ ଥିଲେ । ପ୍ରବାସିନୀ ପଚାଶ ଷାଠିଏ ହଜାର ଟଙ୍କା ଏରିଅର୍ ପାଇଥିଲା । ଔଷଧ କିଣାକିଣିରେ ସେମିତି କିଛି ଅସୁବିଧା ନ ଥିଲା । ହେଲେ ତାକୁ ବହୁତ କିଛି ଲୁଚାଯାଇଛି ବୋଲି ତା'ର ଧାରଣା ହେଉଥିଲା ।

ପ୍ରବାସିନୀ ଅନେକଥର ଏକା ଏକା ପ୍ରେସ୍‌କ୍ରିପସନ୍‌ଟା ପଢୁଥିଲା । ସେଥିରେ ଲେଖାଥିଲା ସି.ଏମ.ଏଲ. । ଏହାର କୌଣସି ଅର୍ଥ ସେ ବୁଝିପାରୁ ନ ଥିଲା । ଇଂଜେକ୍‌ସନ୍ ଦଉଥିବା ଡାକ୍ତରଙ୍କୁ ସେ ଥରେ ନିରୋଳାରେ ପଚାରିଲା, ସାର୍, ସି.ଏମ.ଏଲ. ର ଅର୍ଥ କ'ଣ ? ଡାକ୍ତର ଜଣକ ଘାବରେଇଗଲେ– ହଠାତ୍ କିଛି କହିଲେ ନାହିଁ । ପ୍ରବାସିନୀ ବହୁତ କାକୁତିମିନତି କଲା । ତା'ପରେ ଡାକ୍ତର କହିଲେ, କ୍ରନିକ୍ ମ୍ୟାଲିଗ୍‌ନେଡ୍ ଲିକୋମିଆ, ଅର୍ଥାତ୍ ରକ୍ତକର୍କଟ । ଏକଥା ଶୁଣିଲାକ୍ଷଣି ପ୍ରବାସିନୀର ସର୍ବାଙ୍ଗ ଥରିବାକୁ ଲାଗିଲା । ତାକୁ ଚାରିଦିଗ ଅନ୍ଧାର ଦିଶିଲା । ବେଶ୍ କିଛିସମୟ ପରେ ସେ ଡାକ୍ତରଙ୍କ ପାଖରୁ ଫେରିଲା । ଫେରିଲାବେଳେ ମନେ ମନେ ପ୍ରତିଜ୍ଞାକଲା ଯେ କୌଣସି ବି ମୂଲ୍ୟଦେଇ ସେ ରୋଗ ସାଥିରେ ଲଢ଼ିବ ଏବଂ ସେ ଲଢ଼ିଲା ବି ଦୁଇ ବର୍ଷ କାଳ ।

ନେତ୍ରାନନ୍ଦ କେବଳ ନିଃଶେଷ ହୋଇଯାଉଥିଲା ଅଦୃଶ୍ୟଭାବରେ । ବାହାହବା ଦିନଠାରୁ ପରିବାରର ସମସ୍ତ ଭାର ଅଜାଡ଼ି ହୋଇପଡ଼ିଥିଲା ପ୍ରବାସିନୀ ଉପରେ । ସ୍ୱାଧୀନତା ସଂଗ୍ରାମୀ ଶ୍ୱଶୁର ବନ୍ଧା ପଡ଼ିଥିଲେ ଖଦଡ଼ ଆଉ ଆଦର୍ଶ ଭିତରେ । ଅଞ୍ଚଳଯାକର ବଡ଼ ବଡ଼ ନେତା ତାଙ୍କୁ ଖାତିର୍ କରୁଥିଲେ, ସମ୍ମାନ ଦଉଥିଲେ– ବାସ୍ ସେତିକି– ସେତିକି ଯେମିତି ଥଲା ତାଙ୍କର ପ୍ରାପ୍ୟ । କିନ୍ତୁ ରାଜନୀତି ଭିତରେ ତାଙ୍କ

ପ୍ରବେଶକୁ ଅବଶ୍ୟ କେହି ବାଧାଦେଇ ନ ଥାନ୍ତେ, ଗ୍ରହଣ ବା କୋଉ କରିପାରିଥାନ୍ତେ ? ଶ୍ୱଶୁର ରାଜନୀତି ପ୍ରତି ବଡ଼ ବିମୁଖ ଥିଲେ । ପାଠ ପଢୁଥିଲାବେଳେ ସେ ଗାନ୍ଧୀଙ୍କ ସଭାରେ ଥରେ କୁଆଡ଼େ ଯୋଗଦେଇଥିଲେ । ସେହି ଦିନରୁ ପାଠଶାଠ ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ମିଶିଥିଲେ । କିନ୍ତୁ ଦେଶ ସ୍ୱାଧୀନତା ପରେ କ'ଣପାଇଁ ତାଙ୍କର ରାଜନୀତି ପ୍ରତି ବିମୁଖତା ବଢ଼ିଗଲା କେଜାଣି ! ସେକଥା ପଚାରିଲେ ଦୀର୍ଘଶ୍ୱାସଟେ ଛାଡ଼ନ୍ତି ନୀରବରେ । ସତୁରି ବର୍ଷରୁ ଅଧିକ ବୟସ ହେବ ତାଙ୍କୁ, ଦେହପା' ଭଲ ରହିବ କାହୁଁ ? ଦୁଇ ଚାରିବର୍ଷ ତଳେ ତାଙ୍କର ହାର୍ଟ ପ୍ରୋବ୍ଲେମ୍ ବାହାରିଥିଲା । ସେଥିପାଇଁ କିଛି କମ୍ ଧାଁଦୌଡ଼ କରିବାକୁ ପଡ଼ି ନ ଥିଲା । ପାଞ୍ଚ ସାତ ଏକର ଜମି ଉପରେ ନିର୍ଭର କରି ଏତେ ବଡ଼ ସଂସାର ଚଳିବା କ'ଣ ସହଜ ? ସେଥିରେ ନେତ୍ରାନନ୍ଦ ଅଧ୍ୟାପନା ଛାଡ଼ି ଖବରକାଗଜ ରିପୋର୍ଟିଂ କଲେ । ଘରୁ ଖାଇ ଘୋଡ଼ା ଆଗରେ ଡେଇଁବା କାମ । ସାନ ଦିଅର ବି ବେକାର । ବି.ଏ. ପାସ୍ ପରେ ଛକରେ ବୁଲିବା ଛଡ଼ା ଆଉ କିଛିରେ ସେ ଧାର ଧାରୁ ନ ଥିଲେ । ପ୍ରବାସିନୀ ରୋଜଗାରକୁ ତେଣୁ ସାରା ପରିବାର ଚାହିଁବସୁଥିଲା ।

ସେଥିପାଇଁ ଅବଶ୍ୟ ପ୍ରବାସିନୀ ମନରେ ଗ୍ଲାନି ନ ଥିଲା । ଭାଙ୍ଗିପଡୁଥିବା ଘରର ମଥାନରେ ସେ କାନ୍ଧ ଲଗେଇ ଦେଇଥିଲା ଖୁଣ୍ଟପରି । ସ୍କୁଲରୁ ପାଉଥିବା ଦରମା ସାଙ୍ଗକୁ ସେ ଟ୍ୟୁସନ୍ କରି ବି କିଛି ରୋଜଗାର କରୁଥିଲା । ଆଖପାଖର ଅନେକ ପିଲା ଅଙ୍କ ପଢ଼ିବାପାଇଁ ତା'ପାଖକୁ ଆସୁଥିଲେ । ନେତ୍ରାନନ୍ଦ ବି ଗୋଟେ ଇନ୍ସ୍ୟୁରାନ୍ସ କଂପାନୀର ଏଜେନ୍ସି ନେଇଥିଲେ । ବର୍ଷକୁ ଥରେ ଦୁଇଥର ଭଲ କମିଶନ ମିଳୁଥିଲା ତାଙ୍କୁ । ଦୁଇଜଣଙ୍କ ରୋଜଗାର ସାଙ୍ଗକୁ ଚାଷବାସ ଓ ବାଡ଼ିବଗିଚାରୁ ମିଳୁଥିବା ଆୟରୁ ଘରର ପରିସ୍ଥିତି ସୁଧୁରିଆସୁଥିଲା । ମାଟିଘରର ଦାଣ୍ଡଘରକୁ ଭାଙ୍ଗି ଦି' ବଖରା ପକ୍କା ଘର କରିବା ଆରମ୍ଭ କରିଦେଇଥିଲେ ନେତ୍ରାନନ୍ଦ । ସବୁ ଠିକ୍ ହୋଇଆସୁଥିଲା ଆସ୍ତେ ଆସ୍ତେ । କିନ୍ତୁ କିଏ ଜାଣିଥିଲା, ହଠାତ୍ ଏମିତି ଝଡ଼ଟେ ଆସିବ ଯେ ନିମିଷକେ ସ୍ୱପ୍ନସବୁ ଛିନ୍ନଛତ୍ର ହୋଇଯିବ ବୋଲି !

ପ୍ରବାସିନୀ ତା'ର ସମସ୍ତ ଗହଣା ବିକ୍ରି କରିସାରିଥିଲା । ସବୁ ସହକର୍ମୀଙ୍କଠାରୁ ମଧ୍ୟ ଧାରଉଧାର କରିଥିଲା । ଶ୍ୱଶୁର କେନାଲ କୂଳରେ ଦେଢ଼ ଏକର ଜମି ବନ୍ଧକ ଦେଇଥିଲେ । ଭାଇ ଅଜସ୍ର ପଇସା ଖର୍ଚ୍ଚ କରିଚାଲିଥିଲେ । ବାପା, ବଡ଼ଭଉଣୀ, ଭିଣୋଇ, ନଣନ୍ଦ ନଣନ୍ଦେଇ ପଇସା ଦବାରେ କେହି କୁଣ୍ଠା କରୁ ନ ଥିଲେ । କିନ୍ତୁ ନେତ୍ରାନନ୍ଦଙ୍କ ସ୍ୱାସ୍ଥ୍ୟରେ ବିଶେଷ କିଛି ଅଗ୍ରଗତି ହେଉ ନ ଥିଲା । ଜିତୁର ପାଠପଢ଼ା ଏକପ୍ରକାର ବନ୍ଦ ହୋଇଯାଇଥିଲା । ପ୍ରବାସିନୀ ନିୟମିତ କ୍ଲାସ୍ ନେଇପାରୁ ନ ଥିଲା ତା' ସ୍କୁଲରେ । ଟ୍ୟୁସନ୍‌କୁ ଆସିବାପାଇଁ ମନା କରିଦେଇଥିଲା ପିଲାମାନଙ୍କୁ । ତଥାପି ସେ ସାହସ ହରେଇ ନ ଥିଲା । ବାରମ୍ବାର କଟକ ଦୌଡୁଥିଲା କେବେ ଏକା ଏକା

ତ କେବେ ନେତ୍ରାନନ୍ଦଙ୍କୁ ସାଙ୍ଗରେ ଧରି । ଦୁର୍ଲଭ ଇଂଜେକ୍‌ସନ୍‌ପାଇଁ ଏ ଦୋକାନ ସେ ଦୋକାନ ଦୌଡୁଥିଲା । ମେଡିସିନ୍ ସ୍ପେଶାଲିଷ୍ଟଙ୍କୁ ଯାବତୀୟ ପ୍ରଶ୍ନ ପଚାରି ବିରକ୍ତ କରୁଥିଲା । ବିଭିନ୍ନ ପରୀକ୍ଷା ରିପୋର୍ଟପାଇଁ ଘଣ୍ଟା ଘଣ୍ଟା ଅପେକ୍ଷା କରି ବସିରହୁଥିଲା ପ୍ୟାଥୋଲଜି ଡାକ୍ତରଙ୍କ ବାରନ୍ଦାରେ ।

କିନ୍ତୁ ପ୍ରବାସିନୀର ସବୁ ପ୍ରଚେଷ୍ଟା ବିଫଳ ହେଉଥିଲା । ଗୋଟାକ ପରେ ଗୋଟେ ଆଶା ମଉଳିଯାଉଥିଲା ସକାଳର ଗଙ୍ଗଶିଉଳି ପରି । ତଥାପି ଡାକ୍ତରଙ୍କ ପରାମର୍ଶ ଅନୁସାରେ ନେତ୍ରାନନ୍ଦଙ୍କୁ କ୍ୟାନ୍‌ସର ୱାର୍ଡ଼ରେ ଆଡମିସନ୍ କରାଯାଇ ଗୋଟେ କ୍ୟାବିନ୍‌ରେ ରଖାଗଲା କିଛିଦିନ । ଦିନେ ଛଡ଼ା ଦିନେ ରକ୍ତ ଦରକାର ପଡ଼ିଲା ତାଙ୍କପାଇଁ । ଭାଇଙ୍କ ସାଙ୍ଗସାଥୀ, ସ୍କୁଲର ସହକର୍ମୀ ଓ ସାଇପଡ଼ିଶାର ଯୁବକମାନେ ପାଳି କରି ରକ୍ତ ଦେଲେ । ଆଶା କରାଯାଉଥିଲା ବ୍ଲଡ୍ ଟ୍ରାନ୍‌ସଫ୍ୟୁଜନ୍‌ରୁ କିଛି ସୁଫଳ ମିଳିବ ବୋଲି । କିନ୍ତୁ କାହିଁ ? ସବୁପ୍ରକାର ପରୀକ୍ଷା-ନିରୀକ୍ଷା ଶେଷ ହୋଇଆସିଲା । ଡାକ୍ତରମାନେ କେବଳ କର୍ତ୍ତବ୍ୟ ଦ୍ୱାହିରେ ନେତ୍ରାନନ୍ଦଙ୍କ ଦେହରେ ହାତମାରି ଚାଲିଯାଉଥିଲେ । କିନ୍ତୁ ଗୋଟେ ଜୀବନ୍ତ ଶବକୁ ଧରି ପ୍ରବାସିନୀ ଯାହା ତହଳବିକଳ ହେଉଥିଲା ।

ପେସେଣ୍ଟକୁ ଘରକୁ ନେଇଯିବାପାଇଁ ଶେଷରେ ଡାକ୍ତରମାନେ ପରାମର୍ଶ ଦେଲେ । ଡାକ୍ତରଙ୍କ କଥା ଶୁଣି ପ୍ରବାସିନୀ ମନରୁ ତଥାପି ଲିଭି ନ ଥିବା ସଳିତାଟି ହଠାତ୍ ଲିଭିଗଲା ଯେମିତି ! କିନ୍ତୁ ସେତେବେଳକୁ ତା' ଆଖିରୁ ସବୁ ଲୁହ ହୁଏତ ସରିଯାଇଥିଲା, ବରଫ ପାଲଟିଯାଇଥିଲା ଛାତି ତଳର କୋହ ! ନେତ୍ରାନନ୍ଦଙ୍କୁ ଧରି ସେ ଗାଆଁକୁ ଫେରିଲା । ଗତ ତିନି ମାସ ଧରି ସେ ସ୍କୁଲର ମାଟି ମାଡ଼ି ନ ଥିଲା– ଆଉ ସ୍କୁଲର ନାଁ ଧରିଲା ନାହିଁ ମଧ୍ୟ ।

ଘର ଭିତରେ ସମସ୍ତଙ୍କୁ ଆଉ ଅଧିକ ଦହଗଞ୍ଜ କରିବାପାଇଁ ବୋଧେ ନେତ୍ରାନନ୍ଦ ଚାହିଲେ ନାହିଁ । ସବୁ ହେପାଜତ ଭିତରେ ଦିନେ ସକାଳୁ ସକାଳୁ ସବୁଦିନପାଇଁ ଆଖିବୁଜିଦେଲେ ।

କ୍ରିୟା ସରିଲା ପରେ ବାପା ଗାଡ଼ିଧରି ପହଞ୍ଚିଲେ ଶ୍ୱଶୁରଘରେ । ଜିତୁ ଓ ଜିତାକୁ ଧରି ପ୍ରବାସିନୀ ବାପାଙ୍କ ସାଙ୍ଗରେ ତାଙ୍କ ଗାଆଁକୁ ଚାଲିଆସିଲା । ସ୍କୁଲର ହେଡ୍‌ମିଷ୍ଟ୍ରେସ୍‌ଙ୍କ ପାଖକୁ ଛୁଟି ଦରଖାସ୍ତଟେ ପଠେଇଦବାପାଇଁ ମଧ୍ୟ ତା'ର ମନେପଡ଼ି ନ ଥିଲା । ଗାଆଁରେ ପହଞ୍ଚି ବୋଉକୁ ଧରି ସେ କାହିଁରେ କେତେ କାନ୍ଦିଲା । ଛାତିତଳର ବରଫ ପୁଣି ତରଳିଲା । ତା'ର ଗହନକାନନ ଆଖିରେ ପୁଣି ଘୋଟିଗଲା ଘୋରବରଷା । କିନ୍ତୁ ବୋଉ କାନି ଘୋଡ଼ିହୋଇ ଅନେକ ଦିନ ପରେ ସେ ଅଭୟ ନିଦ୍ରାଗଲା ।

ଗାଆଁରେ ପ୍ରବାସିନୀର ପିଲାଦିନ ଭାରି ମନେପଡ଼ିଲା । ସାଙ୍ଗସାଥୀଙ୍କର ସ୍ମୃତି ଆଖି ଆଗରେ ନାଚିଲା । କିନ୍ତୁ ସେମାନେ ଆଉ କୋଉ ବା ଗାଆଁରେ ଥିଲେ ?

ଯୋଉମାନେ ଥିଲେ ସେମାନେ କେତେ ସାନ ପୁଣି । ସେମାନଙ୍କ ସାଥିରେ କ'ଣ ହୃଦୟ ବାଣ୍ଟିବା ସହଜ ? ଭାଇଭାଉଜ ସମସ୍ତେ ତ ଥିଲେ ବାହାରେ । ବାପାବୋଉ ବା ପଡ଼ିଶାଘରର ଦାଦାଖୁଡ଼ୀଙ୍କ ସହ ସେ କି ଗପ ବା କରିପାରନ୍ତା ? ନିଜ ଘର, ନିଜ ଗାଆଁ, ଆଗପରି ତାକୁ ଆପଣାର ଲାଗୁ ନ ଥିଲା । ଭାରି ଚୁପ୍‌ଚାପ୍ ହୋଇଯାଉଥିଲା ସେ । ପଚିଶବର୍ଷ ବିତେଇଥିବା ଘରେ କାହିଁକି କେଜାଣି ତାକୁ ମାଡ଼ି ମାଡ଼ି ପଡୁଥିଲା । ଚେଷ୍ଟାକରି ବି ସେ ଜମା ସ୍ୱାଭାବିକ ହୋଇପାରୁ ନ ଥିଲା ।

ଜିତୁ ଓ ଜିତାକୁ ବେଶ୍ କିଛିଦିନ ଭଲ ଲାଗିଥିଲା ମାମୁଘରେ । ନୂଆ ସାଙ୍ଗ ଗହଣରେ ସେମାନେ ଖେଳକୁଦରେ ମାତିଯାଉଥିଲେ । ସେମାନଙ୍କର ବୋଧେ ଘରକଥା ମନେପଡୁଥିଲା । ମାମୁଘରକୁ ସେମାନେ ଆଦରିନେବେ ବୋଲି ପ୍ରବାସିନୀ ଭାବୁଥିଲା । କିନ୍ତୁ ହଠାତ୍ ଦିନେ ଜିତୁ କହିଲା, 'ବୋଉ, ଆମଘରକୁ କେବେ ଯିବା ?' ଜିତୁର ଏଇ ପଦକ କଥାରେ ପ୍ରବାସିନୀ ଛାତିରେ ଭଉଁରି ଖେଳିଗଲା ଯେମିତି ! 'ଯିବା ତ, ହେଲେ ଅସ୍ଥିର ହବାର କ'ଣ ଅଛି,' ସେ ଜିତୁକୁ କହିଲା ଅଥଚ ନିଜ ଭିତରେ ଭାରି ଅସ୍ଥିର ହୋଇପଡ଼ିଲା । ଏଇ କେତେ ଦିନ ହେଲା ସେ ବେଶ୍ ଛଟପଟ ହେଉଥିଲା ମନେ ମନେ । ବାହାହେଲା ପରେ ବାପଘର ଯେତେହେଲେ ବି ନିଜ ଘର ତ ନୁହେଁ । ବାପାବୋଉଙ୍କର ଯେତେ ଦରଦ ଥିଲେ ବି ତାକୁ ଭଲଲାଗୁ ନ ଥିଲା ତାଙ୍କ ଗାଁ । ବରଂ ଶାଶୂଘର ତାକୁ ଯେମିତି ହାତଠାରି ଡାକୁଥିଲା ।

ଶହେ ବର୍ଷ ବୟସର ଗୋସେଇଁଶାଶୂ ପ୍ରବାସିନୀକୁ ସପ୍ତାହରେ ଥରେ ନ ଦେଖିଲେ କେତେ ସକସକ ହେଉଥିଲେ । ଏବେ ସେ ହୁଏତ ବିଛଣାରୁ ଉଠୁ ନ ଥିବେ । ବଡ଼ ନାତିକୁ ସେ କେତେ ଭଲପାଉ ନ ଥିଲେ ! ସମ୍ଭାଳି ହେଉଥିବେ କି ଏବେ ? ଶ୍ୱଶୁର କେଜାଣି ଗାନ୍ଧୀବାଦୀ ସ୍ଥିତପ୍ରଜ୍ଞ ! ହେଲେ ଶାଶୂ ? ଦିନ ରାତି ତାଙ୍କୁ ସମାନ ଲାଗୁ ନ ଥିବ କି ? ୟା'ଭିତରେ ଘରର ଅବସ୍ଥା କ'ଣ ହେଉଥିବ କେଜାଣି ? ଆଡ଼ବାୟା ଦିଅର ଉପରେ କାହାରି କେବେ ବି ଆସ୍ଥା ନ ଥିଲା । ନେତ୍ରାନନ୍ଦଙ୍କ ପରେ ପ୍ରବାସିନୀହିଁ ଥିଲା ସମସ୍ତଙ୍କର ଆଶାଭରସା । ଏବେ ସମସ୍ତେ ହୁଏତ ତା' ଫେରିବା ବାଟକୁ ଚାହିଁବସିଥିବେ । ଗଉଣିଏ ହାଡ଼ମାଉଁସର ମଣିଷ ଗୋସେଇଁଶାଶୂଙ୍କ ଦାନ୍ତ ନ ଥିବା ପାଟି, ଶ୍ୱଶୁରଙ୍କ ଉଦାସ ଆଖି ପୁଣି ଶାଶୂଙ୍କ ଆଲୁରୁବାଲୁରୁ କଥା ଖୁବ୍ ମନେପଡୁଥିଲା ତା'ର । ମନେପଡୁଥିଲା ପ୍ଲାଷ୍ଟର ହୋଇ ନ ଥିବା ଦି'ବଖରା ପକ୍‌କା ଘରର ଚେହେରା । କେତେ କଷ୍ଟରେ ନେତ୍ରାନନ୍ଦ ଘର ତୋଳିବା ଆରମ୍ଭ କରିଥିଲେ । କିନ୍ତୁ କବାଟ ଝରକା ଲାଗିପାରି ନ ଥିଲା ତହିଁରେ । ସ୍ୱପ୍ନ ଅଧାରୁ ତ ସେ ଚାଲିଗଲେ; କିନ୍ତୁ କେତେ ଯେ ଆତ୍ମୀୟତାର ହାତଚିହ୍ନଲଗା ତାଙ୍କର ସେ ଛୋଟଘର କ'ଣ ସେମିତି ଅଧାହୋଇ ରହିଯିବ ? ଅନେକଥର ଅନେକ ମଞ୍ଚସ୍ଥ ହୋଇଥିବା ତାଙ୍କ ଲେଖା ନାଟକ ଖଣ୍ଡିକ କ'ଣ ଚିରାଖାତା ପରି କୁଆଡ଼େ ହଜିଯିବ ସବୁଦିନପାଇଁ ?

ଏସବୁ ଭାବିଲାକ୍ଷଣି ପ୍ରବାସିନୀ ନିଜ ଆୟତ୍ତରେ ରହିପାରୁ ନ ଥିଲା । ଉଚ୍ଚାଟ ହେଉଥିଲା ତା' ମନ, ଲୁହରେ ଭିଜୁଥିଲା ଆଖି । କିନ୍ତୁ ତା' ମନରେ ଢେଲା ବାଜିଲେ ଯେମିତି ବୋଉ ଛାତିରେ ପଥର ପିଟି ହେଉଥିଲା । ବୋଉ ତାକୁ ବୋଧ ଦେଉଥିଲା । କହୁଥିଲା, ତୋର ଓ ତୋ' ପିଲାମାନଙ୍କର କିଛି ଅସୁବିଧା ହବ ନାହିଁ । ତୋ ବାପା ଏମ୍.ଏଲ.ଏ.ଙ୍କୁ କହି ତୋତେ ବଦଳି କରି ଆଣିବେ । ଘର ଆଉ ମାମୁଘର ଭିତରେ ଫରକ କ'ଣ ? ବର୍ଷେ ଛ' ମାସ ଭିତରେ ଏ ଘର ଆରେଇଯିବ ତୋ ପିଲାମାନଙ୍କୁ । ଯା'ଛଡ଼ା ଆଉ ଅଧିକ କ'ଣ ବୋଉ ବୁଝାଇପାରନ୍ତା ।

ପ୍ରବାସିନୀ କିନ୍ତୁ ବିସ୍ତାରିତ ହୋଇଯାଉଥିଲା ନିଜ ଭିତରେ; ଲମ୍ବିଯାଉଥିଲା ଶାଶୂଘର ପର୍ଯ୍ୟନ୍ତ । ଧାର ଉଧାର ସବୁ କେମିତି ଶୁଝାହବ ସହଳ । କୋଉ ବ୍ୟାଙ୍କରୁ ଲୋନ୍‌କଲେ ଘର ଦି'ବଖରା ପ୍ଲାଷ୍ଟର ହେବ । ନେତ୍ରାନନ୍ଦଙ୍କ ନାଟକର ପାଣ୍ଡୁଲିପି କେମିତି ଛାପା ହେଇ ବାହାରିବ । ତା' ପାଖରେ ଟ୍ୟୁସନ୍ ପଢୁଥିବା ପିଲାମାନେ କିପରି ସ୍କଲାରସିପ୍ ପାଇବେ । ନୂଆକରି ତାଙ୍କ ସ୍କୁଲ ପାଖରେ ଖୋଲିଥିବା ନର୍ସରୀ ସ୍କୁଲରେ ନା ଶିଶୁ ମନ୍ଦିରରେ ପଢ଼ା ଆରମ୍ଭ କରିବ ଜିତୁ । ପୋଖରୀହୁଡ଼ାରେ ସେ ଓ ନେତ୍ରାନନ୍ଦ ଲଗେଇଥିବା କଲମୀ ଆମ୍ବ ଗଛରେ ପାଣି ଦିଆଯାଉଛି କି ନାହିଁ ? ପ୍ରତି ଶନିବାର ପିଲା ଦି'ଟାଙ୍କୁ ସାଙ୍ଗରେ ଧରି ସ୍କୁଲରୁ ସେ ଏକା କେମିତି ଫେରିବ ଶାଶୂଘର ଗାଆଁକୁ ? ଦିଅରଟି କେମିତି ଚାକିରିବାକିରି ଖଣ୍ଡେ ପାଇବ । ପ୍ରଧାନଘର ସାଙ୍ଗରେ ଲାଗିଥିବା ଚକବନ୍ଦୀ କେସ୍ ତୁଟିବ କେବେ ? ଏମିତି ସବୁ ଚିନ୍ତା ଲଦି ହୋଇଯାଉଥିଲା ପ୍ରବାସିନୀ ଉପରେ, ସେ ଅଥୟ ହୋଇପଡୁଥିଲା ।

ଅସଜଡ଼ା ଘରକୁ କେତେ ସଜାଡ଼ିଥିଲା ପ୍ରବାସିନୀ ନେତ୍ରାନନ୍ଦଙ୍କ ସହ ମିଳିମିଶି । ତା' ଆଖି ଆଗରେ ପୁଣି ସେହି ଘର ଅସଜଡ଼ା ହେଇଯାଉ, ଭୂଇଁରେ ଲୋଟିଯାଉ, ଏହା କ'ଣ ସେ କେବେ ବି ସହ୍ୟ କରିପାରିବ ? ଯୋଉ ପାଣି ପବନରେ ଘୂରିବୁଲୁଥିବ ନେତ୍ରାନନ୍ଦଙ୍କ ଆତ୍ମା, ସେଠୁ ସେ କ'ଣ ଦୂରେଇଦେଇପାରିବ ନିଜକୁ ? କାହା ପରିଚୟରେ ସେ ବଞ୍ଚିବ ଅବଶିଷ୍ଟ ଜୀବନ ?

ପ୍ରବାସିନୀ ମନର ଦ୍ୱନ୍ଦ୍ୱ ଆଉ ଅଧିକ ସମୟ ରହିଲା ନାହିଁ । ନିଜ ଭିତରେ ଥିବା ଅମିତଶକ୍ତିର ଦ୍ୱାର ଖୋଲିଯାଉଥିଲା ଯେମିତି ଆପେ ଆପେ । ଭଙ୍ଗାରୁଜା ସ୍ୱପ୍ନର ସ୍ତୁପତଳୁ ମୁଣ୍ଡ ଟେକୁଥିଲା ଏକା ଏକା ଜିଇଁବାର ଦୁର୍ବାର ଆକର୍ଷଣ । ତା'ର ଦୁଇଟି କୁନିପାଦ ପୃଥିବୀର ସମସ୍ତ ବନ୍ଧୁର ପଥକୁ ଡେଇଁଯିବାପାଇଁ ତତ୍ପର ହେଉଥିଲେ ଅବା !

ହଠାତ୍ ଦିନେ ବାପାବୋଉଙ୍କୁ ଚକିତ କରି ଶାଶୂଘରକୁ ବାହୁଡ଼ିବା ଲାଗି ଅଡ଼ିବସିଲା ପ୍ରବାସିନୀ ।



# ଉତ୍ତରାଧିକାର

ସନାଭାଇଙ୍କ ସହ ଦେଖାହେଲା ବରମୁଣ୍ଡା ବସ୍‌ଷ୍ଟାଣ୍ଡରେ, ଅକସ୍ମାତ୍, ଅପ୍ରତ୍ୟାଶିତ ଭାବରେ । ସେଇଟା ଥିଲା ଶୀତଋତୁର ଏକ କଅଁଳ ଅପରାହ୍ଣ । ସଫେଦ ଧୋତି-ପଞ୍ଜାବି ସାଙ୍ଗକୁ ଘିଅ ରଙ୍ଗର ଶାଲ୍‌ଟେ ଢାଙ୍କି ହୋଇଥିଲେ ସେ– ମ୍ୟାଗାଜିନ୍ ଷ୍ଟଲ୍ ସାମ୍ନାରେ ଠିଆହୋଇ ଅନ୍ୟମନସ୍କ ଭାବରେ ଗୋଟେ ମ୍ୟାଗାଜିନ୍‌ର ପୃଷ୍ଠା ଓଲଟାଉଥିଲେ । ମୁଁ ତାଙ୍କୁ ଟିକେ ଦୂରରୁ ଦେଖିଲି । ପଚିଶବର୍ଷ ପରେ ବି ତାଙ୍କୁ ଚିହ୍ନିବାରେ ବିଶେଷ ଅସୁବିଧା ନ ଥିଲା । ସେ ବେଶ୍ ଝଡ଼ିଯାଇଥିଲା ପରି ଲାଗୁଥିଲେ । ତାଙ୍କ ମୁଣ୍ଡରେ ନବେଭାଗ ବାଳ ପାଚିଯାଇଥିଲା । ଗାଲ ଭିତରକୁ ପଶିଯାଇଥିଲା । ତା' ସତ୍ତ୍ୱେ ତାଙ୍କ ମୁହଁଟିର ଭୂଗୋଳ ଆଗପରି ପ୍ରାୟ ଅକ୍ଷୁଣ୍ଣ ରହିଥିଲା । ସେଇ ପୁରୁଣା ମିଠା ହସରୁ କାଣିଚାଏ ଲାଖି ରହିଥିଲା– ଯେମିତି ତାଙ୍କର ସେ ଆତ୍ମୀୟ ମୁହଁରେ । ସେ ଯେ ସନାଭାଇ, ଏଥିରେ ସନ୍ଦେହ କରିବାର କିଛି କାରଣ ନ ଥିଲା । ମୁଁ ତାଙ୍କ ପାଖକୁ ଏକପ୍ରକାର ଧାଇଁଗଲି । ପଛଆଡୁ ତାଙ୍କୁ ହଲେଇଦେଇ କହିଲି, ''ତମେ ସନାଭାଇଟି ?'' ସେ କ୍ଷଣକପାଇଁ ହଡ଼ବଡ଼େଇଗଲେ । ''ତୁ ଶଶୀ ! ହଁ ।'' ତାଙ୍କ ମୁହଁରେ ସେଇ ନିଛକ ଉତ୍ତର-ବାଲେଶ୍ୱରୀ ଉଚ୍ଚାରଣ । ସେ କୋଳେଇନେଲେ ମୋତେ ।

ଚଉଠେ ଶତାବ୍ଦୀର ବ୍ୟବଧାନ ତରଳିଗଲା ମୁହୂର୍ତ୍ତ ଭିତରେ ।

''କେମିତି ଅଛ ସନାଭାଇ ? ଏବେ କୋଉଠି ? ଆଶ୍ରମସ୍କୁଲରେ ଥିଲ ବୋଲି ଜାଣିଥିଲି ।''

ମୁଁ ଏକାବେଳକେ ସବୁକଥା ପଚାରିଗଲି । କୋରାପୁଟ, କାଳାହାଣ୍ଡି, ସୁନ୍ଦରଗଡ଼– ଏମିତି କେତେ ଜିଲ୍ଲା ବୁଲିଲା ପରେ ଏବେ ସେ ମୟୂରଭଞ୍ଜରେ ବୋଲି କହିଲେ । ଚାକିରି ସରିଆସିଲାବେଳକୁ ଯାହାହେଉ ତାଙ୍କୁ ପାଖ ଜିଲ୍ଲାରେ ପୋଷ୍ଟିଂ କରିଛନ୍ତି ସରକାର ବାହାଦୁର । ଆଉ ତାଙ୍କର ପିଲାପିଲି କହିଲେ– ପୁଅଟେ, ଝିଅଟେ । ପୁଅପାଇଁ ଚାକିରି ଓ ଝିଅପାଇଁ ବରଖୋଜା ଚାଲିଥିବ ବୋଲି ମୁଁ କହିବାରୁ ସେ ମୁରୁକି ମୁରୁକି ହସିଲେ । ପଚାରିଲେ ବି ମୋ କଥା । ମୁଁ ଏବେ ବି.ଜେ.ବି.ରେ ଅଛି ବୋଲି କହିଲି । କହିଲି ପୁଅଝିଅଙ୍କ କଥା । ଡାକିଲି ବି ଘରକୁ । ସେ କହିଲେ– ଆଗ ଚା' ପିଅ ସରୁ, ତା'ପରେ ଯୋଉ କଥା ।

ଆପାତତଃ ଅପରିଷ୍କାର ଡାଇନିଂ ଟେବୁଲ୍ ଉପରେ ଥୁଆହୋଇଥିବା ଚା'କପ୍‌ରେ ଯେମିତି ଚହଲିଯାଉଥିଲା ରେଭେନ୍ସା କଲେଜର ସ୍ମୃତି । ବୟସରେ ବଡ଼ ହେଲେ ବି ସନାଭାଇ ଥିଲେ ମୋର ସହପାଠୀ । ଆମର ପୁଣି ଏକା ଅନର୍ସ ଥିଲା- ଓଡ଼ିଆ । ଦୁଇବର୍ଷଯାକ ରହୁଥିଲୁ ଗୋଟିଏ ହଷ୍ଟେଲରେ, ଏକା ରୁମ୍‌ରେ- ଇଷ୍ଟ ହଷ୍ଟେଲର ସତର ନମ୍ବର ରୁମ୍ । ଭାରି ନିବିଡ଼ଭାବରେ ମନେପଡୁଥିଲା ସେଦିନର କଥାସବୁ । ପୁଲକିତ ହେଉଥିଲି ମୁଁ । ଦାର୍ଶନିକସୁଲଭ ଚିନ୍ତାଶୀଳତା ବି ବାରି ହୋଇପଡୁଥିଲା ସନାଭାଇଙ୍କ ମୁହଁରେ । ସେ କେଉଁ ଅତୀତରେ ବୋଧେ ଚାଲବୁଲ କରୁଥିଲେ ।

ଇଷ୍ଟହଷ୍ଟେଲରେ ମୋତେ ଆଲଟ୍ ହୋଇଥିଲା ସତର ନମ୍ବର- ଅନ୍ୟ ଅନ୍ତେବାସୀ ଜଣକ ଥିଲେ ସନାତନ ଦାସ, ଓଡ଼ିଆ ଅନର୍ସର । ମୁଁ ଏକଥା ଜାଣିଥିଲି ଆଗରୁ- କିନ୍ତୁ ତାଙ୍କୁ ନା ଅନର୍ସ କ୍ଲାସରେ, ନା ହଷ୍ଟେଲରେ ଖୋଜି ପାଉଥିଲି । ମୁଁ ହଷ୍ଟେଲରେ ରହିବାର ପ୍ରାୟ ପନ୍ଦରଦିନ ପରେ ଗୋଟେ ଟିଣବାକ୍ସ ଓ ମୁଢ଼ି ବସ୍ତାଟାଏ ଧରି ଯେଉଁ ବୟସ୍କ ଛାତ୍ରଜଣକ ସତର ନମ୍ବର ରୁମ୍‌ର କବାଟ ବାଡ଼େଇଥିଲେ, ସେ ଯେ ନିଶ୍ଚୟ ସନାତନ ଦାସ, ଏକଥା ବୁଝିବାରେ ଅସୁବିଧା ହୋଇ ନ ଥିଲା । ଶ୍ୟାମଳବର୍ଣ୍ଣର ଏହି ଛାତ୍ରଜଣକ ପ୍ରଚଣ୍ଡ ଗାଉଁଲି ଥିଲେ ବି ଖୁବ୍ ଆପଣାର ମନେହୋଇଥିଲେ ପ୍ରଥମ ଦେଖାରୁ । ବହୁକଥା କହୁଥିବା ଓ ମୋ'ଠାରୁ ଟିକେ ଅଲଗା ଓଡ଼ିଆ କହୁଥିବା ସନାତନ ଦାସ, ଓରଫ ସନାଭାଇଙ୍କ କଉତୁକିଆ କଥାବାର୍ତ୍ତା ମୋତେ ମୂଳରୁ କିମିଆଁ କରିଦେଇଥିଲା ଯେମିତି !

ସନାଭାଇଙ୍କ ଘର ଉତ୍ତର-ବାଲେଶ୍ୱର ଭୋଗରାଇରେ, ଯାହାପରେ ଆଉ ଓଡ଼ିଶା ନାହିଁ । ଜଳେଶ୍ୱରରୁ ତିରିଶ କିଲୋମିଟର ଗଲେ ପଡ଼େ ଚନ୍ଦନେଶ୍ୱର । ସେଠୁ ପନ୍ଦର କିଲୋମିଟର ହିଡ଼ ରାସ୍ତା ଡେଇଁଲେ ନଈକୂଳିଆ ଗାଁଟେ- ଶରଧାପୁର । ସେଇ ଗାଁରେ ସନାଭାଇଙ୍କ ଘର । ତାଙ୍କ ଗାଁ ପାଖାପାଖି ଅଞ୍ଚଳରେ ସୁବର୍ଣ୍ଣରେଖା ମିଶିଛି ସମୁଦ୍ରରେ । ସେ ଖଣ୍ଡମଣ୍ଡଳରେ ନାମଡାକ ଶିକ୍ଷାନୁଷ୍ଠାନ ଶରଧାପୁର ବିଦ୍ୟା-ନିକେତନରୁ ତିନି ଚାନ୍ସରେ ମ୍ୟାଟ୍ରିକ୍ ପାସ୍ କରିଥିଲେ ସନାଭାଇ । ଓଡ଼ିଆ, ଇଂରାଜୀ, ଇତିହାସ, ଭୂଗୋଳ ଏପରିକି ସଂସ୍କୃତରେ କୁଆଡ଼େ ସେ ଭାରି ପାରଙ୍ଗମ ଥିଲେ । ହେଲେ, ଅଙ୍କର 'ଅ' ଅକ୍ଷର ତାଙ୍କୁ ଜଣା ନ ଥିଲା । ତେବେ ତୃତୀୟ ଚାନ୍ସରେ କୌଣସିପ୍ରକାରେ ଅଙ୍କରେ ତିରିଶ ନମ୍ବର ରଖିପାରିବାରୁ ସେ ମ୍ୟାଟ୍ରିକ୍‌ଟା ଡେଇଁଯାଇଥିଲେ । ସେ ମ୍ୟାଟ୍ରିକ୍ ପାସ୍ କରିବା ବର୍ଷହିଁ ତାଙ୍କ ବାପା ବେମାର ପଡ଼ିଥିଲେ ଓ ଦି'ତିନି ମାସ ପରେ ସ୍ୱର୍ଗବାସୀ ହୋଇଥିଲେ । ତାଙ୍କର ବଡ଼ ଦୁଇଭାଇ ଦନା ଓ ବନାଙ୍କ ଉପରେ ଆକାଶ ଛିଣ୍ଡିପଡ଼ିଥିଲା ଯେମିତି ! ଆର୍ଥିକ ଅନଟନ ଥରେଇ ଦେଇଥିଲା ତାଙ୍କ ଘରର ପଞ୍ଜରା । କଲେଜରେ ପଢ଼ିବା ତେଣୁ ସମ୍ଭବ ହୋଇ ନ ଥିଲା ତାଙ୍କ ପକ୍ଷରେ ।

ସେତେବେଳେ ସାରା ଭୋଗରାଇରେ ଗୋଟେ ବି କଲେଜ ନ ଥିଲା । ସବୁଠାରୁ ପାଖ କଲେଜ ଥିଲା ଜଳେଶ୍ୱରର ଦୀନକୃଷ୍ଣ କଲେଜ । ବାପା ମରିବା ପରବର୍ଷ ଯାଇ ସନାଭାଇ ଦୀନକୃଷ୍ଣ କଲେଜରେ ନାଁ ଲେଖାଇଥିଲେ । ତାଙ୍କର ଆଇ.ଏ. ଫାଷ୍ଟ ଇଅର୍ ବେଳେ, ତାଙ୍କ ସାଙ୍ଗମାନେ ଶେଷବର୍ଷ ବି.ଏ.ରେ ପାଠ ପଢୁଥିଲେ । ଦୀନକୃଷ୍ଣ କଲେଜରେ ତାଙ୍କ ସହପାଠୀମାନେ ତାଙ୍କୁ 'ସନାଭାଇ' ବୋଲି ଡାକୁଥିବା କଥା ସେ ମୋତେ କହୁଥିଲେ । ରେଭେନ୍ସା କଲେଜରେ ମୋ ଦେଖାଦେଖିରେ ଅନେକ ପିଲା ବି ତାଙ୍କୁ ସନାଭାଇ ଡାକିବା ଆରମ୍ଭ କରିଦେଲେ । ସନାଭାଇ ରେଭେନ୍ସା କଲେଜରେ ପଢ଼ିବା ପଛରେ ବି ଗୋଟେ କାହାଣୀ ଥିଲା । ସେକଥା ମୋତେ କହିବାକୁ ବି ସେ ଭୁଲି ନ ଥିଲେ ।

ସନାଭାଇ ଆଇ.ଏ.ରେ ସେକେଣ୍ଡ ଡିଭିଜନ୍ ପାଇଥିଲେ । ଅଙ୍କ ପରି ମାରାତ୍ମକ ବିଷୟଟି ଆଉ କଲେଜରେ ନ ଥିବାରୁ, ତାଙ୍କ ପାଠପଢ଼ାର ପଥ ସୁଗମ ହୋଇଥିଲା । ତେବେ ପ୍ରଥମେ ପ୍ରଥମେ ତାଙ୍କୁ ଭାରି ଆକ୍ତାମାକ୍ତା ଲାଗିଥିଲା କଲେଜରେ । ତାଙ୍କଠାରୁ ଢେର ସାନ ପିଲାମାନଙ୍କ ସାଙ୍ଗରେ ସେ ହଠାତ୍ ମିଶିପାରୁ ନ ଥିଲେ । କିନ୍ତୁ କଲେଜ ମେସ୍‌ରେ ରହୁଥିବା ତାଙ୍କଆଡ଼ିକା ପିଲାମାନେ ତାଙ୍କୁ ସନାଭାଇ ଡାକିବା ପ୍ରଥମେ ଆରମ୍ଭ କରିଥିଲେ । ତା'ପରେ ପିଲାମାନଙ୍କ ଭିତରେ ସେ ଏତେ ଜଣାଶୁଣା ହୋଇଗଲେ ଯେ ଦି' ବର୍ଷଯାକ ସେ ଶ୍ରେଣୀ ପ୍ରତିନିଧିଭାବରେ ନିର୍ବାଚିତ ହୋଇଥିଲେ । ତଥାପି ସାନପିଲାଙ୍କ ଗହଣରେ ତାଙ୍କୁ ଭାରି ଅଡୁଆ ଲାଗୁଥିଲା । ସୁତରାଂ ଆଇ.ଏ. ପାସ୍ କଲା ପରେ ଜଳେଶ୍ୱର କି ବାଲେଶ୍ୱରରେ ନ ପଢ଼ି ସେ କଟକରେ ପଢ଼ିବେ ବୋଲି ମନସ୍ଥ କରିଥିଲେ ।

ସେତେବେଳେ ସେକେଣ୍ଡ ଡିଭିଜନ୍‌ର ମର୍ଯ୍ୟାଦା କ'ଣ କମ୍ ଥିଲା କି ? ସନାଭାଇଙ୍କୁ ପ୍ରଥମ ସିଲେକ୍‌ସନ୍‌ରେ ରେଭେନ୍ସା କଲେଜରେ ସିଟ୍ ମିଳିଗଲା । ଆଉ ଓଡ଼ିଆ ଅନର୍ସ ପାଇଁ ପ୍ରତିଯୋଗିତା ଅପେକ୍ଷାକୃତ କମ୍ ଥିବାରୁ ଅନର୍ସଟା ବି ତାଙ୍କୁ ମିଳିଯାଇଥିଲା ସହଜରେ । ଅନ୍ୟ ଅନର୍ସ ନ ମିଳିବାରୁ ଓଡ଼ିଆ ଅନର୍ସ ନେଲ କି ସନାଭାଇ ବୋଲି ମୁଁ ଥରେ ତାଙ୍କୁ ପଚାରିଥିଲି । ସେ ତ ଥିଲେ ଭାରି ସରଳ, ଖୋଲାମେଲା, ମୁହଁରେ ଗୋଟେ ମନରେ ଗୋଟେ କଥା ତାଙ୍କ ଜାତକରେ ନ ଥିଲା । ସେ କହିଥିଲେ– ଅର୍ଥନୀତି ତ ମୁଁ ବୁଝିପାରେ ନାହିଁ, ଇତିହାସର ହଜାରେ ନାଁ ଓ ଘଟଣା ମୋର ମନେରହେ ନାହିଁ । ରାଜନୀତି ବିଜ୍ଞାନ ପ୍ରତି ଅନୁରାଗ ନ ଥିଲା, ଓଡ଼ିଆ ଅନର୍ସ ନ ନେଇ ମୁଁ କ'ଣ ବାଇଆ ହବାଲାଗି 'ଦର୍ଶନ' ପଢ଼ିଥା'ନ୍ତି ? ଖୁବ୍ ସାବଲୀଳ ଥିଲା ତାଙ୍କର ପରିପ୍ରକାଶ ।

ତା'ପରଠୁଁ ସନାଭାଇ ପାଲଟିଯାଇଥିଲେ ମୋ ପାଇଁ ଆକର୍ଷଣର କେନ୍ଦ୍ରବିନ୍ଦୁ । କିନ୍ତୁ ଆକର୍ଷଣର ଗହୀର ଦିଗଟି ତାଙ୍କ ଅପେକ୍ଷା ବେଶି ଥିଲା ତାଙ୍କ ମୁଢ଼ିବସ୍ତା । ସକାଳ ହେଲାକ୍ଷଣି, ପୁଣି ବେଳ ବୁଡ଼ିଲାମାତ୍ରେ, ସନାଭାଇ ମୁଢ଼ି ଖାଇବେହିଁ ଖାଇବେ । ଏକାରୁମ୍‌ରେ ଥିବାରୁ ତାଙ୍କ ସଫେଦ୍ ଗୋଟାଳିଆ ମୁଢ଼ିର ଅଧା ଭାଗ ଥିଲା ମୋ'ର । ମୁଢ଼ି ସାଙ୍ଗକୁ ଛତ୍ରବଜାରରୁ ଆଣି ଖଟତଳେ ଥୋଇଥିବା ଦେଶୀ ପିଆଜର ମିଶ୍ରଣରେ ବେଶ୍ ଚମତ୍କାର ହେଉଥିଲା ଜଳଖିଆଟା । ବେଳେ ବେଳେ ମୁଢ଼ି ସାଙ୍ଗରେ ନବଘନିଆର ବରା ମଧ୍ୟ ସଂଯୁକ୍ତ ହେଉଥିଲା । ମୁଢ଼ି ସରିଗଲେ ସନାଭାଇ ବଡ଼ ଛେଉଣ୍ଡ ଦିଶୁଥିଲେ । ତାଙ୍କ ମନ ଆଉ କାହିଁରେ ଲାଗୁ ନ ଥିଲା । ସେ ଓ.ଏମ.ପି. ଛକକୁ ନିତି ଦୌଡ଼ୁଥିଲେ ଚନ୍ଦନେଶ୍ୱରରୁ ଆସୁଥିବା ନାଲିବସ୍‌ର ହେଲ୍ପରକୁ ଭେଟିବାପାଇଁ, କାରଣ ମୁଢ଼ିର ନିୟମିତ ବାହକ ଥିଲା ସେହି ବସ୍‌ର ଯୁବ ହେଲ୍ପରଟି । ତେବେ ଗୋଟେ ଯୋଡ଼େ ଦିନ ଖୁବ୍ ବେଶିରେ ଡେରି ହେଉଥିଲେ ହେଉଥିଲା । ନ ହେଲେ ପ୍ରାୟ ଠିକ୍ ସମୟରେ ମଲ୍ଲୀକଢ଼ିଆ ଭୋଗରାଇ ମୁଢ଼ି ପହଞ୍ଚିଯାଉଥିଲା ଓ.ଏମ୍.ପି. ଛକରେ ।

ସନାଭାଇଙ୍କ ମୁଢ଼ିଖିଆ କଲେଜରେ ନ ହେଲେ ବି ହଷ୍ଟେଲ୍‌ରେ ଗୋଟେ ଖୁବ୍ ଚର୍ଚ୍ଚାର ବିଷୟ ଥିଲା । କିନ୍ତୁ ମୁଢ଼ିଖିଆ ଅପେକ୍ଷା ତାଙ୍କ ଭାତଖିଆ ମୋତେ ଅଧିକ କୌତୁକ ଲାଗୁଥିଲା । ସେ ପ୍ରାୟ ତିନି ଚାରିଥର ଭାତ ମାଗି ଖାଉଥିଲେ । ମୋଟ ଉପରେ ଅଧକେଜିଏ ଚାଉଳର ଭାତ ନ ହେଲେ ତାଙ୍କ ପେଟ ବୋଧେ ପୂରୁ ନ ଥିଲା । ଭାତ ଖାଇସାରିଲା ପରେ ସେ ଖୁବ୍ କମ୍‌ରେ ଚାରିଗ୍ଲାସ୍ ପାଣି ପିଉଥିଲେ । ତା'ପରେ ଲାଗ ଲାଗ ତିନି ଚାରିଟା ହେକୁଟି ମାରୁଥିଲେ । ଦିନରେ ହେଉ କି ରାତିରେ ହେଉ, ଡାଇନିଂ ହଲ୍‌କୁ ଯିବାରେ ସେ ଥିଲେ ଆଗୁଆ । ରୋଷେଇ ସରିବା ପୂର୍ବରୁ ସେ ଯାଇ ହାଜର ହୋଇଯାଉଥିଲେ ଡାଇନିଂ ହଲ୍‌ରେ ଓ ବଢ଼ାବଢ଼ି କରିବାଲାଗି ଅସ୍ଥିର କରୁଥିଲେ ହେଡ୍‌ପୂଝାରୀ ରାମ ତିହାଡ଼ୀକୁ । ଆଉ ଯୋଉଦିନ ମାଛ ହୋଇଥିବ, ବିଲେଇପରି ବାସନା ବାରିବାରି ମାଛଭଜା ପାଖରେ ପହଞ୍ଚିଯାଉଥିଲେ ସେ । ପେଟକାବୁରାଭାବରେ ତାଙ୍କର ବଦ୍‌ନାମ ଥିଲା ସାରା ହଷ୍ଟେଲ୍‌ରେ ।

ବିନା ଗୁଡ଼ାଖୁରେ ସନାଭାଇ ପାଇଖାନା ଯାଇପାରୁ ନ ଥିଲେ । ସଞ୍ଜବେଳେ ହଷ୍ଟେଲ୍ ବାରନ୍ଦାରେ ଖୋର୍ଦ୍ଧାଲୁଙ୍ଗି ପିନ୍ଧି ଫାଙ୍କା ଦେହରେ ଟହଲ ମାରି ମାରି ଗୁଡ଼ାଖୁ ଘଷିବା ଓ ଫୁଲକୁଣ୍ଡ ପାଖରେ ମେଞ୍ଚା ମେଞ୍ଚା ବଳହିଆ ନାଲିପିକ ପକାଇବା ଥିଲା ତାଙ୍କର ଅଭ୍ୟାସ । ଏକଥା ବନ୍ଧୁ ମହଲରେ ଗୋଟେ ଚମତ୍କାର ଚର୍ଚ୍ଚାର ଉପାଦାନ ଥିଲା । କିନ୍ତୁ ସବୁଠୁଁ ନିଆରାଥିଲା ସନାଭାଇଙ୍କ କଥାବାର୍ତ୍ତାର ଢଙ୍ଗଢାଙ୍ଗ । ଛୁଆ ଭୁଜା ଖା'ବୁ ହଁ ଠାରୁ ଆରମ୍ଭ କରି ଖାଇତେ ଯାଇତେ ପର୍ଯ୍ୟନ୍ତ ନିରୋଳା

ଉତ୍ତର-ବାଲେଶ୍ୱରୀ ଭାଷା ନିଜ ବାଗରେ କହିବାରେ ବେଶ୍ ଅଭ୍ୟସ୍ତ ଥିଲେ ସନାଭାଇ । 'ଓ'କାର କୁ 'ଉ'କାର ପ୍ରକାରେ ଉଚ୍ଚାରଣ କରିବା ଥିଲା ତାଙ୍କ ଜିହ୍ୱାଗତ । ସାଙ୍ଗମେଳରେ ଏହା ଅନେକ ସମୟରେ ଆମୋଦର ଆଲୋଚନା ପର୍ଯ୍ୟାୟକୁ ଆସିଥିଲା । କିନ୍ତୁ ସେତେବେଳର ସବୁଠାରୁ ମଜା ଘଟଣା ଥିଲା ହଷ୍ଟେଲର ବାର୍ଷିକ ଉତ୍ସବରେ କୁହାଳିଆ ଓମ୍ ପ୍ରକାଶ ସେନାପତିର ଜୋକ୍ ପରିବେଷଣ । ସନାଭାଇଙ୍କ ଉଚ୍ଚାରଣକୁ ନକଲ କରି ସେ ଏପରି ଜୋକ୍ କରିଥିଲା ଯେ ପିଲା ତ ପିଲା, ଅଧ୍ୟାପକ, ଅଧ୍ୟାପିକା, ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ ଓ ପ୍ରିନ୍ସିପାଲ– ଏମାନେ ସମସ୍ତେ ହସି ହସି ଗଡ଼ିଯାଇଥିଲେ । ସେହିଦିନଠୁଁ ସନାଭାଇ ଯେମିତି ପାଲଟି ଯାଇଥିଲେ ହଷ୍ଟେଲ୍‌ର ହୀରୋ– ନା ଆଣ୍ଟିହୀରୋ !

ଏମିତି ଗୋଟେ ନିପଟ ମଫସଲୀ ଓ ଅନେକ ତାଚ୍ଛଲ୍ୟର ନାୟକ ସନାଭାଇ ଯେ ଜଣେ ପ୍ରଚଣ୍ଡ ପ୍ରତିଭାଧର କବି, ଏକଥା ବର୍ଷେ ପର୍ଯ୍ୟନ୍ତ ମୁଁ ଜାଣିପାରି ନ ଥିଲି । ସେତେବେଳେ ମୁଁ ଆଧୁନିକ କବିତା ଲେଖୁଥିଲି, ଯାହା ବେଳେ ବେଳେ ପତ୍ରପତ୍ରିକାର ପୃଷ୍ଠା ମଣ୍ଡନ କରୁଥିଲା । ଗୋଟେ ଆଧୁନିକ କବିସୁଲଭ ଅହମିକାରେ ମୁଁ ପ୍ରାୟତଃ ବୁଡ଼ି ରହୁଥିଲି । ସନାଭାଇଙ୍କୁ କେତେଥର ମୋ କବିତା ପଢ଼ି ଶୁଣେଇଥିବି ଓ ତାରିଫ ପାଇଥିବି । ହେଲେ ସେ ଯେ ନିଜେ ଖୁବ୍ ଭଲ କବିତା ଲେଖନ୍ତି ତାହା ମୋ ଚିନ୍ତାର ବାହାରେ ଥିଲା । ଦେଖିଲେ ସେ ଜଣେ କବିପରି ଆଦୌ ଜଣାପଡୁ ନ ଥିଲେ । ଥରେ ସେ ଗାଁକୁ ଯାଇଥିବା ଅବସରରେ ତାଙ୍କ କବିତ୍ୱ ମୁଁ ଆବିଷ୍କାର କରିଥିଲି ଭଙ୍ଗା ଟିଣା ବାକ୍ସ ଭିତରୁ । କେବେ ବି ତାଲା ପଡୁ ନ ଥିବା ତାଙ୍କ ମାନ୍ଧାତା ଅମଳର ଟିଣ ବାକ୍ସଟିକୁ କୌଣସି କାରଣରୁ ଘାଣ୍ଟିବା ଦରକାର ପଡ଼ିଥିଲା ତାଙ୍କ ଅନୁପସ୍ଥିତିରେ । ଏହି ଘଣ୍ଟାଘଣ୍ଟି ଭିତରେ ଗୋଟେ ଗୀତଖାତା ମୋର ହସ୍ତଗତ ହୋଇଥିଲା । ସେଥିରେ ଲେଖାଥିବା କବିତାରୁ ଗୋଟିକରେ ଆଖି ବୁଲେଇ ଆଣିଲା ପରେ ମୁଁ କାହିଁକି ତାଙ୍କ ବାକ୍ସ ଦରାଣ୍ଡୁଥିଲି ସେକଥା ପୂରା ଭୁଲିଯାଇଥିଲି । ଚମତ୍କାର ଶବ୍ଦବିନ୍ୟାସ, ତହୁଁବଳି ଛନ୍ଦପତନ । ମାନସିଂହଙ୍କ ଧୂପର ଅନ୍ୟ ଏକ ସଂସ୍କରଣ ଥିଲା ସେହି କବିତାସବୁ । ପ୍ରତିଟି କବିତାରେ ଥିଲା ପ୍ରେମର ଉତ୍ତାଳ ତରଙ୍ଗ । ନିଚ୍ଛକ ପ୍ରେମାନୁଭୂତିରେ ଭରପୂର ଥିଲା କବିତାର ପ୍ରତିଟି ଧାଡ଼ି, ପ୍ରତିଟି ଶବ୍ଦ । ମୁଁ ନିଜକୁ କିଛି ସମୟପାଇଁ ପାସୋରିଦେଲି । ବିଭିନ୍ନ ତାରିଖରେ ଲେଖାଯାଇଥିବା ସେ କବିତାସବୁକୁ ପଢ଼ିବାପାଇଁ ମୋତେ କେତେ ସମୟ ଲାଗିଥିଲା କେଜାଣି ?– ମୁଁ ବିମୁଗ୍ଧ ବିହ୍ୱଳିତ ହୋଇଯାଇଥିଲି ।

ଏତେ ଆଣ୍ଟିରୋମାଣ୍ଟିକ୍ ଚେହେରା ଓ ସ୍ୱଭାବର ପିଲା ଏତେ ରୋମାଣ୍ଟିକ୍ କବିତା ଲେଖିପାରେ, ଏହା ମୁଁ ତଥାପି ବିଶ୍ୱାସ କରିପାରୁ ନ ଥିଲି ।

ସନାଭାଇ ଯୋଉଦିନ କାନ୍ଧରେ ଶାନ୍ତିନିକେତନ ବ୍ୟାଗ୍ ଝୁଲାଇ ମୁଡ଼ିବସ୍ତା ସହ ଗାଁରୁ ଫେରିଲେ ମୁଁ ତାଙ୍କ କବିତାରୁ ପଦଟିଏ ଉଚ୍ଚାରଣ କରି ତାଙ୍କୁ ରୁମ୍ ଭିତରକୁ ସ୍ୱାଗତ ଜଣାଇଲି । ମୋ ମୁହଁରୁ ନିଜ କବିତା ଶୁଣି ସେ ଉତ୍‌ଫୁଲ୍ଲିତ ନ ହୋଇ ଲାଜେଇଗଲେ ଯେମିତି ! କହିଲେ, ''ହା, ଶଶୀ, ମୋ ଟିଣବାକ୍ସ ଖୁଲି ଗୀତଖାତାଟି ପାଇଚୁ ହଁ । ମୁଁ ଗୀତଫିତ ଲେଖିବା କଥା ଆଉ କାହାକୁ କହିବୁ ନାହିଁ ।'' ମୁଁ କହିଲି, ''କାହିଁକି କହିବି ନାହିଁ ? ଗୀତ ଲେଖିବା ଖରାପ କାମ ନା ପାପ କଥା ?'' – ''ତା' ନୁହେଁ ଯେ, ହେଲେ ହଷ୍ଟେଲ୍ ଛୁଆମାନେ ଜାଣିଲେ ମତେ ଭାରି ଚିଗୁଲେଇବେ'', ସେ ଏକପ୍ରକାର ଭାଙ୍ଗିପଡ଼ିଲା ପରି କହିଲେ । ମୁଁ କିନ୍ତୁ ତାଙ୍କୁ ଛାଡ଼ିବା ମୁଡ୍‌ରେ ନ ଥିଲି । ଗୋଟେ ଗୀତ କଲେଜ ମ୍ୟାଗାଜିନ୍ ଓ ଆଉ ଗୋଟେ ଗୀତ ପ୍ରଜାତନ୍ତ୍ର ସାହିତ୍ୟ ପୃଷ୍ଠାକୁ ଶୀଘ୍ର ପଠାଇବାପାଇଁ ତାଙ୍କୁ ମୁଁ ତାଗିଦ୍ କଲି ।

ତା'ପରଠାରୁ ମୁଁ କେବେ ସନାଭାଇଙ୍କ ପିଛା ଛାଡୁ ନ ଥିଲି । ଏସବୁ କବିତା ପଛରେ କାହାର ପ୍ରଚ୍ଛନ୍ନ ପ୍ରେରଣା ରହିଛି ତାଙ୍କୁ ପଚାରି ପଚାରି ମୁଁ ବେଦମ୍ କରିଦେଲି । ସେ କିନ୍ତୁ ମୁହଁ ନ ଖୋଲିବାକୁ ପଣ କରିଥିଲେ ଯେମିତି ! ମୁଁ ବେଳେବେଳେ ବିରକ୍ତ ହେଉଥିଲି ତାଙ୍କ ଉପରେ । ମନେ ମନେ କହୁଥିଲି ଶଃ, ଏ ଉତ୍ତରବାଲେଶ୍ୱରିଆଙ୍କ ପେଟରୁ କଥା କାଢ଼ିବା କାଠିକର ପାଠ । ସନାଭାଇ କାହୁଁ ସେଥିରୁ ବାଦ୍ ପଡ଼ନ୍ତେ ? କିନ୍ତୁ ପ୍ରକୃତରେ ତାଙ୍କ ପ୍ରତି ମୋର ଅନୁରାଗ ବହୁତ ବଢ଼ିଯାଇଥିଲା । ତାଙ୍କ କବିତାର ସନ୍ଧାନ ପାଇଲା ପରେ ସେ ମୋତେ ଅଲଗା ଅଲଗା ଲାଗିଥିଲେ । ବିଶେଷ ଆକର୍ଷଣ ନ ଥିବା ତାଙ୍କ ମୁହଁରେ ଭାବଗମ୍ଭୀରତା ଆଚ୍ଛନ୍ନ ହୋଇ ରହିଥିଲା ପରି ମୋର ମନେହେଉଥିଲା । ତାଙ୍କ ଆଖିରେ, କଥାବାର୍ତ୍ତାରେ ଏପରିକି ତାଙ୍କ ନୀରବତାରେ କଳାର ମୃଦୁ ପ୍ରଲେପ ଲାଖିରହିଥିଲା ଯେମିତି ! ଯେମିତି ତାଙ୍କ ମୋଟାଶୋଟା ଗାଉଁଲି ଚେହେରା ତଳେ ଲୁଚିରହିଥିଲା ଅନୁଭବର ବିଶାଳ ପୃଥିବୀଟେ । ଆସ୍ତେ ଆସ୍ତେ ଏମିତି ଭାବନାଟେ ଦୃଢ଼ ହେଉଥିଲା ମୋ ଭିତରେ । ଏହା ସତ୍ତ୍ୱେ ତାଙ୍କ ମନଗହନରୁ ଅସଲ କଥା କାଢ଼ିବା କାମରୁ ମୁଁ ଓହରି ନ ଥିଲି ।

ଯା' ଭିତରେ ସନାଭାଇଙ୍କର ଗୋଟେ କବିତା ପ୍ରଜାତନ୍ତ୍ର ସାହିତ୍ୟ ପୃଷ୍ଠାରେ ପ୍ରକାଶ ପାଇଥିଲା । ମୁଁ ଜୋର୍‌କରି 'ଝଙ୍କାର' ଓ 'ଆସନ୍ତାକାଲି' ପାଇଁ ତାଙ୍କର ଦୁଇଟି କବିତା ପଠେଇଦେଲି । ମୁଦ୍ରିତ ରୂପରେ ନିଜ କବିତା ଦେଖି ସନାଭାଇ ଖୁସି ହୋଇଥିଲେ ନିଶ୍ଚୟ ! ତେବେ କବିତା ପ୍ରକାଶ କରିବା ଉପରେ ସେ ଖୁବ୍ କମ୍ ଗୁରୁତ୍ୱ ଦେଉଥିଲେ । କିନ୍ତୁ କବିତା ଲେଖିବା ତାଙ୍କର ଏକପ୍ରକାର ନିଶା ପାଲଟି ଯାଇଥିଲା । କାହାର ଅନ୍ତରଙ୍ଗ ଇଚ୍ଛା ଯେମିତି ତାଙ୍କୁ କାବୁ କରିଥିଲା । ବୋଧେ କୋଉ ଅନନ୍ୟ ଭାବାବେଗରେ ସେ ଘାରି ହେଉଥିଲେ ଅହରହ ଏବଂ ସେହି

ଘାରିହବାଟା ଉଛୁଳିପଡୁଥିଲା ଶବ୍ଦରେ, ଛନ୍ଦରେ । କିନ୍ତୁ ମୁଁ ଯେତେ ପଚାରିଲେ ବି ସେ ଗୂଢ଼କଥାର ଢାଙ୍କଣା ଖୋଲୁ ନ ଥିଲେ ଜମା । କୌଣସି ପ୍ରକାରେ ଏଡ଼େଇ ଦଉଥିଲେ ମୋତେ ।

ମୁଁ ଦିନେ ଗୋଟେ ଅବ୍ୟର୍ଥ ଉପାୟ ବାହାର କଲି । କହିଲି, ''ସନାଭାଇ, ତମେ ମୋତେ ଆଉ ଭଣ୍ଡେଇପାରିବ ନାହିଁ । ସତକଥା କୁହ, କାହାପାଇଁ ତମେ କବିତା ଲେଖୁଛ ? ନ ହେଲେ ଗୋଟେ ଏମିତି ଗୁଜବ ପ୍ରଚାର କରିବି ଯେ ତମେ ତମ ଭଙ୍ଗାବାକ୍ସ ସହ ଭୋଗରାଇକୁ ସିଧା ବାହୁଡ଼ିଯିବାପାଇଁ ବ୍ୟାକୁଳ ହବ ।''

ସନାଭାଇ କହିଲେ, ''ହା, ଶଶୀ, କି ଗୁଜବ ରଟିବୁ ରଟୁନୁ ମୋର ସେକଥାକୁ ଖାତିର ନ କଲେ ଗଲା ।''

ମୁଁ ଭୀଷଣ ରାଗିଯାଇ ଉତ୍ତରଦେଲି- ହଉ, ବଙ୍ଗାଳୀ ଭାଇସ୍-ପ୍ରିନ୍ସିପାଲର ଆଇ.ଏସ୍‌ସି. ପଢୁଆ ସେ ଫୁଲେଇ ଝିଅକୁ ଏକତରଫା ପ୍ରେମ କରୁଛ ଓ ତା'ରିପାଇଁ କବିତା ଲେଖୁଛ ବୋଲି...''

ମୋ କଥା ନ ସରୁଣୁ ସନାଭାଇ ମୋ ପାଟିରେ ହାତଦେଇ ହା-ହା- କଲେ । ମୋ ଚଗଲାମି ଉପରେ ଦୃଢ଼ ଆସ୍ଥା ରଖୁଥିବା ସନାଭାଇ ଖୁବ୍ ଡରିଗଲେ ବୋଧେ-''କହିମି, ସବୁ କହିମି ଶଶୀ, ତତେ ନୁଚେଇମି କାହିଁକି'' କହୁ କହୁ ସେ ଜିଭ କାମୁଡ଼ି ପକେଇଲେ । ତାଙ୍କ କଥା ଆଉ କାହାକୁ ନ କହିବାପାଇଁ ମୋ'ଠାରୁ ପ୍ରତିଶ୍ରୁତିଟେ ବି ଆଦାୟକଲେ । ତାଙ୍କ ଗୋପନୀୟତାର ଖିଅ ମିଳିଗଲା ଉତ୍ତାରୁ ମୁଁ ତାଙ୍କୁ ଉଖୁରେଇ ଚାଲିଲି ଓ ଶେଷରେ ତାଙ୍କ ନିବୁଜ ମନର ସାତତାଳ ପଙ୍କତଳୁ ଫରୁଆଟି ବାହାରିଆସିଲା ପଦାକୁ । ଆଉ ସେହି ଫରୁଆରେ ଥିଲା ଭାରି ନିବିଡ଼ ନାଁଟେ- ସର, ସରିତା ସାମଲ । ଏହି ନାଁ ସହ ପରେ ମୁଁ ଦିଦୀ ଶବ୍ଦ ଯୋଡ଼ିଥିଲି, ସନାଭାଇ ଖାତିର୍‌ରେ, ଉତ୍ତରବାଲେଶ୍ୱରୀ ଷ୍ଟାଇଲ୍‌ରେ ।

ସନାଭାଇଙ୍କର ଦଶମଶ୍ରେଣୀବେଳେ ଅଷ୍ଟମରେ ନାମ ଲେଖାଇଥିଲା ସରଦିଦୀ । ପାଖ ଗାଁ ଚନ୍ଦ୍ରାବାଲିର ପେସ୍କାର ମଧୁ ସାମଲଙ୍କ ଝିଅ ବୋଲି ତାକୁ କଡ଼ା ନଜର ଭିତରେ ରଖିଥିଲେ ସ୍କୁଲର ଶିକ୍ଷକମାନେ । ମଧୁ ସାମଲଙ୍କର ସେତେବେଳେ ପାଞ୍ଚ ପଚାଶ ଖଣ୍ଡ ଗାଁରେ ଭାରି-ଡାକ ଥିଲା । ଯେତେହେଲେ କଲେକ୍ଟରଙ୍କ ପେସ୍କାର ନା । ତାଙ୍କ ଝିଅ ସର କିନ୍ତୁ ଥିଲା ଭାରି ସୁଧାର । ତଳକୁ ମୁହଁ ପୋତି ଚାଲୁଥିଲା । କମ୍ କଥା କହୁଥିଲା- ତା'ଠୁଁ କମ୍ ହସୁଥିଲା । କିନ୍ତୁ ତା' ହେମଗୋରା ଦେହ, ନଇଁଲା ନଇଁଲା ଆଖିପତା ଏବଂ ସରୁପାଉଁଜିରେ ଝମ ଝମ୍ ଚାଲି ଖୁବ୍ ଅଳ୍ପଦିନ ଭିତରେ ତାକୁ ସ୍କୁଲର ପରିଚିତ ପୃଥିବୀ ଭିତରକୁ ଟାଣିଆଣିଥିଲା ।

କିନ୍ତୁ ସନାଭାଇଙ୍କର ସରଦିଦୀ ସହ ପରିଚୟ ହୋଇଥିଲା ଗୋଟେ ବିଶେଷ ଅବସରରେ । ଭୂଗୋଳ ସାର୍ ଦଣ୍ଡପାଣି ଦେ'ଙ୍କ ବିଦାୟକାଳୀନ ସଭାପାଇଁ ଗୋଟେ ବିଦାୟ ସଙ୍ଗୀତ ଲେଖିଥିଲେ ସନାଭାଇ । ସେଇ ଗୀତଟିକୁ ହେଡ୍‌ମାଷ୍ଟରଙ୍କ ଆଦେଶରେ ସରଦିଦୀ ବିନା ତବଲା– ହାରମୋନିଅମ୍‌ରେ ବେଶ୍ ଚମତ୍କାର ଭାବରେ ଗାଇ ଅଜସ୍ର କରତାଳି ହାସଲ କରିଥିଲା । ଗୀତର ରଚୟିତାଭାବରେ କିଛି କମ୍ ବାହାବା ମିଳି ନ ଥିଲା ସନାଭାଇଙ୍କୁ । ତେବେ ଏହି ସଙ୍ଗୀତହିଁ ସନାଭାଇ ଓ ସରଦିଦୀ ମଝିରେ ସଂଯୋଗର ସେତୁ ପାଲଟିଯାଇଥିଲା ।

ସନାଭାଇ ଗୀତ ଲେଖିସାରି ସରଦିଦୀକୁ ଦଉଥିଲେ ଗାଇବାପାଇଁ– ସରଦିଦୀ ସେଇ ଗୀତକୁ ନିଜେ ହାର୍‌ମୋନିଅମ୍ ବଜାଇ ଗାଉଥିଲା ତାଙ୍କ ଘରେ, ବୁଢ଼ା ଗୀତମାଷ୍ଟର ଅଧର ଦିଣ୍ଡାଙ୍କ ନିର୍ଦ୍ଦେଶନାରେ । ଏମିତି ଗୀତ ଦିଆନିଆରୁ ପରସ୍ପରଙ୍କ ଅଜାଣତରେ କୁଆଡ଼େ ମନ ଦିଆନିଆରେ ରୂପାନ୍ତରିତ ହୋଇଥିଲା । ତହୁଁ ଆରମ୍ଭ ହୋଇଥିଲା ଚିଠି ଦିଆନିଆ । ତେବେ ପହିଲି ପ୍ରେମ ଚିଠିଟି କାହାର ଥିଲା– ସନାଭାଇଙ୍କର ନା ସରଦିଦୀର ସେ ବିଷୟରେ ମୌନ ରହୁଥିଲେ ସନାଭାଇ । ଯେତେ ପଚାରିଲେ ବି ପାଟି ଖୋଲୁ ନ ଥିଲେ । ତାଙ୍କର ଏହି ମୌନତାରୁ ମୋର ହୃଦ୍‌ବୋଧ ହେଉଥିଲା ଯେ ପ୍ରେମଚିଠି ବ୍ୟାପାରରେ ସନାଭାଇ ଥିଲେ ଦୁଃସାହସୀ, ଅଗ୍ରଣୀ ମଧ୍ୟ । ନିଜ ମନକଥା ସେ ବିନାଦ୍ୱିଧାରେ ପ୍ରଥମେ ଜଣେଇଥିଲେ ସରଦିଦୀକୁ । ଚିଠିଟିକୁ ହୁଏତ ଥୋପପରି ଢୋକିଥିଲା ସରଦିଦୀ ଏବଂ କଣ୍ଟା ଠିକ୍ ଲାଗିଥିଲା ତା' ନହୁଲି ହିଆରେ ।

ବେଶ୍ କିଛିଦିନ ଚିଠି ଦିଆନିଆ ପରେ, ସ୍କୁଲ ଓ ଗାଁ ମଝିରେ ଥବା ନିଛାଟିଆ ବିଲର ଜାମୁକୋଳି ଗଛମୂଳରେ ସନାଭାଇ ଓ ସରଦିଦୀ ପରସ୍ପରକୁ ଭେଟୁଥିଲେ ଗୋପନରେ । କଥାବାର୍ତ୍ତା ବେଳେ କୁଆଡ଼େ କଳାଧଳା ଘୋଡ଼ାପରି ଝପଟି ପଳଉଥିଲା ସମୟ । ସଞ୍ଜ ନଇଁ ଆସିଲାବେଳକୁ ସରଦିଦୀ ଅତର୍କ୍ଷା ହଜିଯାଉଥିଲା ତାଙ୍କ ଗାଁମୁଣ୍ଡ ତୋଟାମାଳରେ । ସନାଭାଇଙ୍କର କିନ୍ତୁ ଉଚ୍ଛୁର ଘଡ଼ିକୁ ଖାତର ନ ଥିଲା ।

ସରଦିଦୀ ହାଇସ୍କୁଲ ଡେଇଁପାରିଲା ନାହିଁ, ମାଡ଼ିପାରିଲାନି କଲେଜ ଦୁଆର । ସନାଭାଇ କିନ୍ତୁ ଜଳେଶ୍ୱର କଲେଜରୁ ମାସରେ ଚାରିଥର ଫେରିଆସୁଥିଲେ ଗାଁକୁ । ବୈଶାଖ ମାସର ଉଦୁଉଦିଆ ଖରାବେଳେ ନିରୋଳା ଆମ୍ବତୋଟାରେ ବା ଶୀତଦିନିଆଁ କୋହଲା ମାଇସଞ୍ଜବେଳେ କୋଉ ପୋଖରୀହୁଡ଼ାରେ ସନାଭାଇ ଭେଟୁଥିଲେ ସରଦିଦୀକୁ । ଏକଥା କାନରୁ ଦି'କାନ ହେଇ କ୍ରମେ ଗାଁଦାଣ୍ଡ ଉଠିଲାପଡ଼ିଲା । ସରଦିଦୀର ବୋଉ କାନରେ କଥା ପଡ଼ିଥିଲା ଢେର ଡେରିରେ । ଝିଅ ଗୁଣ ଶୁଣି ସେ ହତଭମ୍ବ ହୋଇପଡ଼ିଲେ ପରା ହେଲେ ଅଣ୍ଟି ନିଆଁକୁ ନା ଲିଭେଇପାରିଲେ ନା ଲୁଚେଇପାରିଲେ । କହିଲେ ସରଦିଦୀକୁ, ''ହଇଲୋ

ଅଲାକ୍ଷୁକୀ, ଆମ ବଉଁଶର ମାନଇଜ୍ଜତ କ'ଣ ସବୁ ଜାଳିପୋଡ଼ି ପାଉଁଶ କରିବୁ ? ସେ ବାଟ ଛାଡ଼ ଲୋ ଖମାରୁଣୀ, ତୋ' ବାପ କାନକୁ କଥାଗଲେ ସେ ତୋତେ କଞ୍ଚା ଚୋବେଇଦେବେ ।'' ସରଦିଦୀ ସବୁ ଶୁଣିଲା, ହେଲେ ତା'ର କିଛି କଥା ମନେରହିଲା ନାହିଁ । ସେ ହଟିଲା ନାହିଁ ତା'ବାଟରୁ । ସେ କୁଆଡ଼େ ହଟିପାରୁ ନ ଥିଲା ଜମା । କି ଚିଆଁ ଲାଗିଥିଲା କେଜାଣି ତା' ଦିହରେ ?

ରେଭେନ୍ସା କଲେଜରେ ପଢ଼ିବା ପରଠାରୁ ସନାଭାଇଙ୍କର ପରା ବିରହ ବଢ଼ିଯାଇଥିଲା । ସରଦିଦୀର ବି । ସନାଭାଇ ବେଶି ବେଶି ପ୍ରେମ କବିତା ଲେଖିଲେ । ପ୍ରେମ ଚିଠି ମଧ୍ୟ । ଭାରି ଘାରିହେଲା ତାଙ୍କ ଦିହମନ । ହେଲେ କଟକ କ'ଣ ଜଳେଶ୍ୱର ହୋଇଛି ଯେ ସେ ଫି ହପ୍ତା ଉଡ଼ିଯାଇଥା'ନ୍ତେ ଗାଁକୁ ?

ସରଳ ସନାଭାଇ ସିନା ତାଙ୍କ ପ୍ରେମ କାହାଣୀ ସବୁ ମୋ' ଆଗରେ ବଖାଣିଗଲେ, ମୁଁ କିନ୍ତୁ ମୋ ପ୍ରତିଶ୍ରୁତି ରକ୍ଷା କରିପାରି ନ ଥିଲି । କହୁକହୁ କହିଦେଲି ସବୁଆଡ଼େ । ସାରା ହଷ୍ଟେଲ୍, ସେଠୁ ପୁଣି ସାରା କଲେଜ– ଚାରିଆଡ଼େ ପ୍ରଘଟ ହୋଇଗଲା କଥାଟା । ଓମ୍‌ପ୍ରକାଶ ଭୟରେ ସନାଭାଇ ଖୁବ୍ କମ୍ ଯାଉଥିଲେ ହଷ୍ଟେଲ୍ ବାହାରକୁ । ମୋ ଉପରେ ସେ ଖୁବ୍ ରାଗିଲେ, ଅଭିମାନ କଲେ । କିଛିଦିନ କଥା କହିଲେ ନାହିଁ । ଏମିତିରେ ତ ସେ ରାଗିଲେ କଥା କହିପାରୁ ନ ଥିଲେ– ତାଙ୍କ ଓଠ ଦି'ଟା ଥରୁଥିଲା ଯାହା– ତଥାପି ଆମ ସମ୍ପର୍କ ଫିକା ପଡ଼ି ନ ଥିଲା । ମୁଁ ପରେ ଭାରି ଅନୁତପ୍ତ ହୋଇଥିଲି ଏଥିପାଇଁ ।

ସେଥର ଧାନକଟା ଛୁଟି ପରେ ଗାଁରୁ ଫେରିଲାବେଳେ ଖୁବ୍ ଝଡ଼ିଯାଇଥିଲେ ସନାଭାଇ । କଳାକାଠ ପଡ଼ିଯାଇଥିଲା ତାଙ୍କ ତମାମ ଶରୀର । ସେ ନିଶଦାଢ଼ି କାଟି ନ ଥିଲେ । ମୋତେ ଦେଖିଲାକ୍ଷଣି ଭୋ-ଭୋ ହୋଇ କାନ୍ଦିଉଠିଲେ । ମୁଁ ହଠାତ୍ କିଛି ଠଉରେଇ ପାରିଲି ନାହିଁ । ବୁଝିଲାବେଳକୁ କ'ଣ ନା, ସରଦିଦୀ ବାହାହେଇଯାଇଥିଲା ନଈ ସେପାରିର କୋଉ ଦୂର ଗାଁକୁ । ମୁଁ ବହୁତ ବୁଝାଶୁଝା କଲି ସନାଭାଇଙ୍କୁ, ସେ କିନ୍ତୁ କୋହ ଚାପିପାରୁ ନ ଥିଲେ । ଫାଟିପଡୁଥିଲା ତାଙ୍କ ମୂର୍ଦ୍ଧନା ।

ସନାଭାଇ ଧାନକଟା ଛୁଟିରେ ଗାଁରେ ପହଞ୍ଚିବାର ବେଶ୍ କେତେଦିନ ଆଗରୁ ସରଦିଦୀ ପରଘରୀ ହୋଇସାରିଥିଲେ । ମଧୁ ସାମଲ୍, ତା' ଝିଅ ପ୍ରେମ କରୁଥିବା କଥା ଶୁଣିଲାକ୍ଷଣି କୁଆଡ଼େ ତ୍ରିଭୁବନ କମ୍ପେଇଦେଲା ରାଗରେ । ବୁଢ଼ା ରାଗିଲା ଝିଅ ଉପରେ ସିନା, ହେଲେ ବାଡ଼େଇଲା ଝିଅର ମା'କୁ– ''ଆଲୋ ଛିଣ୍ଡାଳୀ, ତୋ' ଯୋଗୁଁ ମୋ' ଝିଅ ବେରାସ୍ତାରେ ଗଲା । ମାତା ଗୁଣେ ଦୁହିତା ବୋଲି ଶାସ୍ତ୍ର କ'ଣ ମିଛରେ ଲେଖିଛି ?'' ବୁଢ଼ା ଚିଲେଇଲା ଓ ପାଣ୍ଠୋଇପିନ୍ଧା ପାଦରେ ଦି'ଚାରି ଗୋଇଠା ମାରିଲା ବୁଢ଼ୀକୁ । ଲେଖାଯୋଖାର ଖୁଡ଼ୀ ଆସି ଧରି ନ ଥିଲେ ମା' ଝିଅଙ୍କର ଅବସ୍ଥା କ'ଣ ବୋଲି କ'ଣ ହୋଇଥା'ନ୍ତା ପରା !

ସାମଲବୁଢ଼ା ସେତିକିରେ ଶାନ୍ତ ହୋଇ ନ ଥିଲା । ସନାଭାଇଙ୍କ ବଡ଼ ଓ ମଝିଆଁ ଦୁଇଭାଇଙ୍କୁ ଡକେଇଲା ତା'ଘରକୁ । 'ସନାଭାଇଙ୍କ ବଡ଼ଭାଇ ଦନା ଚାଷବାସ କରୁଥିଲେ, ଭାଗବଖରା ବି । ମଝିଆଁଭାଇ ବନା ପାନଦୋକାନ ଦେଇଥିଲେ ଚନ୍ଦନେଶ୍ୱର ବଜାରରେ । ସାମଲବୁଢ଼ା ଚାଲିଗଲେ ଗର୍ଭିଣୀ ଗାଈ ବାଟ ଛାଡ଼ିଦିଏ ବୋଲି ସେତେବେଳେ କଥା ଚାଲିଥିଲା ଭୋଗରାଇରେ– ଦନା ଦାସ, ବନା ଦାସ କି ଛାର ତା'ଆଗରେ ! ଡକେଇଲେ ନ ଆସି କ'ଣ ଚାରା ଥିଲା ତାଙ୍କର ? ଦନା ବନା ଆସି ଘରେ ହାଜର ହବାରୁ ତାଙ୍କ ଉପରେ ନବାବପରି ରୋବାବ ଦେଖେଇଲା ବୁଢ଼ା– ''ବନା, ଶଃ ତ ଭାଇକି ସମ୍ଭାଳ । କହ ତାକୁ, ସେ ବାମନ ହୋଇ ଚନ୍ଦ୍ରକୁ ହାତ ନ ବଢ଼ଉ । ତମେ ଆମର ପ୍ରଜା ଥିଲ ପ୍ରଜା ହୋଇ ରହିବ । ମୋ ଝିଅ ଉପରେ ତ ଭାଇର ଆଖି– ଫୁଟେଇଦେବି ତା'ଆଖି । ବାରଶ' ବାଷଠି କେସ୍ ଲଗେଇ ତଳିତଳାନ୍ତ କରିଦେବି ତମ ତିନି ଭାଇଙ୍କୁ । ଜବରଦଖଲ କରି ଗୋଚର ଅନାବାଦୀ ଜାଗାରେ ଦୁକାନ କରିଚୁରେ ବନା ; ତହସିଲଦାରକୁ କହି ତ ରଙ୍ଗ ଛଡ଼ଉଚି ରହିଥା ।''

ସନାଭାଇଙ୍କ ନିରୀହ ଦି'ଭାଇ କୁଆଡ଼େ କାକୁସ୍ଥ ପ୍ରଜାପରି ଯୋଡ଼ହସ୍ତ ହୋଇ ଠିଆହୋଇ ରହିଲେ ମଧ୍ଯ ସାମଲ ଘରଆଗରେ । କହୁ କହୁ ଉପୁଚି ପଡୁଥିଲା ସନାଭାଇଙ୍କ କୋହ । ତାଙ୍କ ଦନାଭାଇ ଓ ବନାଭାଇ କୁଆଡ଼େ ହଲପ କରି କହିଲେ, ''ତୁମେ ତମ ଝିଅକୁ କୁ'ଠି ହେଲେ ବା' କରେଇଦିଅ ଆଜ୍ଞା ! ଆମେ ସନାକୁ ଖବରଟବର ଦବୁ ନାହିଁ । ସନାଟା କେଡ଼େ ସାନ, ଛୁଆର ଦୋଷ ମାର୍ଜନା କରିଦିଅ ଥରୁଟେପାଇଁ ।'' ତା'ପରେ ଏକମୁହାଁ ହେଇ ଫେରିଆସିଥିଲେ ଦି'ଭାଇଯାକ ।

ଭାଇ ଦୁହିଁଙ୍କଠୁ କିଛି ଖବର ପାଇ ନ ଥିଲେ ସନାଭାଇ । ଖବର ବି ପାଇ ନ ଥିଲେ ସରଦିଦୀଠାରୁ । ବାଲିଆପାଳ ପ୍ରତାପପୁରର କୁଶ ପରିଡ଼ାଙ୍କ ଓଭରସିଅର ପୁଅ ରତିକାନ୍ତର ହାତଧରି ଚାଲିଯାଇଥିଲା ସରଦିଦୀ ସୁବର୍ଣ୍ଣରେଖାର ସୁଅ ଡେଇଁ ।

ତା'ପରଠାରୁ ସନାଭାଇ ଆଉ କବିତା ଲେଖିବା କଥା ମୋର ମନେପଡୁ ନ ଥିଲା । ବି.ଏ.ରେ ତାଙ୍କର ଅନର୍ସ କଟିଗଲା । ସେ ପି.ଜି.ରେ ସିଟ୍ ପାଇଲେ ନାହିଁ । ମୁଁ ବାଣୀବିହାରରେ ପଢୁଥିଲାବେଳେ ସେ ରାଧାନାଥ ଟ୍ରେନିଂ କଲେଜରେ ବି.ଏଡ୍. କରୁଥିଲେ । ବାସ୍, ତା'ପରେ ଆଉ କେବେ ବି ଦେଖାହେଇ ନ ଥିଲା ସନାଭାଇଙ୍କ ସାଙ୍ଗରେ ।

''ହା, ଚା' ପିଉ ପିଉ କ'ଣ ସବୁ ଭାବିଯାଉଚୁ କି ଶଶୀ ?'' ସନାଭାଇଙ୍କ କଥାରେ ମୁଁ ଚହଲିପଡ଼ିଲି । 'ସରଦିଦୀ' କଥା ମୋ ପାଟିରୁ ବାହାରିପଡ଼ିଲା । ସନାଭାଇ ସରମିଗଲେ ପଚିଶବର୍ଷ ତଳେ ଇଷ୍ଟ୍ ହଷ୍ଟେଲ୍‌ର ସତର ନମ୍ବର ରୁମ୍‌ରେ ରହୁଥିବା ଓ ସରଦିଦୀ ପ୍ରେମରେ ପଡ଼ିଥିବା ଅବିକଳ ସେହି ଗାଉଁଲି ଯୁବକ ସନାଭାଇ

ପରି । ଚା' ବରଫ ହୋଇଯାଇଥିଲା । ଆମେ ଢୋକେ ଲେଖାଁ ଚା' ପିଇଥିଲୁ କି ନାହିଁ ବୋଧେ ! ''ହା, ଶଶୀ, ତୁ ବୁଢ଼ାଟେ ହେଲୁଣି, ଏଡ଼େବଡ଼ କଲେଜର ପ୍ରଫେସର, ତର ସେ ଚଗଲାମି ଯାଇନି, ହଁ ।'' ଚିରାଚରିତ ସ୍ୱରରେ ଉତ୍ତର ଫେରେଇଲେ ସନାଭାଇ । ମୁଁ କହିଲି, ''ସେ କଥା ଛାଡ଼ ସନାଭାଇ, ପୁଅ ଝିଅ କଥା କୁହ । ମୁଁ ତ ଗୋଟେ ଝିଅ ବାହାଦେଇ ସାରିଲିଣି– ଆଉ ଗୋଟେ ଝିଅପାଇଁ ବରଖୋଜିବାରେ ଧନ୍ଦିହେଉଚି । ତମର ବି କ'ଣ ସେଇ ଦଶା ?''

କିଛି ସମୟର ନୀରବତା ପରେ ସନାଭାଇ ମୁହଁ ଖୋଲିଲେ, ''ହା, ମ' ଝିଅ ପରା ତା' ପାଇଁ ବର ଖୁଜିସାରିଚି । ସେଇଟା ତ ମ' ମୁଣ୍ଡବ୍ୟଥାର କାରଣ ।''

''ତ୍ମେ ତ ଏଥିରେ ଖୁସିହବା କଥା ସନାଭାଇ । ଝିଅ ଲାଗି ବର ଖୋଜି ଖୋଜି ମୋ ପରି ନୟାନ୍ତ ହବା ଅପେକ୍ଷା, ତମେ ଝିଅ କଥାରେ ରାଜିହେଇଯାଉନ ?''

ବି.ଏ. ପାସ୍ କରି ବାରିପଦା ସହରରେ ଗୋଟେ ଫେଶନ୍ ଲୁଗାଦୋକାନ ଖୋଲିଥିବା ଯୁବକଟିକୁ ଜୋଇଁ କରିବାକୁ କୁଆଡ଼େ ଭାରି ଅମଙ୍ଗ ହେଉଥିଲେ ସନାଭାଇଙ୍କ ସ୍ତ୍ରୀ । କହୁ କହୁ ବଡ଼ ଉତ୍ତେଜିତ ହୋଇପଡୁଥିଲେ ସନାଭାଇ । ତାଙ୍କ ସ୍ତ୍ରୀ ଡାକ୍ତର, ଇଞ୍ଜିନିୟର ତଳକୁ ଅନ୍ୟ କୋଉ ଚାକିରି କରିଥିବା ପିଲାକୁ ଝିଅଦବା ସପକ୍ଷରେ ନ ଥିଲେ । ଯେଡ଼େ ଥିଲାବାଲା ଘରର ପିଲା ହୋଇଥାଉ କି ଯେଡ଼େ ସଂଭ୍ରାନ୍ତ ସୁନ୍ଦର ହୋଇଥାଉ, ଗୋଟେ ଲୁଗାବେପାରୀଙ୍କୁ ଝିଅ ଦବାକୁ ସେ ପରା କୌଣସିପ୍ରକାରେ ରାଜି ହେଉ ନ ଥିଲେ । ତେବେ ସନାଭାଇ ନିଜେ ଝିଅ କଥାରେ ରାଜିଥିଲେ କି ନାହିଁ ମୁଁ ପଚାରିପାରୁ ନ ଥିଲି । ପିଲାଟିର ବାପା କ'ଣ କରନ୍ତି, କେଉଁଠି ତାଙ୍କ ଘର ଇତ୍ୟାଦି ପଚାରିବାରେ କିଛି ଅସୁବିଧା ନ ଥିଲା । ସୁତରାଂ ମୁଁ ସେକଥା ପଚାରିବାରୁ ସନାଭାଇ ଖୁବ୍ ଧୀର ଗଳାରେ କହିଲେ, ''ସେ ପରା ତ ସରଦିଦୀ ପୁଅ ।''

ମୁଁ ଆଉ କଥା ଫେରେଇବାକୁ ସାହସ କଲି ନାହିଁ । ଚନ୍ଦନେଶ୍ୱର ବସ୍ ବୋଧେ ଆସି ଯାଇଥିଲା । ସନାଭାଇ ଉଠିଲେ ଓ ଦୋକାନୀକୁ ପଇସା ବଢ଼େଇଦେଲେ । ମୁଁ ପ୍ରତିବାଦ କରିପାରିଲି ନାହିଁ । ତାଙ୍କ ସାଙ୍ଗରେ ବସ୍ ପର୍ଯ୍ୟନ୍ତ ଗଲି । ବସ୍ ନିକଟରେ ପହଞ୍ଚିଲା ପରେ ମୁଁ ତାଙ୍କ କାନ ପାଖରେ କହିଲି, ''ସନାଭାଇ, ତମେ ଏ ପ୍ରସ୍ତାବରେ ରାଜି ତ ?''

''ହା, କିସ୍ କହୁଚୁରେ ଶଶୀ, ଏଥିରେ ମୁଁ ଅରାଜି ହୁଅନ୍ତି ହଁ ?'' କହୁ କହୁ ସନାଭାଇ ବସ୍ ଭିତରକୁ ପଶିଗଲେ ।



# ଆର ଥରକୁ

ଫି'ସାଲ କାର୍ତ୍ତିକ ପୁନେଇଁ ଦିନ ସାବିଅପା ଛୁଆମେଳା କରିବହିଁ କରିବ । ପୁନେଇଁ ପୂର୍ବଦିନ ଦି'ଘଡ଼ି ରାତି ଥିବ ସେ ବିଛଣା ଛାଡ଼ିବ । ସେତେବେଳେ ଜହ୍ନ ଆଲୁଅରେ ଭିଜୁଥିବ ଗାଁ ଦାଣ୍ଡ । କାକରଟୋପା ଥପ୍‌ଥପ୍ ହେଇ ପଡୁଥିବ ପତ୍ରଗହଳରେ । ଆଖି ପାଉ ନ ଥିବା ଗହୀର ଧାନବିଲକୁ ଢାଙ୍କି ରହିଥିବ ପତଳା କୁହୁଡ଼ି । ଫୁଲଫୁଲିଆ ଆଲୁଅରେ ଝଙ୍କା ବରଗଛର ଛାଇ ଦୁଶୁଥିବ ଜିଅନ୍ତା ବ୍ରହ୍ମରାକ୍ଷସ ପରି । ସାବିଅପା ଗାଁଦାଣ୍ଡରେ ଏମୁଣ୍ଡରୁ ସେମୁଣ୍ଡଯାକେ ଧପାଲିଥିବ ଏକା ଏକା । ବାଘର ହେଣ୍ଟାଳ ପରି ରଡ଼ି ଛାଡୁଥିବ- ଆଲୋ ପରବାବୋଉ, ହେ ଚମ୍ପାଖୁଡ଼ୀ, ଆଲୋ ନାୟକାଣୀ ଅପା, ଲୋ ମିଶରଝିଅ, ଆଲୋ ଭଞ୍ଜଘର ବୋହୂ, ଇଲୋ ମକଦମ ମା'– ଉଠିବନି କିଲୋ ? ଏ ଧରମମାସରେ ଇଏ କି ଅଧରମ କାଣ୍ଡ ଲୋ ?

ସାବିଅପା ଜେନାସାହିରୁ ଶାସନମୁଣ୍ଡ ପରିଯନ୍ତ ବୁଲିଆସିଲାବେଳକୁ ଅଧେ ଝିଅବୋହୂ ଛାନିଆ ହୋଇ ବିଛଣା ଛାଡ଼ିସାରିଥିବେ- ନ ହେଲେ କି ସାବିଅପା ଗାଳିଫଜିତ୍‌ରୁ ତାଙ୍କୁ ତ୍ରାହି ମିଳିବ ? ସାବିଅପାର ମୁହଁଟି ତ ଶାଣଦିଆ କତୁରି- ଦିହ ସାଙ୍ଗରେ ମଗଜକୁ କାଟି ଗଡ଼ଗଡ଼ କରିଦବ । ଯା'ଦୁଆର ଫିଟି ନ ଥିବ ସେଠି ସାବିଅପା ମୁହଁରୁ ନାହିଁ ନ ଥିବା କଥା ଫିଟିପଡୁଥିବ- ହେଇଲ ଅଲାଜୁକୀ, ଦିନ ଦି'ଘଡ଼ି ଯା' ଘଇତା ପାଖରେ ଶୋଇଥିବ କିଲୋ । ଅ-ହ- କି ସୁଆଗ ଲୋ, ମୁଁ ମରିଯାଉଥାଏ.... ।

ସିନ୍ଦୂରା ଫାଟିଲା ବେଳକୁ ଝିଅବୋହୂଙ୍କ ପଟୁଆର ଯାଇ ପହଞ୍ଚିଯାଇଥିବ ନଈକୂଳରେ । ସାବିଅପା ଆଗ କଦଳୀପଟୁକା ଡଙ୍ଗା ଭସେଇ ଆକାମାବୈ କହିସାରିଲା ପରେ ଆଉ ଯିଏ ଯା' ଡଙ୍ଗା ଭସେଇବେ । ଓଦାଲୁଗାରେ ଥୁରୁ ଥୁରୁ ହେଇ ପାଞ୍ଚ ପାହୁଣ୍ଡକେ ସେ ପହଞ୍ଚିଯିବ ଗାଁ ଦାଣ୍ଡରେ । ତା'ପରେ ତୁଳସୀଚଉଁରା ମୂଳରେ ବସି ମୁରୁଜ ଆଙ୍କିବ । କିସମ କିସମ ମୁରୁଜ । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ଚିତ୍ର ସାଙ୍ଗକୁ ଆଙ୍କିବ ଶହେପାଖୁଡ଼ିଆ ପଦ୍ମଫୁଲ, ଯାହାକୁ କହନ୍ତି ଶତଦଳ । ଆଙ୍କିବ ପୁଣି ପାଲଟଣା ବୋଇତ, ସତେ ଯେମିତି ଏହି ବହିତ୍ର ଲାଗିଲା ଯାଇ ସିଂହଳ ଦ୍ୱୀପରେ !

ତା'ପରେ ଖନ୍ଦା ଲାଗିବ ଖଳାରେ । ଧୋବଫରଫର ଅରୁଆଭାତ ସାଙ୍ଗକୁ ଗୁଆଘିଅରେ ଛୁଙ୍କ କରାହୋଇଥିବା ମୁଗଡାଲି । ମାଟିଆଳୁ, ବୋଇତାଳୁ, ଶଜନାଛୁଇଁ,

ଓଉ ଆଉ ଯେତେ ଯେତେ ପନିପରିବାର ମିଶ୍ରଣରେ ଗୋଟେ ଘାଣ୍ଟ । ବାସ୍ ଆଉ କିଛି ଆଇଟମ୍ ନ ଥିବ । ଶେଷବେଳକୁ ଯାହା ଥିବ ଗୁଡ଼ପକା ଖିରି । ଲିପାପୋଛା ହେଇ ଚହଟୁଥିବା ସାବିଅପାର ପ୍ରଶସ୍ତ ଖଳାରେ ଚାରିଧାଡ଼ିହେଇ ବସିଥିବେ ପଲେ ଲେଖାଏଁ ପିଲା । ସନା ବଳ ପରଶୁଥିବ ଭାତ, ଡାଲି ଧରିଥିବ ଘୁନୁଘୁନା, ଘାଣ୍ଟ ବାଣ୍ଟୁଥିବ ସନା ପଇଡ଼ା । ପଣ୍ଡାପୁଅ ଶେଷକୁ ଆସି ଡଙ୍କେ ଡଙ୍କେ ଖିରି ଢାଳି ଚାଲିଥିବ ଯେ କଦଳୀପତ୍ର ସାରା ଗୋଟେ ଗୋଟେ ନାଲିଟିଆ ୦ ଆଙ୍କି ହେଇଯାଉଥିବ । ବାବାଜୀ ସାହୁର ବାଲିଆପାଲିଆ ଲଙ୍କା ଛୁଙ୍କଦିଆ ଘାଣ୍ଟଖାଇ ପିଲାଛୁଆଙ୍କର ଜିଭ ଜଳିଯାଉଥିବ, ପାଣି ନିଗିଡ଼ି ପଡୁଥବ ତାଙ୍କ ଆଖିକାନରୁ । ତହୁଁ ସାବିଅପା କା' ନାକ ପୋଛିଦେଇ ଲଣ୍ଡେ ସିଙ୍ଘାଣି ବୁଦାମୂଳକୁ ଛାଟିଦେଉଥିବ ତ କା' ମୁହଁ ପୋଛିଦେଉଥିବ ତା' ଧଳାପଣତରେ । ଆଉ କା' ମୁଣ୍ଡ ଆଉଁଶିଦେଇ କହୁଥିବ– ଆଉଟିକେ ଖିରି ଖା'ରେ ବାବା !

ଉଁଚା ପିଣ୍ଡା ଉପରେ ବସି ମଝିବୟସିଆ ମିଶିପେ କେତେଜଣ ସାବିଅପାକୁ ଲକ୍ଷ୍ୟକରି ଟାହିଟାପରା କରୁଥିବେ ଠରାଠରିରେ, ଚାପାଗଳରେ । ନାସ ଶୁଙ୍ଘି ଶୁଙ୍ଘି ରାମ ଶତପଥୀଏ କହୁଥିବେ– ବୁଝିଲ ଦାସେ, ସାବିର ଭଲ ନାଁ ସାବିତ୍ରୀ । ତେଣୁ ସେ ଘରେ ପାଦ ଦଉଁ ଦଉଁ ଘଇତାଟାକୁ ଖାଇଲା । କଳିକାଳରେ ନାମବାଚକ ପଦର ତାତ୍ପର୍ଯ୍ୟ ବୁଝୁଛୁ ତ ? ଦାସେ କହୁଥିବେ ହଁ, ତା' ନୁହେଁ ଆଉ କ'ଣ ? ହଁ, ସେ ରାଣ୍ଡୀପରା ବର୍ଷସାରା ପିଲାଝିଲାଙ୍କୁ ମାରିଗୋଡ଼େଇବ, ଛୁଆଙ୍କ ଛାଇପଡ଼ିଲେ ତା' ନାହି ଡେଇଁବ, ଆଉ ବର୍ଷକର ପାପକୁ ଦିନକରେ ତୁଟେଇଦବାପାଇଁ କାର୍ତ୍ତିକ ପୁନେଇଁଦିନ ଛୁଆମେଳା କରିବ । ଏସବୁ ଶୁଣି ମାଗୁଣି ନାହାକର ଜିଭ ଖଲବଲ ହବ । ସେ ତହୁଁ କଥା ଯୋଡ଼ିବ– ସାବିଅପା ଏ ଯୁଗର ଭଦ୍ରକାଳୀ । କାଳୀଙ୍କ ଛଡ଼ା ଦେଢ଼ଶୁର ଛାତିରେ କୋଉ ମାଇକିନିଆ ଗୋଇଠାମାରିବାର ନଜର ଅଛି ନା ? ଦିଅରକୁ ଖଡୁରେ ମାରି ଦାନ୍ତ ଝଡ଼େଇଥିବା ମାଇକିନିଆ କ'ଣ ସଂସାରରେ ଅଛନ୍ତି ? ଏ ପ୍ରଶ୍ନଟି ପଚାରିବାକୁ ଭୁଲିବ ନାହିଁ ବୈରାଗୀ ଗାହାଣ । ସବାଶେଷରେ ତୁଣ୍ଡ ଖୋଲିବ ରାଖାଲ ମହାନ୍ତି । କରଣିଆ କାଇଦାରେ କହିବ– ସବଂଶକୁ ମିସାଲତ୍‌ରେ ପରା ଠିଆ କରିଦେଇଥିଲା ସାବିରାଣ୍ଡୀ ।

ମାଇପୀ ମହଲରେ ସାବିଅପା କଥା ଯେତେବେଳେ ପଡ଼ିଥିବ କ'ଣ କାନରେ ଶୁଣିବ ସେସବୁ ? ପାଳ ଦଉଡ଼ିଟା ଛାଁ ପାଲଟିଯାଉଥିବା ନାଗସାପ । ଚେମୀବୋଉ ଅଣ୍ଟାପାଣି ହେଇ କହୁଥିବ– ଆମ ସାବିଅପା ସ୍ୱାମୀ ସୁଖ କ'ଣ ଜାଣିଛି ବା ? ବରଷେ ମାରିନି ଘଇତା ସାଙ୍ଗରେ– ସେଥିପାଇଁ ପରା ସେ ଆଉ କାହା ସୁଖ ଦେଖିପାରେନି ? ପୁଲାଛୁଆଙ୍କୁ ବି ସେ ଆପଣେଇପାରେନି । କେମିତି ଆପଣେଇବ ଯେ ? ବାଂଝ କି ଜାଣେ ଗର୍ଭବେଦନା ? ଆଉ କିଏ କଥାର ଖିଅ ଲମ୍ୱଉଥିବ । ଯଖ ଗୁଡ଼ିଆଣୀର କିନ୍ତୁ

ଭାରି ଅଦୌତି କଥା । କହୁଥିବ– ମିଛ ନ ମଣିବ ସାନସାଆନ୍ତାଣୀ, ସାବିର ନଜରଟା ତ ନିଆଁ ଗୋ । ଯୋଉ ଛୁଆକୁ ସେ ଗାରଡ଼େଇ ଚାହିଁଦବ ଥରେ ସେ ଅଧେ ଶୁଖିଯିବ ସେଇକ୍ଷଣି । ସତୀସାବିତ୍ରୀ ତ ଖଣ୍ଡମଣ୍ଡଳ ବୁଲିଆସିଛି । ଏ ବାରଜାଗା ବୁଲିଲା ମାଇକିନିଆଙ୍କୁ କ'ଣ ଘଇତା ଅଭାବ କି ଗୋ ? ଶାସ୍ତ୍ର କହିନି– ସ୍ତିରୀ ନାଶଯାଏ ହାଟକୁ ଯାଇ । ଓସ୍ତାଦ ଦୀନା ଭାରିଯା କହୁ କହୁ ମୁରୁକିହସା ଦଉଥିବ ।

ଏସବୁ ବେଳେବେଳେ ପଡୁଥିବ ସାବିଅପା କାନରେ । ତହୁଁ ସେ ଚଣ୍ଡୀରୂପ ଧାରଣ କରି ତମାମ ଗାଁର ଝିଅବୋହୂଙ୍କ ଗୋହି ଖୋଲୁଥିବ । ଲଗେଇଲୁଟେଇ ନାନା ଅଶ୍ରାବ୍ୟ କଥା ଓକାଳୁଥିବ । ସେତେବେଳକୁ ଗାଁମାଇପେ ତୁନିହେଇ କବାଟ କିଳି ଘରେ ପଶିଥିବେ– ମିଣିପେ ବି ।

ଗାଁ ମଶାଣି ପାଖରେ ଥିବା ଡେଙ୍ଗା ତାଳଗଛରୁ ଯେତେବେଳେ ଓହ୍ଲେଇଆସୁଥିବ ସଞ୍ଜ, ସବୁତକ ଅନ୍ଧାର ଯେମିତି କୁଢ଼େଇ ହେଇପଡୁଥିବ ସାବିଅପାର ଘର ଅଗଣାରେ । ନିମିଷକେ ଲିଭିଯାଇଥିବ ସଞ୍ଜଦୀପ । ବଡ଼ କୁଣ୍ଡାରେ ଜଳୁଥିବ ଲଣ୍ଠନଟେ । ପୃଥିବୀଯାକର ନୀରବତା ସେଠି ଯେମିତି ଜମାଟ ବାନ୍ଧିଥିବ । ଦାଣ୍ଡପିଣ୍ଡାରେ ସପଟେ ଲମ୍ବେଇ ଚୁପ୍‌ଚାପ୍ ବସିଥିବ ସାବିଅପା । ଚାହୁଁଥିବ ମେଲା ଆକାଶକୁ, ଦେଖୁଥିବ ନୀରବରେ ଜଳୁଥିବା ତାରାମାନଙ୍କୁ । ତା'ପରେ ନିଜେ ସେ ଜଳୁଥିବ ଏକା ଏକା, ଫେରିଯାଉଥିବ କୋଉ ଦୂର ଅତୀତକୁ ।

ଗୋଟେ ସଜଳ ସଞ୍ଜ । ସବାରି ଲାଗିଥିବ ଏଇ ଘର ସାମ୍ନାରେ ସେଦିନ । ରିମ୍‌ଝିମ୍ ବର୍ଷା ସାଙ୍ଗରେ ତାଳ ଦଉଥିବ ରୁଣୁଝୁଣୁ ଚୁଡ଼ିଶବ୍ଦ । ହୁଳହୁଳି ଦଉଥିବେ କୁଳଭୁଆସୁଣୀଏ । ନଇଁନଇଁକା ପାଦ ଗଣି ଗଣି ପାହୁଣ୍ଡ ପକଉଥିବ ନୂଆବୋହୂଟି । ତା' ମନ ଭିତରେ ଲହଡ଼ି ଭାଙ୍ଗୁଥିବ ଅସୁମାରି ସ୍ୱପ୍ନ । ପାଞ୍ଚସାତ ଖଣ୍ଡ ଗାଁ ଡେଇଁ ଚିହ୍ନା ମୁହଁମାନଙ୍କୁ ପଛକରି ଅଦେଖା ଅଜଣା ଘରଟିର ଦୁଆରବନ୍ଧ ଡେଉଁଥିବ ବୋହୂଟି । ଗୋଟେ ଅନନ୍ୟ ଅନୁଭବ ଆତ୍ମହରା କରୁଥିବ ତାକୁ ।

ନିଜର ଏହି ବୋହୂ ବେଳକଥା ଭାବିଲାବେଳେ ଦୁଲୁକି ଉଠିଥିବ ସାବିଅପାର ଛାତି ।

କେତେ ସ୍ୱପ୍ନ ନେଇ ସେ ଆସିଥିଲା ଗୋଟେ ନୂଆ ଘରକୁ । ସୁନ୍ଦର ଯୁବକଟିର ହାତ ଧରିଥିଲା । ସ୍ୱାମୀଠାରୁ ପ୍ରଚୁର ପ୍ରେମ ପାଇବ ବୋଲି ଆଶା ବାନ୍ଧିଥିଲା । ଭାବିଥିଲା ଗୋଟେ ଫୁଲଫୁଟା ଋତୁ ପାଲଟିଯିବ ତା' ଜୀବନ । ସୁଖର ଦିନସବୁ ଗଡ଼ିଯାଉଥିବ ନଈସୁଅ ପରି, ଖୁବ୍ ଜୋରରେ । ଭଲର ସମୟ ଏମିତି ବିତିଯାଏ ପରା ! ଜଣାପଡ଼େନି ଜମା । ବର୍ଷ ମାସ ସବୁ ଅଜାଣତରେ ବିତୁବିତୁ ହଠାତ୍ ଦିନେ ସେ ମା' ହେଇଯାଇଥିବ । ଡଉଲଡାଉଲ ଟିକିପିଲାଟିକୁ କୋଳରେ ଧରି ସେ ଭୁଲିଯାଉଥିବ

ସବୁକିଛି । ତା'ରି ପଛରେ ଲାଗିଥିବ ରାତିଦିନ । ପିଲାଟି ହସିଦେଲାକ୍ଷଣି ଡାଳାଏ ମଲ୍ଲୀର ମହକରେ ବିଭୋର ହେଇପଡୁଥିବ ଘରବାହାର । ତା'ର ମଧୁର ଦରୋଟିରେ ଆକାଶର ତାରାମାନେ ଝରିପଡୁଥିବେ ଟୋପା ଟୋପା କାକର ବିନ୍ଦୁପରି ।

ସାବିଅପା ଭାବୁଥିବ- ଏମିତି କିଛି ନ ହବାପାଇଁ କ'ଣ ତା' କପାଳରେ ଲେଖାଥିଲା ? ନ ହେଲେ ବାହାଘରର ଦିନ ପନ୍ଦରଟା ପରେ ଭେଣ୍ଡିଆଟା କଲିକତା ଗଲା ଯେ ଆଉ ବାହୁଡ଼ି ନୋଇଲା ।

ସାବିଅପାର ବର କାମ କରୁଥିଲା କଲିକତା କର୍ପୋରେଶନ୍‌ରେ । ସେତେବେଳେ କଲିକତାରେ ପାଣିକଳ ମିସ୍ତ୍ରି କହିଲେ ଓଡ଼ିଆମାନଙ୍କୁ କୁଆଡ଼େ ବୁଝାଯାଉଥିଲା । ସାବିଅପା ବର ପୁଣି ଥିଲା ଭାରି କୁଶଳୀ କାରିଗର । ତା' ଚାକିରି ପରମାନେଣ୍ଟ୍ ହବ ହବ ହେଉଥିଲା, ହେଇ ନ ଥିଲା ସେଯାଏ । କଲିକତା ଗଲାବେଳେ ସାବିଅପାର କାନ୍ଦୁରୀମୁହଁ ଦେଖି ସେ କ'ଣ ଭାବିଲା କେଜାଣି କହିଯାଇଥିଲା ଖୁବ୍ ଶୀଘ୍ର ଛୁଟିନେଇ ଫେରିବ ବୋଲି ! ସେହି ସମୟ ଭିତରେ କିନ୍ତୁ ସେ କଲିକତାରେ ବସାଘର ଯୋଗାଡ଼ କରିବ ଆଉ ସାଙ୍ଗରେ ସାବିଅପାକୁ ନେଇଯିବ କଲିକତା । କଲିକତା ଯିବାପାଇଁ ସାବିଅପାର ଷୋଳଣା ମନ ଥିଲା । ହେଲେ ସେ କହିଥିଲା କୁଆଡ଼େ, ଜାଆ-ନଣନ୍ଦ, ଦେଢ଼ଶୁର, ଦିଅର ସମସ୍ତଙ୍କୁ ଛାଡ଼ି ଏତେ ଶୀଘ୍ର ସେ ବିଦେଶ ଜାଗାକୁ ଯିବ ନାହିଁ । ବର୍ଷେ ଛ' ମାସ ଯାଉ । ନ ହେଲେ ସାଇପଡ଼ିଶା କ'ଣ କହିବେ ? କହିଥିଲା ପୁଣି, ''ତମେ ଗଙ୍ଗାକାଳୀଙ୍କ ଦୟାରୁ ସେଠି ଭଲରେ ଯାଇ ରୁହ । ମାସେ ପରେ କିନ୍ତୁ ନିଶ୍ଚେ ଆସିବାକୁ ଭୁଲିବ ନାହିଁ । ମୋ ରାଣ ରହିଲା ।''

ମାସେ ଗଲା ଦି'ମାସ ଗଲା, ହେଲେ ସାବିଅପାର ବର କଲିକତାରୁ ଫେରିଲା ନାହିଁ । ସାବିଅପା ମନକୁ ପାପ ଛୁଇଁଲା । କାନ୍ଦବୋବାଳି ପଡ଼ିଗଲା ଘରେ । ଦେଢ଼ଶୁର ଅତର୍ଛା କଲିକତା ଧାଇଁଲେ । ଚଟକଳରେ ସେତେବେଳେ କାମ କରୁଥିଲା ଉପର ଗାଁର ହାଡ଼ିଆ ବେହେରା । ତା' ପାଖରେ ଯାଇ ପହଞ୍ଚିଲେ ଦେଢ଼ଶୁର । ସାବିଅପା ବରର ବସାଘର ଖୋଜାହେଲା । ପାଖ ପଡ଼ିଶାର ଲୋକେ କହିଲେ ମାସେ ହେଲା ତା'ର ଦେଖା ନାହିଁ ବୋଲି । କର୍ପୋରେଶନ୍ ଅଫିସ୍‌ରେ ଖୋଜଖବର ନିଆଗଲା । ସେଠାକାର କାଗଜପତ୍ରରେ ସେ ଲାପତା ହେଇଥିବା କଥା ଲେଖାହେଇଥିଲା । ଦେଢ଼ଶୁର କାନ୍ଦି କାନ୍ଦି ଗାଁକୁ ଫେରିଲେ । କଲିକତାରେ କେତେ କ'ଣ କଥାସବୁ ଶୁଣାଗଲା ତା' ବିଷୟରେ । କିଏ କହିଲା, ସେ ଗଙ୍ଗାସାଗର ମେଳାକୁ ଯାଇଥିଲା, ଡଙ୍ଗା ବୁଡ଼ିଗଲା ମଝିଦରିଆରେ- ସେ ଆଉ ଫେରନ୍ତା କେମିତି ? ଆଉ କିଏ କହିଲା- କଥା ତା'ନୁହେଁ, ୟୁନିଅନ୍ ଗଣ୍ଡଗୋଳରେ ତା' ପ୍ରାଣ ଗଲା । ସାବିଅପାର ବର କୁଆଡ଼େ ଥିଲା ବଡ଼ ମାତବର ମର୍ଦ୍ଦ । ଦଙ୍ଗାହାଙ୍ଗାମା ଜାଗାରେ ସେ ଯାଇ ଆଗେ

ପହଞ୍ଚିଯାଉଥିଲା– ହାଣମୁହଁରେ ଯାଇଥିବ ହୁଏତ । କେହି କେହି କହିଲେ ପୁଣି, ସଂସାର ପ୍ରତି ତା'ର ବୈରାଗ୍ୟ ଆସିଯାଇଥିଲା । ସେ କାଉଁରି କାମାକ୍ଷା ପଳେଇଲା କି ଆଉ ବାବାଜି ହେଇ ।

ସାବିଅପା ଏସବୁ ଶୁଣି ରାହାଧରି କାନ୍ଦିଲା ରାତିଦିନ । ତେତ୍ରିଶକୋଟି ଦେବତାଙ୍କୁ ଡାକିଲା ଆତୁରହେଇ । କେତେ କ'ଣ ମନାସିଲା ତା' ହିସାବ ନାହିଁ । ଗୁଣିଗାରେଡ଼ି ଭିଏଇଲା । ପଳାଶୁଣୀଙ୍କ ପାଖରେ ବୋଦାବଳି ସଇଲା– ହେଲେ ସାବିଅପାର ବର ଆଉ ଫେରିଲା ନାହିଁ ।

ହଠାତ୍ ଦିନେ ଡାକ ଆଇଲା କଲିକତାରୁ– ଡଙ୍ଗାବୁଡ଼ିରେ ସତକୁ ସତ ମରିଥିଲା ସାବିଅପାର ବର । ସାଙ୍ଗରେ ସାବିଅପା ନାଁରେ ଟଙ୍କା ହଜାରେ ଆସିଥିଲା । ପଠେଇଥିଲେ ହାବଡ଼ା କଲେକ୍ଟର । ଶୁଣୁଶୁଣୁ ସାବିଅପା ମୂର୍ଚ୍ଛାଗଲା । ସାରା ଗାଁ ଚହଲିଗଲା ଏକଥା ଶୁଣି । ଭାଇବତିଶା ଘେରିପଡ଼ିଲେ । ଆଃ ଆଃ ଚୁ ଚୁ କଲେ । ତା'ପରେ ନାହାକ ବ୍ରାହ୍ମଣଙ୍କ ପରାମର୍ଶ ନିଆଗଲା । ପରଦିନ ସମସ୍ତେ ଶୁଦ୍ଧି ହେଲେ । ସାବିଅପା ହାତରୁ ଚୁଡ଼ି ଭଙ୍ଗାହେଲା । ଖାଲି ଚୁଡ଼ି ଭଙ୍ଗାହେଇଥିଲେ ସାବିଅପା ହୁଏତ କୌଣସିପ୍ରକାର ସହି ଯାଇଥାନ୍ତା ଦୁଃଖସବୁକୁ, ହେଲେ କଥା ସେଇଠି ଅଟକିଲା ନାହିଁ । ସାବିଅପା ଗୋଟେ ଅଲକ୍ଷଣୀ ବୋଲି ସାରା ଗାଁରେ ଚହଳପଡ଼ିଲା । କୁଆ ରାବିବାକୁ ତାଳ ପଡ଼ିବା ନ୍ୟାୟରେ ସାବିଅପାକୁ 'ଘଇତାଖାଈ' ବୋଲି କହି ଘରଲୋକେ ଦୂରଦୂର ମାର୍‌ମାର୍ କଲେ । ତା' ମୁହଁ ଚାହିଁଲେ ସବୁ ଅଶୁଭ ବୋଲି ଗାଁ ମାଇପେ ଉଆକା ଉଠେଇଲେ ।

ସାବିଅପା ଏବେ ବି ଅନେକ ସମୟରେ ନିଜକୁ ପଚାରୁଥିବ– ସତରେ ସେ କ'ଣ ଅଲକ୍ଷଣୀଟେ ନୁହେଁ କି ? ପିଲାବେଳେ ବାପ କି ଚିଜ ସେ ଜାଣି ନ ଥିଲା । ସେ ମା' ପେଟରେ ଥିଲା, ତା' ବାପା ମରିଯାଇଥିଲେ । ସେତେବେଳେ ଗାଁ-ଗାଁରେ ମହାମାରୀ ବ୍ୟାପୁଥିଲା । ଗୋଟେ ଗୋଟେ ଘରୁ ପାଞ୍ଚସାତ ମାଇପି ମିଣିପ ଚାହୁଁ ଚାହୁଁ ମାରା ପଡୁଥିଲେ । ସେ କାଳରେ ନା ଥିଲା ଔଷଧମଷୌଧି, ନା ଥିଲେ ଡାକ୍ତର ବଇଦ । ସାବିଅପା ବାପା ଆର ସାହିକୁ ଯାଉଥିଲେ ଶବ ଉଠେଇବାପାଇଁ । ମଶାଣିରୁ ଫେରିଲାବେଳକୁ ରାତି କୁଆଡ଼େ ପାହିବ ପାହିବ ହଉଥିଲା । ସାବିଅପା ବାପା ଘରକୁ ଫେରୁ ଫେରୁ ଦି'ଥର ପୋଖରୀପାଣି ଗଲେ । ତା'ପରେ ତାଙ୍କ ଦେହସାରା ସନ୍ନିପାତ ଘୋଟିଗଲା । ଦେଖୁ ଦେଖୁ ପାଟିରୁ ଆଉ କଥା ବାହାରିଲା ନାହିଁ । ଆଖି ଡିମା ଡିମା ହେଇଗଲା । ଘରେ କନ୍ଦାକଟା ଚାଲିଲା । ହାଉଳମାଉଳ ହେଲେ ମାଇପି ପିଲେ । ସକାଳକୁ ତାଙ୍କ ପିଣ୍ଡରେ ଆଉ ପ୍ରାଣ ନ ଥିଲା । ବାପଛେଉଣ୍ଡ ସାବିଅପା ବିଧବା

ମା', ଦାଦା ଓ ଖୁଡ଼ୀଙ୍କ ପାଖରେ ବଢ଼ିଥିଲା । ଖୁବ୍ ଦୁଃଖ ପାଇଥିଲା ପିଲାବେଳେ । ଭାବିଥିଲା, ଅବଶିଷ୍ଟ ଜୀବନ ସୁଖରେ କାଟିବ । ବିଧାତା ତା' କରେଇଦେଲା କୋଉଠି ? ତା'ରି ଜନମ ଘଡ଼ିକୁ ଗ୍ରହନକ୍ଷତ୍ରମାନେ ଏମିତି ଅଶୁଭବେଳା ଖଞ୍ଜିଦେଇଥିଲେ ନା ?

ସ୍ୱାମୀ ମଲା ପରେ ସାବିଅପା ମଉରା ଖାଇଦବ ନ ହେଲେ ନଈପୋଖରୀକି ଡେଇଁପଡ଼ିବ ବୋଲି ଭାବିଥିଲା । ହେଲେ ସବୁକଥାରେ ବାଧା ଦେଇଥିଲେ ତା' ଦାଦା । କହିଥିଲେ, ନିଜ ଇଚ୍ଛାରେ ଥରେ ଜୀବନ ହାରିଲେ ସାତଜନମ ଆଉ ମଣିଷ ଜୀବନ ମିଳିବ ନାହିଁ । ବଡ଼ ଦୁର୍ଲଭ ପରା ଏ ମଣିଷ ଜୀବନ– ତାକୁ ନାଶକଲେ ସବୁ ଅନ୍ଧାର ଯେ । ଈଶ୍ୱର ଦୁଃଖ ଦିଅନ୍ତି କୁଆଡ଼େ ମଣିଷକୁ ପରୀକ୍ଷା କରିବାପାଇଁ । ଦାଦା କହିଲେ– ''ମା', ତୁ ସବୁ କଷଣ ନୀରବରେ ସହିଯା'ରେ । ପରମେଶ୍ୱରଙ୍କ ଉପରେ ବିଶ୍ୱାସ ରଖ । ବିଶ୍ୱାସ ବଳରେ ବିଷ ଅମୃତ ପାଲଟିଯିବ । ନିଜକୁ ନିଜେ ଟାଣକରିବୁ ଲୋ ମା' । ଛାତିକୁ ପଥର ନ କଲେ କ'ଣ ସଂସାରରେ ବଞ୍ଚିହୁଏ ?''

ସାବିଅପା ଛାତିକୁ ପଥର କଲା । କିନ୍ତୁ କାହିଁ କୋଉଠି ବିଷ ଅମୃତ ପାଲଟିଯିବା ସେ ଦେଖିଲା ନାହିଁ ! ବରଂ ତା' ବର ମରିବାର ବର୍ଷେ ନ ପୂରୁଣୁ ଦେଢ଼ଶୁରଙ୍କର ଲୋଲୁପ ଦୃଷ୍ଟି ପଡ଼ିଲା ତା'ଉପରେ । ଦିନେ ହେଇଥିଲା ଧୁମ୍‌ଧାମ୍ ଝଡ଼ବର୍ଷା ରାତି । ନିଶା ଗର୍ଜୁଥିଲା ଘୁ ଘୁ । ମହୀମଣ୍ଡଳକୁ ଯେମିତି ବିଦାରିଦଉଥିଲା ଅଣଚାଶ ପବନ । ଗଛପତ୍ର ଭୂଇଁରେ ଲୋଟୁଥିଲେ । କିଟିକିଟା ଅନ୍ଧାର ଭିତରେ କିଏ ଖୁବ୍ ଜୋରରେ ତା' ଘରକବାଟ ବାଡ଼େଇଲା । ପଛପୁରର ଶେଷଘରଟା ଥିଲା ତା'ର– ସାବିଅପା ଆଖିକୁ ତ ଏମିତିରେ ନିଦ ନ ଥାଏ । ବଡ଼ ସନ୍ତର୍ପଣରେ ସେ କବାଟ ଖୋଲିଲା । ହଠାତ୍ ଘରଭିତରକୁ ପଶିଆସିଲା ଛାଇଛାଇକା ମଣିଷଟାଏ । ସାବିଅପା ଡରିଗଲା । ବରଡ଼ାପତ୍ର ପରି ଥରିବାକୁ ଲାଗିଲା । ଏହି ସମୟରେ ଛକ୍ କରି ବିଜୁଳି ମାରିଦେଲା । ସାବିଅପା ଦେଖିଲା ତା' ଦେଢ଼ଶୁରଙ୍କର ଭୟାନକ ଚେହେରା । ତାକୁ ଆଉ କିଛି ଅଛପା ରହିଲା ନାହିଁ । ତା' ବଳ ମତେ ମାରିଲା ଧକ୍‌କାଟାଏ ଯେ ଦେଢ଼ଶୁର ଏକାଥରରେ ଚିତ୍‌ପଟାଙ୍ଗ୍ । ସାବିଅପା ମୁଣ୍ଡକୁ ତ ପିତ୍ତ ଚଢ଼ିଗଲା । ସେ ଧରିଲା ଉଗ୍ରରୂପ– ଠିଆହେଇଗଲା ଦେଢ଼ଶୁରଙ୍କ ଛାତି ଉପରେ । ରାତିକଥା ସକାଳକୁ ରାଷ୍ଟ୍ର ହେଇଗଲା ଚାରିଆଡ଼େ । ସେହିଦିନରୁ ତୁଣ୍ଡବାଇଦରେ ସେ ପାଲଟିଗଲା କାଳୀକରାଳୀ ।

ଦେଢ଼ଶୁର ଭାବିଥିଲେ ଥରେ ବଦ୍‌ନାମ ହେଲେ ସାବି ଘରଛାଡ଼ି ଚାଲିଯିବ କୁଆଡ଼େ । ସଂପତ୍ତିବାଡ଼ିରେ ଆଉ ଭାଗ ବସିବ ନାହିଁ । ତା' ନ ହବାରୁ ସେ ସାନଭାଇକୁ ହାତକଲେ । ମେଞ୍ଚଡ଼ ଟୋକାଟା କହିଲା ସାବିଅପାକୁ ଦ୍ୱିତୀୟ ହବ ବୋଲି । ସାବିଅପା ପୁଣି ସାଜିଲା ଚଣ୍ଡୀବେଶ । ଖଡ୍ଗମିଶା ଦି' ଚଟକଣିରେ ତା'ର ଗଜରା ଚାରିଦାନ୍ତ ତଳେ ଲୋଟିଲା । ତଥାପି ନା ଦେଢ଼ଶୁର ନା ଦିଅର କାହାରି ଜ୍ଞାନ ଉଦୟ ହେଲା

ନାହିଁ । ଦେଢ଼ଶ୍ବଶୁର ତ କହିବୁଲିଲେ ରାଣ୍ଡକୁ ଦାଣ୍ଡେ ଦାଣ୍ଡେ ଘଉଡ଼ାଇଦେବି । ସାବିଅପା ବାପଘରକୁ ପଳେଇଗଲା । ତା'ର ବାପ ଥିଲା ନା ଭାଇ– ସବୁରେ ଭରସା ହେଲେ ସେହି ଦାଦା । ସେ କହିଲେ, ବାହାହେଲା ଝିଅର ଅଧିକାର ସ୍ବାମୀଘରେ । ତୁ କାହିଁକି ଭଲା ସ୍ବାମୀଘର ଭିଟାମାଟି ଛାଡ଼ିବୁ ? ତୋ ଅଧିକାର ତୋ'ଠୁଁ କେହି ଛଡ଼େଇପାରିବେ ନାହିଁ । ଜାଣିନୁ, ପାଞ୍ଚଖଣ୍ଡ ପଡ଼ା ମାଗିଥିଲେ ପାଣ୍ଡବପୁଏ । ପଡ଼ା ତ ପଡ଼ା, ସୂଚ୍ୟଗ୍ର ମେଦିନୀ ଦବାକୁ ମଙ୍ଗିଲା ନାହିଁ ମାନୀ ମାନଗୋବିନ୍ଦ– ଅବସ୍ଥା କ'ଣ ହେଲା ? ସ୍ବୟଂ ନାରାୟଣ ଲଢ଼ିଲେ ପଞ୍ଚୁପାଣ୍ଡବଙ୍କପାଇଁ । ଏକଥା ଶୁଣି ସାବିଅପା ଦମ୍ଭ ପାଇଲା । ଠିଆହେଲା ଯାଇ ମିସାଲତ୍‌ରେ । ହାତେ ଓଢ଼ଣା ଆଢୁଆଳୁ ଗୁହାରିକଲା ହାକିମଙ୍କୁ । ତା'ପରେ ଜାରି ହେଲା ହୁକୁମନାମା । ତିନି ଭାଗ ହେଲା ବାରମାଣ ଜମି ।

ସାବିଅପା ଏମିତି ଭାବିଚାଲିଥିବ ଯେ ଭାବିଚାଲିଥିବ । କେତେବେଳେ ଲଣ୍ଠନର ଧାପ ବଢ଼ିଯାଇ କାଚ ଦେହରେ ଜମିଯାଇଥିବ ବେଁବହଳର କଳା । ସାବିଅପାର ସେଥକୁ ନଜର ନ ଥିବ । ଲଣ୍ଠନକାଚ ପରି ତା'ମୁହଁ କଳା କରିବାପାଇଁ କେତେ କ'ଣ କରିଥିଲେ ଦେଢ଼ଶ୍ବଶୁର ତା'ର । ଗାଁଲୋକେ ତାଙ୍କରି କଥାରେ ଭାସିଯାଉଥିଲେ, କାରଣ ସେ ତ ଥିଲେ ପାଣିରେ ସର ପକେଇଲା ଲୋକ । ହେଲେ ଗରଜି ଗରଜି ମଲେ ସିନା, ବରଷି ପାରିଲେ ନାହିଁ । ସାବିଅପା ଯଦି କଠୋର ହେଇ ନ ଥାନ୍ତା, ମୁହଁତୋଡ଼୍ ଜବାବ ଦଉ ନ ଥାନ୍ତା କଥାକଥାକେ, ସେ କୋଉଦିନୁ ଦ୍ବୀପାନ୍ତର ହେଇସାରନ୍ତାଣି । ତାକୁ କ'ଣ ରଖେଇଦେଇଥାନ୍ତେ ଦେଶ ଦୁନିଆରେ । ସେଇ ଯୋଉ କଷି ବଅସରୁ ସେ ବିଧବା ହେଇଥିଲା, ସେ କାହାକୁ କେବେ ଭୁଲରେ ଆଖିମେଲି ଚାହିଁଚି ? ତା'ର ଟାଣପଣ ପାଇଁ ସିନା କା ଛାଇ ପଡ଼ିପାରି ନାହିଁ ତା' ଅଗଣାରେ ! ମୁହଁଖୋଲି ପଦେ ତା' ଆଗରେ କହିଦେବାପାଇଁ କାହାରି ହିମ୍ମତ ହେଇ ନାହିଁ ।

ସାବିଅପା ବାଡ଼ିର ତାଟି ଖାଲି ଆଉଜା ହେଇଥିଲେ ହେଲା । ସେଥିରେ ଚାବି ପଡ଼ିବା ଦରକାର କ'ଣ ? କେହି ତା' ଦରବ ଆଡ଼କୁ କଣେଇକି ବି ଚାହିଁବେ ନାହିଁ– ନ ହେଲେ ସାବିଅପା ତାଙ୍କୁ କଞ୍ଚା ଗିଳିଦବନି ? ଚଗଲାପିଲାଏ ଆଉ କାହା ବାଗବଗିଚାରେ ପଶି ଆମ୍ବ ଜାମୁଗଛକୁ ଢେଲା ଫିଙ୍ଗିବେ ସିନା, ହେଲେ ସାବିଅପା ଗଛବୃଛରେ ସେମିତି ଓହଳିଥିବ ନେନ୍ଥା ନେନ୍ଥା ଆମ୍ବ, ଜାମୁ, କଇଥ ଓ ପିଜୁଳି । ଶିରୀପଞ୍ଚମୀକୁ ସ୍କୁଲପିଲାମାନେ ସମସ୍ତଙ୍କ ବାଡ଼ିରେ ପଶି ଗେଣ୍ଡୁ ଚୋରେଇବେ, ହେଲେ ଗେଣ୍ଡୁଫୁଲରେ ଭର୍ତ୍ତିହେଇ ରହିଥିବ ସାବିଅପାର ଖଳାବାଡ଼ି– କେହି ସେଥିରେ ହାତ ଦେବେନି ଭୁଲରେ । ଗାଈଆଳ ଟୋକାମାନେ ଯା' ତା' କ୍ଷେତରେ ଗୋରୁ ପଶେଇଦେବେ, ହିଡ଼ ହାଣିଦେବେ, ହେଲେ ସାବିଅପା କ୍ଷେତଠାରୁ ପାଞ୍ଚହାତ ଦୂରରେ

ଥିବେ । ଆଉ କାହା କାମକୁ ଓଳିଏ ଜାଗାରେ ଦିନେ ଲାଗିବେ ମୂଲିଆ ମଙ୍ଗୁରିଆ ହେଲେ ସାବିଅପାର ଦିନକର କାମ ଓଳିକରେ ସରିବହିଁ ସରିବ । ନ ହେଲେ ସେ କାହା ବଉଁଶବୁଡ଼େଇବ ତ କାହା ସଜମାଉଁସରେ ପୋକ ପକେଇଦବ ।

ଏଡ଼େ ଲାଜରା ଝିଅଟା ଯିଏ ଅଭିଆଡ଼ୀ ବେଳେ ମାଛିକୁ ମ' ବୋଲି କହି ନ ଥିଲା, ଗୁରୁଗୁରୁଜନଙ୍କ ଆଗରେ କଥାହବା ତ ଦୂରର କଥା, ଯିଏ ତାଙ୍କ ଆଗଦେଇ ଚାଲିଯିବାକୁ ଭରସି ନ ଥିଲା, ଯାହାର କଥା ଏଠୁ ସେଠିକି ଶୁଭି ନ ଥିଲା ସିଏ ପୁଣି ଏମିତି ରାହାବାଳୀ ହେଲା କେମିତି ? କାହିଁକି ହେଲା ଉଗ୍ରଚଣ୍ଡୀ ? କେମିତି ବଦଳିଗଲା ତା' ସ୍ୱଭାବ ? ନିଜ ପ୍ରଶ୍ନରେ ନିଜେ ଝୁଣ୍ଟୁଥିବ ସାବିଅପା । ସେତେବେଳେ ଫୁଲ ପାଖୁଡ଼ା ପରି ତା' କଅଁଳ ମନ ଅଥୟ ହଉଥିବ । ଛୋଟ ଛୋଟ ପିଲାମାନଙ୍କ ପ୍ରତି କେତେ ଯେ ତା'ର ଦରଦ ସେକଥା ତା'ଛଡ଼ା ଆଉ କେହି ଜାଣେ କି ? ଜାଣେ କି କିଏ, ନୂଆ ବୋହୂଟେ ଦେଖିଲେ ସେ କେମିତି କୁରୁଳିଉଠେ ? ବାହାହୋଇ ଯାଇଥିବା ବରକନିଆ ଉପରେ ସେ କେତେ ଆଶିଷ ଢାଳେ ? ଇଚ୍ଛା ଥିଲେ ବି ସାବିଅପା କାହା ଦୁଆର ମାଡ଼େ ନାହିଁ– କାଳେ କିଏ ବାରିଦବ ? ଏଣୁତେଣୁ ପଦେ କହିଦବ । ଛୋଟ ପିଲାଛୁଆଙ୍କୁ ବି ସେ ବେଶି ଧରାଧରି କରେ ନାହିଁ । ତା' ରଙ୍କୁଣା ନଜର କୋଉ ପିଲାଛୁଆ ଉପରେ ପଡ଼ିଯିବ କାଳେ ! ଏମିତିରେ ତ ଅସାଣ୍ଠେଇ ଗାଁ ମାଇପେ ତାକୁ କହନ୍ତି ଡାହାଣୀ ବୋଲି । ଦୈବାତ୍ କା' ପିଲାର ଦିହପା ଖରାପ ହେଲେ, ସବୁ ଦୋଷ ଲଦିଦେବେ ତା'ରି ଉପରେ । ବାସ କରେଇଦେବେନି ତାକୁ ସକଳଖାଇଏ । ସାବିଅପାର ଏହି ଦୂରେଇ ରହିବାର ଖୋଇ ସେ ଛାଡ଼ିପାରୁ ନ ଥିବ ଜମା ।

ସାବିଅପା ଏମିତି ଭାବଜଗତରେ ଘୂରୁଘୂରୁ ଅଟକିଯାଉଥିବ ତା' ବର ପାଖରେ । ଦିନ କେଇଟାରେ କି ମାୟା ଲଗେଇ ଚାଲିଗଲା ଅର୍ଦ୍ଧବୃଷାଳଟା ? ତା' ଅଳପ ଅଳପ ହସ, ମିଠା ମିଠା କଥା, କୁଞ୍ଚୁକୁଞ୍ଚିଆ ବାଳ, କୁନ୍ଦିଲା କୁନ୍ଦିଲା ଦେହ– ସବୁ ମନେପଡୁଥିବ ସାବିଅପାର । ଏ ଜୀବନରେ ନ ହେଲା ନାହିଁ, ଆର ଜନମରେ କ'ଣ ଭେଟ ହବନି ତା' ସାଙ୍ଗରେ ? ଏକଥା ଭାବିଦେଲା କ୍ଷଣି ସାବିଅପାର ସର୍ବାଙ୍ଗ ଶୀତେଇ ଉଠୁଥିବ ।

ହଉ, କାଳକ ତ ଗଲାଣି– ଆଉ କେତେ କାଳ ବାକି ଅଛି ? ଚାହୁଁଚାହୁଁ ଏ ଦରପୋଡ଼ା ଜୀବନ ବଳେ ନିଭିଯିବନି । ଦାଦା ମଲାପୂର୍ବରୁ କହିଯାଇଥିଲେ– ଏ ଜନମରେ ଯେତେ ଦୁଃଖ, ଆର ଜନମକୁ ସେତେ ସୁଖ ବୋଲି । ସାବିଅପା ଭାବୁଥିବ, ଆର ଜନମକୁ ବୋଧେ ସେ ପିଲାବେଳୁ ଛେଉଣ୍ଡ ହବନି କି ରାଣ୍ଡ ହବନି ଯୁବା ବଅସରେ । ରାତି ଗଭୀର ହଉଥିବ କାହିଁରେ କେତେ । ସାବିଅପା ଜାଣିପାରୁ ନ ଥିବ କିଛି ।



# ଚିଠି

କୋଉଠି କ'ଣ ଗୋଟେ ଅଭାବ ରହିଯାଉଥିଲା ଯେମିତି ! ଏତେ ପ୍ରାଚୁର୍ଯ୍ୟ ଭିତରେ ପୁଣି ଅଭାବ କ'ଣ ? ଅଭାବର ସ୍ୱରୂପ ଖୋଜି ପାଉ ନ ଥିଲା ପୂରବୀ– କିନ୍ତୁ ବେଳେବେଳେ ଅଭାବଟେ ସେ ନିଶ୍ଚୟ ଅନୁଭବ କରୁଥିଲା । ପରମୁହୂର୍ତ୍ତରେ ସେଇ ଅନୁଭବ ବି କୁଆଡ଼େ ଉଭେଇଯାଉଥିଲା । ଭାରି ସୂକ୍ଷ୍ମ ଥିଲା ସତେ ସେ ଅଭାବ । ଛୁଇଁ ବି ଛୁଇଁପାରୁ ନ ଥିଲା– ଚୋରା ଚଇତି ପରି ।

ସଚରାଚର ଅଭାବ କହିଲେ ଯାହା ବୁଝାଯାଏ, ସେମିତି ଅଭାବଟେ କଦାପି ନ ଥିଲା ପୂରବୀର । କମ୍ପାନୀ ତରଫରୁ ସୁନ୍ଦର ଫ୍ଲାଟ୍‌ଟେ ମିଳିଥିଲା ପ୍ରବାଳଙ୍କୁ, ପୁଣି ବମ୍ବେର ସବୁଠାରୁ ଭଲ ଅଞ୍ଚଳରେ– ହାଇମାଉଣ୍ଟ ଗେଷ୍ଟ୍‌ହାଉସ୍‌ଠାରୁ ଅଳ୍ପ ଦୂରରେ । ଛାତ ଉପରେ ଠିଆ ହେଲେ ଲାଗେ, ସମୁଦ୍ର ଯେମିତି ହାତପାହାନ୍ତାରେ । ଓଃ....ଏତେ ପାଖରେ ସମୁଦ୍ର ! ଫ୍ଲାଟ୍‌ରେ ପାଦ ଦଉ ଦଉ ସେ ଖୁସିରେ ଚିତ୍କାର କରିଥିଲା, ଆତ୍ମହରା ହୋଇପଡ଼ିଥିଲା ଅନନ୍ତ ନୀଳିମାର ମୋହରେ । ସେ ଲହଡ଼ି ଭାଙ୍ଗୁଥିଲା ମନେ ମନେ, ଛାତ ଉପରେ ବସି, କେବେ ଏକା ଏକା ତ କେବେ ପ୍ରବାଳଙ୍କ ସାନ୍ନିଧ୍ୟରେ । ରବିବାର ପରି ଛୁଟିଦିନମାନଙ୍କରେ ମେରାଇନ୍ ଡ୍ରାଇଭ୍ ଆଡ଼େ ବୁଲିଯାଉଥିଲା, ନ ହେଲେ ଯାଉଥିଲା ହୀରାପନ୍ନା ମାର୍କେଟକୁ । ଯାହା ବି କିଣିବାକୁ କହିଲେ ପ୍ରବାଳ କେବେ ମନାକରୁ ନ ଥିଲେ ।

ବମ୍ବେରେ ଛ'ମାସ ପାଖାପାଖି ରହିଲା ପରେ ଗୋଟେ ରିଫ୍ରେସର୍ କୋର୍ସ କରିବାପାଇଁ ପ୍ରବାଳ ନିଉୟର୍କ ଗଲେ । କାଳେ ତାକୁ ଏକା ଚଳିବାରେ ଅସୁବିଧା ହେବ, ତେଣୁ ପୂରବୀ ବାପାଙ୍କୁ ଫୋନ୍ କରି କହିଥିଲା, ବୋଉକୁ ବମ୍ବେ ପଠେଇଦବାପାଇଁ । ପ୍ରବାଳ ନିଉୟର୍କ ଯିବାର ଦି' ଦିନ ପୂର୍ବରୁ ବମ୍ବେରେ ପହଞ୍ଚିଯାଇଥିଲା ବୋଉ । ରିଟାୟାର୍‌ମେଣ୍ଟ ପରେ ବାପା ବୋଉ ଭାଇ ପାଖରେହିଁ ରହୁଥିଲେ ଭୁବନେଶ୍ୱରରେ । ଘରର କୌଣସି ଭାର ଆଉ ବୋଉ ଉପରେ ନ ଥିଲା ଆଗପରି, ସେ ତେଣୁ ବମ୍ବେ ଆସିବାପାଇଁ କୁଣ୍ଠିତ ନ ଥିଲା । ନିଉୟର୍କରେ ପ୍ରବାଳ ବର୍ଷେ ପାଖାପାଖି ରହିବାର ଥିଲେ, ପୂରବୀ ହୁଏତ ତାଙ୍କ ସାଙ୍ଗରେ ଯାଇପାରିଥାନ୍ତା । କିନ୍ତୁ ନିଉୟର୍କରେ ମାତ୍ର ତିନି ମାସ ରହି ସେ ଲଣ୍ଡନ ଯିବେ । ସେଠି ରହିବେ ଦି'ମାସ । ତା'ପରେ ଭାରତ ଫେରିଆସିବେ । 'ଚାହୁଁ ଚାହୁଁ ପାଞ୍ଚମାସ କୁଆଡ଼େ ବିତିଯିବ, ଜଣାପଡ଼ିବନି । ପ୍ରବାଳ ଗଲାବେଳେ କହିଥିଲେ– ପ୍ରତିଦିନ ଫୋନ୍ କରିବି, ଇଣ୍ଟରନେଟ୍‌ରେ ଯୋଗାଯୋଗ କରିବି ବୋଲି କହିବାକୁ ବି ଭୁଲି ନ ଥିଲେ ।

ଛତ୍ରପତି ଶିବାଜୀ ଇଣ୍ଟରନ୍ୟାସନାଲ ଏୟାରପୋର୍ଟରେ ପ୍ରବାଳଙ୍କୁ ଛାଡ଼ିଆସିଲା ପରେ କାନ୍ଦ କାନ୍ଦ ହୋଇଯାଇଥିଲା ପୂରବୀ । ପାଞ୍ଚ ମାସ ପାଞ୍ଚ ବର୍ଷ ପରି ଲାଗିବ ନାହିଁ ତ ପ୍ରବାଳଙ୍କ ଅନୁପସ୍ଥିତିରେ ! ତେବେ, ବୋଉ ଆସିଯାଇଥିବାରୁ ତା' ଏକଲାପଣ ଅନେକଟା ଦୂରେଇଯିବ ନିଶ୍ଚେ । ତା'ଛଡ଼ା ଇଣ୍ଟରନେଟ୍ ଯୁଗରେ ଦୂରତାର ପ୍ରାସଙ୍ଗିକତା କାହିଁ ! ପ୍ରବାଳଙ୍କ ଅନୁପସ୍ଥିତି ସତରେ ଜଣାପଡୁ ନ ଥିଲା ପୂରବୀକୁ । ନିଉୟର୍କରେ ପହଞ୍ଚିଲାକ୍ଷଣି ସେ ଫୋନ୍ କଲେ, ଦିନକ ପରେ ତାଙ୍କ ଇ-ମେଲ ଠିକଣା ଜଣେଇଦେଲେ ଓ ବମ୍ବେ ଇ-ମେଲକୁ ନିୟମିତ ମେସେଜ୍ ପଠାଇଲେ । ପୂରବୀ ବୋର୍ ହେଲାକ୍ଷଣି କମ୍ପ୍ୟୁଟର ଖୋଲୁଥିଲା ଓ ପ୍ରବାଳଙ୍କ ମେସେଜ୍ ପାଉଥିଲା । ସେ ମଧ୍ୟ ମେସେଜ୍ ପଠାଉଥିଲା ପ୍ରବାଳଙ୍କ ପାଖକୁ, ଇଣ୍ଟରନେଟ୍‌ରେ ।

ପାଠ ପଢ଼ିଲାବେଳେ କମ୍ପ୍ୟୁଟର ପ୍ରତି ଆଦୌ ଆଗ୍ରହ ନ ଥିଲା ପୂରବୀର । ହେଲେ ବାହାଘର ପରେ ପ୍ରବାଳଙ୍କ ବାଧ୍ୟବାଧକତାରେ ସେ କମ୍ପ୍ୟୁଟର ଶିଖିଲା । ପ୍ରବାଳଙ୍କର କମ୍ପ୍ୟୁଟର ପ୍ରତି ଏତେ ଆକର୍ଷଣ ଦେଖି ସେ ମଝିରେ ମଝିରେ ତାଙ୍କୁ ଥଟ୍ଟା କରୁଥିଲା । କହୁଥିଲା, 'କମ୍ପ୍ୟୁଟରକୁ ବାହାହୋଇପଡ଼ିଲନି !' ଏକଥା ଶୁଣି ପ୍ରବାଳ ଓଲଟି କହୁଥିଲେ, 'ମାନିନିଅ, କମ୍ପ୍ୟୁଟର ତୁମ ବଡ଼ ସଉତୁଣୀ ବୋଲି !' ପୂରବୀ କିନ୍ତୁ ସତରେ କମ୍ପ୍ୟୁଟରକୁ ସଉତୁଣୀ ବୋଲି ଭାବୁଥିଲା । ଫର୍ମୁଲା, ଫର୍ମାଟ୍ ଆଦି କମ୍ପ୍ୟୁଟରର ପରିଭାଷା ତାକୁ ହୃଦୟହୀନ ଲାଗୁଥିଲା । ସେ ତ ମୂଳରୁ ଥିଲା ଗଣିତ ପ୍ରତି ବିମୁଖ, ପୁଣି ଜୀବନକୁ ଗଣିତ ଗଦ୍ୟମୟ କରିଦିଏ ବୋଲି ତା'ର ଗୋଟେ ବଦ୍ଧମୂଳ ଧାରଣା ଥିଲା । ଗୋଟେ ନିର୍ଜୀବ ଯନ୍ତ୍ରକୁ ନେଇ ଖେଳିବାକୁ ସେ ପସନ୍ଦ କରୁ ନ ଥିଲା, ଯେପରି କରୁଥିଲେ ପ୍ରବାଳ । କିନ୍ତୁ ବମ୍ବେର ସବୁଠୁଁ ବଡ଼ ସଫ୍ଟୱେୟାର୍ କମ୍ପାନୀର ରିଜିଓନାଲ ମ୍ୟାନେଜରଙ୍କ ସ୍ତ୍ରୀ କମ୍ପ୍ୟୁଟର ନ ଜାଣିବା ଗୋଟେ ଲାଜର କଥା । ତା'ଛଡ଼ା ପ୍ରବାଳଙ୍କ ଇଚ୍ଛା ପ୍ରତି ସେ ଅନୁରକ୍ତି ପ୍ରକାଶ ନ କରନ୍ତା କେମିତି ? ଏଥିପାଇଁ ସେ କମ୍ପ୍ୟୁଟର ଶିଖିଥିଲା ସିନା, କମ୍ପ୍ୟୁଟରକୁ ଆପଣେଇ ପାରୁ ନ ଥିଲା ।

କଲେଜରେ ପଢ଼ିଲାବେଳେ ପ୍ରବାଳ ଥିଲେ ବିଜ୍ଞାନର ଛାତ୍ର; କିନ୍ତୁ କବିତା ଅନୁରାଗୀ । ତାଙ୍କର ସେକେଣ୍ଡ ଇୟର୍ ବେଳେ ଫାଷ୍ଟ ଇୟର୍‌ରେ ପଢୁଥିଲା ପୂରବୀ । ଥରେ କବିତା ପାଠୋତ୍ସବରେ ସୁନ୍ଦର ରୋମାଣ୍ଟିକ୍ କବିତାଟେ ପଢ଼ି ସମସ୍ତଙ୍କୁ ଚକିତ କରିଥିଲେ ପ୍ରବାଳ । କଲେଜ ମ୍ୟାଗାଜିନ୍‌ରେ ବି ତାଙ୍କର କବିତା ପ୍ରକାଶିତ ହୋଇଥିଲା । ତାଙ୍କୁ ଜଣେ ଭଲ ଛାତ୍ରଭାବରେ ପୂରବୀ ଆଗରୁ ଜାଣିଥିଲା, କିନ୍ତୁ ଜାଣି ନ ଥିଲା ସେ କବିତା ଲେଖନ୍ତି ବୋଲି । ବିଜ୍ଞାନର ଛାତ୍ର ହୋଇ ବି ଭଲ କବିତା ଲେଖିବା କ'ଣ କମ୍ କଥା ! ପ୍ରବାଳଙ୍କ ପ୍ରତି ପୂରବୀ ମନରେ ସେହିଦିନରୁ ଆନ୍ତରିକତାର ଗୋଟେ ମୃଦୁ ଆସ୍ତରଣ ଛାଇଯାଇଥିଲା ଯେମିତି !

ତାଙ୍କ ଛୋଟ ସହରର ଏକମାତ୍ର ଘରୋଇ କଲେଜରେ ଫିଜିକ୍ସ ଅଧ୍ୟାପକ ଥିଲେ ତା' ବାପା । ଭଲ ଛାତ୍ରମାନେ ମଝିରେ ମଝିରେ ତାଙ୍କ ବସାଘରକୁ ଆସୁଥିଲେ, ବାପାଙ୍କ ସହିତ ଫିଜିକ୍ସରେ ଜଟିଳ ସୂତ୍ର ସଂପର୍କରେ ଆଲୋଚନା କରୁଥିଲେ । ପ୍ରବାଳଙ୍କୁ ପ୍ରଥମେ ତାଙ୍କ ବସାଘରେ ଭେଟିଥିଲା ପୂରବୀ । ସେତେବେଳେ ସେ ଭାରି ଲାଜକୁଳା ଲାଗୁଥିଲେ । ସମୁଦ୍ରକୂଳିଆ ଗୋଟେ ଦୂର ଗାଁରୁ ଆସି ସେ କଲେଜରେ ନାମ ଲେଖାଇଥିଲେ । ପ୍ରବାଳଙ୍କର ସେବେଳର ଚେହେରା ମନେପଡ଼ିଲେ ଭାରି ହସ ଲାଗୁଥିଲା ତାକୁ । ସେତେବେଳେ ଇନ୍ ନ କରି ପ୍ୟାଣ୍ଟସାର୍ଟ ପିନ୍ଧୁଥିଲେ ସେ । ମୁଣ୍ଡରେ ତେଲ ସରସର ଘଞ୍ଚ କେଶ । ଲମ୍ବା ନାକ ତଳେ ଗଜୁରି ଆସୁଥିବା ନିଶ ତାଙ୍କୁ ଭଲ ମାନୁଥିଲା, ସେ ବୟସରେ । କିନ୍ତୁ ତାଙ୍କ ଚେହେରାରେ ଗୋଟେ ଗାଉଁଲି ଛାପ ବାରି ହୋଇପଡୁଥିଲା । ବାପାଙ୍କ ପ୍ରିୟ ଛାତ୍ର ଭାବରେ ତା'ର ବି ସେ ପ୍ରିୟ ହୋଇଯାଇଥିଲେ ।

ପ୍ରବାଳଙ୍କୁ ବେଶ୍ ଆଦର କରୁଥିଲା ପୂରବୀ । ନିଜ ଅଜାଣତରେ ବି ଗୋଟେ ଆତ୍ମୀୟତାର ଛାଇଆଲୁଅ ଲମ୍ବିଯାଇଥିଲା ତାଙ୍କ ଆଡ଼କୁ । କିନ୍ତୁ ସେ ଆତ୍ମୀୟତା ଥିଲା ଭାରି ୟୁଟୋପିଆନ୍ ଓ କଳ୍ପନା ସ୍ତରରେ ଆବଦ୍ଧ । ସେକେଣ୍ଡ ଇୟର୍ ପରୀକ୍ଷା ସରିଲା ପରେ ପ୍ରବାଳ ଆସିଥିଲେ ତାଙ୍କ ବସାକୁ, ବାପାଙ୍କୁ ଦେଖା କରିବାପାଇଁ । ସେତେବେଳେ ସେ ଭାରି ଖୁସି ଥିଲେ । ରେଜଲ୍ଟ ତାଙ୍କର ଖୁବ୍ ଭଲ ହେବ ବୋଲି ସେ ପ୍ରାୟ ନିଶ୍ଚିତ ଥିଲେ ତ, ସେଇଥିପାଇଁ । କଲେଜରେ ଦୁଇ ବର୍ଷ ପଢ଼ିବା ଭିତରେ ତାଙ୍କର ଗାଉଁଲି ହାବଭାବ ବେଶ୍ ମଳିନ ପଡ଼ିଆସିଥିଲା । ସେ ପ୍ରଥମଥର ପାଇଁ ତା' ସହ କଥା ହୋଇଥିଲା ଓ କଥା ହେଲାବେଳେ ଭାରି ସହଜ ମନେହେଉଥିଲେ । ଗଲାବେଳେ ମଧ୍ୟ ଦେଇଯାଇଥିଲେ ତାଙ୍କ ଗାଁ ଠିକଣା ।

ଲମ୍ବା ଖରାଛୁଟିରେ ଆଲ୍ତାମାଲ୍ତା ଲାଗୁଥିଲା ପୂରବୀକୁ । ଲେକ୍‌ଚରସ୍ କଲୋନୀ କୁହାଯାଉଥିବା କଲେଜ ପଛପଟ ଅଣଓସାରିଆ ଜାଗାରେ ସର୍ବମୋଟ ନ'ଟି କ୍ୱାର୍ଟର୍ସ ଥିଲା ଏବଂ ସେଥିରୁ ଦୁଇଟିରେ ତାଲା ଝୁଲୁଥିଲା, କାରଣ ଦୁଇଟି ଅଧ୍ୟାପକ ପରିବାର ଖରାଛୁଟି କାଟିବାପାଇଁ ଓଡ଼ିଶା ବାହାରକୁ ଚାଲିଯାଇଥିଲେ । ସକାଳୁ ସଞ୍ଜଯାଏ ହଇଚଇ ହଉଥିବା କଲେଜ ପରିସର ମଶାଣି ପରି ଖାଇ ଗୋଡ଼ଉଥିଲା । ମଣିଷ ବିନା କାନ୍ଥବାଡ଼ ସବୁ କେତେ ଯେ ନିର୍ଜୀବ, ପ୍ରଥମକରି ହେଜିଥିଲା ପୂରବୀ । ଏମିତି କିଛି କାମ ନ ଥାଇ ଏଣୁତେଣୁ ଭାବୁଥିଲାବେଳେ ପ୍ରବାଳ ତା'ର ଭାରି ମନେପଡ଼ିଥିଲେ । ତା' ଇଚ୍ଛା ହୋଇଥିଲା, ତାଙ୍କୁ ଚିଠି ଖଣ୍ଡେ ଦବାପାଇଁ, ତାଙ୍କ ଗାଁ ଠିକଣାରେ । ଚିଠି ଦବ କି ନାହିଁ, ପ୍ରଥମରୁ ସେ ଦ୍ୱନ୍ଦ୍ୱରେ ପଡ଼ିଗଲା । କାହିଁକି ବା ସେ ଚିଠି ଲେଖିବ, ପୁଣି କ'ଣ ବା ଲେଖିବ ? ତା'ଛଡ଼ା ଚିଠି ଲେଖିଲେ କାଳେ କିଏ କ'ଣ ଭାବିବ ?

ପ୍ରବାଳ ଗଲାବେଳେ ଠିକଣା ଦେଇଗଲେ ସତ, ହେଲେ ଚିଠିଦବାପାଇଁ ତ କହିଲେ ନାହିଁ । ବାପାଙ୍କର ଏମିତିରେ ତ କେତେ ଛାତ୍ର ଅଛନ୍ତି ଓ ପ୍ରବାଳ ସେମାନଙ୍କ ଭିତରୁ ଜଣେ, ତେଣୁ ତାଙ୍କୁ ଚିଠି ଦବା ଉଚିତ ହବ କି ନାହିଁ, ଭାବୁ ଭାବୁ ଚିଠି ଲେଖିବ ବୋଲି ଆରମ୍ଭ କରିଦେଇଥିଲା ପୂରବୀ । ଖୁବ୍ ସଂକ୍ଷେପରେ ଲେଖିବ ବୋଲି ପୃଷ୍ଠାଏ କ'ଣ ସବୁ ଲେଖିଗଲା ସେ– ପାଠପଢ଼ା, ଛୁଟି, ଘର ଆଉ ଏମିତି କେତେ କଥା । ତେବେ ସେ ସମ୍ବୋଧନ କରିଥିଲା ପ୍ରବାଳଭାଇ ବୋଲି, କୌଣସି ବିଶେଷଣ ନ ଲଗାଇ । ଚିଠି ଶେଷରେ ଲେଖିଥିଲା ଖାଲି ନାଁଟି ତା'ର– ଫାଙ୍କା ଫାଙ୍କା ।

ପୂରବୀର ଏହା ଥିଲା ପ୍ରଥମ ଚିଠିଲେଖା । ତା' ପୂର୍ବରୁ ସେ ଯାହା ରଚନା ଖାତାରେ ପତ୍ରଲିଖନ ପର୍ଯ୍ୟାୟରେ ଚିଠି ଲେଖିଥିଲା । ଗାଁରେ ଥିଲାବେଳେ ଥରେ ଦୁଇ ଥର ତିଳ ନୂଆବୋଉଙ୍କ ପାଇଁ ଚିଠି ଲେଖିଥିଲା, କଲିକତାରେ ଥିବା ରାମଭାଇଙ୍କ ପାଖକୁ । ଅଷ୍ଟମ ଶ୍ରେଣୀ ପଢ଼ିଲା ପର୍ଯ୍ୟନ୍ତ ସେ ଗାଁରେ ରହୁଥିଲା ଜେଜେମାଙ୍କ ପାଖରେ । ଜେଜେମା ତାକୁ ଖୁବ୍ ଭଲ ପାଉଥିଲେ । ସେଥିଲାଗି ବାପା ବୋଉଙ୍କ ସାଙ୍ଗରେ ତାକୁ ସହରକୁ ନ ପଠାଇବାକୁ ଏକପ୍ରକାର ଜିଦ୍ ଧରିଥିଲେ । ଗାଁ ପ୍ରତି ପୂରବୀର ଅନ୍ତରଙ୍ଗ ଆକର୍ଷଣ ଥିଲା ପିଲାଟିବେଳୁ । ପଡ଼ିଶାଘରର ରାମଭାଇ ସେତେବେଳେ କଲିକତାରେ ରହୁଥିଲେ । ତିଳ ନୂଆବୋଉ ଅପାଠୋଇ ହୋଇଥିବାରୁ ତାଙ୍କ ତରଫରୁ ସେ ଚିଠି ଲେଖୁଥିଲା ରାମଭାଇଙ୍କ ପାଖକୁ ।

ରୋଷେଇବାସ ସାରି ଶାଶୂ-ଶଶୁର ଓ ଅନ୍ୟମାନଙ୍କୁ ଖାଇବାକୁ ଦେଲା ପରେ ତିଳ ନୂଆବୋଉ ପୂରବୀକୁ ଡକେଇ ପଠଉଥିଲେ । ନିରୋଳରେ ବସି ଚିଠି ଲେଖିଦବାପାଇଁ କହୁଥିଲେ ତାକୁ । ଶାଶୂ-ଶଶୁରଙ୍କ ଦେହପା'ଠାରୁ ଜମିବାଡ଼ି, ଦୁଧିଆଳୀ ଗାଈର ଉତ୍ପାତ, ଦୋଳଯାତରାକୁ ଦାସକାଠିଆ ପର୍ଯ୍ୟନ୍ତ ସବୁକଥା ଡାକି ଦେଉଥିଲେ ତିଳନୂଆବୋଉ ଏବଂ ସେ ତା' ରଚନା ଖାତାରୁ କାଗଜ ଚିରି ଚିଠି ଲେଖୁଥିଲା । ରାମଭାଇଙ୍କ ଭଲମନ୍ଦ ଓ ତାଙ୍କ ଦେହପା' କଥା ଲେଖିବାକୁ କହିଲାବେଳେ ଭାରି ଲାଜେଇ ଯାଉଥିଲେ ନୂଆବୋଉ । ରଜକୁ ଆସିବାପାଇଁ ଲେଖିବାକୁ କହିଲାବେଳେ ସେମିତି ବି ଶଙ୍କିଯାଉଥିଲେ ସେ । ସେହି ଚିଠି ସବୁର ଅର୍ଥ କ'ଣ, ପୂରବୀ ସେତେବେଳେ ବୁଝିପାରୁ ନ ଥିଲା । ଏବେ ମନେପଡ଼ିଲେ ସେଇ ଚିଠିଗୁଡ଼ିକର ସ୍ମୃତି ବଡ଼ ପୁଲକିତ କରୁଥିଲା ତାକୁ । କେତେ ସ୍ନେହ-ସୋହାଗରେ ଭରପୂର ଥିଲା ଚିଠି ସବୁ । ରାମଭାଇଙ୍କ ପାଖରୁ ବି ଚିଠିର ଉତ୍ତର ଫେରୁଥିଲା, ସପ୍ତାହେ ଦି'ସପ୍ତାହ ଭିତରେ । ଛଟାମଟା ଅକ୍ଷରରେ ସେହି ଚିଠିକୁ କଷ୍ଟେମଷ୍ଟେ ସେ ପଢ଼ି ଶୁଣାଉଥିଲା ତିଳ ନୂଆବୋଉଙ୍କୁ ଖାଁ ଖାଁ ଖରାବେଳେ ।

ଦୂରରୁ ଯେମିତି ମନେହୁଏ, କଲିକତା ହୁଏତ ସେମିତି ନୁହେଁ । ବଦଳି କାମ ଥିଲା ରାମଭାଇଙ୍କର, ଖିଦିରପୁର ଡକ୍‌ରେ । କେହି ଛୁଟିରେ ଗଲେ ସେ କାମ ପାଉଥିଲେ, ନ ହେଲେ ନାହିଁ । ଚିହ୍ନାଜଣା ଓଡ଼ିଆ ଲୋକଙ୍କ ବସାରେ ରହୁଥିଲେ । କାମ ନ ଥିଲେ ରୋଷେଇ କରୁଥିଲେ ଅନ୍ୟମାନଙ୍କ ପାଇଁ । ଏମିତି କଲିକତାର କଷଣରେ ଭର୍ତ୍ତିହୋଇଥାଏ ରାମଭାଇଙ୍କ ଚିଠି । ତଥାପି ତାଙ୍କ ଚିଠିରେ ଥାଏ ଚିଠିଏ ଆନ୍ତରିକତା । ରଜକୁ ଆସିଲାବେଳେ ଅଧେ କଲିକତା କିଣିଆଣିବା ପାଇଁ ବି ଥାଏ ମିଠା ପ୍ରତିଶ୍ରୁତି ।

ଖୁବ୍ କମ୍‌ଦିନ ଭିତରେ କିନ୍ତୁ ପ୍ରବାଳଙ୍କଠାରୁ ଚିଠିଟେ ପାଇଥିଲା ପୂରବୀ । କବିମାନେ ଯେ ପ୍ରଗଲ୍‌ଭ ଚିଠି ପଢୁ ପଢୁ ତା'ର ହୃଦ୍‌ବୋଧ ହୋଇଥିଲା । ପ୍ରବାଳଙ୍କ ଅକ୍ଷର ଥିଲା ଖୁବ୍ ସୁନ୍ଦର, ପୋଖତ ମଧ୍ୟ । ତାଙ୍କ ଗାଁ ପାଖ ଝାଉଁବଣ, ତାଙ୍କ ଘରକୁ ଶୁଭୁଥିବା ସମୁଦ୍ରର ସ୍ୱର, ନଈକୂଳର ଦୃଶ୍ୟ, ପୁଣି ଆମ୍ବତୋଟାରେ କୋଇଲିର କୁହୁଗୀତ – କିଛି ବାଦ୍ ପଡ଼ି ନ ଥିଲା ତାଙ୍କ ଚିଠିରୁ । ମନଦେଇ ପାଠପଢ଼ିବାପାଇଁ ଉପଦେଶଟେ ବି ଲାଖିରହିଥିଲା ଚିଠିର ଶେଷଭାଗରେ । ଥରେ ଦି'ଥର ନୁହେଁ, ଅନେକଥର ସେ ଚିଠିକୁ ପଢ଼ିଥିଲା ପୂରବୀ ଏବଂ ଯେତେଥର ପଢୁଥିଲା ତାକୁ ନୂଆ ନୂଆ ଲାଗୁଥିଲା ଯେମିତି ସେ ଚିଠିର ଭାଷା । ଢେର୍ ଦିନ ପର୍ଯ୍ୟନ୍ତ ସେ ଚିଠିଟି ଗୋଟେ ନିଆରା ସ୍ମୃତିହୋଇ ଝୁଲିରହିଥିଲା ତା' ଛାତି ଭିତରେ ।

ରେଜଲ୍ଟ ବାହାରିଲା ପରେ ପ୍ରବାଳ କଲେଜକୁ ଆସିଥିଲେ ଏବଂ ସେଠି ବାପାଙ୍କୁ ଦେଖାକରି ଫେରିଯାଇଥିଲେ । ଭଲ ରେଜଲ୍ଟ କରିଥିବାରୁ ତାଙ୍କୁ ଅଭିନନ୍ଦନ ଜଣାଇବାପାଇଁ ପୂରବୀ ମନେ ମନେ ଭାବିଥିଲା, ହେଲେ ସେ ତାଙ୍କ ବସାକୁ ଆସି ନ ଥିଲେ । ପ୍ଲସ୍ ଥ୍ରି କ୍ଲାସରେ ଆଡ଼ମିଶନ୍ ନେଇଥିଲେ ରେଭେନ୍ସାରେ । କିନ୍ତୁ ପ୍ରଥମ ଚାନ୍ସରେ ଆଇ.ଆଇ.ଟି. ପାଇ ସେ ଚାଲିଯାଇଥିଲେ କାନପୁର । ବାପାଙ୍କର ବଶମ୍ବଦ ଛାତ୍ରଭାବରେ ତାଙ୍କ ପାଖକୁ ମଝିରେ ମଝିରେ ସେ ଫୋନ୍ କରୁଥିଲେ । ପୂରବୀ ଥରେ ଅଧେ ତାଙ୍କ ଫୋନ୍ ଧରିଥିବ ଏବଂ ଏଣୁତେଣୁ କଥା ହେଇଥିବ, ଚିଠି ଦବାପାଇଁ ବି କହିଥିବ । ପ୍ରବାଳ ହଁ ହାଁ କରୁଥିଲେ ବି କେବେ ଚିଠି ଦେଉ ନ ଥିଲେ । କେବଳ ଫୋନ୍ ଭିତରେ ସୀମିତ ହୋଇଯାଇଥିଲା ସଂପର୍କ । ଚିଠି ଦବାପାଇଁ ତାଙ୍କ ପାଖରେ ସତରେ କ'ଣ ସମୟ ନ ଥିଲା ?

ପ୍ରବାଳଙ୍କ ସାଥିରେ ତା'ର ବାହାଘର ପ୍ରସ୍ତାବ ପଡ଼ିଥିବା କଥା ବଡ଼ ଚତୁରତାର ସହ ଶେଷପର୍ଯ୍ୟନ୍ତ ଏଡ଼େଇ ଚାଲିଥିଲେ ବାପା । ଏକଥା ଜାଣିଲା ପରେ ସେ ଆପତ୍ତି କରିବାର କିଛି କାରଣ ନ ଥିଲା ବରଂ ସେ ଖୁସିହୋଇଥିଲା ଏବଂ କଲେଜ କଥା ତା'ର ବେଶି ବେଶି ମନେପଡ଼ିଥିଲା । ସେତେବେଳପର୍ଯ୍ୟନ୍ତ ପ୍ରବାଳଙ୍କର ସେ

ପୁରୁଣା ଚିଠି ତା' ପାଖରେ ଥିଲା । ବାହାଘରର ହଇଚଇ ଭିତରେ କ'ଣ ହେଲା କେଜାଣି, ପୂରବୀ ସେ ଚିଠିଟି ଆଉ ଖୋଜି ପାଉ ନ ଥିଲା । କିନ୍ତୁ ପ୍ରବାଳଙ୍କୁ ଚିଠି ବିଷୟରେ ମନେପକାଇଦେଇ ସେ ବେଶ୍ ଖୁସିହେଉଥିଲା । ଷୋହଳ ସତରବର୍ଷ ବୟସ ବେଳର ସେଇ ଚିଠି କଥା ଭାବି କେତେ ପୁଲକିତ ହୋଇଥିଲେ ପ୍ରବାଳ, ସେ ଜାଣିପାରି ନ ଥିଲା । ପଚାରି ବି ନ ଥିଲା ତା' ଚିଠି ତାଙ୍କ ପାଖରେ ଅଛି କି ନାହିଁ ।

ବାହାଘରର ଅଷ୍ଟମଙ୍ଗଳା ପରଦିନ ପ୍ରବାଳ ବାହାରିଲେ ଫେରିଯିବାପାଇଁ ବମ୍ବେ । ଆଗରୁ ସେହି ଅନୁସାରେ ସବୁ ବନ୍ଦୋବସ୍ତ ହୋଇଥିଲା । ଅଷ୍ଟମଙ୍ଗଳା ନ ଗଲେ କୁଆଡ଼େ ବରକନ୍ୟା ବାହାରକୁ ଯିବା ବିଧି ନୁହେଁ- ସେଥିଲାଗି ପ୍ରବାଳ ଭିଡ଼ିମୋଡ଼ି ହୋଇ ବାହା ଆଠଦିନ ଗାଁରେ ରହିଥିଲେ । କମ୍ପାନୀ ଚାକିରି- ସରକାରୀ ଚାକିରି ନୁହେଁ ଯେ ଯିଏ ଯେତେଦିନ ଚାହିଲେ ଛୁଟି ନେଇପାରିବ । ପ୍ରବାଳଙ୍କ ସାଙ୍ଗରେ ପୂରବୀ ମଧ ଭୁବନେଶ୍ୱର ଆସିଥିଲା । ସେଠୁ ବମ୍ବେ ଫ୍ଲାଇଟ୍ ଧରିଥିଲେ ପ୍ରବାଳ । ବାଟରେ ଆସିଲା ବେଳେ ପୂରବୀ କହିଲା, ''ଦେଖ, ତମେ ବମ୍ବେରେ ପହଞ୍ଚି ଘରକୁ ଫୋନ୍ କରିବ । ତା'ପରେ ଚିଠି ଦବ ଗାଁ ଠିକଣାରେ । ଦୁଇତିନିଦିନ ପରେ ମୁଁ ତମ ଗାଁକୁ ଫେରିଯିବି ବୋଲି ଶାଶୂଙ୍କୁ କହିଆସିଛି ।'' ଏକଥା ଶୁଣି ପ୍ରବାଳ କହିଥିଲେ, ''ମୋତେ ଚିଠିଫିଠି କଥା କୁହ ନାହିଁ- ଫୋନ୍ କରିଦେବି ତମ ପାଖକୁ । ମୁଁ ତ ଚାରିପାଞ୍ଚଦିନ ପରେ ଫେରିଆସିବି- ସାଥି ହୋଇ ବମ୍ବେ ଯିବା ।'' ପୂରବୀ ଆଉ କିଛି କହିଲା ନାହିଁ । ଚିଠି ପ୍ରତି ତା'ର ଦୁର୍ବଳତା କଥା ହୁଏତ ପ୍ରବାଳ ବୁଝିପାରୁ ନ ଥିଲେ ।

ପୂରବୀକୁ ଲାଗୁଥିଲା, ପ୍ରବାଳ ୟା' ଭିତରେ ଢେର୍ ବଦଳିଯାଇଛନ୍ତି ଯେମିତି ! କମ୍ପ୍ୟୁଟର ସହ ଭାବଦୋସ୍ତିକରି ସେ ଆଉ ଭାବପ୍ରବଣତା ହରେଇ ନାହାନ୍ତି ତ ? କିନ୍ତୁ ତା'ର ଇଚ୍ଛା ହେଉଥିଲା ସେ ପ୍ରବାଳଙ୍କ ପାଖକୁ ଚିଠି ଲେଖନ୍ତା ଓ ଚିଠିର ଉତ୍ତର ଫେରନ୍ତା ଅବିଳମ୍ବେ । ତିଳ ନୂଆବୋଉଙ୍କ ଚିଠି ପରି ଭାରି ଆତ୍ମୀୟତାରେ ଭିଜିଥା'ନ୍ତା ସେ ଚିଠି । ଗୋଟେ ଚିଠି ଲେଖିବାପାଇଁ ସେ ଅନ୍ତତଃ ଦୁଇ ଦିନିଟା ନିରୋଳା ଅପରାହ୍ନ ବିତାନ୍ତା । ଯାହା କହି ନ ପାରୁଛି କଥାରେ, ସେକଥା ଲେଖିଦିଅନ୍ତା ଚିଠିରେ । ଚିଠିରେ କେତେ ଅଭିମାନ ଓ ଆଡ଼ବୁଝାର ପ୍ରଲେପ ଦିଅନ୍ତା । ତା'ର ମାନ ଭାଙ୍ଗିବାପାଇଁ ପ୍ରଗଲ୍‌ଭ ହୋଇପଡ଼ନ୍ତେ ପ୍ରବାଳ । ଆଃ.... କେଡ଼େ ଭଲ ନ ଲାଗନ୍ତା ସତେ ! ଜୀବନରେ ମିଛିମିଛିକା ଲୁଚକାଳି ଖେଳିବାକୁ କ'ଣ ସତରେ ଭଲଲାଗେନି ?

କିନ୍ତୁ ଚିଠି ବିଷୟରେ ବଡ଼ ନିରାସକ୍ତ ମନେହେଉଥିଲେ ପ୍ରବାଳ । ବମ୍ବେରୁ ନା ଚିଠି ଆସିଲା ନା ଫୋନ୍ । ଆଠଦିନ ପରେ କିନ୍ତୁ ଖୋଦ୍ ପ୍ରବାଳ ଆସି ପହଞ୍ଚିଗଲେ

ଘରେ । ପହଞ୍ଚୁ ପହଞ୍ଚୁ କହିଲେ- ବମ୍ବେ ଯିବାପାଇଁ ପ୍ରସ୍ତୁତ ହେଇଯାଅ । ପ୍ରସ୍ତୁତ ଆଉ କ'ଣ ଦୁଇଟି ଆଟାଚି ଓ ଗୋଟେ ଏୟାର ବ୍ୟାଗ୍‌ରେ ଭିର୍ତ୍ତିକରାଗଲା ଜିନିଷପତ୍ର । ତାଙ୍କୁ ତ କମ୍ପାନୀ ତରଫରୁ ୱେଲ୍ ଫର୍ଣ୍ଣିସ୍‌ଡ଼ ଫ୍ଲାଟ୍ ମିଳିଥିଲା । ଏତେ ଦୂରରୁ ଅଧିକ କିଛି ନବାର ଆବଶ୍ୟକତା ବି ନ ଥିଲା । ବମ୍ବେ ଯାଇ କାହିଁକି ଚିଠି ଦେଲନି କି ଫୋନ୍ କଲନି ବୋଲି ପ୍ରବାଳଙ୍କୁ ପଚାରିଥିଲା ସେ । କଥାଟାକୁ କିନ୍ତୁ ଖୁବ୍ ହାଲୁକା ଭାବରେ ନେଇଥିଲେ ପ୍ରବାଳ । ତାଙ୍କର ସଂକ୍ଷିପ୍ତ ଉତ୍ତର ଥିଲା, 'ସମୟ ହେଲାନି' । ବାସ୍... ଆଉ କିଛି ସେ ବିଷୟରେ ସେ ଆଲୋଚନା କରିବାକୁ ଚାହି ନ ଥିଲେ । ମୋଟ କଥା ହେଲା, ଚିଠି ଦେବାପାଇଁ ତାଙ୍କର ଆଦୌ ଆଗ୍ରହ ନ ଥିଲା । ଇଣ୍ଟରନେଟ୍ ଯୁଗରେ ଚିଠି ପରି ଏକ ମଧ୍ୟଯୁଗୀୟ ମାଧ୍ୟମକୁ ସେ ବୋଧେ ପସନ୍ଦ କରୁ ନ ଥିଲେ ।

ପୂରବୀ ଆଉ ସେକଥା ଉଠେଇ ନ ଥିଲା । ବମ୍ବେରେ ପ୍ରବାଳ ଅଫିସ୍ ଯିବା ସମୟତକ ଖୁବ୍ ଏକୁଟିଆ ଲାଗୁଥିଲା ତାକୁ । କେତେ ସମୟ ସେ ଏକା ଏକା ଟିଭି ଦେଖିବ, ନ ହେଲେ କମ୍ପ୍ୟୁଟରରେ ମାତିବ ! ତା'ର ଇଚ୍ଛା ହେଲା, ଘରକୁ ଚିଠିଦବାପାଇଁ । ସେ ବୋଉ ପାଖକୁ ଚିଠି ଖଣ୍ଡେ ଲେଖିଲା । ଭାବିଲା, ଅନ୍ତତଃ ଚିଠି ଲେଖାରେ କଛି ସମୟ ଯାଉ । ବୋଉ ପାଖରୁ କିନ୍ତୁ ଚିଠିର ଉତ୍ତର ଆସିଲା ନାହିଁ- ଆସିଲା ଫୋନ୍ । ବୋଉ କହିଲା, ତୋ ଚିଠି ପାଇଛି ଯେ, ହେଲେ ହେଳାରେ ଚିଠିଖଣ୍ଡେ ଲେଖିପାରୁନି । ଫୋନ୍‌ରେ ତ ସବୁ ଦୁଃଖସୁଖ ହୋଇପାରୁଛି, ଆଉ ଅଧିକା କ'ଣ ଲେଖିବି ଚିଠିରେ ? ବୋଉ କଥା ଶୁଣିଲା ପରେ ପୂରବୀ ଭାଉଜଙ୍କ ପାଖକୁ ଚିଠିଟେ ଲେଖିବ ବୋଲି ଯୋଉ ଭାବିଥିଲା, ଆଉ ଲେଖିଲା ନାହିଁ । ଭାଇଭାଉଜ ଦି'ଜଣଯାକ ତ ଚାକିରିରେ, ଚିଠି ପଢ଼ିବାକୁ ତାଙ୍କର ଫୁରସତ୍ ନ ଥିବ । ଚିଠି ଲେଖିବାକୁ ବା କାହୁଁ ତର ହେବ ସେମାନଙ୍କୁ !

ଟେଲି-ଯୋଗାଯୋଗର ବ୍ୟାପକତା ଦୂରତାକୁ କମେଇଦେଉଛି ନା ବଢ଼େଇ ଦେଉଛି, ପୂରବୀ ପ୍ରଶ୍ନ କଲା ନିଜକୁ । ଫୋନ୍‌ରେ ଇଣ୍ଟରନେଟ୍‌ରେ ମନକଥା କ'ଣ ସବୁ ଖୋଲି କହିହୁଏ, ଯେମିତି ଲେଖିହୁଏ ଚିଠିରେ ? ଚିଠି କେତେବେଳେ ଲୁହରେ ଭିଜିଥାଏ ତ କେତେବେଳେ ମନତଳର କୋହ ଲହଡ଼ି ଭାଙ୍ଗୁଥାଏ କାଗଜର ଛାତିରେ । କେତେବେଳେ ପୁଣି ଅଦିନ ବଉଳର ବାସ୍ନାରେ ମହକୁଥାଏ ନୀଳ ଲଫାପାଟେ । ସେସବୁ ଭାବପ୍ରବଣତା କାହିଁକୁଆଡ଼େ ହଜିଗଲାଣି ଯେମିତି ! ସବୁଆଡ଼େ ଆତ୍ମୀୟତାର ବଡ଼ ମହରଗ, ତୁଚ୍ଛା ଫର୍ମାଲିଟିରେ ଚାଲିଛି ସାରା ଦୁନିଆ । ନୂଆବର୍ଷରେ ଶୁଭେଚ୍ଛା ବାର୍ତ୍ତା ପତ୍ରଟେ ପଠେଇଲାବେଳେ ବି କିଛି ଲେଖିବାର ଦରକାର ପଡୁ ନାହିଁ, ସତେ ଯେମିତି କାର୍ଡ଼ କମ୍ପାନୀଦ୍ୱାରା ମୁଦ୍ରିତ ଶୁଭେଚ୍ଛା ବାର୍ତ୍ତା ଭାବପ୍ରକାଶ ପାଇଁ ଯଥେଷ୍ଟ । ଶୁଭେଚ୍ଛା ବାର୍ତ୍ତାଟିକୁ ଟେଲିଗ୍ରାମ୍‌ରେ ପଠାଇବାକୁ

ହେଲେ ଦଶପ୍ରକାର ଲେଖାରୁ ଗୋଟେ ବାଛିଦେଲେ ହେଲା । ମନରୁ ପଦେ ଲେଖିବାର ଆବଶ୍ୟକତା ଆଉ ପଡୁ ନାହିଁ କୋଉଠି । ମନ ଯେମିତି ଆଜିକାଲି ନିହାତି ଗୋଟେ ଅଦରକାରୀ ଚିଜ !

ପୂରବୀ ବମ୍ବେ ଆସିଲା ପରେ ପଡ଼ିଥିଲା ପ୍ରଥମାଷ୍ଟମୀ । ନୂଆ ବାହାହୋଇଥିବା ଝିଅବ୍ରାଇଁଙ୍କୁ ପ୍ରଥମାଷ୍ଟମୀରେ ନୂଆ ଲୁଗାପଟା ଓ ଭାରଥୋଉର ଦବା କଥା । ପ୍ରଥମାଷ୍ଟମୀର ଦୁଇ ତିନିଦିନ ପୂର୍ବରୁ ପ୍ରବାଳଙ୍କ ଅଫିସ୍ ଠିକଣାରେ ବାପା ଦଶହଜାର ଟଙ୍କାର ଗିଫ୍ଟ ଚେକ୍‌ଟେ ପଠେଇଥିଲେ । ପୂରବୀ ଭାବିଥିଲା, ପ୍ରଥମାଷ୍ଟମୀକୁ ବାପା ନ ହେଲେ ଭାଇ, କେହି ଜଣେ ବମ୍ବେ ଆସିବେ ନିଶ୍ଚେ– କିନ୍ତୁ ଗିଫ୍ଟ ଚେକ୍ ପଠେଇଦେଇ ବାପା ତାଙ୍କ କର୍ତ୍ତବ୍ୟ ସାରିଦେଲେ ବୋଲି ହୁଏତ ଭାବିଥିବେ । ଗିଫ୍ଟ ଚେକ୍ ପାଇ ପୂରବୀ ଖୁସି ହବାର ଅଭିନୟ କଲା ସିନା, ମନ ଭିତରେ ଖୁସି ହୋଇପାରିଲା ନାହିଁ ।

ବାପା କିନ୍ତୁ ତାଙ୍କ ଭଉଣୀଘରକୁ ଭାରଥୋଉର ନେଇ ନିଜେ ଯାଇଥିବା କଥା ତା' ଝିଅଦିନେ ଗପିଥିବେ ଅନେକ ଥର । ଥରେ ରଜ ବେଳକୁ କେତେ କଷ୍ଟରେ ଯାଇ ସେ ସାନ ପିଉସୀ ଘରେ ପହଞ୍ଚିଥିଲେ, ସେ କାହାଣୀ ତ ଅନେକ ସମୟରେ ଦୋହରାଉଥିଲେ । ଆମ୍ବ ପଣସ ଭାର ସାଙ୍ଗରେ ସେ ଯାଇଥିଲେ କୁଣିଆ ସାଜି । ସକାଳୁ ଘରୁ ବାହାରିଥିଲେ ଯେ ସଞ୍ଜ ଉତାରେ ଯାଇ ପହଞ୍ଚିଥିଲେ ପିଉସୀଙ୍କ ଗାଁରେ । ପିଉସୀଙ୍କ ଶାଶୂଘର କୋଉ ତଳମାଳ ଅଞ୍ଚଳରେ । ଦଣ୍ଡାହିଡ଼ ପରି ରାସ୍ତାରେ କୋଡ଼ିଏ ମାଇଲ୍ ଚାଲି ଚାଲି ଯିବାକୁ ପଡ଼େ । ଗୋଟେ ଗହୀର ପାଟ ଓ ଦି'ଟା ନଈ ବି ପାରିହବାକୁ ହୁଏ । ଅଷାଢୁଆ ବର୍ଷାରେ ପଚପଚ କାଦୁଅ ଭରିଯାଉଥିଲା ଗାଁ ରାସ୍ତାରେ ସେତେବେଳେ । ସେଇ ଚିକିଟା କାଦୁଅକୁ ବେଖାତିର କରି ଭାରିଆ ସାଙ୍ଗରେ ଭାଇ ଯାଉଥିଲା ଭଉଣୀ ଘରକୁ । ସେସବୁ ଆଉ କୋଉ କାଳର କଥା ! ଖୁବ୍ କମ୍ ଦିନ ଭିତରେ ଯେମିତି ବଦଳିଗଲା ପୃଥିବୀ, ବଦଳିଗଲା ସାମାଜିକ ରୀତିନୀତି ! ଭାରଥୋଉର ରୂପାନ୍ତରିତ ହୋଇଗଲା ଗିଫ୍ଟ ଚେକ୍‌ରେ । ପୂରବୀ ଭାବିଥିଲା, ବାପାଙ୍କୁ ମନେପକେଇଦବ ସେକଥା ସବୁ– କିନ୍ତୁ ବାପାଙ୍କ ପାଖକୁ ସେ ଫୋନ୍ କଲା ନାହିଁ; ଚିଠି ବି ଲେଖିଲା ନାହିଁ, କାଳେ ବାପାଙ୍କ ମନରେ ଆଘାତ ଲାଗିବ !

ନିଉୟର୍କ ଯିବା ପୂର୍ବ ରାତିରେ ପୂରବୀ ଚିଠିଦବାପାଇଁ ଏକପ୍ରକାର ଅଳି କରିଥିଲା ପ୍ରବାଳଙ୍କ ପାଖରେ, 'ତମେ ତ ଫୋନ୍ କରିବ ନିଉୟର୍କରୁ ଇଣ୍ଟରନେଟ୍‌ରେ ବାର୍ତ୍ତା ବି ପଠେଇବ, ତା'ସଙ୍ଗେ ସଙ୍ଗେ ଚିଠି ବି ଲେଖିବ ମୋ ପାଖକୁ । ତମ ଚିଠି ପାଇଲେ ମୁଁ କାହିଁରେ କେତେ ଖୁସିହେବି ।' ପ୍ରବାଳ କିନ୍ତୁ ପୂରବୀର ପ୍ରଗଲ୍‌ଭତା ଶୁଣି ବି ଶୁଣୁ ନ ଥିଲେ । ତଥାପି ପୂରବୀ ପଚାରିଥିଲା,

'ତମେ କାଳିଦାସଙ୍କ ମେଘଦୂତ ପଢ଼ିଛ ? ଜାଣିଛ, କେମିତି ବିରହୀ ଯକ୍ଷ ତା' ପ୍ରିୟତମା ପାଖକୁ ମେଘ ହାତରେ ଚିଠି ପଠାଉଥିଲା ? ମେଘ ତ ଏମିତି ବି ରୋମାଣ୍ଟିକ୍ ! ପୁଣି କାଳିଦାସଙ୍କ କବିତାରେ ମେଘ ଆହୁରି ରୋମାଣ୍ଟିକ୍ ! ଜାଣିଛ, କାଳିଦାସ ନିଜେ ଯକ୍ଷ ପାଇଟିଯାଇଥିଲେ ମେଘଦୂତ ଲେଖୁଲେଖୁ ?' ପୂରବୀର କଥା ଶୁଣି ପ୍ରବାଳ ଖାଲି ହସିଥିଲେ ଓ କହିଥିଲେ, 'ସେ ସମୟ ଓ ଏ ସମୟ ଭିତରେ କେତେ ତଫାତ୍, ତୁମେ ବୁଝିଛ ?' ପୂରବୀ ଆଉ ଯୁକ୍ତି କରି ନ ଥିଲା ପ୍ରବାଳଙ୍କ ସାଙ୍ଗରେ, ହେଲେ ନିଜ ଅଳିରୁ ଓହରି ନ ଥିଲା ମଧ୍ୟ ।

ପ୍ରବାଳଙ୍କଠୁଁ କିନ୍ତୁ ଚିଠି ଆସୁ ନ ଥିଲା, ଆସୁଥିଲା ଫୋନ୍ । କମ୍ପ୍ୟୁଟର ଖୋଲିଲେ ପୁଣି ମିଳୁଥିଲା ତାଙ୍କ ମେସେଜ୍ । ଫୋନ୍‌ରେ ପ୍ରବାଳଙ୍କ କଥା ଥିଲା ମପାଚୁପା । ଆଉ ଇଣ୍ଟରନେଟ୍ ମେସେଜ୍ ଥିଲା ଖୁବ୍ ସଂକ୍ଷିପ୍ତ । ମେସେଜ୍ କ'ଣ କେବେ ଚିଠି ହୋଇପାରେ ? ପୂରବୀ ଏକଦମ ବୋର୍ ହୋଇଯାଉଥିଲା ଓ ଚିଠି ଦବାପାଇଁ ତାଗିଦ୍ କରୁଥିଲା ଫୋନ୍‌ରେ । ଦିନେ ସେ କହିଲା– ଦେଖ, ମୁଁ ଚିଠି ଦେଲେ ତମେ ଯଦି ଉତ୍ତର ନ ଦବ, ମୁଁ ତମ ଗାଁକୁ ଚାଲିଯିବି, ନ ହେଲେ ଫୋନ୍ ଡେଡ୍ କରିଦେବି । ସେତିକି ଖାଲି କହିଲା ନାହିଁ, ତା'ପରଦିନ ସତକୁ ସତ ସେ ରିସିଭର୍‌ଟା ଉଠେଇ ଥୋଇଦେଲା ଟେବୁଲ୍ ଉପରେ ।

ସେଦିନ ଉପରଓଳି ପୂରବୀ ବାଲ୍‌କୋନିରେ ବସିଲା ନିରୋଳାରେ, ସମୁଦ୍ରକୁ ଚାହିଁଲା, ଆକାଶକୁ ଦେଖି କ'ଣ ସବୁ ଭାବିଗଲା ଓ ତା'ପରେ ଚିଠିଲେଖା ଆରମ୍ଭ କଲା । ଗୋଟିଏ ଓଳିରେ ତା'ର ଚିଠିଲେଖା ସରିଲା ନାହିଁ । ଆଉ କେତେ ଅଳସ ମୁହୂର୍ତ୍ତ ସେ ବିତେଇଲା ଚିଠିଲେଖାରେ । ଖୁବ୍ ସୁନ୍ଦର ହସ୍ତାକ୍ଷରରେ ଭରିଗଲା ଦୁଇପୃଷ୍ଠାର କାଗଜ । ଅନେକ ଦିନ ପରେ ପୁଣି ତା'ର ମନେପଡ଼ିଲା, ତିଳ ନୂଆବୋଉଙ୍କ ତରଫରୁ ରାମଭାଇଙ୍କ ପାଖକୁ ଚିଠିଲେଖା କଥା । ମନେପଡ଼ିଲା ଭାରି କଲେଜ କଲୋନୀରୁ ପ୍ରବାଳଙ୍କୁ ଲେଖିଥିବା ତା' ପ୍ରଥମ ଚିଠି କଥା । ଚିଠି ଲେଖିସାରିଲାପରେ ତାକୁ କାହିଁ କେତେ ଉଶ୍ୱାସ ଲାଗିଲା । କାଗଜ ଉପରେ ମନକୁ ନିଗାଡ଼ିଦେଲେ କେତେ ଭଲ ନ ଲାଗେ ସତେ! ତା' ପରଦିନ ସେ ଚିଠି ପୋଷ୍ଟ କରିଦେଲା ପ୍ରବାଳଙ୍କ ନିଉୟର୍କ ଠିକଣାରେ ।

ଦିନକ ପରେ ପୂରବୀକୁ ଲାଗିଲା, ସେ ଯେମିତି ଖୁବ୍ ଦୂରେଇଯାଇଛି ପ୍ରବାଳଙ୍କଠାରୁ । ୟା' ଭିତରେ ଫୋନ୍ ସତରେ ଡେଡ୍ ହୋଇଯାଇଥିଲା । ପଡ଼ୋଶୀ ଘର ଫୋନ୍‌ରୁ ଡକେଇବ କି ଟେଲିଫୋନ୍‌ବାଲାଙ୍କୁ, ସେ ଭାବିଲା । ନା, ସେମିତି କଲେ ଚିଠି ଦବାନବାର ଆଉ ଚାର୍ମ ରହିବ ନାହିଁ– ସେ ନିଜକୁ ବୁଝେଇଦେଲା । ତା' ପରଦିନ ବି ସେ ଫୋନ୍ ସଜାଡ଼ିଲା ନାହିଁ । କିନ୍ତୁ ଏଇ କେତେଦିନ ଭିତରେ ସେ

ପ୍ରବାଳଙ୍କ ଅନୁପସ୍ଥିତି ଭାରି ନିବିଡ଼ ଭାବରେ ଅନୁଭବ କଲା । ପ୍ରବାଳଙ୍କ ସାଙ୍ଗରେ କଥାବାର୍ତ୍ତା କରି ଏମିତି ଭାବନାଟେ କୁଆଡ଼େ ହଜିଯାଉଥିଲା ଆହା ! ଗୋଟେ ସୁନ୍ଦର ଶିହରଣ, ଗୋଟେ ଅନନ୍ୟ ପୁଲକ, ଗୋଟେ ଖାସ୍ ମନେପକାଇବା ଭାବ– ଏତେଦିନ ପରେ ପୂରବୀକୁ ଭିଜେଇ ଦେଉଥିଲା । ଭାବଜଗତରେ ସେ ଏକବାରେ ନିକଟ ହୋଇଯାଉଥିଲା ପ୍ରବାଳଙ୍କର, ଏପରିକି ତାଙ୍କ ସାଙ୍ଗରେ ଛାଇପରି ଲାଗିରହିଥିଲା ବେଳେ ବି ଏମିତି ନିକଟତା ସେ କେବେ ଅନୁଭବ କରିପାରି ନ ଥିଲା । ନିକଟତା କ'ଣ ଲୁଚିରହିଥାଏ ଦୂରତା ଭିତରେ ? ପାଖରେ ଥିଲେ ବା ପାଖରେ ଥିଲା ପରି ଲାଗୁଥିଲେ, ଏମିତି ମହାର୍ଘ ଅନୁଭବଟିକୁ କ'ଣ ଧରି ରଖିହୁଅନ୍ତା !

ପୂରବୀ ଆଲବମ୍ ଖୋଲି ପ୍ରବାଳଙ୍କ ସହ ଉଠେଇଥିବା ଫଟୋସବୁ ଦେଖିଲା । ବିଭିନ୍ନ ପୋଜ୍‌ରେ ଫଟୋସବୁ ଉଠିଥିଲା ପ୍ରବାଳଙ୍କ ସାଥିରେ । ଶାଶୂଘର ଗାଁରେ ଆମ୍ବତୋଟା ଭିତରେ ଉଠେଇଥିବା ଫଟୋ, ସମୁଦ୍ର ବାଲିରେ ହାତ ଧରାଧରି ହୋଇ ଚାଲୁଥିଲା ବେଳର ଫଟୋ... ଦେଖୁ ଦେଖୁ ସେ ଭାରି ଅନ୍ୟମନସ୍କ ହୋଇପଡୁଥିଲା । ବେଶି ବେଶି ମନେପକଉଥିଲା ପ୍ରବାଳଙ୍କୁ । ମଝିରେ ମଝିରେ ବାହାଘର କ୍ୟାସେଟ୍ ବି ଦେଖୁଥିଲା । ବାଜାବାଣଠାରୁ ହାତଗଣ୍ଠି ପଡ଼ିବା ପର୍ଯ୍ୟନ୍ତ ବିଭିନ୍ନ ଦୃଶ୍ୟ ବାରମ୍ବାର ଦେଖୁଥିଲେ ବି ସେ ଆହୁରି ଦେଖିବାକୁ ମନ ବଳଉଥିଲା । ଧୋତି-ପଞ୍ଜାବିରେ କେମିତି ନିଆରା ଦିଶୁଥିଲେ ପ୍ରବାଳ । ନିଜର ଅବଗୁଣ୍ଠନବତୀ ବେଶ ଦେଖିବାକୁ ବି ଖୁବ୍ ଭଲ ଲାଗୁଥିଲା ତାକୁ ।

ଏସବୁ ଭିତରେ କିନ୍ତୁ ପୂରବୀର ମନ ଥିଲା ପ୍ରବାଳଙ୍କ ପାଖରେ । ସେ ଲେଖିଥିବା ଚିଠି ହୁଏତ ପହଞ୍ଚିସାରିଥିବ ନିଉୟର୍କରେ । ଏଥର ପ୍ରବାଳ ଚିଠି ନ ଦେଇ ଯିବେ କୁଆଡ଼େ ? କାହିଁ କେତେଦିନ ପରେ ସେ ପ୍ରବାଳଙ୍କଠାରୁ ଚିଠିଟେ ପାଇବ । କେତେ ଆତ୍ମୀୟତାରେ ଉଚ୍ଛୁଳି ପଡ଼ିଥିବ ସେ ଚିଠିଟି ସତେ ! ଏମିତି ଭାବି ଭାବି ସେ ଉଲୁସି ଉଠୁଥିଲା । ମନେ ମନେ ଅପେକ୍ଷା କରୁଥିଲା ଡାକବାଲାକୁ– ଖାକି ପୋଷାକପିନ୍ଧା ବୁଢ଼ା ଲୋକଟି କେବେ ତାଙ୍କ କଲିଂବେଲରେ ତା' ଟିପ ଥୋଇବ ଓ କବାଟ ଖୋଲିଯିବାକ୍ଷଣି ଲମ୍ବା ଲଫାପାଟେ ବଢ଼େଇଦବ ତା' ହାତକୁ ।



# ସ୍ୱର୍ଗସୀମା

କିଏ ତା' ନାଁ ଦେଇଥିଲା ଗୌତମ ବୋଲି– ତା' ବାପା ମା', ସାଇପଡ଼ିଶା ନା ବନ୍ଧୁବାନ୍ଧବ ନା ଗ୍ରହନକ୍ଷତ୍ର ଗଣନା କରି ଏମିତି ନାଁଟେ ରଖିଥିଲା କୋଉ ଚିହ୍ନା ଜ୍ୟୋତିଷ ? ବିବାହ ପରି ବେଳେବେଳେ ନାଁ ମଧ୍ୟ ସ୍ୱର୍ଗରେ ଦିଆହୋଇଥାଏ ବୋଧେ– ନ ହେଲେ ଗୋଟେ ଗୋଟେ ନାଁ ସହ ସ୍ୱଭାବର ଏଡ଼େ ସାମଞ୍ଜସ୍ୟ ରହନ୍ତା କେମିତି ? ଶହେ ପଦ୍ମଲୋଚନ ଅନ୍ଧ ହୋଇପାରନ୍ତି ବା ଲକ୍ଷେ ଧନେଶ୍ୱର ହୋଇପାରନ୍ତି ବାଟର ଭିକାରି, କିନ୍ତୁ କୋଟିଏରୁ ଗୋଟିଏ ମୋହନ ହୋଇପାରନ୍ତି ଗାନ୍ଧୀ । ସେଥିପାଇଁ କ'ଣ ଗୌତମ ମହାନ୍ତି ପିଲାଟି ଦିନରୁ ଏମିତି ଅନାସକ୍ତ ହୋଇପଡୁଥିଲା ପୃଥିବୀ ପ୍ରତି ?

ଖୁବ୍ ଛୋଟବେଳୁ ଗୌତମ ମହାନ୍ତିର ହାବଭାବରେ ଗୋଟେ ନିର୍ଲିପ୍ତପଣ ବାରି ହେଇପଡୁଥିଲା କୁଆଡ଼େ ! ତା'ମାନେ ସେ ଯେ ଟିକିପିଲାଭାବରେ ଜହ୍ନକୁ ଦେଖି ହାତ ଠାରୁ ନ ଥିଲା ବା ଫୁଲମାନଙ୍କୁ ଦେଖି ହସିଉଠୁ ନ ଥିଲା ଅଥବା ପ୍ରଜାପତି ଦେଖି ବିଭୋର ହେଉ ନ ଥିଲା, ତା'ନୁହେଁ, କିନ୍ତୁ ତା' ହାତପାହାନ୍ତାରେ ଜହ୍ନକୁ ତୋଳିଦେବାପାଇଁ ସେ ଅଳି କରିଥିଲା କି ତା'ମା'ଙ୍କ ପାଖରେ ? ବୃନ୍ତଚ୍ୟୁତ କରିଥିଲା କି ରଙ୍ଗବେରଙ୍ଗର ଫୁଲ ସବୁକୁ ? ପଡ଼ିଉଠି ଧାଇଁଥିଲା କି ପ୍ରଜାପତି ଧରିବାପାଇଁ ? ଖେଳନାପାଇଁ ସେ ଅଳି କରିଥିଲା ନା ଜିଦ୍ ଧରିଥିଲା ଘୋଡ଼ା ପିଠିରେ ବସିବାପାଇଁ ? ବରଂ ଆକାଶର ଅଗଣିତ ତାରାମାନଙ୍କୁ ଦେଖି ସେ ନୀରବ ହେଇଯାଉଥିଲା ସେହି ବୟସରେ । ଦୂର ଦିଗ୍‌ବଳୟକୁ ଦେଖି ଭୁଲିଯାଉଥିଲା ଧୂଳିଖେଳ, ପଣିକିଆର କ୍ରମ । ପାହାଡ଼କୁ ଛୁଇଁ ଯାଉଥିବା ମେଘମାଳ ଦେଖି ସ୍ୱତଃ ପ୍ରଶ୍ନବାଚୀଟେ ଆଙ୍କି ହୋଇଯାଉଥିଲା ଯେମିତି ତା' ମନ ସିଲଟରେ ।

ଗୌତମ ପଚାରୁଥିଲା କେତେବେଳେ ତା' ମା'ଙ୍କୁ ତ କେତେବେଳେ ଶ୍ରେଣୀ ଶିକ୍ଷକଙ୍କୁ– ଆକାଶ କେଉଁଠି ସରିଥାଏ ? କ'ଣ ଥାଏ ସମୁଦ୍ରର ସୀମା ପରେ ? ତାରାମାନେ କ'ଣ କରନ୍ତି ଦିନବେଳେ ? ଫୁଲମାନେ କାହିଁକି ମଉଳିଯା'ନ୍ତି ଆପେ ଆପେ । ଝଡ଼ବର୍ଷା ସମୟରେ ପ୍ରଜାପତିମାନେ କେଉଁଠି ଥାନ୍ତି । ପଚାରୁଥିଲା ପୁଣି ଗୌତମ– ତାଙ୍କ ସ୍କୁଲ ସାମ୍ନାରେ ନିତି ଗୋଟେ ରୁଗ୍‌ଣ ବୁଢ଼ା ଭିକମାଗେ କାହିଁକି ?

କୁଷ୍ଠରୋଗୀର ଘା' କାହିଁକି ଶୁଖେ ନାହିଁ ? ଇତ୍ୟାଦି, ଇତ୍ୟାଦି, ଅନେକ ଇତ୍ୟାଦି । ତା'ର ପ୍ରାୟ ସବୁ ପ୍ରଶ୍ନର ଉତ୍ତର ମିଳିଯାଉଥିଲା ହୁଏତ ତାକୁ । ହେଲେ ସେ ସନ୍ତୁଷ୍ଟ ହୋଇପାରୁ ନ ଥିଲା ସେସବୁରେ ।

ସେଇଥିପାଇଁ କ'ଣ ଗୌତମ ଅନ୍ୟମନସ୍କ ରହୁଥିଲେ ଘରେ, ବାହାରେ, ସ୍କୁଲରେ ଏପରିକି ଖେଳପଡ଼ିଆରେ । ତା' ଶିକ୍ଷକମାନେ ତେଣୁ ଅଭିଯୋଗ କରିବାରେ ଅସ୍ୱାଭାବିକତା ନ ଥିଲା ଯେ ଗୌତମ ଠିକ୍‌ଭାବରେ ପଣିକିଆ ମନେରଖିପାରୁ ନାହିଁ, ଘୋଷିପାରୁ ନାହିଁ ଇଂରାଜୀ ଶବ୍ଦ, ଏପରିକି ପଢ଼ିପାରୁ ନାହିଁ ଓଡ଼ିଆ ଅବନା ଅକ୍ଷର । ଗୌତମର ବାପା ମା' ବେଳେବେଳେ ଚିନ୍ତିତ ହେଉଥିଲେ, ବେଳେବେଳେ ଶିଶୁସୁଲଭ ଚପଳତାର ସମୟ ସରି ନାହିଁ ଭାବି ମନକୁ ବୁଝେଇଦେଉଥିଲେ । ବଡ଼ଲୋକ ଘରର ପିଲାମାନଙ୍କର ପାଠଟା ଗୋଟେ ସଉକ ବୋଲି ଗୌତମକୁ ଲକ୍ଷ୍ୟ କରି କେତେକ ଶିକ୍ଷକ ମୃଦୁ ମନ୍ତବ୍ୟ ମଧ୍ୟ ଦେଉଥିଲେ ।

ଗୌତମ ମହାନ୍ତି ସତରେ ବଡ଼ଲୋକ ଘରର ପିଲା ଥିଲା । ତା' ବାପା ଥିଲେ ଜଣେ ଛୋଟକାଟର ଶିଳ୍ପପତି । ତାଙ୍କର ଚାରିପାଞ୍ଚଟା ଛୋଟ କାରଖାନା ଥିଲା କଟକରେ । ଦୁଇଟି ନାମଜାଦା ମୋଟରଗାଡ଼ି କମ୍ପାନୀର ଏଜେନ୍‌ସି ଥିଲା ତା' ମା'ଙ୍କ ନାମରେ । କେତୋଟି ପେଟ୍ରୋଲ ପମ୍ପର ମାଲିକାନା ବି ଥିଲା । ସୁଦୃଶ୍ୟ ଅଟ୍ଟାଳିକା, ଗାଡ଼ିମୋଟର– କ'ଣ ନ ଥିଲା ତା' ବାପାଙ୍କର ! ଗୌତମ ପୁଣି ଥିଲା ତା' ବାପା ମା'ଙ୍କର ଗୋଟିଏ ବୋଲି ପୁଅ । ଢେର ଡେରିରେ ସେ ଆସିଥିଲା ସେମାନଙ୍କର କୋଳକୁ । ଅଭାବ ଶବ୍ଦଟି ତାଙ୍କ ପାରିବାରିକ ଶବ୍ଦକୋଷରେ ସ୍ଥାନ ପାଇ ନ ଥିଲା କେବେ । ଏସବୁ ପ୍ରାଚୁର୍ଯ୍ୟ ଭିତରେ ଅପାର୍ଥିବ ଭାବଟେ କାହିଁକି ଆଚ୍ଛନ୍ନ କରି ରଖିଥିଲା ଗୌତମକୁ ? କାହିଁକି ସେ ଉଦାସ ହୋଇପଡୁଥିଲା ଏତେ କମ୍ ବୟସରୁ ? ସବୁଥିରୁ ଦୂରେଇ ରହୁଥିଲା– ଏପରିକି ନିଜଠାରୁ ମଧ୍ୟ !

ଗୌତମର ଏହି ଉଦାସ ଭାବ ହଠାତ୍ ଦିନେ ଶ୍ରାବଣର ମେଘଖଣ୍ଡ ପରି ଫାଟି ନିଗିଡ଼ିପଡ଼ିଲା । ସେତେବେଳେ ସେ ତୃତୀୟ କି ଚତୁର୍ଥ ଶ୍ରେଣୀରେ ପଢୁଥିଲା । ସ୍କୁଲରୁ ଫେରିଲାବେଳେ ମନେହେଉଥିଲା ତା' ମୁଣ୍ଡ ଉପରେ ଯେମିତି ଲଦି ହୋଇପଡ଼ିଛି ବିରାଟ ଗୋଟେ ପାହାଡ଼ । କ'ଣ ହୋଇଛି ବୋଲି ତା' ମା' ପଚାରିଦବାରୁ ଗୌତମ ଛାତିରେ ଲହଡ଼ି ଭାଙ୍ଗୁଥିବା କୋହ ବିସ୍ଫୋରଣର ରୂପ ନେଲା । 'ସରିତା ଆଉ ସ୍କୁଲକୁ ଆସିବନି କେବେ', କହୁ କହୁ ସେ ଅସମ୍ଭବଭାବରେ ନିରବିଗଲା ।

ସରିତା ବୋଲି ଝିଅଟି ପାଠ ପଢୁଥିଲା ଗୌତମ ସାଙ୍ଗରେ ପ୍ରଥମ ଶ୍ରେଣୀରୁ । ବସୁଥିଲା ଗୌତମ ପାଖରେ । ଦୁଇଜଣଯାକ ସାଙ୍ଗହୋଇ ଖେଳୁଥିଲେ ସ୍କୁଲ ପଡ଼ିଆରେ ।

ଘରୁ ନେଉଥିବା ଟିଫିନ୍ ଦୁହେଁ ବାଣ୍ଟି ଖାଉଥିଲେ । ଖୁବ୍ ସୁନ୍ଦର ଥିଲା ସରିତା, ଭାରି ହସକୁରୀ ଝିଅଟେ । କଥାକଥାକେ ହସିଦଉଥିଲା ଫିକ୍‌କରି ଏବଂ ସେ ହସିଦେଲାବେଳେ ମଲ୍ଲୀମାଳଟେ ଖସିପଡୁଥିଲା ଆକାଶରୁ ଯେମିତି ! ବେଳେବେଳେ ଗୌତମ ତା' ଚୁଟିଧରି ଟାଣୁଥିଲା, ପୁଣି କେବେ କେମିତି ତା'ଠାରୁ ଉପହାର ପାଉଥିଲା ହାଲୁକା ବିଧାଟାଏ । କିନ୍ତୁ ଅନେକ ସମୟରେ ଶ୍ରେଣୀରେ ଅନ୍ୟମନସ୍କ ରହୁଥିବା ଗୌତମ, ସରିତା ପାଇଁ ହିଁ ଶିକ୍ଷକମାନଙ୍କ କ୍ରୋଧରୁ ବର୍ତ୍ତିଯାଉଥିଲା । ଶ୍ରେଣୀଶିକ୍ଷକ ପଚାରୁଥିବା ପ୍ରଶ୍ନଗୁଡ଼ିକ ସେ ଠିକ୍ ଭାବରେ ଶୁଣିପାରୁ ନ ଥିଲା, କାରଣ ଶ୍ରେଣୀ ଗୃହରେ ବସୁଥିଲେ ବି କେଉଁ ଶୂନ୍ୟମଣ୍ଡଳରେ ସେ ବିଚରଣ କରୁଥିଲା ସବୁବେଳେ । କିନ୍ତୁ ପାଖରେ ବସିଥିବା ସରିତା ଗୌତମର ସାର୍ଟ ଟାଣିଦେଇ ତାକୁ ଯଥାସମ୍ଭବ ପାଠମନସ୍କ କରାଉଥିଲା । ଦୁହେଁ ଦୁହିଁଙ୍କୁ କେତେ ଭଲପାଉ ନ ଥିଲେ ସତେ !

ପ୍ରଥମ ଦିନେ ଦୁଇ ଦିନ ଶ୍ରେଣୀରେ ସରିତାର ଅନୁପସ୍ଥିତି ଆଦୌ ପ୍ରଭାବିତ କରି ନ ଥିଲା ଗୌତମକୁ । ତାଙ୍କ ଗାଁକୁ ବା ଆଉଟିଂରେ କୁଆଡ଼େ ଯାଇଥିବ ହୁଏତ ସରିତା ତା' ବାପା ମା'ଙ୍କ ସାଙ୍ଗରେ, ଭାବିଥିଲା ଗୌତମ । କିନ୍ତୁ ଗୋଟେ ସପ୍ତାହ ଧରି ସେ ସ୍କୁଲକୁ ନ ଆସିବାରୁ ଭାରି ଉଚ୍ଛନ୍ନ ହେଲା ଗୌତମର ମନ । ଦିନେ ସ୍କୁଲରୁ ଫେରିଲାବେଳେ ସେ ଡ୍ରାଇଭରକୁ କହିଲା ସରିତା ଘରକୁ ନେଇଯିବାପାଇଁ ତାକୁ । ସରିତା ଘରେ ପହଞ୍ଚି ସେ ଜାଣିଲା ଯେ ସରିତା ଅସୁସ୍ଥ । କ'ଣ ହୋଇଥିଲା କେଜାଣି ତା'ର ? ସେ ବଡ଼ ବିମର୍ଷ ଦିଶୁଥିଲା । ପରେ ଶୁଣିଲା ସରିତା ବମ୍ବେ ଯାଇଛି ବୋଲି । ମାସେ ଖଣ୍ଡେ ସରିତା ଆଉ ସ୍କୁଲକୁ ଆସିଲା ନାହିଁ ।

ତା'ପରେ ସେଦିନ ହଠାତ୍ ଦିଦୀ କହିଲେ, ''ପିଲାମାନେ, ତୁମ ବଗିଚାରୁ ସୁନ୍ଦର ଫୁଲଟିଏ ଝରିପଡ଼ିଛି ଅକାଳରେ, ସେ ହେଉଛି ସରିତା । ସମସ୍ତେ ଠିଆହୋଇ ମିନିଟିଏ ନିରବ ପ୍ରାର୍ଥନା କର ।'' ମିନିଟିଏ ନୁହେଁ, ସାରାଦିନ ନିରବ ରହିଥିଲା ଗୌତମ । ଘରକୁ ଫେରି ମା'ଙ୍କୁ ପଚାରିଥିଲା ''ମରିଗଲା ପରେ କେଉଁଠି ଥିବ ସରିତା ?'' ଏପରି ଅପ୍ରତ୍ୟାଶିତ ପ୍ରଶ୍ନରେ ହଡ଼ବଡ଼େଇଯାଇ ତା' ମା' କହିଥିଲେ, ''ସେ ସ୍ୱର୍ଗରେ ଥିବ ।'' କେଉଁଠି ଅଛି ସ୍ୱର୍ଗ ? ସେ ସ୍ୱର୍ଗଟା ଦେଖିବାକୁ କେମିତି ? କେତେଦିନ ଲାଗେ ସେଠି ପହଞ୍ଚିବାପାଇଁ ? ଏମିତି କେତେ କଥା ପଚାରିଥିଲା ଗୌତମ ତା' ମା'ଙ୍କୁ । ମା'ଙ୍କଠାରୁ ପ୍ରଥମ କରି ସେ ସ୍ୱର୍ଗରାଜ୍ୟର ବିବରଣୀ ଶୁଣିଥିଲା । ସୂର୍ଯ୍ୟ, ତାରାଙ୍କୁ ଡେଇଁଗଲା ପରେ ଖୁବ୍ ଉର୍ଦ୍ଧ୍ୱରେ ଥାଏ ସ୍ୱର୍ଗ କୁହାଯାଉଥିବା ଇଲାକାଟିଏ । ମଣିଷ ମରିଗଲା ପରେ କୁଆଡ଼େ ସେଠାକୁ ଚାଲିଯାଏ । ଥରେ ସେଠାକୁ ଗଲେ ଆଉ ପରା ଫେରିହୁଏ ନାହିଁ ଜମା !

''ସେଠି ଭଲରେ ଥିବ ତ ସରିତା ?'' ଗୌତମ କଣ୍ଠରେ ଥିଲା ନାହିଁ ନ ଥିବା ଆବେଗ । ମା' କହିଥିଲେ, ''ଆମର ଏହି ମାଟି ପାଣିର ପୃଥିବୀଠାରୁ ସ୍ୱର୍ଗ ଖୁବ୍ ବେଶି ସୁନ୍ଦର । ସେଠି ଝଡ଼ବତାସ ନ ଥାଏ, କି ନ ଥାଏ ଭୂମିକମ୍ପ । ସବୁଦିନ ସେଠାରେ ବହୁଥାଏ ବସନ୍ତ ପବନ । ନାନା ଜାତି ଫୁଲରେ ଭର୍ତ୍ତି ହୋଇଥାଏ ସେ ସାମ୍ରାଜ୍ୟ । ସେଠି ଫୁଲମାନେ ମଉଳି ଝରିପଡ଼ନ୍ତି ନାହିଁ । କ୍ଳାନ୍ତ ହୁଅନ୍ତି ନାହିଁ ପ୍ରଜାପତିମାନେ । ମଣିଷ ବୁଢ଼ା ହୁଏ ନାହିଁ କେବେ । ସେଠି ଦୁଃଖ ନ ଥାଏ, ଦୈନ୍ୟ ନ ଥାଏ, ନ ଥାଏ ବି ଜରାବ୍ୟାଧି । ତେଣୁ ସରିତା ସେଠି ଭଲରେ ନ ଥିବ କାହିଁକି ?''

''ମୁଁ ତା'ହେଲେ ସ୍ୱର୍ଗକୁ ଯିବି ।'' ଗୌତମର ଅଜବ କଥା ଶୁଣି ଚିହିଁକିପଡ଼ିଲେ ତା' ମା' । କହିଲେ, ''ଛି, ଏମିତି ନିଉଛୁଣା କଥା କ'ଣ ତୁଣ୍ଡରେ ଧରନ୍ତି ପିଲାମାନେ ?'' ଆଶଙ୍କା କୁଡୁବୁଡୁ ତା' ମା'ଙ୍କର ହାବଭାବ ଦେଖି ଆଶ୍ଚର୍ଯ୍ୟ ହେଲା ଗୌତମ । ସେ କ'ଣ ଖରାପ କଥାଟେ କହିଦେଲା କି ? ନିଜକୁ ପ୍ରଶ୍ନକଲା ଗୌତମ । ସେତେବେଳକୁ ସେ ତା' ମା'ଙ୍କର ନିବିଡ଼ ଆଶ୍ଳେଷ ଭିତରେ ବନ୍ଦୀ ହୋଇଯାଇଥିଲା ।

ଏହି ଗୋଟିଏ ଘଟଣା ଯଥେଷ୍ଟ ଥିଲା ଗୌତମର ନିର୍ଲିପ୍ତପଣକୁ ଚିରସ୍ଥାୟୀ କରିବାପାଇଁ । ତା' ଭିତରେ ଥିବା ଅପାର୍ଥିବ ଭାବକୁ ଉଖୁରେଇ ଦେବାପାଇଁ, ବ୍ୟାପକ କରିବାପାଇଁ ତା'ର ଅନୁସନ୍ଧିତ୍ସାକୁ ।

ବୟସ ବଢ଼ିବା ପରେ ତା'ର ଅନେକ ପ୍ରଶ୍ନର ଉତ୍ତର ଆପେ ଆପେ ପାଇଗଲା ଗୌତମ । ସୂର୍ଯ୍ୟ, ଚନ୍ଦ୍ର, ତାରା, ନକ୍ଷତ୍ରମାନଙ୍କର ଅବସ୍ଥିତି ସମ୍ପର୍କରେ ସେ ଅନେକ କଥା ଜାଣିଲା ବିଜ୍ଞାନ ପଢ଼ିଲା ପରେ । ଜାଣିଲା ଫୁଲ କାହିଁକି ମଉଳିଯାଏ, କାହିଁକି ଝଡ଼ବର୍ଷା ଗ୍ରାସ କରେ ପୃଥିବୀକୁ । ନିର୍ଦ୍ଦିଷ୍ଟ ତିଥିମାନଙ୍କରେ ସମୁଦ୍ରର ଢେଉ କାହିଁକି ଉତ୍ତାଳ ହୁଏ । କାହିଁକି ବ୍ୟାଧିଗ୍ରସ୍ତ ହୁଏ ମଣିଷ, ଇତ୍ୟାଦି ଇତ୍ୟାଦି । କିନ୍ତୁ ମଣିଷ ମଲା ପରେ କେଉଁଠିକୁ ଯାଏ– ମୃତ୍ୟୁ ପରେ ଜୀବନ ଅଛି କି ନାହିଁ– ସ୍ୱର୍ଗ ଏକ କଳ୍ପନା ନା ବାସ୍ତବତା– ମଲାଲୋକ ଆଉଥରେ ଜନ୍ମ ନିଏ କି ଏ ପୃଥିବୀରେ– ଏସବୁ ପ୍ରଶ୍ନ ଯୁଗପତ୍ ଅସ୍ଥିର କରୁଥିଲା ଗୌତମକୁ । ତା' ମନକୁ ଆନ୍ଦୋଳିତ କରୁଥିଲା ଅହରହ । ବିଜ୍ଞାନ ବା ସାହିତ୍ୟ ସାର୍ କେହି ହୁଏତ ତା' ପ୍ରଶ୍ନର ଠିକ୍ ଉତ୍ତର ଦେଇପାରୁ ନ ଥିଲେ । ମା'ଙ୍କୁ ପଚାରିଲେ ସେ ଉଦାସ ଦିଶୁଥିଲେ ହଠାତ୍ । କୌଣସି କଥାର ଆଳରେ ଏଡ଼େଇଯାଉଥିଲେ ଏମିତିକା ପ୍ରଶ୍ନମାନଙ୍କୁ । ବାପାଙ୍କୁ ପଚାରିଲେ ସେ ଖୁବ୍ ବିରକ୍ତ ହେଉଥିଲେ ।

ଏହାଦ୍ୱାରା ଗୌତମ ବରଂ ଅଧିକ ଅନୁସନ୍ଧିତ୍ସୁ ହୋଇପଡ଼ିଥିଲା ପରଲୋକ ବିଷୟରେ । ସେହି କେଉଁ ଅଦେଖା ଇଲାକାର ମୋହ ଘାରୁଥିଲା ତାକୁ ପ୍ରାୟ ସବୁବେଳେ ।

ଗୌତମର ଏହି ଆଚରଣ ଖୁବ୍ ବ୍ୟଥିତ କରୁଥିଲା ତା' ବାପା-ମା'ଙ୍କୁ । ସେଥିଲାଗି ସେମାନେ ହୁଏତ ଗୁଣିଗାରେଡ଼ିଠାରୁ ଗ୍ରହ ଶାନ୍ତି ପର୍ଯ୍ୟନ୍ତ ଯେକୌଣସି ମାଧ୍ୟମ ଅବଲମ୍ବନ କରିବାକୁ ପଛେଇ ନ ଥିଲେ । ସହରର ସବୁଠୁଁ ଜଣାଶୁଣା ଜ୍ୟୋତିଷ, ପଣ୍ଡିତ, ସାଧୁସନ୍ଥ– ସଭିଙ୍କ ଦ୍ୱାରସ୍ଥ ହୋଇଥିଲେ । ଛୁଟିଦିନମାନଙ୍କରେ କୌଣସି ନା କୌଣସି ପର୍ଯ୍ୟଟନସ୍ଥଳକୁ ବୁଲେଇ ନଉଥିଲେ ଗୌତମକୁ । ସମସ୍ତ ପ୍ରାଚୁର୍ଯ୍ୟ ଅଜାଡ଼ି ଦେଉଥିଲେ ଗୌତମର ପାଦତଳେ– ଅଥଚ ଗୌତମ ମନରେ ସେମିତି କିଛି ପରିବର୍ତ୍ତନ ଦେଖାଯାଉ ନ ଥିଲା ।

ମାଟ୍ରିକ୍ ପରୀକ୍ଷା ପରେ ଯେଉଁ ଲମ୍ବା ଛୁଟି ସେଗୁଡ଼ିକୁ କେମିତି ବିତେଇବ ଗୌତମ ? ଏ ନେଇ ଗୌତମ ଅପେକ୍ଷା ଅଧିକ ଚିନ୍ତିତ ହୋଇପଡ଼ିଥିଲେ ତା' ମା' । ଗୌତମକୁ ନେଇ କାଶ୍ମୀର ଯିବା କଥା ପ୍ରଥମେ ସ୍ଥିର କରାଯାଇଥିଲା । କିନ୍ତୁ ସେହି ସୁନ୍ଦର ଅଥଚ ଅଭିଶପ୍ତ ଉପତ୍ୟକାରେ ଉଗ୍ରବାଦୀ ଆକ୍ରମଣ ଲିଭି ନ ଥିବାରୁ ସେଠାକୁ ଯିବାପାଇଁ ଗୌତମ ମା'ଙ୍କର ମନ ବଳୁ ନ ଥିଲା । ତେଣୁ ମନାଲି ଯିବେ ନା ଗୋଆ– ଏହାକୁ ନେଇ ଦ୍ୱନ୍ଦ୍ୱ ଉପଜୁଥିଲା କିଛିଦିନପାଇଁ । ତେବେ ବମ୍ବେକୁ ଆଖି ଆଗରେ ରଖି ଗୋଆ ଯିବା କଥା ଆପାତତଃ ଠିକ୍ ହୋଇଥିଲା । ଗୋଆର ସମୁଦ୍ରବେଳାକୁ ଲାଗିଥିବା ଗୋଟେ ଷ୍ଟାର ହୋଟେଲରେ ରୁମ୍ ବୁକ୍ କରାଯାଇଥିଲା ମଧ୍ୟ । ଗୋଆ ଯିବାପାଇଁ ଗୌତମର ଆପତ୍ତି ନ ଥିଲା । ଗୋଟେ ସୁନ୍ଦର ଜାଗାକୁ ଆଉଟିଂରେ ଯିବାର ଖୁସିରେ ସେ କିନ୍ତୁ ଉତ୍‌ଫୁଲ୍ଲିତ ହେଉ ନ ଥିଲା ।

ଏହି ସମୟ ଭିତରେ ଖୁବ୍ ବଡ଼ ଦୁର୍ଘଟଣାଟିଏ ଘଟିବାକୁ ଯାଉଥିଲା– ଦୈବାତ୍ ଅଟକିଗଲା ସିନା ! ଗ୍ରୀଷ୍ମ ଛୁଟିରେ ଗୌତମର ଆଇଡ୍ଲ ମାଇଣ୍ଡରେ ପୁଣି ବସାବାନ୍ଧିଥିଲା ସରିତା । ଏକଥା ଅବଶ୍ୟ ତା' ବାପା ମା'ଙ୍କୁ ଜଣା ନ ଥିଲା । ଦିନେ ରାତି ଅଧରେ ଗୌତମର ବାପା ମା' ଶୋଇପଡ଼ିଲା ପରେ ସେ ତାଙ୍କ କୋଠାର ସବା ଉପରମହଲାକୁ ଯାଇ ଠିଆହେଲା ଏକା ଏକା । ଆକାଶକୁ ଚାହିଁ କ'ଣ ଏଣୁତେଣୁ ସବୁ ଭାବିଲା । ଜହ୍ନ ନ ଥିବା ସେହି କଳାରାତିରେ ସେ ତାରାମାନଙ୍କୁ ଚାହିଁ ଭାରି ଅନ୍ୟମନସ୍କ ହୋଇପଡ଼ିଲା, ଗୁଣୁଗୁଣେଇ ହେଲା ନିଜ ଭିତରେ । ସେହି ସବା ଉପରମହଲାରେ ଥିବା ଗୋଟିକିଆ ରୁମ୍‌ଟିରେ ରହୁଥିଲା ତାଙ୍କ ୱାଚ୍‌ମ୍ୟାନ୍ ସନା ସିଂହ । ତା'ର ଶ୍ୱାସ ବାହାରିଥିବାରୁ ସେ ଡେରି ରାତିପର୍ଯ୍ୟନ୍ତ ଶୋଇ ନ ଥିଲା । ଗୌତମ ବିଷୟରେ ସନା ସିଂହ ସବୁ କଥା ଜାଣିଥିଲା ଆଗରୁ । ସାନବାବୁ ବାୟାଟା ବୋଲି ସେ ମନେକରୁଥିଲା । ତେଣୁ ଗୌତମ ପଛରେ ଯାଇ ନିରବରେ ଠିଆହେଲା ଓ ଗୌତମର ହାବଭାବ ଲକ୍ଷ୍ୟକଲା ଅଦୂରରୁ । ଅନ୍ୟମନସ୍କ ଗୌତମ କିନ୍ତୁ ସନା ସିଂହ ଉପସ୍ଥିତି ବିଷୟରେ ଆଦୌ ସଚେତନ ନ ଥିଲା । ଉପରମହଲାରୁ ତଳକୁ ଡେଇଁବାପାଇଁ ସେ ଉଦ୍ୟତ ହେଲାବେଳକୁ ଆଖିପିଛୁଳାକେ ସନା ସିଂହ ହାତରେ ଅଟକିଗଲା ।

ତା'ପରେ ଅଧ ରାତିରେ ପୁଣି ଚଳଚଞ୍ଚଳ ହୋଇଉଠିଲା ସେଇ ନିସ୍ତବ୍ଧ ଅଟ୍ଟାଳିକା । ଗୌତମ ଆତ୍ମହତ୍ୟା କରିବାକୁ ଯାଉଥିଲା ବୋଲି ଶୁଣିଲାକ୍ଷଣି ମୂର୍ଚ୍ଛା ଗଲେ ତା' ମା' । ବଡ଼ ବିବ୍ରତ ହୋଇପଡ଼ିଲେ ତା' ବାପା ଓ ଅନ୍ୟମାନେ । ଚାକର, ପୂଜାରୀମାନଙ୍କ ଆଖିରୁ ନିଦ ହଜିଗଲା । ବହୁତଳ ସୁରମ୍ୟ ହର୍ମ୍ୟଟି କିଛିକ୍ଷଣପାଇଁ ହେଲେ ବି ଗୋଟେ ଭୂତକୋଠିର ଭୟାବହତାରେ ଉବୁଟୁବୁ ହେଲା । ଗୌତମ କିନ୍ତୁ ଥିଲା ଭାରି ଅବିଚଳିତ । ସେ ସରିତା ପାଖକୁ ଯିବାପାଇଁ ଚାହୁଁଥିଲା ବୋଲି କହିଲା ତା' ବାପାଙ୍କୁ ।

ଏହି ଘଟଣା ପରେ ଗୋଆ ବୁଲିଯିବା ପ୍ରୋଗ୍ରାମ ବନ୍ଦ ହେଲା । ବମ୍ବେରୁ କିନ୍ତୁ ଜଣେ ବଡ଼ ସାଇକିଆଟ୍ରିଷ୍ଟ ଆସି ପହଞ୍ଚିଥିଲେ ତାଙ୍କ ଘରେ । ଗୌତମକୁ ଅନେକ ଅବାନ୍ତର ପ୍ରଶ୍ନ ପଚାରି ସେ ବୋର୍ କଲେ । ତା'ପରେ ବେଶ୍ କିଛି ଦିନ ନିଜ ରୁମ୍‌ରେ ନଜରବନ୍ଦୀରେ ରହିବାକୁ ପଡ଼ିଥିଲା ଗୌତମକୁ । ଗୋଟେ ଯୋଡ଼େ ଆଶ୍ରମକୁ ବି ସେ ଯାଇଥିଲା ତା' ମା'ଙ୍କ ସାଙ୍ଗରେ ।

ଗୌତମର ମ୍ୟାଟ୍ରିକ୍ ରେଜଲ୍‌ଟରେ ସମସ୍ତେ ଖୁସିହେଲେ । ସେ ଫାଷ୍ଟ ଡିଭିଜନ୍ ପାଇବ ବୋଲି କାହାର ବିଶ୍ୱାସ ନ ଥିଲା । ମଉଳି ଯାଇଥିବା ସ୍ୱପ୍ନ ପୁଣି ଅଙ୍କୁରିଲା ତା' ବାପା ଓ ମା'ଙ୍କ ମନରେ । ଗୌତମ ପ୍ଲସ୍‌ଟୁ ସାଇନ୍‌ସ ପଢ଼ିଲା ପରେ ମ୍ୟାନେଜ୍‌ମେଣ୍ଟ ପଢ଼ିବ ବୋଲି ଭାବୁଥିଲେ ତା' ବାପା– ତା'ପରେ ସେ କଳକାରଖାନା, ବେପାରବଣିଜ କଥା ଆପେ ବୁଝିବ । ସେସବୁର ମାୟାରେ ଥରେ ପଡ଼ିଗଲେ ଆଉ ପାଗଳାମି କରିବାକୁ ତାକୁ କ'ଣ ସମୟ ମିଳିବ ? କୈଶୋର ଡେଇଁ ଯୌବନରେ ପାଦଦେଉଥିବା ଗୌତମକୁ ଲକ୍ଷ୍ୟକରି ତା' ମା' ପ୍ରତ୍ୟୟ ଫେରିପାଉଥିଲେ । ଗୌତମ ମୁହଁର ଗଜରା ନିଶ ଘଞ୍ଚ ହୋଇଆସୁଥିଲା କ୍ରମେ । ବଳିଷ୍ଠ ହେଉଥିଲା ତା' ବାହୁ, ଚଉଡ଼ା ହେଉଥିଲା ଛାତି । ମାଟିର ମୋହରେ ଛନ୍ଦି ହୋଇଯିବାକୁ ଆଉ ବେଶି ଡେରି ଲାଗିବ ନାହିଁ ଗୌତମକୁ ବୋଲି ଭାବି ତା' ମା' ବେଶ୍ ଖୁସିହେଉଥିଲେ ମନେ ମନେ ।

ସାଇନ୍‌ସ ବା ମେଡିକାଲ୍ ସାଇନ୍‌ସ, ଇଞ୍ଜିନିୟରିଂ ବା ମ୍ୟାନେଜ୍‌ମେଣ୍ଟ– କେଉଁଥିରେ ଖାସ୍ ଆଗ୍ରହ ନ ଥିଲା ଗୌତମର । ପ୍ଲସ୍‌ଟୁ ସାଇନ୍‌ସ ଯଥାତଥାକି ପାସ୍ କଲା ପରେ ସେ ଇଂରାଜୀ ଅନର୍ସ ରଖି ଆର୍ଟ୍‌ସ୍ ପଢ଼ିଲା । ତା' ବାପା ଚିଡ଼ିଉଠି କହିଲେ, ''ବିଜିନେସ୍ ଜଗତ ସହିତ ସାହିତ୍ୟଫାହିତ୍ୟର କି ସମ୍ପର୍କ ଅଛି ? ସାହିତ୍ୟ ପଢ଼ିଲେ କ'ଣ ବେପାର କରିହୁଏ ନା ଚଳେଇହୁଏ ଫ୍ୟାକ୍‌ଟ୍ରି ?'' ଗୌତମ କିନ୍ତୁ ଏକଥା ଶୁଣି ବି ଶୁଣୁ ନ ଥିଲା– ବରଂ ମଝିରେ ମଝିରେ କବିତା ଲେଖି ଗୋଟିଏ ଭାବଜଗତରେ ଘୂରିବୁଲୁଥିଲା । ଦିନେ ଖୁବ୍ ବିରକ୍ତ ହେଉଥିବା

ତା' ବାପାଙ୍କୁ ସେ ରୋକ୍‌ଠୋକ୍ କହିଦେଲା ଯେ କେବଳ ଉପଯୋଗିତାପାଇଁ ପାଠ ପଢ଼ାଯାଏ ନାହିଁ । ଜୀବନର ସବୁ କ୍ଷେତ୍ରରେ କ'ଣ ଉପଯୋଗିତା କାମ ଦିଏ ? ବିନା ଉପଯୋଗିତାରେ ବହୁ କଥା କରାଯାଏ ପୃଥିବୀରେ । ଯଦି ଉପଯୋଗିତା ସଂସାରର ଏକମାତ୍ର ନିୟମ ହୋଇଥାନ୍ତା, ତା'ହେଲେ ପୃଥିବୀରେ କେବଳ ଗଧ ଓ ବଳଦମାନେ ଥାନ୍ତେ; ନ ଥାନ୍ତେ ପ୍ରଜାପତି, ହଂସ ବା କୋଇଲି । ଗୌତମର ଯୁକ୍ତି ଶୁଣି ତା' ବାପା ଚୁପ୍ ହୋଇଯାଇଥିଲେ ।

ଗୌତମ ଯେତେବେଳେ ଇଂରାଜୀ ସାହିତ୍ୟରେ ପି. ଜି. କରିବାପାଇଁ ନାମ ଲେଖାଇଲା ବାଣୀବିହାରରେ, ତା' ବାପା ତାକୁ ମେରୁନ୍ ରଙ୍ଗର ଇଣ୍ଡିକା କାର୍‌ଟେ ଉପହାର ଦେଲେ । ନିଜେ ଡ୍ରାଇଭିଂ କରି ଗୌତମ ବାଣୀବିହାର କ୍ୟାମ୍ପସରେ ପହଞ୍ଚୁଥିଲାବେଳେ, ତା' ଅପେକ୍ଷା ତା' ଗାଡ଼ି ଅନେକଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା । ତା' ଚୁପ୍‌ଚାପ୍ ସ୍ୱଭାବକୁ କେତେକ ଆଟୋପ ବୋଲି ମନେକରୁଥିଲେ ତ ଆଉ କେତେ ସାଙ୍ଗ ତା' ଆଚରଣରେ ଅସମ୍ଭବ ଅସଙ୍ଗତି ଲକ୍ଷ୍ୟ କରୁଥିଲେ । ତେଣୁ ତା'ର ସାଙ୍ଗସାଥୀଙ୍କ ସଂଖ୍ୟା ଖୁବ୍ କମ୍ ଥିଲା । କିନ୍ତୁ ତା' ତଳ ବ୍ୟାଚ୍‌ରେ ସାଇକୋଲୋଜି ପଢୁଥିବା ଝିଅଟେ ଆସ୍ତେ ଆସ୍ତେ ଭାରି ଅନ୍ତରଙ୍ଗ ହୋଇପଡ଼ିଥିଲା ତା'ର । ଲାଇବ୍ରେରୀରେ ପ୍ରାୟ ପ୍ରତିଦିନ ଦେଖାହେଉଥିଲା ବେବି ନାମ୍ନୀ ସେଇ ଝିଅଟି ସାଙ୍ଗରେ । ବେଳେବେଳେ ସେମାନେ ସାଥିହୋଇ ସ୍ନାକ୍ସ ଖାଉଥିଲେ ସେଣ୍ଟ୍ରାଲ୍ କ୍ୟାଣ୍ଟିନ୍‌ରେ । ସେ ଝିଅଟି କଥାର ଖିଅ ଏମିତି ଲମ୍ବଉଥିଲା ଯେ ଅନେକ ସମୟରେ ଗୌତମ ଘରକୁ ଫେରିବାରେ ବିଳମ୍ବ ଘଟୁଥିଲା ।

ଧୀରେ ଧୀରେ ଗୌତମ ଓ ବେବିକୁ ନେଇ କ୍ୟାମ୍ପସ୍ ବଡ଼ ସରଗରମ ହୋଇଉଠିଲା । କିନ୍ତୁ ବେବି ବହୁ ଚେଷ୍ଟାକରି ମଧ୍ୟ ଗୌତମକୁ ପ୍ରଗଳ୍‌ଭ କରାଇ ପାରିଲା ନାହିଁ । ଗୌତମ ଖାଲି ବେବିର କଥା ଶୁଣୁଥିଲା, ଅଥଚ ନିଜେ ବିଶେଷ କିଛି କହୁ ନ ଥିଲା । ବେବି ଭାବିଥିଲା ଗୌତମ ସହ ତା'ର ମିଳାମିଶା କ୍ରମେ ପ୍ରେମରେ ରୂପାନ୍ତରିତ ହେବ– କିନ୍ତୁ ସେମିତି କିଛି ହେଲା ନାହିଁ । ବେବି ମନେକଲା ଗୌତମ ରକ୍ତମାଂସ ଦେହଧାରୀ ନିର୍ଜୀବ ବସ୍ତୁଟିଏ, ସେ ପ୍ରେମପ୍ରେମର ଅର୍ଥ କିଛି ବୁଝେ ନାହିଁ । ତା' ପରଠୁଁ ସେ ଗୌତମ ସହ ଆଉ କଥାବାର୍ତ୍ତା କଲା ନାହିଁ, ବରଂ ଗୌତମ ମହାନ୍ତି ଗୋଟେ ୟୁନକ୍ ବୋଲି ତା' ସାଙ୍ଗମାନଙ୍କ ପାଖରେ କୁଆଡ଼େ କହିବୁଲିଲା । ଗୌତମ କାନରେ ସେକଥା ପଡ଼ିବାରୁ ସେ ଖାଲି ଟିକେ ହସିଦେଲା ଯାହା । ପରେ ପରେ ବେବିର ସ୍ମୃତି ଆପେ ଆପେ ପୋଛିହୋଇଗଲା ତା'ମନରୁ ।

ପି. ଜି. ସରିଲା ପରେ ସମୟ ସ୍ଥିର ହୋଇଯାଇଥିଲା ଯେମିତି ଗୌତମ ପାଖରେ । ବହିପଢ଼ାରେ କିଛି ସମୟ ବିତେଇଲା ପରେ ଅବଶିଷ୍ଟ ସମୟ ସେ କେମିତି

କାଟିବ ଭାବିପାରୁ ନ ଥିଲା । ପିଲାଦିନର କଥା ବେଶି ବେଶି ତା'ର ମନେପଡୁଥିଲା ଏବଂ ପୁଣି ଥରେ ପିଲା ହୋଇହବ କି ବୋଲି ପ୍ରଶ୍ନଟେ ବହଳ କ୍ଷତ ପରି ଆଙ୍କି ହୋଇ ରହୁଥିଲା ତା' ମନଗହନରେ । ଗୌତମର ଏକଲାପଣକୁ କେହି ନ ହେଲେ ବି ତା' ମା' ଠିକ୍ ବୁଝିପାରୁଥିଲେ । ଗୌତମର ବାହାଘର ଶୀଘ୍ର କରିଦେବାକୁ ସେ ମନସ୍ଥ କରିସାରିଥିଲେ ।

ଗୌତମର ବାହାଘରପାଇଁ ଦୂରଦୂରାନ୍ତରୁ ଅନେକ ଭଲ ଭଲ ପ୍ରସ୍ତାବମାନ ଆସି ପହଞ୍ଚୁଥିଲା । ଗୌତମର ମା' ଚାହୁଁଥିଲେ ପରୀଟିଏ ଧରିଆଣିବାକୁ କେଉଁ ଇନ୍ଦ୍ରଭୁବନ କି ଚନ୍ଦ୍ରମଣ୍ଡଳରୁ । ସୁନ୍ଦରୀ ସ୍ତ୍ରୀଟିଏ ପାଇଲା ପରେ ଗୌତମ ହୁଏତ ନିବିଷ୍ଟ ହୋଇଯିବ ସଂସାରର ମୋହରେ, ଭୁଲିଯିବ ପଛକଥା ସବୁ– ଅନ୍ୟମନସ୍କ ହୋଇ ଭିନ୍ନ କେଉଁ ଜଗତର କଥା ଆଉ ଚିନ୍ତା କରିବ ନାହିଁ । ସଂସାରର ଚକ୍ର ଭିତରକୁ ଥରେ ପଶିଗଲେ ସେଠି ଘୂରିବୁଲୁଥିବ ସାରା ଜୀବନ । ପିଲାଛୁଆଙ୍କ ମାୟାରେ ପଡ଼ିଯିବ । ତେଣିକି ତା' ଅବୁଝାପଣ ଆପେ ଆପେ ଅପସରିଯିବନି !

ପରୀଠାରୁ ଆହୁରି ସୁନ୍ଦରୀ ବୋହୂଟେ ସତକୁ ସତ ଆଣିଲେ ଗୌତମର ମା' । ତା'ର ନୂପୁର ନିକ୍ୱଣରେ ଛନ୍ଦାୟିତ ହେଲା ଘର ବାହାର । ତା'ର ମୃଦୁ ପଦପାତରେ ଯେମିତି ଫୁଟିଉଠିଲା ବିକଚ ଶତଦଳ । ସେ ହସିଲେ ମୁକ୍ତା ବର୍ଷାହେଲା ଶୂନ୍ୟନଭରୁ । ପବନରେ ଫୁଲଗନ୍ଧ ଲହଡ଼ି ଭାଙ୍ଗିଲା । ''କେତେ ଜିତେନ୍ଦ୍ରିୟଙ୍କର ତପଭଙ୍ଗ ହୋଇଛି ଉର୍ବଶୀ, ମେନକାଙ୍କର ପୀନପୟୋଧର, ନିତମ୍ବ ଦୋଳନର ଆକର୍ଷଣରେ । କେତେ ଯେ ବୈରାଗ୍ୟ ଧୋଇହୋଇଯାଇଛି ବାଲିବନ୍ଧ ପରି ଘୁଙ୍ଗୁର ନାଦର ତୀବ୍ର ଆଘାତରେ । ଗୌତମର ଅନାସକ୍ତିକୁ ଲିଭେଇଦେବାପାଇଁ ତା' ସୁନ୍ଦରୀ ସ୍ତ୍ରୀର ଉପସ୍ଥିତି କ'ଣ ଯଥେଷ୍ଟ ନୁହେଁ ?'' ଗୌତମର ମା' ଏହା ଭାବି ଉଲ୍ଲସିତ ହେଉଥିଲେ ।

ଗୌତମ କିନ୍ତୁ ଉଲ୍ଲସିତ ହୋଇପାରୁ ନ ଥିଲା । ଆମୋଦିତ କରୁଥିଲା ତାକୁ ସୁଗନ୍ଧିତ ମୁହୂର୍ତ୍ତ, କିନ୍ତୁ ବିହ୍ୱଳିତ କରିପାରୁ ନ ଥିଲା । ସୌନ୍ଦର୍ଯ୍ୟ ପ୍ରତି ତା' ମନରେ ଥିଲା ବିପୁଳ ଅନୁରାଗ, ଅଥଚ ସେ ସୌନ୍ଦର୍ଯ୍ୟର ତୀବ୍ରତା ଅନୁଭବ କରୁ ନ ଥିଲା ଆଦୌ । ପ୍ରାଚୁର୍ଯ୍ୟ ତାକୁ ସ୍ପର୍ଶ କରୁଥିଲା, ହେଲେ ଭିଜେଇପାରୁ ନ ଥିଲା କେବେ । ନବପରିଣୀତା ସ୍ତ୍ରୀ ପ୍ରତି ତା' ମନରେ ପ୍ରେମ ଥିଲା, ନ ଥିଲା କିନ୍ତୁ ମୋହ ।

ତା' ସ୍ତ୍ରୀ ଯେତେବେଳେ କେଉଁ ଅଜଣା ତିଥିର ଜହ୍ନକୁ ଲକ୍ଷ୍ୟକରି ପୁଲକଭରା କଣ୍ଠରେ କହୁଥିଲା, 'କେଡ଼େ ସୁନ୍ଦର ଏ ଖଣ୍ଡିତ ଜହ୍ନ', 'କାଲି ରାତିକି ସେ ଆହୁରି ଖଣ୍ଡିତ ହୋଇଯାଇଥିବ' ବୋଲି ଉତ୍ତର ମିଳୁଥିଲା ଗୌତମଠାରୁ । ବଗିଚାର

ସଜଫୁଟା ଫୁଲକୁ ହାତଠାରି ଗୌତମର ସ୍ତ୍ରୀ ଯେତେବେଳେ ଆତ୍ମହରା ହେଉଥିଲା, ଫୁଲଟି ଅବିଳମ୍ବେ ମଉଳିଯିବା ଅବଶ୍ୟମ୍ଭାବୀ ମନେକରି ବ୍ୟଥିତ ହେଉଥିଲା ଗୌତମ । ଗୌତମର ସ୍ତ୍ରୀ କହୁଥିଲା– 'ଦେଖ, ସବୁଜ ଘାସ ଉପରେ କେମିତି ଚିକ୍‌ଚିକ୍ କରୁଛି ସକାଳର ଶିଶିରବିନ୍ଦୁ'– 'ସୂର୍ଯ୍ୟରଶ୍ମି ପ୍ରଖର ହେବା ପର୍ଯ୍ୟନ୍ତ ଅପେକ୍ଷା କର' ଗୌତମ ଉତ୍ତର ଦେଉଥିଲା । ସମୁଦ୍ରର ନୀଳ ଢେଉର ନାଚ ଦେଖି ଗୌତମର ସ୍ତ୍ରୀ ନିଜେ ଯେତେବେଳେ ନାଚିଉଠୁଥିଲା, ଗୌତମ କହୁଥିଲା– ଦେଖିପାରୁନ କି, ବେଳାଭୂମିରେ ପିଟିହୋଇ ମୁହୂର୍ତ୍ତକ ମଧ୍ୟରେ କେମିତି ଅନନ୍ତ ନୀଳିମାରେ ଲୀନ ହୋଇଯାଉଛି ନୀଳଢେଉ ?''

ସ୍ଥୂଳବସ୍ତୁ ଆଢୁଆଳରେ ଥିବା ସୂକ୍ଷ୍ମ ଦର୍ଶନକୁ ନେଇ ଗୌତମ ଅଯଥା ଭାରାକ୍ରାନ୍ତ ହେବା ଆଦୌ ଭଲ ଲାଗୁ ନ ଥିଲା ତା' ସ୍ତ୍ରୀକୁ । ପୃଥିବୀକୁ ସମସ୍ତେ ଯେମିତି ଦେଖନ୍ତି, ଯେମିତି ବୁଝନ୍ତି ତାହାହିଁ ସତ୍ୟ । ସାଧାରଣ ସତ୍ୟ ଭିତରେ ଅସାଧାରଣ ଜଟିଳତା ଖୋଜି ନୟାନ୍ତ ହେବାରେ କି ଲାଭ ଥାଏ ? ଗୂଢ଼ତତ୍ତ୍ୱ କି କାମରେ ଆସେ ଜୀବନରେ ? ଭାବନଉକାରେ କ'ଣ ଭବସାଗର ଡେଇଁ ହୁଏ ? ଶାଗ-ପଖାଳର ଯୋଗାଡ଼ କରିପାରେ କି କେଉଁ ଦର୍ଶନ ? ଏସବୁକୁ ସେ କିନ୍ତୁ ନିଜ ଭିତରେ ରଖୁଥିଲା– ଗୌତମକୁ କହୁ ନ ଥିଲା କିଛି ।

କହୁ ନ ଥିଲା ସିନା, ହେଲେ ଭାବୁଥିଲା କହିଦେବ କି– ଗୌତମ, ତମେ କବିତା ଲେଖୁଛ ପରା ! କି କବିତା ଲେଖୁଛ ଯେ ? ଭିଜା ମାଟିର ବାସ୍ନା ଯଦି ତମକୁ ବିହ୍ୱଳିତ କରୁ ନାହିଁ, ତାରାଭର୍ତ୍ତି ଆକାଶକୁ ତମେ ଯଦି ଛୁଇଁପାରୁ ନାହଁ, ଯଦି ବୁଝିପାରୁ ନାହଁ ଆଷାଢ଼ର ଛନ୍ଦ, କଦମ୍ବର ଶିହରଣରେ ଯଦି ସଂକ୍ରମିତ ହେଉ ନାହଁ, କି କବି ହୋଇଛ ତମେ ? ଭରା ନଈର ଆବେଗ, କୁଆଁରୀ ବୁକୁର ହିଲ୍ଲୋଳ ତମେ ଯଦି ଅନୁଭବ କରି ନ ପାରୁଛ ନିଜ ଭିତରେ କେମିତି ଲେଖୁଛ କବିତା ? ଜୀବନ ବୀଣାର ମୂର୍ଚ୍ଛନା କ'ଣ ଗୁଞ୍ଜରିତ ହେଉ ନାହିଁ ତମ ହୃଦୟରେ ? ଜୀବନଠୁ ବଳି ଆଉ ବଡ଼ ଦର୍ଶନ କିଛି ଅଛି କି ? କିନ୍ତୁ ଏମିତି ସିଧାସଳଖ ପ୍ରଶ୍ନ ସବୁ କ'ଣ ସେ ପଚାରିପାରିବ ଗୌତମକୁ ? ତା' ଜିଭ ତଳେ ସବୁ ଭାଷା ଫସିଲ୍ ପାଲଟି ଯାଉଥିଲେ ଯେମିତି !

ହଠାତ୍ ଦିନେ କିନ୍ତୁ ଚିରି ହୋଇଗଲା ଆକାଶର ଛାତି । ମୁହଁ ଖୋଲିଲା ଗୌତମର ସ୍ତ୍ରୀ । କହିଲା, ''ଜଣେ ଷାଠିଏ ବର୍ଷର ବୁଢ଼ା ପାଞ୍ଚପାଞ୍ଚଟା ଫ୍ୟାକ୍‌ଟ୍ରିର ଦାୟିତ୍ୱ ସମ୍ଭାଳୁଛନ୍ତି, ଛାତିରେ ପେସ୍‌ମେକର୍ ଲଗାଇ ଆଜି ଦିଲ୍ଲୀ ତ କାଲି ବମ୍ବେ, କାଲି ବମ୍ବେ ତ ତା' ପରଦିନ ବାଙ୍ଗାଲୋର ବୁଲୁଛନ୍ତି, ଅଥଚ ତମେ କେବେ କିଛି ବୁଝିବାକୁ ଚେଷ୍ଟା ବି କରୁନ ! ଦରଦ ବୋଲି ଗୋଟେ ଚିଜ ତମଠି ଅଛି ? ଫ୍ୟାକ୍‌ଟ୍ରିର ଯେଉଁ ଝାମେଲା, ତମେ କ'ଣ ଜାଣିନ ? କେତେବେଳେ ଷ୍ଟ୍ରାଇକ୍

ତ କେତେବେଳେ ଘେରାଉ, କେତେବେଳେ ଫ୍ୟାକ୍ଟ୍ରି ବନ୍ଦ ତ କେତେବେଳେ ଟ୍ରାନ୍ସପୋର୍ଟେସନ୍‌ରେ ଅସୁବିଧା । ବାପାଙ୍କ ପାଖରେ ତମେ ଖାଲି ଠିଆହେଲେ ସେ କେତେ ବଳ ନ ପାଆନ୍ତେ ?''

ଗୌତମକୁ ଏମିତି କେବେ କେହି କହି ନ ଥିଲେ ଆଗରୁ । ତା' ମୂର୍ଦ୍ଧନାରେ ଯେମିତି ହାତୁଡ଼ି ପିଟି ହୋଇଗଲା । ତା' ଭାବଜଗତ ବିଦୀର୍ଣ୍ଣ ହୋଇଗଲା ଅପ୍ରତ୍ୟାଶିତ ଭୂମିକମ୍ପରେ ।

ଗୌତମର ସ୍ତ୍ରୀ କିନ୍ତୁ ଥିଲା ଦୃଢ଼ମନା । ତା' ମନରେ କେଉଁ ଦିନରୁ କୁହୁଳୁଥିବା ନିଆଁ ହୁତୁହୁତୁ ହୋଇ ଜଳିଉଠିଲା– ''ତମେ କି ପୁରୁଷ ହୋଇଛ, ଲାଜମାଡୁନି ତମକୁ ? ବାପା ମା'ଙ୍କ ପାଖରେ ନିଜ ପାଇଁ ହାତପାତୁଥିଲ, ଏବେ ସ୍ତ୍ରୀପାଇଁ ହାତପାତୁଛ, ପୁଣି କାଲି ତମର ପିଲାପାଇଁ ବି ହାତପାତିବ ? ଛି....''

ଗୌତମ ଆଉ କିଛି ଶୁଣିପାରୁ ନ ଥିଲା । ଏକଦା ସମୁଦ୍ର ଥିବା ଇଲାକାଟି ହିମାଳୟ ପାଲଟିଯିବା ପରି ଗୌତମ ଭିତରେ ସବୁକିଛି ଓଲଟପାଲଟ ହୋଇଯାଇଥିଲା । ସେ ତା' ପ୍ରିୟ ମେରୁନ୍ ରଙ୍ଗର କାର୍‌ଟି ନେଇ ବାହାରିଗଲା ରାସ୍ତା ଉପରକୁ । ସହରର ଭିଡ଼ ରାସ୍ତା ଡେଇଁ ତା' କାର୍ ପହଞ୍ଚିଲା ଜାତୀୟ ରାଜପଥରେ । କେଉଁ ଦିଗକୁ ତା' ଗାଡ଼ି ଧାଉଁଥିଲା କେଜାଣି ? କେତେ ବେଗରେ ଚାଲିଥିଲା ଗାଡ଼ି, କେଉଁଠାକୁ ସେ ଯାଉଥିଲା, କ'ଣ ପାଇଁ ଯାଉଥିଲା ସେ ଜାଣିପାରୁ ନ ଥିଲା କିଛି । ନ ଥିଲା ସେ ନିଜ ଆୟତ୍ତରେ । କିନ୍ତୁ ତା' କାର୍‌ଟି ଗୋଟେ ପୋଲରେ ଧକ୍କାହେଲାବେଳେ ସେ ଯାହା ନିଜ ଭିତରକୁ ଫେରିଆସିଥିଲା ମୁହୂର୍ତ୍ତ କେତୋଟିପାଇଁ । ତା'ପର କଥା ଆଉ କିଛି ତା'ର ମନେ ନ ଥିଲା ।

ଗୋଟେ ଗାଢ଼କଳା ଅନ୍ଧାର ଇଲାକାରେ ଯେମିତି ଘୂରିବୁଲୁଥିଲା ଗୌତମ । ଚାରିଆଡ଼େ ଖାଲି ଅଖଣ୍ଡ ନିରବତା, କାହାରି ସ୍ୱରଶବ୍ଦ ନ ଥିଲା । କି ଅଜବ ଜାଗା । ଗୌତମର ଶ୍ୱାସରୁଦ୍ଧ ହୋଇଯାଉଥିଲା । ବଡ଼ ନିଃସଙ୍ଗ ଲାଗୁଥିଲା ତାକୁ । ସେ ଭୟରେ ଥରୁଥିଲା ଗୋଟାପଣେ ।

କେଉଁଠି ଏହାର ଅବସ୍ଥିତି ? ଏହା ଭୂଲୋକ ନା ସ୍ୱର୍ଗଲୋକ ? ଆଲୋକ ନ ଥାଇ କ'ଣ ଇଲାକାଟେ ସମ୍ଭବ? କାହାନ୍ତି ଏଠି ସୂର୍ଯ୍ୟ, ଚନ୍ଦ୍ର ? କାହାନ୍ତି ତାରାମାନେ ? ନା ଏଠି ଉଷା ଅଛି, ନା ଅଛି ଗୋଧୂଳି ? କାହିଁ ନଈ, କାହିଁ ସ୍ରୋତ ? ଏଠି କେଉଁଠି ସମୁଦ୍ର ? କେଉଁଠି ତରଙ୍ଗ ? ଅଛନ୍ତି କି ଏଠି ଗଛମାନେ ? ଅଛନ୍ତି କି ଫୁଲ ଭାରରେ ନଇଁପଡୁଥିବା ଲତାମାନେ ? ଉଡ଼ିବୁଲୁଛନ୍ତି କି ପ୍ରଜାପତିମାନେ ? ଗୀତ ଗାଉଛି କି କୋଇଲି ? ବହୁଛି କି ମଳୟ ? ଉଠୁଛି କି ବତାସ ? ନା ଏଠି ଖରା ଅଛି, ନା ଅଛି ବର୍ଷା ! ଅସହ୍ୟ ଯନ୍ତ୍ରଣାରେ ରୁନ୍ଧି ହୋଇଯାଉଥିଲା ଗୌତମର ସର୍ବାଙ୍ଗ ଯେମିତି !

ଏହା କ'ଣ ମୃତ୍ୟୁଲୋକ ?

ତା'ହେଲେ ସ୍ୱର୍ଗ କେଉଁଠି ? କେତେ ଦୂର ଏଠୁ ? ଯାଇହେବ କି ସେହି ଚିର ମଳୟର ଦେଶକୁ– ଯେଉଁଠି କୁଆଡ଼େ ଖାଲି ଆଲୋକହିଁ ଆଲୋକ ଥାଏ । ଯେଉଁଠି ଜରାବ୍ୟାଧି ନ ଥାଏ, ନ ଥାଏ ଯନ୍ତ୍ରଣା । କାହିଁ କେଉଁଠି ସେ ସାମ୍ରାଜ୍ୟର ସୀମା ?

ଓଃ.... ଏଠି ତ ଦିଗ ନାହିଁ, ଦିଗନ୍ତ ନାହିଁ । ପଥ ନାହିଁ, ସାଧନ ନାହିଁ– କେମିତି ପାରିହୋଇ ହେବ ଏ ମୃତ୍ୟୁ ମୁଲକକୁ ? ଖୋଜିଲେ ମିଳିବ କି କେଉଁଠି ସରିତା ?

ଏଠି ସମୟ କ'ଣ ସ୍ଥିର ? ନ ହେଲେ ଅନ୍ଧାର ଘୁଞ୍ଚନ୍ତା ନାହିଁ କାହିଁକି ? ବରଂ ଆହୁରି ଘଞ୍ଚ ହେଉଛି ଅନ୍ଧାର । କିଟିକିଟି ଅନ୍ଧାର । ନିରନ୍ଧ୍ର ଅନ୍ଧାର । ଅନ୍ଧାର ଖାଲି ଅନ୍ଧାର । ଆଃ..... କିଏ କଣ୍ଢା ଛାଟରେ ପିଟିଚାଲିଛି ତାକୁ ? କିଏ ଚାପିଧରିଛି ତା' ଛାତିକୁ ? ସେ ଅଣନିଃଶ୍ୱାସୀ ହୋଇପଡୁଛି । କିଏ ନିଆଁ ଲଗାଇଦେଉଛି ତା' ଦେହରେ ? ପୋଡ଼ାଜଳା କରୁଛି ତା' ସାରା ଶରୀର । ଗୌତମ ଛଟପଟ ହେଉଥିଲା ଯନ୍ତ୍ରଣାରେ ଅଥଚ ତା' ପାଟି ଖୋଲୁ ନ ଥିଲା ।

ଏଇ, ଖସ୍ ଖସ୍ ହୋଇ କିଏ ମାଡ଼ିଆସୁଛି । କଳା ମଚମଚ ମଇଁଷିଟାଏ । ଲମ୍ୱା ଲମ୍ୱା ଶିଙ୍ଗ ତା'ର । ଭୁସିଦେବ ଯେମିତି ତା' ମୁନିଆ ଶିଂଘକୁ ଗୌତମ ପେଟରେ । ଏ ମଇଁଷି ଉପରେ କିଏ ? ବିକଟାଳ ମଣିଷଟେ । ହାତେ ଲମ୍ୱା ନିଶ । ଡିମାଡିମା ଆଖି । ତାକୁ ଦେଖିବାମାତ୍ରେ ଗୌତମ ଛାତିରୁ ରକ୍ତ ଶୁଖିଗଲା ଯେମିତି ! ନା, କେହି ନାହାନ୍ତି କେଉଁଠି– ସବୁଆଡ଼େ ଅନ୍ଧାର– ଅନ୍ଧାର ଭୁଆଁ ବୁଲାଉଛି ଖାଲି ।

କିଏ ? କିଏ ତା' ପଛରେ । କାହାର ଏ କର୍କଶ ପାଦଶବ୍ଦ । ସେ ପଛକୁ ଚାହିଁଲା । ଦେଖିଲା, ଶିଙ୍ଗଥିବା କଳାଭୁଷୁଣ୍ଡା ଲୋକ କେତେଜଣ । ହାତରେ ଠେଣ୍ଟା, ବଲମ । ତାକୁ ମାରିବାପାଇଁ ଧାଇଁଆସୁଛନ୍ତି । ଗୌତମ ଦୌଡ଼ିଲା ପ୍ରାଣବିକଳରେ, ଅନ୍ଧାରକୁ ବେଖାତିର କରି । ଭାବିଲା ସେ ଏକା ନିଃଶ୍ୱାସକେ ଯାଇ ପହଞ୍ଚିଯିବ ପରିଚିତ ପୃଥିବୀରେ, ଯେଉଁଠି ତା' ମାଆ ଥିବେ, ବାପା ଥିବେ, ଥିବ ବି ତା'ସ୍ତ୍ରୀ । ଆରେ, ଆଗରେ ଯେ ବାଟ ଓଗାଳିଛନ୍ତି କଙ୍କାଳମାନେ ! କିଳିକିଳା ରାବ କରୁଛନ୍ତି । କୁଆଡ଼େ ଯିବ ଗୌତମ ? ତା' ଦେହରୁ ଗମ୍‌ଗମ୍ ଝାଳ ବୋହିବାକୁ ଲାଗିଲା । ଏଇ..... ଏଇ..... କଳାଭୁଷୁଣ୍ଡା ଲୋକମାନେ ଧରିପକଉଛନ୍ତି ତାକୁ । ପିଙ୍ଗିଦେଉଛନ୍ତି ଟକମକ ହୋଇ ଫୁଟୁଥିବା ତେଲ କରେଇକୁ ।

ଚିତ୍କାର କରିଉଠିଲା ଗୌତମ ।

ଚେନାଏ ଆଲୋକ ଖେଳିଗଲା ତା' ଆଖି ସାମ୍ନାରେ । ସେ ଦେଖୁଥିଲା ଗୋଟେ ଚିହ୍ନା ପୃଥିବୀର ଝାପ୍‌ସା ଚେହେରା । ଶୁଣୁଥିଲା କିଛି ଅସ୍ପଷ୍ଟ ଅଥଚ

ଅନ୍ତରଙ୍ଗ ଉଚ୍ଚାରଣ । ''ମୋ ଧନରେ , ତୁ ଖୁବ୍ ଶୀଘ୍ର ଭଲ ହୋଇଯିବୁ । ହଜିଲା ଧନକୁ ମୋର ଫେରାଇ ଆଣିବାପାଇଁ ମୁଁ ସାରା ଦୁନିଆ ଘୂରିସାରିଲିଣି । କାହିଁ କେତେଦିନ ପରେ ଆଜି ତୋ ଚେତା ଫେରୁଛିରେ ଧନ !'' ବାସ୍... ତା'ପରେ ପୁଣି ଅନ୍ଧାରର ସୁଡ଼ଙ୍ଗ ଭିତରକୁ ଠେଲି ହୋଇଗଲା ଗୌତମ ।

ଅନ୍ଧାର କିନ୍ତୁ ଆଉ ବେଶିଦିନ ଡରେଇପାରିଲା ନାହିଁ ଗୌତମକୁ । ଆଲୋକର ବନ୍ୟାରେ ହଠାତ୍ ଦିନେ ପ୍ଲାବିତ ହୋଇଗଲା ତା' ପ୍ରିୟ ବସୁନ୍ଧରା । ଗୋଟେ ସୁନ୍ଦର କୋଠରିର ବିଛଣା ଉପରେ ଶୋଇରହିଥିବା ସେ ଅନୁଭବ କଲା । ଧୀରେ ଧୀରେ ସେ ଦୃଷ୍ଟି ଲମ୍ୱେଇଲା ଝର୍କା ଆଡ଼କୁ । ଦୂରରୁ ଦୂରକୁ ଆହୁରି ଦୂରକୁ ଲମ୍ୱିଯାଇଥିଲା ନୀଳ ଆକାଶ । ଫଗୁଣର ଫଗୁଛିଟା କିଏ ବୋଳିଦେଇଥିଲା ସେଇ ବିଶାଳ କାନ୍‌ଭାସ ଉପରେ । ବାଃ..... କି ଚମତ୍କାର ! ଅନେକ ଦିନ ପରେ ପୁଲକିତ ହେଲା ଗୌତମ । ଧୀର ପବନ ତା' ସାରା ଦେହକୁ ଚୁମିଯାଉଥିଲା– ଧୀରେ ହସ ଲାଖିରହିଥିଲା ତା' ଓଠ କୋଣରେ, ନିଜ ଅଜାଣତରେ ।

ତା' ମା'ଙ୍କ ମ୍ଳାନ ମୁହଁରେ ଲକ୍ଷେ କଇଁର ହସ ଫୁଟୁଥିବା ଲକ୍ଷ୍ୟ କରିପାରୁଥିଲା ଗୌତମ । ଦେଖିପାରୁଥିଲା ତା' ସ୍ତ୍ରୀର ଅଳସ ଆଖିରେ ଆଖିଏ ସ୍ୱପ୍ନ ! ବୁଝିପାରୁଥିଲା ବି କେମିତି ତା' ବାପାଙ୍କ ନଇଁଲା ଅଣ୍ଟା ସଳଖି ଉଠୁଛି !

ଗୌତମର ଓଠ ଥରୁଥିଲା ।

'ଏ ପୃଥିବୀ ଖୁବ୍ ସୁନ୍ଦର ନା !'– ଏହି କେତୋଟି ଶବ୍ଦ ଭାରି ଅଥୟ ହୋଇ ବାଟ ଖୋଜୁଥିଲେ ଫିଟିପଡିବାପାଇଁ ।



# ଦର ଆଉଜା

ଇଞ୍ଜିନିୟରିଂ କଲେଜରେ ନାମଲେଖା ସରିଲାପରେ, ହଷ୍ଟେଲରେ ନା ସୁକାନ୍ତି ସାନବୋଉଙ୍କ ପାଖରେ ରହିବ ଲିଜା, ସେ ନେଇ ଛୋଟ ଝଡ଼ଟିଏ ବହିଗଲା ଘର ଭିତରେ । ଲିଜା କିନ୍ତୁ ମୁହଁ ଖୋଲୁ ନ ଥିଲା । ହେଲେ, ହଷ୍ଟେଲରେ ରହିବାକୁ ଇଚ୍ଛା ବି ନ ଥିଲା ଜମା । କାରଣ ସ୍କୁଲଠାରୁ କଲେଜ ପର୍ଯ୍ୟନ୍ତ ପଢ଼ିବାବେଳେ, କୋଉଠି ସେ ହଷ୍ଟେଲର ପାଖ ମାଡ଼ି ନ ଥିଲା । ତେଣୁ ହଷ୍ଟେଲ ବିଷୟରେ ତା'ର ମନୋଭାବ ଥିଲା ଭାରି ରକ୍ଷଣଶୀଳ । ଯେମିତି ହଷ୍ଟେଲ କହିଲେ ମୁହଁ ଦିଶୁଥିବା ଡାଲିପାଣି, ଡେଇଁହଉ ନ ଥିବା ଲକ୍ଷ୍ମଣରେଖା, ଗାଧୋଇବାପାଇଁ ଲମ୍ବା କ୍ୟୁ ଇତ୍ୟାଦିକୁ ସେ ବୁଝୁଥିଲା । ପୁଣି ଇଞ୍ଜିନିୟରିଂ ହଷ୍ଟେଲର ଗୋଟେ କିମ୍ଭୂତକିମାକାର ଚିତ୍ର ଆଙ୍କି ହୋଇ ରହିଥିଲା ତା' ମନ ଭିତରେ । ର୍‍ୟାଗିଂ, କମେଣ୍ଟ, ଅତ୍ୟାଧୁନିକତା– ଏଗୁଡ଼ିକ ଯେମିତି ଇଞ୍ଜିନିୟରିଂ ହଷ୍ଟେଲର ଗୋଟେ ଲେଖାଏଁ ଅଙ୍ଗ । ସତ କହିବାକୁ ଗଲେ, ଲିଜା ମନରେ ଇଞ୍ଜିନିୟରିଂ ହଷ୍ଟେଲ ପ୍ରତି ଗୋଟେ ଭୟମିଶ୍ରିତ ଘୃଣା ଥିଲା ।

ଲିଜା ବଢ଼ିଥିବା ଜାଗାଟିକୁ କୁହାଯାଇପାରିବ ଗାଁ, କୁହାଯାଇପାରିବ ବି ସହର । ହାଇୱେ କଡ଼ର ଗୋଟେ ଉନ୍ନତ ଜନପଦ, ଯୋଉଠି ସ୍କୁଲ, କଲେଜ, ଡାକ୍ତରଖାନା, ଥାନା ଆଦି ଆଧୁନିକ ଅନୁଷ୍ଠାନର ଅଭାବ ନ ଥିଲା । ଅଭାବ ନ ଥିଲା ବଜାର ହାଟର । କିନ୍ତୁ ଗାଉଁଲି ଭାବ ଲାଖିହେଇ ରହିଥିଲା ଲୋକମାନଙ୍କର ହାବଭାବରେ । ସେଠାକାର କଲେଜର ଅଧ୍ୟାପକ ଥିଲେ ଲିଜାର ବାପା । କଲେଜ ବାଉଣ୍ଡରିକୁ ଲାଗି ଥିଲା ତାଙ୍କ ଘର । କାହିଁ କେଉଁଦିନୁ ବାପା କିଣିଥିବା ଏକରେ ପରିମିତ ଜାଗା ଉପରେ ଠିଆହୋଇଥିଲା ଟାଇଲଛପର ଘର । ଘର ସାମ୍ନାରେ ବାଡ଼ିବଗିଚା, ପଛପଟେ ମାଛଗାଡ଼ିଆ । ଲିଜାର ତେଣୁ ହଷ୍ଟେଲରେ କେବେ ରହିବାର ଆବଶ୍ୟକତା ପଡ଼ି ନ ଥିଲା । ଏପରିକି ପ୍ଲସ-ଟୁ ପାସ୍ କଲା ପର୍ଯ୍ୟନ୍ତ ସେ କଟକ ବା ଭୁବନେଶ୍ୱର ଭଲକରି ଦେଖି ନ ଥିଲା । କାଉନ୍‌ସେଲିଂ ପାଇଁ ସେ ପ୍ରଥମକରି ଆସିଥିଲା ଭୁବନେଶ୍ୱର ।

କାଉନ୍‌ସେଲିଂ ତାରିଖର ପୂର୍ବଦିନ ଲିଜା ଯେତେବେଳେ ତା' ବାପାଙ୍କ ସାଙ୍ଗରେ ଭୁବନେଶ୍ୱର ଯିବାକୁ ବାହାରିଥିଲା, ବୋଉ ତା' ସ୍ୱଭାବସୁଲଭ ଗାଉଁଲି ଢଙ୍ଗରେ କହିଥିଲା, ''ଖବରଦାର୍, ତମେ ଯେମିତି ମୋ' ଝିଅକୁ ସେ ଠାଇଁଆଣୀ ଘରକୁ ନ ନିଅ ।'' ସୁକାନ୍ତି-ସାନବୋଉଙ୍କ କଥାପଡ଼ିଲେ ବୋଉ ଏମିତି ଶବ୍ଦ

ବ୍ୟବହାର କରିବହିଁ କରିବ । ସେତେବେଳେ ତା’ ମୁହଁ ପାଚି ଲାଲ୍ ପଡ଼ିଯିବ ଏବଂ ସେ ହିତାହିତଜ୍ଞାନ ହରେଇବସିବ । ଆଉ ବୋଉ ପାଟି ଉଖାଳ କଲାବେଳେ ବାପା ଚୁନିହୋଇ ବସିଥିବେ ଯେ ବସିଥିବେ, ତାଙ୍କ ପାଟିରୁ ଉଁ କି ଚୁଁ ପଦେ କଥା ବାହାରୁ ନ ଥିବ, ଯେମିତି ସେ ମଣିଷମାରିଲା ପରି କ’ଣ ଗୋଟେ ପାପ କରିପକେଇଛନ୍ତି ।

ବୋଉ କିନ୍ତୁ ସତରେ ବାପାଙ୍କୁ ମହାପାପୀଠାରୁ ଆହୁରି ବଡ଼ ପାପୀ ବୋଲି ବିଚାର କରୁଥିଲା । ଏବେ ନୁହେଁ, ପିଲାଟିଦିନରୁ ଲିଜା ଲକ୍ଷ୍ୟ କରିଆସୁଛି, ବାପାଙ୍କ ପ୍ରତି ବୋଉର ଏହି ଘୃଣାକୁ । ଏଇଥିପାଇଁହିଁ ଘରେ ସବୁବେଳେ ଅଶାନ୍ତି ଲାଗିରହୁଥିଲା । ବୋଉ କଥାକଥାକେ ବାପାଙ୍କ କଟାଘା’ରେ ଚୂନ ବୋଲୁଥିଲା । ବନ୍ଧୁବାନ୍ଧବ, ସାଙ୍ଗସାଥୀ, ସାଇପଡ଼ିଶାଙ୍କ ଆଗରେ ତାଚ୍ଛଲ୍ୟ କରୁଥିଲା ତାଙ୍କୁ । ବାପା କେମିତି କେଜାଣି ସବୁ ସହିଯାଉଥିଲେ ନୀରବରେ । ନ ସହନ୍ତେ କେମିତି ? ବାପା ନିଜେ ତ ସବୁ ଓଲମ୍‌ବିଲମ୍ କରିଥିଲେ । ପିଲାବେଳେ ଲିଜା କିଛି ବୁଝିପାରୁ ନ ଥିଲା ସିନା, ହେଲେ ବୟସ ବଢ଼ିଲା ପରେ ସେ ଅନେକ କଥା ବୁଝିଯାଇଥିଲା । ବୁଝିଯାଇଥିଲା, ବୋଉ ନାକଅଗରେ କାହିଁକି ସବୁବେଳେ ବସାବାନ୍ଧିଥିଲା ରାଗ । କାହିଁକି ବାପା ତା’କଥାରେ ପ୍ରତିବାଦ କରନ୍ତି ନାହିଁ, ଚୁପ୍ ରହନ୍ତି । ମୁହଁ ପୋତିଥାନ୍ତି ସବୁବେଳେ । ସାଇପଡ଼ିଶାରେ ମିଶନ୍ତି ନାହିଁ ସେତେ । କଲେଜକୁ ସେମିତି ଯାଆନ୍ତି ଓ ଆସନ୍ତି ଚୁପ୍‌ଚାପ୍ । ବେଶି ଆଳାପ-ଆଲୋଚନା କରନ୍ତି ନାହିଁ ଛାତ୍ରଛାତ୍ରୀ ବା ସହକର୍ମୀମାନଙ୍କ ସହ । ସେ ଯେମିତି ବଞ୍ଚନ୍ତି ଗୋଟେ ଅଲଗା ପୃଥିବୀରେ । ବୁଝିପାରିଥିଲା ଲିଜା, ତା’ ବାପା କାହିଁକି ଗାଁ ନାଁ ଧରନ୍ତି ନାହିଁ କେବେ । କଟକଠାରୁ ମାତ୍ର ପଚିଶ କିଲୋମିଟର ଦୂର ତା’ ଗାଁ, ଅଥଚ ସେ ଦୁଇଶହ କିଲୋମିଟର ଦୂର ଗୋଟେ ଛୋଟ ପ୍ରାଇଭେଟ୍ କଲେଜରେ ରହିବାକୁ ପସନ୍ଦ କରନ୍ତି । ସେଠୁ ଛାଡ଼ିଯିବାକୁ ଚାହାନ୍ତି ନାହିଁ । ସେଥିପାଇଁ ସେଠି ଘର ତୋଳିସାରିଲେଣି କୋଉଦିନରୁ । କଟକ-ଭୁବନେଶ୍ୱର ପାଖରେ ଏତେ ନାମୀ ପ୍ରାଇଭେଟ୍ କଲେଜ ସବୁ ଅଛି, ବାପା ଚାହିଲେ କ’ଣ ବଦଳି ହୋଇଯାଇପାରନ୍ତେ ନାହିଁ ସେସବୁ କଲେଜକୁ ? ସେ କିନ୍ତୁ ଚାହାନ୍ତି ଦୂରେଇ ରହିବାକୁ ଗାଁଠାରୁ, ପରିଚିତ ଦୁନିଆରୁ । ଲିଜା ଠିକ୍ ବୁଝିଥିଲା, ତା’ ବାପା ଅନ୍ୟ କାହାକୁ ମୁହଁ ଦେଖାଇବାର ସାହସ ହରେଇବସିଛନ୍ତି ।

ବୋଉ କହୁ କହୁ ଅନେକ କଥା କହିଯାଏ ବାପାଙ୍କୁ, ଯୋଉ କଥା ତୁଣ୍ଡରେ ଧରିହବ ନାହିଁ- ବୁଢ଼ାକାଳେ ତମର ଏମିତି ପେରେମ ବାହାରୁଥିଲା ନା ସେ ନିଉଛୁଣୀଟାକୁ ବାହାହଉଥିଲ ! କି ରୂପ, ଗୁଣ ଦେଖିଲ ତା’ଠି ଯେ ସ୍ତ୍ରୀପିଲା ସମସ୍ତଙ୍କ କଥା ପାସୋରିଦେଲ ? ପଡ଼ିଶାଅଡ଼ିଶାଙ୍କୁ ଛି’ କରିଦେଲ ! ଆଉ ସେ ଅଲାଜୁକୀଟା ବି ସେମିତି । ତାକୁ ଟୋକାବର ମିଳୁ ନ ଥିଲା ଯେ ସେ ଦରବୁଢ଼ାଟାକୁ

ରସିଲା ! ଦି' ତିନିଟା ଛୁଆର ବାପଠି ସେ କି ମର୍ଦପଣ ଦେଖିଲା କେଜାଣି, ଲାଜ-ସରମକୁ ପୋଡ଼ି ଖାଇଲା ! ବାପାମା'ଙ୍କ ମୁହଁକୁ କାଦୁଅ ଫିଙ୍ଗିଗଲା । ବାହାବେଦୀ, ମଙ୍ଗଳବାଜଣା, ପାଟମଠା, ହାତଗଣ୍ଠି ଏସବୁର ମୋହକୁ ତୁଟେଇ ରାତିଅଧିଆ ମନ୍ଦିରହତାରେ ପରମିଣିପଟାର ହାତ ଧରିଲା !

ତା' ବାପାଙ୍କ ପ୍ରେମକାହାଣୀ ଅବଶ୍ୟ ଅଜଣା ନ ଥିଲା ଲିଜାକୁ ।

ଲିଜାର ବାପା ସେତେବେଳେ ଗୋଟେ ଦୂର ପ୍ରାଇଭେଟ୍ କଲେଜରେ ଅଧ୍ୟାପନା କରୁଥିଲେ । ସେ ଅଞ୍ଚଳଟି କୁଆଡ଼େ ଥିଲା ଖୁବ୍ ମ୍ୟାଲେରିଆପ୍ରବଣ– ପରିବାରକୁ ତେଣୁ ସାଙ୍ଗରେ ନେଇ ନ ଥିଲେ ବାପା । ବୋଉ, ରାମୁଭାଇ ଓ ଲିଜା ନିଜେ ଜେଜେବାପା ଓ ଜେଜେମା'ଙ୍କ ପାଖରେ ରହୁଥିଲେ, ତାଙ୍କ ଗାଁରେ । ସେଇ କଲେଜରେ ବାପା ଥିଲାବେଳେ ଏ ଅଞ୍ଚଳର ଝିଅଟେ ଗୋଟେ ସରକାରୀ ହାଇସ୍କୁଲର ମାଷ୍ଟ୍ରାଣୀଭାବରେ ସେଠି ଯୋଗଦେଇଥିଲା । ସେ କାହିଁ କେତେ ବର୍ଷ ତଳର କଥା । ସେତେବେଳେ ରାମୁଭାଇ ଗାଁ ସ୍କୁଲରେ ତୃତୀୟ ଶ୍ରେଣୀରେ ପଢୁଥିଲା, ଆଉ ସେ ତ ବର୍ଷକର ବି ହୋଇ ନ ଥିଲା କୁଆଡ଼େ ।

ଏବେକା ପରି ସେତେବେଳେ ଏତେ ଗାଡ଼ିମୋଟର ନ ଥିଲା କନ୍ଧମାଳ ଅଞ୍ଚଳକୁ । ବାପା ଦୁଇ ତିନି ମାସରେ ଥରେ ଘରକୁ ଆସୁଥିଲେ । ସେତେବେଳେ ପୁଣି ବିଜୁଳି ଆଲୁଅ ନ ଥିଲା ସେ ଜାଗାରେ । କଲେଜ ସାମ୍ନା ରାସ୍ତାରେ କୁଆଡ଼େ ସଞ୍ଜ ସାତଟାରେ ଭାଲୁମାନେ ପ୍ରସେସନ୍ କରୁଥିଲେ । ବାପା ନିଜେ ତ ରାତିଅଧରେ ଚିତାବାଘର ହେଣ୍ଟାଳ ଶୁଣୁଥିଲେ ପାଖ ଜଙ୍ଗଲରୁ । ଦିନ ଦି'ପହରେ ହାତୀପଲ ପୁଣି ବଜାର ଭିତରକୁ ଧସେଇ ପଶୁଥିଲେ । ସେହି ବେଳରେ କଟକଆଡ଼ିଆ ଝିଅଟେ ଏକା ଏକା ଯାଇଥିଲା ସେ ଜାଗାକୁ ମାଷ୍ଟ୍ରାଣୀ ହେଇ । କମ୍ ସାହସ ତ ନୁହେଁ ସେ ଝିଅର । ବାପା ଏ ଆଡ଼ର ଲୋକ ବୋଲି ଜାଣିଲାପରେ ତା'ର ସାହସ ବଢ଼ିଯାଇଥିଲା ଖୁବ୍ । ବାପା ପାଲଟିଯାଇଥିଲେ ତା'ର ଲୋକାଲ ଗାର୍ଡ଼ିଆନ୍ ।

ବାପା ରହୁଥିବା ଘରକୁ ଲାଗି ଭଡ଼ାଘରଟେ ଯୋଗାଡ଼ ହୋଇଥିଲା ସେଇ ଝିଅଟିପାଇଁ । ତା'ର ହାନିଲାଭ କଥା ସବୁ ବୁଝୁଥିଲେ ବାପା । ଝିଅଟିର ବାପା ଭାଇ କେହି ନ ଥିଲେ– ବିଧବା ମା'ଟେ ଯାହା ଏକା ଏକା ରହୁଥିଲା, ନଈକୂଳିଆ ଗୋଟେ ଅପନ୍ତରା ଗାଁରେ । ବାପାଙ୍କ ସଂସ୍ପର୍ଶରେ ଆସିବାଠାରୁ ଝିଅଟି ନିଜକୁ ଆଉ ଅସହାୟ ମନେକରୁ ନ ଥିଲା, ଦୂର ଅଚିହ୍ନା ଜାଗାରେ । ବାପାଙ୍କ ସହ ତା' ସମ୍ପର୍କ କ୍ରମେ ପ୍ରଗାଢ଼ ଆତ୍ମୀୟତାରେ ରୂପାନ୍ତରିତ ହୋଇଥିଲା । କିଛିଦିନ ପରେ ବାପା

ଆଉ ଷ୍ଟୋଭ୍ ଜାଳି ରୋଷେଇ କରିବା ଦରକାର ହେଲା ନାହିଁ କି ସେ ଜାଗାରେ ଏକମାତ୍ର ଖପରଲି ଚାଳିଆ ହୋଟେଲକୁ ଦୌଡ଼ିବାକୁ ପଡ଼ିଲା ନାହିଁ ତାଙ୍କୁ । ଝିଅଟିର ହାତରନ୍ଧା ତୃପ୍ତ କରୁଥିଲା ବାପାଙ୍କୁ ।

ନିଜ ସ୍ୱାସ୍ଥ୍ୟ ବିଷୟରେ ବଡ଼ ବେପରୱା ତା' ବାପା ଥରେ ମ୍ୟାଲେରିଆରେ ପଡ଼ିଲେ । ସକାଳେ ସଞ୍ଜେ କମ୍ପରେ ଗଡ଼ିଲେ– ରଡ଼ିଛାଡ଼ିଲେ ରାତିଅଧରେ କମ୍ବଳ ଭିତରୁ । ଡାକ୍ତରୀ ଔଷଧ ସେମିତି କିଛି କାମ ଦେଲା ନାହିଁ । ଜ୍ୱର ଲାଗିରହିଲା ମାସାଧିକ କାଳ । ଖାଇବାକୁ କିଛି ରୁଚିଲା ନାହିଁ ତାଙ୍କୁ । ସେ କୁଆଡ଼େ କଣ୍ଟାପରି ଦିଶିଲେ । ତଥାପି ଘରକୁ ଖବରଅନ୍ତର ଦେଲେ ନାହିଁ । ବୋଉ କଥା ଯାହାହଉ, ଜେଜେମା' ତ ସମ୍ଭାଳି ହୋଇ ନ ଥାଆନ୍ତେ, ତାଙ୍କର ଏକମାତ୍ର ପୁଅ ଅସୁଖ ପଡ଼ିଥିବା ଜାଣିଲାପରେ । ସେତେବେଳେ ସେଇ ଝିଅଟି ସବୁପ୍ରକାର ସେବାଶୁଶ୍ରୂଷା କରିଥିଲା ।

ସେବାଶୁଶ୍ରୂଷାର ମାନେ କ'ଣ ବାହାଚୂଡ଼ା ହୋଇଥିବା ଗୋଟେ ଲୋକକୁ ପ୍ରେମ କରିବା ?

ବାପାଙ୍କ ଦେହ ସୁସ୍ଥ ହେଲାବେଳକୁ ସାରା ଅଞ୍ଚଳଟି ଅସୁସ୍ଥ ହୋଇପଡ଼ିଥିଲା ତାଙ୍କପାଇଁ । କେବଳ କଲେଜ କ୍ୟାମ୍ପସ୍‌ରେ କାହିଁକି, ରାସ୍ତାଘାଟ, ଛକବଜାର, ସବୁଠି ଆଲୋଚନା ହେଉଥିଲା ସେ ଝିଅଟି ସହ ତାଙ୍କ ସମ୍ପର୍କ ବିଷୟରେ । ଏକଥା ଯେ ଝିଅଟି କାନରେ ପଡ଼ି ନ ଥିବ ବା ତାକୁ ବାଧି ନ ଥିବ ସେତେବେଳେ, ତା' ବି ନୁହେଁ । ହେଲେ କି ହିମ୍ମତ ଥିଲା ତା'ର, ବାପାଙ୍କ ହାତରେ ସେ ନିଜର ସିନ୍ଥା ଭରିଲା ସିନ୍ଦୂରରେ । ଆଖପାଖରେ କେଉଁ ଦେବୀ ମନ୍ଦିରରେ ଜଣେ ଦୁଇଜଣ ସହକର୍ମୀଙ୍କ ଗହଣରେ ବାପା ଗ୍ରହଣ କରିନେଇଥିଲେ ଝିଅଟିକୁ । ଅନେକ ଦିନ ପର୍ଯ୍ୟନ୍ତ ଘରଲୋକ ଏକଥାର ବିନ୍ଦୁବିସର୍ଗ ଜାଣିପାରି ନ ଥିଲେ ।

ସେଇ ଝିଅଟି ସୁକାନ୍ତି ସାମଲ, ଓରଫ୍ ସୁକାନ୍ତି—ସାନବୋଉ ।

ସତକଥାକୁ କେତେଦିନ ଆଉ ଲୁଚେଇବା ସମ୍ଭବ ହୋଇଥାନ୍ତା ! ପାହାଡ଼ିଆ ଅଞ୍ଚଳରୁ ସମତୁଲ ଅଞ୍ଚଳ ଆଉ କେତେ ବାଟ କି ! କାନକୁ କାନ ହୋଇ କଥା ପହଞ୍ଚିଗଲା ଗାଁ ଭୂଇଁରେ । ପ୍ରଥମେ ଯୋଉଦିନ ବୋଉ କାନରେ ସେ କଥାପଡ଼ିଲା, ବୋଉ ଭାବିଲା, ଗାଁ ମାଇପେ ବୋଧେ ତା' ସାଙ୍ଗରେ ଟାହିଟାପରା କରୁଛନ୍ତି । ଯାଆ-ଯାଆ, ଭାଉଜ-ନଣନ୍ଦଙ୍କ ଭିତରେ ଟାହିଟାପରା କ'ଣ ନୂଆ କଥା କି ? କିନ୍ତୁ ଖୁଡ଼ୀ ସମ୍ପର୍କର ବୟସ୍କ ସ୍ତ୍ରୀଲୋକ କେତେଜଣଙ୍କ କଥାରେ ବି ସେ ପରତେ ଗଲା ନାହିଁ । ଭାବିଲା, ତା' ସୁନାସଂସାରକୁ ଚୂନା କରିବାପାଇଁ ମସୁଧା ଚାଲିଚିବୋଧେ ।

କିନ୍ତୁ ତା' ମନକୁ ପାପ ଛୁଇଁଲା । ଜେଜେମା'ଙ୍କ ପାଖରେ ସେ ସବୁକଥା ଖୋଲି କହିଲା । କହିଲା, ''ତମ ପୁଅ ଦ୍ୱିତୀୟ ହୋଇଛନ୍ତି ବୋଲି ଗାଁ ମାଇପେ କୁହାକୁହି ହଉଛନ୍ତି ।'' ଜେଜେମା ବୋଉ ତୁଣ୍ଡରୁ ଏମିତିକା କଥା ଶୁଣି ଜଳିଗଲା ହଠାତ୍ । କଥାକାଟି କହିଲା, ''ଚନ୍ଦ୍ରରେ ସିନା କଳଙ୍କ ଥାଏ, ଗହଣାରେ ସିନା ଖାଦ ଥାଏ, ହେଲେ ମୋ ପୁଅ ତ ଗୋଟାପଣେ ତୁଳସୀ ମାଳି । ତୁ ମନ ଊଣା କରନା ଲୋ ମା', ଏସବୁ ଗାଁ ମାଇପିଙ୍କ କାରସାଦି ।'' ଜେଜେବାପା କିନ୍ତୁ ଥିଲେ ରୋକ୍‌ଠୋକ୍ ଲୋକ, ପୁଣି ଭାରି ଚାଲାକ୍ । ଉଡ଼ିଗଲା ଚଢ଼େଇର ପର ଗଣିଦବା ମଣିଷ । ସେ କହିଲେ, ନିଆଁ ନ ଥିଲେ ତୁଚ୍ଛାଟାରେ ଧୂଆଁ କାହୁଁ ଆସିବ ? ସେ କଟକ ଧାଇଁଲେ– ସେଠୁ ଫୋନ୍ ଲଗେଇଲେ ରମ୍ଭିଳା ଗାଁର ମାନ ଦୀକ୍ଷିତ ପୁଅକୁ, ଯିଏ କନ୍ଧମାଳ କଲେକ୍ଟରଙ୍କର ପି.ଏ. ଥିଲା ସେତେବେଳେ । ସେଠୁ ସତ୍ୟାସତ୍ୟ ଜଣାପଡ଼ିଲା । ଦୀକ୍ଷିତବାବୁ କହିଲେ– କଥାଟା ମିଛ ନୁହେଁ ।

କଟକଫେରନ୍ତା ଜେଜେବାପାଙ୍କ ଉଦାସ ମୁହଁ ଦେଖି ମୂର୍ଚ୍ଛା ଯାଇଥିଲା ବୋଉ । ସଞ୍ଜ ଯାଇ ସକାଳ ହେଲା ପର୍ଯ୍ୟନ୍ତ କୁଆଡ଼େ ତା'ର ଚେତା ଫେରି ନ ଥିଲା । ଘରେ କାନ୍ଦବୋବାଳି ପଡ଼ିଯାଇଥିଲା । ଅପୂଜା ରହିଥିଲେ ଦିଅଁ । ଅରନ୍ଧା, ଅବଢ଼ା, ଲାଗିରହିଲା ସପ୍ତାହେ କାଳ । ଚେତା ଆସିଲାପରେ, ବୋଉ ଓରାରେ ଦଉଡ଼ି ଲଗେଇଦେଇଥିଲା ଯେ ଜେଜେମା' ଯୋଗୁଁ ଜୀବନ ଫେରିପାଇଲା । ଜେଜେମା' ଝିଙ୍ଗାସିଥିଲା ବୋଉକୁ, ''ହଇଲୋ ଚଣ୍ଡାଳୁଣୀ, ଯାହା ତ ହବାର ଥିଲା, ହେଲା । ନିଜ ଛୁଆ ଦି'ଟାକୁ ଅନାଥ କରି କି ଲାଭ ପାଇବୁ ? ତୋ' ଛୁଆ ଛେଉଣ୍ଡ ହବା ସାର ହବ ସିନା ! ମାଉସୀ, ପିଉସୀ, ଖୁଡ଼ୀ, ମଉଳାଣୀ, କେହି କ'ଣ ମା' ତୁଲ ହେବେ । ତା'ପରଠୁଁ ବୋଉ ଆଉ ଆତ୍ମହତ୍ୟା କରିବା କଥା ଭାବି ନ ଥିଲା ।

ଏ ଘଟଣାର ବେଶ୍ କିଛିଦିନ ପରେ ବାପା ଯୋଉଦିନ ଗାଁକୁ ଫେରିଥିଲେ, ସେଦିନ କୁଆଡ଼େ ସାରା ଗାଁ ଥମ୍ ହୋଇଯାଇଥିଲା କିଛିକ୍ଷଣପାଇଁ । ବାପା କିନ୍ତୁ ଏକା ଏକା ଫେରିଥିଲେ ଗାଁକୁ– ସୁକାନ୍ତି-ସାନବୋଉଙ୍କୁ ଆଣି ନ ଥିଲେ ସାଙ୍ଗରେ । ଦାଣ୍ଡପିଣ୍ଡାରେ ବସିଥିବା ଜେଜେବାପା ବାପାଙ୍କ ମୁହଁକୁ ଚାହିଁ ନ ଥିଲେ । ସେ ପଥର ପାଲଟି ଯାଇଥିଲେ ଯେମିତି ! ବୋଉ କବାଟକିଳି କାନ୍ଦିଥିଲା ତିନି ଦିନ ତିନି ରାତି । ଜେଜେମା' ଯାହା ବାପାଙ୍କୁ ସଂଖୋଳିବାରେ ହେଳା କରି ନ ଥିଲା । ଦୁଇ ଚାରିଦିନ ପରେ ଛାଟିପିଟି ହୋଇ ବାପା ଫେରିଯାଇଥିଲେ କନ୍ଧମାଳ । ଫେରିବା ଦିନ ଜେଜେବାପା ଭିଜାଗଳାରେ କୁଆଡ଼େ କହିଥିଲେ ବାପାଙ୍କୁ, ''ତୋ ପଛ ଭାରିଯାର ପାଦ ଯେମିତି ନ ପଡ଼େ ଏ ଘରେ ।''

ବାପାଙ୍କୁ କନ୍ଧମାଳ ଆଉ ଭଲ ଲାଗିଲା ନାହିଁ ବୋଧେ ! ସେ ମୁହଁଟେକି ଚାଲିପାରୁ ନ ଥିଲେ କଲେଜରେ କି କଲେଜ ବାହାରେ । ସେତେବେଳେ ତାଙ୍କ ସାଙ୍ଗ କିଏ ଜଣେ ଏମ.ଏଲ.ଏ. ଥିଲେ । ସେ ଥିଲେ ପୁଣି ଭାରି ପ୍ରଭାବଶାଳୀ ଯୁବନେତା । ତାଙ୍କୁ ଧରାଧରି କରି ବାପା ବଦଳି ହୋଇ ଆସିଲେ ଦକ୍ଷିଣ ଓଡ଼ିଶାରୁ ଉତ୍ତର ଓଡ଼ିଶା– କନ୍ଧମାଳରୁ ବାଲେଶ୍ୱର ଜିଲ୍ଲାକୁ । ମଝିରେ କଟକ ଭୁବନେଶ୍ୱର ଡେଇଁପଡ଼ିଲେ । ସେ ସୋର କଲେଜରେ ଯୋଗଦବା ଆଗରୁ ତାଙ୍କ କୀର୍ତ୍ତିକଳାପ ସବୁ ପହଞ୍ଚିସାରିଥିଲା କଲେଜ କମନ୍‌ରୁମ୍‌ରେ । କିନ୍ତୁ ନୂଆଜାଗାଟା ତାଙ୍କୁ ବୋଧେ ଏତେଟା ମାଡ଼ି ମାଡ଼ି ପଡ଼ିଲା ନାହିଁ । ସେ ଘରଭଡ଼ା ନେଲେ କଲେଜ ପାଖରେ । ବୋଉ ଗାଁରୁ ସୋର ଆସିବାକୁ ଜମା ମଙ୍ଗୁ ନ ଥିଲା ପହିଲେ । ହେଲେ, ଜେଜେବାପାଙ୍କ ତାଗିଦରେ ସେମାନେ ସମସ୍ତେ ଗାଁ ଛାଡ଼ି ସୋରରେ ପହଞ୍ଚିଥିଲେ ।

ସୁକାନ୍ତି-ସାନବୋଉଙ୍କୁ ବି ବେଶିଦିନ ରହିବାକୁ ପଡ଼ି ନ ଥିଲା କନ୍ଧମାଳରେ । ବାପା ତାଙ୍କୁ ବଦଳି କରେଇ ଆଣିଥିଲେ ଭୁବନେଶ୍ୱର କ୍ୟାପିଟାଲ ହାଇସ୍କୁଲକୁ ।

ସୁକାନ୍ତି-ସାନବୋଉଙ୍କ କଥା କଦବା କେମିତି ଆଲୋଚନା ହଉଥିଲା ଘରେ । ରାତିରେ ସାପ ଶବ୍ଦ ପରି ବାପା ତାଙ୍କ ନାଁ ଭୁଲ୍‌ରେ ବି ଧରୁ ନ ଥିଲେ । ମଝିରେ ମଝିରେ କିନ୍ତୁ ବୋଉର ମଗଜରେ ଭୂତ ଚଢୁଥିଲା ଓ ସେ ସୁକାନ୍ତି-ସାନବୋଉଙ୍କୁ ଓ ବାପାଙ୍କୁ ବହେ ଗାଳି ଦଉଥିଲେ । ବୋଉର ଗାଳି ବୋଧେ ବାପାଙ୍କର ଦେହସୁହା ହୋଇଯାଇଥିଲା । ତାଙ୍କର ତ କିଛି ପ୍ରତିକ୍ରିୟା ନ ଥିଲା; ବରଂ ବୋଉ ଗାଳିଦବା ଆରମ୍ଭକଲେ ସେ ଘରୁ ଚାଲିଯାଉଥିଲେ, କୌଣସି କାମର ଆଳରେ କିନ୍ତୁ ପ୍ରାୟ ସବୁ ଶନିବାର ଭୁବନେଶ୍ୱର ଯାଉଥିଲେ ବାପା ।

କାଉନସେଲିଂ ପାଇଁ ଭୁବନେଶ୍ୱର ଯିବା ପୂର୍ବରୁ ଲିଜା କେବେ ବି ସୁକାନ୍ତି-ସାନବୋଉଙ୍କୁ ଦେଖି ନ ଥିଲା । ବୋଉ କଥା ନ ମାନି ବାପା ସେଦିନ ତାକୁ ସାଙ୍ଗରେ ଧରି ପହଞ୍ଚିଲେ ସୁକାନ୍ତି-ସାନବୋଉଙ୍କ ବସାଘରେ । ଲିଜାର ଇଚ୍ଛା ନ ଥିଲା ତାଙ୍କ ବସାଘରକୁ ଯିବାପାଇଁ, କାରଣ ପିଲାଟିଦିନରୁ ସୁକାନ୍ତି-ସାନବୋଉଙ୍କ ବିଷୟରେ ଗୋଟେ ଭାରି ଖରାପ ଧାରଣା ଜମାଟ ବାନ୍ଧିଥିଲା ତା' ମନରେ । କିନ୍ତୁ ସୁକାନ୍ତି-ସାନବୋଉଙ୍କୁ ଦେଖିଦେଲା କ୍ଷଣି ତା' ଭିତରେ ସବୁକିଛି ଓଲଟପାଲଟ ହୋଇଗଲା ଯେମିତି !

ପ୍ରଥମ ଦେଖାରେ ସୁକାନ୍ତି-ସାନବୋଉ ଭାରି ଭଲ ଲାଗିଥିଲେ ଲିଜାକୁ । ସୁନ୍ଦର ଚେହେରା ସାଙ୍ଗକୁ ଆହୁରି ସୁନ୍ଦର ପରିପାଟୀ । ସମ୍ଭ୍ରାନ୍ତ ଥିଲା ତାଙ୍କର ଚାଲିଚଳଣ, କଥାବାର୍ତ୍ତା । ଲିଜା ଆସିବା କଥା ସେ ଆଗରୁ ଜାଣିଥିଲେ କି– ନ ହେଲେ ତାଙ୍କ

ଭିତରେ ଥିବା ଉତ୍କଣ୍ଠା କାହିଁକି ଉତୁରିପଡ଼ିଲା ପରି ମନେହେଉଥିଲେ ? ବାପା ଫୋନ୍ କରି କହିଦେଇଥିବେ ହୁଏତ ଆଗରୁ, ନ ହେଲେ ଲିଜା ଯାହାସବୁ ଖାଇବାକୁ ଭଲପାଏ, ସେସବୁର ଆୟୋଜନ ଆଗରୁ ସରିଥିଲା କେମିତି ? କେତେ ଯତ୍ନଶୀଳ ଲାଗୁଥିଲେ ସତରେ ସୁକାନ୍ତି-ସାନବୋଉ । ପାଖରେ ବସି ଖୋଇଦଉଥିଲେ ତାଙ୍କୁ, ସେ ମନାକରିବା ସତ୍ତ୍ୱେ । ରାତିରେ ବି ସେ ଶୋଇଥିଲା ତାଙ୍କରି ପାଖରେ । ବାପା ଓ ସୁକାନ୍ତି-ସାନବୋଉଙ୍କ ପୁଅ ପିଣ୍ଟୁ ଶୋଇଥିଲେ ଡ୍ରଇଂରୁମ୍‌ରେ । ପିଣ୍ଟୁକୁ ବି ପ୍ରଥମ କରି ଦେଖିଥିଲା ଲିଜା । ସୁକାନ୍ତି-ସାନବୋଉଙ୍କ ମୁହଁଟା ସେ ଗୋଟାପଣେ ଛଡ଼େଇ ଆଣିଥିଲା । ଭାରି ଧୀର-ସ୍ଥିର, ରାମୁଭାଇର ଠିକ୍ ବିପରୀତ ।

ଦିନେ ଦୁଇ ଦିନ ଭିତରେ ଲିଜା ବହୁତ କଥା ଜାଣିଗଲା ସୁକାନ୍ତି-ସାନବୋଉଙ୍କ ବିଷୟରେ । ଆହୁରି ଅନେକ କଥା ହୁଏତ ବାକି ରହିଥିଲା ଜାଣିବାପାଇଁ । କିନ୍ତୁ ଏ ସବୁର ଫେଣ୍ଟାଫେଣ୍ଟିରେ ଲିଜା ଯାହା ବୁଝିଲା, ସୁକାନ୍ତି-ସାନବୋଉ ସୁଖୀ ନ ଥିଲେ କଦାପି । ଅବଶ୍ୟ ତାଙ୍କ ମୁହଁରେ ଦୁଃଖମାନେ ମେଘପରି ଓହଳିବାର ସଙ୍କେତ ନ ଥିଲା । ତଥାପି ତାଙ୍କ ତୃପ୍ତ ଚେହେରାର କୋଉ ନିଭୃତ କୋଣରେ ଯେ ଅତୃପ୍ତି ସବୁ ସାଲୁବାଲୁ ହେଉଥିଲେ ବର୍ଷାଦିନିଆ ଶଁବାଲୁଆପରି, ଏକଥା ବୁଝିବାପାଇଁ ଲିଜାକୁ ଡେରି ଲାଗି ନ ଥିଲା । ସୁକାନ୍ତି-ସାନ୍‌ବୋଉ ସବୁ କିଛି ଦେଇଚାଲିଥିଲେ, ବୋଧେ କିଛି ପାଉ ନ ଥିଲେ ପ୍ରତିବଦଳରେ । ଆଉ ଯଦି କିଛି ସେ ପାଉଥିଲେ, ତାହା ଅଶାନ୍ତି, ଅତୃପ୍ତି ଓ ଅପବାଦ ଛଡ଼ା ଅନ୍ୟ କ'ଣ ହୋଇପାରେ ?

ବାପା ଯଦି ମୁହଁ ସଳଖି ଚାଲିପାରୁ ନାହାନ୍ତି ଆଜିଯାକେ, ସୁକାନ୍ତି-ସାନବୋଉ କ'ଣ ମୁହଁ ଟେକି ଚାଲିପାରୁଥିବେ ରାଜଦାଣ୍ଡରେ । କନ୍ଧମାଳରୁ ଭୁବନେଶ୍ୱରକୁ ତ ଲମ୍ବିଯାଇଥିବ କଥାର ସୁଅଟିଏ ସେତେବେଳେ ! ପୁଣି ତୁଣ୍ଡରୁ ତୁଣ୍ଡ ହୋଇ କେତେ ବିକୃତିର ବହଳ ପ୍ରଲେପ ଲାଗିଥିବ ସେଥିରେ ! ଏବେ ବି ଲିଭି ନ ଥିବ ସେ ବଣନିଆଁ । କୁହୁଳି କୁହୁଳି ପୁଣି ଜଳିଉଠୁଥିବ ଛାଁକୁ । ସେସବୁକୁ କେମିତି ସହ୍ୟ କରୁଥିବେ ସୁକାନ୍ତି-ସାନବୋଉ ! ପ୍ରଜାପତି ପରି ତାଙ୍କ କଅଁଳ ହିଆ କେମିତି ସାମ୍ନା କରୁଥିବ ବା-ବତାସ ସବୁ ?

ଏଇ ବର୍ଷ କେତୋଟି ଭିତରେ ସୁକାନ୍ତି-ସାନବୋଉ କ'ଣ ପାଇଲେ ବାପାଙ୍କଠାରୁ ? ବାପା କ'ଣ ତାଙ୍କୁ ନିର୍ଭୀକଭାବରେ ଠିଆ କରେଇପାରିଲେ ସମାଜ ଆଗରେ ? ସେମିତି ସେ ଦର ଆଉଜା କବାଟଟେ ହୋଇ ରହିଗଲେ ସବୁଦିନପାଇଁ– ଖୋଲି ହୋଇପାରିଲେ ନାହିଁ ପାଞ୍ଚଜଣରେ । ତାଙ୍କ ବସାଘରଟି ବି ସେମିତି ଅଦିଅଁ ଦେଉଳ ହୋଇ ରହିଗଲା । ଇଟାପଥର ଅବା ଆସବାବପତ୍ର କ'ଣ ଘର କି ? କି ସ୍ୱୀକୃତି ରହିଛି ସୁକାନ୍ତି-ସାନବୋଉଙ୍କ ଘର ପଛରେ ?

ଜେଜେବାପା ବେମାର ପଡ଼ିଲାବେଳେ ରହିଥିଲେ ଆସି ସୁକାନ୍ତି-ସାନବୋଉଙ୍କ ବସାଘରେ । ବିଛଣାରେ ବର୍ଷେକାଳ ପଡ଼ି ପଡ଼ି ସେ ସ୍ୱର୍ଗବାସୀ ହେଲେ । ତାଙ୍କର ଖୁବ୍ ସେବା କରିଥିଲେ କୁଆଡ଼େ ସୁକାନ୍ତି-ସାନବୋଉ— ଡାକ୍ତର ବଇଦ ଦେଖେଇବାଠାରୁ ଘୁଅମୂତ ସଫାକଲା ପର୍ଯ୍ୟନ୍ତ । ହେଲେ, ଜେଜେବାପାଙ୍କ ଅନ୍ତ୍ୟେଷ୍ଟିକୁ ଡକାଗଲା କି ସୁକାନ୍ତି-ସାନବୋଉଙ୍କୁ ? ସେ ଅଶୌଚ ନିୟମ ପାଳିଥିବେ ସେଇ ବସାଘରେ । ଶୁଦ୍ଧି ହୋଇଥିବେ ଏକା ଏକା । କେମିତି ଲାଗିଥିବ ତାଙ୍କୁ ସେତେବେଳେ ? ଜେଜେମା' ମଲାବେଳକୁ ବି ତାଙ୍କୁ ଖୋଜାଲୋଡ଼ା ହୋଇ ନ ଥିଲା । ସୁକାନ୍ତି-ସାନବୋଉ ଗାଁକୁ ଯାଇଥିଲେ ବୋଉ କାହାକୁ ତ୍ରିଭୁବନରେ ରଖେଇ ଦେଇଥା'ନ୍ତା ?

ସ୍ତ୍ରୀଲୋକଟିଏ ଯେତେ ରୋଜଗାର କଲେ ବି ସ୍ୱାମୀଠାରେ କ'ଣ କିଛି ପ୍ରତ୍ୟାଶା ରଖିବ ନାହିଁ ? ସୁକାନ୍ତି-ସାନବୋଉଙ୍କର ଯଦି ସେମିତି କିଛି ପ୍ରତ୍ୟାଶା ଥିଲା, ସେସବୁ ପ୍ରତ୍ୟାଶାରେହିଁ ରହିଯାଇଥିଲା । ବାପା କୁଆଡ଼େ ତାଙ୍କୁ ଶଙ୍ଖା ଦି'ପଟ କି ଶାଢ଼ି ଖଣ୍ଡେ କେବେ ଦେଇ ନ ଥିଲେ । ତାଙ୍କ ରୋଜଗାର ତ ଘରକୁ ନିଅଣ୍ଟ ଥିଲା । ପୁଣି ବାପାଙ୍କ ଦରମାର କଡ଼ାଗଣ୍ଡା ହିସାବ ରଖୁଥିଲା ବୋଉ । ତେଣୁ ସୁକାନ୍ତି-ସାନବୋଉ ସେଥିରେ କେମିତି ଭାଗ ବସେଇଥାନ୍ତେ ! ବରଂ ସୋରରେ ଘର ତିଆରି ହେଲାବେଳକୁ ସେ ଜି.ପି.ଏଫ.ରୁ ଉଠେଇ ପଚିଶହଜାର ଟଙ୍କା ଧରେଇଥିଲେ ବାପାଙ୍କ ହାତରେ । ରାମୁ ଭାଇ କମ୍ପ୍ୟୁଟର ପଢ଼ିବାକୁ ବାଙ୍ଗାଲୋର ଗଲାବେଳେ ତାଙ୍କ ବ୍ୟାଙ୍କ ଆକାଉଣ୍ଟ ସେ ଫାଙ୍କା କରିଦେଇଥିଲେ । ପ୍ରତି ସପ୍ତାହରେ ଔଷଧ କିଣି ଦେଉଥିଲେ ବାପାଙ୍କପାଇଁ ।

ତେବେ ବୋଉଠାରୁ ସୁକାନ୍ତି-ସାନବୋଉ କ'ଣ ଛଡ଼େଇନେଇଥିଲେ ଯେ, ସେ ସାରା ଜୀବନ ତାଙ୍କୁ ଅଭିସମ୍ପାତ ତ ଦଉଥିଲା ଆଉ ଶାନ୍ତିରେ ରହିପାରୁ ନ ଥିଲା ନିଜେ । ଲିଜା ଭାବୁଥିଲା, ଜୀବନ ବିଷୟରେ ତା'ର କେତେ ବା ଅଭିଜ୍ଞତା ଯେ ସେ ପାଇପାରିବ ନିଜଠୁଁ ନିଜ ପ୍ରଶ୍ନର ଉତ୍ତର !



# ଦାମ୍ପତ୍ୟ

କଟକର ଭଲ ସାଇକିଆଟ୍ରିଷ୍ଟ କିଏ ବୋଲି ସାଙ୍ଗସାଥୀ ବା ସହକର୍ମୀମାନଙ୍କୁ ପରୋକ୍ଷରେ ହେଲେ ବି ପଚାରି ବୁଝିବାପାଇଁ ଅନେକ ଥର ଭାବିଥିବ ସୁରଞ୍ଜନ– କିନ୍ତୁ ସେ ବିଷୟରେ କିଛି କହିବାକୁ ଗଲାକ୍ଷଣିହିଁ ତା' ଜିଭ ଶୁଖିଯାଏ ଓ ପାଟିରୁ କଥା ବାହାରେ ନାହିଁ । ସାଇକିଆଟ୍ରିଷ୍ଟ ଠିକଣା ପଚାରିଲା ମାନେ, ତା' ଅପେକ୍ଷା ତା' ସ୍ତ୍ରୀ ଲରାକୁ ଯେ ସମସ୍ତେ ସନ୍ଦେହ କରିବେ, ସେକଥା ତାକୁ ଭଲଭାବରେ ଜଣାଥିଲା । ଆଉ ଲରା ଏକପ୍ରକାର ଚର୍ଚ୍ଚାର ପରିଧି ଭିତରକୁ ଆସୁ, ତାହା ସେ କଦାପି ଚାହୁଁ ନ ଥିଲା । କିନ୍ତୁ ବାରବର୍ଷର ବୈବାହିକ ଜୀବନ ଭିତରେ ସେ ଏକପ୍ରକାର ନିଶ୍ଚିତ ହୋଇଯାଇଥିଲା ଯେ ଲରା ଆଜନ୍ମ ଗୋଟେ ମାନସିକ ରୋଗୀ ଏବଂ ତା' ଧୂର୍ତ୍ତ ଶଶୁର ଚଞ୍ଚକତା କରି ତା' ହାତରେ ପାଗଳୀଟାକୁ ଛନ୍ଦି ଦେଇଛନ୍ତି ।

ଲରାକୁ ଦେଖି କ'ଣ ପାଇଁ ସେ ତତ୍‌କ୍ଷଣାତ୍ ରାଜି ହୋଇଯାଇଥିଲା ବାହାହବା ପାଇଁ, ଏବେ ବି ବୁଝିପାରେ ନାହିଁ ସୁରଞ୍ଜନ । ତା' ପୂର୍ବରୁ ଅନେକ ଭଲ ବାହାଘର ପ୍ରସ୍ତାବ ଆସିଥିଲା ତା'ପାଇଁ ଓ ସେ ଅତିକମ୍‌ରେ ପାଞ୍ଚ ଛ' ଜଣ ଝିଅଙ୍କୁ ଦେଖିବାକୁ ଯାଇଥିଲା । ଲରା ସେମାନଙ୍କ ତୁଳନାରେ କ'ଣ ଅଧିକ ସୁନ୍ଦରୀ ଥିଲା ? ଗୋଟେ ଶ୍ୟାମଳ ବର୍ଣ୍ଣର ଓ ଅପେକ୍ଷାକୃତ କମ୍ ଉଚ୍ଚତାବିଶିଷ୍ଟ ଝିଅଟିଁ ସେତେବେଳେ କି ଆକର୍ଷଣ ଥିଲା କେଜାଣି ? ସେହି ଅଜଣା ଆକର୍ଷଣ ନା ଅଫିସର୍ ଶ୍ୱଶୁରଙ୍କ ଚଉଡ଼ା ଅନୁଦାନର ପ୍ରତିଶ୍ରୁତି ତାକୁ ବାଟବଣା କରିଥିଲା ? ଖୁବ୍‌ଶୀଘ୍ର ପୁଅ ବାହାଘର କରିବାକୁ ଚାହୁଁଥିବାରୁ ବାପା ତ ରାଜିରେ ଖୁସିଥିଲେ । କିନ୍ତୁ ବାହାଘର ପରେ ସାଇପଡ଼ିଶା ଓ ଦେଖଣାହାରି ଝିଅବୋହୂଙ୍କଠାରୁ ଭିନ୍ନ ଏକ ଗୁଞ୍ଜରଣ ଶୁଭିଥିଲା– ଏତେ କନିଆ ଦେଖି ଦେଖି ଶେଷରେ କାଳୀଟାକୁ ବାଛିଲା ସୁର... ।''

ସୁରଞ୍ଜନ କିନ୍ତୁ ଲରାକୁ ଭଲପାଉଥିଲା । ଶ୍ୟାମଳୀ ହେଲେ ବି ଲରା ଥିଲା ସୁନ୍ଦରୀ । ତା' ହସରେ ଯେମିତି ଥିଲା ସମସ୍ତଙ୍କୁ ବଶ କରିବାର ଉଚ୍ଚାଟ ଭାବ । ତା' ସୁଗଠିତ ଚେହେରାରେ ଖୁନ୍ଦି ହୋଇଥିଲା ନିରସ୍ତ୍ର ହବାର କିମିଆଁ । ପୁଣି ତା' ସମ୍ଭ୍ରାନ୍ତ କଥାବାର୍ତ୍ତାରେ ଗଦ୍‌ଗଦ ହୋଇପଡୁଥିଲା ତାଙ୍କ ପୁରୁଣାକାଳିଆ ଯୌଥ

ପରିବାର । ବିବାହର ଛ'ସାତ ମାସ ପର୍ଯ୍ୟନ୍ତ ଲରାର ଆଚରଣରେ ସାମାନ୍ୟତମ ବ୍ୟତିକ୍ରମ କାହାରି ନଜରରେ ପଡ଼ି ନ ଥିଲା । କିନ୍ତୁ ବାରିପଦାକୁ ଆସିବାର କିଛିଦିନ ପରେ ହଠାତ୍ ଗୋଟେ ସନ୍ଧ୍ୟାରେ ସଂପୂର୍ଣ୍ଣ ଏକ ଭିନ୍ନ ଭୂମିକାରେ ସେ ଆବିଷ୍କାର କରିଥିଲା ଲରାକୁ ପ୍ରଥମଥରପାଇଁ । ରାଗିବାପାଇଁ ସେମିତି କୌଣସି କାରଣ ନ ଥାଇ, ଲରା ଯେମିତି ରାଗରେ ଥରିବାକୁ ଲାଗିଲା, ସୁରଞ୍ଜନ ହଠାତ୍ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲା । ପୁଣି ରାଗିବାର ତ ଗୋଟେ ସ୍ଥାନ-କାଳ-ଜ୍ଞାନ ରହିବା କଥା । ସହରର ଏକ ପରିଚିତ ଶାଢ଼ି ଦୋକାନରେ ଶାଢ଼ିର ରଙ୍ଗକୁ କେନ୍ଦ୍ରକରି ଲରା ଯେପରିଭାବରେ ତା' ପ୍ରତି ଅଶାଳୀନ ବ୍ୟବହାର ପ୍ରଦର୍ଶନ କଲା, ସୁରଞ୍ଜନ ନିଜ କାନ ଦୁଇଟିକୁ ଓପାଡ଼ିଦେବାପରି ପରିସ୍ଥିତି ସୃଷ୍ଟି ହୋଇଥିଲା । ଲରା ଗୋଟେ ନୀଳଶାଢ଼ି ଦେଖେଇ ପଚାରିଲା, 'ଏହି ଶାଢ଼ିଟା ମତେ ମାନିବ ତ ?' ସୁରଞ୍ଜନ ଶାଢ଼ିଟି ଦେଖିସାରିବାପରେ କହିଥିଲା, ଶାଢ଼ିଟା ଭଲ ହୋଇଛି ଯେ ହେଲେ ତମକୁ ଲାଇଟ୍ କଲର ଭଲ ଲାଗିବ ।' ବାସ୍, ଏତିକିରେ ଯେମିତି ନିଆଁ ଲାଗିଗଲା ଲରା ଦେହରେ । ସେ ରାଗରେ ପାଚି ଲାଲ୍‌ପଡ଼ିଗଲା ଓ 'ତମେ ଜୀବନରେ କେବେ ଶାଢ଼ି କିଣିଚ ନା' ବୋଲି ଧମକଦେଲା । ପୁଣି କହିଲା, ''ହୁଏତ କୌଣସି ଅନର୍ସ ଛାତ୍ରୀ ପାଇଁ ତମେ ଶାଢ଼ି କିଣିଥିବ । ତମ ଚରିତ୍ର ବିଷୟରେ କାହାକୁ କିଛି ଜଣା ନ ଥିଲେ ବି ମୁଁ ତମକୁ ଠିକ୍ ଚିହ୍ନିଚି ।'' ଗୋଟେ ଛାତ୍ରୀର ଅଭିଭାବକ ସେହି ଶାଢ଼ି ଦୋକାନୀଟି ଆଗରେ ସୁରଞ୍ଜନର ମୁହଁ ଜଳିଗଲା ଯେମିତି ! ସେ କିନ୍ତୁ ଲରା କଥାର ଜବାବ ଦେଲା ନାହିଁ । ଟିକେ କିଛି କଥା ଯୋଡ଼ିଲେ ପରିସ୍ଥିତି ଆହୁରି ଭୟାବହ ହୋଇପାରେ ବୋଲି ତା'ର ହୃଦ୍‌ବୋଧ ହେଲା ।

ସେଦିନ ଘରକୁ ଫେରି ଲରା ଆଉ ରୋଷେଇବାସ କଲା ନାହିଁ । ରାତିରେ ହୋଟେଲକୁ ଯାଇ ରୁଟି ତରକାରି ଆଣିଲା ସୁରଞ୍ଜନ, ଅଥଚ ତାହା ଖିଆଗଲା ନାହିଁ । ପ୍ରାୟ ଗୋଟେ ସପ୍ତାହରୁ ଅଧିକ ସମୟ ଲରା ମୁହଁରେ ଗୋଟେ ଫଣଫଣ ଭାବ ବସାବାନ୍ଧିଥିଲା । ତା' ମୁହଁକୁ ଚାହିଁବାପାଇଁ ଭୟ କରୁଥିଲା ସୁରଞ୍ଜନ ।

କିନ୍ତୁ ପରବର୍ତ୍ତୀ ସମୟରେ ଏ ଘଟଣା ଉପରେ ସେ ଆଦୌ ଗୁରୁତ୍ୱ ଦେଇ ନ ଥିଲା । ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ରାଗ, ମନୋମାଳିନ୍ୟ ଏପରିକି ବାକ୍‌ବିତଣ୍ଡା କିଛି ଗୋଟେ ଅସ୍ୱାଭାବିକ କଥା ନୁହେଁ । ସୁରଞ୍ଜନ ପାଠପଢ଼ିବା ଓ ପଢ଼େଇବାରେ ମନଦେଲା । ଲରା ଯା'ଭିତରେ ଗର୍ଭବତୀ ହୋଇଥିବା ଜାଣି ସେ ମନେ ମନେ ଖୁସି ହେଉଥିଲା । କିନ୍ତୁ ତା'ର ଖୁସି ବି ବେଶି ଦିନ ରହିଲା ନାହିଁ । କାରଣ ଲରାର ଯତ୍ନ

ନେବାପାଇଁ ବୋଉ ଆସି ବାରିପଦାରେ ପହଞ୍ଚିଲା ପରେ ଲରାର ପାଗଳାମି ପୁଣି ଆରମ୍ଭ ହୋଇଗଲା । ବୟସଭାରରେ ନଇଁପଡ଼ିଥିବା ବୋଉ ରୋଷେଇବାସଠାରୁ ଘର ଓଳେଇବା ପର୍ଯ୍ୟନ୍ତ ସବୁକାମ କରୁଥିଲେ ବି ଲରାର ଜମା ପସନ୍ଦ ହେଉ ନ ଥିଲା ତା' କାମ । ମିଛେ ମିଛେ ତା' ସାଙ୍ଗରେ ସେ ରବେଇଖବେଇ ହଉଥିଲା । କିନ୍ତୁ ବୋଉକୁ ବେଳେବେଳେ ସେ ଯେପରି ଦୁର୍ବ୍ୟବହାର କରୁଥିଲା, ସେସବୁ ଅସହ୍ୟ ହେଉଥିଲା ସୁରଞ୍ଜନପାଇଁ । ଅଥଚ ଘରେ ଅଧିକ ପାଟିତୁଣ୍ଡ ହବାର ଆଶଂକା କରି ସେ ଚୁପ୍ ରହୁଥିଲା । ଥରେ ସେ ଫିଜିକ୍ସ ପ୍ରାକ୍‌ଟିକାଲ୍ ପରୀକ୍ଷାର ଏକ୍ସଟରନାଲ ହୋଇ ଦିନେ ଦୁଇଦିନପାଇଁ ବାହାରକୁ ଚାଲିଯିବା ଅବସରରେ ଲରା ବୋଉକୁ ଲଣ୍ଡା କରିଦେଇଥିଲା । ଘରକୁ ଫେରିଲାପରେ ବୋଉର ଅବସ୍ଥା ଦେଖି ସେ ହତବାକ୍ ହୋଇଯାଇଥିଲା । ବୋଉ କିନ୍ତୁ କଥାଟାକୁ ଭାରି ହାଲୁକା କରିଦେଲା । କହିଲା- ବୁଢ଼ୀ ହେଲିଣି ତ, ଚୁଟି କାଟିଦେବାପାଇଁ ବୋହୂକୁ କହିଲି । କିନ୍ତୁ ବୋଉକୁ ଲଣ୍ଡା କରିବା ପଛରେ ଲରାର ବିକୃତ ମାନସିକତା ଛଡ଼ା କ'ଣ ଆଉ ଥିଲା ? ସୁରଞ୍ଜନ ଅନେକଦିନ ପର୍ଯ୍ୟନ୍ତ ଏ ଦୁର୍ଘଟଣାକୁ ପାସୋରିପାରି ନ ଥିଲା ।

କିନ୍ତୁ ଆପେ ଆପେ ସବୁକିଛି ପାସୋରି ହୋଇଗଲା, ନୀନା ଜନ୍ମ ପରେ । ଛୋଟବେଳେ ନୀନା ଭାରି ଗୋଲ୍‌ଗାଲିଆ ହୋଇଥିଲା । ସୁରଞ୍ଜନ ମୁହଁଟାକୁ ଛଡ଼େଇ ଆଣିଥିଲା ଅବିକଳ । ତା' ମା'ର କୌଣସି ଛାପ ତା'ଠି ନ ଥିଲା । ନୀନାର ଏକୋଇଶିଆ ଧୁମଧାମରେ କରାଗଲା । ବାପା ଓ ବଡ଼ଭାଇ ଗାଆଁରୁ ଆସିଥିଲେ । ଆସିଥିଲେ ବି ଶାଶୂଶ୍ୱଶୁର ଭୁବନେଶ୍ୱରରୁ ।

ନୀନା ଛ'ମାସର ହେଲା ପର୍ଯ୍ୟନ୍ତ ସୁରଞ୍ଜନ ଭଲଭାବରେ କ୍ଲାସ୍ ନେଇପାରି ନ ଥିଲା । ଟ୍ୟୁସନ୍ ବି ବନ୍ଦ କରିଦେଇଥିଲା । ଲରାକୁ କାମଦାମରେ ଯେତେ ପ୍ରକାର ସାହାଯ୍ୟ କରିବା କଥା ସେ ପ୍ରାୟ ସେସବୁ କରିବାକୁ ପଛେଇ ନ ଥିଲା । ଏପରିକି ଅନେକ ସମୟରେ ସେ ରୋଷେଇ କରିସାରି ଲରାକୁ ଡାକୁଥିଲା ଖାଇବାପାଇଁ । ମା'ଝିଅଙ୍କର କୌଣସି ବି ଅସୁବିଧା ହେବାକୁ ସେ ଦେଇ ନ ଥିଲା । କିନ୍ତୁ ଅସୁବିଧା ଆରମ୍ଭ ହୋଇଥିଲା ଲରା କେନ୍ଦୁଝରର ଗୋଟେ ଘରୋଇ କଲେଜରେ ଚାକିରି ପାଇଲାପରେ । ଏଣେ ପିଲାର ମୋହ ତ ତେଣେ ଚାକିରିର ମୋହ । ଲରା ବେଶ୍ କିଛିଦିନ ଦ୍ୱନ୍ଦ୍ୱରେ ପଡ଼ିଲା । ସେ ବି । ଶେଷରେ ଲରା କଲେଜରେ ଜଏନ୍ କରିବା ସ୍ଥିର ହେଲା । କିନ୍ତୁ ଝିଅକୁ ନେଇ ସେ ଏକା ଏକା କେମିତି ଚଳିବ ନୂଆ ଜାଗାରେ । କାହାପାଖରେ ଝିଅକୁ ଛାଡ଼ି କଲେଜ ଯିବ ? ସୁରଞ୍ଜନ ପ୍ରସ୍ତାବ

ଦେଲା ଯେ ଲରାର ସାନଭଉଣୀ ମୀରା କିଛିଦିନ ଆସି କେନ୍ଦୁଝରରେ ରହୁ । ଶାଶୂ-ଶ୍ୱଶୁରଙ୍କୁ ଫୋନ୍ କରି ସେ ସବୁକଥା ଜଣେଇଲା । ମୀରାର ବୋଧେ କେନ୍ଦୁଝର ଆସିବାକୁ ଇଚ୍ଛା ନ ଥିଲା । ତେବେ ବାପାଙ୍କ ତାଗିଦାରେ ସେ ରାଜିହେଲା । ସୁରଞ୍ଜନ କେନ୍ଦୁଝର ଯାଇ ଉପରମହଲା ଦେଖି ଘରଟେ ଭଡ଼ାନେଲା । ଦି'ଭଉଣୀ ଓ ଝିଅ ରହିଲେ କେନ୍ଦୁଝରରେ । ସେ ବାରିପଦାରେ ରହି ଶନି-ରବିବାର କେନ୍ଦୁଝର ଯିବାଆସିବା କଲା ।

ମାସକ ଭିତରେ ଦୁଇଭଉଣୀଙ୍କ ଭିତରେ କ'ଣ ମନ ଫଟାଫଟି ହେଲା ଯେ ମୀରା ଅକସ୍ମାତ୍ ଟିକଟ କାଟିଲା ଭୁବନେଶ୍ୱର । ଲରାର ଫୋନ୍ ପାଇ ସେ କେନ୍ଦୁଝର ଦୌଡ଼ିଲା । ତା' ସାନଭଉଣୀ ବିଷୟରେ ଲରା ଯୋଉସବୁ ଟିପ୍ପଣୀ ଦେଲା, ସେସବୁ ଶୁଣି କାନରେ ହାତଦେଲା ସୁରଞ୍ଜନ । କୌଣସି ବଡ଼ଭଉଣୀ ତା' ସାନଭଉଣୀ ବିଷୟରେ ଏତେ କୁତ୍ସିତ ମନ୍ତବ୍ୟ ଦବା ସେ ପ୍ରଥମକରି ଶୁଣିଲା । ଲରା ଉପରେ ତା'ର ବଦଳି ଆସୁଥିବା ମନୋଭାବରେ ପୁଣି ଭଟ୍ଟା ପଡ଼ିଗଲା । ଲରାର ଦେହମନ କୋଉ ଉପାଦାନରେ ଗଢ଼ା କେଜାଣି, ସେ ନିଜକୁ ପଚାରୁଥିଲା ଓ ଲରା ପରି ଗୋଟେ ଝିଅର ହାତ ଧରିଥିବାରୁ ତା' ସାରାଜୀବନ ବରବାଦ ହେବାକୁ ବାଧ୍ୟବୋଲି ସେ ନିଶ୍ଚିତ ହୋଇଗଲା ।

କଲେଜରୁ ଦୀର୍ଘ ଇ.ଏଲ. ଆଣି ସୁରଞ୍ଜନ କେନ୍ଦୁଝରରେ ରହିଲା । ତା'ର ଓ ଲରାର ବଦଳିପାଇଁ ମଝିରେ ମଝିରେ ଭୁବନେଶ୍ୱର ଦୌଡ଼ିଲା । ଜଏଣ୍ଟ ସେକ୍ରେଟାରୀ ପାହ୍ୟାକୁ ଉତ୍ତୀର୍ଣ୍ଣ ହୋଇସାରିଥିବା ତା' ଶ୍ୱଶୁରଙ୍କୁ ମଧ୍ୟ ବଦଳି କଥା କହିଲା । ହେଲେ ଅସମୟରେ ବଦଳାବଦଳି କୋଉ ବା ସମ୍ଭବ ? କିଛି ଫଳ ହେଲା ନାହିଁ । ବଡ଼ଭାଇ ଏସବୁ ବିଷୟ ଜାଣିଲା ପରେ ମାମୁଝିଅ ଭଉଣୀ ନମିତାକୁ ବାରିପଦା ବା କେନ୍ଦୁଝର ଯେଉଁଠାକୁ ହେଲେ ନେଇଯିବାପାଇଁ ପ୍ରସ୍ତାବ ଦେଲେ । ନିଜ ଭଉଣୀ ସହ ଚଳିପାରୁ ନ ଥିବା ଲରା ଯେ ନମିତାକୁ ନେଇ ଚଳିପାରିବ, ଏକଥା କେମିତି ବିଶ୍ୱାସ କରନ୍ତା ସୁରଞ୍ଜନ । ବର୍ଷକର ନୀନାକୁ ସାଙ୍ଗରେ ଧରି ସେ କେନ୍ଦୁଝରରୁ ବାରିପଦା ଫେରିଲା । ଭାଇ ନମିତାକୁ ଆଣି ବାରିପଦାରେ ପହଞ୍ଚିଲେ ସେହିଦିନ । ନମିତା କ'ଣ ମେଟ୍ରିକ୍ କି ପ୍ଲସ୍ ଟୁ ଫେଲ୍ ହୋଇ ଘରେ ରହିଥିଲା । ରୋଷେଇବାସ ଓ ପିଲା ସମ୍ଭାଳିବାରେ ତା'ର କୌଣସି ଅସୁବିଧା ହେଲା ନାହିଁ । ସୁରଞ୍ଜନ ଶାନ୍ତିରେ ନିଃଶ୍ୱାସ ମାରିଲା । ଲରା ଛୁଟିଦିନରେ ବାରିପଦା ଆସୁଥିଲା । ନୀନା ବେଶ୍ ଆଦରିନେଇଥିଲା ନମିତାକୁ ।

ଏମିତି କିଛିଦିନ ଭଲରେ ଭଲରେ ବିତିଲା ପରେ ପୁଣି ଗୋଟେ ବିସ୍ଫୋରଣ ଘଟେଇଲା ଲରା । ଶନିବାର ସନ୍ଧ୍ୟାରେ ସେ ଆସି ପହଞ୍ଚିଲା ବାରିପଦାରେ । ସେତେବେଳେ ସୁରଞ୍ଜନ ଘରେ ନ ଥିଲା ଓ ନମିତା ନୀନାକୁ ଖେଳଉଥିଲା । ଲୁଗା ବଦଳେଇଲାବେଳେ କେତୋଟି ଦାମୀ କସ୍‌ମେଟିକ୍‌ସ ଲରା ଆଖିରେ ପଡ଼ିଲା । ଏ କସ୍‌ମେଟିକ୍‌ସ କୋଉଠୁ ଆଣିଲୁ ବୋଲି ସେ ପଚାରିବାରୁ, ଭାଇ ଆଣିଛନ୍ତି ବୋଲି ନମିତା ଉତ୍ତରଦେଲା । ତା'ପରେ ଲରା ମଗଜରେ ଭୂତ ଚଢ଼ିଗଲା ଯେମିତି ! ସୁରଞ୍ଜନ ଫେରିଲାପରେ ସେ ତାକୁ ଦେଖି କଥାବାର୍ତ୍ତା କଲା ନାହିଁ– ଆଡ଼ ଆଡ଼ ହେଲା । ସୁରଞ୍ଜନ ହଠାତ୍ କିଛି ବୁଝିପାରିଲା ନାହିଁ । କିନ୍ତୁ ଖାଇବା ଟେବୁଲ୍ ପାଖରେ ତାକୁ ଜେରା କଲା ଲରା– ଏ କସ୍‌ମେଟିକ୍ସ ସବୁ ତମେ ଆଣିଚ ? ସୁରଞ୍ଜନ ହଁ କରିବାରୁ ଲରା ପ୍ଲେଟ୍ ପିଙ୍ଗିଲା ତା' ଉପରକୁ । ପ୍ଲେଟଟି ଦୈବାତ ସୁରଞ୍ଜନ ଉପରେ ନ ବାଜି ତଳେ ପଡ଼ି ଭାଙ୍ଗିଗଲା । ଲରା ରାଗ ତମତମ ହୋଇ କହିଲା– ତମେ ଏଭଳି କସ୍‌ମେଟିକ୍ସ କେବେ ବି କିଣିଚ ମୋ ପାଇଁ ? କିନ୍ତୁ ନମିତାପାଇଁ ତ ତମ ସୋହାଗର ସୀମା ନାହିଁ ? ଏତେ ରାତିରେ ଘରଭିତରେ ଗୋଟେ ହୋ-ହାଲ୍ଲା ହେଉବୋଲି ସୁରଞ୍ଜନ ଚାହୁଁ ନ ଥିଲା । ତେଣୁ ସେ ଚୁପ୍ ରହିଲା– ହେଲେ ଚୁପ୍ ହେଲା ନାହିଁ ଲରା । କହିଲା, ନମିତା ସହିତ ତମର କି ସଂପର୍କ ରହିଚି ମୁଁ ଜାଣେ, ତା' ନ ହେଲେ ତମର ଏମିତି ପ୍ରେମ ଉଛୁଳନ୍ତା କାହିଁକି ?

ରାଗରେ ନିଆଁବାଣ ହୋଇଗଲା ସୁରଞ୍ଜନ ଓ ଲରା ଗାଲରେ ଶକ୍ତ ଚାପୁଡ଼ାଟାଏ ବସାଇଦେଲା । ତା'ପରେ ଲରା ଯେଉଁ ଅସଭ୍ୟ ଭାଷାରେ ଗାଳିଗୁଲଜ କଲା, ପାଖପଡ଼ୋଶୀମାନେ ଶୁଣି ହତଚକିତ ହୋଇଗଲେ । ରୋଷେଇଘରେ କଇଁ କଇଁ ହୋଇ କାନ୍ଦୁଥିଲା ନମିତା । ସେଦିନ ଖିଆପିଆ ବନ୍ଦ ରହିଲା । ତହିଁପରଦିନ ନମିତାକୁ ନେଇ ସେ ମାମୁଘରେ ଛାଡ଼ିଦେଇଆସିଲା । ତା'ପରଠୁଁ ସେ କେବେବି ମାମୁଘରକୁ ଯିବାପାଇଁ ସାହସ କରି ନାହିଁ– ନମିତା ବାହାଘରକୁ ଚେନ୍‌ଟେ ପଠେଇ ଦେଇଥିଲା ଯାହା ।

ପଡ଼ୋଶୀମାନଙ୍କ ସାମନାରେ ମୁହଁ ଦେଖେଇପାରୁ ନ ଥିଲା ସୁରଞ୍ଜନ । କୌଣସି ପ୍ରକାରେ ବାରିପଦାରୁ ବଦଳିହୋଇ ଅନ୍ୟତ୍ର ଚାଲିଯିବାପାଇଁ ସେ ବ୍ୟସ୍ତ ହୋଇପଡୁଥିଲା । ନୀନାକୁ ସାଙ୍ଗରେ ଧରି ସେ ଗାଆଁକୁ ଆସିଲା ଓ ବୋଉ ପାଖରେ ନୀନାକୁ ଛାଡ଼ି ସିଧା ଚାଲିଲା ଭୁବନେଶ୍ୱର । ଉଚ୍ଚଶିକ୍ଷା ବିଭାଗର ହାକିମମାନଙ୍କୁ ଧରାଧରି କଲା, ଗୁହାରି ଜଣେଇଲା । ଜଣେ ପୁରୁଣା ବନ୍ଧୁଙ୍କ ମାର୍ଫତରେ ମନ୍ତ୍ରୀଙ୍କୁ ବି

ସାକ୍ଷାତ୍ କଲା । ସୌଭାଗ୍ୟବଶତଃ ରେଭେନ୍ସା କଲେଜରେ ଗୋଟେ ଫିଜିକ୍ସ ପୋଷ୍ଟ ଫାଙ୍କା ଥିଲା । ମାସେ ଭିତରେ ତା'ର ବଦଳି ହୋଇଗଲା କଟକ । ରେଭେନ୍ସାରେ ଜଏନ୍ କରିସାରିଲା ପରେ ଯାଇ ସେ ଲରାକୁ ତା' ବଦଳି କଥା ଜଣେଇଥିଲା ।

ଦିନେ ଝଡ଼ପରି ଲରା ଆସି ପହଞ୍ଚିଗଲା ତା' କଟକ ବସାରେ ଓ ନୀନାକୁ ନବାପାଇଁ ଅଡ଼ିବସିଲା । ନୀନା ସେତେବେଳକୁ ଟିକେ ବଢ଼ିଯାଇଥିବାରୁ ତା'ର ଯତ୍ନନେବାରେ କିଛି ଅସୁବିଧା ନ ଥିଲା । ତା'ଛଡ଼ା ଗାଆଁରୁ ବାପା ଭଲ ଚାକର ପିଲାଟିଏ ଯୋଗାଡ଼ କରିଦେଇଥିଲେ । ସୁରଞ୍ଜନ ତେଣୁ ନୀନାକୁ କେନ୍ଦୁଝର ଛାଡ଼ିବାପାଇଁ ପ୍ରସ୍ତୁତ ନ ଥିଲା । ଲରା କିନ୍ତୁ ସେଦିନ କାନ୍ଦ କାନ୍ଦ ହୋଇଗଲା । ତା'ଆଖିରେ ଜକେଇଥିବା ଲୁହ ପ୍ରଥମଥର ପାଇଁ ଦେଖିଲା ସୁରଞ୍ଜନ ଓ ମନେ ମନେ ଗଡ଼ ଜିଣିବାର ଆଟୋପ ଅନୁଭବ କଲା । କାନ୍ଦୁରା ମୁହଁରେ ବି ଲରାର କଥା ଥିଲା ଟାଇଁ ଟାଇଁ । କହିଲା, ''ନିଜେ ଚେଷ୍ଟାକରି ବଦଳି ହୋଇଆସିଲ କଟକ, ମୋ କଥା ଟିକେ ବି ଚିନ୍ତାକଲ ନାହିଁ ? ତମ ପରି ସ୍ୱାର୍ଥପର ଲୋକ କେହି ନ ଥିବେ ଏ ଦୁନିଆରେ ।'' ସୁରଞ୍ଜନ ହଁ କି ନା କିଛି କହିନି ନାହିଁ । ଦିନଟିଏ ରହି ଲରା ଫେରିଗଲା କେନ୍ଦୁଝର ।

ଲରା ଚାଲିଗଲା ପରେ ତା' କଥା କାହିଁକି କେଜାଣି ବେଶି ବେଶି ମନେପଡ଼ିଲା ସୁରଞ୍ଜନର । ତା'ର ଅନୁପସ୍ଥିତି ଗୋଟେ ଶୂନ୍ୟସ୍ଥାନ ସୃଷ୍ଟି କଲା ଯେମିତି ! କଟକ ଆସିବା ପରେ ବିଭିନ୍ନ ମହଲରେ ସୁରଞ୍ଜନର ପରିଚୟ ବଢ଼ିଯାଇଥିଲା ଓ ସେସବୁକୁ ପୁଞ୍ଜିକରି ସେ ଲରାକୁ ବଦଳିକରି ଆଣିଲା କଟକ ପାଖାପାଖି ଗୋଟେ ଘରୋଇ କଲେଜକୁ । ଲରା ସିଲେକ୍ସନ ବୋର୍ଡ଼ଦ୍ୱାରା ପ୍ରେରିତ ଅଧ୍ୟାପିକା ହୋଇଥିବାରୁ ତା'ର ବଦଳିରେ ସେମିତି କିଛି ପ୍ରତିବନ୍ଧକ ନ ଥିଲା । ଲରା କଟକ ଆସିବାପରେ ସୁରଞ୍ଜନ ପ୍ରତି ପୂର୍ବାପେକ୍ଷା ଅଧିକ ଆତ୍ମୀୟ ବ୍ୟବହାର କରିବାକୁ ଲାଗିଲା । ସୁରଞ୍ଜନ ଭାବିଲା, ଲରା ହୁଏତ ଆସ୍ତେ ଆସ୍ତେ ବଦଳିଯିବ । ପରିବାରଠାରୁ ଦୂରରେ ରହିବା, କ୍ଲାସ୍ ନବା ସାଙ୍ଗକୁ ପୁଣି ରୋଷେଇବାସ ଝାମେଲା ଏସବୁର ମିଶ୍ରଣ ଲରାକୁ ଭାରାକ୍ରାନ୍ତ କରୁଥିଲା ନିଶ୍ଚୟ! ତା'ଛଡ଼ା ନୀନାଠାରୁ ଦୂରେଇ ରହିବା ଯୋଗୁଁ ସେ କ'ଣ ମାନସିକ ଯନ୍ତ୍ରଣା ପାଉ ନ ଥିଲା ? କିନ୍ତୁ ସେସବୁ ସମସ୍ୟାର ସମାଧାନ ହୋଇଯାଇଥିବା ଦୃଷ୍ଟିରୁ ଲରାର ବଦଳିବା ଭାରି ସ୍ୱାଭାବିକ ମନେହେଲା ସୁରଞ୍ଜନକୁ ।

କଟକରେ ଲରା ପୁଣି ଗର୍ଭବତୀ ହେଲା ଓ ନାନୁ ଆସିଲା ସଂସାରକୁ । ନାନୁର ଉପସ୍ଥିତି ବୋଉ ଚାଲିଯିବାର ଦୁଃଖକୁ ହାଲୁକା କରିଦେଇଥିଲା ବହୁପରିମାଣରେ ।

ଲରା କଲେଜର ପ୍ରିନ୍ସିପାଲ ଥରେ ସୁରଞ୍ଜନକୁ ଫୋନ୍‌କରି ଲରାର ବ୍ୟବହାର ବିଷୟରେ ଟିପ୍ପଣୀ ଦେଲେ । କଲେଜରେ କୁଆଡ଼େ କାହା ସାଙ୍ଗରେ ଭଲ ପଡୁ ନ ଥିଲା ଲରାର । ସେ ଅନେକ ସମୟରେ ପ୍ରିନ୍ସିପାଲ୍‌ଙ୍କ ଆଦେଶକୁ ଅବଜ୍ଞା କରୁଥିଲା, ହେୟ ମଣୁଥିଲା ସହକର୍ମୀମାନଙ୍କୁ । ସୁରଞ୍ଜନ ଏସବୁ ଜାଣି ମଧ୍ୟ ଲରାକୁ କିଛି କହୁ ନ ଥିଲା । ଇତିମଧ୍ୟରେ ତା' ଶଶୁର ରିଟାୟାର୍ କରିସାରିଥିଲେ ଓ ମଝିରେ ମଝିରେ କଟକ ଆସୁଥିଲେ । ଲରା ପ୍ରତି ତା'ର ବ୍ୟବହାର ରୁକ୍ଷ ବୋଲି ସେ ପରୋକ୍ଷରେ ଥରେ ଦୁଇଥର ସୂଚେଇ ଦେଇଥିଲେ । ଏଥିରେ ସୁରଞ୍ଜନ ଅତ୍ୟନ୍ତ ମର୍ମାହତ ହୋଇଥିଲେ ବି ବିଶେଷ ଯୁକ୍ତିତର୍କ କରି ନ ଥିଲା । ନିଜ ବ୍ୟବହାର ପରିବର୍ତ୍ତନ ନ କଲେ କୋର୍ଟରେ ଦେଖାହେବ ବୋଲି ଶଶୁର ବି ତାକୁ ଥରେ ଧମକ ଦେଇଥିଲେ । ଲରା ଯେ ସୁରଞ୍ଜନ ବିଷୟରେ ଅନେକ କଟୁକଥା ତା' ବାପାଙ୍କୁ କହିଛି, ଏଥିରେ ତା'ର ସନ୍ଦେହ ରହିଲା ନାହିଁ । ସେ ମନେମନେ ବ୍ୟଥିତ ହେଲେ ବି ଲରାକୁ କିଛି ପଚରାଉଚୁରା କଲା ନାହିଁ ।

କଟକରେ ପଡ଼ୋଶୀ ଓ କେତେକ ଅଧ୍ୟାପକ ବନ୍ଧୁ ଲରାର ଆଚରଣ ବିଷୟରେ ଅବଗତ ହୋଇସାରିଥିଲେ । ଲରାର ଅଶାଳୀନ କଥାବାର୍ତ୍ତାରେ ବେଳେବେଳେ ଘରବାହାର କମ୍ପୁଥିଲା । ମଝିରେ ମଝିରେ ଝଡ଼ ମହାବାତ୍ୟାର ରୂପ ନେଉଥିଲା । ନିଜର ମାନସମ୍ମାନ ଅପେକ୍ଷା ପିଲା ଦି'ଜଣଙ୍କର ଭବିଷ୍ୟତ ନେଇ ସୁରଞ୍ଜନ ଅଧିକ ଚିନ୍ତିତ ହୋଇପଡୁଥିଲା । ଗୋଟେ ଅମାର୍ଜିତ ପରିବେଶରେ ପିଲାଙ୍କର ଅବସ୍ଥା କ'ଣ ଯେ ହେବ ଭାବି ସେ ଅଧିକାଂଶ ସମୟରେ ଅନ୍ୟମନସ୍କ ରହୁଥିଲା ।

ଗାଆଁ ସହ ସୁରଞ୍ଜନର ଆଉ କୌଣସି ସଂପର୍କ ନ ଥିଲା । ସେ କେବେ କେମିତି ଗାଆଁକୁ ଯାଉଥିଲା ସିନା ହେଲେ ଗାଆଁରୁ କେହି କଟକ ଆସୁ ନ ଥିଲେ ଲରା ଡରରେ । ବୋଉ ଚାଲିଗଲା ପରେ ବାପାଙ୍କ ଦେହ ମନ ଆଗପରି ଭଲ ରହୁ ନ ଥିଲା । ସେ ଭାବିଥିଲା ବାପାଙ୍କୁ କଟକ ଆଣି ଡାକ୍ତର ଦେଖେଇବ, ପାଖରେ ରଖି ଚିକିତ୍ସା କରିବ । କିନ୍ତୁ ବାପା କଟକ ଆସିବା ନାଁ ଧରୁ ନ ଥିଲେ । ସେ ଥରେ ଦୁଇଥର ବହୁତକରି କହିଥିଲା ବାପାଙ୍କୁ କଟକ ଆସିବାପାଇଁ । ସହରବଜାର, ଗହଳିଚହଳି ତାଙ୍କୁ ଭଲଲାଗିବ ନାହିଁ ବୋଲି କହି ବାପା କଟକ ଆସିବା ଏଡ଼େଇଦେଇଥିଲେ । ଅସଲ କଥାହେଲା ଜଣେ ରିଟାୟାର୍ଡ ହେଡ୍‌ମାଷ୍ଟର ହୋଇଥିବାରୁ ତାଙ୍କର ଉଚ୍ଚ ସମ୍ମାନବୋଧରେ ବିଶ୍ୱାସ ଥିଲା । ଜୀବନର ସାୟାହ୍ନରେ ସାନବୋହୂଠାରୁ ଲାଞ୍ଛିତ ହେବାକୁ ସେ ହୁଏତ ପସନ୍ଦ କରୁ ନ ଥିଲେ । ବଡ଼ଭାଇଙ୍କ ବଢ଼ିଲା ପୁଅଝିଅଙ୍କର କେବେବି ପାଦ ପଡୁ ନ ଥିଲା ତା' କଟକ ବସାରେ ।

ଘରଠାରୁ ଏକପ୍ରକାର ବିଚ୍ଛିନ୍ନ ହୋଇପଡ଼ିଥିବା ସୁରଞ୍ଜନକୁ ଉଚ୍ଚସମାଜର ପରିଧି ଭିତରୁ ବିଚ୍ଛିନ୍ନ କରିଦେବାକୁ ଯେମିତି ପଣ କରିଥିଲା ଲରା । 'ମାତା ଗୁଣେ ଦୁହିତା' ଉକ୍ତିକୁ ଭୁଲ ପ୍ରମାଣିତ କରି ତା'ପରି ସମସ୍ତ ନମ୍ରଗୁଣର ଅଧିକାରିଣୀ ନୀନା ନିରୋଳାରେ ଅନେକ କଥା କହୁଥିଲା ତା' ମମ୍ମି ବିରୋଧରେ । ତମେ ନ ଥିଲା ବେଳେ କଲେଜ ପ୍ରିନ୍ସିପାଲ୍‌ଙ୍କୁ ଫୋନ୍ କରି ତମ ବିଷୟରେ ଭାରି ଖରାପ କଥା ମମ୍ମି କହୁଥିଲା ବୋଲି ସେ ସୁରଞ୍ଜନର କାନରେ କହିଦଉଥିଲା । ହେଲେ ଲରା କ'ଣ ସବୁ କହିଲା ବୋଲି କ'ଣ ପ୍ରିନ୍ସିପାଲ୍‌ଙ୍କୁ ପଚାରିବା ତା'ପକ୍ଷେ ସମ୍ଭବ ଥିଲା ? କିନ୍ତୁ ଫିଜିକ୍ସର ବିଭାଗୀୟ ମୁଖ୍ୟ ଡକ୍ଟର ମହାପାତ୍ର, ପ୍ରିନ୍ସିପାଲଙ୍କର ତା' ଉପରେ ଭାରି ଖରାପ ଧାରଣା ଥିବା କଥା ଥରେ କହୁକହୁ କହିଦେଲେ । ସେ କୁଆଡ଼େ ପ୍ରିନ୍ସିପାଲ୍‌ଙ୍କୁ ବୁଝାବୁଝି କରି ତାଙ୍କ ଧାରଣା ବଦଳେଇଥିଲେ । ଡକ୍ଟର ମହାପାତ୍ରଙ୍କ ଅନୁକଂପା ତାକୁ ଆଦୌ ଭଲଲାଗିଲା ନାହିଁ । ତା' ସ୍ତ୍ରୀ ବିଷୟରେ କଲେଜରେ ଆଲୋଚନା ହେବାକୁ ସେ ପସନ୍ଦ କରୁ ନ ଥିଲା । ସୁତରାଂ ସବୁକଥା ଶୁଣି ସେ ନୀରବ ରହୁଥିଲା । କିନ୍ତୁ ତା'ର ଧାରଣା ହେଉଥିଲା ଯେ ତା' ଅବର୍ତ୍ତମାନରେ ତା'ର ଘର ବିଷୟରେ ବେଶ୍ ଗୋଟେ ଚର୍ଚ୍ଚା ହେଉଛି ଟିଚର୍ସ କମନ୍‌ରୁମ୍‌ରେ ।

ଯା' ଭିତରେ ତା' ଶାଶୂଙ୍କ ଅସୁସ୍ଥତା ବିଷୟରେ ଶଶୁରଙ୍କ ଫୋନ୍‌ରୁ ଜାଣିଲା ସୁରଞ୍ଜନ । କଟକର କୌଣସି ଡାକ୍ତରଙ୍କ ପାଖରେ ଶାଶୂ ଚିକିତ୍ସିତ ହେଉଥିଲେ ବି ତାକୁ ବା ଲରାକୁ ସେକଥା ଆଗରୁ କୁହାଯାଇ ନ ଥିଲା । ସେ ଭୁବନେଶ୍ୱରରେ ପହଞ୍ଚି ଶାଶୂଙ୍କ ଦେହପା ଖବର ବୁଝିଲା । ହେଲେ ଶଶୁର ଅନେକ କଥା ଲୁଚେଇଲା ପରି ତା'ର ମନେହେଲା । ଲରା ସ୍ୱାଭାବିକ ଭାବରେ ତା' ବାପାଙ୍କ ପକ୍ଷ ନେଲା ଓ ବିଶେଷ କିଛି ଆଲୋଚନା କଲା ନାହିଁ । ତା' ବୋଉଙ୍କ ରୋଗ ବିଷୟରେ ଲରାକୁ ଆଗରୁ ଜଣାଥିବା ଭଳି ସୁରଞ୍ଜନକୁ ଲାଗିଲା । ସେ କିନ୍ତୁ ବଡ଼ ଚତୁରତାର ସହ ପ୍ରେସ୍‌କ୍ରିପସନ୍‌ଟି ଦେଖିବାକୁ ଚେଷ୍ଟାକଲା ଓ ପ୍ରେସ୍‌କ୍ରିପସନ୍‌ରେ ଡାକ୍ତରଙ୍କ ନାମ ଦେଖି ଚମକି ପଡ଼ିଲା– ଡକ୍ଟର ଚଣ୍ଡୀଚରଣ ଦାସ, ସାଇକିଆଟ୍ରିଷ୍ଟ, ଝୋଲାସାହି, କଟକ । ତା' ଶାଶୂ ଯେ ଜଣେ ମେଣ୍ଟାଲ୍ ପେସେଣ୍ଟ, ସେ ବିଷୟରେ ଆଉ ତା'ର ସନ୍ଦେହ ରହିଲା ନାହିଁ । କିନ୍ତୁ ତା' ପରଠୁଁ ଲରା ଉପରେ ତା'ର ସନ୍ଦେହ ଅଧିକ ଘନୀଭୂତ ହେଲା ଓ ଗୋଟେ ସାଇକିଆଟ୍ରିଷ୍ଟର ଠିକଣା ପାଇଯାଇଥିବାରୁ ତାଙ୍କ ସହ ଲରା ବିଷୟରେ ପରାମର୍ଶ କରିବାପାଇଁ ସେ ଏକପ୍ରକାର ବ୍ୟାକୁଳ ହୋଇପଡ଼ିଲା ।

ଠିକ୍ ସମୟରେ ଚିକିତ୍ସା ନ କଲେ ଲରାର ରୋଗ ଆହୁରି ବଢ଼ିଯିବ ବୋଲି ସୁରଞ୍ଜନ ଆଶଙ୍କା କରୁଥିଲା । ଦି'ଟା ପିଲାର ମା' ହେବା ପରେ ବି ଲରାର ମାନସିକ ପରିବର୍ତ୍ତନ ଘଟୁ ନାହିଁ ମାନେ ଚିକିତ୍ସା ଅବଶ୍ୟମ୍ଭାବୀ ବୋଲି ତା'ର ଧାରଣା ଦୃଢ଼ ହେଉଥିଲା । ଏବେ ଦୁଇଜଣଙ୍କର ରୋଜଗାର ହେତୁ ତାଙ୍କର ଅଭାବ ବୋଲି କିଛି ନ ଥିଲା । ସି.ଡି.ଏ.ରେ ଆବେଦନ କରିଥିବା ପ୍ଲଟ୍ ସେ କିଣିସାରିଥିଲା ଓ ଘରତିଆରିର ଆୟୋଜନ କରୁଥିଲା । କାର୍ କିଣିବାପାଇଁ ସରକାରୀ ଲୋନ୍ ପାଇ ତାକୁ ସେ ବ୍ୟାଙ୍କ୍‌ରେ ଜମାରଖିଥିଲା– ଯେକୌଣସି ମୁହୂର୍ତ୍ତରେ ଗୋଟେ କାର୍ କିଣିବା ତା'ପାଇଁ ଅତି ସହଜ ଥିଲା । ନୀନା ଇଂଲିଶ୍ ମିଡିଅମ୍ ସ୍କୁଲରେ ପଢୁଥିଲା ଓ ଖୁବ୍ ଭଲକରୁଥିଲା ପରୀକ୍ଷାରେ । ନାନୁର ପାଠପଢ଼ା ଆରମ୍ଭ ହୋଇ ନ ଥିଲେ ବି ସେ ଭାରି ଇଣ୍ଟେଲିଜେଣ୍ଟ ହେବ ବୋଲି ସୁରଞ୍ଜନ ନିଶ୍ଚିତ ଥିଲା । ଏ ସମସ୍ତ ପରିପୂର୍ଣ୍ଣତା ଭିତରେ ଲରା ଯେ କାହିଁକି ସୁଖୀ ହୋଇପାରୁ ନ ଥିଲା ଓ ତା'ର ମାନସିକ ବିକୃତି କାହିଁକି ବଢ଼ି ବଢ଼ି ଯାଉଥିଲା, ସୁରଞ୍ଜନ ବୁଝିପାରୁ ନ ଥିଲା । ତେଣୁ ସାଇକିଆଟ୍ରିଷ୍ଟର ପରାମର୍ଶ ନବାଛଡ଼ା ତା' ଆଗରେ ଅନ୍ୟ ବାଟ ବୋଧେ କିଛି ନ ଥିଲା ।

ରବିବାର ସକାଳ ଆଠଟାରେ ସୁରଞ୍ଜନ ସ୍କୁଟର ଧରି ବାହାରିଲା, ଅଗାଧୁଆ । ପ୍ରତି ରବିବାର ଏହି ସମୟରେ ସେ ମହାନଦୀ ପୋଲ ପାଖ ଦେଇ ମାଂସଦୋକାନକୁ ଯାଏ । କିନ୍ତୁ ଅନ୍ୟ ସବୁ ରବିବାର ପରି ମହାନଦୀ ପୋଲ ପାଖକୁ ନ ଯାଇ, ସେ ଝୋଲାସାହି ଆଡ଼କୁ ମୁହେଁଇଲା । ଡକ୍ଟର ଚଣ୍ଡୀଚରଣ ଦାସଙ୍କ କ୍ଲିନିକ୍ ପାଇବାରେ ତାକୁ ଅସୁବିଧା ହେଲା ନାହିଁ । ସକାଳ ଆଠଟାରେ କ୍ଲିନିକ୍ ବାରନ୍ଦାରେ ଏତେ ଭିଡ଼ ଦେଖି ସେ ଆଶ୍ଚର୍ଯ୍ୟ ହେଲା । କଟକରେ ନା ସାରା ଓଡ଼ିଶାରେ ମାନସିକ ରୋଗୀଙ୍କ ସଂଖ୍ୟା ବଢ଼ିଚାଲିଚି, ସେ ନିଜକୁ ପଚାରିଲା ଓ ଫିକା ହସଟେ ହସିଲା । ରୋଗୀମାନଙ୍କ ମଧ୍ୟରୁ ଅନେକ ଅତ୍ୟନ୍ତ ପ୍ରଗଲ୍‌ଭ ଥିଲେ ଓ ଅନ୍ୟ କେତେ଼କ ଥିଲେ ଅସମ୍ଭବ ଭାବରେ ଚୁପ୍‌ଚାପ୍ । ସଂଭ୍ରାନ୍ତ ଚେହେରାର କେତେ ଜଣ ବୁଢ଼ାଲୋକଙ୍କୁ ଦେଖି ସେମାନେ ରିଟାୟାର୍ଡ଼ ଜଜ୍, ଅଫିସର୍ ବା ପ୍ରଫେସର୍ ହୋଇଥିବେ ବୋଲି ସେ ଅନୁମାନ କଲା । ପୂର୍ବରୁ ଅନେକ ଡାକ୍ତରଙ୍କ ପାଖକୁ ବିଭିନ୍ନ କାମରେ ଯାଇଥିଲେ ବି, ଏଠାକାର ପରିବେଶ ତାକୁ ଭିନ୍ନ ମନେହେଲା । ତଥାପି ଆଟେଣ୍ଡାଣ୍ଟ ବୟକୁ ସେ ନିଜର ନାମ କହିଲା ଓ ନମ୍ବର ବୁଝିନେଲା– ସତେଇଶ ।

ବୋର୍ ହୋଇଯାଉଥିବା ସୁରଞ୍ଜନ ବାହାରକୁ ଆସିଲା, ସିଗାରେଟ୍ ଖଣ୍ଡେ ପିଇଲା ଓ ଆକାଶକୁ ଚାହିଁଲା ଅନ୍ୟମନସ୍କ ଭାବରେ । ଡାକ୍ତରଙ୍କୁ କ'ଣ କହିବ ବୋଲି ପ୍ରଶ୍ନଟି ତାକୁ ଅଥୟ କରୁଥିବାରୁ, ସିଗାରେଟ ପିଇବାର କୌଣସି ସ୍ୱାଦୁ ସେ

ଅନୁଭବ କରିପାରୁ ନ ଥିଲା । ପେସେଣ୍ଟକୁ ଆଣିବାପାଇଁ ଡାକ୍ତର କହିପାରନ୍ତି ବୋଲି ଭାବିବାକ୍ଷଣି ସେ ବଡ଼ କାକୁସ୍ଥ ହୋଇପଡୁଥିଲା ଓ ଲରାକୁ ଏକଥା କହିବା ଅର୍ଥ ବାରୁଦ ପାହାଡ଼ରେ ନିଆଁ ଲଗେଇବା ଭଳି ବୋଲି ତା'ର ହୃଦ୍‌ବୋଧ ହେଉଥିଲା । ଲରାକୁ ତା' ମର୍ଜି ବିନା ଡାକ୍ତର ପାଖକୁ ଆଣିବା ତ କଦାପି ସମ୍ଭବ ନୁହେଁ, ବରଂ ଲରାର ବିସ୍ଫୋରଣରେ ତମାମ୍ କଲୋନୀ ଓ କଲେଜରେ ଗୋଟେ ସ୍ଥାୟୀ ଗୁଞ୍ଜରଣ ଖେଳିଯିବ ବୋଲି ସେ ଅନୁମାନ କରୁଥିଲା ।

ଗୁଞ୍ଜରଣ ପ୍ରତି ଜଣେ ପୁରୁଷ ମନରେ ଯଦି ଏତେ ଭୟ, ଗୋଟେ ସ୍ତ୍ରୀଲୋକକୁ ଏହା କେତେ ବ୍ୟଥିତ ନ କରିବ । ଏମିତି ଭାବିଲାକ୍ଷଣି ସୁରଞ୍ଜନର ମନ ତରଳି ଯାଉଥିଲା ଓ ଲରା ପ୍ରତି ସେ କାହିଁକି କେଜାଣି ଭାରି କୋମଳ ହୋଇପଡୁଥିଲା ନିଜ ଅଜାଣତରେ । ସିଗାରେଟ୍ ଧୂଆଁର ମ୍ଳାନକୁଣ୍ଡଳୀ ଭିତରେ ସେ ଦେଖୁଥିଲା ଲରାର ଅସ୍ପଷ୍ଟ ଚେହେରା ଓ ପଚାରୁଥିଲା ନିଜକୁ ସେ ଲରାପ୍ରତି କ'ଣ ଯଥେଷ୍ଟ ଅନ୍ୟାୟ କରି ନାହିଁ ? ଜୀବନରେ କୋଉ କଥାରେ କ'ଣ– ସେ କେବେ ତାକୁ ଭାଗୀଦାର କରିଛି ? ନିଜ ମନକଥା କେବେ ବି ଖୋଲି କହିଛି କି ତାକୁ, ନା ତା' ମନଗହନର କଥା ବା ବ୍ୟଥା କିଛି କେବେ ବୁଝିବାକୁ ପ୍ରୟାସ କରିଛି ? ଲରା ଆକସ୍ମିକ ଭାବରେ ତାକୁ ଅପମାନିତ କରିବାଠାରୁ ସେ କେବେହେଲେ ତାକୁ ମନଖୋଲି ଭଲ ପାଇ ନାହିଁ, ଭଲପାଇବାର ଅଭିନୟ କରିଛି ଯାହା । ତା' ଦେହକୁ ଯେମିତି ଛୁଇଁଛି ସେ. ସେମିତି ଛୁଇଁପାରିଛି କି ତା' ମନକୁ ? ନିବିଡ଼ ଛୁଆଁରେ ଦେହ ଯଦି ତରଳିପାରୁଛି, କାହିଁକି ତରଳି ପାରିବ ନାହିଁ ମନ ?

ବେଶ୍ କିଛି ସମୟ ଭାବିହେଲା ସୁରଞ୍ଜନ । ଆକାଶରେ, ମାଟିରେ, ଝିଲିମିଲି ଖରାରେ, ଭିଡ଼ ରାସ୍ତାରେ– ସବୁଠି ଯେମିତି ସେ ଦେଖିଲା ଗୋଟେ ଅଝଟିଆ ଝିଅର ମୁହଁ; ପବନର ଢେଉରେ ବାରିପାରିଲା ଗୋଟେ ଭାରି ଉଦାସ ଅଥଚ ଅନ୍ତରଙ୍ଗ ମନ । ସେ ଗୋଟାପଣେ ଭିଜିଗଲା । ଘରର ଗୁମର କୋଉ ଅଜଣା ଡାକ୍ତର ଆଗରେ ଖୋଲିଦେବା ଅପେକ୍ଷା, ଲରାର ମନକୁ ସେ ଖୋଲି ନ ପାରିବ କାହିଁକି ? ପାରିବ, ସେ ନିଶ୍ଚୟ ପାରିବ– ସୁରଞ୍ଜନ ସ୍ୱଗତୋକ୍ତି କଲା । ପ୍ରାଣଭରି ଭଲପାଇବାଠୁଁ ବଳି ବଡ଼ କଥାଟେ କ'ଣ ଅଛି ଯେ ଜୀବନରେ ?

ଡକ୍ଟର ଦାସଙ୍କ କ୍ଲିନିକ୍ ବାରନ୍ଦା ଆଡ଼କୁ ପୁଣି ଦୃଷ୍ଟି ଫେରେଇଲା ସୁରଞ୍ଜନ । ଚ୍ୟାମ୍ବର ଭିତରକୁ ପ୍ରତୀକ୍ଷମାଣ ରୋଗୀମାନଙ୍କର ଯିବାଆସିବା ଲାଗିରହିଥିଲା । ସେ କିନ୍ତୁ ସ୍କୁଟର ଷ୍ଟାର୍ଟ କଲା ।



# ସାକ୍ଷୀ

କୁଆ କା' କରି ନ ଥିବ, ଟୁଙ୍କିଆନ୍ନା କିନ୍ତୁ ବିଛଣା ଛାଡ଼ିସାରିଥିବ ସେତେବେଳକୁ । ଅନ୍ଧାର ନ ଥିବ, ଅଥଚ ସୂର୍ଯ୍ୟ ଉଠି ନ ଥିବ ବୃକ୍ଷ ଉହାଡ଼ରୁ । ସାଇ ମାଇପିମିଣିପିଙ୍କ ପହଡ଼ ଭାଙ୍ଗି ବି ନ ଥିବ । ଖୋଲି ନ ଥିବ କାହା ଦାଣ୍ଡକବାଟ । ଟୁଙ୍କିଆନ୍ନା ନାସ ଶୁଂଘି ଶୁଂଘି ଧପାଲିଥିବ ଗାଁଦାଣ୍ଡରେ । ସିଧା ଯାଇ ପହଞ୍ଚିବ ତଉଲି ନାଆକଘର ପୋଖରୀ ହୁଡ଼ାରେ । ପୋଖରୀପାଣି ସାରି, ହେଁ ମୋଟା କଷି କରଞ୍ଜ ଡାଳଟେ ଭାଙ୍ଗିବ ଓ ଦାନ୍ତ ଘଷିବ । ଆ...ଆଃ... ଓକାଳିବ ଜିଭ ଛାଲୁଛାଲୁ । ତା'ପରେ ବୁଡ଼ଟେ ମାରିବ ପଙ୍କପୋଖରୀରେ । ସୂନ୍ଦରା ଫାଟୁଥିବା ପୂର୍ବ ଦିଗକୁ ଚାହିଁ, 'ଯବା କୁସୁମ ସଂକାଶ...' ଶ୍ଳୋକର ବିକୃତ ଅନୁନାସିକ ଉଚ୍ଚାରଣ କରିବ । ତା'ପରେ ତ ଏକପ୍ରକାର ଦୌଡ଼ିଦୌଡ଼ି ଫେରିବ ଘରକୁ ।

ଘରେ ପହଞ୍ଚି ଟୁଙ୍କିଆନ୍ନା ଚିତାଚଇତନ ହବ । ନୀଳ ଦିଆ ନ ଯାଇ ମାଟିଆ ଦିଶୁଥିବା ଧୋତି ସାଙ୍ଗକୁ କଳାଚିତ୍‌ମରା ପଞ୍ଜାବିଟା ଡାଙ୍କି ହବ । ସେତେବେଳକୁ କଂସେ ନାଲି ଚା' ଓ ଗଉଣିଏ ଭୁଜା ପରଶି ସାରିଥିବେ ହେମବୋଉ । ପାଣିଭର୍ତ୍ତି ଅବଖୁରାଟେ ଥୋଇଦେଇଥିବେ ବି । ପହିଲେ ଟୁଙ୍କିଆନ୍ନା ଅଧଅବଖୁରାଏ ପାଣି ଢକଢକ କରି ପିଇଯିବ । ତା'ପରେ କଂସାରେ ଭୁଜା ଭସେଇ ଖାଉଖାଉ ଚା' ପିଉଥିବ, ଚା' ପିଉପିଉ ଭୁଜା ଖାଉଥିବ । ଏସବୁ ନିମିଷକେ ସେ ସାରିଦେବ । ତା'ପରେ ହ୍ୟାଣ୍ଡବ୍ୟାଗ୍‌କୁ ସାଇକେଲ୍ ହ୍ୟାଣ୍ଡେଲରେ ଝୁଲେଇଦେବ ଓ ପ୍ୟାଡେଲ୍ ମାରିବ ।

ସଦ୍ୟ ନିଦରୁ ଉଠି ଅଳସ ଭାଙ୍ଗୁଥିବ ଗାଆଁ । ଲାଗିଆସୁଥିବ କ୍ରମେ ଗହଳ ଚହଳ । ରାମ ପାଢ଼ୀଏ ଅଧୁଆ ମୁହଁରେ ଆଖି ମଳିମଳି ବିଷ୍ଣୁ ସହସ୍ରନାମ ଗାଇବା ଆରମ୍ଭ କରିଥିବେ । ହମ୍ବାରଡ଼ି ଶୁଭୁଥିବ ସାଧୁ ମହାକୁଡ଼ ଗୁହାଳରୁ । ଚର୍‌ଚର୍ କରି ସେ ଦୁଧ ଦୁହୁଁଥିବ ତା' ଜର୍ସିଗାଈର ବୋଇତାଳୁଆ ପହ୍ନାରୁ । କାଳିଆ କସରା ବେକରେ ଯୁଆଳି ଭିଡୁଥିବ ସତେଇ ବିଶ୍ୱାଳ । ଧନୀ ଚୌଧୁରୀ ଆମ୍ବବଗିଚାରେ ପତର ଖରକୁଥିବ ବେହେରାଘର ବୁଢ଼ୀ । ଗାଆଁ ଦାଣ୍ଡ ପାରିହେଲେ ହିଡ଼ ରାସ୍ତା । ପଳାସବିନ୍ଧାରୁ ଦି'ଗଛିଆ ଛକକୁ ସାଇକେଲ୍‌ରେ ଅଧଘଣ୍ଟେ ଲାଗିବ ଟୁଙ୍କିଆନ୍ନାକୁ । ଦି'ଗଛିଆ ଛକରେ ପହଞ୍ଚିଲାବେଳକୁ ଗଙ୍ଗା ରାଉଳ ତା' ପାନଦୋକାନ ପିଣ୍ଡାରେ ବେଞ୍ଚ ସଜାଡୁଥିବ । ତହୁଁ ଟୁଙ୍କିଆନ୍ନା ତା' ମଡ଼ଗାର୍ଡ଼ ନ ଥିବା ହରକୁଲେସ୍ ସାଇକେଲ୍‌କୁ ଗଙ୍ଗାଦୋକାନ ପଛରେ ଥୋଇ ଚାବି ମାରିବ । ଅପେକ୍ଷା କରିବସିବ ଚାନ୍ଦବାଲିଆଡୁ ଆସୁଥିବା ଫାଷ୍ଟବସ୍‌କୁ ।

ସେତେବେଳକୁ ଫାଷ୍ଟ ବସ୍ କଦାପି ଦି'ଗଛିଆ ଛକ ଧରି ନ ଥିବ । ଦି'ଗଛିଆ ଛକରେ ବସ୍ ରହିବହିଁ ରହିବ, କେହି ହାତ ଟେକୁ ବା ନ ଟେକୁ । ଫାଷ୍ଟ ବସ୍‌ର ନିତିଦିନିଆ ଗରାଖ ଟୁଙ୍କିଆନ୍ନା । ଆଉ କେହି ନ ଥିଲେ ବି ଟୁଙ୍କିଆନ୍ନା ସେ ବସ୍‌ରେ ନିଶ୍ଚେ ଚଢ଼ିବ ବୋଲି ଡ୍ରାଇଭର୍ କଣ୍ଡକ୍ଟରଙ୍କୁ ବେଶ୍ ଜଣାଥିବ । ଟୁଙ୍କିଆନ୍ନାକୁ ପଇସା ମାଗିବ ନାହିଁ କଣ୍ଡକ୍ଟର କି ଟିକେଟ୍ କାଟିବ ନାହିଁ । ଓହ୍ଲେଇଲାବେଳେ ସେ କଣ୍ଡକ୍ଟର ହାତକୁ ଖୁଚୁରା ପଇସା ବଢ଼େଇଦେବାକୁ ଭୁଲିବ ନାହିଁ ଓ କଣ୍ଡକ୍ଟର ପଇସା ନ ଗଣି ତା' ମୁଣିରେ ପକେଇବ । କେଉଁଦିନ କେମିତି ନୂଆ ଡ୍ୟୁଟିରେ ଆସିଥିବା ଅଚିହ୍ନା କଣ୍ଡକ୍ଟର ଟିକେଟ୍ କାଟିବାକୁ ଗଲାବେଳେ ଟୁଙ୍କିଆନ୍ନା ହାଁ ହାଁ କରି ହାତଠାରି ମନାକରିବ । ଖୁଚୁରା ପଇସା ନେଇ ତା' ହାତରେ ଗୁଞ୍ଜିଦେବ । ପଇସା ଗଣିସାରି ନୂଆ କଣ୍ଡକ୍ଟର ଅଧିକ ପଇସା ମାଗିଲେ, ଟୁଙ୍କିଆନ୍ନା କହିବ, ''ସେତିକି ମୁଁ ତ ସବୁଦିନେ ଦେଇଆସୁଛି । ରଖ ସେତିକି । ତମେ ନୂଆଲୋକ । ମୁଁ ପୁରୁଣା ଗରାଖ ।'' କଣ୍ଡକ୍ଟର ବେଶି ଯୁକ୍ତିତର୍କ କଲେ ଟୁଙ୍କିଆନ୍ନାର ଉତ୍ତର ଥିବ ବଡ଼ ନିର୍ବିକାର ''ଯୋଉଠି ମୋ ପଇସା ସରିବ, ସେଇଠି ମତେ ଓହ୍ଲେଇଦବ ।'' ହସିପକେଇବ କଣ୍ଡକ୍ଟର । ଚାନ୍ଦବାଲିରୁ ଛାଡୁଥିବା ଫାଷ୍ଟ୍ ବସ୍ ଯାଇ ଭଦ୍ରକରେ ପହଞ୍ଚିବ ନ'ଟା ପନ୍ଦର ମିନିଟ୍‌ରେ । ଟୁଙ୍କିଆନ୍ନା ସେଠୁ ସିଧା କଚେରି ହତାକୁ ଧାଇଁବ । ଦେବଦାରୁ ଗଛମୂଳରେ ଥିବା କାଳିଆ ସାହୁ ଦୋକାନରେ ଭଙ୍ଗା ବେଞ୍ଚ ଉପରେ ବସି କପେ ଚା' ପିଇବ । ପାନଡବା ବାହାର କରିବ ପଞ୍ଜାବି ପକେଟରୁ । ସେଇଠୁ ଚୁଆବାସ୍ନାରେ ମହକିବ କାଳିଆ ସାହୁର ଦୋକାନ ଅଗଣା । ତା'ପରେ ଟୁଙ୍କିଆନ୍ନା କଚେରି ହତା ଚାରିଆଡ଼େ ଫେରାଏ ମାରିଆସିବ । କାଁ-ଭାଁ ମୋହରିର୍‌ମାନଙ୍କ ଟୁଙ୍ଗୀ ଖୋଲିବା ଆରମ୍ଭ ହୋଇଥିବ । ଓକିଲମାନଙ୍କର ଦେଖା ନ ଥିବ ସେପର୍ଯ୍ୟନ୍ତ । ରଙ୍ଗ ଗୋଛେଇତ କଚେରି କବାଟ ଖୋଲୁଥିବ । ଜଣେ ଅଧେ କେସ୍‌ବାସିଆ ଟହଲ ମାରୁଥିବେ ଏଣେତେଣେ । ଆଜି କ'ଣ ଲୋକବାକ ଏତେ କମ୍, ବେଳା ଭଲ ନାହିଁକି ? ଟୁଙ୍କିଆନ୍ନା ନିଜକୁ ପଚାରୁ ପଚାରୁ, ''ମା'ଲୋ ସାହାଡ଼ାଶୁଣୀ, ସାହା ହ ଲୋ ମା'' ବୋଲି ଗୁଣୁଗୁଣୁ ହବ ।

ହାକିମ୍‌ହୁକୁମା, ଓକିଲ ମୁକ୍ତାରଙ୍କର କଚେରି ଆସିବା ଡେରି ହେବ ସିନା, ଟୁଙ୍କିଆନ୍ନା ଜାତକରେ କିନ୍ତୁ ଉଛୁର ଲେଖା ନ ଥିବ । ଯୋଉ ବାର ଯୋଉ କେସ୍‌ର ସାକ୍ଷୀ ହବା କଥା, ସେଥିକୁ ତା'ର ପରବାୟ ନ ଥିବ । ସେ ପାଉଣା ତ ତା'ର ଥୁଆ । କିନ୍ତୁ ନୂଆ କେସ୍ ସନ୍ଧାନରେ ସେ ଥିବ ନିରନ୍ତର । ସାକ୍ଷୀପଡ଼ାରୁ ଯୋଉ ପଇସା ମିଳିବ, ଓକିଲକୁ ମହକିଲ ଜୁଟେଇଦେଲେ କ'ଣ ସେମିତି ମିଳିପାରିବ ? ଟୋକାଟାକଳା ଓକିଲ ଦଶକୋଡ଼ିଏ ଛାଟି ଦେବେ ସିନା, ନାମୀ ଓକିଲଙ୍କ ପକେଟରୁ ସେ ବାବଦ ପାଞ୍ଚଟଙ୍କା ବାହାରିବା ମୁସ୍କିଲ୍ । କିନ୍ତୁ ସିଭିଲ୍ ହଉ କି କ୍ରିମିନାଲ୍ ହଉ, ଯୋଉ କେସ୍‌ରେ ବି ସାକ୍ଷୀ ହୋଇ ଠିଆ ହୋଇଗଲେ ପକେଟ୍ ଫୁଲିଉଠିବ ।

ଏମିତି କଚେରିକୁ ଦୌଡ଼ି ଦୌଡ଼ି କାଳକ ଗଲାଣି ଟୁଙ୍କିଆନ୍ନାର । ଆଉ ବା କେତେଦିନ ବାକି ଅଛି । ଟୋକା ବୟସରୁ ବୁଢ଼ାହେଲା, ଗଜରା ନିଶରୁ ଦାଢ଼ି ପାଚି ଝୋଟ ହେଲା, ତଥାପି ସେ କଚେରି ଛାଡ଼ିପାରୁ ନ ଥିବ କି ତାକୁ ଛାଡ଼ିପାରୁ ନ ଥିବ କଚେରି । ସଞ୍ଜକୁ ତା' ପକେଟ୍ ପୂରିବ ହିଁ ପୂରିବ । ସେ ମନେ ମନେ ନିତି ନାଲିକୋଠାକୁ ଜୁହାର ହଉଥିବ । ଜୁହାର ହବନି- ଅନ୍ନଦାତା ପରା । ଏଇ ମାଲିମକଦ୍ଦମା ପଇସାରେ ସେ ଚାରି'ଛ ପରାଣୀ କୁଟୁମ୍ବ ପୋଷିଆସୁଥିବ । ବାପା ମା' କାମ କରିଥିବ, ଝିଅ ବାହା ଦେଇଥିବ ଥିଲାବାଲା ଘରେ । ପୁଣି ପୁଅକୁ ଛୋଟକାଟର ହେଲେ ବି ଚାକିରି ଖଣ୍ଡକରେ ଭର୍ତ୍ତି କରେଇଥିବ, ଆଉ ଅଧିକ କ'ଣ ବା କରିପାରିଥାଆନ୍ତା ? ଖୁବ୍ ସ୍ୱଚ୍ଛଳ ନ ହେଲେ ବି ଭାରିଗୋଟେ ଅଭାବ ତ ସେ ଅନୁଭବ କରୁ ନ ଥିବ । କଚେରିରୁ ଫେରିଲାବେଳେ ନିତି ତଟକା ପନିପରିବା ନେଇ ସେ ଘରକୁ ବାହୁଡୁଥିବ । ଶୁକୁରୁବାରିଆ ମାଙ୍ଗା ମିଆଁ ଦୋକାନରୁ ଅଧକେଜିଏ ଶାଗୁଆତି ବାନ୍ଧୁଥିବ । ଦିନବେଳା ଭଲ ହୋଟେଲରେ ଦିବ୍ୟ ଭୋଜନ କରୁଥିବ । ସେଥିପାଇଁ ଅବଶ୍ୟ ତାକୁ ପଇସା ଦବାକୁ ପଡୁ ନ ଥିବ । ମହକିଲମାନେ ଟାଣୁଥିବେ ତାକୁ ହୋଟେଲକୁ ତା' ସାକ୍ଷୀଦବା ନିଆରା । ଓକିଲ ଖୁସ୍ ତ ମହକିଲ ତହୁଁ ବଳି ଖୁସ୍ । ଭିଡ଼ି ନେଉଥିବେ 'ଦୁଇବନ୍ଧୁ' ହୋଟେଲକୁ । ଯାହା ମନ ତାହା ଖୁଆଉଥିବେ । ଜମି ବିକ୍ରିବଟାରେ ଚିହ୍ନଟ ପଡ଼ିଲେ ବି ମୁସ୍ତରି ଡାକି ଖାଇବାକୁ ଦବ । ସାଙ୍ଗକୁ ଦି'ଟା ଦଶଟଙ୍କିଆ ଗୁଞ୍ଜିଦବ ପକେଟ୍‌ରେ । ମୋହରିର ଜରିଆରେ ନକଲ କାଢ଼ି ସେ ସିଧା ପହଞ୍ଚେଇ ଦଉଥିବ ମହକିଲଙ୍କ ପାଖରେ । ତାରିଖ ବଢେଇ ଦଉଥିବ ଆଗତୁରା । ସେଥିରୁ ବି ମିଳୁଥିବ ଦି' ପଇସା ଆଉ ମାମଲାର ଗୁରୁତ୍ୱ ଉପରେ ନିର୍ଭର କରିବ ସାକ୍ଷୀପଡ଼ା ପାଉଣା । ସେ ପାଉଣା ଭାରି ମୋଟାସୋଟା । କିନ୍ତୁ ସାରା ଭଦରଖରେ ସାକ୍ଷୀ ଦେବାରେ ତାକୁ ଟପିଯିବା ପୁଅ ଏପର୍ଯ୍ୟନ୍ତ ଜନ୍ମି ନ ଥିବେ- ଥିବେ ଯଦି ଥିବେ ମା' ପେଟରେ ।

ନକ୍ସାଫକ୍ସା ଯୋଗେଇଦେବାରେ ବି ବେଶ୍ ଭଲ ପଇସା ମିଳୁଥିବ ଟୁଙ୍କିଆନ୍ନାକୁ । ଦଶ ପଚାଶ ମୌଜାର କିସମ କିସମ ନକ୍ସା ତ ତା' ପାଖରେ । ଚକବନ୍ଦୀ ନକ୍ସା ହାଲ ସାବକ ବନ୍ଦୋବସ୍ତ ନକ୍ସା ଏପରିକି ପାଞ୍ଚସାଲିଆ ବନ୍ଦୋବସ୍ତ ନକ୍ସା- କ'ଣ ନ ଥିବ ତା' କକର୍ଶ ବାକ୍ସରେ । ମହାଫିସ୍‌ଖାନାରୁ ଯାହା ନ ମିଳିବ, ତାହା ମିଳିବ ତା' ଖଟତଳୁ । ଏ ଭେଡ଼ା ସେନାଓ୍ୱତ୍ ଲଗାୟତ ଚାରି ଚକଲାରେ ଯିଏ ଜମିଜମାପାଇଁ ଅଦାଲତକୁ ଯିବ, ତା' ପାଖରେ ଆସିବହିଁ ଆସିବ । ଓକିଲଖାନାକୁ ଯିବା ଆଗରୁ ତା' ଦୁଆର ନ ମାଡ଼ି ଯିବ କୁଆଡ଼େ ? ଓକିଲ କହିବ ରେକର୍ଡ଼ ଦେଖା, ସାବକ ନକ୍ସା ଯୋଗାଡ଼ କର । ଓକିଲ ପାଖରୁ ଥରକୁ ଥର ଫେରିବା ଅପେକ୍ଷା ତା' ପାଖକୁ ଆଗ କାହିଁକି ନ ଆସିବ ? ଗାଉଁଲିଆ ପକ୍ଷ ଦେଖିଲେ ଟୁଙ୍କିଆନ୍ନା ସହଜେ ଧରାଦେବ ନାହିଁ । ସବୁ ଶୁଣିବ, ମୁଣ୍ଡ ଟୁଙ୍ଗାରିବ ହେଲେ ପାଟି ଖୋଲିବ ନାହିଁ । ଶେଷକୁ ଖାଲି ପଦେ କଥା କହିବ, 'ଦେଖିବା' – ହଁ କରିବ ନାହିଁ କି ନା କହିବ ନାହିଁ । ଝୁଲେଇ ରଖିବ ପକ୍ଷକୁ ।

ତେବେଯାଇ ଶଳା ମକଦ୍ଦମାଖୋରଙ୍କ ମଇଳା ଅଣ୍ଟିରୁ ଚକ୍‌ଚକ୍ ନୂଆ ନୋଟ୍ ଖସିବ । ଏସବୁରେ ଟୁଙ୍କିଆନ୍ନାକୁ ବୁଝେଇବ କିଏ ? ଯହୁଁ ଯହୁଁ ନୋଟ୍ ଖସୁଥିବ, ତହୁଁ ତହୁଁ ସାବକର ସାବକ- ନକ୍ସା ବାହାର କରୁଥିବ ସେ ।

ଓକିଲ, ପେସ୍କାର, ମୋହିରର, ଭେଣ୍ଡର- ଏମାନଙ୍କ ପାଖରେ ଟୁଙ୍କିଆନ୍ନାର ଖାତିର କ'ଣ କମ୍ କି ? ଦେଖାହେଲା କ୍ଷଣି କେହି କେହି ଓକିଲ ପଚାରିବେ 'କିହୋ, ଟଙ୍କାପାଣି, ତମର ଆଉ କ'ଣ ଦେଖା ନାହିଁ । ତମ ଆଡ଼ର ଲୋକସବୁ ସାଧୁ ହୋଇଗଲେଣି ନା କ'ଣ ? ନା ସରପଞ୍ଚମାନେ ବିଚାରପତି ପାଲଟିଗଲେଣି ?'' ଆଉ କେହି କହିବେ, ''ମଙ୍ଗଳବାର ଦିନ କୁଆଡ଼େ ଥିଲ କି ପାଣିଗିରି ? ତମେ ନ ମିଳିବାରୁ ଫଗୁଦାସକୁ ସାକ୍ଷୀକରି ଠିଆକଲି ଯେ କେସ୍‌ଟାକୁ ପାଣିଫଟେଇ ଦେଲା ।'' ଗୋଲେଖବାବୁ, ଶ୍ୟାମବାବୁ ପରି ନାଁକରା ସିଭିଲ୍ ଓକିଲମାନେ ବି ତାକୁ ଡାକୁଥିବେ- ''ବନ୍ତ ଥାନାର ସେଉଳଗଡ଼ିଆ ମୌଜାର ଚଉଦସାଲିଆ ନକ୍ସା ଅଛି କି ତମ ପାଖରେ ! ଏମିତି । ସେ ଯାହା ଜଜ୍‌ସାହେବଙ୍କ ବଙ୍ଗଳା ମାଡ଼ିପାରୁ ନ ଥିବ, ନ ହେଲେ ଅନ୍ୟ ସବୁଆଡ଼େ ଥିବ ତା'ର ଅବାଧ ଯାତାୟାତ ।

କେସ୍‌ବାସ୍ ମାମଲତି ସବୁ ପୈତୃକ ସୂତ୍ରରୁ ପାଇଥିବ ଟୁଙ୍କିଆନ୍ନା । ତା' ବାପ ଦୋଳପୁର ଜମିଦାର ପ୍ରହରାଜଙ୍କର ଥିଲେ ପ୍ରଧାନ ଗୁମାସ୍ତା । ବେଯଜମାନିଆ ବ୍ରାହ୍ମଣ ସେମାନେ ମୂଳରୁ । ସ୍ୱାଧୀନତା ଉତ୍ତାରେ ତା' ବାପ ନିକମା ହୋଇ ଘରେ ବସିଲା । ସବୁଆଡ଼ୁ ରୋଜଗାର ଠପ୍ । କ'ଣ କରିବ, କ'ଣ କରିବ ଭାବି ସେବେଳର ଅଣ୍ଡରମାଟ୍ରିକ, ଫୁଲାଫାଙ୍କିଆ ଟୁଙ୍କିଆନ୍ନା କଚେରିଆଡ଼ିଆ ହେଲା । ଜମି ପାଞ୍ଚ ଏକର ହାତେ ଚଷିଥିଲେ କ'ଣ ପେଟ ଅପୋଷା ରହିଥାନ୍ତା ? ହେଲେ ଦ୍ୱିଜକୁଳରେ ଜାତ- ଚଷାଭୁସା ବେଉସା କି ପୋଷେଇଥାନ୍ତା ତାକୁ ? ତା'ଛଡ଼ା ବ୍ରାହ୍ମଣ ହାତରେ କି ଚାଷ ହେବ । କଥାରେ କହିଛି, 'ବ୍ରାହ୍ମଣ ଚାଷ, ହଳ ଟିଙ୍ଗି ଟିଙ୍ଗି ଉପରେ ଘାସ' । ସେହି ଯିବାବେଳୁ ସେ ଯୋଉ କଚେରିମୁହାଁ ହୋଇଥିବ ଆଉ କେବେ ବି ମୁହଁ ଫେରାଇପାରୁ ନ ଥିବ ।

କ୍ରିମିନାଲ୍ ଓକିଲଙ୍କ ସାଙ୍ଗରେ ଟୁଙ୍କିଆନ୍ନାର ଭାବ ଯୋଡ଼ାଯୋଡ଼ି ବେଶି । ପର୍ଶୁ ଦାସ, ଗୋବିନ୍ଦ ମହାନ୍ତି, ରାଧାକାନ୍ତ ପଟ୍ଟନାୟକ ତାକୁ ନ ପାଇଲେ ପରା ବାଇଆ ହୋଇଯିବେ । ବାଇଆ ହେବେନି ? ସାକ୍ଷୀ କୋଉଠୁ ପାଇବେ ? କ୍ରିମିନାଲ୍‌ବାଲାଙ୍କ ପାଖରେ ତ ଜୁଆଡ଼ିଆ, ନିଶାବେପାରୀ, ଖୁଣୀ, ଦଙ୍ଗାଖୋରମାନଙ୍କ ଭିଡ଼ କାହିଁରେ କେତେ । ପୁଣି ଛାଡ଼ପତ୍ର, ଯାନିଯଉତୁକ, ଜାନାକାରୀ ମାମଲା ସବୁ ତାଙ୍କରି ପାଖରେ । ସେମାନେ ପୁଣି ଗୋଟାକ ମୂଳ କେସ୍‌ରୁ ବାଷଠି ମିସ୍‌କେସ୍ କରେଇଦେବେ । ସେସବୁପାଇଁ ଘନ ଘନ ସାକ୍ଷୀ ଲୋଡ଼ା । ପୁଣି ସାକ୍ଷୀ ସାକ୍ଷୀଭଳି ହେବା ଦରକାର । ସବୁ ତାଳରେ ଚାଲିଲେ, ଦଫା ସବୁ ବାଏଁ ବାଏଁ ଉଡ଼ିଯିବ । ଆଉ ବେତାଳ ହେଲେ ଆସାମୀ ସିଧା ଯିବ ମାମୁଘର । ଏସବୁ ମାମଲାରେ ତାକୁ ଆଗ

ଡାକରା । ତା'ର ସେମିତି ରେକର୍ଡ଼ ଅଛି ବୋଲି ନା ! ନୂଆ ନୂଆ ସେ କ'ଣ ଏସବୁ ଠିକ୍‌ଠିକ୍ ତୁଲେଇପାରୁଥିଲା ? ପୁରୁଣାକାଳିଆ ଓକିଲଙ୍କଠାରୁ ସେ ପ୍ରଥମେ ପ୍ରଥମେ କ'ଣ କମ୍ ଗାଳିଫଜିତ୍ ଶୁଣିଛି ? ତା'ର ମନେପଡୁଥିବ ସେଦିନର କଥାସବୁ । ସେତେବେଳେ ତ ଓକିଲ କହିଲେ ବଙ୍ଗାଳୀ । ଥରେ ଗୋଟେ କେସ୍‌ରେ ସେ କ'ଣ ଓଲମବିଲମ କରିଦେଲା ଯେ, ବହେ ଶୋଧିଥିଲା ସେ ସାହେବ ଗୋରା ବଙ୍ଗାଳୀ ଓକିଲ ନବ ସରକାର । ''ଡାହା ମିଛ କହିବାକୁ ଜିଭ ଲେଉଟିଲା ନାହିଁ ଆଜ୍ଞା,'' କାକୁତିମିନତି ହୋଇ କହିଥିଲା ଟୁଙ୍କିଆନ୍ନା । କିନ୍ତୁ ନବ ସରକାରର କାମ ମାନେ କାମ । ବଙ୍ଗଳାରେ ବୁଝେଇଥିଲା ବୁଢ଼ା, ''ପାନିଗ୍ରାହୀ, ସତ୍‌କଥା ବୋଲ୍‌ତେ ଆଛେ ତ ଯାନ୍ ମନ୍ଦିରେ, ଅଦାଲତେ କେନ ? ତୁମାର ବୃତ୍ତିର ସାଥେ ବେଇମାନି କର୍‌ତେ ନାୟ–ଜେନେରାଖୋ ।'' ସେଦିନ ଟୁଙ୍କିଆନ୍ନାର ଅକଲ ହୋଇଥିଲା । ସେ ଶପଥ କରିଥିଲା ବୃତ୍ତି ସହ କେବେ ବେଇମାନ କରିବନି ବୋଲି । ତା'ପାଇଁ ସତ କ'ଣ ମିଛ କ'ଣ ? ପେଟପୋଷ, ନାହିଁ ଦୋଷ । ସେହିଦିନଠାରୁ ସେ ପଛକୁ କେବେ ଫେରିଚାହିଁ ନ ଥିବ । ମିଛକୁ ଆଦରି ନେଇଥିବ ତା' ଜିଭ । ସେଥିଲାଗି ସିନା ଏବେ ତା' ଭାଉ ଅଲଗା । ଗୋବିନ୍ଦ ମହାନ୍ତି ଇଜଲାସ୍‌ରେ ଠିଆହେବ, ଆଉ ଟୁଙ୍କିଆନ୍ନା ସାକ୍ଷୀପଡ଼ିବ, ଦିନ ଦ୍ୱି'ପ୍ରହରରେ ମଣିଷ ମାରିଥିବା ଲୋକ ଗୋଟାପଣେ ତୁଳସୀ ହୋଇ ବାହାରିଆସିବନି ହାଜତରୁ !

ବିନା ଚାକିରିବାକିରିରେ କିଛି କମ୍ ପଇସା କମଉ ନ ଥିବ ଟୁଙ୍କିଆନ୍ନା । ହେଲେ ପ୍ରକୃତ ସୁଖ ସହ ତା'ର କେବେ ଭେଟ ହେଉ ନ ଥିବ । ସଂଜେ ଆସିଥିବା ପଇସା ରହୁ ନ ଥିବ ସକାଳକୁ । ଯୋଡ଼ ଛିଣ୍ଡା ଚପଲକୁ ଭଙ୍ଗା ସାଇକେଲ୍ ସବୁ ସେମିତି ଥିବ । ମଇଳା ଧୋତି କୁର୍ତ୍ତା ବଦଳୁ ନ ଥିବ କେବେ । ଗତ ବାତ୍ୟାରୁ ଗୁହାଳ ଭାଙ୍ଗିଯାଇ ମାଟିରେ ମିଶିଥିବ ଯେ ବଳଦ ବନ୍ଧା ହେଉଥିବେ ବାଗିପାଖ ମେଲାରେ । ପଶ୍ଚିମପାଖ ଚାଳ ଓହଳି ଭୂଇଁଲଗା ହୋଇଥିବ । ଘୁଣଖିଆ କବାଟ କେଁକଟର କରୁଥିବ ରାତିଦିନ । ସମ୍ବଳ ଘର ଦେଖି ହେମକୁ ବାହା ଦିଆଯାଇଥିବ ସିନା ହେଲେ ତା' କଷଣ କିଛି କମ୍ ନ ଥିବ । ଜୋଇଁଟୋକା କଂଟ୍ରାକ୍ଟର, ଭଲ ପଇସା କମଉଥିବ । ତାଙ୍କର ଜମିବାଡ଼ି ଅମାପ, ଆମ୍ବତୋଟା, ନଡ଼ିଆବଗିଚାକୁ ଯିଏ ଦେଖିବ ହାଁ କରି ଚାହିଁରହିବ । ହେଲେ ଏତେ ଲୋଭୀ ଲୋକ ସଂସାରରେ କୋଉଠି ନ ଥିବେ । ଥରକୁ ଥର ନୂଆ ନୂଆ ଚିଜ ବରାଦ କରିବେ । ହେମର ରାହାବାଳୀ ଶାଶୂ ଖୁଣ୍ଟିନାଣ୍ଟି ଘର ଝିଅ ବୋଲି କହି ତାକୁ ଖୁଣ୍ଟାଦଉଥିବେ । ସବୁବେଳେ ଗରଗର ହେଉଥିବ ତା' ବୁଢ଼ା ଶଶୁରଟା । ଗାତକୁ ଯିବାପାଇଁ ତା' ବାଟ ଫିଟୁଥିବ, ଅଥଚ ତା' ବଦପ୍ରକୃତି ଯାଉ ନ ଥିବ । ଜୋଇଁଟୋକା ତ ତହୁଁ ବଳି– ହେମ ଉପରେ ସବୁବେଳେ ହମହମ ହଉଥିବ, କଥାକଥାକେ ହାତ ଉଠଉଥିବ । କହୁଥିବ, ''ଯା, ତୋ'

ବୋପାଠୁଁ ଅମୁକଟା ଆଣିବୁ, ସମୁକଟା ଆଣିବୁ, ନ ହେଲେ ଫେରିବୁ ନାହିଁ । ଉଣାର ଭରଣା ଅନେକଥର କରାଗଲାପରେ ବି ପରିସ୍ଥିତି ସୁଧୁରୁ ନ ଥିବ । ବଦଳୁନି ତାଙ୍କ ମନମିଞ୍ଜାସ, ହେମର ରାଜାପୁଅ ପରି ପୁଅଟେ ହେଲା ପରେ ବି । ବଡ଼ ଦହଗଞ୍ଜ ହଉଥିବା ଟୁଙ୍କିଆନ୍ନା, କହିପାରୁ ନ ଥିବ, ସହିପାରୁ ନ ଥିବ ।

ପୁଅବୋହୂ ସେମିତି କାହିଁ କେତେଦୂରରେ ଯେ ବର୍ଷକୁ ବି ଥରେ ଅଧେ ଆସୁ ନ ଥିବେ ଗାଆଁକୁ । ପୁଅ ଫିଟର୍ ଥିବ ସଡ଼କ ପରିବହନ ନିଗମରେ । କଟକରୁ ତା'ର ବଦଳି ହୋଇଥିବ ସମ୍ବଲପୁର ୱାର୍କସପ୍‌କୁ । ନିଗମର ଅବସ୍ଥା ଯାହା ତାକୁ ମାସକୁ ଦରମା ମିଳୁ ନ ଥିବ ସେଠୁ । ବଡ଼ ହୀନସ୍ତାରେ ଥିବ ସେ ପିଲାକବିଲାଙ୍କୁ ଧରି । ଥରେ କେବେ ଘରକୁ ଆସିଲେ ଦି' ଚାରିବସ୍ତା ସରୁ ଚାଉଳ, ନଡ଼ିଆ, ବଡ଼ି, ମୁଗ, ପୁଣି ଖାଙ୍କିହାଟ ଇଲିଶି ଶୁଖୁଆ– ସବୁ ବାନ୍ଧିବ । ଗାଡ଼ି ଭଡ଼ା ଦି ଶ' ମାଗିନବ ତା' ମା'ଠାରୁ । ଆଉ ଯୋଉ ଯିବ ଯେ ଯିବ ଚିଠିଖଣ୍ଡେ ବି ଦବନି । ପୋଷ୍ଟକାର୍ଡ଼ଟେ ପାଇଁ କ'ଣ ଆଠଣିଟେ ନ ଥିବ ତା'ପାଖରେ ? ସବୁ ହେଲା ମନ । ଆଖିରୁ ଆଡ଼ ହେଲେ କିଏ କାହାର ? ବୁଢ଼ାବୁଢ଼ୀ ଦି'ଟା ମଲେ କି ଗଲେ ବୁଝିବ ନା ହେମକଥା ଭୁଲରେ ବି ପଚାରିବ ! ସବୁ ମାୟା । କାସ୍ତବ କାନ୍ତା, କସ୍ତେ ପୁତ୍ରଃ...ଟୁଙ୍କିଆନ୍ନା ତା'ର ସୀମିତ ଶାସ୍ତ୍ରଜ୍ଞାନ ଭିତରେ ନିଜକୁ ପ୍ରବୋଧୁଥିବ ।

ଏଇ କେତେଦିନ ତଳୁ ହେମ ପଳେଇଆସିଥିବ ଶାଶୂଘରୁ । ନୂଆ ନୂଆ ଭୁଆସୁଣୀଟା, ବକଟେ ପିଲାକୁ ଧରି ଏକା ଏକା ଫେରିବ ବାପଘରକୁ ? ସାଇପଡ଼ିଶାରେ ମୁହଁ ଦେଖେଇହବ ? ଟୁଙ୍କିଆନ୍ନା ବୋଲି ସିନା କଥାଟାକୁ ଏମିତି ବାଗରେ ବୁଲେଇଦବ ଯେ, ବୁଦୁ ଗାଆଁବାଲା କିଛି ଟେର୍ ପାଇବେ ନାହିଁ ।

ହେମକଥା ଭାବି ଭାବି ରାତିରେ ନିଦ ହଉ ନ ଥିବ ଟୁଙ୍କିଆନ୍ନାକୁ । ହେମବୋଉର ଚେଇଁଶୁଆ ନିଃଶ୍ୱାସ ବି ଶୁଭୁଥିବ ତାକୁ । ଝିଅଟା ହୀନକପାଳୀ ! ଦୂର୍‌ଦୂର୍ କରୁଥିବେ ଶାଶୂଶଶୁର, ଗିରସ୍ତ ଲଗାୟତ । ନ ଆସିବ କେମିତି ବାପଘରକୁ, ହଉପଛେ ହାଟପାଳିକି ଦି'ଥର । ଜୋଇଁ ଟୋକାର ବେପାରରେ ଘାଟା ହେଲା ବୋଲି କ'ଣ ଝିଅ ଦାୟୀ ହେବ ? ଟଙ୍କାପାଇଁ ପୁଣି ବରାଦ । କୋଉଠୁ ଆସିବ ଏତେ ଟଙ୍କା ? ସେଥିରେ ପୁଣି କୋଉ ଟୋକୀ ନର୍ସ ସାଙ୍ଗରେ ଲସରପସର ହେଉଥିବ ଯେ ଜୋଇଁଟୋକା, କାହିଁ କେତେଥର ରାତିରେ ଫେରୁଥିବ ଘରକୁ । ତା' ବାପା ମା' ସେଥିରେ ବାଧାଦଉ ନ ଥିବେ । ହେମ ମୁହଁ ଖୋଲିଲେ ନିଆଁ ଜଳୁଥିବ ଘରେ । କେଡ଼େ ଗେହ୍ଲାରେ ବଢ଼ିଥିଲା, କେତେ ଅଲିଅଳ ହୋଇଥିଲା, ବଡ଼ପାଟିରେ ପଦେ କହିଦେଲେ ତା' ଆଖି ଫୁଲିଯାଉଥିଲା ଲୁହରେ, କେତେ ଯାତନା ସେ ସହିବ ?

ସାରାରାତି ଏକଡ଼ ସେକଡ଼ ହୋଇ ଭୋରକୁ ଶୋଇପଡ଼ିବ ଟୁଙ୍କିଆନ୍ନା । ଜୀବନରେ ପ୍ରଥମଥର ପାଇଁ ଉଛୁର ହବ ତା'ର ଉଠିବା । ଦି'ଗଛିଆ ଛକରେ ତା' ପାଇଁ ହୁଏତ

ଫାଷ୍ଟବସ୍ ଘଡ଼ିଏ ଠିଆହୋଇ ଚାଲିଯାଇଥିବ । ତରତର ହୋଇ ସେ ସେକେଣ୍ଡ ବସ୍ ଧରିବ । ବସ୍‌ସାରା ସେ ଖାଲି ଟଙ୍କା ଭାବିହେଉଥିବ । କୋର୍ଟରେ ଯେତେସବୁ କେସ୍, ସବୁର ସାକ୍ଷୀହବା ପାଇଁ ନିଜକୁ ଯେମିତି ପ୍ରସ୍ତୁତ କରୁଥିବ । ଏଣିକି ବି ଜୋର୍ ମୂଳଚାଲ୍ ସେ କରିବ ସାକ୍ଷୀ ହେବାପାଇଁ– ନ ହେଲେ କେମିତି ହବ, ତା'ର ଯେ ଢେର ଟଙ୍କା ଦରକାର । ମିଛ ମାଲିମକଦ୍ଦମାରେ ଭର୍ତ୍ତିହୋଇଯାଏ କୋର୍ଟ କଚେରି, ସେ ମନାସୁଥିବ ସାହାଡ଼ାସୁଣୀଙ୍କୁ । ଆକୁଳରେ ଗୁହାରି କରୁଥିବ– ''ଏ ଜଞ୍ଜାଳରୁ ପାରିକର ଲୋ, ଖଟମିଛ ଲାଗି ମୋ ଦୋଷ ଧରିବୁ ନାହିଁ ମା', ବୃତ୍ତି ଏ ମୋ ପୋଷେ କୁଟୁମ୍ବ ।'' ଏମିତି ଯେତେ ଭାବୁଥିଲେ ବି ବାଟ ସରୁ ନ ଥିବ । ତାକୁ ଲାଗୁଥିବ ଗାଡ଼ି ଧିମେଇ ଚାଲୁଛି ଯେମିତି, ଘୁଞ୍ଚିଘୁଞ୍ଚି ଯାଉଛି ଭଦ୍ରକସହର, କୁମ୍ଭୀର ପିଠିର ପଦୁଅଁ ପରି ।

ଘୋ' ଘୋ' ଡାକୁଥିବା କଚେରି ଟୁଙ୍କିଆନ୍ନା ପହଞ୍ଚିଲାବେଳକୁ ସେଠି ତା' ଆସିବା ବାଟକୁ ଯେମିତି ଚାହିଁବସିଥିବ ନନ୍ଦବାବୁ, ପର୍ଶୁବାବୁଙ୍କ ଜୁନିଅର୍ । ଦେଖୁଦେଖୁ କହିବ, ''ଆଜି କ'ଣ ଏତେ ଡେରି ତମର ଟଙ୍କାପାଣି ? ସାର୍, ଅସ୍ଥିର ହୋଇ ତମକୁ ଖୋଜୁଛନ୍ତି ।'' ମୋତେ ଖୋଜୁଛନ୍ତି ପର୍ଶୁବାବୁ, କଥା କ'ଣ ?'' ଟୁଙ୍କିଆନ୍ନା ପଚାରିବ । ନନ୍ଦବାବୁ କହିବ, ଆଜି ଗୋଟେ ଭାରି ଗୁରୁତ୍ୱପୂର୍ଣ୍ଣ କେସ୍ ଅଛି । – ତମଛଡ଼ା ସେ କେସ୍‌କୁ କେହି ମୁଣ୍ଡ ଲଗେଇପାରିବନି । ପାର୍ଟି ପୂରା ମାଲଦାର୍ । ସାକ୍ଷୀଦବାପାଇଁ ଯାହାକୁ ଯୋଗାଡ଼ କରିଥିଲା, ସବୁ ଆଡ଼ଭାନ୍ସ ନେଇ ସେ ଛୁ । ଅଳ୍ପ ସମୟ ପରେ କେସ୍ ପଡ଼ିବ । ତୁମକୁ ଖୋଜିବାପାଇଁ ସାର୍ ମୋତେ ତିନି ତିନି ଥର ଘୂରେଇଲେଣି କଚେରି ସାରା ।''

''ଏମିତିକା ଜଟିଳ କେସ୍‌ପାଇଁ ଟଙ୍କା ପାଞ୍ଚହଜାର ନ ପାଇଲେ ମୁଁ କାଠଗଡ଼ାକୁ ଯିବି ନାହିଁ ।'' ଟୁଙ୍କିଆନ୍ନାର କଥା ନ ସରୁଣୁ ନନ୍ଦବାବୁ ତାକୁ ଏକପ୍ରକାର ଭିଡ଼ିନବ ପର୍ଶୁବାବୁଙ୍କ ସିରସ୍ତା ଆଡ଼କୁ ।

ଟୁଙ୍କିଆନ୍ନାକୁ ଦେଖି ପର୍ଶୁବାବୁ କହିବେ, ''ଦ କେସ୍ ଇଜ୍ ଭେରି ସିମ୍ପଲ୍'' । ଇଟ୍ ଇଜ୍ ଏ ଡିଭର୍ସ କେସ୍ । ତମେ କହିବ ମୁଁ ଏ ବାହାଘରର ମଧ୍ୟସ୍ଥି ଥିଲି । ଝିଅଟି ସୁନ୍ଦରୀ କିନ୍ତୁ ପାଗଳୀଟେ । ତା' ମା'ର ବି ମୁଣ୍ଡଦୋଷ ଅଛି । କିନ୍ତୁ କନ୍ୟାପକ୍ଷ ମୋତେ ମୋଟା ଉତ୍କୋଚ ଦବାରୁ ମୁଁ ବରପକ୍ଷକୁ ଏ ବିଷୟରେ କିଛି ନ କହି ବାହାଘରଟା କରେଇଦେଇଥିଲି । ବାସ୍– ଏତିକି କହିବ ତମେ । କିଛି ଅସୁବିଧା ହବ ନାହିଁ । ତମର ପୁଣି କି ଅସୁବିଧା ? ତମେ କ'ଣ ଫଗୁ ଦାସ ନା କପିଳ ବେହେରା ହୋଇଛ ଯେ, କାଠଗଡ଼ାରେ ପାଟି ଆଫାଆଫା କରିବ ।'' କହିସାରି, ତାଙ୍କ ପାଖରେ କୋଟ୍ ଟାଏ ପିନ୍ଧି ଠିଆହୋଇଥିବା ଯୁବକ ଜଣକୁ କ'ଣ ସେ ଇଙ୍ଗିତ ଦେବେ । ତା'ପରେ ଯୁବକଟି ନିର୍ବିକାର ଭାବରେ ନୂଆ ଶହେଟଙ୍କିଆ ନୋଟ୍‌ର ଗୋଟେ ବଣ୍ଡଲ୍ ବଢ଼େଇଦେବ ଟୁଙ୍କିଆନ୍ନା ହାତକୁ । ଟୁଙ୍କିଆନ୍ନାର ଅଭ୍ୟସ୍ତ ହାତ ଟଙ୍କା ବିଡ଼ାଟାକୁ ଝାମ୍ପିନେବ ତତ୍‌କ୍ଷଣାତ୍ ଓ ହ୍ୟାଣ୍ଡବ୍ୟାଗ୍‌ରେ ପୂରେଇଦେବ । ବିଡ଼ାଟା ଦଶ ହଜାରରୁ କଦାପି କମ୍ ହେବ ନାହିଁ, ଟୁଙ୍କିଆନ୍ନା ଅନୁମାନ କରିବ ।

ସାକ୍ଷୀହେବାପାଇଁ ଏକକାଳୀନ ଦଶହଜାର ଟଙ୍କା ସେ କେବେ ବି ପାଇ ନ ଥିବ ତା' ଜୀବନରେ । ସେ ହତଚକିତ ହୋଇପଡ଼ିବ, ସାରା ପରିବେଶକୁ ଅବିଶ୍ୱାସ କରିବ, ଅଥଚ ଭାରି ସ୍ୱାଭାବିକ ଦିଶୁଥିବ ଉପରକୁ ।

ନାଁ, ଗାଆଁ, ଠିକଣା ଇତ୍ୟାଦି ଇତ୍ୟାଦି ଅନେକ ଇତ୍ୟାଦି ଟୁଙ୍କିଆନ୍ନା କାନ ପାଖରେ ଫୁସ୍‌ଫୁସ୍ କରି କହିଯିବ ନନ୍ଦ ଓକିଲ, ମିନିଟିଏ ଦି' ମିନିଟ୍ ଭିତରେ । ଟୁଙ୍କିଆନ୍ନା ଖାଲି ଏଣ୍ଡୁଅପରି ମୁଣ୍ଡ ଟୁଙ୍ଗାରୁଥିବ । ପାକଳ ସାକ୍ଷୀକୁ କଞ୍ଚିଡ଼ି ଓକିଲ, ଅଧିକ କ'ଣ ବୁଝେଇବ ?

କୋର୍ଟ ଚ୍ୟାମ୍ବରରେ ପହଞ୍ଚି ଭାରି ଗହଳି ଦେଖିବ ଟୁଙ୍କିଆନ୍ନା । ଜଜ୍ ସାହେବ କିନ୍ତୁ ଆସି ନ ଥିବେ ଇଜ୍‌ଲାସ୍‌କୁ, ଗଣ୍ଡେ ଦି'ଗଣ୍ଡା ଓକିଲ ଯାହା ଖାଲି ନଟରପଟର ହଉଥିବେ । ବହେ ଲୋକ ବସିଥିବେ ଗ୍ୟାଲେରିରେ । ଗୋଟେ କୋଣରେ ଠିଆହୋଇ ଟୁଙ୍କିଆନ୍ନା କ'ଣ ସବୁ ଭାବୁଥିବ । ହଠାତ୍ ଜଜ୍ ଆସି ପହଞ୍ଚିଯିବେ ଓ ପରିବେଶ ନିରବିଯିବ । ପ୍ରଥମେ ପଡ଼ିବ ଏଇ ଛାଡ଼ପତ୍ର ମାମଲା ଓ ପର୍ଶୁବାବୁ ଡ୍ରାମା କଲାଭଳି ଯୁକ୍ତିତର୍କ ଆରମ୍ଭ କରିବେ । ସେଟା ତାଙ୍କ ସ୍ୱଭାବ । ଓଡ଼ିଆ କହୁ କହୁ ଇଂରାଜୀ ଝାଡ଼ିବେ, ଇଂରାଜୀ କହୁ କହୁ ଓଡ଼ିଆରେ ବଖାଣିବେ । ନନ୍ଦବାବୁ ମଝିରେ ମଝିରେ ତାଙ୍କ ହାତକୁ ମୋଟାମୋଟା ବହି ବଢ଼େଇଦଉଥିବେ । ପର୍ଶୁବାବୁ ପୁରୁଣା ଜଜ୍‌ମେଣ୍ଟ ଉଦ୍ଧାର କରି ଥୋଇଦେଉଥିବେ ଜଜ୍‌ଙ୍କ ଟେବୁଲ ଉପରେ । ଟୁଙ୍କିଆନ୍ନା କିନ୍ତୁ କିଛି ଶୁଣୁ ନ ଥିବ, ପାନ ଚୋବାଇ ଚାଲିଥିବ ଅବିରତ ।

ହୁଦାପକା ପିଆଦା ଡାକିବ ଟଙ୍କପାଣି ପାଣିଗ୍ରାହୀ ହାଜର୍ ହୋ... । ଟୁଙ୍କିଆନ୍ନା ପାନପିକ ଓ ପାନଖଦଡ଼ା ସବୁ ଢୋକିଦେବ ଓ ସିଧା ଚାଲିବ କାଠଗଡ଼ାକୁ । ନାଲି କନାରେ ମୋଡ଼ା ହୋଇଥିବା ଗୀତା ଛୁଇଁବ, ସତ କହିବ ବୋଲି ଶପଥ କରିବ । ଏସବୁ ତା'ର ଦେହସୁହା ।

ତାକୁ ଜେରା ହେବ, ''ତମେ ଏ ବାହାଘରର ମଧ୍ୟସ୍ଥି ଥିଲ ।''

'ହଜୁର୍', କୋର୍ଟ ଗ୍ୟାଲେରି ଆଡ଼କୁ ଚାହିଁ ଭାରି ସଂକ୍ଷେପରେ ଉତ୍ତରଦେବ ଟୁଙ୍କିଆନ୍ନା । ଖୁବ୍ ସୁନ୍ଦର ବୋହୂଟେ ତା' ଆଖିରେ ପଡ଼ିବ ହଠାତ୍ । କେତେବେଳୁ ସେ ଆସି ଗ୍ୟାଲେରୀରେ ବସିଥିବେ କେଜାଣି ? ହେମ ପରି ହେମଗୋରା ଚେହେରା ମୁହଁଟା ତା'ର ସ୍ପଷ୍ଟ ଦିଶୁ ନ ଥିବ । ଟୁଙ୍କିଆନ୍ନା ଆଖିର ପାବାର୍ କମ୍ କି ନା ! କିନ୍ତୁ ସେ ମୁହଁଟି ତାକୁ ଲାଗୁଥିବ ଭାରି ଆପଣାର । କେତେ ବୟସ ହବ ବୋହୂଟିର ? ହଁ, ଏଇ ପଚିଶ ଛବିଶ ତା'ଠୁଁ ଅଧିକ ହେବନି କଦାପି । ଭରପୂର ଦେହ । ନହକା ହାତରେ କଇଁନାଡ଼ି ପରି ଆଙ୍ଗୁଳି । ଲାଜରା ଲାଜରା ଭାବ । ଭାରି କିନ୍ତୁ ଚୁପ୍‌ଚାପ୍ । କିଏ ଯେମିତି ସବୁ ହସ ଚୋରେଇ ନେଇଥିବ ତା' ନାଲି ଓଠରୁ । ତା' ଆଖିପତାରେ ଯେମିତି ଲଦି ହୋଇଯାଇଥିବ ପାହାଡ଼େ ଆତଙ୍କ । ପାଖରେ ବସିଥିବ ବୁଢ଼ାଲୋକଟେ ।

ବାହାଘର ବେଳେ କ'ଣ ସବୁ ଯାନିଯଉତୁକ ଦିଆଯାଇଥିଲା । ଦ୍ୱିତୀୟ ପ୍ରଶ୍ନ ଶୁଣି ଅନ୍ୟମନସ୍କତାରୁ ଓହରିଆସିବ ଟୁଙ୍କିଆନା । ସେ କ'ଣ ହଡ଼ବଡ଼େଇ ଯିବା ଲୋକ ? ଟିକେ ଗଇଁ ଦେଇ ଓଲଟି ପଚାରିବ, ''କ'ଣ ନ ଦିଆଯାଇଥିଲା ଆଜ୍ଞା ? ଦାବି ମୁତାବକ ସବୁ ତ ଦିଆଯାଇଥିଲା ।'' ହଠାତ୍ ପ୍ରତିପକ୍ଷ ଓକିଲ ହସ୍ତପେକ୍ଷ କରିବେ, 'ଅବ୍‌ଜେକ୍‌ସନ୍ ଇଓର ଅନର୍' । ଜଜ୍ ମୁଣ୍ଡହଲେଇ ସମ୍ମତି ଦେବେ । କ'ଣ କ'ଣ ସବୁ ଦିଆଯାଇଥିଲା ସାକ୍ଷୀ ନିର୍ଦ୍ଦିଷ୍ଟ ଭାବରେ କହିବେ କି (?), ତହୁଁ ସେ ପଚାରିବେ । ଏହାଶୁଣି ଟୁଙ୍କିଆନା ଗଳା ସଫା କରିବ, ଛେପ ଢୋକିବ ଓ କହିବ, ''ନଗଦ ଲକ୍ଷେ ଟଙ୍କା, ମଟରସାଇକେଲ୍, ପଚିଶ୍ ଭରି ସୁନା, ଟିଭି, ଫ୍ରିଜ୍, ସବୁ କିସମର ଆସବାବପତ୍ର... ।'' ତା' କଥାରେ ବାଟୁଳି ବାଜୁ ନ ଥିବ ।

''ଝିଅଟା ପାଗଳୀ ବୋଲି ତ ତମେ ଜାଣିଥିଲ, ତା' ସତ୍ତ୍ୱେ...'' ତୃତୀୟ ପ୍ରଶ୍ନ ପଚରାଯାଉଥିବା ବେଳେ ଟୁଙ୍କିଆନାର ମୁଣ୍ଡ ଝିମ୍‌ଝିମ୍ ହୋଇଯାଉଥିବ । ଥରିଉଠୁଥିବ ତା' ଦେହ । ଶେଷ ବେଞ୍ଚରେ ବସିଥିବା ସେହି ସୁନ୍ଦରୀ ବୋହୂଟିର ମୁହଁ ହେମ ମୁହଁ ପରି ଦିଶିଯାଉଥିବ ତାକୁ । ଧଡ଼ପଡ଼ ହବ ତା' ଛାତି । ଝାଳେଇଯିବ ତମାମ୍ ଶରୀର ପ୍ରଥମଥରପାଇଁ ନିଜକୁ ହୁଡୁଥିବ ଟୁଙ୍କିଆନା । 'ଝିଅଟି ତ ହଜୁର ପାଗଳୀ ନୁହେଁ,' ବାହାରିପଡ଼ିବ ତା' ପାଟିରୁ ।

ଜେରା ସେଇଠୁ ରହିବ ସେଦିନ ।

କାଳିଆ ସାହୁ ଦୋକାନକୁ ଧାଇଁଯାଇ ଢାଳେ ପାଣି ପିଇଯିବ ଟୁଙ୍କିଆନା । ସେଠୁ ଦୌଡ଼ିବ ପର୍ଶୁବାବୁ ସିରସ୍ତାକୁ । 'ସେ ପାର୍ଟିଠାରୁ କେତେ ଟଙ୍କା ପକେଇଛୁ ବେ ଧପ୍‌ପାବାଜ' ତାକୁ ଦେଖୁ ଦେଖୁ ଗର୍ଜିଉଠିବେ ପର୍ଶୁବାବୁ । ଟୁଙ୍କିଆନା କିନ୍ତୁ କିଛି କହିବ ନାହିଁ । ଟଙ୍କା ବିଡ଼ାଟା ତାଙ୍କ ଟେବୁଲ ଉପରେ ଥୋଇଦେଇ ସେ ପଛେଇ ପଛେଇ ଫେରୁଥିବ । ''ଆଜିଠୁଁ ତୋ ବେଉସା ବୁଡ଼ିଲା ଜାଣ ଟୁଙ୍କିଆ । ତୁ ବ୍ଲାକ୍‌ଲିଷ୍ଟେଡ୍ ହେଲୁ, କଚେରି ହତା ଆଉ ମାଡ଼ିପାରିବୁ ନାହିଁ, ହାରାମଜାଦା'' ଖିଙ୍କାରୁଥିବ ନନ୍ଦ ଓକିଲ ଟୁଙ୍କିଆନାକୁ, କିନ୍ତୁ କିଛି ଶୁଭୁ ନ ଥିବ । ସେ ସିଧା ଚାଲିବ କଚେରି ବସ୍‌ଷ୍ଟାଣ୍ଡକୁ । ଦୁଇବନ୍ଧୁ ହୋଟେଲକୁ ଆଉ ପଶିବ ନାହିଁ । ଖାଇବା କଥା ସେ ପୂରା ଭୁଲିଯାଇଥିବ ।

ଚାନ୍ଦବାଲିଆଡ଼ିଆ ଗାଡ଼ି କିଛି ନ ଥିବ ବସ୍‌ଷ୍ଟାଣ୍ଡରେ । ଟାଇଁଟାଇଁ ଖରାରେ ଟହଲ ମାରୁଥିବ ଟୁଙ୍କିଆନା, ଏକା ଏକା । ତାକୁ ଖରାଟରା ବାଧୁ ନ ଥିବ । କେହି ଲୋକବାକ ବି ତାକୁ ଦୃଶ୍ୟ ହେଉ ନ ଥିବେ । ଭାରି ହାଲୁକା ଲାଗୁଥିବ ତାକୁ ! ଟିକି ଚଢ଼େଇଟେ ପରି ସେ ଉଡ଼ିବୁଲୁଛି କି ଆଉ ଅନନ୍ତ ଆକାଶରେ ! ହଜିଯାଉଛି କି ନୀଳ ନିବିଡ଼ତାର ଉଲ୍ଲାସରେ । ମୁଣ୍ଡ ଭିତରେ କାହିଁ କୋଉକାଳୁ ଜମାଟବାନ୍ଧିଥିବା ଅନ୍ଧକାର ସବୁ ତରଳି ଯାଉଛି କି ? ସାରା ଦେହ, ସାରା ମନ ଭିଜିଯାଇଛି କି ଗୋଟେ ଅଫୁରନ୍ତ ପୂର୍ତ୍ତିରେ ? କିନ୍ତୁ କାହିଁକି ? କାହିଁକି ?

ଟୁଙ୍କିଆନା କିଛି ବୁଝିପାରୁ ନ ଥିବ ।



# ଉଚ୍ଛଳ ଅବତରଣ

ଅବସର ନେବା ସପ୍ତାହେ ହୋଇଥିବ କି ନାହିଁ, ହଠାତ୍ ଦିନେ ସଦାନନ୍ଦଙ୍କ ଛାମୁଦାନ୍ତ ଦି'ଟା ଝଡ଼ିପଡ଼ିଲା । ସେ ଖେଳନା ହଜେଇଥିବା ପିଲାଟିଏ ପରି ଭୋ'କରି କାନ୍ଦି ପକାଇଥା'ନ୍ତେ । କିନ୍ତୁ ଦୈବାତ୍ ସୁନନ୍ଦା ସେତେବେଳେ ଘରେ ନ ଥିଲେ । ସଦାନନ୍ଦ କାନ୍ଦିଲେ ନାହିଁ; କାନ୍ଦକାନ୍ଦ ହୋଇ ରହିଗଲେ ।

ସଦାନନ୍ଦଙ୍କୁ ଆଉ କିଛି ଭଲ ଲାଗିଲା ନାହିଁ ସେଦିନ । ସେ ଲାଇଫ୍-ସାଇଜ୍ ଦର୍ପଣ ସାମ୍ନାରେ ଠିଆ ହୋଇ ନିଜ ମୁହଁକୁ ଚାହିଁଲେ । ଏଁ– ତାଙ୍କ ମୁହଁରେ ଏ କି କାକୁସ୍ଥ ଭାବ ? ଅଧସ୍ତନମାନେ ଭୟ କରୁଥିବା ସେ ଗମ୍ଭୀର ମୁହଁଟି ଗଲା କୁଆଡ଼େ । ଦାନ୍ତ ଦୁଇଟା ତ ଗଲା ଗଲା, ମହାକାଳର ମହାବାତ୍ୟାରୁ ବର୍ତ୍ତି ରହିଥିବା ଛ'ଣା ସରିକି କେଶ ଯାହାକୁ ଏତେ ଯତ୍ନ ସହକାରେ ପୋଷଣ କରାଯାଇଥିଲା, ତାହା ଏବେ ପାଚିଲା ଝୋଟ ! ସଦାନନ୍ଦ ଏକଦା କଡ଼ା ହାକିମ ଥିବା ଯୋଗୁଁରେ ନିଜକୁ ସମ୍ଭାଳି ନେଲେ । ଭାବିଲେ ସେ ହଠାତ୍ ବୁଢ଼ା ହୋଇଯାଇ ନାହାନ୍ତି । 'ଗୋଦରେଜ୍' ପ୍ରତି ଅବହେଳା ହିଁ ତାଙ୍କର ଏ ଅକାଳ ବାର୍ଦ୍ଧକ୍ୟର ହେତୁ । ତା'ପରେ ନିଜକୁ ନିଜେ ସେ ଗୋଟେ ଯୋଡ଼େ ଡାଇଲଗ ଶୁଣାଇଲେ । ହୃଦ୍‌ବୋଧ କଲେ ଯେ ତାଙ୍କ କଥାର ଆଉ ଓଜନ ରହୁ ନାହିଁ । ତାଙ୍କ ଓଜନିଆ କଥା ସବୁ ଗୁଳିପରି ଛୋଟକାଟିଆଙ୍କ ଛାତିକୁ ବିନ୍ଧି ଦେଉଥିଲା ଦିନେ । ମାତ୍ର ଦୁଇଟା ଦାନ୍ତ ଅଭାବରେ କଥାଗୁଡ଼ାକ ଶିମିଳିତୁଳା ପରି ଉଡ଼ି ବୁଲୁଛନ୍ତି ଯେମିତି ଏଣେତେଣେ, ଧରା ଦେଉ ନାହାନ୍ତି ଜମା । ସଦାନନ୍ଦ କିନ୍ତୁ ନିଜକୁ ସାନ୍ତ୍ୱନା ଦେଲେ । ଡେଣ୍ଟିଷ୍ଟ୍ ବହିଦାରକୁ ଖବରଦେଲେ ସେ ଦିନକ ଭିତରେ ଦୁଇଟା ନୂଆ ଦାନ୍ତ ଲଗେଇ ଦେଇ ଯିବ ନିଶ୍ଚୟ !

ତଥାପି ସଦାନନ୍ଦଙ୍କ ମନ ଥୟ ଧରୁ ନ ଥିଲା । ପତ୍ରଝଡ଼ା ଋତୁ ଯେ ତାଙ୍କ ଅଗଣାରେ ପହଞ୍ଚି ସାରିଛି, ଏହା ବୁଝିବାପାଇଁ ଜଣେ ରିଟାୟାର୍ଡ଼ କମିଶନର୍‌ଙ୍କୁ କ'ଣ ସମୟ ଲାଗନ୍ତା ?

ଗୋଟେ ଥୁଣ୍ଟାଗଛର ବିକଳତା ଚହଲି ଯାଉଥିଲା ସଦାନନ୍ଦଙ୍କ ଆଖିଆଗରେ । ସବୁଜ ସ୍ୱପ୍ନରେ ବିଭୋର ଥିଲାବେଳେ ଚଢ଼େଇମାନଙ୍କର କିଚିରିମିଚିରିରେ ଫାଟି ପଡୁଥିଲା ଗଛଟିର ଚଉପାଶ । ସକାଳ ଓ ସଞ୍ଜର ରକ୍ତିମ ସୂର୍ଯ୍ୟାଲୋକରେ କେତେ ଚହଟୁ ନ ଥିଲା ସେ, କେଉଁ ଅଲିଅଳ ରାଜଜେମାର ସୁନାଦେହ ପରି । କିନ୍ତୁ ପତ୍ର ଝରିପଡ଼ିଲା

ପରେ ସବୁଠି ଖାଲି ନିର୍ଦ୍ଦୟ ନିରବତା । ବେଳେବେଳେ ମୃଦୁ ପବନରେ ଉଡ଼ି ଯାଉଥିବା ଶୁଖିଲାପତ୍ରର ଶବ୍ଦରେ କେନ୍ଦରାର କାରୁଣ୍ୟ ! ସଦାନନ୍ଦ ଇତସ୍ତତଃ ହେଲେ । ଏତେଶୀଘ୍ର ସେ ଏଡ଼େ ଅଲୋଡ଼ା ହୋଇପଡ଼ିବେ ବୋଲି ଭାବି ନ ଥିଲେ କେବେ !

ମାତ୍ର ଦିନକେତେଟା ପୂର୍ବରୁ ଦିନରାତି ଭିତରେ ପ୍ରଭେଦ ବାରି ହେଉ ନ ଥିଲା । ସକାଳ ନ'ଟା ନ ବାଜୁଣୁ ଖାଁ ଡ୍ରାଇଭର୍ ଗାଡ଼ି ଲଗେଇ ଦେଉଥିଲା ପୋର୍ଟିକୋରେ । ସେତେବେଳକୁ ଅବଶ୍ୟ ସଦାନନ୍ଦଙ୍କର ନିତ୍ୟକର୍ମ, ଖବରକାଗଜ ପଢ଼ା ଓ ବ୍ରେକ୍‌ଫାଷ୍ଟ ସରି ଯାଇଥାଏ । କେବେ କେମିତି ଗୋଟେ ଯୋଡ଼େ ଗୁରୁତ୍ୱପୂର୍ଣ୍ଣ ନଥି ବସାକୁ ଅଣାଯାଇଥିଲେ, ତାକୁ ତର୍ଜମା କରିବା ଅଥବା ଟୀକାଟିପ୍ପଣୀ ଦେବା ବାକି ରହିଥାଏ ଯାହା । ସଦାନନ୍ଦ ଠିକ୍ ନ'ଟା ପଇଁଚାଳିଶ୍‌ରେ ଅଫିସ୍ ବାହାରିଯାଉଥିଲେ । ଅଫିସ୍ ପହଞ୍ଚିଲାବେଳକୁ କାନ୍ଥ ଘଣ୍ଟାରେ ଦଶଟା ବାଜିଥିବ ହିଁ ବାଜିଥିବ । ସମୟାନୁବର୍ତ୍ତୀ ଅଫିସର୍ ଭାବରେ ତାଙ୍କର ଥିଲା ଭାରି ନାଁ ଡାକ । ଅଫିସ୍‌ରେ ପହଞ୍ଚୁ ପହଞ୍ଚୁ ସେ ନଥିପତ୍ର କାମ ଆରମ୍ଭ କରିଦେଉଥିଲେ । ତା'ପରେ କେଉଁଠି କେଉଁ କାମ ଅଟକିଲା ତା'ର ତାଗିଦା । ତା'ପଛକୁ ମିଟିଂ ପରେ ମିଟିଂ । ମାସକରୁ ଅଧାଦିନ ପୁଣି ଫିଲ୍‌ଡ ଭିଜିଟ୍ । କେଉଁଠି ଏନ୍‌କ୍ୱାରୀ ତ କେଉଁଠି ସମୀକ୍ଷା ବୈଠକ । ଜୀବନ ଭର୍ତ୍ତି ବ୍ୟସ୍ତତା, ବ୍ୟସ୍ତତା ଭର୍ତ୍ତି ଜୀବନ । ତା' ଭିତରେ ନିଜ ଦେହ, ରୋଗ-ବୈରାଗ କଥା କିଛି ମନେ ପଡୁ ନ ଥିଲା ।

କିନ୍ତୁ ଅବସର ପରେ ସମୟ ସରୁ ନ ଥିଲା ସଦାନନ୍ଦଙ୍କ ପାଇଁ । ପ୍ରାତଃଭ୍ରମଣ ଓ ଚା' ସେବନ ପରେ ସେ ଅନ୍ୟୁନ ଅଧଡଜନେ ଖବରକାଗଜର ପୃଷ୍ଠା ଲେଉଟାଉ ଥିଲେ । ରାଜ୍ୟ ରାଜନୀତିଠାରୁ ଖେଳଖବର, ପାଣିପାଗ ଏପରିକି 'ବୈବାହିକୀ' ସ୍ତମ୍ଭକୁ ସେ ଧାଡ଼ିଧାଡ଼ି କରି ପଢୁଥିଲେ ସ୍ଥିର ମନରେ ଫାଇଲ୍ ପଢ଼ିଲା ପରି । ସବୁ ପଢ଼ିସାରିଲା ପରେ ବି ସକାଳ ଖରାରୁ ନରମପଣ କଟୁ ନ ଥିଲା । ଆହୁରି ପଡ଼ି ରହୁଥିଲା ଲମ୍ବା ଦିନ କୁହୁକ ସୁଡ଼ଙ୍ଗ ପରି । କେମିତି କଟିବ ଦିନଟା ? ଟିଭି ଦେଖି ? ଆମେରିକାରେ କମ୍ପ୍ୟୁଟର ଇଂଜିନିୟର ଥିବା ପୁଅ ପାଖକୁ ଫୋନ୍‌କରି ? (ଫୋନ୍‌ରେ ମିନିଟିଏ କଥାହେବା ପାଇଁ ତା'ପାଖରେ ସମୟ ଥିବ କି ?) ଅଧ୍ୟାପିକା ଝିଅ ସହ ଆଉ କେତେ ଗପିବେ ଫୋନ୍‌ରେ ? ତା'ର ତ ପୁଣି ଘରସଂସାର ଅଛି ? କ୍ଲାସ ଯିବା ସାଙ୍ଗକୁ ରିସର୍ଚ୍ଚ କାମ ଅଛି । ବାକି ସୁନନ୍ଦାଙ୍କ ସହିତ ଆଉ କେତେ ଗପ କରିବେ ? ଚାଳିଶବର୍ଷ କାଳ ତ ତାଙ୍କ ସହ ଗପିଗପି ଆସୁଛନ୍ତି । ଆଉ କେତେ କ'ଣ ବା ଗପିବେ ? କି କଥା ଆଉ ହେବେ ଯେ ? ପୁଅଝିଅଙ୍କ ବଡ଼ିମା । ତାକୁ ଛାଡ଼ିଦେଲେ ସ୍ତ୍ରୀ ସହିତ ଆଉ କି ଗପ ଅବା ସମ୍ଭବ ?

ସମୟ ନ ସରିବାକୁ ତେଣେ ଗୁଡ଼ାଏ ଅସଂଲଗ୍ନ ଚିନ୍ତା ଆଚ୍ଛନ୍ନ କରୁଥିଲା ସଦାନନ୍ଦଙ୍କ ତମାମ ମନକୁ । ଏହି ଯେମିତି ସେଦିନ ଛାତି ଟିକିଏ ବିନ୍ଧିଲା ଯେ ସେ ଏକଦମ ଛାନିଆ ହୋଇପଡ଼ିଲେ । କାର୍ଡ଼ିଆକ୍ ପ୍ରବ୍ଲେମ୍ କିଛି ବାହାରି ପଡ଼ିଲାକି ଆଉ ?

ତାଙ୍କ ମନଟା ଗୋଳେଇଘାଣ୍ଟି ହେଲା । ସୁନନ୍ଦାଙ୍କୁ କହିଲେ, ଚାଲ ଯିବା ଟିକେ କେଉଁ ହାର୍ଟ ସ୍ପେଶାଲିଷ୍ଟ ପାଖକୁ । ଇ.ସି.ଜି.ଟା କରାଇଦେବା । ଡାକ୍ତର ପାଖକୁ ଯିବେ କେମିତି (?), ସେଇଟା ଥିଲା ସଦାନନ୍ଦଙ୍କର ପ୍ରଥମ ଚିନ୍ତା । ସରକାରୀ ଗାଡ଼ି ଆଉ ନ ଥିଲା ଗ୍ୟାରେଜ୍‌ରେ । ଆସୁ ନ ଥିଲା ବି ଖାଁ ଡ୍ରାଇଭର । ନିଜ ଗାଡ଼ି ନିଜେ ଚଳାଇ ଯିବାକୁ ଶଙ୍କିତ ହେଲେ ସଦାନନ୍ଦ । ମନଭିତରେ ନାନାଦି ଆଶଙ୍କା, ଅନ୍ୟମନସ୍କତା । ତା' ଭିତରେ ଭୁବନେଶ୍ୱରର ଗହଳି ଭିତରେ ଡ୍ରାଇଭିଂ ? ଇମ୍ପସିବ୍ଲ । ତା'ଛଡ଼ା ଡ୍ରାଇଭିଂ କରିବାର ଅଭ୍ୟାସ ତାଙ୍କର ଛାଡ଼ିଗଲାଣି ଅନେକ ଦିନ ତଳୁ । ସୁନନ୍ଦା ଟ୍ରାଭେଲ୍‌ସ ଗାଡ଼ି ମଗେଇଲେ । ଦୁହେଁ ଗଲେ ଡାକ୍ତର ରଥଙ୍କ ପାଖକୁ । ସବୁ ପ୍ରକାର ଟେଷ୍ଟ କରାଗଲା । ରିପୋର୍ଟ ବାହାରିଲା ନେଗେଟିଭ୍ । ସଦାନନ୍ଦ ଆଶ୍ୱସ୍ତ ହେଲେ । ଛାତି ତ ଛାତି ପେଟ ଟିକେ ମୋଡ଼ିଦେଲେ କି ମୁଣ୍ଡ ବିନ୍ଧିଲେ ଆଜିକାଲି ଛନକା ପଶୁଥିଲା ତାଙ୍କ ମନରେ । ପେଟରେ କ'ଣ କିଛି ହୋଇଗଲା କି ? ବଢ଼ିଗଲା କି ରକ୍ତଚାପ ? ସୁନନ୍ଦା ଏସବୁ ଶୁଣିଶୁଣି ବଡ଼ ବିରକ୍ତ ହେଉଥିଲେ । ବେଳେବେଳେ କହି ପକାଉଥିଲେ, ''କିଛି କାମ ନାହିଁ ତ ଗୀତ ଶୁଣ, ସିନେମା ଦେଖ, ବହିପଢ଼, ନ ହେଲେ ଚୁପ୍‌ଚାପ୍ ବସ । ଖୋଳିତ ଡ଼ି ନିଜ ଦେହରୁ ରୋଗ ବାହାର କରିବ ନା କ'ଣ ?''

କେବଳ ଖାଁ ଡ୍ରାଇଭର୍ ଆସିବା ବନ୍ଦ କରିଦେଇଥିଲା ତା' ନୁହେଁ, ଚାରିଜଣ ଚପରାସୀରୁ ଯେଉଁ ଜଣକ ଆସୁଥିଲା କ୍ୱାର୍ଟର୍ସକୁ ସେ ବି ବଡ଼ ଅମଙ୍ଗ ହେଉଥିଲା କାମ କରିବାପାଇଁ । କଦାପି ତ ନିୟମିତ ଆସୁ ନ ଥିଲା । ଯେତେବେଳେ ବି ଆସୁଥିଲା, ତା'ର ଆଚରଣରୁ ଜଣାପଡୁଥିଲା, ସେ ଯେମିତି ଦୟା ଦେଖେଇ କାମ କରୁଛି । ସମଗ୍ର ଚାକିରିକାଳ ବିଶ୍ୱସ୍ତ ପିଅନ, ଅର୍ଦଳି, ପି.ଏ., ଷ୍ଟେନୋ, ଚାଟୁକାର କର୍ମଚାରୀ ଓ ଆଜ୍ଞାବହ ଅଧସ୍ତନମାନଙ୍କ ଗହଣରେ କଟିଥିଲା ସଦାନନ୍ଦଙ୍କର । ତାଙ୍କ ପାଟିରୁ ଖସି ପଡୁଥିବା ଶବ୍ଦ ଆଦେଶ ପାଲଟି ଯାଉଥିଲା । ମନପବନ ଘୋଡ଼ାରେ ରୂପାନ୍ତରିତ ହୋଇଯାଉଥିଲା ତାଙ୍କ ଇଙ୍ଗିତ । ତାଙ୍କ ଦୂରଭାଷ ପୁଣି କାହାପାଇଁ ଜୀବିକା ଯୋଗାଉଥିଲା ତ କାହା ସଂସାର ଉଜୁଡ଼ାଇ ଦେଉଥିଲା । ଏବେ ଗୋଟେ ସାମାନ୍ୟ ଚପରାସୀର ଅନାସ୍ଥା ଭାବକୁ ସେ ସହ୍ୟ କରିପାରନ୍ତେ କି ?

ସଦାନନ୍ଦ କ'ଣ ନା କ'ଣ କହିବେ ବୋଲି ହୋଇ କହିପାରୁ ନ ଥିଲେ କିଛି । ଯାହା ବା କହନ୍ତେ ସବୁଥିରେ ବାଟ ଓଗାଳିବେ ସୁନନ୍ଦା । ସଦାନନ୍ଦଙ୍କ ମନକଥା ସୁନନ୍ଦାଙ୍କ ଛଡ଼ା ଆଉ କିଏ ଅଧିକ ବୁଝିପାରନ୍ତା କି ? ଅନୁମାନ କରି ସୁନନ୍ଦା ବେଶ୍ ବୁଝିପାରୁଥିଲେ ଯେ ସଦାନନ୍ଦଙ୍କ ମନଆକାଶକୁ ଘୋଟିସାରିଲାଣି ଅଦିନିଆ ବଉଦ । ସଦାନନ୍ଦ ଥରେ ବର୍ଷିବେ ଯଦି ଗିରିଗୋବର୍ଦ୍ଧନ ବି ଢାଙ୍କି ପାରିବନି ତାଙ୍କ କୋପ । ସୁନନ୍ଦା ତେଣୁ ଆକଟ କରୁଥିଲେ ଆଗତୁରା– ''ବିଚରା ଚପରାସୀର ମୁଣ୍ଡ କେତେ ? ତାକୁ ଏଣୁତେଣୁ କହିଲେ ସେ ତିଳକୁ ତାଳକରି ଗପିବ ଏଠି ସେଠି । ମାନସମ୍ମାନ

କାହାର ଯିବ ? ରିଟାୟାର୍ଡ଼ମେଣ୍ଟ ପରେ ଜଗିରଖି ଚଳିବା କଥା ନା । ହାକିମାତିର ତ ପୁଣି ଗୋଟେ ସୀମା ଅଛି ?'' ସୁନନ୍ଦାଙ୍କ କଥାରେ ଯେମିତି ଥାଏ କିମିଆଁ ! ସଦାନନ୍ଦଙ୍କ ମନର ମେଘ ଉଡ଼ିଯାଏ କେଉଁଆଡ଼େ ।

ସକାଳୁ ରାତି ପର୍ଯ୍ୟନ୍ତ କରିବେ କ'ଣ ସଦାନନ୍ଦ ? ଏ ସହରଟା ତ ବଡ଼ ଦାରୁଣ, ତା'ଛାତିରେ ଛାତିଏ ପଥର । ସେଥିପାଇଁ ବୋଧେ ଏଠି କେହି କାହାକୁ ଚିହ୍ନନ୍ତି ନାହିଁ, ଚିହ୍ନିଲେ ବି ନ ଚିହ୍ନିଲା ପରି ବାଟଭାଙ୍ଗି ଚାଲିଯା'ନ୍ତି । ରିଟାୟାର୍ଡ଼ ଲୋକଙ୍କ ସାଙ୍ଗରେ ଗପିବାକୁ କାହାର ବା ସମୟ ଅଛି ? କାମ ନ ଥିଲେ ତ ଏଠି କେହି କାହା ଦୁଆର ମାଡ଼ନ୍ତି ନାହିଁ ? କ୍ଷମତା ନ ଥିଲେ ଏଠି କିଏ କ'ଣ କାହା ମୁହଁକୁ ଚାହେଁ ? କେଡ଼େ କେଡ଼େ ହସ୍ତୀ ଏଠି ପ୍ରାତଃଭ୍ରମଣବେଳେ ଜାକିଜୁକି ହୋଇ ଚାଲୁଥା'ନ୍ତି । ସେମାନେ ପ୍ରାୟ ସମସ୍ତେ ରିଟାୟାର୍ଡ଼ କରିଥିବା ବଡ଼ ହାକିମ ନ ହେଲେ ପାୱାରରେ ନ ଥିବା ପାର୍ଟିର ନେତା । ବାକି ଅନ୍ୟମାନଙ୍କ ଚାରିପାଖରେ ଖାଲି ଲୋକ ଭଣଭଣ । ସଦାନନ୍ଦଙ୍କୁ କିଏ ବା କାହିଁକି ପଚାରିବ ଆଉ ? ସେ କୋଉ ଗଡ଼ଜାତ ଗାଁର ଦଳେଇ ନା ଦଳବେହେରା ?

କିଛିଦିନପାଇଁ ଗାଁକୁ ଚାଲିଗଲେ କେମିତି ହୁଅନ୍ତା ? ନିଜକୁ ପଚାରନ୍ତି ସଦାନନ୍ଦ । ଗାଁ କଥା ଭାବିଲାକ୍ଷଣି ତାଙ୍କର ମନେପଡ଼େ ପିଲାଦିନ । ଖଗା, ଚଇନ ଓ ଚକରା ସାଙ୍ଗରେ ନଈପହଁରା ଭୁଲିହବ ନା ଭୁଲିହବ ବୈଶାଖମାସର ଦ୍ୱିପ୍ରହର ସାରା ଡାଳମାଙ୍କୁଡ଼ି ଖେଳର ମଜା । କିନ୍ତୁ ପାଠ ଅଧାରୁ ଖସିଖାସି ସାଙ୍ଗମାନେ କୁଆଡ଼େ ଗଲେ ଯେ ଗଲେ ସେମାନଙ୍କର ସବିଶେଷ ଖବର ରଖି ନାହାନ୍ତି ସଦାନନ୍ଦ । ସେମାନେ ବି ହାକିମ ସାଙ୍ଗର ପାଖ ପଶିବାପାଇଁ ବୋଧେ ଭରସି ନାହାନ୍ତି କେବେ ? କିଏ ଜାଣେ ସେମାନେ କେମିତି ଅଛନ୍ତି ଏବେ ଓ କ'ଣ କରୁଛନ୍ତି ତାଙ୍କ ପିଲାମାନେ ? ଏବେ କେଉଁଠି ଅଛି କେଜାଣି ଚଗଲର ସାନଭଉଣୀ ଚମ୍ପାଗୋରୀ ଚପଳା ? କେତେ ଯେ ରଜ ବିତିଥିଲା ତା' ସାଙ୍ଗରେ ବଡ଼ ମଉଜରେ, ଭାରି ନିରୋଳାରେ ! ସଦାନନ୍ଦ କଲେଜରେ ପଢୁଥିଲାବେଳେ ଚପଳା ବାହା ହୋଇଯାଇଥିଲା ତିନିକୋଶ ଦୂର କେଉଁ ତଳମାଳ ଗାଁକୁ । ଚପଳାର ବାହାଘର କଥା ଶୁଣି ସଦାନନ୍ଦ କାହିଁକି ଯେ କାନ୍ଦି ପକାଇଥିଲେ, ସେକଥା ଆଜି ପର୍ଯ୍ୟନ୍ତ ସେ ବୁଝିପାରି ନାହାନ୍ତି । ଏଇମିତି ସବୁ ଅସୁମାରି ଆତ୍ମୀୟ ସ୍ମୃତିର ଫସିଲ୍ ଗାଁକୁ କେବେ ଭୁଲି ହବ କି ?

ସେହି ଗାଁକୁ ଏବେ ଯାଇହବ ନା ରହିହବ ସେଠି ? ଚଉଠେ ଶତାବ୍ଦୀରୁ ଅଧିକ ସମୟ ଧରି ଧୂଆଁ, ଧୂଳି ଓ ଧୂମାଳ ଭିତରେ କାହିଁ କେତେ ବଦଳି ଯାଇଥିବ ଗାଁର ଚେହେରା ! ସାଙ୍ଗ-ସହପାଠୀମାନେ କେବେଠୁ ବୁଢ଼ା ହୋଇସାରିଥିବେ । ନାତିନାତୁଣୀ ଖେଳଉଥିବ ଚପଳା ତା' ଶାଶୂଘର ଗାଁରେ । ଚୌଧୁରୀ ଘର ଅମୁହାଁ ପୋଖରୀ ଯାହା ମଝିରୁ ବାଜିମାରି ନୀଳକଇଁ ତୋଳି ଆଣିଥିଲେ ଥରେ

ସଦାନନ୍ଦ, ଖାସ୍ ଚପଳାପାଇଁ, ହୁଏତ ପୋତି ହୋଇପଡ଼ିଥିବ କେଉଁକାଳରୁ । ବାପା-ଗୋସିବାପା ଅମଳର ତାଙ୍କ ଚାଳଛପର ଘରକୁ ଆଉ କ'ଣ ଚିହ୍ନିହବ ଏବେ ? ନିଜ ଗାଁ ଦାଣ୍ଡରେ ସେ ନିଜେ ବି ଅଚିହ୍ନା ପାଲଟିଯିବେ । ଗାଁ ପିଲାମାନେ ତାଜୁବ ହେବେ କେବେ ଗାଁ ମାଟି ମାଡ଼ି ନ ଥିବା ଗୋଟେ ନୂଆ ଲୋକକୁ ହଠାତ୍ ଦେଖି ମଝିଦାଣ୍ଡରେ । ନିଜ ଘର ଦୋସନ୍ଧିରେ ଶୋଇଥିବା କୁକୁର ବି ରଡ଼ି ଛାଡ଼ିବ ତା' ପରିଚିତ ଇଲାକାରେ ଅପରିଚିତ ଲୋକଟିର ଅନୁପ୍ରବେଶକୁ ବାରଣ କରି ।

ସବୁ ଗାଁ ପରି ସଦାନନ୍ଦଙ୍କ ଗାଁ ମଧ୍ୟ ଭୋଅଟ ବେଳୁ ଫାଟି ଯାଇଥିବ ମାଟିହାଣ୍ଡି ପରି । ନା ଯୋଡ଼ି ହଉଥିବ ନା ଗଢ଼ି ହଉଥିବ । ସେଠି ସଦାନନ୍ଦଙ୍କ ଆକସ୍ମିକ ଆବିର୍ଭାବ ସ୍ଥାନୀୟ ରାଜନୀତିରେ ହୁଏତ ମୃଦୁ ଝଡ଼ଟିଏ ସୃଷ୍ଟି କରିବ । ଚାକିରି ସରିଲା ପରେ ସଦାନନ୍ଦ ସାମନ୍ତ ରାଜନୀତି କରିବାପାଇଁ ଗାଁକୁ ଆସିଛି ବୋଲି ହୁରି ପଡ଼ିବା ବି ବିଚିତ୍ର ନୁହେଁ । ନା– ବାବା– ନା, ଗାଁକୁ ଯିବା କଥା ମନରୁ ପୋଛିଦେଲେ ସଦାନନ୍ଦ ।

ସରକାରୀ ହେଉ କି ବେସରକାରୀ ହେଉ, କେଉଁ ଗୋଟେ ସଂସ୍ଥାରେ ଲାଗିଗଲେ କେମିତି ହୁଅନ୍ତା ? କୌଣସି ଜଣେ ପାୱାରଫୁଲ ମନ୍ତ୍ରୀଙ୍କ ମାର୍ଫତରେ ଏମିତି କାମଟେ ହାସଲ କରିବା କେଉଁ ବା ବଡ଼ କଥା ? ଏମିତିରେ ଅନେକ ରାଜନୈତିକ ଲୋକଙ୍କ ସହିତ ସଦାନନ୍ଦଙ୍କର ସମ୍ପର୍କ ବେଶ୍ ଘନିଷ୍ଠ । ସେ ବି.ଡି.ଓ. ଥିଲାବେଳେ ଯେଉଁ ଭଦ୍ରବ୍ୟକ୍ତି ପଞ୍ଚାୟତ ସମିତିର ଅଧ୍ୟକ୍ଷ ଥିଲେ, ସେ ଏବେ ଖୋଦ୍ ଉପମୁଖ୍ୟମନ୍ତ୍ରୀ । ଚାକିରିକାଳ ଭିତରେ କେତେ ଯେ ଏମ୍.ଏଲ୍.ଏ. ଓ ମନ୍ତ୍ରୀଙ୍କ ସହ ତାଙ୍କର ସୁସମ୍ପର୍କ ଗଢ଼ି ଉଠିଥିଲା ତା'ର ହିସାବ ନାହିଁ । କଲମକୁ ଟିକେ ମୋଡ଼ିଦେଇ କେତେ ନ ହବା କାମ ସେ କରିଛନ୍ତି ମନ୍ତ୍ରୀ ଏମ୍.ଏଲ୍.ଏ.ଙ୍କ କଥା କାଟି ନ ପାରି । ଯାହା ପାଖରେ ତ ଠିଆ ହୋଇଗଲେ କାମ ହେଉ ନ ହେଉ ରେସପନ୍ସ ମିଳିବ ଅବିଳମ୍ବେ । ସମ୍ପର୍କକୁ ସମ୍ବଳ କରି ପଦପଦବୀଟେ ପାଇଁ ମୁହଁ ଖୋଲିଲେ କ୍ଷତି କ'ଣ ?

କିନ୍ତୁ ନିଜପାଇଁ କାହା ଆଗରେ ଯୋଡ଼ହସ୍ତ ହୋଇ ଠିଆହବାକୁ ପସନ୍ଦ କରୁ ନ ଥିଲେ ସଦାନନ୍ଦ । ଡେପୁଟୀ କଲେକ୍ଟରରୁ କମିଶନର୍– ସୁଦୀର୍ଘ ପଥ ସେ ଅତିକ୍ରମ କରିଛନ୍ତି ଚାକିରି ଜୀବନରେ । କିନ୍ତୁ କାହାର ସେ ଚାଟୁକାର ହୋଇ ନାହାନ୍ତି କି ଏଠୁ ସେଠିକି ବଦଳିପାଇଁ ଅଥବା ଭଲ ପୋଷ୍ଟିଂଟାଏ ପାଇଁ କାହାର ଅନୁଗ୍ରହ ଭିକ୍ଷା କରି ନାହାନ୍ତି । ଚାକିରି ସରିଲା ପରେ ପୁଣି ଚାକିରିଟେ ପାଇଁ କାହା ଆଗରେ ଗୁହାରି କରିବା କ'ଣ ସହଜ କଥା ? ମଣିଷ ନିଜ ସ୍ୱାଭିମାନ ସଚେତନ ହୋଇଗଲେ ସବୁ ବାଟ ଯେମିତି ତା' ପାଇଁ ବନ୍ଦ ହୋଇଯାଏ ?

ଅବଶ୍ୟ ଅବସର ନେବାପରେ ଅନେକ ବଡ଼ ହାକିମଙ୍କ ବଡ଼ପଣ କୁଆଡ଼େ ଉଭାନ୍ ହୋଇଯାଇଥିବା ପ୍ରତ୍ୟକ୍ଷ କରିଛନ୍ତି ସଦାନନ୍ଦ । ଏଇ ଯେମିତି ଜଣେ କଳା ସାହେବ ମନ୍ତ୍ରୀ ଓ ଏମ୍.ଏଲ୍.ଏ.ମାନଙ୍କୁ ଖୁବ୍ ହେଟ୍‌ନଜର କରୁଥିଲେ, ଅବମାନନା କରୁଥିଲେ

ପ୍ରକାଶ୍ୟରେ । ଫଳରେ ତାଙ୍କ କଡ଼ା ମିଜାସ୍ କଥା ଚର୍ଚ୍ଚା ହେଉଥିଲା ବାଟଘାଟରେ । ନେତାଙ୍କୁ ବେଖାତିର କରୁଥିବାରୁ ତାଙ୍କୁ ସାବାସି ମିଳୁଥିଲା ଲୋକମାନଙ୍କଠାରୁ । ସେହି ସାହେବ ଜଣଙ୍କ ରିଟାୟାର୍ଡ଼ମେଣ୍ଟ ପରେ ଜଣେ ପ୍ରଭାବଶାଳୀ ରାଷ୍ଟ୍ରମନ୍ତ୍ରୀଙ୍କ ନିବାସକୁ ଦୌଡ଼ିଦୌଡ଼ି ତଜନେ ଅଧେ ଚପଲ ଛିଣ୍ଡେଇ ଥିଲେ । ତା'ପରେ ଯାଇ ତାଙ୍କୁ ଗୋଟେ ତିନିବର୍ଷିଆ ଗାଡ଼ିଯୁକ୍ତ ପଦବୀ ମିଳିଥିଲା । ରାଜନୈତିକ ଲୋକଙ୍କ ଛାଇ ପଡ଼ିଲେ ଅନ୍ୟଜଣେ ହାକିମଙ୍କ ନାହି ଡେଉଁଥିଲା । ସଦାନନ୍ଦ ଏକଦା ଥିଲେ ତାଙ୍କର ଆଜ୍ଞାବହ ଅଧସ୍ତନ । କୌଣସି ଏକ ଅପକର୍ମକୁ ଧୋଇବାପାଇଁ ତାଙ୍କୁ ଦୁଇଜଣ ଯୁବନେତାଙ୍କୁ ପ୍ରାୟ ବର୍ଷେକାଳ ଲାଳନପାଳନ କରିବାକୁ ପଡ଼ିଥିଲା । ସଦାନନ୍ଦ ନିଜ ମନକୁ ବୋଧ କଲେ । ସୁନନ୍ଦାଙ୍କ ସଦୟ ସମ୍ମତି ପ୍ରାପ୍ତହେଲେ । ତା' ପରେ ଯାଇ ଉପମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରିବାପାଇଁ ତାଙ୍କ ଖାସ୍ ସଚିବଙ୍କ ପାଖକୁ ଫୋନ୍ କଲେ ଓ ଫେରନ୍ତା ଫୋନ୍ ଅପେକ୍ଷାରେ ରହିଲେ ।

ଉପମୁଖ୍ୟମନ୍ତ୍ରୀଙ୍କ ଖାସ୍ ସଚିବଙ୍କଠାରୁ ଫୋନ୍ ଆସିବା ଡେରି ହେଉଥିଲା । ପ୍ରଥମ ଦିନେ ଦୁଇଦିନ ଉତ୍କଣ୍ଠା ସହିତ ଫୋନ୍‌କୁ ଅପେକ୍ଷା କରୁଥିବା ସଦାନନ୍ଦ ସେ ବିଷୟ ପୂରାପୂରି ଭୁଲିଯାଇଥିଲେ ଯେମିତି ! ପ୍ରାତଃଭ୍ରମଣରୁ ଫେରିବା ଆଜିକାଲି ତାଙ୍କର ଖୁବ୍ ବିଳମ୍ବ ହେଉଥିଲା । ଚଲାଚଲି ସାରି ପାର୍କରୁ ସମସ୍ତେ ଗଲାପରେ ବି ସଦାନନ୍ଦ ଏକା ଏକା ସିମେଣ୍ଟ ଚଉକି ଉପରେ ବସି ରହୁଥିଲେ । ଗଛଛାଇ ଓ ମୃଦୁ ପବନରେ ଝାଳମାରି କିଛି ସମୟ ଗୁଣୁଗୁଣୁ ହେଉଥିଲେ ମନେମନେ । ନିରୋଳା ସମୟକୁ ଏକାନ୍ତରେ ଉପଭୋଗ କରିବା ଯେମିତି ତାଙ୍କର ଅଭ୍ୟାସରେ ପଡ଼ିଯାଇଥିଲା । ତା'ପରେ ପାର୍କ ପଛପଟେ ଥିବା ଗୋଟେ ବରା-ଦୋକାନକୁ ଯାଇ ସେ ନିୟମିତ ବରା ଖାଉଥିଲେ । ଦିନେ କୌଣସି କାରଣବଶତଃ ପାର୍କ ପଛକୁ ଯାଇଥିଲାବେଳେ ଏକ ପରିତ୍ୟକ୍ତ ସ୍ଥାନରେ ବରା-ଦୋକାନଟିକୁ ଆବିଷ୍କାର କରିଥିଲେ ସଦାନନ୍ଦ । ସଦ୍ୟଛଣା ବରାର ଆକର୍ଷଣୀୟ ବାସ୍ନାରେ ସେ ମୋହଗ୍ରସ୍ତ ହୋଇପଡ଼ିଥିଲେ । ବରା ବାସ୍ନା ତାଙ୍କୁ ବେଶ୍ ପୁରୁଣା ଓ ଚିହ୍ନା ଚିହ୍ନା ମନେ ହୋଇଥିଲା । ଏହି ପରିଚିତ ବାସ୍ନାର ସୂତ୍ର ଖୋଜିବାପାଇଁ ସେ ଏକପ୍ରକାର ବ୍ୟାକୁଳ ହୋଇପଡ଼ିଲେ । ବ୍ୟାକୁଳତା ଭିତରୁ ହଠାତ୍ ଫୁଟି ବାହାରିଲା ଏକ ମଧୁର ସ୍ମୃତିର ଶତଦଳ । ତାଙ୍କ ହାଇସ୍କୁଲ ପଢ଼ିଆର ଶେଷ ମୁଣ୍ଡରେ ଥିବା ଭୋଳାସାହୁ ଦୋକାନର ବରା ଓ ଘୁଗୁନିର ନିଆରା ବାସ୍ନାକୁ ଅନେକ ବର୍ଷ ପରେ ସେ ପୁଣିଥରେ ଆଘ୍ରାଣ କରୁଥିଲେ ଅବା !

ଉଠା ବରା-ଦୋକାନ ଭିତରକୁ ପଶିଗଲେ ସଦାନନ୍ଦ, ଅଷ୍ଟମଶ୍ରେଣୀର ଛାତ୍ରଟେ ପରି । ଟଳମଳ ହେଉଥିବା ଲମ୍ବା କାଠ ବେଞ୍ଚରେ ବସି ଶାଳପତ୍ର ଠୋଲାରେ ବରା ଘୁଗୁନି ଖାଇଲେ ନିର୍ବିକାର ଭାବରେ । ଖାଦ୍ୟପେୟ ବିଷୟରେ ଡାକ୍ତରଙ୍କ ହଜାରେ ମନାକଥା ତାଙ୍କର ଆଉ ମନେ ପଡ଼ିଲା ନାହିଁ । ସେହିଦିନଠାରୁ ପ୍ରାତଃଭ୍ରମଣ

ବାହାନାରେ ବରାସେବନ ଏକ ରୁଟିନ୍ ପାଲଟିଗଲା ସଦାନନ୍ଦଙ୍କ ପାଇଁ । ସମ୍ଭ୍ରାନ୍ତ ରେସ୍ତୋରାଁର ସୌଖୀନ ଆହାରଠାରୁ ଉଠା ଦୋକାନରେ ବରା ଖାଇବାର ସ୍ୱାଦ ଥିଲା ଭିନ୍ନ । ସଦାନନ୍ଦ କେବଳ ବରା ଖାଇବା ଉପଭୋଗ କରୁ ନ ଥିଲେ, ସେଠାକାର ଗପୁଡ଼ି ଗରାଖମାନଙ୍କର ମଉଜିଆ ଗପସପକୁ ମଧ୍ୟ ବେଶ୍ ହଜମ କରୁଥିଲେ ଓ ଖୁବ୍ ଡେରିରେ ଫେରୁଥିଲେ ଘରକୁ । ସଞ୍ଜସଞ୍ଜିଆ ପୁଣି ବରା ଦୋକାନରେ ହାଜର ହୋଇଯାଉଥିଲେ ସଦାନନ୍ଦ । ଦଦରା ବେଞ୍ଚରେ ବସି ଚା' ପିଇବା ଆଳରେ ଲମ୍ବୁଥିଲା ଗପର ଲହର । କେତେଜଣ ନିତିଦିନିଆ ଗରାଖଙ୍କ ସାଙ୍ଗରେ ବେଶ୍ ଦୋସ୍ତି ଜମି ଯାଇଥିଲା ତାଙ୍କର । ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ଅବସରପ୍ରାପ୍ତ କର୍ମଚାରୀ; ବେଶ୍ ସମ୍ବେଦନଶୀଳ ପରସ୍ପର ପ୍ରତି ।

ଏଇ କେତେଦିନ ହେବ ସବୁଦିନ ଶୀତଦିନ ପାଲଟି ଯାଇଥିଲା ସଦାନନ୍ଦଙ୍କ ପାଇଁ । ତାଙ୍କ ମନ ଟିକି ଚଢ଼େଇଟେ ପରି ଉଡ଼ି ବୁଲୁଥିଲା ଯେମିତି ଏ ଡାଳରୁ ସେ ଡାଳ । ନା ବାଧା ନା ବନ୍ଧନ । ନା ରୁଟିନ୍ ନା ରେସ୍‌ପନ୍‌ସିବିଲିଟି । ଡେପୁଟୀରେ ଯୋଗଦେବା ଦିନଠାରୁ ଯେମିତିଗୋଟେ ଓଜନିଆ ଭାର ଥୁଆ ହୋଇଥିଲା ତାଙ୍କ ମୁଣ୍ଡ ଉପରେ । ଅଫିସ୍‌ରେ, ଘରେ ଏପରିକି ଦୂରଦୂରାନ୍ତକୁ ଆଉଟିଂରେ ଗଲେ ମଧ୍ୟ ସେ ମୁକୁଳିପାରୁ ନ ଥିଲେ ଅଦୃଶ୍ୟ ଶିକୁଳିରୁ । ସବୁବେଳେ ଲୋଚାକୋଚା ଭାବ । ଖୋଲାମେଲା ହୋଇ ନ ପାରିବାର ଅସହାୟତା । ଏବେ କିନ୍ତୁ ଆଦ୍ୟ ଯୌବନର ଫୂର୍ତ୍ତି ଯେମିତି ଚୋରା ଚଇତାଳି ପରି ବେଳେବେଳେ ଛୁଇଁ ଯାଉଥିଲା ତାଙ୍କ ମନ ଗହନକୁ । ବେପରୁଆପଣ ତାଙ୍କୁ ଉଚ୍ଚାଟ କରୁଥିଲା ବାରମ୍ବାର ।

ଦୀର୍ଘଦିନ ଧରି ସରକାରୀ ନଥି ଭିତରେ ଦେଖିଥିବା ଜୀବନଠାରୁ ବାସ୍ତବ ଜୀବନ ଯେ ଆହୁରି ବିପୁଳ ତା' ବେଶ୍ ଅନୁଭବ କରିପାରୁଥିଲେ ସଦାନନ୍ଦ । ଅନୁଭବ ବି କରିପାରୁଥିଲେ ଯେ ରଙ୍ଗିନ୍ କାଚରୁ ସେ ଦେଖି ଆସିଥିବା ପୃଥିବୀ ତୁଳନାରେ ସତସତିକା ପୃଥିବୀ କାହିଁ କେତେ ଗୁଣ ଅଧିକ ବର୍ଣ୍ଣିଳ, ମନୋରମ !

ଏମିତି ଦିନେ ସକାଳେ ବରା ଖାଇବାକୁ ଉଦ୍ୟତ ହେଉଥିଲାବେଳେ ସଦାନନ୍ଦଙ୍କ ମୋବାଇଲ୍ ବାଜିଉଠିଲା ହଠାତ୍ । ମୋବାଇଲ୍‌ର ରିଙ୍ଗଟୋନ୍ ନ ହୋଇ କୌଣସି ଲୋକର ସ୍ୱର ହୋଇଥିଲେ, ବିଚରା ଲୋକଟି ଗାଲରେ ଶକ୍ତ ଚାପୁଡ଼ଟାଏ ବସିଥାନ୍ତା ହିଁ ବସିଥାନ୍ତା । କୁଣ୍ଠିତ ହୋଇ ସଦାନନ୍ଦ ପକେଟ୍‌ରୁ ମୋବାଇଲ୍‌ଟିକୁ ବାହାର କଲେ ଓ ଯେଉଁ ନମ୍ବରଟି ଦେଖିଲେ, ତାହା ତାଙ୍କୁ ଲାଗିଲା ଖୁବ୍ ପରିଚିତ ଯେମିତି ! ମନେ ପକାଇବାକୁ ଚେଷ୍ଟା କଲେ । ଓଃ ଉପମୁଖ୍ୟମନ୍ତ୍ରୀଙ୍କ ଫୋନ୍... ମନେପଡ଼ିଗଲା ସଦାନନ୍ଦଙ୍କର । ସେ କିନ୍ତୁ ଫୋନ୍‌ଟି କାଟିଦେଲେ ତତ୍‌କ୍ଷଣାତ୍ ଓ ଗରମ ବରାକୁ ପାଟିରେ ଶୀତଳେଇ ଢୋକିଲେ ।



# ଏବେ କେମିତି ଅଛି ବୋଉ

ବୋଉକୁ ଆଉ ଭଲ ଦୁଶୁ ନ ଥିଲା ।

ଦୁଇ ଦୁଇ ଥର ତା' ଆଖି ଅପରେସନ୍ କରାଯାଇଥିଲା । ଆଗରୁ ଢେରଦିନ ତଳେ ବୋଉର ଆଖି ଅପରେସନ୍ ହେଲାବେଳେ ବାପା ବଞ୍ଚିଥିଲେ । ଡାକ୍ତର ପରାମର୍ଶ କରି ସମରେନ୍ଦ୍ର ହିଁ ବୋଉର ଅପରେସନ୍ କରାଇଥିଲେ କଟକରେ । ସେତେବେଳେ ସେ ଭବାନୀପାଟଣାରେ ଅଧ୍ୟାପନା କରୁଥିଲେ । ଅପରେସନ୍ ବେଳେ ଯଦିଓ ସେ କଟକ ଆସିଥିଲେ, ସବୁ ବୁଝାଶୁଝା କିନ୍ତୁ କରୁଥିଲେ ବାପା ନିଜେ । ବୋଉର ଆଉଥରେ ଅପରେସନ୍ ସମରେନ୍ଦ୍ର ହିଁ କରାଇଥିଲେ ସେହି କଟକରେ, ଗୋଟେ ପ୍ରାଇଭେଟ୍ ନର୍ସିଂହୋମ୍‌ରେ । ତା'ର କିଛିଦିନ ପୂର୍ବରୁ ସେ ରେଭେନ୍ସା କଲେଜକୁ ବଦଳି ହୋଇ ଆସିଥିଲେ । ସୌଭାଗ୍ୟକୁ ଆଖି ଡାକ୍ତରଙ୍କ ପୁଅଟି ଥିଲା ତାଙ୍କ ଅନର୍ସ ଛାତ୍ର । ତାଙ୍କୁ କିଛି ତକଲିଫ୍ ହୋଇ ନ ଥିଲା ତେଣୁ । ପରେ ପରେ ଆହୁରି କେତେଥର ବି ବୋଉର ଆଖି ପରୀକ୍ଷା କରାଯାଇଥିଲା । ଡାକ୍ତରଙ୍କ କହିବା ଅନୁସାରେ ବୋଉ ଆଖିର ଆଉ ଜ୍ୟୋତି ନାହିଁ । ଯେତିକି ଦେଖାଯାଉଛି, ଯଥେଷ୍ଟ ।

ଭଲ ଦୁଶୁ ନ ଥିବା ଥିଲା ବୋଉର ସବୁଠୁଁ ବଡ଼ ଦୁଃଖ । ତା'ର ସେମିତି ଅନ୍ୟାନ୍ୟ କିଛି ବେମାର ଫେମାର ନ ଥିଲା । ଏ ବୟସରେ ବି ତା'ର ରକ୍ତଚାପ ନର୍ମାଲ ରହୁଥିଲା ଓ ଲିଭର୍ ଠିକ୍‌ଠାକ୍ କାମ କରୁଥିଲା । ବେଳେବେଳେ ଅବଶ୍ୟ ତା' ଆଣ୍ଠୁଗଣ୍ଠି ବିନ୍ଧୁଥିଲା । ସେ କିଛି ନୁହେଁ, ସେଥିକୁ ତା'ର ଖାତିର ନ ଥିଲା । କିନ୍ତୁ ତା' ଆଖିରୁ ପ୍ରାୟ ସବୁବେଳେ ପାଣି ଗଡୁଥିଲା ଓ ଅଧିକାଂଶ ସମୟରେ ଆଖିଯୋଡ଼ିକ ଫୁଲି ଲାଲ୍ ପଡ଼ିଯାଉଥିଲା ଗେଣ୍ଡୁଫୁଲ ପରି । ବୋଉ, ପାଖରୁ କିଛି କିଛି ଦେଖିପାରୁଥିଲା, କିନ୍ତୁ ଦୂରଦୃଶ୍ୟ ସବୁ ଝାପ୍ସା, ଝିଲିମିଲି ଦୁଶୁଥିଲା ତାକୁ । ବୋଉ ତ କହୁଥିଲା, ତା' ଚାରିପାଖରେ ଯେମିତି ଅଣ୍ଡିରା କୁହୁଡ଼ି ଘେରିରହିଛି, କି ରାତି, କି ଦିନ ।

ସେହି ଘନକୁହୁଡ଼ି ଭିତରେ ବୋଉ ଏକା ଏକା ରହୁଛି କେମିତି ? ସମରେନ୍ଦ୍ରଙ୍କୁ ଏହି ପ୍ରଶ୍ନ ବିଚଳିତ କରୁଥିଲା ଅନେକ ସମୟରେ । ଗାଁରେ ପୁଣି ଯେଉଁ ଘର, ଆଡ଼ରୁ ଯେତେ, ଓସାରରୁ ସେତେ । ଦୁଇ ଖଞ୍ଜା, ଦୁଇଟା ବଡ଼ ଅଗଣା । ପାଞ୍ଚବଖରା ଶୋଇବାଘର, ଦଶହାତିଆ ମେଲା । ଚାରି ପୁଅ ବୋହୂ, ଅତିଥି ଅଭ୍ୟାଗତ, ପର୍ବପର୍ବାଣି ସବୁକୁ ଆଖିଆଗରେ ରଖି ବାପା ସେତେବେଳେ ମାଟି ଉଆସଟେ ତୋଳିଥିଲେ ।

କିନ୍ତୁ ପୁଅବୋହୂମାନେ ଯେ ସେ ଘରେ ରହିବେ ନାହିଁ, ଏକଥା ବାପାଙ୍କ ପରି ପୁରୁଖା ମଣିଷ ଜଣକ ବୁଝିପାରି ନ ଥିଲେ କେମିତି କେଜାଣି ? ଦେଶ ସ୍ୱାଧୀନ ହେବାପରେ ଚାଷୀବନ୍ଦି ଘରସବୁ କାଚକବାଟ ପରି ଝୁଣଝାଣ ଭାଙ୍ଗି ଯାଉଥିବା ବାପା ଅନୁଭବ କରିପାରୁ ନ ଥିଲେ କି ? ଗୁହାଳରେ ପାଞ୍ଚହଳ ବଳଦ, ଖଳାରେ ପଚାଶ ପଚିଶ ଧାନ ବଦାଡ଼ି, ପକେଇଲା ଛେପକୁ ହାତପାତିଥିବା ମୂଲିଆ ପାନିଆ–ଏସବୁ ଗୋଟେ ଘୁଣଲଗା ଖାନ୍ଦାନି ବୋଲି ବୁଝି ବି ସେ ଅବୁଝା ହେଉଥିଲେ ବୋଧେ ! ତେବେ ବାପା ବଞ୍ଚିଥିଲାବେଳୁ ଘରର ଗହଳଚହଳ ଊଣାପଡ଼ିବା ଆରମ୍ଭ ହୋଇଥିଲା । ଏବେ ଘର ପୂରା ଶୂନ୍‌ଶାନ୍; ଏଡ଼େବଡ଼ ଘରକୁ ବୋଉ ଏକା । ସେଥିରେ ପୁଣି ଏଠୁ ସେଠିକି ଦେଖିବା ତା'ପକ୍ଷେ ସମ୍ଭବ ନୁହେଁ ।

ତୁ ଏବେ କେମିତି ଅଛୁ ଲୋ, ବୋଉ ? ଏହି ସଂକ୍ଷିପ୍ତ, ନିଃଶବ୍ଦ ଉଚ୍ଚାରଣ ତାଳଗଛ ପ୍ରମାଣର ଲହଡ଼ି ଠିଆ କରାଇଦେଉଥିଲା ସମରେନ୍ଦ୍ରଙ୍କ ମନଭିତରେ । କେମିତି ରୋଷେଇବାସ କରୁଥିବ ବୋଉ ? ନିଆଁପାଣିରେ ଘାଣ୍ଟି ହେଉଥିବ କେମିତି ? ବୋଲହାକ କରିବାକୁ ତ କେହି ବି ନାହିଁ ତା' ପାଖରେ ! କେମିତି ସେ ଏତେ ଗହୀରିଆ ବାମ୍ଫୀରୁ ପାଣି କାଢୁଥିବ ? ଲିପାପୋଛା, ଘଷାମଜା ସବୁ କେମିତି କରୁଥିବ ଏକା ଏକା ? କିଏ ପୁଣି ହାଟବଜାର କରି ଦଉଥିବ ତା'ପାଇଁ ?

ଏତେବଡ଼ ଘରଟାରେ ବୋଉ କେମିତି ଏକେଲା ରହୁଥିବ ? ପାଞ୍ଚପୁରୁଷର ପୁରୁଣା ଗଡ଼ଜାତିଆ ପ୍ରକାଣ୍ଡ ପଲଙ୍କର କେଉଁ କୋଣରେ ଶୋଉଥିବ ଯେ ବୋଉ, ତାକୁ ଏକଲାପଣ ଡାହାଣୀ ପରି ମାଡ଼ିବସୁ ନ ଥିବ କି ? ଖରାବରଷାରେ କେମିତି ସେ କାଟୁଥିବ ଦିନ ? ମଞ୍ଜଥରା ଶୀତରେ ଉଠି ପାରୁଥିବ କି ବଡ଼ିଭୋରୁ ? ସକାଳୁ ସକାଳୁ ବୋଉ ଆଉ ପଞ୍ଝୁକ ବୁଡ଼ ପକେଇ ପାରୁଥିବ କି ? ମଗୁଶିର ମାସ ପହିଲି ଗୁରୁବାର ଦିନ ଝୋଟି ଲେଖି ପାରୁଥିବ କି, ଗାଁ ଦାଣ୍ଡରେ ମିଣିପିମାନଙ୍କ ପାହୁଣ୍ଡ ପଡ଼ିବା ଆଗରୁ ? ଲମ୍ବା ଖରାବେଳେ କି ଝଡ଼ବତାସ ରାତିରେ ଆଖିକୁ ତା'ର ନିଦ ଆସୁଥିବ କି ସହଜରେ ?

ଆଗରୁ ମେଳାମେଳା ଦାସୀପରବାସୀ ଥିଲେ ବୋଉ ପାଖରେ । ତା' କଥାପଦକ କେହି ତଳେ ପକାଉ ନ ଥିଲେ । କିନ୍ତୁ ରୋଷେଇରେ କାହାକୁ ହାତ ମାରିବାକୁ ସେ ଦେଉ ନ ଥିଲା କେବେ । ବୋଉ ହାତର ରୋଷେଇ ନିଆରା; ସେ ବଡ଼ମାଛ ଝୋଳ ହେଉ କି ହେଉ ଶାଗଖରଡ଼ା । ବୋଉ ଛଡ଼ା ଆଉ ଯିଏ ଯେତେ ପ୍ରକାର ରୋଷେଇ କଲେ ବି ବାପା ଠା'ରେ ବସୁ ନ ଥିଲେ । ବୋଉ ମାମୁଘରକୁ ଗଲେ ବେଶି ଦିନ ରହିପାରୁ ନ ଥିଲା, ଖାଲି ବାପାଙ୍କ ଡରେ, ତାଙ୍କ ଖାଇବା ପିଇବାରେ ଅସୁବିଧା ହେବ ବୋଲି ! ପିଲାଙ୍କ ଲାଗି ନିତି ମରିପଡ଼ି ସେ କରୁଥିଲା ପାଞ୍ଚ ତିଅଣ । ପୁଣି ଯାହାର ଯାହା ଫର୍ମାସି ମୁତାବକ । କାହାପାଇଁ ଗୋଟାଭେଣ୍ଡି ଭଜା ତ କାହାପାଇଁ ଦହିକାଞ୍ଜି ।

କାହାପାଇଁ ପୁଣି ମଞ୍ଜାରାଇତା । କାହାର ଛେଚାପୋଡ଼ା ପସନ୍ଦ ତ କାହାର ଗୁଣ୍ଡା ଯାଉ ନ ଥିବ ବିନା ଆଇଁଷରେ । ସମସ୍ତଙ୍କ ମନଜାଣି ସେ ରୋଷେଇ କରିଥିବ, ସେମିତି ବି ପରଶୁଥିବ ଯେଝା ଯେଝା ରୁଚି ଅନୁସାରେ ।

ଏବେ ନିଜପାଇଁ ଗଣ୍ଡେ ଫୁଟେଇବାକୁ ବୋଉର ମନ ବଳୁଥିବ ତ ? ନା, ଏଣୁତେଣୁ କ'ଣ ଟିକେ ସେ ଖାଇଦେଉଥିବ । ରାତିରେ ପ୍ରାୟ ସେ ଚୁଲିମୁଣ୍ଡ ମାଡୁ ନ ଥିବ । ଭୁଜାଚୁଡ଼ାରେ ଚଳି ଯାଉଥିବ ତା' ରାତିଖିଆ । ବୋଉ ତ ମୂଳରୁ ଭଲ ଖାଇ ଆସିଥିଲା । ଏସବୁ କ'ଣ ତାକୁ ରୁଚୁଥିବ । ବୋଉର ଆଗ ଚେହେରା ଆଉ ନ ଥିଲା । ଏବେ ଦେହ ଆହୁରି ଭାଙ୍ଗିଯିବଣି । କାହିଁ କେତେଦିନରୁ ଆଉ ସେ ଗାଁକୁ ଯାଇ ନାହାନ୍ତି କି ବୋଉକୁ ଦେଖି ନାହାନ୍ତି ।

ସବା ସାନ ଭାଇ କବୀନ୍ଦ୍ରର ବାହାଘର ହୋଇଥିଲା ଗାଁରେ । ବର୍ଷେ ତଳେ । ସେତେବେଳେ ଗାଁ ଘରେ ଗୋଟେ ମଉଛବ ଲାଗିଥିଲା । ସବୁ ଭାଇ ଆସିଥିଲେ, ଭଉଣୀମାନେ ବି । ବାପାଙ୍କ ଅବର୍ତ୍ତମାନରେ ଥିଲା ସେଇଟା ପ୍ରଥମ ବାହାଘର । ନ ଆସିବାକୁ କେହି ତେଣୁ ଭରସି ନ ଥିଲେ । ଅମରେନ୍ଦ୍ର ମୁମ୍ବାଇରୁ ଆସିଥିଲା ସପରିବାର । ସିଏ ସମରେନ୍ଦ୍ରଙ୍କ ତଳେ । ତା' ତଳ ଭାଇ ରବୀନ୍ଦ୍ର, ଆସିଷ୍ଟାଣ୍ଟ ଇଞ୍ଜିନିୟର, ଇନ୍ଦ୍ରାବତୀ ପ୍ରକଳ୍ପ, ଖାତିଗୁଡ଼ାରେ । ଆସିଥିଲା, ଠିକ୍ ବାହାଘର ପୂର୍ବଦିନ । ତା' ତଳେ ଦି'ଜଣ ଭଉଣୀ । ଜଣକ ବର ଡାକ୍ତର, ନର୍ଥଇଷ୍ଟରେ । ଅନ୍ୟଜଣକର ପ୍ରଶାସକ ବର । କୁଡୁମୁଲୁଗୁମ୍ମାରେ ବି.ଡି.ଓ. । କବୀନ୍ଦ୍ରର ବାହାଘର ଭାରି ଜାକଜମକରେ ହେଲା । ବୋଉ ଖୁବ୍ ଖୁସି ଥିଲା । ତା' ପାଦ ତଳେ ଲାଗୁ ନ ଥିଲା ସେହି କେତେଦିନ । ବୋଉ କ'ଣ ଜାଣିଥିଲା ଯେ ଦିନ ଆଠଟା ବି ବିତି ନ ଥିବ, ଘର ପୁଣି ଖାଁ ଖାଁ ଡାକିବ ?

ଅମରେନ୍ଦ୍ରର ମୁମ୍ବାଇ ଷ୍ଟାଇଲ, ଭାରି ହାଇଫାଇ ସେ । ଚତୁର୍ଥୀ ପରଦିନ ସକାଳୁ ସେ ଗାଁ ଛାଡ଼ିଲା । ଫ୍ଲାଇଟ୍ ଟିକେଟ୍ ତା'ର ରିଜର୍ଭ ଥିଲା । ଗଲାବେଳେ ପଚାରିଲା ବି ନାହିଁ ବୋଉ କେମିତି ଅଛି ବୋଲି ! ସେ କେବେ ପଚାରୁଥିଲା ଯେ ଏବେ ପଚାରିଥା'ନ୍ତା ? କମ୍ପାନୀ ଚାକିରିଆମାନେ ଇମିତି ଭିନ୍ନ ଗ୍ରହର ଜୀବ । ସେ ଯେଉଁ ଗାଁକୁ ଆସିଲା, ସେଇଟା ବଡ଼କଥା । ଅବଶ୍ୟ ଗାଁ ରୂପ ଦେଖି ସେ ଉଲ୍ଲସି ଉଠିଥିଲା । ଯା' ଭିତରେ ଗାଁର ଚେହେରା କେତେ ଯେ ବଦଳି ଯାଇଥିଲା । କୁଆରିଆ ଚିତେଇ ନଈ ଉପରେ ଠିଆ ହୋଇଥିଲା ପକ୍କା ପୋଲଟେ । ଗାଡ଼ି ତେଣୁ ଲାଗୁଥିଲା ଦାଣ୍ଡଦୁଆର ସାମ୍ନାରେ । ଅମରେନ୍ଦ୍ରର ଆସିବାଯିବା କାହାପାଇଁ କିଛି ଫରକ ପଡ଼ି ନ ଥିଲା ।

ରବୀନ୍ଦ୍ର ଫେରିବା ଦିନ କିନ୍ତୁ ବୋଉକୁ ଡାକୁଥିଲା ତା' ସାଙ୍ଗରେ ଯିବାପାଇଁ । ବଡ଼ପାଟିଆଟା ତ, ସମସ୍ତେ ଶୁଣିଲା ଭଳି କହୁଥିଲା, ''ବୋଉ, ଏଥର ତୁ ମୋ ସାଙ୍ଗରେ ଚାଲ । ଆମର ଏ ଉପକୂଳ ଅଞ୍ଚଳଠାରୁ ସେ ଅଞ୍ଚଳ ଖୁବ୍ ଭଲ ।

ଚପର ଚପର ପାଣିକାଦୁଅ, ଝଡ଼ିପାଗ, ନଈବଢ଼ି– ଏସବୁ ସେପଟେ ନାହିଁ । ତୁ ଖାଲି ଘରେ ବସିବୁ, କିଛି କାମ ନାହିଁ ଆଉ ।'' ସମରେନ୍ଦ୍ର ଭାବିଲେ, ଯାହାହେଉ ରବିର ଚୈତନ୍ୟ ଉଦୟ ହେଲାଣି । ଅନ୍ତତଃ ସେ ପଛକୁ ଫେରି ଚାହିଁଲାଣି ତ । କିନ୍ତୁ ତା' ସ୍ତ୍ରୀ, କଥାଟାକୁ ନେଇ ଗଲେ ଭିନ୍ନ ବାଟରେ । କହିଲେ, ''ବୋଉଙ୍କୁ ତମେ ମାରିବାପାଇଁ ମସୁଧା କରୁଛ ନା କ'ଣ ? ଭଲ ଡାକ୍ତରଟେ ଅଛି ସେ ଅଞ୍ଚଳରେ ? ଯିଏ ଧରାଧରିରେ ଛେଉଣ୍ଡ ସେମିତିକା ଡାକ୍ତର ଜଣେ ଅଧେ ସେଠି ଥିବେ, ଯିଏ ଜ୍ୱର ହେଲେ ମ୍ୟାଲେରିଆ, ଟାଇଫଏଡ୍, ଇନଫ୍ଳୁଏଞ୍ଜା ସବୁପାଇଁ ଔଷଧ ଲେଖିଦେବେ । ଭଲ ଆଖି ଡାକ୍ତର କେହି ଅଛନ୍ତି ସେ ଆଖପାଖରେ ? ନିଜ ମା'ଙ୍କୁ ତମେ ଜାଣିଜାଣି କଂସେଇଖାନାକୁ ନବ ନା କ'ଣ ?'' ବୋଉ ସବୁ ଶୁଣିଲା, କିଛି କହିଲା ନାହିଁ । ତା'ର କୋଉ ଇଚ୍ଛା ଥିଲା ଯେ ଖାତିଗୁଡ଼ା ଯିବାପାଇଁ ? ବୋଉ ପୁଣି କେତେ ଯେ ଅଭିମାନୀ, ସ୍ନେହ-ଶରଧା ନ ପାଇଲେ, ସେ ଅମରାବତୀକୁ ଆଡ଼େଇଦବ ବାଁ ଗୋଡ଼ରେ ।

ଦି' ଭଉଣୀଯାକ ବୋଉକୁ ସାଙ୍ଗରେ ନେଇଯିବେ ବୋଲି ଭାରି ଆଗ୍ରହ ଦେଖାଉଥିଲେ । ଭିଣୋଇ ଦୁହିଁଙ୍କ ମୌନତା ହୁଏତ ସୂଚେଇ ଦେଉଥିଲା ସେମାନଙ୍କ ସମ୍ମତି । କିନ୍ତୁ ବୋଉ ବା କୋଉ ଏତେବାଟ ଯାଇପାରନ୍ତା । ନର୍ଥଇଷ୍ଟର ଅର୍ଥ ସେ କିଛି ବୁଝୁ ନ ଥିଲା । କଲିକତା ଡେଇଁ ଆହୁରି ଅନେକ ବାଟ ଯାଉଛି ତା' ବଡ଼ଝିଅ ବୋଲି ଜାଣୁଥିଲା ଯାହା । ସାନ ଝିଅ ବି ବହୁଦୂରରେ ରହୁଛି । ଏକଥା ବି ବୋଉକୁ ଅଜଣା ନ ଥିଲା । କିନ୍ତୁ ସେ ଜାଗାଟା ଓଡ଼ିଶା ଭିତରେ ବୋଲି ସେ ଜାଣିଥିଲା । ପୁଅ ବୋହୂମାନେ ଆଦରକରି ନ ଡାକିଲେ ତାଙ୍କ ପାଖକୁ ଯିବାଲାଗି ଅମଙ୍ଗ ହେଉଥିବା ବୋଉ କ'ଣ ଝିଅ ଓଳାରେ ଯାଇ ମୁଣ୍ଡ ଗୁଞ୍ଜିବାକୁ ରାଜିହୁଅନ୍ତା ? ଝିଅମାନଙ୍କ ମୁହଁରେ ସେ ନାହିଁ କରିପାରୁ ନ ଥିଲା ସିନା, ହେଲେ ଝିଅଘରେ ରହିବାକୁ ତା'ର ତିଳେ ବି ଇଚ୍ଛା ନ ଥିଲା । ଝିଅ ଜୋଇଁଙ୍କ ପାଖକୁ ଏମିତି ବୁଲିଯିବା ଭିନ୍ନ କଥା, ହେଲେ ଝିଅଜୋଇଁଙ୍କ ଅନ୍ନ ଖାଇବା ଆଉ ଗୋଟେ କଥା ନୁହେଁ କି ?

ପ୍ରାୟ ସମୟରେ ବୋଉ ରହୁଥିଲା ସମରେନ୍ଦ୍ରଙ୍କ ପାଖରେ, ସେ ପୁରୀରେ ହେଉ କି ଭୁବନେଶ୍ୱରରେ ହେଉ ବା ହେଉ ବାରିପଦା କି ବାଲେଶ୍ୱରରେ । ମଝିରେ ମଝିରେ ସେ ଗାଁକୁ ଯାଉଥିଲା, ବିଶେଷକରି ଧାନ ଅମଳବେଳେ । ଅମାରରେ ଧାନ ଭର୍ତ୍ତିକରି, ଘରଛପର, ଲିପାପୋଛା କାମ ସାରି ଫେରିଆସୁଥିଲା ସମରେନ୍ଦ୍ରଙ୍କ ପାଖକୁ । ତେବେ ବଡ଼ବୋହୂର ଆଦରରେ ଭଙ୍ଗା ପଡ଼ିଆସିଥିଲା ବେଶ୍ କିଛିଦିନ ହବ । ବଡ଼-ପୁଅବୋହୂଙ୍କ ପାଖରେ ରହିବାପାଇଁ ବୋଉ ତେଣୁ ଆଉ ସୁଖ ପାଉ ନ ଥିଲା ।

ସମରେନ୍ଦ୍ରଙ୍କ ସ୍ତ୍ରୀ ଆଗରୁ ଖୁବ୍ ଭଲ ପାଉଥିଲେ ଶାଶୂଙ୍କୁ । ଶାଶୂ ଉପରେ ତାଙ୍କର ଭାରି ନିଘା ଥିଲା । କହୁଥିଲେ, ''ମୋର ବୁଢ଼ୀ ଝିଅ ।'' ଶ୍ୱଶୁରଙ୍କ ସେବାଯତ୍ନ ବି

ସେ କରିଥିଲେ କାହିଁରେ କେତେ । ଦିଅରମାନେ ପିଲା ଥିଲେ, ସେ ବାହାହୋଇ ଆସିଲାବେଳେ । ସେମାନଙ୍କର ଭଲମନ୍ଦ କେତେ କ'ଣ ବୁଝିଥିଲେ । ହେଲେ ବାହାଚୁରା ହେଲାପରେ ଦିଅରମାନେ ଗଲେ ଯାହାବାଟରେ ଯିଏ । ସାରା ସଂସାରର ବୋଝଟା ବଡ଼ଭାଇ ମୁଣ୍ଡରେ ରହିଗଲା, ଯେମତି ସେମିତି । ବଡ଼ଭାଇ ଯେ ବୁଢ଼ା ହୋଇଆସିଲେଣି ସେକଥା କେହି ବୁଝିଲେ ନାହିଁ । ବଡ଼ଭାଇର ବଡ଼ପୁଅ ବେକାର, ଘରେ ବଢ଼ିଲା ଝିଅ, ସାନପୁଅର ଘମାଘୋଟ ପାଠପଢ଼ାର ବେଳ, ବଡ଼ଭାଉଜ ଖଟିଖଟି ନୟାନ୍ତ– କିନ୍ତୁ ଆହା ପଦେ କହିଲେ ନାହିଁ ତ କେହି । ବୋଝ ଉତାରିବା ଦୂରର କଥା, ଭାଇ ପାଖରେ ଠିଆ ହବାପାଇଁ କାହାରି ତର ନ ଥିଲା । ବଡ଼ଭାଉଜ ସହି ସହି ଆଉ କେତେ ସହନ୍ତେ ? ତାଙ୍କ ମଗଜକୁ ପିତ୍ତ ଚଢ଼ିଲା । ସେ କହିଲେ, ''ମା' କଥା ସବୁ ଭାଇମାନେ ବୁଝନ୍ତୁ । ବଡ଼ଭାଇ ସବୁ କରିବ ବୋଲି କ'ଣ କୋଉ ଶାସ୍ତ୍ର ପୁରାଣରେ ଲେଖା ହୋଇଛି ?''

ଏହି କଥାପଦକ କିନ୍ତୁ ଗୋଟେ ପୁରୁଣା ଘରର ମୂଳଦୁଆକୁ ଦୋହଲେଇ ଦବାପାଇଁ ଥିଲା ଯଥେଷ୍ଟ । ଭାଇଭଉଣୀମାନଙ୍କ କାନକୁ ଗଲା ସେକଥା । ସମସ୍ତେ ବଡ଼ଭାଉଜଙ୍କର ଦୋଷ ଦେଲେ । ଭାଇ ନାଁରେ କହିଲେ ଏଣୁତେଣୁ । ''ବଡ଼ଭାଇ ଭାଉଜ ପାଖରେ ଅଛନ୍ତି ବୋଲି ସିନା ବୋଉକୁ ସାଙ୍ଗରେ ରଖିଛନ୍ତି । ଆମେ ପାଖରେ ଥିଲେ କ'ଣ ରଖନ୍ତୁ ନାହିଁ ? ବାପ ମା'ଙ୍କୁ ପାଳିବା ପୋଷିବାରେ ବି କ'ଣ ଭାଗ ? ଘରର ଧାନ ଚାଉଳ, ଶାଗମୁଗ– ଆଉ କାହା ଭାଗରେ ପଡୁଛି କି ?'' ଏମିତି କିଏ କେତେକଥା କହିଲେ ସିନା, ବୋଉକୁ କିନ୍ତୁ କେହି ନିଜ ପାଖକୁ ଡାକିଲେ ନାହିଁ ।

ଗାଁକୁ ଯିବାପାଇଁ ବୋଉ ଖାଲି ଛାଟିପିଟି ହେଲା ଯେମିତି ! ବଡ଼ ପୁଅ-ବୋହୂଙ୍କ ପାଖରେ ଆଉ ବେଶି ଦିନ ରହିବାପାଇଁ ତା' ମନ ବଳିଲା ନାହିଁ । କବୀନ୍ଦ୍ର ସେତେବେଳକୁ ଥିଲା ବ୍ରହ୍ମପୁରରେ; ଆନ୍ଧ୍ର ବ୍ୟାଙ୍କର ଡେପୁଟୀ ମ୍ୟାନେଜର । ବାହାହେଇ ନ ଥିଲା । ଘରକଥା ବୁଝୁଥିଲା ମଝିରେ ମଝିରେ । ସେ ଯାଇ ବୋଉକୁ ଗାଁରେ ଛାଡ଼ିଦେଇ ଆସିଲା । ବଡ଼ଭାଉଜଙ୍କୁ କହିଲା, ''ଚିନ୍ତା କରନି, ବୋଉକୁ ମୁଁ ନେଇ ପାଖରେ ରଖିବି ।'' 'ଖାଲି ବାହାଘରଟା ସରିଯାଉ', ବଡ଼ଭାଉଜ ପାଦପୂରଣ କଲେ ମଉଜିଆ ଢଙ୍ଗରେ ।

ବୋଉ ଗଲାପରେ ଘରଟା ଜମାରୁ ଭଲ ଲାଗିଲା ନାହିଁ ସମରେନ୍ଦ୍ରଙ୍କୁ । ସଞ୍ଜ ସକାଳେ, 'ବୁଢ଼ାରେ' 'ବୁଢ଼ାରେ' ଡାକ ଆଉ ଶୁଭିଲା ନାହିଁ । ଘରବାହାର ମହକିଲା ନାହିଁ ଚୁଆପାନର ବାସ୍ନାରେ । ବଢ଼ି ଭୋ'ରୁ ବୋଉ ବୋଲୁଥିଲା ନବାକ୍ଷରୀ ଭାଗବତରୁ ଅଧ୍ୟାୟେ । ତାହା ଶୁଣିବାକୁ ଆଉ ମିଳନ୍ତା କାହୁଁ ? ଫାଙ୍କା ପଡ଼ିଲା ବ୍ରିଟିଶ୍ ଅମଳରୁ ତିଆରି ହୋଇଥିବା ପୁରୁଣା ଅସନ କାଠଚଉକିଟା, ଯୋଉଠି ବୋଉ ବସୁଥିଲା ସବୁବେଳେ । ସେଇଟା ବାପାଙ୍କର ଥିଲା ପ୍ରିୟ, ଗାଁରୁ ନେଇ ଆସିଥିଲେ ସମରେନ୍ଦ୍ର ଅନେକଦିନ ତଳୁ ।

ସମରେନ୍ଦ୍ରଙ୍କ ବଡ଼ପୁଅ ମନରେ ଏବେ ଚେତା ପଶିଥିଲା । ସେ ବହି ପାଖରେ ବସୁଥିଲା ଯେ ବସୁଥିଲା, ମାନୁ ନ ଥିଲା ରାତିଦିନ । ଭୁଲି ଯାଉଥିଲା ଖିଆପିଆ । ପ୍ରତିଯୋଗିତାମୂଳକ ପରୀକ୍ଷା ସବୁ ଦଉଥିଲା । ଚାକିରି କିନ୍ତୁ ତା'ପାଇଁ ଥିଲା ଅପହଞ୍ଚ । ବୈଷୟିକ ଯୋଗ୍ୟତା ବିନା ଆଜିକାଲି କ'ଣ ଚାକିରି ମିଳନ୍ତା ? ସାନପୁଅ ଭଲ ଛାତ୍ର । ଯୁକ୍ତଦୁଇ ବିଜ୍ଞାନ ପରେ ଖୁବ୍ ମାତିଥିଲା ପଢ଼ାପଢ଼ିରେ । ଯୁଗ୍ମ ପ୍ରବେଶିକା ଦବାପାଇଁ ପ୍ରସ୍ତୁତ ହେଉଥିଲା । ସାନଟା କିଛି ଗୋଟେ ବଜେଇ ଦବ, ସମରେନ୍ଦ୍ରଙ୍କର ସେ ବିଶ୍ୱାସ ଥିଲା । ତାଙ୍କ ସ୍ତ୍ରୀ ଏବେ ବଡ଼ ସନ୍ତୁପ୍ତ ମନେ ହେଉଥିଲେ । ବେଳେବେଳେ କହୁଥିଲେ, ''ଦେଖ, ଘରେ ହୋ-ହାଲ୍ଲା, ହଇଚଇ କିଛି ନାହିଁ । ପିଲାମାନେ କେମିତି ସୁରୁଖୁରୁରେ ପଢୁଛନ୍ତି । ଏମିତି ପରିବେଶଟା ମୂଳରୁ ଥିଲେ, ଆମ ପିଲେ କିଏ କୋଉଠି ବାଟକାଟି ଆଗେଇ ସାରିଥାନ୍ତେ ।'' ସମରେନ୍ଦ୍ର ତାଙ୍କ କଥାରେ ହଁ ମାରୁଥିଲେ ବେଳେବେଳେ, ଉପରଠାଉରିଆ ଭାବରେ ।

ସମରେନ୍ଦ୍ର ଭାବିଥିଲେ କବି ଗଲାବେଳକୁ ନିଶ୍ଚେ ବୋଉକୁ ସାଙ୍ଗରେ ଘେନିଯିବ । ବୋଉ ପ୍ରତି ତା'ର ଦୁର୍ବଳତା ଥିଲା ସବୁଠୁଁ ବେଶି, ବୋଉର କୋଡ଼ପୋଛା ପୁଅ ପ୍ରତି ଥିଲା ବି ଢେର ମମତା । ମାସେ ପାଖାପାଖି ସେ ଗାଁରେ ରହିବ ବୋଲି କହୁଥିଲା । ଅନ୍ୟ ଭାଇ-ଭଉଣୀମାନେ ଗଲାପରେ ଯାଇ ସମରେନ୍ଦ୍ର ଗାଁରୁ ଫେରିଲେ । ବୋଉକୁ କିନ୍ତୁ ଡାକିଲେ ନାହିଁ ସାଙ୍ଗରେ ଆସିବାପାଇଁ । ନୂଆବୋହୂଟାକୁ ଛାଡ଼ି ବୋଉ କ'ଣ ଆସିପାରିଥା'ନ୍ତା କି ? ମାସକ ପରେ କବି ଫେରିଗଲା ତା' ନୂଆ ଚାକିରିଜାଗା, ଆସିକାକୁ । ଶ୍ୱଶୁରଘରେ ଛାଡ଼ିଗଲା ସ୍ତ୍ରୀକୁ । କାହାକୁ ପଚରା ଉଚୁରା ବି କଲା ନାହିଁ । ବୋଉ ସେମିତି ରହିଗଲା ଗାଁରେ ।

ସେହି ଦିନରୁ ବୋଉ ଗାଁରେ, ଏକା ଏକା ।

ଝିଅପାଇଁ ବର ଖୋଜିବାରେ ସମରେନ୍ଦ୍ରଙ୍କର ବିତୁଥିଲା ଅଧିକାଂଶ ସମୟ । ଗ୍ରାମ୍ୟ ମଧ୍ୟସ୍ଥଠାରୁ ସାଙ୍ଗସାଥୀ, ସହକର୍ମୀ ଓ ଇଣ୍ଟରନେଟ୍ ପର୍ଯ୍ୟନ୍ତ କୌଣସି ମାଧ୍ୟମ ସେ ହାତଛଡ଼ା କରୁ ନ ଥିଲେ । ତଥାପି ବାହାଘର ସ୍ଥିର ହୋଇପାରୁ ନ ଥିଲା । ବଡ଼ପୁଅ କ୍ରମେ ଆତ୍ମବିଶ୍ୱାସ ହରେଇଲା ପରି ମନେ ହେଉଥିଲା । ଚାକିରି ମିଳୁ ନ ଥିଲା ତାକୁ । ସାନପୁଅ ଆଇ.ଆଇ.ଟି. ଆଶା ଛାଡ଼ି ଯେକୌଣସି ଇଞ୍ଜିନିୟରିଂ କଲେଜରେ ଫ୍ରି-ସିଟ୍ଟିଏ ପାଇବାପାଇଁ ଅକ୍ଳାନ୍ତ ପରିଶ୍ରମ କରୁଥିଲା । ବେଳେବେଳେ ବିବ୍ରତ ହୋଇପଡୁଥିଲେ ସମରେନ୍ଦ୍ର । ଚାକିରି ସରିଆସିଲା ବେଳକୁ ସଂସାର ଜଞ୍ଜାଳ ବଢ଼ି ବଢ଼ି ଯାଉଥିଲା ଯେମିତି ! ଏସବୁ ଝାମେଲା ଭିତରେ ବି ଝାପ୍‌ସା ହେଉ ନ ଥିଲା ବୋଉର ମୁହଁ । ବରଂ ପିଲାଙ୍କ ମେଳରେ ତା' ଚେହେରା ଫୁଟି ବାହାରୁଥିଲା, ବାରମ୍ବାର ।

ରାମକକାଙ୍କ ଫୋନ୍ ପାଖକୁ ଡକାଇ ବୋଉ ସାଙ୍ଗରେ ବେଳେବେଳେ କଥା ହଉଥିଲେ ସମରେନ୍ଦ୍ର । ତାଙ୍କ କଥା ବୋଉ ଶୁଣିପାରୁଥିଲା କି ନାହିଁ କେଜାଣି ? କିନ୍ତୁ ଏଣୁତେଣୁ କ'ଣ ସବୁ ସେ କହୁଥିଲା ଯେ ତା' କଥା କିଛି ବୁଝି ହଉ ନ ଥିଲା । ବୋଉର ସେହି ଆଲୁରୁବାଲୁରୁ କଥାରୁ ଦି'ପଦ ଶୁଣିବାରେ ଡେରିହେଲେ ଭାରି ଆଉଟୁପାଉଟୁ ହେଉଥିଲା ସମରେନ୍ଦ୍ରଙ୍କ ମନ । (ବୋଉ କାନକୁ ଆଉ ଭଲ ଶୁଭୁ ନାହିଁ କି !) କଥା ସରିଆସିଲା ବେଳକୁ ପଚାରୁଥିଲେ, ''ବୋଉ, ତୋ ଦେହ ଭଲ ଅଛି ତ ?'' ଉତ୍ତର ମିଳୁଥିଲା, ହଁ । ଫୋନ୍ ରଖିବା ପୂର୍ବରୁ ସବୁଥର କହୁଥିଲେ ସେ, ''ୟା' ଭିତରେ ସୁବିଧା ଦେଖି ମୁଁ ଯିବି ।'' କିନ୍ତୁ ଯାଇପାରୁ ନ ଥିଲେ ।

ପହିଲି ରଜ ଦିନ ସକାଳେ ଅକସ୍ମାତ୍ ବାହାରିଲେ ସମରେନ୍ଦ୍ର, ଗାଁକୁ ଯିବାପାଇଁ । ଆଗ ରାତିରେ କହି ନ ଥିଲେ କାହାକୁ କିଛି । ତାଙ୍କର ସବୁକାମ ଏମିତି ତନାଘନିଆ । ସାନପୁଅ କହିଲା, ''ବାପା, ରଜରେ ଗାଁକୁ ହଠାତ୍ ବାହାରୁଛ, କ'ଣ ପିଲାଦିନ କଥା ମନେ ପଡ଼ିଗଲା କି ?'' ''ଆଗରୁ କହିଲନି, ମୁଁ ଯାଇଥା'ନ୍ତି ସାଙ୍ଗରେ'', ବଡ଼ପୁଅ କହୁଥିଲା ପଢ଼ାଘରୁ । ଝିଅ କେବେ ଗାଁରେ ରଜ ଦେଖି ନାହିଁ ବୋଲି ତା' ମା' ସାଙ୍ଗରେ କଥା ହେଉଥିଲା ।

ସମରେନ୍ଦ୍ର ଗାଁରେ ପହଞ୍ଚିଲା ବେଳକୁ ଦ୍ୱି'ପ୍ରହର; କିନ୍ତୁ ଜଣାପଡୁଥିଲା ସକାଳ କି ଆଉ ! ଝିପିଝିପି ବର୍ଷା, ଖରା ନାହିଁ । ଗହୀର ବିଲରେ ଚାଖଣ୍ଡେ ଉଚ୍ଚା ଧାନଗଛ, ଦୋହଲୁଥିଲେ ଶିର୍‌ଶିର୍ ପବନରେ । ଗହଳ ଆମ୍ବତୋଟା ଉହାଡ଼ରୁ ବେଳେବେଳେ ଦିଶି ଯାଉଥିଲା ଅଭିଆଡ଼ୀ ମେଘଙ୍କର ମୁହଁ । ଦାଣ୍ଡ ଦୁଆରରେ ପହଞ୍ଚିଲାବେଳକୁ କବାଟ ଦରମୁକୁଳା । ପାନ ଭାଙ୍ଗୁଥିଲା ବୋଉ, ମେଲାରେ ବସି । ଉଠିପଡ଼ିଲା, କହିଲା, ''ବୁଢ଼ାରେ, ଆ' । ଏତେ ଡେରିକଲୁ କାହିଁକି ? ଯା' ଗୋଡ଼ ଧୋଇପକା ! ଭାତ ଶୁଖି ଭୁଜା ହେଲାଣିରେ ।''

ବୋଉ କଥା ଶୁଣି ସମରେନ୍ଦ୍ର ଆଶ୍ଚର୍ଯ୍ୟ ହେଲେ ନାହିଁ । ବରଂ ତା' କାନିରେ ମୁହଁ ଲୁଚେଇ କାନ୍ଦିବାକୁ ତାଙ୍କର ଭାରି ଇଚ୍ଛା ହେଲା । କିନ୍ତୁ ସେ କେଉଁ ବା ଏଡ଼େ ସହଜରେ ପିଲା ହୋଇପାରୁଥିଲେ !



# କଲିକତାରେ ଶେଷ ବର୍ଷା

ଝିଅଟି ସହ ପ୍ରଥମ ଦେଖାରେ ହିଁ ଅନିକେତ ନିଜ ଭିତରେ ଭୂକମ୍ପ ପରାୟ ଏକ ତୀବ୍ର ଶିହରଣ ଅନୁଭବ କରିବ । ତା'ପରଠୁଁ ପ୍ରାୟ ପ୍ରତିଦିନ ଦେଖା ହେଉଥିବ ତା' ସାଙ୍ଗରେ, ଯଦିଓ ଖୁବ୍ କମ୍ ସମୟପାଇଁ । ପ୍ରତି ଦେଖାରେ କିନ୍ତୁ ତା' ନିରବ ହସର ମଲ୍ଲୀ ମହକ ଅନିକେତକୁ ଆବିଷ୍ଟ କରୁଥିବ । ମୁହୂର୍ତ୍ତ କେତୋଟିପାଇଁ ହେଲେ ବି ଆକାଶର ତାରାମାନେ ଯେମିତି ଫୁଲ ହୋଇ ତା' ଉପରେ ଝରି ପଡୁଥିବେ ।

କଲିକତାର ସଲ୍ଟଲେକ୍‌ରେ ଅନିକେତର ଅଫିସ୍ । ଓମେଗା ଟାୱାରର ସବା ଉପର ମହଲାରେ । ଠିକ୍ ସକାଳ ନ'ଟା ପଇଁଚାଳିଶ୍‌ରେ ସେ ଲିଫ୍ଟରେ ପାଦ ଥାପୁଥିବ । ସବୁଦିନ ବେଶ୍ ଭିଡ଼ ରହୁଥିବ ଲିଫ୍‌ଟରେ । ଅନେକଙ୍କ ସହିତ ଭେଟ ହେଉଥିବ ତା'ର ଓ 'ହେଲୋ-ହାୟ' ଭିତରେ ସେ ପହଞ୍ଚି ଯାଉଥିବ ନିଜ ଅଫିସ୍‌ରେ ।

ଦିନେ କିନ୍ତୁ ଲିଫ୍‌ଟ ପାଖରେ ପହଞ୍ଚିବାପାଇଁ ବିଳମ୍ବ ହେବ ଅନିକେତର । ସେଦିନ ବଡ଼ିଭୋରୁ ବର୍ଷା ଲାଗି ରହିଥିବ ଯେ ଲାଗି ରହିଥିବ, ଜମା ଛାଡୁ ନ ଥିବ । ସେ ବର୍ଷର ତାହା ବୋଧହୁଏ ଥିବ ପ୍ରଥମ ମୌସୁମୀ ବର୍ଷା । ଅନେକ ଦିନ ପରେ ବର୍ଷାର ମଧୁର ଚୁମ୍ବନରେ ଅବା ଶିହରିତ ହେଉଥିବ କଲିକତାର ମାଟି । ବର୍ଷା ଧୁଆ ଗଛବୃଚ୍ଛ ସଦ୍ୟସ୍ନାତା ନାରୀ ପରି ଲାଜେଇ ଯାଉଥିବ ଯେମିତି ! ରାସ୍ତା ଦିଶୁ ନ ଥିବ ମେଘ ଅନ୍ଧାରରେ । ତା' ସାଙ୍ଗକୁ ଟ୍ରାଫିକ୍ ଜାମ୍ । ବାର କିଲୋମିଟର ଦୂରବର୍ତ୍ତୀ ନିଜ ଫ୍ଲାଟ୍‌ରୁ ଡ୍ରାଇଭିଂ କରି ଆସିବାକୁ ତେଣୁ ଘଣ୍ଟାଏରୁ ଊର୍ଦ୍ଧ୍ୱ ସମୟ ଲାଗିଥିବ ଅନିକେତକୁ । ସେହିମାତ୍ର ଛାଡ଼ି ଯାଉଥିବା ଲିଫ୍‌ଟକୁ ସୁଇଚ୍ ଟିପି ସେ ଅଟକାଇବ ଓ ତରବରିଆ ଭାବରେ ପଶିଯିବ ଭିତରକୁ । ସାମ୍ନାରେ ଦେଖିବ ଝିଅଟିଏ । ନିରୋଳାରେ ।

ଝିଅଟି ଉପରେ ଦୃଷ୍ଟି ପଡ଼ିବାକ୍ଷଣି ତରଳୁଥିବା ବରଫ ସ୍ତୂପଟାଏ ପାଲଟିଯିବ ଅନିକେତ । ଏହା ଥିବ ତା' ଜୀବନର ପ୍ରଥମ ଦୁର୍ବାର ଝଡ଼ ।

ଆଗରୁ ହୁଏତ କେତେଥର ଝଡ଼କୁ ସାମ୍ନା କରିଥିବ ଅନିକେତ । କିନ୍ତୁ ନିଜର ଅଭ୍ୟନ୍ତର ଛିନ୍ନଭିନ୍ନ ଓ ବିଧ୍ୱସ୍ତ ହୋଇଯିବାର ଏହି ଅନୁଭବଟି ତା'ପାଇଁ ଥିବ ଅଭିନବ । କୌଣସି ପ୍ରକାରେ ନିଜକୁ ସେ ସମ୍ଭାଳିନେବ । ଷୋଡ଼ଶ ମହଲାରେ ଓହ୍ଲାଇଯିବ ଷୋଡ଼ଶୀଟି । ଆଉ ଦୁଇ ମହଲା ଟପି ନିଜ ଅଫିସ୍‌ରେ ପାଦ ଦେଲା ବେଳକୁ ଅବିଶ୍ରାନ୍ତ ବର୍ଷାରେ ସେ ଅବା ଗୋଟାପଣେ ଭିଜି ସାରିଥିବ ।

ଝିଅଟି ଲିଫ୍‌ଟରେ ତାକୁ ଦେଖି ପ୍ରଥମେ ହସିଦେଇଥିବ । ଅନିକେତ ବି ହସିଥିବ ଅକସ୍ମାତ୍, ନିଜ ଅଜାଣତରେ । ତା'ପରେ ସେ ଆଉ ତା' ମୁହଁକୁ ଚାହିଁପାରି ନ ଥିବ । ତଳକୁ ମୁହଁକଲାକ୍ଷଣି ଦୁଇ ନିଆରା ପାଦର ସଂଯୋଗରେ ଫୁଟିଥିବ ଗୋଟେ ସୁବର୍ଣ୍ଣ ଶତଦଳ । ଯେଉଁ ଆଖିଯୋଡ଼ିକ ଉପରେ ତା'ର ଦୃଷ୍ଟି ପଡ଼ିଥିବ ନିମିଷକ ଆଗରୁ ସେଠି ଦୁଇ ନୀଳ ହ୍ରଦର ଗଭୀରତା ତାକୁ ମୋହଗ୍ରସ୍ତ କରୁଥିବ । ପୁଣି ଯେମିତି ସେ ବାଟବଣା ହୋଇସାରିଥିବ ଝିଅଟିର ନାଲି ଅଧରର ପଳାଶ ବଣରେ । ଶତଚେଷ୍ଟା କରି ମଧ ସେହି ଅନନ୍ୟ ଅନ୍ୟମନସ୍କତାରୁ ମୁକୁଳିପାରୁ ନ ଥିବ କେବେ !

ଅଗତ୍ୟା ନିଜ ଅଫିସ୍ ଚ୍ୟାମ୍ବର୍ ନାମକ କାଚଘରୁ ବର୍ଷାଭିଜା ମହାନଗରୀକୁ ଚାହିଁବ ଅନିକେତ । ବର୍ଷା ଛାଡ଼ିବାର କୌଣସି ବି ସମ୍ଭାବନା ଦେଖାଯାଉ ନ ଥିବ । କଲିକତା ଉପାନ୍ତର ଦିଗ୍‌ବଳୟକୁ ଛୁଇଁ ଯାଉଥିବେ ନମ୍ର ମେଘମାଳା କେତେଖଣ୍ଡ । ଅନିକେତର ମନେହେବ ଝିଅଟିର ନିତମ୍ବଚୁମ୍ବୀ କୃଷ୍ଣକବରୀ ଯେମିତି ମେଘହୋଇ ଛୁଇଁଯାଉଛି ଭିଜାମାଟିକୁ । ସୁଉଚ୍ଚ ଅଟ୍ଟାଳିକାରୁ ମେଘମହ୍ଲାର ଆହୁରି ଅନ୍ୟମନସ୍କ କରିବ ତାକୁ । ସେ କାଚଘରଟିର ପର୍ଦା ସ୍ବୁରୁକୁ ଝୁଲାଇଦବ ।

ପର୍ଦାର ଆକଟ କିନ୍ତୁ ମାନୁ ନ ଥିବ ବର୍ଷାରତୁ । ଅନିକେତର ପୁରୁଣା କ୍ଷତକୁ ଉଖାରୁଥିବ ବାରମ୍ବାର ।

ଖରାଛୁଟି ପରେ ସ୍କୁଲ ଖୋଲିଥିବ । ପ୍ରଥମ କରି ଦଶମ ଶ୍ରେଣୀରେ ବସିଥିବ ଅନିକେତ । ଏମିତି ସେଦିନ ବି ବର୍ଷାରେ ଭିଜୁଥିବ ମାଟି ଓ ଆକାଶ । ପୁଣି ନୂଆ କରି ଝିଅଟିଏ ବସିଥିବ ତାଙ୍କ କ୍ଲାସ୍‌ର ଆଗ ଧାଡ଼ିରେ । ଝିଅଟିକୁ ଦେଖିଦେଲାକ୍ଷଣି ଅନିକେତ ଛାତିରେ ଯେମିତି ଢେଲାଟେ ବାଜିବ ଶୂନ୍ୟରୁ ଉଡ଼ିଆସି । ତା' ନିସ୍ତରଙ୍ଗ ମନରେ ଗୋଟେ ଜଳଭଉଁରି ଆଙ୍କି ହୋଇଯିବ ଅକସ୍ମାତ୍ । ପରୀଟିଏ ବାଟହୁଡ଼ି ତାଙ୍କ କ୍ଲାସ୍ ଭିତରକୁ ପଶିଆସି ନାହିଁ ତ (!), ସେ ନିଜକୁ ପଚାରିବ । ପରେ ଅବଶ୍ୟ ନିଜ ପ୍ରଶ୍ନର ଉତ୍ତର ତାକୁ ମିଳିଯିବ । ଖରାଛୁଟିରେ ବଦଳି ହୋଇଆସିଥିବା ଭୂଗୋଳ ସାର୍‌ଙ୍କର ସେ ସାନଝିଅ, ପ୍ରୀତି ।

ଅନିକେତ ଛାତିର ସେ ଜଳଭଉଁରି ସେହି କେଉଁ ଦିନରୁ ଲିଭି ସାରିଥିବ । ସେତେବେଳେ ସେ ତା'ର ଅର୍ଥ କିଛି ବୁଝିପାରି ନ ଥିବ, ଆଉ ବୁଝିଲାବେଳକୁ ସେ କଲେଜ ଯାଇସାରିଥିବ । କଲେଜର ସହପାଠିନୀ ଅଳକାନନ୍ଦା ଢେଉପରି ବେଶ୍ କେତେଥର ପିଟି ହୋଇଥିବ ଅନିକେତର ମରମ ବେଳାରେ । କିନ୍ତୁ ଢେଉ ତ ଢେଉ । ଆସିଥିବ ଯାଇଥିବ । ବେଳାଭୂଇଁରୁ ବାଲି କାଣିଚାଏ ହୁଏତ ଧୋଇ ନେଇଥିବ । କଲେଜ ଛାଡ଼ିଲା ପରେ ଅନିକେତ ତା'ର ଠିକଣା ରଖି ନ ଥିବ । ସେମିତି ବି ଦିଲ୍ଲୀର ଆଇ.ଟି. ଟ୍ରେନିଂମେଟ୍ ଶ୍ରାବସ୍ତୀ ମେହେଟା । ଖୁବ୍ କମ୍ ଦିନ ପାଇଁ ହେଲେ ବି ଏକ କଦମ୍ବ ବନର ଶିହରଣ ସେ ଛାଡ଼ି ଯାଇଥିବ ଅନିକେତ ମନରେ । କିନ୍ତୁ ସେହି ଅବୁଝା ନଈକୁ ବୁଝିପାରି ନ ଥିବ ଅନିକେତ, ବୁଝିବାପାଇଁ ଚେଷ୍ଟା ବି କରି ନ ଥିବ ।

ସେସବୁ ଶିହରଣ ଏବେ ଅନିକେତ ପାଇଁ ସ୍ମୃତି । ପୁଣି ଝାପ୍‌ସା । ସେ ମୁହଁସବୁ କେବେଠୁଁ ହଜି ଯାଇଥିବେ କେଉଁ ଦୂର ତାଳବଣ ଉହାଡ଼ରେ ।

କିନ୍ତୁ କୌଣସି ଶିହରଣ ଅନିକେତ ପାଇଁ ବିସ୍ଫୋରଣ ପାଲଟି ନ ଥିବ ।

ପ୍ରତି ଦେଖାରେ ସେହି ଝିଅଟି ନୂଆ ନୂଆ ଲାଗୁଥିବ ଅନିକେତକୁ । କେଉଁଦିନ ସାଲ୍‌ୱାର ପଞ୍ଜାବି ତ କେଉଁଦିନ ପ୍ୟାଣ୍ଟ ସାଙ୍ଗକୁ ଶର୍ଟଶାର୍ଟ ପିନ୍ଧିଥିବ ସେ, ପୁଣି କେଉଁଦିନ ଆକାଶୀରଙ୍ଗର ଶାଢ଼ି ପରିହିତା ଚିତ୍ରପ୍ରତିମାଟେ ପରି ଠିଆ ହୋଇଥିବ ଲିଫ୍‌ଟ ଭିତରେ । ତା' ପାଦର ଜୋତା ବଦଳୁଥିବ ତ ବଦଳୁଥିବ ଲିପ୍‌ଷ୍ଟିକ୍‌ର ରଙ୍ଗ । ବଦଳୁଥିବ ବି ଆଇବ୍ରୋ ଅଙ୍କନ । କିନ୍ତୁ ବଦଳୁ ନ ଥିବ କେବେ ତା' ମନପସନ୍ଦର ପରଫ୍ୟୁମ୍ ଯାହା ଲିଫ୍‌ଟ ଭିତରେ ମୃଦୁ ସୁଗନ୍ଧିର ତରଙ୍ଗ ତୋଳୁଥିବ । ବଦଳୁ ନ ଥିବ ବି ତା' ଚାହାଣିର ଚିତ୍ରପଟ । ଆଉ ଖୁବ୍ ମିଠା ହସଧାରେ ଲାଖି ରହିଥିବ ତା' ଓଠସନ୍ଧିରେ, ଯେମିତି ସେମିତି !

ନିରୁତା ହସଟିଏ ନିତି ଭେଟି ଦବାର ଅର୍ଥ କ'ଣ ? ଅନ୍ତରଙ୍ଗ ଅନୁରାଗରେ ଢଳିପଡ଼ିବା ନୁହେଁ କି ? ଅନିକେତ ନିଜକୁ ପଚାରୁଥିବ ଅଥଚ କୌଣସି ରହସ୍ୟ ଭେଦିପାରୁ ନ ଥିବ । କାହିଁକି କେଜାଣି ତା'ର ମନେହେବ, ଝିଅଟି ସହ ପ୍ରଥମ ଦେଖାର ଯେଉଁ ବିସ୍ଫୋରଣ ତାହା ଯେମିତି ସମାନ ଭାବରେ ଦି'ଫାଳ ହୋଇ ବାଣ୍ଟି ହୋଇଯାଇଛି ଦୁହିଁଙ୍କ ଭିତରେ । କିନ୍ତୁ ପର ମୁହୂର୍ତ୍ତରେ ସେ ହେଉଥିବ ଆଶଙ୍କା କୁତୁବୁତୁ–ଝିଅଟି କେବେ ତ କଥା ପଦେ କହିଲାନି । ଝିଅମାନେ ତ ପ୍ରଗଲ୍‌ଭା । ଇଏ ଏତେ ନିରବ କାହିଁକି ଆକାଶର ତାରାମାନଙ୍କ ପରି । ତାରାମାନଙ୍କ ପରି ପାଖରେ ଥାଇ ବି ସେ ଅଯୁତ ଆଲୋକବର୍ଷ ଦୂରରେ ନାହିଁ ତ !

ଅନିକେତ ପୁଣି ନିଜ ମନକୁ ନିଜେ ବୋଧ କରୁଥିବ– ନିରବତାକୁ ବଳି ଅଧିକ ଆତ୍ମୀୟ କେଉଁ ଭାଷା ଅଛି କି ପୃଥିବୀରେ ? ଅଥଚ ନିରବତାର ଭାଷାକୁ ସେ ପଢ଼ିପାରୁ ନ ଥିବ । ସେଇଠି ଥିବ ତା'ର ଦୁଃଖ ।

ଆଉ କେତେଦିନ ଏମିତି ଦ୍ୱନ୍ଦ୍ୱରେ ଆଉଟୁପାଉଟୁ ହେବାକୁ ଭଲ ଲାଗିବ ଯେ ଅନିକେତକୁ ? ସେ ଆଗ ମୁହଁ ଖୋଲିବାକୁ ଚାହିଁବ । କିନ୍ତୁ କ'ଣ ପଚାରିବ ସେ ଝିଅଟିକୁ ? କି କଥା ହବ ତା' ସାଙ୍ଗରେ । ଗୋଟିଏ ଦ୍ୱନ୍ଦ୍ୱ ପରେ ଆଉ ଗୋଟିଏ ଦ୍ୱନ୍ଦ୍ୱ ତା'ର ବାଟ ଓଗାଳୁଥିବ । ତା' ନାଁ କ'ଣ ବୋଲି ପଚାରିଲେ କେମିତି ହୁଅନ୍ତା ? ଅନିକେତ ଭାବିବ । ଏମିତି ଭାବୁଭାବୁ ପୁଣି ଗୋଟିଏ ଡିଲେମା ତାକୁ କାବୁ କରିବ 'ତୁମେ' ନା 'ଆପଣ', କ'ଣ ବୋଲି ସମ୍ବୋଧନ କରିବ ସେ ଝିଅଟିକୁ । ହଠାତ୍ କ'ଣ କାହାକୁ କେବେ 'ତୁମେ' କୁହାଯାଏ ? ଆପଣ ବୋଲି କହିବାକୁ କିନ୍ତୁ ତା' ଜିଭ ଲେଉଟୁ ନ ଥିବ ।

ତହିଁ ପରଦିନ ଝିଅଟିକୁ ଦେଖୁଦେଖୁ ଅନିକେତ ପଚାରିଦବ– 'ୟୋର୍ ଗୁଡ୍‌ନେମ୍ ପ୍ଲିଜ୍' । 'ବିଦିଶା', ଝିଅଟି ହସୁହସୁ କହିବ ଓ କହୁକହୁ ହସିଦବ । ଓଃ ଭେରି ସ୍ୱିଟ୍ । ଅନିକେତ କହିବ ଓ ନିରବିଯିବ ତତ୍‌କ୍ଷଣାତ୍ । କହିପାରିବ ନାହିଁ ଆଉ କିଛି । ସେତେବେଳକୁ ସେ ଜହ୍ନରାଇଜର ରାଜପୁତ୍ର ପରି ଜ୍ୟୋସ୍ନାରେ ଲହଡ଼ି ଭାଙ୍ଗୁଥିବ । ୟା'ଭିତରେ ଷୋଡ଼ଶ ମହଲାରେ ଅଟକିଯିବ ଲିଫ୍‌ଟ ଓ ବିଦିଶା ହସ ବିଞ୍ଚିବିଞ୍ଚି ଚାଲି ଯାଉଥିବ ଲିଫ୍‌ଟ ବାହାରକୁ ।

ଅଫିସ୍‌ରେ ପହଞ୍ଚିଲାପରେ ଅନିକେତକୁ ଲାଗିବ ସେ ଯେମିତି ଗଡ଼ ଜିଣିଛି । ଅଶ୍ରୁତପୂର୍ବ ମଧୁର ରାଗିଣୀକୁ ଆମ୍ବଗ୍ରହ୍ଣ କରିଛି । ତା'ର ଏହି ପୁଲକ କିନ୍ତୁ ବେଶି ସମୟ ରହିବ ନାହିଁ । ତାକୁ ତା' ନାଁ କ'ଣ ପଚାରି ପାରି ନ'ଥାନ୍ତା ବିଦିଶା । କିନ୍ତୁ କାହିଁ, ପଚାରିଲା ନାହିଁ ତ ! ଅନିକେତ ଭାବୁଭାବୁ ଉଦାସ ହୋଇଯିବ । ସବୁ ସୁନ୍ଦରୀ ଝିଅ କ'ଣ ନଈପରି ଫୁଲେଇ ? ଅକାତକାତ ଅହମିକାରେ ଉବୁଟୁବୁ ? ସେ ନିଜ ଉପରକୁ ପ୍ରଶ୍ନ ଫିଙ୍ଗିବ ।

ତା' ପରଦିନ, ତା' ପରଦିନ ବି ବିଦିଶା କିଛି କହିବ ନାହିଁ, ଖାଲି ହସିଦବ ଯାହା । ଅନିକେତର ଇଚ୍ଛା ହଉଥିବ କେତେ କ'ଣ ପଚାରିବାପାଇଁ ବିଦିଶାକୁ । ନାଁଟା ଖାଲି ଜାଣିଯିବା କ'ଣ ଯଥେଷ୍ଟ ? ବୁଝିବ ନାହିଁ କେଉଁଠି ତା'ଘର, କ'ଣ ତା'ର ପ୍ରଫେସନ୍ ? ପଚାରିବ ନାହିଁ, କେଉଁ ରଙ୍ଗ ତାକୁ ଭଲଲାଗେ, କେଉଁ ତାରକା ତା'ର ପସନ୍ଦ, କେଉଁ ଗୀତ ଶୁଣିବାକୁ ତା'ର ମନହୁଏ ବାରମ୍ବାର ? ଜାଣିବ ନାହିଁ, କ'ଣ ଖାଇବାକୁ ସେ ଭଲପାଏ, କେମିତି ବିତେ ତା'ର ଅବସର, ସେ ବିଦେଶ ଯାଇଛି କି ନାହିଁ ? ଏମିତି ସବୁ ପଚରାଉଚୁରା ଭିତରେ ତାକୁ ବି ପଚାରିହବ ସେ କାହାକୁ ଭଲପାଏ ବୋଲି ! ଅନିକେତ ଭାବୁଥିବ, ଏମିତି କଥାଟା ପଚାରିଲାକ୍ଷଣି ବିଦିଶା ହୁଏତ ଲାଲ୍ ପଡ଼ିଯିବ ଲାଜରେ, ରକ୍ତଗୋଲାପ ପରି । କିଛି କହିବ ନାହିଁ ସିନା, ହେଲେ ଏମିତି ହସିଦବ ଯେ ଯାହାର ଅର୍ଥ ବେଶ୍ ବୁଝି ହଉଥିବ ।

ଅନିକେତ କିନ୍ତୁ କିଛି ପଚାରିବାକୁ ଭରସୁ ନ ଥିବ ।

ଥରେ ରାତିସାରା ଖୁବ୍ ବର୍ଷା ହବ । ବର୍ଷାର ନିକ୍ୱଣ ଗୁଞ୍ଜରିତ ହବ ଅନିକେତର ବେଡ୍‌ରୁମ୍‌ରେ । ପବନର ଗୁଞ୍ଜରଣ ତାକୁ ଉଚ୍ଚାଟ କରିବ । ତା' ଆଖିରୁ ନିଦ ହଜିଯିବ । ରାତିର ବୟସ ବଢୁଥିବ । ବଢୁଥିବ ବର୍ଷା ଓ ପବନ । ସେ ନିଜେ ପାଲଟି ଯାଇଥିବ ଗୋଟେ ଉଦ୍‌ବେଳିତ ସମୁଦ୍ର । ପାହାନ୍ତାକୁ ଭାରାକ୍ରାନ୍ତ ହୋଇପଡ଼ିଥିବ ତା' ଆଖିପତା । ସେ ଶୋଇପଡ଼ିବ ଓ ଉଠିଲାବେଳକୁ ସକାଳ ଦିନ ହୋଇସାରିଥିବ । ତରବରରେ ସେ ଅଫିସ୍ ବାହାରିବ । ଲିଫ୍‌ଟ ପାଖରେ ପହଞ୍ଚିଲାବେଳକୁ ସବୁ ଶୂନ୍‌ଶାନ୍ । ବିଦିଶା ସହିତ ତା'ର ଦେଖା ହବନି ସେଦିନ ।

ଅଫିସ୍‌ରେ ପହଞ୍ଚିଥିବ କି ନାହିଁ ଅନିକେତ ଫୋନ୍‌ଟେ ରିସିଭ୍ କରିବ । 'ହାଓ ୟୁ ଅନିକେତ ? ହ୍ୱାଏ ଆର୍ ୟୁ ଲେଟ୍ ଟୁଡେ ।' ଶୁଣୁଶୁଣୁ ସେ ଜାଣିଦବ ବିଦିଶାର ସ୍ୱର ।

ସେଥିରେ ଯେତେ ସେ ପୁଲକିତ ନ ହବ, ତହୁଁ ବଳି ହବ ଆଚମ୍ବିତ । ବିଦିଶା କେମିତି ତା' ଫୋନ୍ ନମ୍ବର ଜାଣିଲା ? ଭାବୁ ଭାବୁ ସେ ନିର୍ମଳ ମିଛଟେ କହି ପକେଇବ– "ବ୍ୟାଙ୍କ୍‌ରେ କାମ ଥିଲା ତ ! ଲେଟ୍ ଫର୍ ଦ୍ୟାଟ ।"

"ଓକେ, ଓକେ, ଲିଫ୍‌ଟରେ ଦେଖିଲି ନାହିଁ ତ" କହୁକହୁ ବିଦିଶା ରିସିଭର ଥୋଇଦବ ।

ବିଦିଶା ବିଷୟରେ ଥିବା ଭୁଲ୍ ଧାରଣାକୁ ସୁଧାରିନବ ଅନିକେତ । ଭାବିବ, ନାଁ ପଚାରିବା ଅପେକ୍ଷା, ନାଁ, ଠିକଣା ଓ ଫୋନ୍ ନମ୍ବର ସଂଗ୍ରହ କରିବା ଆହୁରି ବଡ଼କଥା ନୁହେଁ କି ? ଟେଲିପ୍ୟାଥି କନ୍‌ସେପ୍ଟଟା ମିଛ ନୁହେଁ ବୋଲି ସେ ନିଶ୍ଚିତ ହୋଇଯିବ । କିଛି ସମୟ ଚୁପ୍‌ଚାପ୍ ବସିରହିବା ପରେ ତାକୁ ଲାଗିବ ଯେମିତି ସବୁ ଗଛର ଶାଖା-ପ୍ରଶାଖାମାନେ ନଇଁ ପଡ଼ିଛନ୍ତି ଗାଢ଼ ଲାଲ୍ ଫୁଲ ଭାରରେ, ବନ୍ୟାରେ ଉଛୁଳିଛନ୍ତି ପୃଥିବୀଯାକର ନଈ ପୁଣି ସବୁ ଋତୁ ପାଲଟି ଯାଇଛନ୍ତି ପ୍ରାବୃଟ । ଅନିକେତ ଦେହରେ ଦୁଇଟା ପର ଲାଗି ଯାଇଥିବ ଯେମିତି ! ସେ ହଜିଯାଉଥିବ ନୀଳନଭର ନିବିଡ଼ତାରେ ।

ତା'ପର ଦିନ ସବୁ ଫୁଲପରି ହାଲୁକା ଲାଗୁଥିବ ଅନିକେତକୁ । "ଆଇ ଲଭ୍ ୟୁ ! ଡୁ ୟୁ ?" ସେ କହିବ କହିବ ହୋଇ କହିପାରୁ ନ ଥିବ ବିଦିଶାକୁ । ଅଥଚ ଲିଫ୍‌ଟରୁ ମୁହୂର୍ତ୍ତମାନେ ପ୍ରଜାପତି ପରି ଡେଣାଝାଡ଼ି ଉଡ଼ି ଯାଉଥିବେ !

ଏଣିକି ପ୍ରାୟ ପ୍ରତି ରାତିରେ ସ୍ୱପ୍ନ ଦେଖୁଥିବ ଅନିକେତ । ଏଇ ଯେମିତି ଗତ ରାତିର ସ୍ୱପ୍ନ– କଲିକତାରୁ ସିଧା ଉଡ଼ି ଯାଇଥିବ ସେ କୋଣାର୍କ । ସାଙ୍ଗରେ ବିଦିଶା । କୋଣାର୍କର ବିଜନବେଳାରେ ନାଲି କଙ୍କଡ଼ା ଧରିବାପାଇଁ ଧାଉଁଥିବ ବିଦିଶା । କିନ୍ତୁ ନାଲି କଙ୍କଡ଼ାର କ୍ଷିପ୍ରତା ପାଖରେ ସେ ହାର୍ ମାନୁଥିବ । ଅଥଚ ଉତ୍ତଳା ପବନରେ ଉଡୁଥିବା ତା' କଳାମେଘୀ ପାଟ ଓ ଆଲୁଳାୟିତ କୁନ୍ତଳ ଆଗରେ ହାର ମାନୁଥିବ ସମୁଦ୍ରର ଢେଉ । ରୁଣୁଝୁଣୁ ତା' ପାଦର ପାଉଁଜି ସମୀର ସଙ୍ଗୀତକୁ କରୁଥିବ ପରାହତ । ପୁଣି ଖଣ୍ଡିତ ଜହ୍ନପରି ତା' ହସର ଝଲକରେ ମଳିନ ଦିଶୁଥିବ ଶୁଭ୍ର ବେଳାଭୂମି । ଅନିକେତକୁ ଲାଗୁଥିବ ଯେମିତି ଲକ୍ଷେଭାର ଗଜରାରେ ପୋତି ହୋଇଯାଉଛି ଚନ୍ଦ୍ରଭାଗା ମୁହାଣ ।

ଅନିକେତ ପୁଣି ଲକ୍ଷ୍ୟ କରୁଥିବ, କୋଣାର୍କକୁ ଦେଖି କେମିତି ବିସ୍ମୟାଭିଭୂତ ହୋଇପଡୁଛି ବିଦିଶା । ସ୍ଥିର, ନିଶ୍ଚଳ । ସତେ ଅବା ମଦାଳସା ମୂର୍ତ୍ତିଟିଏ !

"କଳିଙ୍ଗ ଶିଳ୍ପୀର ଯାଦୁକରୀ ନିହାଣ ସ୍ପର୍ଶରେ ଜୀବନ୍ୟାସ ପାଇଥିବା ଅନନ୍ତ-ଯୌବନା ଅଳସକନ୍ୟାକୁ ଦେଖି ଈର୍ଷା ହେଉଛି କି ବିଦିଶା ? ତୁମେ ଯେ କୁଶଳୀ କଳିଙ୍ଗ ଶିଳ୍ପୀର ସଦ୍ୟତମ ସର୍ଜନା !" ଅନିକେତର ଏହି କଥା କିନ୍ତୁ ପହଞ୍ଚିପାରୁ ନ ଥିବ ବିଦିଶା ପାଖରେ । ଫାଜିଲ୍ ପବନ ସେସବୁକୁ ଚୋରାଇ ନଉଥିବ ଝାଉଁ ବଣର ଗହନ ନିସ୍ତବ୍ଧତା ଭିତରକୁ ।

ବିଦିଶାର ମୌନତାରେ କିନ୍ତୁ ମୁଖରିତ ହେଉଥିବ ଅନିକେତର ପ୍ରିୟ ପୃଥିବୀ ।

ପୁଣି, ବିଦିଶା ମୁହଁ ଖୋଲିଲାବେଳକୁ ରାତି ପାହି ସକାଳ ହୋଇସାରିଥିବ । ଧଡ଼ପଡ଼ ହୋଇ ନିଦରୁ ଉଠିବ ଅନିକେତ । ସେ ଭାବିବ, ''ଏତେବେଳେ ବିଛଣାରେ ନିଦ ଭାଙ୍ଗି ଆସୁଥିବ ଲାବଣ୍ୟବତୀର ।''

ଲାବଣ୍ୟବତୀଠାରୁ କିନ୍ତୁ ଚିଟାଉ ଆସୁ ନ ଥିବ, ଆସୁ ନ ଥିବ ଫୋନ୍‌କଲ୍ । ଲିଫ୍‌ଟରେ ତା' ସହ ଦେଖାହବ ନାହିଁ ।

ବିଦିଶା ଆଉ କଲିକତା ବାହାରକୁ ଚାଲିଯାଇନି ତ ? ଅନିକେତ ନିଜକୁ ପଚାରିବ । ନା, ଏଇଟା ତ ପର୍ଯ୍ୟଟନର ସମୟ ନୁହେଁ, ସେ ନିଜକୁ ବୁଝେଇବ । ତା'ହେଲେ ପ୍ରଶିକ୍ଷଣରେ ଅନ୍ୟ କେଉଁ ସହରକୁ ହୁଏତ ଯାଇଥାଇପାରେ । ଯାଇଥାଇ ପାରେ ବି ପ୍ରବାସର କେଉଁ ସମ୍ପର୍କୀୟଙ୍କ ପାଖକୁ । କିନ୍ତୁ ଅନିକେତ କୌଣସି ନିର୍ଦ୍ଦିଷ୍ଟ ଉତ୍ତର ପାଇପାରୁ ନ ଥିବ ନିଜ ପ୍ରଶ୍ନର । ତା' ମନ ଆଉଟୁ ପାଉଟୁ ହେଉଥିବ । ଭଲ ଲାଗୁ ନ ଥିବ କିଛି । ଅକସ୍ମାତ ଅସୁସ୍ଥ ହୋଇପଡ଼ିଛି କି ବିଦିଶା ? ଏପରି ସଂଶୟଟେ ବି ତାକୁ କମ୍ ଅଥୟ କରୁ ନ ଥିବ । ଫୁଲ, ପରୀ ଓ ପ୍ରଜାପତିମାନେ ଜରା, ବ୍ୟାଧି ଓ ଯନ୍ତ୍ରଣାର ଉର୍ଦ୍ଧ୍ୱରେ ରହିବା ଉଚିତ ନୁହେଁ କି ? ଅନିକେତ ଭାବୁଭାବୁ 'ହିଗେଲ୍'ରେ ରୂପାନ୍ତରିତ ହୋଇଯାଉଥିବ ନିଜ ଅଜାଣତରେ ।

ବିଦିଶା ଫେରିବାରେ କିନ୍ତୁ ଖୁବ୍ ବେଶି ବିଳମ୍ବ ହବ ନାହିଁ । ଅନିକେତ ପୁଣି ତାକୁ ଭେଟିବ ଲିଫ୍‌ଟରେ । ସେହି ପୁରୁଣା ପର୍‌ଫ୍ୟୁମ୍‌ର ବାସ୍ନାରେ ମହକିବ ଲିଫ୍‌ଟର ପରିବେଶ । ପୁଣି ସେହି ପରିଚିତ ହସର ଉଜାଣି । ସଂକ୍ରମିତ ହେଉଥିବ ଅନିକେତ । ଅଥଚ ଯାହା କହିବାର ଥିବ, କହିପାରୁ ନ ଥିବ କିଛି ।

କ୍ରମେ କ୍ଷୀଣ ହୋଇଆସୁଥିବ ବର୍ଷାଋତୁ । ମେଘମାନେ ହଜି ହଜି ଯାଉଥିବେ ମହାଶୂନ୍ୟରେ । ହୁଗୁଳିର ଚହଲା ପାଣିରେ ଚହଟୁଥିବ ଅକ୍ଷତ ଆକାଶର ମୁହଁ ।

ପାର୍ବଣ ଆଡ଼କୁ ଉନ୍ମୁଖ ହେଉଥିବ କଲିକତା ମହାନଗରୀ ।

ହଠାତ୍ ଦିନେ ଦିଗ୍‌ବଳୟ ଆଢୁଆଳରୁ ଦୁର୍ଦ୍ଧର୍ଷ ଅଶ୍ୱବାହିନୀ ପରି ଝପଟି ଆସିବେ ବେଶ୍ କେତେଖଣ୍ଡ କଳାବାଦଲ ଓ ଆବୋରିଯିବେ କଲିକତାର ତମାମ ଆକାଶ । ସକାଳ ପ୍ରହରୁ ଆରମ୍ଭ ହୋଇଯିବ ଝରଝର ବର୍ଷା, ଅବିରତ ।

ଅନିକେତର ଅଫିସ୍ ଯିବା କିନ୍ତୁ ବିଳମ୍ବ ହବ ନାହିଁ । ଅବଶ୍ୟ ବିଦିଶା ସହିତ ଦେଖା ହବ ନାହିଁ ଲିଫ୍‌ଟରେ । ପତଳା ଲାଗୁଥିବ ପରିବେଶ । ଆକସ୍ମିକ ବର୍ଷା ହୁଏତ ଅନେକଙ୍କ ଆସିବାରେ ବାଧକ ହୋଇଥିବ ।

ଭିଜା ମଧ୍ୟାହ୍ନକୁ ଉଷ୍ମ କରିବାପାଇଁ ଗୋଟେ କପ୍ ଗରମ କଫି ଥିବ ଯଥେଷ୍ଟ । କଫିକପ୍‌ରେ ଅନିକେତର ପ୍ରଥମ ଚୁମ୍ବନକୁ କିନ୍ତୁ ବାଧାଦେବ ତା' ମୋବାଇଲ୍ । ଅନିଚ୍ଛାସତ୍ତ୍ୱେ ସେ ମୋବାଇଲ୍‌ଟି ଉଠାଇବ ଓ ଏକ ଅଜଣା ନମ୍ବର ଦେଖି ବିରକ୍ତ ହବ । କିନ୍ତୁ କର୍ପୋରେଟ୍ ସଂସ୍କୃତିର ଦାୟାଦ ଭାବରେ ସେ ମୋବାଇଲ୍‌ଟି ଧରି ହ୍ୟାଲୋ କହୁକହୁ ଚିହିଁକି ପଡ଼ିବ । ସେପଟରୁ ବିଦିଶା କହୁଥିବ, ''ଘରକୁ ଫେରିବାପାଇଁ ଆଜି

ମୋ ପାଖରେ ଗାଡ଼ି ନାହିଁ । ଉଡ୍ ୟୁ ପ୍ଲିଜ୍ ଡ୍ରପ୍ ମି ।'' ଅନିକେତ ପ୍ରଥମେ ହଡ଼ବଡ଼େଇ ଯିବ ଓ କହିବ, ''ନିଶ୍ଚୟ, ନିଶ୍ଚୟ । ଇଟ୍ ଇଜ୍ ଏ ପ୍ଲେଜର୍ ଫର୍ ମି ।'' କେବଳ ଫୋନ୍ ନମ୍ବର ନୁହେଁ, ତା' ସେଲ୍ ନମ୍ବର ବି ବିଦିଶାକୁ ଜଣା ବୋଲି ଜାଣିବାପରେ ନାହିଁ ନ ଥିବା ପୁଲକରେ ସେ ଉଲ୍ଲସି ଉଠିବ ।

ତା' ପରଠୁଁ ଗୋଟିଏ ମୁହୂର୍ତ୍ତ କୋଟିଏ ମନ୍ୱନ୍ତର ପରି ଲାଗୁଥିବ ଅନିକେତକୁ । ଠିକ୍ ପାଞ୍ଚଟାରେ ସେ ଓମେଗା ଟାୱାର୍‌ର ତଳ ମହଲାରେ ପହଞ୍ଚିଯିବ । ଦେଖିବ, ଅପେକ୍ଷା କରିଛି ବିଦିଶା ।

ପାର୍କିଂପ୍ଲେସ୍‌କୁ ଯିବାକୁ ବାହାରିଲାବେଳେ ଅନିକେତ ସାଙ୍ଗରେ ଯିବାପାଇଁ ଜିଦ୍ କରିବ ବିଦିଶା । ଅନିକେତ ନାହିଁ କରିପାରିବ ନାହିଁ । ଡ୍ରାଇଭିଂ କଲାବେଳେ ସେ ହଠାତ୍ ଲକ୍ଷ୍ୟ କରିବ, ସବୁଜ ଘାସ ଉପରେ ସକାଳର ଶିଶିରବିନ୍ଦୁ ପରି ବର୍ଷା ଟୋପା କେତୋଟି ଝଟକୁଛି ବିଦିଶାର କପାଳରେ । ସୁନ୍ଦରୀ ଝିଅମାନଙ୍କୁ ବର୍ଷା ଆହୁରି ସୁନ୍ଦର କରିଦିଏ ବୋଲି ତା'ର ହୃଦ୍‌ବୋଧ ହବ ।

ବିଦିଶା କିଛି କହୁଥିବ କି ଲମ୍ବା ନିରବତା ପରେ ? ଅନିକେତ କିନ୍ତୁ କିଛି ଶୁଣିପାରୁ ନ ଥିବ । ସେ କେଉଁଠୁ ଓ କିପରି କଥା ଆରମ୍ଭ କରିବ ଭାବୁଭାବୁ ଅନ୍ୟମନସ୍କ ହୋଇ ପଡ଼ିଥିବ । ତିନିଟା ଟ୍ରାଫିକ୍ ପାରିହେଲା ପରେ ଗୋଟେ ମେନ୍‌ରୋଡ୍ । ସେଠୁ କିଛିବାଟ ଯାଇଥିବ କି ନାହିଁ, ବିଦିଶା ଗାଡ଼ି ଅଟକାଇବ ଓ ଲେଫ୍‌ଟ ଟର୍ଣ୍ଣିଂ ନବା ପାଇଁ କହିବ । ସେହି ଗଳି ରାସ୍ତାରେ ମାତ୍ର କିଛିବାଟ ଗଲାପରେ ପଡ଼ିବ ଗୋଟେ ବ୍ରିଟିଶ୍ ଅମଳର ଉଆସପରି ଘର । ସେଇଠି ଗାଡ଼ି ରଖିବାକୁ କହିବ ବିଦିଶା । ପୁଣି ଓହ୍ଲଉ ଓହ୍ଲଉ ଡାକିବ ଘରଭିତରକୁ । ଅନିକେତ ଭାବୁଥିବ, ଏତେ ପାଖରେ ବିଦିଶାର ଘର ବୋଲି ଜାଣିଥିଲେ ସେ କ'ଣ କହିବ କହିବ ବୋଲି ନ ଭାବି ହୁଏତ କିଛିକଥା କହିପାରିଥା'ନ୍ତା !

ଘର ଭିତରେ ପାଦ ଦେଲାକ୍ଷଣି ବିଦିଶାର ରୁଚିକୁ ମନେମନେ ତାରିଫ୍ କରୁଥିବ ଅନିକେତ । ଆଣ୍ଟିକ୍ ସାମଗ୍ରୀରେ ଭରପୂର ହୋଇଥିବ ଅନତିବୃହତ୍ ବୈଠକୀଟି । ସୋଫାଠାରୁ ପେଣ୍ଟିଂ ପର୍ଯ୍ୟନ୍ତ– ସବୁଠି ଗତାୟୁ ସମୟର ପଦଚିହ୍ନ ।

ବାହାରେ ବର୍ଷା ଲାଗି ରହିଥିବ । ରୋମାଣ୍ଟିକ୍ ନିରବତା ସକାଳର ଗଙ୍ଗଶିଉଳି ପରି ବିଛେଇ ହୋଇପଡ଼ିଥିବ ବୈଠକୀଟିରେ । ଏଠି କିଛି କହିବ କି ସେ ବିଦିଶାକୁ ? ବାରମ୍ବାର ନିଜକୁ ପଚାରୁଥିବ ଅନିକେତ ଓ ହଁ ନା ଭିତରେ ରୁନ୍ଧି ହୋଇଯାଉଥିବ ।

ଉପରମହଲାରୁ ବୈଠକୀକୁ ଓହ୍ଲାଉଥିବ ବିଦିଶା । ମୃଦୁ ପାଦଶବ୍ଦର ଲାଳିତ୍ୟ ତରଙ୍ଗାୟିତ ହେଉଥିବ ପବନରେ । ଯା' ଭିତରେ ସେ ଡ୍ରେସ୍ ବଦଳାଇ ସାରିଥିବ । ହାତରେ ଚା' କପ୍ । ସାଙ୍ଗରେ ଦିବ୍ୟ ତରୁଣ । ''ମିଟ୍ ମାଇଁ ହଜ୍‌ବ୍ୟାଣ୍ଡ ଜର୍ଜ । ସେ ଆଜି ସକାଳୁ ଫେରିଛନ୍ତି ଷ୍ଟେଟ୍ସରୁ ।'' ବିଦିଶାର କଥା ଶୁଭୁଥିବ କଲିକତାରେ ଶେଷ ବର୍ଷାର ରିମ୍‌ଝିମ୍ ପରି !



# ବିକ୍ରମାଦିତ୍ୟ

ବୀରୁ ସାନ୍ତରାର ଗୋଟେ ଆଳୁ-ପିଆଜ ଦୋକାନ ଥିଲା ଅଲ୍ଲୀପୁର ଛକରେ । ଛକମୁଣ୍ଡରେ ଥିଲା ଝଙ୍କାଳିଆ ବରଗଛଟାଏ । ଏକଦା ଭୂତପ୍ରେତମାନଙ୍କର ନିରଙ୍କୁଶ ସାମ୍ରାଜ୍ୟ ବୋଲି ବିଶ୍ୱାସ କରାଯାଉଥିବା ସେହି ଗଛମୂଳରେ କ୍ୟାବିନ୍ ପକାଇବା ପଛରେ ଥିଲା ବୀରୁ ସାନ୍ତରାର ଅସୀମ ବୀରତ୍ୱ । ଭୂତମାନଙ୍କ ଇଲାକାକୁ ଅକ୍ତିଆର କରିବା କ'ଣ କମ୍ ବଡ଼ କଥା । ବରଗଛ ଆଡ଼କୁ ଅବଶ୍ୟ ବଜାର କ୍ରମେ ସଂକ୍ରମିତ ହେଲା । ଭୂତପ୍ରେତମାନେ ମରିହଜିଗଲେ ବୋଧେ ! ବୀରୁ ସାନ୍ତରାର ଦୋକାନ ଆଗରେ ଲୋକ ହେଲେ ।

ପ୍ରଥମେ ପ୍ରଥମେ ବୀରୁ ସାନ୍ତରା ଖାଙ୍କିହାଟରୁ ଫି' ପାଳି ପାଞ୍ଚବସ୍ତା ଆଳୁ ଓ ବସ୍ତାଏ ପିଆଜ ଆଣି ବିକାବିକି ଆରମ୍ଭ କଲା । ଦିନକେତେଟା ଭିତରେ ତା' ବେପାର ହୁ ହୁ ହୋଇ ବଢ଼ିଲା । ହାଟପାଳିକି ହାଟପାଳି ପନ୍ଦରରୁ କୋଡ଼ିଏ ବସ୍ତା ଆଳୁ ଓ ପାଞ୍ଚସାତ ବସ୍ତା ପିଆଜ ବିକ୍ରିହବାକୁ ଲାଗିଲା । ସେ ଆଉ ଖାଙ୍କିହାଟକୁ ନ ଯାଇ ପୁରୁଣାବଜାରକୁ ଧାଇଁଲା । ମିନିଟ୍ରକ୍‌ରେ ମାଲ୍ ଆଣିଲା । ବଡ଼ବଖରାଏ ଘର ତିଆରିଲା ନୟନଯୋରିକୁ ପୋତି । ହଟାଇଦେଲା ତା' ପୁରୁଣା କ୍ୟାବିନ୍ । ନିଶ ଫୁଲେଇ ଚଉକିରେ ବସି ଟଙ୍କା ଗଣିଲା । ପିଲା ଦି'ଟା ଖଟେଇଲା ବିକାବିକି ପାଇଁ ।

ବାପ ଅମଳରୁ ନଇଁ ନଇଁ ଭୂଇଁରେ ଲାଗିବାକୁ ବସିଥିବା ପୁରୁଣାକାଳିଆ ଘରର ମଥାନ ସନ୍ଧିରେ ସେ ଯେମିତି ଠିଆ ହୋଇଗଲା ଜବରଖୁଣ୍ଟେ ପରି ।

ବୀରୁ ସାନ୍ତରାର ବାପ ଅଫିମ ନିଶାରେ ବୁଡ଼ି ରହିଥାଏ, କି ରାତି କି ଦିନ । ପିଲାବେଳୁ ବୁଢ଼ାର କୁଆଡ଼େ ଏ ମନ୍ଦ ଅଭ୍ୟାସ । ତାଙ୍କ ବାପେ ଥିଲେ ମହୀପଡ଼ା ଜମିଦାରଙ୍କ ଗୁମାସ୍ତା । ବାଟି ବାଟି ଜମିର ମାଲିକ । ବୁଢ଼ା ତେଣୁ ପିଲାବେଳେ ବଡ଼ ଅୟସରେ ବଢ଼ିଥିଲା । କୁସଙ୍ଗରେ ପଡ଼ି ନିଶାପାଣି ଆଡ଼କୁ ମନ ବଳେଇଲା । ନିଶାପାଣିରେ ଥରେ ବୁଡ଼ିଗଲେ ଆଉ କି ନିସ୍ତାର ମିଳେ ? ତିନି ବାଟି ସମ୍ପତ୍ତି ଆସି ତିନି ମାଣରେ ପହଞ୍ଚିଲା, ଅଥଚ ବୁଢ଼ାର ମଗଜକୁ କିଛି କାଟୁକଲା ନାହିଁ । ବୁଢ଼ା ଜମିବାଡ଼ି ବିକିଲା, ଗଛମାଛ ବିକିଲା । ସବୁ ବିକିଭାଙ୍ଗି ଖାଇଲା । ଖାଇ ଖାଇ ମଲା ।

ବୀରୁ ସାନ୍ତରାର ହେତୁ ହେଲା ବେଳକୁ ସେ ଖାଲି ଅଭାବକଷଣ ଅଙ୍ଗେ ନିଭେଇଲା । ଗୁମାସ୍ତାଘର ବୋଲି ନାଁଟେ ଥିଲା ସିନା, ହେଲେ ଆଉ କିଛି ନ ଥିଲା

ଘରେ । ତା'ବୋଉ କହିଲା, ''ବୀରୁରେ, ପାଠଶାଠ ଦି' ଅକ୍ଷର ପଢ଼ୁ । ତୋ ବାପର ପେଟ ଚାଖଣ୍ଡେକୁ ତ ବାଟି ବାଟି ସମ୍ପତ୍ତି ନିଅଣ୍ଟ ହେଲା, ତୋ ପାଇଁ ଆଉ ଅଛି ବା କ'ଣ ? ପାଠ ଦି'ଅକ୍ଷର ପଢ଼ିଲେ, ଯଦି କୋଉଠି ଲାଗିଲୁଗି ଯାଉ ନିଜ ପେଟ ନିଜେ ପୋଷିପାରିବୁ ।

ବୀରୁର ଏ କାନରେ ପଶି ସେ କାନରେ ବାହାରିଗଲା ତା' ବୋଉର କଥା । ତଥାପି ସେ ସ୍କୁଲକୁ ଗଲା, ଅ ଆ ଲେଖିଲା, ଅଙ୍କ କଷିଲା । ଛ' କ୍ଲାସ୍‌ରେ ପଢୁଥିଲାବେଳେ ତା' ଜୀବନରେ ଗୋଟେ ନୂଆ ଅଧ୍ୟାୟ ଯୋଡ଼ାହେଲା । ଇଂରାଜୀ ଉଚ୍ଚାରଣ ଜମାରୁ ପଶିଲା ନାହିଁ ତା' ପାଟିରେ । ବଇଁଶୀ ମାଷ୍ଟ୍ରେ ସବୁ କ୍ଲାସ୍‌ରେ କାନମୋଡ଼ିଲେ, ମାରଧର୍ କଲେ, ଗଧ ବୋଲି ଡାକିଲେ । ଦିନେ ମୋଟା ବେତରେ ସେ ଏମିତି ଗୋଗଛ ମାଡ଼ ମାରିଲେ ଯେ ବୀରୁ ବଇଁଶୀ ମାଷ୍ଟ୍ରଙ୍କ ହାତରୁ ବେତ ଛଡ଼େଇ କଷିଦେଲା ଓଲଟି ଦି' ପାହାର ଓ ପବନ ବେଗରେ ଧାଇଁ ପଳାଇଲା ସ୍କୁଲହତାରୁ । ତା' ପରଠୁଁ ସେ ଆଉ ସ୍କୁଲ ଦୁଆର ମାଡ଼ି ନାହିଁ ।

ପିଲାଳିଆମି କଟିଗଲା ପରେ 'କ'ଣ କରିବି' 'କ'ଣ କରିବି' ବୋଲି ମନେମନେ ଭାଳିହେଲା ବୀରୁ । ସେତେବେଳକୁ ତ ସେ ପାଠ ହୁଡ଼ିସାରିଥିଲା ସାରାଜୀବନପାଇଁ । କିଏ କହିଲା, ମାଛ ଚାଷ କର ତ କିଏ କହିଲା କୁକୁଡ଼ାଚାଷ କର । କିଏ ପୁଣି କାନରେ ଫୋଡ଼ିଲା ଦୁଧିଆଳୀ ଗାଇ ଲାଭଦାୟକ । ବୀରୁ ସମସ୍ତଙ୍କ କଥା ଶୁଣିଲା, ହେଲେ କାହା କଥାରେ ଭାସିଗଲା ନାହିଁ । ଛୋଟମୋଟ ବେପାର କରିବା କଥାଟା ତା' ମନକୁ ପାଇଲା । ସେତେବେଳକୁ ଅଲ୍ଲୀପୁର ଛକରେ ଦି'ଟା ଚା'ଦୋକାନ ଓ ଗଣ୍ଡେ ଛ'ଟା ପାନଦୋକାନ ଖୋଲି ସାରିଥିଲା । କେମିତି କେଜାଣି ତା' ମୁଣ୍ଡରେ ପଶିଲା ଆଳୁପିଆଜ ବେପାର କଥା । ଜମି ଦି'ପା ବନ୍ଧକ ଦେଇ ଦୋକାନଦାରି ଆରମ୍ଭ କଲା । ବେପାରବଣିଜରେ ଦି' ପଇସା ଲାଭ ମିଳେ ବୋଲି ସେ ଶୁଣିଥିଲା, ଜାଣି ନ ଥିଲା । ପ୍ରତିଦିନ ରାତିରେ ଦୋକାନ ବନ୍ଦ ବେଳକୁ ଟଙ୍କାପଇସା ହିସାବ କଲାବେଳେ ସେ ନିଜଭିତରେ ପୁଲକିତ ହେଉଥିଲା ଓ ତା'ର ଆତ୍ମବିଶ୍ୱାସ ବଢ଼ି ବଢ଼ି ଯାଉଥିଲା ।

ଏହି ସମୟ ଭିତରେ ତାଙ୍କ ଗାଁରେ ଗୋଟେ ନୂଆଘଟଣା ଘଟିଲା । କଲେଜରେ ପଢୁଥିବା ତା' ସାଙ୍ଗମାନେ ଖରାଛୁଟିରେ ଗାଁକୁ ଆସି ଗୋଟେ ଡ୍ରାମା କରିବାପାଇଁ ସ୍ଥିରକଲେ । କେତେଥର ମିଟିଂ ବସିଲା ଗାଁ ପ୍ରାଇମେରୀ ସ୍କୁଲରେ । ମୁରବିମାନଙ୍କ କାନକୁ ବି କଥା ଗଲା । ଗାଁ ପିଲାଏ ଯଦି କିଛି ଗୋଟେ କରିବାକୁ ଚାହୁଁଛନ୍ତି, କରନ୍ତୁ– ଆପତ୍ତି କଲେ ନାହିଁ ମୁରବିଗଣ । ଗାଁ ପିଲାମାନେ ହସରେ କୁରୁଳିଲେ ।

ଡ୍ରାମାର ସବୁଠାରୁ ବଡ଼କଥା ହେଲା ନାଟମାଷ୍ଟର । କେଉଁ ମାଷ୍ଟର ଆସିଲେ ରିହର୍ସାଲ ଭଲହେବ, ଡ୍ରାମା ଦେଖିଲାଭଳି ହେବ, ସେ କଥାଟି ପ୍ରଥମେ କାହାରି ମନରେ ନ ଥିଲା । ଡ୍ରାମାହେବା କଥା ଠିକ୍ ହୋଇଗଲା ପରେ ମାଷ୍ଟର ଖୋଜା

ଚାଲିଲା । ଅଲ୍ଲୀପୁରରେ କେହି ନାଟ ମାଷ୍ଟର ନ ଥିଲେ । ମୁରବିମାନେ କହିଲେ, କନ୍ଦରପୁରର ଚଣ୍ଡମାଷ୍ଟରଙ୍କୁ ଡାକ । ସେ କୁଆଡ଼େ ଯୁବାବେଳେ 'ଅନ୍ନପୂର୍ଣ୍ଣା'ରେ ପାର୍ଟ କରୁଥିଲେ । ଟୋକାମାନଙ୍କର ପସନ୍ଦ କିନ୍ତୁ ଥିଲା ଅଲଗା । ସେମାନେ ଚାହିଁଲେ ନୂଆ ମାଷ୍ଟର, ଯିଏ କି ଫିଲ୍ମ ଷ୍ଟାଇଲ୍‌ରେ ଡାଇରେକ୍‌ସନ ଦେଇପାରୁଥିବେ । ଚମ୍ପାପୁରର ତପନ ଦାସଙ୍କୁ ନାଟମାଷ୍ଟର ଭାବରେ ମନୋନୀତ କରାଗଲା ।

ଗାଁ ପ୍ରାଇମେରୀ ସ୍କୁଲରେ ରିହର୍ସାଲ ଆରମ୍ଭ ହେଲା । ସଞ୍ଜପହରରୁ ଯୋଉ ରିହର୍ସାଲ୍ ଚାଲିଲା ଯେ ଚାଲିଲା ଅଧରାତିଯାଏ । ବୀରୁ ସାନ୍ତରା' ଦୋକାନରୁ ଫେରିଲାବେଳକୁ ପ୍ରାଇମେରୀ ସ୍କୁଲଆଡ଼କୁ ମୁହେଁଇଲା । ଡ୍ରାମା, ଯାତ୍ରାଦେଖିବା ତା'ର ଗୋଟେ ନିଶା ଥିଲା ଖୁବ୍ ପିଲାବେଳୁ । ଆଖପାଖରେ କେଉଁଠି ଯାତ୍ରାହେଲେ ତା'ର ଖବର ଆଗେ ବାଜୁଥିଲା ବୀରୁ କାନରେ । ଇମିତି କୋଉ ଅପେରାପାର୍ଟି ଓଡ଼ିଶାରେ ନାହିଁ, ଯାହାର ଯାତ୍ରା ବୀରୁ ଦେଖି ନ ଥିବ । ପଚାଶ ଖଣ୍ଡ ବିଲ ଡେଇଁ ଚାଲିଚାଲି ଯିବାକୁ ପଡ଼ିଲେ ବି ସେ ପରବାୟ କରିବ ନାହିଁ, ଯାତ୍ରା ଦେଖିବ ହିଁ ଦେଖିବ । ଲଗାତର ରାତିଅନିଦ୍ରା ହୋଇ ଯାତ୍ରା ଦେଖିବାରେ ତା'ପରି ଧୁରନ୍ଧର କେହି ନ ଥିବ ଦଶଖଣ୍ଡ ମୌଜାରେ । ଦିନେ ଦୁଇ ଦିନ ଡାଇଲଗ୍ ଶୁଣିଲାପରେ, ତାକୁ ପୁରୁଣା ନିଶା ଘାରିଲା । ଡ୍ରାମାରେ ପାର୍ଟ ନବା ପାଇଁ ତା'ର ଭାରି ଇଚ୍ଛା ହେଲା । ମନକଥା କାହାକୁ କହିବ, ଭାବୁଭାବୁ ନିଜେ ଖୋଦ ଡ୍ରାମାର କାର୍ପଟଦାର ମାଗୁଣି ଆସି ପହଞ୍ଚିଗଲା ତା' ଦୋକାନରେ । କହିଲା, ''ଭାଇ ବୀରୁ, ତୋ'ପରି ଯାତ୍ରାପ୍ରେମୀ ଆଉ କିଏ ଅଛି ଭଲା ଆମ ଅଞ୍ଚଳଯାକରେ ? ଡ୍ରାମା, ଯାତ୍ରା– ସବୁ ଏକାକଥା । ତୁ ସାହାଯ୍ୟ ନ କଲେ ଡ୍ରାମା ହୋଇପାରିବ ନାହିଁ । ତପନ ମାଷ୍ଟର ପାଇଁ ଦିନକୁ ଶହେ ଟଙ୍କା ଖର୍ଚ୍ଚ ହଉଚି । ଏତେ ପଇସା ଆସିବ କୁଆଡୁ ?'' ବୀରୁ ତ ମଉକା ଅପେକ୍ଷାରେ ଥିଲା, ଟଙ୍କାପଇସା ଦବାପାଇଁ ରାଜିହେଲା । ହେଲେ ସର୍ତ୍ତ ରଖିଲା, ସେ ନିଜେ ଗୋଟେ ପାର୍ଟ କରିବ ଡ୍ରାମାରେ ।

ବୀରୁର ପାଠଶାଠ କଥା କାହାକୁ ବା ଅଜଣା ? ସେ ବା କି ପାର୍ଟ କରିବ ? ଦୋକାନ ବନ୍ଦ କରି ଫେରିଲାବେଳକୁ ରିହର୍ସାଲ ବେଶ୍ ଆଗେଇ ଯାଇଥିବ । ସେ ପାର୍ଟ ନେଲେ 'ଦାସେ ଅଇଲେ ମୂଳରୁ ଗା' ପରି କଥା ହେବ । ତେବେ ବୀରୁ କଥା ବଡ଼ ଉଦାରତାର ସହିତ ବିଚାରକଲେ ଗାଁ ପିଲାଏ । କଳାକାର ନ ହେଲେ ବି ଟୋକାଟା କଳାପ୍ରେମୀ ତ ! ମାଷ୍ଟ୍ରଙ୍କ କାନକୁ କଥା ଅଣାଗଲା । ପରେପରେ ବୀରୁକୁ ସମନ୍‌ଜାରି ହେଲା ଆଖଡ଼ାକୁ ଆସିବାପାଇଁ ।

ବୀରୁକୁ ଦେଖୁଦେଖୁ ତପନ ମାଷ୍ଟ୍ରେ ଖୁସି ହୋଇଗଲେ । ଡେଙ୍ଗାପିଲା, ବହଳ କେଶ । ଗଜରା ନିଶ । ବେଶ୍ ହୃଷ୍ଟପୁଷ୍ଟ ଶରୀର । ଡ୍ରାମାପାଇଁ ଯାହାକୁ କହନ୍ତି ଷ୍ଟେଜ୍‌ଫିଟିଂ ଚେହେରା । ପରୀକ୍ଷାମୂଳକ ଭାବରେ ଗୋଟେଯୋଡ଼େ ଡାଇଲଗ୍ କହିବାପାଇଁ

ତପନ ମାଷ୍ଟ୍ରେ ନିର୍ଦ୍ଦେଶଦେଲେ ବୀରୁକୁ । ବୀରୁ ପାଟିରୁ ଡାଇଲଗ୍ ବାହାରିଲାକ୍ଷଣି କିନ୍ତୁ ମାଷ୍ଟ୍ରେ ବଡ଼ ନିରୁତ୍ସାହିତ ହେଲେ । ମନେମନେ ଭାବିଲେ ଟୋକାଟା ଖଦୁଆ ମାରିଶ । ତେବେ ବୀରୁକୁ ଖୁବ୍ ଛୋଟ ପାର୍ଟଟେ ଦବାପାଇଁ ସେ ଅମଙ୍ଗ ହେଲେ ନାହିଁ ।

ଯୋଗକୁ ଡ୍ରାମାରେ ଜିଲ୍ଲା ମାଜିଷ୍ଟ୍ରେଟ୍ ଚରିତ୍ରଟେ ଥିଲା । ମାତ୍ର ଗୋଟିଏ ସିନ୍ । ଦି' ଚାରିପଦ ଡାଇଲଗ୍ । କିନ୍ତୁ ଜିଲ୍ଲା ମାଜିଷ୍ଟ୍ରେଟ୍ ମାନେ ଚେହେରା ସେମିତି ହୋଇଥିବା ଦରକାର । ଉଚ୍ଚା ଆଡ଼ମ୍ବର ଚେହେରା ନ ଥିଲେ, ଜିଲ୍ଲା ମାଜିଷ୍ଟ୍ରେଟ୍ ବୋଲି ଦର୍ଶକମାନେ କ'ଣ ପସନ୍ଦ କରିବେ ? ତପନ ମାଷ୍ଟ୍ରେ କହିଲେ, ବୀରୁ ଜିଲ୍ଲା ମାଜିଷ୍ଟ୍ରେଟ୍ ହବାପାଇଁ ଏକଦମ୍ ଫିଟ୍ । ଡାଇଲଗ ପାଇଁ ତାକୁ କଠିନ ପରିଶ୍ରମ କରିବାକୁ ପଡ଼ିବ । କିନ୍ତୁ ଚେହେରା ଓ ଚାହାଣି, ଉଭୟରେ ବୀରୁ ନିଆରା ।

ସ୍କୁଲର କେଉଁ ପରୀକ୍ଷାରେ ଫାଷ୍ଟ ହୋଇଥିଲେ କଦାପି ଏତେ ଖୁସି ହୋଇ ନ ଥାନ୍ତା ବୀରୁ । ତପନ ମାଷ୍ଟ୍ରଙ୍କ ହଁ ପଦ ଶୁଣି ସେ ନିଜ କାନକୁ ବିଶ୍ୱାସ କରିପାରିଲା ନାହିଁ । ଦି'ଟା ପର ଲାଗିଗଲା କି ଆଉ ତା' ଦିହରେ । ଅସୀମ ଆକାଶରେ ସେ ଡେଣାଝାଡ଼ି ଉଡ଼ିଲା ମନେମନେ । ପୁଣି ଜିଲ୍ଲା ମାଜିଷ୍ଟ୍ରେଟ୍ ପାର୍ଟ । ଚାକରପୂଜାରୀ କି ଟହଲିଆ ପାର୍ଟ ମିଳିଥିଲେ ସେ କଦାପି ମଙ୍ଗି ନ ଥା'ନ୍ତା, ବରଂ ପାର୍ଟ ନ କରିଥା'ନ୍ତା ନାହିଁ ।

ବୀରୁର କିନ୍ତୁ ଇଚ୍ଛା ଥିଲା ହୀରୋ ହବାକୁ । ଯାତ୍ରା ଦେଖିଲାବେଳେ କେତେଥର ତା' ମନ ବଳିଥିବ ହୀରୋ ହବା ପାଇଁ । କିନ୍ତୁ ହୀରୋପାର୍ଟ ତାକୁ ଏତେଶୀଘ୍ର ମିଳିବା ସହଜ ନୁହେଁ ବୋଲି ସେ ଜାଣିଥିଲା । ଜିଲ୍ଲା ମାଜିଷ୍ଟ୍ରେଟ କ'ଣ ହୀରୋ ନୁହେଁ କି ? ସୁଟ୍-ଟାଏ ପିନ୍ଧିବାକୁ ବୀରୁ ମନରେ ଗୋଟେ ପୁରୁଣା ଅଭିଳାଷ ଥିଲା । ହୀରୋ ହୋଇଥିଲେ ସେ ସୁଟ୍ ପିନ୍ଧିଥାନ୍ତା, ଜିଲ୍ଲା ମାଜିଷ୍ଟ୍ରେଟ୍ ହେଲେ ବି ସୁଟ୍ ପିନ୍ଧିବ । ପିଲାଦିନୁଁ ତାଙ୍କ ମେଲାରେ ଝୁଲୁଥିବା କୋଟ୍‌ପିନ୍ଧା ଫଟୋଟେ ସେ ଦେଖିଆସୁଥିଲା । ସେ ଫଟୋଟି ଥିଲା ତା' ଜେଜେବାପାଙ୍କର । ଗୁମାସ୍ତା ବେଳର ତାଙ୍କର ସେ ଫଟୋ ବୋଲି ବୋଉ କହୁଥିଲା । ଧୋତି ସାଙ୍ଗରେ ଅବଶ୍ୟ କୋଟ୍ ପିନ୍ଧିଥିଲେ ଜେଜେବାପା । ସେହି ଫଟୋକୁ ଦେଖି ଦେଖି କୋଟ୍ ପ୍ରତି ଗୋଟେ ଅହେତୁକ ଆକର୍ଷଣ ଆସିଯାଇଥିଲା ବୀରୁର ମନଭିତରେ । ଡ୍ରାମା ଜରିଆରେ ହେଲେ ବି ସେହି ଅନ୍ତରଙ୍ଗ ଇଚ୍ଛାଟି ଫଳବତୀ ହେବାକୁ ଯାଉଥିବାରୁ ତା' ପାଦ ଭୂଇଁରେ ଲାଗୁ ନ ଥିଲା ।

ଖୁସିଖବରଟା ଜଣାଇବାପାଇଁ ବୀରୁ ପ୍ରଥମେ ଚାଲିଲା ଗାଜିପୁର ସନାସାର୍‌ଙ୍କ ଘରକୁ । ସନାସାର୍ ତାକୁ ପାଠ ପଢ଼ାଉଥିଲେ ପ୍ରାଇମେରୀ ସ୍କୁଲରେ । ଭାରି ଗେହ୍ଲା କରୁଥିଲେ ପିଲାଟିବେଳେ । ରିଟାୟାର୍ଡ଼ କରି ସେ ଘରେ ରହୁଥିଲେ । ତାଙ୍କ ସାନଝିଅ ମାଳ ବି ଖୁବ୍ ଆଦର କରୁଥିଲା ତାକୁ । ଖବରଟା ସନାସାର୍‌ଙ୍କୁ ଦବା ଯେତେ ଜରୁରୀ ନ ଥିଲା, ମାଳକୁ ଡ୍ରାମା କଥା କହିବାଟା ଥିଲା ତା'ଠାରୁ ବଳି ଗୁରୁତ୍ୱପୂର୍ଣ୍ଣ ।

ବୀରୁକୁ ଖୁବ୍ ଭଲ ଲାଗୁଥିଲା ମାଳ । ଭାରି ହସକୁରୀ ଝିଅଟେ । କଥାକଥାକେ ହସିହସି ଗଡ଼ିଯାଉଥିଲା । ଏବେ ଅବଶ୍ୟ କେତେ ବଦଳିଗଲାଣି । ଆଗପରି ଆଉ ମିଳାମିଶା କରେ ନାହିଁ । ଖଣ୍ଡେ ଦୂରରେ ଠିଆହୋଇ ଆସ୍ତେକରି ପଦେଅଧ କ'ଣ କହେ । ପାଦରେ ଚରକି କାଟେ ଠିଆ ହୋଇଥିବା ଜାଗାରେ । ଫିସ୍‌ଫିସ୍ କଥା ତା'ର ବୁଝିହୁଏନି । ଅତି ସନ୍ତର୍ପଣରେ ଚା'କପ୍‌ଟେ ବଢ଼େଇଦିଏ । ତା' ବାହାଘର ପାଇଁ ଚିନ୍ତିତ ବୋଲି ସନାସାର୍ କହୁଥିଲାବେଳେ ବୀରୁର ଛାତି ଦାଉଁପରି ହୋଇଯାଏ ।

ବେଳେବେଳେ ମାଳର ଛବି ପଶିଆସେ ବୀରୁର ମନଭିତରକୁ । ସେ ମାଳ ବିଷୟରେ କାହିଁ କେତେ କଥା ଭାବିଯାଏ । ଅନ୍ୟମନସ୍କ ହୋଇପଡ଼େ ହଠାତ୍ । ଜହ୍ନରାତି ତାକୁ ଘାରେ । ହାତଠାରେ ଦୂର ତାଳବଣ । ବଣମଲ୍ଲୀ ଗନ୍ଧରେ ବିଭୋର ହୋଇପଡ଼େ ତା' ଚାରିପାଖର ପୃଥିବୀ । ସେତେବେଳେ ସେ ଗୁଣୁଗୁଣୁ ହୋଇ ଗୀତ ଗାଏ । ଖୁବ୍ ଜୋର୍‌ରେ ସାଇକେଲ୍ ଚଳାଏ ।

ବୀରୁ ଡ୍ରାମାରେ ପାର୍ଟ କରୁଥିବା ଶୁଣି ସନାସାର୍ ଖୁସିହେଲେ । ମାଳ ଡ୍ରାମା ଦେଖିଯିବ ବୋଲି ପ୍ରତିଶ୍ରୁତି ଦେଲା । ତା'ପରେ ଯାଇ ବୀରୁର ସାଇକେଲ୍ ଗାଁ-ମୁହାଁ ଛୁଟିଲା ।

ଡ୍ରାମାରେ ପାର୍ଟ ନବା ପରଠାରୁ ସହଳ ଦୋକାନ ବନ୍ଦ କରିଦେଉଥିଲା ବୀରୁ । ଆଖଡ଼ାରେ ହାଜର୍ ହୋଇଯାଉଥିଲା ଠିକ୍ ସମୟରେ । ଚାରି ଛ'ପଦ ଡାଇଲଗ୍‌କୁ ମଧ ସକାଳେ ସଞ୍ଜେ ଘୋଷୁଥିଲା । ଦୁଇଟି ଇଂରାଜୀ ଶବ୍ଦ ଡାଇଲଗ୍ ଭିତରେ ରହିଯାଇଥିବାରୁ ତାକୁ ବଡ଼ ଅଡୁଆ ଲାଗୁଥିଲା । ତଥାପି ନିଜ କୋସିସ୍‌ରେ ସେ ମଜ୍ଜି ରହୁଥିଲା । ଥରେ ଭାରି ଗୋଟେ ଅଘଟଣ ଘଟିଲା ରିହର୍ସାଲବେଳେ । ଇଂରାଜୀ ଉଚ୍ଚାରଣ ସେ ଠିକ୍ ଭାବରେ କରି ନ ପାରିବାରୁ ଡ୍ରାମାରେ ହୀରୋଇନ୍ ପାର୍ଟ କରୁଥିବା ଈଷତ୍ ମାଇଚିଆ ମଙ୍ଗୁ ସାହୁ ଫିକ୍ କରି ହସିଦେଲା । କଥାଟା ଭାରି ବାଧିଲା ବୀରୁକୁ । ଅନ୍ୟ କେଉଁ ପରିସ୍ଥିତି ହୋଇଥିଲେ ସେ ମଙ୍ଗୁ ସାହୁ ଗାଲରେ ଚାରିଟା ବ୍ରହ୍ମଚାପୁଡ଼ା କଷି ଦେଇଥା'ନ୍ତା । ହେଲେ ସେ ଉଁ କି ଚୁଁ ହେଲା ନାହିଁ । ଚାହୁଁ ଚାହୁଁ ତପନମାଷ୍ଟ୍ରେ ତା' ଉପରେ ମାତ୍ରାଧିକ ବିରକ୍ତ ହୋଇ ତା' ଅଣ୍ଟାକୁ ମାରିଲେ ଗୋଇଠାଏ ଯେ ସେ ପାଞ୍ଚହାତ ଦୂରରେ ଛିଟିକି ପଡ଼ିଲା । ସମସ୍ତେ ଠୋ-ଠୋ ହୋଇ ହସିଉଠିଲେ । ତଥାପି ବୀରୁ ଧୈର୍ଯ୍ୟ ହରାଇଲା ନାହିଁ କି ବଇଁଶୀ ସାର୍‌ଙ୍କ ହାତରୁ ବେତ ଛଡ଼ାଇ ଓଲଟି ଦି'ପାହାର ଦବାର ଭୁଲ୍‌କୁ ସେ ଦୋହରାଇଲା ନାହିଁ । ସେ ଜାଣିଥିଲା, ଡ୍ରାମା ମାଷ୍ଟ୍ରେ ସ୍କୁଲମାଷ୍ଟ୍ରଙ୍କଠାରୁ କାହିଁ କେତେଗୁଣ ବଳୀୟାନ୍ । ସତସତିକା ହୀରୋଇନ୍‌ଙ୍କ ଅଣ୍ଟାରେ ନାଟ ମାଷ୍ଟରମାନେ ଗୋଇଠା ମାରିବାର ନଜିର ଅନେକ ବୋଲି ସେ ଆଗକୁ ଶୁଣିଥିଲା ।

ଡ୍ରାମା ସହିତ ଘନିଷ୍ଠତା ବଢ଼ିବା କାରଣରୁ ବୀରୁ ସାନ୍ତରାର ବେପାର କ୍ରମେ ମାନ୍ଦା ପଡ଼ିଆସିଲା । ପୁରୁଣାବଜାରକୁ ଦୌଡ଼ାଦୌଡ଼ି କରି ଠିକ୍ ସମୟରେ ମାଲ୍

ବୋହିଆଣିବା ଆଉ ନୋହିଲା । ଗରାଖମାନେ ଜିନିଷ ନ ପାଇ ଫେରିଲେ । ଖୁଚୁରା ବେପାରୀଏ ବସ୍ତାଏ ଜାଗାରେ ଅଧବସ୍ତେ ଆଳୁପିଆଜ ଖରିଦକରି ମୁହଁ ଫଣଫଣ କଲେ । ପିଲା ଦି'ଟାଙ୍କ ଉପରେ କାମର ଚପଟ ବଢ଼ିଯିବାରୁ ସେମାନେ ଚିଡ଼ିଚିଡ଼ା ହୋଇଗଲେ । ଭିଡ଼ କମିଯିବାରୁ ଝଙ୍କାବରଗଛମୂଳ ଖାଁ ଖାଁ ଡାକିଲା ।

ପୁଅ ଡ୍ରାମାପାଇଁ ପାଗଳ ବୋଲି ଜାଣି ବୀରୁର ବୋଉ ବୀରୁକୁ ଯେତିକି ତାଗିଦ୍ ନ କଲା, ଗାଁ ଲୋକଙ୍କୁ ତା'ଠୁ ଅଧିକ ଗାଳିଦେଲା । ଗାଁ ଟୋକାଙ୍କୁ ବାରଜାତିକା ବୋଲି କହିବୁଲିଲା । ମୁରବିମାନଙ୍କ ଚଉଦପୁରୁଷର ଗୋହି ଖୋଳିଲା । ବୀରୁ ଉପରେ କିନ୍ତୁ ତା' ବୋଉ ଗାଳିର କୌଣସି ପ୍ରଭାବ ପଡ଼ିଲା ନାହିଁ । ଓଲଟି ସେ ନାଲିଆଖି ଦେଖାଇ କହିଲା ତା' ବୋଉକୁ ''ଖବରଦାର୍, ତୁ ଯେମିତି ସାଇପଡ଼ିଶା କି ମୋ ସାଙ୍ଗସାଥୀଙ୍କ ବିରୋଧରେ ଆଉ ପାଟି ନ ଖୋଲୁ । ନ ହେଲେ କଥା ଖରାପ ହେବ ।'' ପୁଅର ଖିଙ୍କାରିଲା ଭାଷା ଶୁଣି ବୁଢ଼ୀ ତୁନିପଡ଼ିଲା ।

ବୀରୁ ସାନ୍ତରା କ୍ରମେ ବେଶି ବେଶି ନିଜ ଚେହେରା ବିଷୟରେ ଚିନ୍ତା କରିବାକୁ ଲାଗିଲା । ବାରମ୍ବାର ଆଇନାରେ ନିଜ ମୁହଁ ଦେଖିଲା । ଦିନରେ ପାଞ୍ଚଥର ମୁଣ୍ଡ କୁଣ୍ଡେଇଲା । ଦରକାର ନ ଥାଇ ନିଶରେ ହାତ ମାରିଲା । ନିଜର ସ୍ୱାଭାବିକ ଚାଲି ବଦଳାଇ ନୂଆ ଷ୍ଟାଇଲ୍‌ରେ ଚାଲିବା ଆରମ୍ଭ କଲା । ସାରା ଗାଁଟା ତାକୁ ଲାଗିଲା ଯେମିତି ଗୋଟେ ବଡ଼ ଷ୍ଟେଜ୍ । କିନ୍ତୁ ତା' ହାବଭାବ ଯେ ଅନ୍ୟମାନଙ୍କ ପାଇଁ ଉପହାସର ଉପାଦାନ ପାଲଟିଗଲାଣି, ସେକଥା ବୁଝିବାକୁ ତା'ର ତର ନ ଥିଲା ।

ଗାଁ ଝିଅବୋହୂଙ୍କ ଚର୍ଚ୍ଚାର ବଳୟ ଭିତରେ ଏବେ କେନ୍ଦ୍ରବିନ୍ଦୁ ପାଲଟି ଯାଇଥିଲା ବୀରୁ ସାନ୍ତରା । ତା' ଚାଲିକୁ ଦେଖି ଗାଁ ମାଇପେ ନାକ ଟେକୁଥିଲେ । ଗାଁ ଝିଅମାନେ ତା' ମୁଣ୍ଡ କୁଣ୍ଡେଇବା ଷ୍ଟାଇଲ୍ ଦେଖି ହସିହସି ବେଦମ୍ ହେଉଥିଲେ । ହେଲେ, ବୀରୁ ସାନ୍ତରାଠି କିଛି ବି ପରିବର୍ତ୍ତନ ଦେଖାଯାଉ ନ ଥିଲା ।

ବୀରୁ ଦିନେ ଦେଖିଲା କଳାମେଘର ଛବି କିଏ ଯେମିତି ଆଙ୍କି ଦେଇଛି ଆକାଶ ଛାତିରେ । ସେ ଜାଣିଲା, ରଜ ପାଖେଇ ଆସିଲାଣି, ଡ୍ରାମାହବା ଆଉ ଡେରି ନାହିଁ । ଉପରବେଳା ଝିପିଝିପି ବର୍ଷାରେ ଗାଁ ଦାଣ୍ଡରେ ଧୂଳିଫୁଲ ଫୁଟିଲା । ମାଟିଗନ୍ଧରେ ମହକିଲା ଗାଁ । ସଂକୋଚ ଛାଡ଼ି ମେଘମାନେ ପୁଣି ଦୂରପାହାଡ଼ର ବାହୁବନ୍ଧନରେ ଧରାଦେଲେ । ବର୍ଷାଧୁଆ ଗଛମାନେ ସୁତରା ଦିଶିଲେ, ନଈତୁଠରୁ ଫେରୁଥିବା ନହୁଲୀମାନଙ୍କ ପରି ।

ପହିଲି ରଜ ଦିନ ଡ୍ରାମା । ପିଠାପଣାରେ ରୁଚି ନ ଥିଲା ବୀରୁର । ସଞ୍ଜ ନଇଁବାକୁ ସେ ଅପେକ୍ଷା କରିଥିଲା । ବର୍ଷା ନ ଥିଲା ସେଦିନ । ବର୍ଷାକୁ ରୋକିବାପାଇଁ ବହୁଆଗରୁ ମା' ତାରିଣୀଙ୍କ ପାଖକୁ ଅଧଡଜନେ ନଡ଼ିଆ ପଠାହୋଇସାରିଥିଲା । ସଞ୍ଜ ପରେ

ପରେ ଅଭିନେତାମାନେ ଗ୍ରୀନ୍‌ରୁମ୍ ଭିତରେ ଆବଦ୍ଧ ହୋଇଗଲେ । ସେତେବେଳକୁ ଷ୍ଟେଜ୍ ବନ୍ଧା କାମ ସରିଗଲାଣି, ମାଇକ୍ ଟେଷ୍ଟିଂ ଚାଲିଥାଏ ଯାହା । ଆଖପାଖ ଗାଁରେ ପ୍ରଚାର ଶେଷକରି ଗମ୍ଭୁ ମିଆଁର ରିକ୍ସା ଫେରିସାରିଥାଏ ।

ପ୍ରଥମେ ହୀରୋ, ହୀରୋଇନ୍‌ଙ୍କ ମୁହଁରେ ପାଉଡର ବୋଳାଗଲା, ପରେପରେ ଅନ୍ୟମାନଙ୍କ ମୁହଁରେ । କାହାକୁ ଶାଢ଼ି ପିନ୍ଧାଗଲା ତ କାହାକୁ ପ୍ୟାଣ୍ଟ, କାହାକୁ ପୁଣି ଧୋତି, କାହା ନାକତଳେ ନିଶ ଲଗାଗଲା ତ କାହାର ଗଜରା ନିଶକୁ କାଟି ସାଫ୍ କରାଗଲା । ବୀରୁ ଅପେକ୍ଷା କରିଥିଲା, କେତେବେଳେ ତା' ପାଳି ପଡ଼ିବ । ତା'ପୂର୍ବରୁ ସେ ପେଣ୍ଟରବାବୁକୁ ପଚାରି ସାରିଥିଲା, ତା' ପାଇଁ ସୁଟ୍‌ଟାଏ ଆସିଛି କି ନାହିଁ । ପେଣ୍ଟରବାବୁ କହିଥିଲା, ''ବ୍ୟସ୍ତ ହବାର କିଛି ନାହିଁ । ଅର୍ଖ ନୂଆ ସୁଟ୍‌ଟାଏ ଅଣାଯାଇଛି ଖାସ୍ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ପାଇଁ ।'' ବୀରୁ ବିହ୍ୱଳିତ ହେଲା । ଅଳ୍ପ ସମୟ ଭିତରେ ତା' ମୁହଁରେ ପାଉଡର ବୋଳାହେଲା । ତା' ଅରିଜିନାଲ ନିଶଟି ବେଶ୍ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଥିବାରୁ ନକଲି ନିଶଯୋଡ଼ିବା ଦରକାର ନାହିଁ ବୋଲି ପେଣ୍ଟର୍‌ବାବୁ ସଫେଇଦେଲା । ପାଉଡ଼ର ବୋଳା ସରିଛି କି ନାହିଁ, ବୀରୁ ପ୍ୟାଣ୍ଟ, କୋଟ୍ ପିନ୍ଧି ପକାଇଲା । ଟାଏ ଭିଡ଼ିବା କୌଶଳ ତାକୁ ଜଣା ନ ଥିବାରୁ କିଛି ସମୟ ଅପେକ୍ଷା କଲାପରେ ପେଣ୍ଟର୍‌ବାବୁ ଆଦବକାଏଦାରେ ତା' ବେକରେ ଟାଏ ଭିଡ଼ିଦେଲା । ନିଜ ଉଦ୍ୟମରେ ସେ ବୁଟ୍‌ହଳେ ଆଗରୁ ଯୋଗାଡ଼ କରିସାରିଥିଲା ।

ପେଟିଂପତ୍ର ସରିଲାବେଳକୁ ରାତି ଦଶଟା ବାଜିଗଲା । ସଉପ, ସତରଞ୍ଜି, ହେଁସ ଆଦି ପାରି ଗାଁ ଲୋକେ, କି ସ୍ତ୍ରୀ କି ମର୍ଦ୍ଦ, ପର୍ଦ୍ଦା ଉଠିବାକୁ ଅପେକ୍ଷା କରି ବସିଲେ । ଛୋଟପିଲାମାନେ ଡ୍ରାମା ପରି କ'ଣ ଗୋଟେ ବିଚିତ୍ର ଚିତ୍ର ଦେଖିବା ନିଶାରେ ଢୁଳେଇବା ପ୍ରାୟ ଭୁଲିଯାଇଥିଲେ । ତଥାପି ଡ୍ରାମା ଆରମ୍ଭ ହୋଇପାରୁ ନ ଥିଲା । ଅସଲ କଥାହେଲା ଅଲ୍ଲୀପୁର ମୁକାମରେ ମଞ୍ଚସ୍ଥ ହେବାକୁ ଯାଉଥିବା ପ୍ରଥମ ଡ୍ରାମାଟି ଯୁବସରପଞ୍ଚ ରାଜେନ୍ଦ୍ର ମହାଳିକଙ୍କଦ୍ୱାରା ଆନୁଷ୍ଠାନିକଭାବେ ଉଦ୍‌ଘାଟିତ ହେବାର ଥିଲା । କିନ୍ତୁ ଦୂର ଗାଁରେ ଏକ ନବଦମ୍ପତିଙ୍କ କଳହ ସମାଧାନ ପାଇଁ ଡକାଯାଇଥିବା ନିଶାପରୁ ଫେରିବାରେ ତାଙ୍କର ବିଳମ୍ବ ହେଉଥିଲା । କାମଚଳା ଅତିଥିପାଇଁ ସେ ଅଞ୍ଚଳର ଏକମାତ୍ର ଯୋଗ୍ୟବ୍ୟକ୍ତି ମାଇନର୍ ସ୍କୁଲ୍‌ର ହେଡ୍‌ମାଷ୍ଟରବାବୁ ବିନୟଭୂଷଣ ନାଥଶର୍ମା, ବି.ଏ., ବି.ଏଡ୍. ତାଙ୍କ ଚାକିରିକଲା ପୁଅ ପାଖରେ ପ୍ରବାସ କାଟୁଥିଲେ । ସୁତରାଂ ସମସ୍ତ ପ୍ରାକ୍-ପ୍ରସ୍ତୁତି ବୃତ୍ତାନ୍ତ ହେବାସତ୍ତ୍ୱେ ଡ୍ରାମା ଆରମ୍ଭ ହୋଇପାରୁ ନ ଥିଲା ।

ରାତି ଅଧ ହେଲେ ବି ଡ୍ରାମା ଆରମ୍ଭ ହେଲା, ଯୁବ-ସରପଞ୍ଚଙ୍କ ସଂକ୍ଷିପ୍ତ ଉଦ୍‌ବୋଧନୀ ପରେ ।

ଦୃଶ୍ୟ ପରେ ଦୃଶ୍ୟ ଗଡ଼ିଚାଲିଲା । କେତେବେଳେ ହାସ୍ୟରସ ତ କେତେବେଳେ କରୁଣରସ ଲହଡ଼ି ଭାଙ୍ଗିଲା ଷ୍ଟେଜ୍‌ସାରା । ତାହା ପୁଣି ସଂକ୍ରମିତ କଲା ବିଦଗ୍ଧ

ଦର୍ଶକମାନଙ୍କୁ । ତା' ରୋଲ୍ ପଡ଼ିବାକୁ ଆଗ୍ରହର ସହିତ ଅପେକ୍ଷା କରିଥିଲା ବୀରୁ ସାନ୍ତରା । କ୍ରମେ ସେ ଅଧୈର୍ଯ୍ୟ ହୋଇପଡୁଥିଲା । ଏଇ ତା' ପାର୍ଟ ପଡ଼ିବ କି, ପଡ଼ିବ କି ବୋଲି ଭାବିଲାକ୍ଷଣି ତା'ର ହୃତ୍‌ସ୍ପନ୍ଦନ ବଢ଼ିଯାଉଥିଲା । ତଥାପି ତା' ପାର୍ଟ ପଡୁ ନ ଥିଲା । ଦୁଇତିନୋଟି ସିଗ୍ରେଟ୍ ଟାଣିବା ସତ୍ତ୍ୱେ ସେ ନିଜ ଆଖିପତାର ଭାର ସମ୍ଭାଳି ପାରିଲା ନାହିଁ । ଗୋଟେ ଭଙ୍ଗା ଷ୍ଟୁଲ୍‌ରେ ବସି ଘୁମେଇ ପଡ଼ିଲା ।

ଯା' ଭିତରେ ଆକାଶରେ ଆକାଶେ ମେଘ ଛାଇ ହୋଇଗଲାଣି ବୋଲି କାହାକୁ ଜଣା ନ ଥିଲା । ଦୁଇଚାରିଟା ଘଡ଼ଘଡ଼ି ଶବ୍ଦ ସମଗ୍ର ବାତାବରଣକୁ ଚହଲେଇ ଦବାପାଇଁ ଥିଲା ଯଥେଷ୍ଟ । ତପନ ମାଷ୍ଟ୍ରେ ଚିନ୍ତିତ ହୋଇପଡ଼ିଲେ । ଭୋ'ର ହେବା ବି ଆଉ ଡେରି ନ ଥିଲା । ହଠାତ୍ ମାଷ୍ଟ୍ରେ ଉପସ୍ଥିତ ବୁଦ୍ଧିଟେ କାହୁଁ ପାଇଗଲେ । ସେ ଦୁଇଟି ଗୁରୁତ୍ୱହୀନ ଦୃଶ୍ୟ କାଟିଦେଇ ଶେଷଦୃଶ୍ୟର ଆୟୋଜନ କଲେ ତତ୍‌କ୍ଷଣାତ୍ ।

ମେଘମାନେ ଅଝଟିଆ ହେବାପୂର୍ବରୁ ନାଟକର ପରିସମାପ୍ତି ଘଟିଲା ।

ସକାଳ ବିଳମ୍ବିତ ହେଲାପର୍ଯ୍ୟନ୍ତ ବୀରୁ ଘରକୁ ନ ଫେରିବାରୁ ବୀରୁବୋଉ ଗାଁ ଦାଣ୍ଡେଦାଣ୍ଡେ ଚଣ୍ଡୀପରି ଧାଇଁଲା । ଷ୍ଟେଜ୍ ପାଖରେ ପହଞ୍ଚିଲାବେଳକୁ ସେଠି କୁଆଛୁଆଟେ ବି ଉଡୁ ନ ଥିଲା । ବଡ଼ ତାଲାଟିଏ ଝୁଲୁଥିଲା ଆଖଡ଼ା ଘରେ । ଦିନଯାଇ ରାତି ହେଲା, ଅଥଚ ବୀରୁର ଦେଖାଦର୍ଶନ ମିଳିଲା ନାହିଁ । ତା' ପରଦିନ... ତା' ପରଦିନ ବି ବୀରୁ ଘରକୁ ଫେରିଲା ନାହିଁ । ହପ୍ତେ ଗଲା, ଦି'ହପ୍ତା ଗଲା, ତଥାପି ପତ୍ତା ମିଳିଲା ନାହିଁ ବୀରୁର । ହୁଲିଆ ଜାରିହେଲା, ଏଫ୍.ଆଇ.ଆର୍. ଦିଆଗଲା ଥାନାରେ । ମାସେ ପରେ, ବୀରୁ ସାନ୍ତରା ଲାପତ୍ତା ବୋଲି ଥାନାରୁ ଖବର ଆସିଲା ।

ବୀରୁବୋଉ କାନ୍ଦି କାନ୍ଦି ତଣ୍ଟି ଫଟେଇଲା । ତା'ଘର ବୁଡ଼େଇଦେଲେ ବୋଲି କହି ଗାଁ ଲୋକଙ୍କୁ ଅଶ୍ରାବ୍ୟ ଭାଷାରେ ଗାଳିଦେଲା । ବାତୁଳୀ ପରି ଗାଁ ଗାଁ ବୁଲିଲା । ଦିନେ ତା' ଝିଅଜ୍ୱାଇଁ ଆସି ବୁଢ଼ୀକୁ ସାଙ୍ଗରେ ନେଇଗଲେ । ଗୁମାସ୍ତାଘର କବାଟରେ ପହିଲିବାର ତାଲା ଝୁଲିଲା ।

× × × ×

ବାଣୀବିହାରରୁ ଏମ୍.ଏ. ପାସ୍ କରି ଢେର୍‌ଦିନ ପରେ ଗାଁକୁ ଫେରିଲା ମାଗୁଣି । ଦିନେ ସଞ୍ଜବେଳେ ଗାଁ ମଝି ଦୋଳମଣ୍ଡପରେ ବସି, ସୁମତି ଗଣନାଟ୍ୟରେ ବୀରୁ ରାଜା ପାର୍ଟ କରୁଥିବା ସେ ଦେଖିଛି ବୋଲି କହିବାରୁ, ତା' ସାଙ୍ଗମାନେ ସବୁ ଚକିତ ହେଲେ ସିନା, କେହି ବିଶ୍ୱାସ କରିପାରିଲେ ନାହିଁ କଥାଟାକୁ । କିନ୍ତୁ ଖଣ୍ଡଗିରି ଛକରେ ମାଗୁଣି ଦେଖିଥିବା ଯାତ୍ରାର ବିକ୍ରମାଦିତ୍ୟ ଯେ ବୀରୁ ଛଡ଼ା ଆଉ କେହି ହୋଇଥିବ, ସେକଥା ବିଶ୍ୱାସ କରିବା ତା' ପାଇଁ ପ୍ରାୟ ଅସମ୍ଭବ ଥିଲା ।



# ବୁଦ୍ଧଦ୍ୱ ଆଡ଼କୁ

ବିଫଳତାର ଅନ୍ୟ ନାଆଁ କ'ଣ ଜିତେନ୍ଦ୍ରିୟ ? ନିଜକୁ ଅନେକ ସମୟରେ ପ୍ରଶ୍ନ କରେ ଜିତୁ । ଏଣିକି ସେଇ ପ୍ରଶ୍ନକୁ ସେ ବେଶି ବେଶି ଦୋହରାଏ । ଏପରିକି, ନିଷ୍ଠୁର ସେଇ ପ୍ରଶ୍ନବାଚୀଟି ଗୋଟେ ବାଙ୍କୁଲିବାଡ଼ି ପରି ତା' ଗୋଡ଼ ଦି'ଟାକୁ ପଛରୁ ଟାଣିଧରେ ଯେମିତି !

ବିଶେଷକରି ଚିଙ୍ଗୁଡ଼ିଚାଷରେ ଫେଲ୍ ମାରିବା ପରେ, ଗୋଟେ ବିଫଳତାବୋଧ ତାକୁ ଅହରହ ଘାରୁଥିଲା ଯେ ପିଛା ଛାଡୁ ନ ଥିଲା ଜମା । ଦିଲୀପ ଠାରୁ ଅତ୍ୟଧିକ ପ୍ରୋତ୍ସାହନ ନ ପାଇବା ପର୍ଯ୍ୟନ୍ତ, ସେ ଚିଙ୍ଗୁଡ଼ିଚାଷ ବିଷୟରେ ଚିନ୍ତା ବି କରି ନ ଥିଲା । ଆଉ ଦିଲୀପ କଥାକୁ ସେ ଆଦୌ ଗୁରୁତ୍ୱ ଦେଇ ନ ଥା'ନ୍ତା, ଯଦି ଦିଲୀପ ଗୋଟେ ନ୍ୟାସନାଲାଇଜ୍‌ଡ଼ ବ୍ୟାଙ୍କରେ ଡେପୁଟୀ ମ୍ୟାନେଜର ନ ଥା'ନ୍ତା । ଦିଲୀପର କହିବା ଅନୁଯାୟୀ, ତାଙ୍କ ବ୍ୟାଙ୍କରୁ ଚିଙ୍ଗୁଡ଼ି ଚାଷ ପାଇଁ ଯେତେଜଣ ଋଣ ନେଇଥିଲେ, ସେମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ବର୍ଷକ.ମଧ୍ୟରେ 'ମାରୁତି' ଚଢ଼ିବାର ସୌଭାଗ୍ୟ ଲାଭ କରିଥିଲେ । ଜିତୁ ତେଣୁ ଚିଙ୍ଗୁଡ଼ି ଚାଷ ପ୍ରତି ଆକର୍ଷିତ ହୋଇଥିଲା ଓ ସିନେମା ଜଗତରୁ ଓହରି ଆସିଥିଲା ।

ସେତେବେଳକୁ ଗୋଟେ ସିନେମା ପ୍ରସ୍ତୁତ କରିବାପାଇଁ ସେ ଅବଶ୍ୟ ଅନେକ ବାଟ ଆଗେଇଯାଇଥିଲା । ଭୁବନେଶ୍ୱରରେ ଘରଟିଏ ଭଡ଼ା ନେଇ ସେଠି 'ମହୋଦଧି ପିକ୍‌ଚର୍ସ' ଲିଖିତ ଏକ ବିରାଟ ସାଇନ୍‌ବୋର୍ଡ଼ ଲଗେଇଥିଲା । ଅଫିସକୁ ଚମତ୍କାର ଭାବରେ ସଜେଇବା ସହ ନିଜ ପାଇଁ ଭାରି ସୌଖୀନ ଭିଜିଟିଂ କାର୍ଡ଼ ମଧ୍ୟ ଛାପିଥିଲା ।

ପ୍ରଶାନ୍ତ ତା' ଫିଲ୍ମରେ ଡାଇରେକ୍‌ସନ୍ ଦବା ପାଇଁ ରାଜି ହୋଇଥିଲେ ଓ ହୀରୋ ହୀରୋଇନ ଭାବରେ ନାଆଁକରା ଅଭିନେତା ଅଭିନେତ୍ରୀଙ୍କୁ ସୀମିତ ପାରିତୋଷିକ ଦେଇ ଟାଣିଆଣିବେ ବୋଲି କହିଥିଲେ । ଚରିତ୍ର ଭୂମିକାରେ ଦେବ, ମା' ଭୂମିକାରେ ସୁଜାତା ଆଦିଙ୍କ ନାଆଁ ତାଲିକା କରାଯାଇଥିଲା । ତେବେ ହୀରୋଇନ୍ ଭାବରେ ଗୋଟେ ନୂଆ ମୁହଁ ସନ୍ଧାନରେ ଥିଲା ଜିତୁ । ତା'ଛଡ଼ା ନିରୋଳା ପ୍ରେମ କାହାଣୀଟିଏ ପନ୍ଦରଦିନ ମଧ୍ୟରେ ଲେଖିଦେବାକୁ ବିଭୂତିବାବୁ ବି ଥିଲେ ପ୍ରତିଶ୍ରୁତିବଦ୍ଧ । ଏପରିକି ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କର ରିଜିଓନାଲ୍ ମ୍ୟାନେଜର ରାଠୋର୍ ଫାଇନାନ୍‌ସିଙ୍ଗ୍ ପାଇଁ ରାଜି ହୋଇଯାଇଥିଲେ ।

ଜିତୁ ମନରେ କିନ୍ତୁ ଗୋଟିଏ ମାତ୍ର ଦ୍ୱନ୍ଦ୍ୱ ଥିଲା: ସମ୍ଭାବ୍ୟ ସିନେମାଟି ହିଟ୍ କରିବ ନା ଅଧିକାଂଶ ଓଡ଼ିଆ ସିନେମା ପରି ଫ୍ଲପ୍ ହବ ? ପ୍ରଶାନ୍ତ ଅବଶ୍ୟ କହୁଥିଲେ,

ଟିନ୍‌ଏଜରମାନଙ୍କ ପାଇଁ ଗୋଟେ ଯୋଡ଼େ ଭଲ ନାଚ ଓ କେତୋଟି ଆଧୁନିକ ଗୀତ ସାଙ୍ଗକୁ ଚିତ୍ତାକର୍ଷକ ଧସ୍ତାଧସ୍ତି ଟିକେ ଯୋଡ଼ିଦେଲେ ସିନେମାଟି ଫ୍ଲପ୍ ହବାର ଚାନ୍ସ ନାହିଁ । ଭଲ ଲିରିକ୍ସ ପାଇଁ ମଧ୍ୟ ଦେବଦାସଙ୍କ ସହ ଯୋଗାଯୋଗ କରିଥିଲା ଜିତୁ । ପ୍ଲେବ୍ୟାକ୍ ସିଙ୍ଗରମାନଙ୍କ କଥା ଖୋଦ୍ ଡାଇରେକ୍‌ଟର ବୁଝିବେ ବୋଲି ବି କହିଥିଲେ । ତା'ଛଡ଼ା ଜିତୁକୁ ସେ ଯଥୋଚିତ ପ୍ରେରଣା ଓ ସାହସ ଯୋଗାଉଥିଲେ, ତାକୁ ଶଙ୍କାମୁକ୍ତ କରିବାକୁ ଚେଷ୍ଟା କରୁଥିଲେ ମଧ୍ୟ ।

ତଥାପି ଜିତୁ ଆଶଙ୍କା ମଧ୍ୟରେ ହିଁ ବୁଡ଼ି ରହୁଥିଲା । କାରଣ ସଫଳ ଅପେକ୍ଷା ବିଫଳ ଓଡ଼ିଆ ସିନେମାର ବହୁଳ ଦୃଷ୍ଟାନ୍ତ ଥିଲା ଜିତୁ ଆଗରେ । ତା'ଛଡ଼ା ପତ୍ରିକା ଲାଇନ୍‌ରେ କିଛିଦିନ ରହିଗଲାପରେ ସେ ଓଡ଼ିଆ ପାଠକ/ଦର୍ଶକମାନଙ୍କୁ ଅଦୂରରୁ ଦେଖିବାର ସୁଯୋଗ ପାଇଥିଲା ଓ ସେମାନଙ୍କ ମନୋଭାବ ଓ ଦୃଷ୍ଟିଭଙ୍ଗୀକୁ କିଛି କିଛି ଚିହ୍ନିଥିଲା ମଧ୍ୟ । ନିଜ ପାଦତଳର ମାଟି ଅପେକ୍ଷା ଦୂର ପାହାଡ଼ର କାନ୍ତିରେ ଅଧିକ ବିମୋହିତ ହେଉଥିବା ଗୋଟେ ପଛଗୋଡ଼ାଣିଆ ଜାତି ଯେ ଓଡ଼ିଆ, ତାହା ଅଭିଜ୍ଞତାର ସ୍ୱଳ୍ପତା ସତ୍ତ୍ୱେ ସେ ବେଶ୍ ହୃଦୟଙ୍ଗମ କରିଥିଲା । ଅତଏବ ପତ୍ରିକା ଲାଇନ୍ ପରି ସିନେମା ଲାଇନ୍ ବି ତାକୁ ଖସରା ମନେ ହେଉଥିଲା । ପ୍ରଫିଟ୍‌ର ମାର୍ଜିନ୍ ସିନେମାରେ ଅଧିକ ବୋଲି ମନେକରି ସିନା ସେ ଏଥିରେ ହାତ ଦେଇଥିଲା, କିନ୍ତୁ ପତ୍ରିକା ଲାଇନ୍‌ର ବିଫଳତା ତା' ସ୍ମୃତିରୁ ତଥାପି ଲିଭି ନ ଥିଲା ।

ଛାତ୍ର ଭାବରେ ଜିତୁ ସେତେ ଭଲ ନ ଥିଲା ଓ ଗ୍ରାଜୁଏସନ୍‌ରେ କୌଣସି ଭଲ ସବ୍‌ଜେକ୍ଟରେ ଅନର୍ସ ସିଟ୍ ନ ପାଇବାରୁ 'ଓଡ଼ିଆ'ରେ ଭର୍ତ୍ତି ହୋଇଥିଲା । ପି.ଜି. ପରେ ଯେକୌଣସି ଗୋଟେ ଚାକିରି କରିବାପାଇଁ ତା'ର ଭାରି ଇଚ୍ଛା ଥିଲା । କିନ୍ତୁ ପ୍ରତିଯୋଗିତାମୂଳକ ପରୀକ୍ଷାମାନଙ୍କରେ ସେ କୃତକାର୍ଯ୍ୟ ହୋଇପାରିବ ବୋଲି ତା'ର ଭରସା ନ ଥିଲା । ତେଣୁ ପଡ଼ୋଶୀ ଗାଆଁରେ ନୂଆ ଖୋଲିଥିବା ଏକ ମହାବିଦ୍ୟାଳୟରେ ଅଧ୍ୟାପନା କରିବାପାଇଁ ଯତ୍‌ପରୋନାସ୍ତି ଚେଷ୍ଟା କରିଥିଲା ସେ । ବିଭାଗୀୟ ପଦଟି ଗଭର୍ଣ୍ଣିଂବଡିର ଜନୈକ ମାନ୍ୟବର ମେମ୍ବରଙ୍କ ନିକଟ ସମ୍ପର୍କୀୟଙ୍କପାଇଁ ଉଦ୍ଦିଷ୍ଟ ଥିବାରୁ ଜିତୁ ତହିଁରୁ ବଞ୍ଚିତ ହୋଇଥିଲା । ଏପରିକି ରାଜନୈତିକ ଓ ଅମଲାତାନ୍ତ୍ରିକ ଚାପ ସତ୍ତ୍ୱେ, ରାଜ୍ୟ ସରକାରଙ୍କ ଅଧୀନ କୌଣସି ନିମ୍ନତମ ସେବାରେ ମଧ୍ୟ ସେ ଭର୍ତ୍ତି ହୋଇପାରି ନ ଥିଲା । ସୁତରାଂ ବେପାର ଆଡ଼କୁ ମୁହାଁଇବାକୁ ସେ ବାଧ୍ୟ ହୋଇଥିଲା । ପ୍ରେସ୍ ବେପାର ତାକୁ ସୁହାଇବ ଭାବି ସେଥିରେ ପଶିଯାଇଥିଲା ।

ଘରର ସବା ସାନପୁଅ ହେଇଥିବାରୁ ବାପା ମା' ତଥା ଭିନ୍ନ ଭିନ୍ନ ସରକାରୀ ଚାକିରି କରୁଥିବା ଭାଇମାନଙ୍କର ଅହେତୁକ ଶ୍ରଦ୍ଧାର ପାତ୍ର ଥିଲା ଜିତୁ । ଭାଇମାନଙ୍କ ଆର୍ଥିକ ସହାୟତାରେ ସେ ଗୋଟେ ଲେଟର ପ୍ରେସ୍ କିଣିଲା ଓ ଜିଲ୍ଲା ସଦର ମହକୁମାରେ ଘରଟିଏ ଭଡ଼ା ନେଇ ଛାପାକାମ ଆରମ୍ଭ କଲା । ପ୍ରେସ୍‌ରେ କର୍ମଚାରୀମାନଙ୍କ

ଧର୍ମଘଟ, ଧମକ ଓ ଅଚାନକ ପଳାୟନ ଲାଗିରହିଥିଲା ବର୍ଷତମାମ । ତଥାପି ଜିତୁ ଉଦ୍ୟମ ଅବ୍ୟାହତ ରଖିଥିଲା ଓ ଯେନତେନ ପ୍ରକାରେଣ ପ୍ରେସ୍‌ଟି ଚାଲୁରହିଥିଲା । ପ୍ରେସ୍ ଚାଲିବାର କିଛିଦିନ ପରେ ଜିତୁର ଆମ୍ବିସନ୍ ମୋଟେଇବାରେ ଲାଗିଲା ଓ ସେ ପତ୍ରିକାଟିଏ ପ୍ରକାଶ କରିବ ବୋଲି ସିଦ୍ଧାନ୍ତ ନେଲା ।

ସାହିତ୍ୟର ଛାତ୍ର ହୋଇଥିବାରୁ କତିପୟ ଲେଖକ ଓ ସମାଲୋଚକଙ୍କ ସହ ତା'ର ପରିଚିତି ଥିଲା ଓ ତାହାକୁ ପୁଞ୍ଜି କରି ସେ ପତ୍ରିକା କାମରେ ଆଗେଇଲା ।

ଅନେକଥର ଦିଲ୍ଲୀ ଦୌଡ଼ିଲାପରେ ପତ୍ରିକାଟିକୁ ରେଜେଷ୍ଟ୍ରିଭୁକ୍ତ କରାଇଲା ଓ ନିଜେ ଯାଇ ପ୍ରତିଷ୍ଠିତ ଲେଖକମାନଙ୍କଠାରୁ ଲେଖାମାନ ଆଣି, ବ୍ୟାବସାୟିକ ପ୍ରତିଷ୍ଠାନମାନଙ୍କରୁ ବିଜ୍ଞାପନ ମଗାମଗି କରି ପତ୍ରିକାଟିକୁ ଛାପିଲା । ପ୍ରଥମେ ପତ୍ରିକାଟି କ୍ଷତିରେ ଚାଲିଲେ ବି ଜିତୁ ସେଥିକୁ ଖାତିର କଲା ନାହିଁ । ପତ୍ରିକାଟି ଲୋକପ୍ରିୟତା ହାସଲ କଲେ, ବଳେ ତା'ର ସାର୍‌କୁଲେସନ୍ ବଢ଼ିଯିବ ବୋଲି ଜିତୁର ଧାରଣା ଥିଲା । କିନ୍ତୁ ଖୁବ୍ କମ୍‌ଦିନ ଭିତରେ ଜିତୁର ସେ ଧାରଣା ବଦଳିଗଲା । ପାଠକମାନଙ୍କଠାରେ ଆଗ୍ରହ ବା ଲେଖକମାନଙ୍କଠାରେ ଉଦ୍ଦୀପନା କିଛି ବି ସେ ଦେଖିବାକୁ ପାଇଲାନି । ତା' ସାଙ୍ଗକୁ ବିଜ୍ଞାପନଦାତାମାନଙ୍କର ଅନାସ୍ଥାଭାବ ଓ ମ୍ୟାଗାଜିନ୍ ଷ୍ଟଲମାନଙ୍କର ଦୌରାତ୍ମ୍ୟ ତାକୁ ହତୋତ୍ସାହିତ କରିବାକୁ ଲାଗିଲା । ପତ୍ରିକାର କ୍ଷତି ଅବିଳମ୍ବେ ପ୍ରେସ୍‌କୁ ସଂକ୍ରମିତ ହେଲା ମଧ୍ୟ । ବେଳେବେଳେ ଏମିତି ଅବସ୍ଥା ହେଲା ଯେ କର୍ମଚାରୀମାନଙ୍କୁ ଠିକ୍ ସମୟରେ ଦରମା ଦେଇହେଲାନି । ଘରଭଡ଼ା ମାସ ମାସ ଧରି ବାକି ବି ପଡ଼ିଲା ।

ବିପର୍ଯ୍ୟୟରୁ ପ୍ରେସ୍‌ଟିକୁ ରକ୍ଷା କରିବାପାଇଁ ସାହିତ୍ୟ ପତ୍ରିକା ପରିବର୍ତ୍ତେ ପପୁଲାର୍ ସିନେମା ପତ୍ରିକାଟିଏ ପ୍ରକାଶ କରିବା କଥା ଚିନ୍ତା କଲା ଜିତୁ । ସିନେମା ପତ୍ରିକା କଥା ଭାବୁଭାବୁ ହିଁ ସିନେମା ନିର୍ମାଣ କରିବାର ଝୁଙ୍କ୍ ପଶିଗଲା ତା' ଭିତରେ ଓ ସେ ପ୍ରେସ୍ ବିକ୍ରି କରି ସିନେମା ଜଗତ ଭିତରେ କିଛିଦିନ ପରିକ୍ରମା କଲା । କିନ୍ତୁ ସହପାଠୀ ଦିଲୀପ ସହ ଆକସ୍ମିକ ସାକ୍ଷାତ ପରେ ସେ ଚିତ୍ରଜଗତର ବିଚିତ୍ର ହାୱାରୁ ଛିଟିକିଆସି ଚିଙ୍ଗୁଡ଼ି ଚାଷରେ ମନୋନିବେଶ କଲା ।

ଚିଙ୍ଗୁଡ଼ିଚାଷ ବିଷୟରେ ପ୍ରଥମେ ସେ ଘରେ କିଛି କହିଲା ନାହିଁ । ଭୁବନେଶ୍ୱର ଛାଡ଼ି ପୁଣି ସଦର ମହକୁମାକୁ ଚାଲିଆସିଲା । ଘର ଲୋକେ ବୁଝୁଥିଲେ ଯେ ଜିତୁର ସବୁ ବେପାର ଉଜୁଡ଼ି ଯାଉଚି । ହେଲେ, ଆଜିକାଲି ଟୋକାମାନଙ୍କର ମନୋଭାବକୁ ଆଖିରେ ରଖି ସେମାନେ ମୁହଁ ଖୋଲୁ ନ ଥିଲେ ।

ସିନେମା ସଂପର୍କୀୟ ଦୌଡ଼ାଦୌଡ଼ିରେ କିଛି ପଇସା ଖର୍ଚ୍ଚ ହୋଇଯାଇଥିଲେ ହେଁ ପ୍ରେସ୍ ବିକ୍ରି ଅର୍ଥ ଆହୁରି କିଛି ଗଚ୍ଛିତ ଥିଲା ଜିତୁ ପାଖରେ । ତାକୁ ସମ୍ବଳ କରି ଜିତୁ ଅଗ୍ରସର ହେଲା ଚିଙ୍ଗୁଡ଼ି ଲାଇନ୍‌ରେ । ଲୋନ୍ ବ୍ୟବସ୍ଥା କରିଦବାପାଇଁ ଦିଲୀପର ପ୍ରତିଶ୍ରୁତି ଏବଂ ବର୍ଷକ ମଧ୍ୟରେ ମାରୁତି ଚଢ଼ିବାର ପ୍ରବଳ ଇଚ୍ଛା ଜିତୁ ମନରେ ପ୍ରେରଣାର

ପ୍ରସ୍ରବଣ ସୃଷ୍ଟି କରିଥିଲା । ସଦ୍ୟ ପ୍ରକାଶିତ 'ଚିଙ୍ଗୁଡ଼ିସାହିତ୍ୟ' ସମୂହ ସଂଗ୍ରହ କରି ସେ ମନୋଯୋଗ ସହକାରେ ପଢ଼ିବାକୁ ଲାଗିଲା ।

ଚିଙ୍ଗୁଡ଼ିଚାଷ ପାଇଁ ସମୁଦ୍ରକୂଳରେ ଦୁଇ ଏକର ପାଖାପାଖି ଅନାବାଦୀ ଜମି ଲିଜ୍ ନବା ଦରକାର ହେଉଥିବାରୁ ସେ ପ୍ରଥମେ ଯାଇ ଜିଲ୍ଲାପାଳଙ୍କୁ ସାକ୍ଷାତ କଲା । ଶିକ୍ଷିତ-ବେକାର ହୋଇଥିବା ଦୃଷ୍ଟିରୁ ତାକୁ ନିଜ ଗୋଡ଼ରେ ଠିଆହବାପାଇଁ ସମସ୍ତ ସହାୟତା ପ୍ରଦାନ କରିବାକୁ ସେ ଜିଲ୍ଲାପାଳଙ୍କ ନିକଟରେ ନିବେଦନ କଲା । ନେତା ଘେରରେ ନିୟତ ବିବ୍ରତ ଜିଲ୍ଲାପାଳଙ୍କୁ ଜିତୁର ସାହିତ୍ୟିକ ସମ୍ବୋଧନ ଶୁଣିବାପାଇଁ ତର ନ ଥିଲା । ଉପଜିଲ୍ଲାପାଳଙ୍କୁ ସାକ୍ଷାତ କରିବାପାଇଁ ସେ ସଂକ୍ଷିପ୍ତ ନିର୍ଦ୍ଦେଶ ଦେଲେ । ସେଠୁ ଜିତୁ ଉପଖଣ୍ଡ କାର୍ଯ୍ୟାଳୟକୁ ଗଲାବେଳକୁ ଉପଜିଲ୍ଲାପାଳ ଅନୁପସ୍ଥିତ ଥିଲେ । ଷ୍ଟେନୋଠାରୁ ଜଣାଗଲା ଯେ ଉପଜିଲ୍ଲାପାଳ ଟୁର୍‌ରେ ଯାଇଛନ୍ତି ଓ ଫେରିଲାବେଳକୁ ରାତି ହୋଇପାରେ । ଜିତୁ ତହିଁ ପରଦିନ ଉପଜିଲ୍ଲାପାଳଙ୍କୁ ଆବାସିକ ଦପ୍ତରରେ ସାକ୍ଷାତକଲା ଓ ଲିଜ୍ କଥା କହିଲା । ସହରର ଆଇନକାନୁନ୍ ପରିସ୍ଥିତି ନେଇ ବ୍ୟସ୍ତଥିବା ଉପଜିଲ୍ଲାପାଳ, ତହସିଲଦାରଙ୍କୁ ଦେଖା କରିବାପାଇଁ ପରାମର୍ଶ ଦେଲେ । ଜିତୁ ସେହି ବାଟେ ତହସିଲ୍ କାର୍ଯ୍ୟାଳୟକୁ ଧାବମାନ ହେଲା । ସେତେବେଳକୁ ତହସିଲଦାର କୋର୍ଟରେ ଥିବାରୁ ତାଙ୍କୁ ସାକ୍ଷାତ କରିବା ସମ୍ଭବ ନୁହେଁ ବୋଲି ଅର୍ଦ୍ଦଳି ପ୍ରକାଶ କଲା । ଜିତୁ ବେଶ୍ କିଛି ସମୟ ତହସିଲ କରିଡରରେ ଏକଡ଼ ସେକଡ଼ ହେଲା । ....ସିଗାରେଟ୍ ପିଇଲା ଓ ପୁଣି ଇତସ୍ତତଃ ବୁଲିବାକୁ ଲାଗିଲା । ପ୍ରାୟ ମଧ୍ୟାହ୍ନ ବେଳକୁ କୋର୍ଟ ସରିଲା ଓ ତହସିଲଦାର୍ ଚ୍ୟାମ୍ବର୍‌ରେ ପ୍ରବେଶ କଲେ । ଅର୍ଦ୍ଦଳିଟି ଟା'ରେ ଆପ୍ୟାୟିତ ହୋଇ ସାରିଥିବାରୁ ତହସିଲଦାରଙ୍କୁ ସାକ୍ଷାତ କରିବାର ପ୍ରଥମ ସୁଯୋଗପ୍ରାପ୍ତ ହେଲା ଜିତୁ ।

ଲଞ୍ଚ୍ ଆୱାର ହୋଇଯାଇଥିବାରୁ ତହସିଲଦାର ବ୍ୟସ୍ତହୋଇ ଗୋଟେ ଫାଇଲ୍‌ରେ କ'ଣ ସବୁ ଦସ୍ତଖତ କରୁଥିଲେ । କିଛି ସମୟ ପରେ ସେ ମୁହଁ ଉପରକୁ ଟେକିଲେ ଓ ଜିତୁକୁ ଠିଆ ହୋଇଥିବାର ଦେଖିବାସତ୍ତ୍ୱେ କିଛି ନ କହି ପୁଣି ଫାଇଲ୍‌ରେ ମୁହଁ ଗୁଞ୍ଜିଲେ । ସାମ୍ନା ଘଣ୍ଟାକୁ ଚାହିଁ ତରବରରେ ଚେୟାରରୁ ଉଠିଲାବେଳେ ହିଁ ଜିତୁ ତାଙ୍କୁ ତା' କାମ ବିଷୟରେ କହିଲା । ତହସିଲଦାର ବିରକ୍ତ ହୋଇ, 'ଆଗ ସଂପୃକ୍ତ ଆର୍.ଆଇ.କୁ ଦେଖା ନ କରି ମୋ ପାଖକୁ କାହିଁକି ଆସିଛ ବୋଲି କହିଲେ ଓ ଚ୍ୟାମ୍ବରରୁ ବାହାରିଯାଇ ଗାଡ଼ିରେ ବସିଲେ ।

ଆର୍.ଆଇ.ଙ୍କ ନିକଟକୁ ଜିତୁ ଅନେକଥର ଦୌଡ଼ିଲା । ତାଙ୍କ କହିବା ମୁତାବକ ଅମିନକୁ କୁହାବୋଲା କରି ନକ୍ସା ବନେଇଲା । ଉଦାର ଉପହାରରେ ସେ ଦୁହିଁଙ୍କୁ ଆପ୍ୟାୟିତ କଲା ମଧ୍ୟ । ତା'ପରେ ଯାଇ ରିପୋର୍ଟଟି ତହସିଲ୍ ଅଫିସ୍‌କୁ ପ୍ରେରିତ ହେଲା । ଇତିମଧ୍ୟରେ ଜିତୁକୁ ଫାଇଲ୍ ମୁଭ୍‌ମେଣ୍ଟ ସଂକ୍ରାନ୍ତୀୟ ଆଦବ କାଇଦା କିଛି କିଛି ମାଲୁମ୍ ହୋଇଯାଇଥିବାରୁ, ଏଥର ସେ ତହସିଲଦାରଙ୍କ ଦ୍ୱାର ନ ମାଡ଼ି

ପେସ୍‌କାରବାବୁଙ୍କୁ ହାତ କଲା । ଫଳରେ ରିପୋର୍ଟଟି ଅବିଳମ୍ବେ ଉପଖଣ୍ଡ କାର୍ଯ୍ୟାଳୟକୁ ପଠାଇ ଦିଆଗଲା । ଉପଖଣ୍ଡ କାର୍ଯ୍ୟାଳୟରୁ 'କ୍ୱେରି' ହୋଇ ରିପୋର୍ଟ ତହସିଲ ଫେରିଲା ; ତାକୁ 'କମ୍ପ୍ଲାୟ' କରାଗଲା ଓ ପୁଣି ଉପଖଣ୍ଡ କାର୍ଯ୍ୟାଳୟକୁ ପଠାଗଲା । ତା'ପରେ ଜିଲ୍ଲା କାର୍ଯ୍ୟାଳୟ... ଇତ୍ୟାଦି ଇତ୍ୟାଦି । ଏମିତି କ୍ୱେରି କଂପ୍ଲାୟାନ୍ସ ଆଦି ନାନାବିଧ ପାହାଚ ଅତିକ୍ରମ କରିବାକୁ ଫାଇଲଟିକୁ ଅନ୍ୟୂନ ଛ'ମାସ ସମୟ ଲାଗିଲା । ଅବଶେଷରେ ଜିତୁ ଲିଜ୍‌ପ୍ରାପ୍ତ ହେଲା ।

ତା'ପରେ ଜିତୁ ବ୍ୟାଙ୍କକୁ ଦୌଡ଼ାଦୌଡ଼ି କଲା ; ଯାବତୀୟ କାଗଜାତ୍ ବ୍ୟାଙ୍କରେ ପେସ୍‌କଲା । ସିଓରିଟି ପଡ଼ିବାପାଇଁ ଲୋକ ଠିକ୍ କଲା ମଧ୍ୟ । କିନ୍ତୁ ଋଣ ପ୍ରସ୍ତାବଟି ମ୍ୟାନେଜରଠାରୁ ଫିଲ୍ଡ଼ ଅଫିସର୍ ଓ ଫିଲ୍ଡ଼ ଅଫିସରଠାରୁ ମ୍ୟାନେଜର୍– 'ଏମିତି ତଳ ଉପର ହେଲା ମାସାଧିକ କାଳ । ତେବେ ଦିଲୀପର ବ୍ୟାଙ୍କ ଭ୍ରାତୃତ୍ୱଜନିତ ଚାପ ଫଳରେ, ଫିଲ୍ଡ଼ ଅଫିସର ସ୍ପଟ୍ ଭିଜିଟ୍ କରିବାକୁ ରାଜି ହେଲେ ।

ଜିତୁ ଗାଡ଼ି ଯୋଗାଡ଼ କଲା ଓ ଫିଲ୍ଡ଼ ଅଫିସର୍ ସମୁଦ୍ରକୂଳକୁ ସସ୍ତ୍ରୀକ ଗମନ କଲେ ।

ସୁପାରିସମୂଳକ ରିପୋର୍ଟ ଦବା ପୂର୍ବରୁ ଫିଲ୍ଡ଼ ଅଫିସର୍ ଜିତୁକୁ ଡକାଇଲେ ଓ 'ତମ ପାଇଁ ଆମେ କାହିଁକି ଲକ୍ଷ ଲକ୍ଷ ଟଙ୍କାର ରିସ୍କ ନବୁ' କହି ଅର୍ଥପୂର୍ଣ୍ଣ ଭାବରେ ହସିଲେ । କିନ୍ତୁ ଭିତରେ ବ୍ୟାପାରିକ ଜ୍ଞାନର ଆବଶ୍ୟକ ଅଭ୍ୟୁଦୟ ଘଟିସାରିଥିବାରୁ ସେ ତତ୍‌କ୍ଷଣାତ୍, 'ନୋ ରିସ୍କ୍ ନୋ ଗେନ୍' ବୋଲି ସହାସ୍ୟ ଉତ୍ତର ଦେଲା । ଫିଲ୍ଡ଼ ଅଫିସର୍ ବୁଝିଲେ ଯେ ଜିତୁ ଯୁବକ ହେଲେ ବି ସମଝଦାର । ତାଙ୍କ ପାଖରେ କାମ ଅଟକିଲା ନାହିଁ ।

ମ୍ୟାନେଜର୍, ରିଜିଓନେଲ୍ ମ୍ୟାନେଜର ଆଦି ପାହ୍ୟାଧିକାରୀଙ୍କଠାରୁ ଯଥା ଅନୁମୋଦନ ଲାଭ କରି ଋଣ 'ପ୍ରସ୍ତାବ'ଟି 'ମଞ୍ଜୁରୀ'ର ମର୍ଯ୍ୟାଦା ଲାଭ କରିବାକୁ ଚାରି ପାଞ୍ଚ ମାସରୁ କମ୍ ସମୟ ଲାଗିଲା ନାହିଁ ।

ଜିତୁ ଚିଙ୍ଗୁଡ଼ି ଲାଇନ୍‌ରେ ସମ୍ପୃକ୍ତ ହବାର ପ୍ରାୟ ବର୍ଷଟିଏ ବିତିଯାଇଥିଲା, କିନ୍ତୁ ଋଣ ମଞ୍ଜୁର ହୋଇଥିଲେ ବି ଅର୍ଥ ହସ୍ତଗତ ହୋଇ ନ ଥିଲା । ଜିତୁ ବିଭିନ୍ନ ହାତ ଉଧାରିରେ ବୁଡ଼ି ରହିଥିଲା ଓ ବିଶେଷତଃ ବାପାଭାଇଙ୍କ ଅଜାଣତରେ ବୋଉର ଗହଣା ବନ୍ଧକ ଦେଇ କରିଥିବା କରଜର ଦ୍ରୁତବର୍ଦ୍ଧିଷ୍ଣୁ ସୁଧହାର ତାକୁ ଅଧିକ ମର୍ମାହତ କରୁଥିଲା ।

ତଥାପି ପ୍ରଥମ କିସ୍ତି ଋଣ ପାଇବାକ୍ଷଣି ସେ ଗୋଟେ ହୀରୋହୁଣ୍ଡା କିଣିଲା ଓ ତା'ର ସଦର ମହକୁମା ଦପ୍ତରରେ ଫୋନ୍ ଲଗାଇଲା । ତଦ୍ଦ୍ୱାରା ବୁଲାବୁଲି କରିବାକୁ ତଥା ଦୂରସ୍ଥାନମାନଙ୍କ ସହ ଯୋଗାଯୋଗ ରଖିବାକୁ ତାକୁ ସୁବିଧା ହେଲା । ପଡ଼ୋଶୀ ଜିଲ୍ଲାରୁ ଶସ୍ତାରେ ଲେବର ଆଣି ସେ ଲିଜ୍‌ଲ୍ୟାଣ୍ଡରେ ଚାରୋଟି ପୋଖରୀ ଖୋଳେଇଲା ଓ ପୋଖରୀକୁ ଲାଗି ଗୋଟେ ଛୋଟ ଘର ତିଆରି କଲା । ପୋଖରୀ ଖୋଳା ସରିଲାବେଳକୁ

ପ୍ରଥମ କିସ୍ତି ଟଙ୍କା ବି ସରିଗଲା । ସେ ପୁଣି ବ୍ୟାଙ୍କ୍‌କୁ ଦୌଡ଼ିଲା ଓ ଦ୍ୱିତୀୟ କିସ୍ତି ଟଙ୍କାରେ ଚିଙ୍ଗୁଡ଼ି ଯାଆଁଳ କିଣି ପୋଖରୀରେ ଛାଡ଼ିଲା । ଇଣ୍ଟରଭ୍ୟୁ କରି ଦୁଇଜଣ କେୟାରଟେକର୍ ଓ ଦୁଇଜଣ ବାହାଦୁରଙ୍କୁ ତା' ଫାର୍ମରେ ନିଯୁକ୍ତି ଦେଲା । କେତେବେଳେ ସେ ଫାର୍ମ ହାଉସ୍‌ରେ ରହିଲା ତ କେତେବେଳେ ସଦର ମହକୁମାର ତା' ଦପ୍ତରରେ ।

ୟା' ଭିତରେ ଗୋଟେ ଚିଙ୍ଗୁଡ଼ି ଫାର୍ମର ଓନର୍ ଭାବରେ ଜିତୁର ନାଆଁ ହୋଇଯାଇଥିଲା ଜିଲ୍ଲାସାରା ଓ ସେ ଜିଲ୍ଲାସ୍ତରୀୟ ବିଭିନ୍ନ ସିଭିକ୍ ବଡିରେ ମେମ୍ବର ହବାର ସୌଭାଗ୍ୟ ଲାଭ କରିଥିଲା ।

ଚିଙ୍ଗୁଡ଼ିମାନେ ଶୈଶବରୁ କୈଶୋର ପର୍ଯ୍ୟାୟକୁ ଉତ୍ତୀର୍ଣ୍ଣ ହୁଅନ୍ତେ ଜିତୁ ବିଭିନ୍ନ ଚିଙ୍ଗୁଡ଼ି ଚାଲାଣ ସଂସ୍ଥା ସହ ଯୋଗାଯୋଗ କରି ନିଜ ପାଇଁ ଉପଯୁକ୍ତ ମାର୍କେଟ୍ ମଧ୍ୟ ପ୍ରସ୍ତୁତ କଲା । ଏକ ଆସନ୍ନ ସାଫଲ୍ୟର ସ୍ୱପ୍ନରେ ସେ ବିଭୋର ହେବାକୁ ଲାଗିଲା ଏବଂ ଗୋଟେ ନାଲିମାରୁତିର ମୋହରେ ମସଗୁଲ ମଧ୍ୟ ।

ହଠାତ୍ ଦିନେ ମୃଦୁ ନିଶାସକ୍ତ ଅବସ୍ଥାରେ ବିଷଣ୍ଣ ବାହାଦୁରଠାରୁ ମୁହୁର୍ମୁହୁଃ ଚିଙ୍ଗୁଡ଼ି ମରଣର ସମ୍ବାଦ ପାଇ ଜିତୁ ବିବ୍ରତ ହୋଇପଡ଼ିଲା । ଚିଙ୍ଗୁଡ଼ି ବିଶାରଦଙ୍କୁ ତୁରନ୍ତ ଡକାଇ ଫାର୍ମକୁ ଦୌଡ଼ିଲା ସେଇ ସଂଜରେ । ସେଠାରେ ପହଞ୍ଚିଲାବେଳକୁ ତଡ଼ାଗଗୁଡ଼ିକ ମୃତ ଏବଂ ମୃତପ୍ରାୟ ଚିଙ୍ଗୁଡ଼ିରେ ଭରପୂର ଥିଲା । ଚିଙ୍ଗୁଡ଼ି ବିଶାରଦ ବହୁ ପରୀକ୍ଷାନିରୀକ୍ଷା ପରେ ଏକ ସଂକ୍ରାମକ ମତ୍ସ୍ୟବ୍ୟାଧି ସେହି ଗଣମରଣର ହେତୁ ବୋଲି କହୁଥିଲାବେଳେ, ଜିତୁ ଗୋଟେ ଛେଉଣ୍ଡ ଶିଶୁରେ ରୂପାନ୍ତରିତ ହୋଇସାରିଥିଲା ।

ତା' ପରଠୁଁ ଜିତୁ ଯେମିତି ସେଇ ଛେଉଣ୍ଡତ୍ୱରୁ ତ୍ରାହି ପାଇପାରୁ ନ ଥିଲା । କ୍ରମାଗତ ବିଫଳତା ତାକୁ ଏକପ୍ରକାର ମୂକ କରିଦେଇଥିଲା । ଅବଶ୍ୟ ବେଳେବେଳେ ସେ ବୀମା ଅଫିସ୍‌କୁ ଦୌଡୁଥିଲା କ୍ଷତିପୂରଣପାଇଁ; କିନ୍ତୁ ସେଥିରେ ତା'ର ଆନ୍ତରିକତା ନ ଥିଲା । କ୍ଷତିପୂରଣ ପାଇବାପରେ ପୁଣିଥରେ ଆଟେମ୍ପଟ୍ ନବାପାଇଁ ଦିଲୀପର ପ୍ରେରଣାକୁ ସେ ରୋକଠୋକ ଅଗ୍ରାହ୍ୟ କରୁଥିଲା ଏବଂ ଦିଲୀପ ହିଁ ତାକୁ ସାତସମୁଦ୍ରକୁ ଠେଲି ଦେଇଛି ବୋଲି ଗୋଟେ ଧାରଣା ତା' ଭିତରେ ଦୃଢ଼ୀଭୂତ ହେଉଥିଲା । ଏପରିକି ତା' ବାପାଙ୍କର ସାନ୍ତ୍ୱନାମୂଳକ ଚିଠି ବି ପଢ଼ିବାକୁ ତା'ର ଧୈର୍ଯ୍ୟ ନ ଥିଲା । ଆତ୍ମହତ୍ୟା କରିବାପାଇଁ ବି ବେଳେବେଳେ ତା'ର ଇଚ୍ଛା ପ୍ରବଳ ହେଉଥିଲା ।

ଅନେକ ସମୟରେ ସେ ବ୍ୟାଙ୍କଋଣର ସୁଧ କଷୁ ଥିଲା ମନେମନେ ଓ ଚିହ୍ନା ବ୍ୟାଙ୍କବାଲାଟିଏ ଦେଖିଲେ ଭୂତ ଦେଖିଲା ପରି ତା' ଭିତରେ ଗୋଟେ ଚିତ୍ତ-ଚାଞ୍ଚଲ୍ୟ ସୃଷ୍ଟି ହେଉଥିଲା ।

ଯତ୍ନ ଅଭାବରୁ ତା' ଫାର୍ମଟି କ୍ରମେ ଅପନ୍ତରାରେ ପରିଣତ ହୋଇଥିଲା ଓ କର୍ମଚାରୀମାନେ ଯେ' ଯୁଆଡ଼େ ଛୁ' ମାରିଥିଲେ । ବିଲ୍ ପଇଠରେ ବିଳମ୍ବ ହେତୁ

ତା' ଅଫିସରୁ ଫୋନ୍ କଟିଯାଇଥିଲା ଓ ସାଇନ୍‌ବୋର୍ଡ଼ରୁ ରଙ୍ଗ ଛାଡ଼ିଯାଇଥିଲା । ପଙ୍କଚର୍ ହୋଇଥିବା ତା' ହୀରୋହୁଣ୍ଡା ଅସଜଡ଼ା ହୋଇ ଗୋଟେ କୋଣରେ ପଡ଼ିଥିଲା ଓ ତହିଁରେ ଇଞ୍ଚେ ବହଳର ଧୂଳି ଜମିଯାଇଥିଲା । ଦାଢ଼ି ଠିକ୍ ସମୟରେ କାଟୁ ନ ଥିବାରୁ ତା' ମୁହଁ ଶ୍ମଶ୍ରୁମୟ ହୋଇଯାଇଥିଲା ଓ ତା' ପୋଷାକ-ପରିଚ୍ଛଦରୁ ଅବିରତ ଝାଳଗନ୍ଧ ବାହାରୁଥିଲା । ସହରର କୌଣସି ସିଭିକ୍‌ବଡି ସଙ୍ଗେ ତା'ର ଆଉ ସମ୍ପର୍କ ନ ଥିଲା କି ତା' ପାଖକୁ ଆଗ ପରି ଆଉ ସେମିତି କେହି ଆସୁ ନ ଥିଲେ ।

କେବଳ ତା'ର ମଦ୍ୟପାନର ମାତ୍ରା ଯାହା ବଢ଼ି ଯାଇଥିଲା ।

ଏମିତି ଏକ ଚିରବିଷଣ୍ଣ ଋତୁରେ ଦିନକାଟୁଥିବା ଜିତୁ ଦିନେ ସନ୍ଧ୍ୟାରେ ଜନୈକ ବୃଦ୍ଧର ନମସ୍କାରରେ ଚମକି ପଡ଼ିଲା, କିନ୍ତୁ ବୃଦ୍ଧଟିକୁ ସେ ପ୍ରଥମେ ଚିହ୍ନିପାରିଲା ନାହିଁ । ପରେ ମନେପକାଇଲା ଯେ ତା' ଫାର୍ମ ଅଞ୍ଚଳର ସେ ଜଣେ ସରପଞ୍ଚ ଯିଏ କି ମାସ କେତୋଟି ଭିତରେ ବହୁଳ ମେଦ ଓ ଶୁଭ୍ରତାର ଅଧିକାରୀ ହୋଇଛନ୍ତି । ନିଜକୁ ଲାଜଲାଜ ଲାଗୁଥିବାରୁ ସରପଞ୍ଚଙ୍କ ସହ ଖୁବ୍ କମ୍ କଥାବାର୍ତ୍ତା କରି ସେ ମେଲାଣି ନେଲା ସେଦିନ ।

ଆଉ ଦିନେ, ଗୋଟେ ବାର୍‌ରେ ମଦ ପିଉଥିବା ସମୟରେ ସେ ଏନ୍.ଏ.ସି.ର ଯୁବ ଚେୟାରମ୍ୟାନ୍‌ଙ୍କୁ ଭେଟିଲା । ଚେୟାରମ୍ୟାନ୍ ମହାଶୟ ଥରେ ତା' ପାଖକୁ ଚାନ୍ଦା ପାଇଁ ଆସିଥିଲେ, ଯଦିଓ ସେତେବେଳେ ତାଙ୍କ ମୁହଁରେ ଏବର ଔଜ୍ଜ୍ୱଲ୍ୟ ନ ଥିଲା । ସେ ବାର୍ ଓନର୍‌କୁ ପଚାଶ ହଜାର ଟଙ୍କା ଦବା ପାଇଁ ଧମକ ଦେଉଥିଲେ ଓ ତାକୁ ଦେଖି ନ ଦେଖିଲା ପରି ବ୍ୟବହାର କରୁଥିଲେ ।

ତା'ର ଦୁଇ ତିନି ଦିନ ପରେ ସହରର ଏକ ସଂଭ୍ରାନ୍ତ ପଡ଼ିଆରେ ଗୋଟେ ସଭା ହଉଥିବାର ସେ ଦେଖିଲା ଓ କୌତୂହଳବଶତଃ ମଞ୍ଚ ନିକଟକୁ ଗଲା । ମନ୍ତ୍ରୀ ଭାବରେ ସଦ୍ୟ ବରିତ ସ୍ଥାନୀୟ ବିଧାୟକ ପୁଷ୍ପମାଲ୍ୟର ଗୁରୁଭାରରେ ଗ୍ରୀବା ଅବନତ କରି ବସିଥିଲେ ସଭାମଞ୍ଚରେ । ଏସ୍.ପି. ଓ ଜିଲ୍ଲାପାଳ ନିଜ ନିଜ କାନ କୁଣ୍ଡେଇ କ'ଣ ସବୁ ସଫେଇ ଦଉଥିଲେ ମନ୍ତ୍ରୀ-ମହୋଦୟଙ୍କୁ । ମନ୍ତ୍ରୀଙ୍କ ଗୁଣାବଳୀ ବର୍ଣ୍ଣିତ ଭାଷଣମାନ ସହଳ ଶେଷ ହବାର ସମ୍ଭାବନା ନ ଦେଖି ଜିତୁ ସେଠାରୁ ଲେଉଟି ଆସିଲା ।

କ୍ରମାନ୍ୱୟରେ ଏମିତି ତିନୋଟି ଘଟଣା ଦେଖିବା ପରେ, ଜିତୁ ନିଜ ଭିତରେ ଗୋଟେ ଅଭୂତପୂର୍ବ ପ୍ରେରଣା ଅନୁଭବ କଲା, ରାଜପୁତ୍ର ଗୌତମଙ୍କ ପରି । ଘଣ୍ଟାଘଣ୍ଟା ଧରି ଆବଦ୍ଧ କୋଠରି ଭିତରେ ଚିନ୍ତାମଗ୍ନ ହେଲା । ପ୍ରାୟ ଏକ ସପ୍ତାହ ପରେ ତା' ଚାରିକଡ଼େ ଘେରି ରହିଥିବା ଦୁଶ୍ଚିନ୍ତାର କଳାବାଦଲ ସବୁ ଛାଁ କୁ ଛାଁ ଅପସରିଗଲା ପରି ତାକୁ ମନେହେଲା ଓ ସେ ଗୋଟେ ସୂର୍ଯ୍ୟମୟ ଉପତ୍ୟକାରେ ପ୍ରଶାନ୍ତ ଭାବେ ବିଚରଣ କରୁଥିବା କଥା ଉପଲବ୍ଧି କଲା ।

ତହିଁ ପରଦିନ ଟ୍ରାଉଜର୍ ପଞ୍ଜାବି ପିନ୍ଧି ସେ ପାର୍ଟି ଅଫିସ୍‌ଆଡ଼େ ମୁହେଁଇଲା ।



# ପୁନଶ୍ଚ ବସନ୍ତ

ଏଇ ଅଳ୍ପ କେତେଦିନ ହବ ବଦଳି ବଦଳି ଯାଉଥିଲେ ମାନବେନ୍ଦ୍ର, ବଦଳି ଯାଉଥିଲେ ବସନ୍ତର ସହକାର ଯେମିତି !

ତାଙ୍କର ମାପଚୁପ ଅଫିସରି ସମୟରୁ କିଛି ଅଧିକ ମୁହୂର୍ତ୍ତ ବିତୁଥିଲା ବାଥ୍‌ରୁମ୍‌ରେ । ଦାନ୍ତ ବ୍ରଶ କରିବାପରି ସେଭିଂ ହେବା ଆଜିକାଲି ତାଙ୍କର ନିତ୍ୟକର୍ମରେ ପରିଣତ ହୋଇଥିଲା । ବର୍ଷକ ଆଗରୁ ବିକ୍ଷିପ୍ତ ଭାବରେ ଧଳା ହୋଇଯାଇଥିବା ତାଙ୍କ କେଶରାଶି ଗୋଦରେଜ ଆନୁକୂଲ୍ୟରେ ତମାଳତାଳୀ ନୀଳିମାରେ ରୂପାନ୍ତରିତ ହୋଇଥିଲେ । ପାନଚର୍ବଣର ମାତ୍ରା କମିଯାଇଥିବାରୁ ଈଷତ୍ କଳା ପଡ଼ିଆସୁଥିବା ତାଙ୍କ ଦାନ୍ତଗୁଡ଼ିକ କ୍ରମେ କଇଁ ପାଖୁଡ଼ାର ଔଜ୍ଜ୍ୱଲ୍ୟ ବହନ କରିବା ଆରମ୍ଭ କରିଥିଲେ ।

ଏ ସମସ୍ତ ପରିବର୍ତ୍ତନର ଅବଧି ମାସକରୁ ଅଧିକ ନ ଥିଲା ।

ମାନବେନ୍ଦ୍ରଙ୍କ ପରିବର୍ଦ୍ଧିତ ସ୍ମାର୍ଟନେସ୍‌କୁ ନାପସନ୍ଦ କରୁ ନ ଥିଲେ ପ୍ରିୟମ୍ବଦା । ଜଣେ କ୍ଲାସୱାନ୍ ଅଫିସର ପରି ସ୍ମାର୍ଟ ହେବାକୁ ସେ ଏକପ୍ରକାର ତାଗିଦ କରି ଆସୁଥିଲେ ମାନବେନ୍ଦ୍ରଙ୍କୁ । ସବୁବେଳେ କହୁଥିଲେ– କ'ଣ ଇମିତିଗୋଟେ ମାଷ୍ଟ୍ରିଆ ଢଙ୍ଗରେ ଚପଲ ପିନ୍ଧି ଅଫିସ୍‌କୁ ଯାଉଛ ମ ? ପ୍ୟାଣ୍ଟଶାର୍ଟ ପିନ୍ଧିଲାବେଳେ ଇନ୍ କରୁନ, ବେଲ୍‌ଟ ବାନ୍ଧୁନ, ଏପରିକି ବିନା ଆଇରନ୍‌ରେ ବି ଚଳେଇ ଦଉଚ । ଅଫିସର୍ ବୋଲି ତମକୁ ଷ୍ଟାଫ୍ ମାନୁଥିବେ ନା ? ଏମିତି କଥାଶୁଣି ମାନବେନ୍ଦ୍ର ଟିକେ ହସିଦିଅନ୍ତି । ''ଅଫିସର୍‌କୁ ଷ୍ଟାଫ୍‌ମାନେ କ'ଣ ପିଅନ ବୋଲି ଭାବନ୍ତେ ?'' ଓଲଟା ପ୍ରଶ୍ନ କରନ୍ତି ପ୍ରିୟମ୍ବଦାଙ୍କୁ । ପ୍ରିୟମ୍ବଦା କୋଉ ଛାଡ଼ନ୍ତି କି ? କହନ୍ତି, ମୁହଁରେ କହୁ ନ ଥିଲେ ପଛରେ କହୁଥିବେ– ଏ ଅଫିସରଟା ନିହାତି ମଖିଚୁଷଟାଏ । ପିନ୍ଧୁ ନାଇଁ ଯେତେବେଳେ କୋଉ ଖାଉଥିବ କି ? ଖିଆପିଆ ବେଳେ କେହି ତୁମ ନାଁ ଧରୁ ନ ଥିବେ ।

ପ୍ରିୟମ୍ବଦାଙ୍କ କଥାକୁ କ୍ୱଚିତ୍ ଗୁରୁତ୍ୱ ଦିଅନ୍ତି ମାନବେନ୍ଦ୍ର । ସିମ୍ପ୍‌ଲ ଲିଭିଂ ହାଇ ଥିଙ୍କିଙ୍ଗ୍ ପରି ମେକ୍ସିମ ଶୁଣାନ୍ତି ତାଙ୍କୁ । ବଦଳନ୍ତି ନାଇଁ ଜମା । ବଦଳିବା ପାଇଁ ନା ତାଙ୍କର ପ୍ରଚେଷ୍ଟା ଥାଏ ନା ପ୍ରବଣତା । ପ୍ରିୟମ୍ବଦା କହି କହି ଥକି ଯାଇଥିଲେ ନୂଆ କୋଟ୍‌ପ୍ୟାଣ୍ଟ ହଳେ ତିଆରି କରିବାପାଇଁ । ମାନବେନ୍ଦ୍ର କିନ୍ତୁ ଥିଲେ ସ୍ଥିତପ୍ରଜ୍ଞ ପରି ଅନାସକ୍ତ । ଫିକା ଦିଶୁଥିବା ତଥା ଛୋଟ ହେଇଥିବା ଦଶ ବର୍ଷ ତଳର ପୁରୁଣା କୋଟ୍‌ରେ ଶୀତ ଦୁଇମାସ ଚଳେଇଦେଲେ ସିନା ନୂଆ କୋଟ୍‌ର ନାଁ ଧରିଲେ ନାହିଁ । କିଛି ଫଳ ହେବ ନାହିଁ ଜାଣି ପ୍ରିୟମ୍ବଦା ଆଉ କୋଟ୍ ପ୍ରସଙ୍ଗ ଉଠାଉ ନ ଥିଲେ ।

ପ୍ୟାଣ୍ଟ ଶାର୍ଟ ଶାଢ଼ି କିମ୍ବା କସ୍‌ମେଟିକ୍‌ସ ଅଥବା କୌଣସି ସୌଖୀନ ପଦାର୍ଥ କେବେବି କିଣନ୍ତି ନାହିଁ ମାନବେନ୍ଦ୍ର । ପ୍ରିୟମ୍ବଦା ଡ୍ରାଇଭରକୁ ଡକାଇ ଗାଡ଼ିଧରି ନିଜେ ବଜାର ଯା'ନ୍ତି ଓ ମନ ମୁତାବକ ଜିନିଷପତ୍ର କିଣନ୍ତି । ନିଜପାଇଁ, ମାନବେନ୍ଦ୍ରଙ୍କ ପାଇଁ ।

ଦୁଇ ବର୍ଷ ତଳୁ ମାନବେନ୍ଦ୍ରଙ୍କ ବାଳ ପାଚିବା ଆରମ୍ଭ ହୋଇଥିଲା । ହେୟାର ଡାୟ କରିବାପାଇଁ ପ୍ରିୟମ୍ବଦା ତାଙ୍କୁ ଖୁବ୍ କମ୍‌ରେ ଶହେ ଥର କହିଥିବେ । କିନ୍ତୁ ଯେତେ କହିଲେ କ'ଣ ହବ ? ସେ କ'ଣ ଶୁଣିବା ଲୋକ ? ପ୍ରିୟମ୍ବଦା କେତେ ଥର ପଡ଼ୋଶୀ ସାମନ୍ତରାୟବାବୁଙ୍କ ଉଦାହରଣ ଦେଇଥିଲେ– ଦେଖୁନ କେମିତି ବୁଢ଼ାଟା ଟୋକା ହୋଇ ଅଫିସ୍‌କୁ ବାହାରୁଚି । ତା' ବଡ଼ ଝିଅର ପୁଅ କେଜିରେ ପଢ଼ିଲାଣି । ପୁଅ ଏବେ କୋଉଠି ଗୋଟେ ପ୍ଲାଣ୍ଟରେ ଇଞ୍ଜିନିୟର ଅଛି ଯେ ତା'ଲାଗି କନ୍ୟା ଖୋଜା ଚାଲିଛି । ହେଲେ ବୁଢ଼ାର ଫେସନକୁ ଦେଖ । କିଏ କହିବନା ତା'ର ଆଉ ଦି'ବର୍ଷ ଚାକିରି ଅଛି ବୋଲି । ହେଲେ ତମ ଝିଅ ମେଟ୍ରିକ ଡେଇଁ ନାଇଁ । ପୁଅ ପ୍ଲସଟୁରେ । ବୁଢ଼ା ହବାକୁ ତମକୁ ଭଲ ଲାଗୁଚିନା । ଏମିତି ଯେତେ ଛିଗୁଲେଇ କହିଲେ ବି କିଛି ଲାଭ ହେଲାନି । କାଠରୁ କ'ଣ ରସ ନିଗିଡ଼ିବ ?

ପ୍ରିୟମ୍ବଦା ଦିକ୍‌ଦାର ହୋଇ କହିବା ବନ୍ଦ କରିଦେଇଥିଲେ ।

ଅଗତ୍ୟା, ଆକସ୍ମିକ ଭାବରେ ମାନବେନ୍ଦ୍ରଙ୍କର ବଦଳି ଯାଉଥିବା ହାବଭାବକୁ ଦେଖି ପ୍ରିୟମ୍ବଦା ଖୁସି ହେଉଥିଲେ ବି ସନ୍ଦେହମୁକ୍ତ ହୋଇପାରୁ ନ ଥିଲେ ।

ଏବେ ଗୋଟେ ଚମତ୍କାର ବ୍ଲେଜର କିଣିଛନ୍ତି ମାନବେନ୍ଦ୍ର ଆଉ ତା' ସାଙ୍ଗକୁ ମ୍ୟାଚ କଲାଭଳି ଟାଏଟେ ମଧ୍ୟ । ସପ୍ତାହକ ଆଗରୁ ହଳେ ବୁଟ୍ କିଣିଥିଲେ । ଦୁଇଦିନ ତଳେ କିଣିଛନ୍ତି ଗୋଟେ ଫଟୋସୋନିକ୍ ଚଷମା ।

ଆଜିକାଲି ଡ୍ରେସିଂ ଟେବୁଲ ଆଗରେ ଗୋଟେ କଲେଜ ପିଲା ପରି ସେ ମୁଣ୍ଡ କୁଣ୍ଡଉଛନ୍ତି । ଠିକ୍ ଭାବରେ ଆଇରନ୍ ହୋଇ ନ ଥିଲେ ପ୍ୟାଣ୍ଟ ଶାର୍ଟ ପିନ୍ଧୁଛନ୍ତି । ବୁଟ୍ ଚେରିବ୍ଲସନ ହଉଚି ଡେଲି । ରୁମାଲରେ ସେଣ୍ଟ ପଡୁଛି ।

ଏ ସବୁ ସାଙ୍ଗକୁ ପୁଣି ମାନବେନ୍ଦ୍ରଙ୍କ ଅନ୍ୟମନସ୍କତା । ଖବରକାଗଜରେ ମୁହଁ ଲୁଚେଇ ସେ କ'ଣ ଏଣ୍ଡୁତେଣ୍ଡୁ ଭାବନ୍ତି କେଜାଣି ! ପ୍ରିୟମ୍ବଦା ଦୁଇ ଚାରିଥର ଡାକିଲା ପରେ ଓ କରନ୍ତି । ଚା' ବରଫ ହେଲା ପର୍ଯ୍ୟନ୍ତ ସେମିତି ଥୁଆ ହୋଇଥାଏ ଟି'ପୟ ଉପରେ । ଅଫିସରୁ ଫେରିଲାବେଳେ ଡାଏରି ରହିଯାଉଚି ଗାଡ଼ିରେ । ଡ୍ରାଇଭର ଉପରେ ଅଯଥାରେ ଚିଡ଼୍‌ଚିଡ୍ ହେଉଛନ୍ତି । ଅଫିସରେ କାହାକୁ କ'ଣ କହୁଥିବେ କେଜାଣି ! ଏ ସମସ୍ତ ବ୍ୟତିକ୍ରମ ପ୍ରିୟମ୍ବଦାଙ୍କ ଆଖିରେ ପଡୁଥିଲା ସହଜରେ । ଦୁଇ ଚାରି ଦିନ ତଳେ ଶୋଇବାକୁ ଗଲାବେଳେ କାହିଁକି ଅନ୍ୟମନସ୍କ ରହୁଚ ବୋଲି ସେ ପଚାରିଲେ ମାନବେନ୍ଦ୍ରଙ୍କୁ । ପଦକ କଥାରେ ଯେମିତି ମାନବେନ୍ଦ୍ରଙ୍କ ବ୍ଲଡ୍‌ପ୍ରେସର୍ ବଢ଼ିଗଲା । ପ୍ରିୟମ୍ବଦାଙ୍କୁ ମାରିବେ କି ମରିବେ । ପ୍ରିୟମ୍ବଦା ଶଙ୍କିଗଲେ । ସୁଦୀର୍ଘ ବୈବାହିକ ଜୀବନ ଭିତରେ ସେ ମାନବେନ୍ଦ୍ରଙ୍କୁ ଏମିତି ଅଶାଳୀନ ବ୍ୟବହାର କରିବାର ଦେଖି ନ ଥିଲେ ।

ଏଡ଼େ ଶାନ୍ତଶିଷ୍ଟ ମଣିଷ ଜଣକ ଏମିତି ରାଗରେ ପାଚିଯିବେ ବୋଲି ପ୍ରିୟମ୍ବଦା ଭୁଲରେ ଭାବି ନ ଥିଲେ । ଅଫିସ୍‌ରେ କିଛି ଅଘଟଣ ଘଟି ନାହିଁ ତ ? ପ୍ରିୟମ୍ବଦାଙ୍କର ଆଶଙ୍କା ହେଉଥିଲା । ଡାଇରେକ୍ଟରଙ୍କ ସହ କ'ଣ ଝଗଡ଼ା ହୋଇଚି କି ? ଆଉ ଗୋଟିଏ ପ୍ରମୋଶନ ହବାର ଥିଲା, ସି.ସି.ଆର୍. ପାଇଁ ହେଲ୍‌ଡ୍ ଅପ୍ ହୋଇଗଲା ନା କ'ଣ ? କିନ୍ତୁ ସେମିତି କିଛି ହୋଇଥିଲେ, ସେ ଏତେ ଫିଟ୍‌ଫାଟ୍ କାହିଁକି ହୁଅନ୍ତେ ? କ'ଣ ସେ ବିଫଳତାକୁ ଲୁଚେଇବାପାଇଁ ଯୁବକସୁଲଭ ପୋଷାକ-ପରିଚ୍ଛଦର ଆଶ୍ରୟ ନଉଛନ୍ତି ? ପ୍ରିୟମ୍ବଦା କୌଣସି ସମାଧାନରେ ପହଞ୍ଚିପାରୁ ନ ଥିଲେ । ଘରେ ବଢ଼ିଲା ପୁଅ ଝିଅ ଥିବାରୁ ସେ ମୁହଁଖୋଲି ସେତେ କିଛି କହି ବି ପାରୁ ନ ଥିଲେ । ଖାଲି ଯାହା ଏଣୁତେଣୁ ଗୁଡ଼ାଏ ବାଜେ କଥା ଭାବୁଥିଲେ ।

ଏଇ ଯେମିତି ଦିନେ ଦୁଇଦିନ ତଳେ ସେ ଡ୍ରାଇଭରକୁ ନିଭୃତରେ ପଚାରିଥିଲେ, ସାର୍ ଅଫିସ ଛଡ଼ା ଆଉ କୁଆଡ଼େ ଯା'ନ୍ତି କି । ଡ୍ରାଇଭର କିଛି ବୁଝି ନ ପାରି ପ୍ରିୟମ୍ବଦାଙ୍କୁ ବୋକାଙ୍କ ପରି ଚାହିଁବାରୁ ପ୍ରିୟମ୍ବଦା ବଡ଼ ଅଡୁଆରେ ପଡ଼ିଥିଲେ । କଥାର ମୋଡ଼ ବଦଳାଇ ଦେଇଥିଲେ । ପ୍ରିୟମ୍ବଦା ନିଜକୁ ପୁଣି ବୁଝାଇଥିଲେ, ନା ସେ ତ କ୍ଳବ୍‌ଫ୍ଳବ୍ କେବେ ଯା'ନ୍ତି ନାହିଁ । ଅଫିସ୍ ଆଉ କ୍ୱାର୍ଟର୍ସ ଛଡ଼ା କାହା ଦୁଆର ବି କେବେ ମାଡ଼ନ୍ତି ନାହିଁ ।

ତଥାପି ପ୍ରିୟମ୍ବଦାଙ୍କ ମନ ବୁଝୁ ନ ଥିଲା । ତାଙ୍କର ମନେପଡୁଥିଲା ସେଇ ଅଧ୍ୟାପକ କବିଟି କଥା, ଯିଏ ନିଜ ଝିଅର ସହପାଠିନୀକୁ ବାହାହୋଇଥିଲେ । ଆଉ ତାଙ୍କ ନିଜ ଭାଇର ଶଳା ପରା ତିନିଟା ପିଲାର ବାପା ହେବାପରେ ବି ଗୋଟେ ମାଷ୍ଟ୍ରାଣୀକି କୋର୍ଟ ମ୍ୟାରେଜ କରିଥିଲେ । ପୁରୁଷମନ, ପ୍ରଜାପତି ପରି ଭାରି ଦୁଷ୍ଟ, ଚଗଲା । ନିଜ ଭିତରେ ଗୁଣୁଗୁଣୁ ହେଉଥିଲେ ପ୍ରିୟମ୍ବଦା ।

ସେଦିନ ବିଳମ୍ବିତ ସନ୍ଧ୍ୟା ପର୍ଯ୍ୟନ୍ତ ଅଫିସରୁ ଫେରି ନ ଥିଲେ ମାନବେନ୍ଦ୍ର । ପ୍ରିୟମ୍ବଦାଙ୍କର ଆଶଂକା ବଢ଼ି ବଢ଼ି ଯାଉଥିଲା । ସାଧାରଣତଃ ସନ୍ଧ୍ୟାପୂର୍ବରୁ ବା କେବେ କେମିତି ସନ୍ଧ୍ୟାବେଳକୁ ଅଫିସ୍‌ରୁ ଫେରିଆସନ୍ତି ମାନବେନ୍ଦ୍ର, କିନ୍ତୁ ଅତ୍ୟଧିକ ବିଳମ୍ବିତ କେବେ ବି ହୁଏନି ତାଙ୍କର । ଅବଶ୍ୟ ଟୁର୍‌ରେ ଯାଇଥିଲେ କଥା ଅଲଗା । ମନକଥା ମନରେ ରଖି ପ୍ରିୟମ୍ବଦା ରୋଷେଇ ଆରମ୍ଭ କଲେ । ମଝିରେ ମଝିରେ ବାହାରକୁ ଆସି ରାସ୍ତାକୁ ଚାହିଁଲେ । ପରିଚିତ ଗାଡ଼ି ଶବ୍ଦକୁ କାନେଇଲେ ।

ବିରକ୍ତ ହୋଇ ରୋଷେଇ ଅଧାରୁ ଛାଡ଼ି ପ୍ରିୟମ୍ବଦା ବେଡ୍‌ରୁମ୍‌ରେ ପଶିଲେ । ଅନ୍ୟମନସ୍କ ଭାବରେ ଟି.ଭି. ଦେଖିଲେ ତଥାପି ମାନବେନ୍ଦ୍ର ଫେରିବାର କୌଣସି ସୂଚନା ମିଳୁ ନ ଥିଲା । ସେ ମାନବେନ୍ଦ୍ରଙ୍କ ଅଫିସ ନମ୍ବରକୁ ରିଂ କଲେ ।

''ହ୍ୟାଲୋ.... କାହାକୁ ଖୋଜୁଛନ୍ତି'' ନାରୀକଣ୍ଠର ସୁଲଳିତ ସ୍ୱର ଶୁଣିଲେ ପ୍ରିୟମ୍ବଦା । ଷ୍ଟେନୋବାବୁ ନାହାନ୍ତି କି ବୋଲି ପ୍ରିୟମ୍ବଦା ପଚାରିବାରୁ ଉତ୍ତର ଆସିଲା, ''ପୁରୁଣା ଷ୍ଟେନୋଙ୍କ ବଦଳିପରେ ମୁଁ କେବେଠୁଁ ଜଏନ୍ କଲିଣି ।''

ଓ....ହୋ....କହି ପ୍ରିୟମ୍ବଦା ରିସିଭର ଥୋଇଦେଲେ ।



# ସ୍ୱରାଜ୍ୟ

ଗାଁ ମଝି ଦୋଳମଣ୍ଡପ ପାଖରେ ଦୁଇ ଜଣ ଦାରୋଗାଙ୍କ ଆକସ୍ମିକ ଆବିର୍ଭାବ ଗାଁ'ର ପ୍ରଶାନ୍ତ ଅପରାହ୍ଣକୁ କିଛିକ୍ଷଣପାଇଁ ହେଲେ ବି ଦୋହଲାଇ ଦେଲା ।

ଖରା ମଉଳି ଯାଇଥିଲେ ବି ପବନରେ ପାବକର ସ୍ପର୍ଶ ବାରି ହୋଇପଡୁଥିଲା । ହାବୁକା ହାବୁକା ଦକ୍ଷିଣାପବନରେ ଦାଣ୍ଡଧୂଳି ଧୂମାଳ ପାଲଟୁଥିଲା । ପୋଖରୀହୁଡ଼ାର ଘଞ୍ଚ ଆମ୍ରବିତାନ ନିଭୃତରୁ ରହି ରହି ଭାସିଆସୁଥିବା କୋଇଲିର କଣ୍ଠସ୍ୱର, ପୁଲିସ୍ ଗାଡ଼ିର କୁହାଟ ପରି ଅନେକଙ୍କ ଛାତିରେ ଛନକା ଖେଳାଇଦେଉଥିଲା । ଦୋଳମଣ୍ଡପର ଡାହାଣରେ ବିଦ୍ୟମାନ ଏକମାତ୍ର ପାନଦୋକାନ ପିଣ୍ଡାରେ ଦାରୋଗାହଳକ ପହଞ୍ଚିଲାବେଳକୁ ପୁରୁଖାଦୋକାନୀ ରଙ୍ଗାଭାଇ ଉପରକୁ ଦମ୍ଭିଲା ମନେହେଉଥିଲେ ବି ତା' ଭିତରଟା ସନ୍ନିପାତଗ୍ରସ୍ତ ହୋଇସାରିଥିଲା । ତେବେ, ଥାନାର ସାନବାବୁ ଓ ଜମାଦାର, ଦୁଇଜଣଯାକ ଥିଲେ ଅତ୍ୟନ୍ତ ମାର୍ଜିତ ଏବଂ ତାଙ୍କ ଜିଜ୍ଞାସା ଥିଲା ଅତି ସ୍ପଷ୍ଟ–''ନିମାଇଁ ଦାସଙ୍କ ଘର କେଉଁଠି ?'' ଅନ୍ୟମାନଙ୍କ ଗହଣରେ ପୁଲିସକୁ ମାମୁ ସମ୍ବୋଧନ କରିବାରେ ଅଭ୍ୟସ୍ତ ରଙ୍ଗାଭାଇ ଏକାଧିକବାର ଛେପ ଢୋକି କହିଲା, ''ଏଇ ଦାଣ୍ଡରେ କିଛିବାଟ ଯାଇ ବାଁ ହାତି ମୋଡ଼ିଲେ ଗୋଟେ ବଡ଼ ଓସ୍ତଗଛ ପଡ଼ିବ । ତାକୁ ଲାଗି ବିରାଟ ଖଳା । ଖଳା ମଝିରେ ଦୋ'ତାଲା ମାଟିଘର, କୁଟାଛିଆଣି । ସେପରି ଘର ଗୋଟିଏମାତ୍ର ଏ ଗାଁରେ ।'' ପୁଲିସ୍‌ବାବୁ ଦି'ଜଣ ଏକମୁହାଁ ହୋଇ ସେହି ଆଡ଼କୁ ଝପଟିଲେ ।

କିଛି ସମୟ ମଧ୍ୟରେ ଦୋଳମଣ୍ଡପ ପାଖରେ ହାଟ ବସିଲା ।

ବେଳ ରତରତ ହେଉଥାଏ, ଦୁଇ ପୁଲିସଙ୍କ ମଝିରେ ଚାଲିଥା'ନ୍ତି ନିମାଇଁ ଦାସ, ମୁହଁରେ ସେହି ବେଧଡ଼କ ଭାବ, ହାତରେ ବଙ୍କୁଲିବାଡ଼ି, ଫୁଙ୍ଗୁଳା ଦେହ । ଥାନାଗାଡ଼ି କେଉଁଠି ଥିଲା କେଜାଣି, ଦୋଳମଣ୍ଡପ ଆଗରେ ପହଞ୍ଚିଗଲା ତତ୍‌କ୍ଷଣାତ୍ । ନିମାଇଁ ଦାସ ଜିପ୍ ପଛରେ ବସିଲେ, ତାଙ୍କୁ ଆବୋରି ଦୁଇ ଦାରୋଗା । ଆଖିପିଛୁଳାକେ ଗାଁ'ଦାଣ୍ଡ ଡେଇଁଗଲା ଗାଡ଼ି । ସଙ୍ଗେ ସଙ୍ଗେ ଗାଁ'ଦାଣ୍ଡର ଧୂସର ପିଠିରେ ଖୁବ୍ ବଡ଼ ଗୋଟେ ପ୍ରଶ୍ନଚିହ୍ନ ଅଙ୍କିତ ହୋଇଗଲା ଯେମିତି !

ନିମାଇଁ ଦାସ କେବଳ ଏ ଗାଁର ନୁହଁ, ଅଞ୍ଚଳଯାକର ମାନ୍ୟଗଣ୍ୟ । ବୟସ ତାଙ୍କର ଢେର୍ ବେଶି, ଗାତକୁ ହାତେ ବାକି ଜୀବନ । ଗାଁ'ଲୋକଙ୍କ ହିସାବରେ ବୁଢ଼ା ଚାରିକୋଡ଼ି ଡେଇଁଲେଣି ; କିନ୍ତୁ ଆଖିକୁ ତଥାପି ଚଷମା ଲୋଡ଼ା ପଡ଼ି ନାହିଁ । ନଇଁ ନାହିଁ ଅଣ୍ଟା । ସଳଖ ଚାଲି । କଳଦାନ୍ତ ଗୋଟେଯୋଡ଼େକୁ ଛାଡ଼ିଦେଲେ ଆଉସବୁ ଦାନ୍ତ ଅକ୍ଷତ । ବୁଢ଼ା, ଯୁବାକାଳରୁ ବଡ଼ ସଂଯମୀ, ପାନବିଡ଼ି, ନାସଦୋକ୍ତା, ନିଶାପାଣିର ବଇରୀ । ପରିଧାନ ତ– ଖଦଡ଼ । ବିନା ଜୋତାରେ ଦାସେ ବିଲାତ ବୁଲିଆସିବେ ପରା !

ନିମାଇଁ ଦାସଙ୍କର ଶିକ୍ଷାଗତ ଯୋଗ୍ୟତା ବୋଲି ଯଦିଓ କିଛି ନାହିଁ, ତହିଁରେ ସେ ନବାବ ମୁହଁରେ ଜବାବ ଦିଅନ୍ତି । ବହିପାଠ କ'ଣ ଖାଲି ପାଠ ? ବୁଢ଼ା ଯେତେବେଳେ ଅଷ୍ଟମ ଶ୍ରେଣୀର ଛାତ୍ର, ଦେଶସାରା ସେତେବେଳେ ଅଗଷ୍ଟ ବିପ୍ଳବର ନିଆଁ । 'ଭାରତଛାଡ଼' ଡାକରା ଦେଇଥା'ନ୍ତି ଗାନ୍ଧୀ-ମହାତ୍ମା । କିନ୍ତୁ ଗାନ୍ଧୀବୁଢ଼ାକୁ ଜେଲ୍‌ରେ ଭର୍ତ୍ତିକଲା ଗୋରା ସରକାର । ଆଉ ଆଉ ବଡ଼ ନେତାଏ ବି ଜେଲ୍‌ରେ ପଶିଲେ । ଉନ୍ମତ୍ତ ପାଲଟିଗଲେ ଜନତା । ଛାତ୍ରଯୁବକମାନେ ଓହ୍ଲାଇ ଆସିଲେ ରାଜରାସ୍ତାକୁ । କେଉଁଠି ଥାନା ପୋଡ଼ିଦେଲେ ତ କେଉଁଠି ପୁଲିସ୍ ଉପରକୁ ଢେଲା ଫିଙ୍ଗି କଲେ ଲହୁଲୁହାଣ । ହାକିମହୁକୁମାଙ୍କୁ ଡରିଲେ ନା ଆଇନକାନୁନ୍ ମାନିଲେ ? କଚେରି ମଥାନରୁ ବ୍ରିଟିଶ ପତାକା ଓହ୍ଲାଇଆଣି ତ୍ରିରଙ୍ଗା ଉଡ଼ାଇଲେ । ସଭା ଶୋଭାଯାତ୍ରାରେ ଗାଁ'ଗଣ୍ଡା ଉଠିଲାପଡ଼ିଲା । ସାରା ଭାରତର ମେଦିନୀ ଦୁଲୁକିଲା । ବାରବର୍ଷର ନିମାଇଁ ସ୍କୁଲ ଗଲାବାଟରେ ନୟନଯୋରୀକୁ ବହିବସ୍ତାନି ଫିଙ୍ଗି ପାଲଟିଗଲା ବାଳ-ବିପ୍ଳବୀ ।

ନିମାଇଁଙ୍କ ବାପା ନରସିଂହ ଥିଲେ ଗାଁ ମକଦ୍ଦମ, ଅଚଳାଚଳ ସମ୍ପତ୍ତିର ଅଧିକାରୀ । ସେକାଳର ମାଟ୍ରିକ୍ୟୁଲେଟ୍ । ଚେହେରାରେ ରାଜା ଜମିଦାରଙ୍କ ସମତୁଲ, ଆଚାରରେ ବିଲାତି ହାକିମ ଯେସନ । ଏକମାତ୍ର ଅଲିଅଳ ପୁତ୍ରର ବାତୁଳପଣ ଦେଖି ସେ କାହୁଁ ଧୈର୍ଯ୍ୟଧରି ରହିପାରନ୍ତେ ? ପୁଣି ବ୍ରିଟିଶ ଗଭର୍ଣ୍ଣମେଣ୍ଟଙ୍କର ସଦାଶୟ ଅନୁକମ୍ପାପ୍ରାପ୍ତ ତାଙ୍କ ପରିବାର ନାଁରେ ରାଜଦ୍ରୋହର କଳଙ୍କ ଲାଗିବା ଆଶଙ୍କାରେ ସେ ବିଚଳିତ ହୋଇପଡ଼ିଲେ । ପୁଅକୁ କେବଳ ନାଲିଆଖି ଦେଖାଇଲେ, ତା' ନୁହେଁ, ବୁଝେଇ ଶୁଝେଇ କହିଲେ, "ବାବା ନିମାଇଁ, ତୁମେ ଗ୍ରାଜୁଏଟ୍ ହେବା ମୋ ଜୀବନର ସ୍ୱପ୍ନ । ଗ୍ରାଜୁଏଟ୍ ହେବା ଉତ୍ତାରୁ ତୁମେ ଅକ୍ଳେଶରେ ହୋଇପାରିବ ଡେପୁଟି । ଏ ଅଞ୍ଚଳରୁ ଏଯାବତ୍ କେହି ହାକିମ ହେବାର ଦୃଷ୍ଟାନ୍ତ ନାହିଁ । ବାବା ନିମାଇଁ, ତୁମେ ହେବ ପ୍ରଥମ ଦୃଷ୍ଟାନ୍ତ, ଅନେକ ଶିକ୍ଷିତ ଯୁବକଙ୍କର ଅନୁକରଣୀୟ । ଏକଥା ନ ବୁଝି, ତୁମେ ସେ ଗୁଜୁରାଟୀ ବଣିଆବୁଢ଼ା ବୁଦ୍ଧିରେ ପଡ଼ି ବିପଥଗାମୀ ହେଉଛ କାହିଁକି ? ବ୍ରିଟିଶ ରାଜୁତିର

ସୂର୍ଯ୍ୟ କ'ଣ କେବେ ଅସ୍ତ ହେବ ?'' ବାଳକ ନିମାଇଁ ତା' ମକଦ୍ଦମ ବାପାଙ୍କ କଥା ଶୁଣି ବି ଶୁଣିଲା ନାହିଁ । ଜମିଦାରିଆ ନାଲିଆଖିକୁ ଖାତିର କଲା ନାହିଁ । ନା ସେ ରାଜଦ୍ରୋହର ଅର୍ଥ ବୁଝିଲା, ନା ଡେପୁଟି ହେବାର ସ୍ୱପ୍ନ ତାକୁ ଆକର୍ଷିତ କଲା । ନିମାଇଁ ଦାସ ସେହି ଚପଳ ବୟସରୁ କୁଆଡ଼େ ଗାନ୍ଧୀ, ଜୟପ୍ରକାଶଙ୍କ ପାଲରେ ପଡ଼ିସାରିଥିଲେ ।

ଦିନେ ଦଳେ ଖଦଡ଼ିଆଙ୍କ ସାଙ୍ଗରେ ନିମାଇଁ ବାହାରିଗଲେ କଟକ । ଗଲେ ଯେ ଗଲେ, ଆଉ ଗାଁକୁ ଫେରିଲେ ନାହିଁ । ରହୁରହୁ ରହିଗଲେ ସ୍ୱରାଜ୍ୟ ଆଶ୍ରମରେ । କେତେଦିନ ପରେ ଯାଇ ଖଣ୍ଡେ ଚିଠି ଲେଖିଲେ ବାପାଙ୍କ ପାଖକୁ, ''ଗୋପବନ୍ଧୁ ଚୌଧୁରୀ ଡେପୁଟି ପଦ ତ୍ୟାଗକରି ଗାନ୍ଧୀବାଦୀ ହୋଇଛନ୍ତି । ବିଳାସବ୍ୟସନ ଛାଡ଼ି ଅରଟରେ ସୂତା କାଟୁଛନ୍ତି । ରମାଦେବୀ କେବଳ ଡେପୁଟିଙ୍କ ପତ୍ନୀ ନୁହନ୍ତି, ପୁତ୍ରୀ ମଧ୍ୟ । ସେ ଖଦଡ଼ ଶାଢ଼ି ପିନ୍ଧି ଗାଁ ଗାଁ ବୁଲି ସ୍ୱରାଜ୍ୟର ବାର୍ତ୍ତା ପ୍ରଚାର କରୁଛନ୍ତି । ହରିଜନ ସାହିରେ ପଶି ମଇଳା, ଆବର୍ଜନା ସଫା କରୁଛନ୍ତି । ମହତାବ ଜମିଦାର.ପରିବାରର ଦୁଲାଳ । ରାଜକୀୟ ଆଟୋପକୁ ସେ ପାଦରେ ଦଳି ସଂଗ୍ରାମୀ ପାଲଟିଛନ୍ତି । ମୋ ପାଇଁ ପାଠ ବଡ଼ କଥା ନୁହେଁ, ବଡ଼ ପ୍ରଶ୍ନ ସ୍ୱରାଜ୍ୟ ।'' ଲେଖିଥିଲେ ପୁଣି, ''ସ୍ୱରାଜର ଅର୍ଥ କ'ଣ, ବୁଝିଛ ବାପା ? ସ୍ୱରାଜ୍ୟରେ ଭେଦାଭେଦ କିଛି ରହିବ ନାହିଁ । ଉଚ୍ଚନୀଚ ଭେଦ, ଜାତିଧର୍ମ ଭେଦ ବା ରାଜାରଇତ ଭେଦ । ରହିବ ନାହିଁ ଗୋରା ପୁଲିସର ଜୁଲୁମ୍ । ଗୋପବନ୍ଧୁ ଦାସ କହିଛନ୍ତି ପରା, ''ଡରାଇ ଶାସିବା ନୀତି ଭାଙ୍ଗିଯିବ, ପ୍ରଜାଙ୍କ ମତରେ ଶାସନ ଚାଲିବ ।'' ପୁଅର ଚିଠି ପଢ଼ି ମକଦ୍ଦମ ନରସିଂହ କୁଆଡ଼େ ନିଜ ଜିଭ କାମୁଡ଼ି ରକ୍ତବାନ୍ତି କରିଥିଲେ ।

କିନ୍ତୁ ଦେଶ ଏଡ଼େ ସହଳ ସ୍ୱାଧୀନ ହୋଇଯିବ, ପରାକ୍ରମୀ ବ୍ରିଟିଶ୍ ଭାରତ ଛାଡ଼ି ଚାଲିଯିବ, ଏକଥା ସ୍ୱପ୍ନରେ ବି ଭାବି ନ ଥିଲେ ନରସିଂହ । ହେଲେ, ନିମାଇଁ ବୁଝିଥିଲେ, ସ୍ୱରାଜ୍ୟର ପଥ କେହି ରୋଧିପାରିବେ ନାହିଁ । ଦେଶ ସ୍ୱାଧୀନ ହେଲାବେଳକୁ ନରସିଂହ ତାଙ୍କ ମାଟି ଉଆସରେ ବନ୍ଦୀ ପରି ଜୀବନ ବିତାଉଥିଲେ, ରାଜ୍ୟର ଅଗ୍ରଣୀ ଯୁବନେତା ଭାବରେ ଉଭା ହୋଇଥିଲେ ନିମାଇଁ ଦାସ ।

ଅଗଷ୍ଟ ବିପ୍ଳବ ସମୟରେ ମାତ୍ର କେଇ ସପ୍ତାହ ଜେଲ୍‌ରେ ବିତାଇ ସେ ବାଳକବନ୍ଦୀର ଗୌରବ ଅର୍ଜନ କରିଥିଲେ । ଏହା ଥିଲା ତାଙ୍କ ସଂଗ୍ରାମୀ ଜୀବନର ଏକ ଉଦ୍‌ଭାସିତ ଦିଗ । ପ୍ରଥମ ସାଧାରଣ ନିର୍ବାଚନରେ ସେ ବିଧାନସଭା ବା ଲୋକସଭା ପାଇଁ ପ୍ରାର୍ଥୀ ହେବେ ବୋଲି ପ୍ରାୟ ସମସ୍ତେ ଧରିନେଇଥିଲେ । କିନ୍ତୁ ବୟସ୍କ ସଂଗ୍ରାମୀମାନଙ୍କ ଲମ୍ବା ତାଲିକା ଭିତରେ ସେ ପ୍ରାୟ କେଉଁଆଡ଼େ ହଜିଗଲେ । ଅବଶ୍ୟ ପାର୍ଟିର ମୁଣ୍ଡିଆଳମାନଙ୍କଠାରୁ ତାଙ୍କୁ ମିଳିଥିଲା ଅନେକ ଆଶ୍ୱାସନା ଓ ତତୋଽଧିକ ପ୍ରତିଶ୍ରୁତି । ନିମାଇଁ ଦାସ ସବୁବେଳେ ନିଜକୁ ଗାନ୍ଧୀ-ଶିଷ୍ୟ ମନେକରି ଶୃଙ୍ଖଳିତ କର୍ମୀ

ଭାବରେ କାର୍ଯ୍ୟ କରୁଥିଲେ । କ୍ଷମତା-ରାଜନୀତି ପ୍ରତି ତାଙ୍କ ମନରେ ଯେ ଦୁର୍ବଳତା ନ ଥିଲା, ତା' ନୁହେଁ, କିନ୍ତୁ ସେହି ଦୁର୍ବଳତା କଦାପି ନ ଥିଲା ଦୁର୍ବାର । ବାପାଙ୍କ ଅନିଚ୍ଛାସତ୍ତ୍ୱେ ସେ ବିନା ଯାନିଯୌତୁକ, ବାଜାବାଣରେ ବାହାହୋଇଥିଲେ । ବାହାହୋଇଥିଲେ ପୁଣି ସାଧାରଣ ପରିବାରରେ । ନିରାଡ଼ମ୍ବର ଜୀବନ ବଞ୍ଚୁଥିଲେ, ନିତି ସୂତା କାଟୁଥିଲେ, ଗୀତାପାଠ ପରି ।

ଦ୍ୱିତୀୟ ସାଧାରଣ ନିର୍ବାଚନ ବେଳକୁ ନିମାଇଁ ଦାସଙ୍କର ଆଉ ଟିକେଟ୍ ପାଇବାର ସମ୍ଭାବନା ନ ଥିଲା । ପାଞ୍ଚ ସାତବର୍ଷ ମଧ୍ୟରେ ବିଗତ ସଂଗ୍ରାମର ଉଦ୍ଦୀପନାରେ ବେଶ୍ ଭଟ୍ଟା ପଡ଼ିଯାଇଥିଲା । ଗାନ୍ଧୀ-ଶିଷ୍ୟମାନେ ମାତିଥିଲେ କ୍ଷମତା କନ୍ଦଳରେ । କ୍ଷମତା ଅନେକଙ୍କୁ କରିଥିଲା ନିଶାସକ୍ତ । ମନ୍ତ୍ରୀପଦ ପାଲଟିଯାଇଥିଲା ଭୋଗର ଆୟୁଧ । ସ୍ୱରାଜର ସଂଜ୍ଞା ବଦଳି ବଦଳି ଯାଉଥିଲା ।

ଭୋଟ ଲଢ଼େଇପାଇଁ ଆଉ ମନ ବଳାଇଲେ ନାହିଁ ନିମାଇଁ ଦାସ । ବେଶ୍ କିଛିଦିନ ମେଳିବାନ୍ଧି ସୂତା କାଟିଲେ । ଦିନେ ସେ ଅନୁଭବ କଲେ ତାଙ୍କ ଆଗରେ କି ପଛରେ ଜଣେ ବି କେହି ସାଥୀ-ସହୋଦର ନାହାନ୍ତି । ତାଙ୍କର ମୋହଭଙ୍ଗ ହେଲା ; କିନ୍ତୁ ନିଜର ପରିପାଟୀ ସେ ବଦଳାଇ ପାରିଲେ ନାହିଁ । ବଦଳାଇ ପାରିଲେ ନାହିଁ ଆବାଲ୍ୟଅର୍ଜିତ ଅଭ୍ୟାସ ।

ନିମାଇଁ ଦାସ ଆଉ ଲୋକଙ୍କ ମେଳରେ ନ ଥିଲେ କି ମନରେ ବି ନ ଥିଲେ । ନବଭାରତର ଭାଗ୍ୟବିଧାତାମାନେ ତାଙ୍କୁ ଭଲପାଉଥିଲେ ନା ରୟତରୁ ନାଗରିକର ମାନ୍ୟତା ପାଇଥିବା ଜନଗଣ ତାଙ୍କୁ ଆପଣେଇ ପାରୁଥିଲେ । ନୀତି-ଆଦର୍ଶକୁ ଜାବୁଡ଼ିଧରି ସଂଗ୍ରାମ କରିହୁଏ ସିନା, ଶାସନ କରିହୁଏ ନା ସମାଜରେ ବଞ୍ଚିହୁଏ । ଅପ୍ରିୟ ସତରେ କ'ଣ ସଂସାର ଚଳେ ? ନିମାଇଁ ଦାସ କିନ୍ତୁ ସେସବୁ ବୁଝିବାକୁ ପ୍ରସ୍ତୁତ ନ ଥିଲେ । ସାଲିସ୍‌ର ଅର୍ଥ ତାଙ୍କୁ ଜଣା ନ ଥିଲା । ସତ କହିବାର ସତ୍‌ସାହସ ସେ ପାଇଥିଲେ ମହାତ୍ମାଙ୍କ ସାନ୍ନିଧ୍ୟରୁ । ଓଡ଼ିଶାକୁ ମହାତ୍ମାଙ୍କ ଶେଷ ଆଗମନବେଳେ ସେ ତାଙ୍କୁ ସ୍ୱ-ଚକ୍ଷୁରେ ଦେଖିଥିଲେ । ପ୍ରଥମ ଓ ଶେଷ ସାକ୍ଷାତର ସେ ଶିହରଣ ନିମାଇଁ ଦାସଙ୍କ ହୃଦୟରେ ଏକ ଅଲିଭା କ୍ଷତ ସୃଷ୍ଟି କରିଥିଲା । ତେଣୁ ରୋକ୍‌ଠୋକ୍ କହିବା, ରୋକ୍‌ଠୋକ୍ ଜିଇଁବା ଥିଲା ତାଙ୍କ ଜୀବନର ପଣ । କିଏ କ'ଣ ଭାବିଲା, ନ ଭାବିଲା, ସେଥିରେ ତାଙ୍କର ଯାଏଆସେ କେତେ ?

କାହିଁ କେତେକାଳ ତଳର କଥା । ଥରେ ତାଙ୍କ ଗାଁ ସମେତ ଦଶଖଣ୍ଡ ମୌଜାରେ ପଶିଥିଲା ବନ୍ୟାଜଳ । ବନ୍ୟାର ହେତୁ ଥିଲା ଦୁର୍ବଳ ନଦୀବନ୍ଧ, ଯାହା ରାତିଅଧରେ ଭାଙ୍ଗିଯିବାରୁ ପାଞ୍ଚଖଣ୍ଡ ପଡ଼ା ଏକପ୍ରକାର ନିଶ୍ଚିହ୍ନ ହୋଇଯାଇଥିଲା । ଉଦ୍ଧାର ପାଇଁ ଡଙ୍ଗା ତ ଡଙ୍ଗା, ଆହା କହିବାପାଇଁ ସରପଞ୍ଚ କି ଅଫିସର, କେହି ବି ତିନି ଦିନ

ପର୍ଯ୍ୟନ୍ତ ଗାଁ ମାଟି ମାଡ଼ି ନ ଥିଲେ । ଚତୁର୍ଥ ଦିନ ରିଲିଫ୍ ନାଁରେ ଗମରା ଚୁଡ଼ା ଓ ବଗଡ଼ା ଚାଉଳ ଧରି ଗାଁ'ରେ ପହଞ୍ଚିଥିଲେ ଦି'ଜଣ ଗ୍ରାମସେବକ ଓ ତିନିଜଣ ମାଷ୍ଟର । ଖାଦ୍ୟ ନାଁରେ ଅଖାଦ୍ୟ ବାଣ୍ଟୁଛ ବୋଲି ଅଭିଯୋଗ କରି ନିମାଇଁ ଦାସ ଚୁଡ଼ାଚାଉଳ ସବୁକୁ ନଇକୁ ଫିଙ୍ଗିଦେଇଥିଲେ । ଖୋଦ୍ କଲେକ୍ଟର ନ ଆସିବା ପର୍ଯ୍ୟନ୍ତ ରିଲିଫ୍‌ବଣ୍ଟା ସ୍ଥଗିତ ରହିଥିଲା ।

ଦି'ସପ୍ତାହ ଅନ୍ତେ ବନ୍ୟାଞ୍ଚଳ ଗସ୍ତରେ ଆସିଥିଲେ ମାନ୍ୟବର ବିଧାୟକ । ନିମାଇଁ ଦାସଙ୍କ ପ୍ରଶ୍ନବାଣରେ ସେ ମୁହୂର୍ତ୍ତକ ଭିତରେ ଶୁଖି କଳାକାଠ ପଡ଼ିଯାଇଥିଲେ । ବିଧାୟକ ଥିବା ପର୍ଯ୍ୟନ୍ତ ସେ ଆଉ କେବେ ସେ ଅଞ୍ଚଳବାସୀଙ୍କ ମୁହଁ ଚାହିଁ ନ ଥିଲେ, ନିମାଇଁ ଦାସଙ୍କ ଡରରେ । କିନ୍ତୁ ନିମାଇଁ ଦାସ ବିଭାଗୀୟ ମନ୍ତ୍ରୀଙ୍କୁ ବାରମ୍ବାର ଚିଠି ଲେଖିବା ସତ୍ତ୍ୱେ ନଦୀବନ୍ଧର ମରାମତି କାମ ଆରମ୍ଭ ହେଇ ନ ଥିଲା । ତହୁଁ ଦାସେ ଲୋକଙ୍କୁ ମତେଇ ନିଜେ ନଦୀବନ୍ଧ ମରାମତି କରିବାପାଇଁ ଅଣ୍ଟା ଭିଡ଼ିଲେ । ଲୋକେ ବା କାହିଁକି ତାଙ୍କ କଥା ଶୁଣନ୍ତେ ? ସ୍ୱାଧୀନ ଭାରତରେ ଭୋଅଟ୍ ଦେବାପରେ ତ ଲୋକଙ୍କ କାମ ସରିଗଲା । ମନ୍ତ୍ରୀ, ଏମ୍.ଏଲ୍.ଏ. ବଳେ ସେ କଥା ବୁଝିବେ ନାହିଁ । ଓଲଟି ଲୋକେ କୁହାକୁହି ହେଲେ, କଣ୍ଟ୍ରାକ୍ଟର, ଇଞ୍ଜିନିୟର ଟଙ୍କା ଖାଇବେ, ଆମେ ଗୋଡି ଖଟିବୁ ? କେହି କେହି କହିଲେ, ''ଏ ଲୋକଟା ଦେଇ ଖଡ଼ା ଶିଝିବ ନାହିଁ, ତା' କଥାକୁ ଦୂରୁ ଜୁହାର ।'' ଗୋଟେ ଇଲେକ୍‌ସନ ଯାଇ ଆଉ ଗୋଟ ଇଲେକ୍‌ସନ ଆଇଲା, ବନ୍ଧ ମରାମତି ନୋହିଲା ।

ସେହି ସମୟରେ ସରକାର ସଂଗ୍ରାମୀମାନଙ୍କପାଇଁ ଗୋଟେ ଅଭିନବ ଯୋଜନା ଆରମ୍ଭ କଲେ । ସଂଗ୍ରାମୀମାନଙ୍କର ତାଲିକା ପ୍ରସ୍ତୁତ କରାଯାଇ ଭତ୍ତା ପ୍ରଦାନ କରାଗଲା । ଦେଶପାଇଁ ଲଢ଼ିଥିବା ସଂଗ୍ରାମୀମାନଙ୍କ ପ୍ରତି ତାହାଥିଲା କୃତଜ୍ଞ ଜାତିର ଋଣପରିଶୋଧ । ଅକାମୀ, ଅଣପଚରା ଓ ଅକର୍ମଣ୍ୟ ହୋଇଯାଇଥିବା ଅନେକ ବୟସ୍କ ସଂଗ୍ରାମୀ ଯୋଜନାଟିକୁ ସ୍ୱାଗତ କରିଥିଲେ । କିନ୍ତୁ ନିମାଇଁ ଦାସ ଯାହା ବୁଝିଥିବେ ଫାଳେ । ଦେଶପାଇଁ ଲଢ଼ିଥିବାରୁ ପାରିଶ୍ରମିକ ପାଇବାପାଇଁ ସରକାରୀ ଟ୍ରେଜେରିକୁ ଦୌଡ଼ିବା କଥାଟାକୁ ସେ ଜମାରୁ ଗ୍ରହଣ କରିପାରିଲେ ନାହିଁ । ଯୋଜନା ବିରୋଧରେ ବିକ୍ଷୋଦ୍‌ଗାର କରି ଖବରକାଗଜମାନଙ୍କରେ ପ୍ରତିବାଦ ପତ୍ର ଲେଖିଲେ । ହେଲେ, ସେ ନିଜେ ସିନା ଭତ୍ତା ପ୍ରତ୍ୟାଖ୍ୟାନ କଲେ, ଅନ୍ୟଜଣଙ୍କୁ ବି ସେଥିରୁ କ୍ଷାନ୍ତ କରାଇପାରିଲେ ନାହିଁ ।

ସ୍ୱାଧୀନତାର ରଜତ ଓ ସୁବର୍ଣ୍ଣ ଜୟନ୍ତୀ ଅବସରରେ ନିମାଇଁ ଦାସଙ୍କୁ ସମ୍ବର୍ଦ୍ଧନା ଦେବାପାଇଁ ସରକାର ଘୋଷଣା କରିଥିଲେ ବି ସେ କୌଣସି ସଭାସମିତିକୁ ଯାଇ ନ ଥିଲେ । ବରଂ ଜିଲ୍ଲା କଲେକ୍ଟରଙ୍କ ଗହଣରେ ରାଜ୍ୟର ଜଣେ ବରିଷ୍ଠ ମନ୍ତ୍ରୀ

ତାମ୍ରଫଳକ ଓ ପ୍ରଶସ୍ତିପତ୍ର ପ୍ରଦାନ କରିବା ନିମନ୍ତେ ତାଙ୍କ ଘରେ ପହଞ୍ଚି ସର୍ବଜନ ସମ୍ମୁଖରେ ଭର୍ତ୍ସିତ ହୋଇଥିଲେ ।

ତା'ପରଠୁଁ ସେ କ୍ରମାଗତ ଭାବରେ ରାଜରୋଷର ଶିକାର ହୋଇଆସୁଥିଲେ । ଘର ବାହାରେ ଯେମିତି, ଘର ଭିତରେ ସେମିତି, ସେ କାଳକ୍ରମେ ବାଛନ୍ଦ ହୋଇପଡ଼ିଲେ । ମନ୍ତ୍ରୀ, ଏମ୍.ଏଲ୍.ଏ.ମାନଙ୍କ ଉପରେ ଗାର୍ଜନପଣିଆ ଜାହିର୍ କରୁଥିବା ସତ୍ତ୍ୱେ, ନା ସେ ତାଙ୍କ ବେକାର ଜୋଇଁ ପାଇଁ ଖଣ୍ଡେ ଚାକିରି ଯୋଗାଡ଼ କରିପାରିଲେ, ନା ଏକମାତ୍ର ଅଧ୍ୟାପକ ପୁଅକୁ ଦୂରଦୂରାନ୍ତରୁ ଆପଣା ଜିଲ୍ଲାକୁ ବଦଳି କରି ଆଣିପାରିଲେ ? ବନ୍ଧୁବାନ୍ଧବ, ସାହିପଡ଼ିଶା, କାହାରି କାମରେ ସେ ଲାଗିପାରିଲେ ନାହିଁ । ସବୁବେଳେ ଟାଇଁଟାଇଁ କଥା, ଫଁ ଫଁ ଭାବ । କିଏ କାହିଁକି ତାଙ୍କ କଥା ଶୁଣନ୍ତା ଭଲା !

ଏଡ଼େ ବଡ଼ ଘରଟାରେ ଏକା ରହନ୍ତି ନିମାଇଁ ଦାସ । ପୁଅବୋହୂ ତ ସବୁବେଳେ ପ୍ରବାସରେ, କଦବା କେମିତି ଗାଁକୁ ବୁଲିଆସନ୍ତି । ଝିଅଜୋଇଁଙ୍କ ପାଦ ପ୍ରାୟ ପଡ଼େ ନାହିଁ ତାଙ୍କ ଉଆସରେ । ପୁଣି, ଅନେକଦିନରୁ ସେ ମୃତଦାର । ତଥାପି ତାଙ୍କ ଅଣ୍ଟାରେ ଅଣ୍ଟେ ବଳ, ସିଂହଠାଣି, ଯେମିତି କି ସେମିତି । ଭାଙ୍ଗିଯିବେ ସିନା, ନଇଁବେ ନାହିଁ ।

ଏମିତି ଥରେ ଦାସେ ଭାଙ୍ଗିଗଲେ ସିନା, ନଇଁଲେ ନାହିଁ । ସେ ଦଶ ବର୍ଷ ତଳର କଥା । ସେତେବେଳକୁ ବି ତାଙ୍କ ବୟସ ସତୁରିରୁ କମ୍ ହେବ ନାହିଁ । ଭୋଅଟ୍ ଦିନ ଉପରବେଳାର ଘଟଣା । ସକାଳୁ ସକାଳୁ କିଛି ଲୋକ ଯାଇ ଭୋଅଟ୍ ଦେଇ ଫେରିଥିଲେ । ଦିନ ବଢ଼ିଲାବେଳକୁ ବୁଥ୍‌ରେ ଭିଡ଼ ବଢ଼ିଲା । ରୋଷେଇବାସ ସାରି ଗାଁ ମାଇପେ ଭୋଅଟ୍ ଦେବାକୁ ଯାଇଥିଲେ ପ୍ରାଇମେରୀ ସ୍କୁଲକୁ; କିନ୍ତୁ ଭୋଅଟ ଦେଇ ନ ପାରି ଫେରିଲେ । ବୁଥ୍ ଆଗରେ ଗଣ୍ଡଗୋଳ, ମାଡ଼ପିଟ୍; କେତେଜଣ ଟୋକାଙ୍କ ହାତରେ ଲାଠି ତ ଆଉ କେତେକଙ୍କ ହାତରେ ଖଣ୍ଡା । କାହାରି କାହାରି ପକେଟରେ ପିସ୍ତଲ ଥିଲା ବୋଲି ବି ଗୁଜବ ହେଉଥିଲା । ବୁଥ୍ ଗେଟ୍‌ରୁ ଫେରିଆସିଲେ ମାଇପିମହଲ । ଗାଁ'ର କେତେଜଣ ଭେଣ୍ଡା ବି ମେଣ୍ଢାପଲ ପରି, ପଛମୁହାଁ ହୋଇ ବାହୁଡ଼ିଆସିଲେ ନିଜ ନିଜ ଘରକୁ । ପୁଲିସ୍-ଦାରୋଗାଙ୍କ ଦେଖା ନ ଥିଲା, ନ ଥିଲା ହାକିମହୁକୁମାଙ୍କ ସୋରଶବ୍ଦ ।

ବେଳଗଡ଼ାଣିକୁ ଭୋଅଟ୍ ଦେବାକୁ ବାହାରିଲେ ନିମାଇଁ ଦାସ । ହାତରେ ବଙ୍କୁଲିବାଡ଼ି, ସଳଖ ଚାଲି । ତାଙ୍କ ଚାଲିବା ତ ଅନ୍ୟମାନଙ୍କ ଦୌଡ଼ିବା ସାଙ୍ଗେ ସମାନ । ବୁଥ୍ ପାଖରେ ପହଞ୍ଚିଲାବେଳକୁ ଟୋକାମେଳି । ସେ କିନ୍ତୁ ସିଧା ଚାଲିଲେ ବୁଥ୍ ଭିତରକୁ । ଜଣେ ଟୋକା ତାଙ୍କ ବାଟ ଓଗାଳିଲା । କହିଲା, "ମଉସା,

ଭୋଅଟ୍ ଦିଆସରିଲାଣି । ତୁମେ ଫେରିଯାଅ ?'' ଦାସେ ଖିଙ୍କାରିଲେ, ''କ'ଣ କହିଲୁ ରେ, ଫେରିଯିବି । ତୁ କିଏ ବେ ମୋତେ ଫେରିଯିବାପାଇଁ କହିବାକୁ ! ଆହୁରି ଘଣ୍ଟେ ସମୟ ବାକି ଅଛି ।'' କହୁକହୁ ପୁଣି ସେ ବୁଥ୍ ଭିତରକୁ ପଶିବାପାଇଁ ଉଦ୍ୟତ ହେଲେ ।

ସେ କ'ଣ ଜାଣିଥିଲେ ଏସବୁ ବୁଥ୍ କ୍ୟାପ୍‌ଚରିଂର ଲୀଳା ! ଶାସକଦଳର ବିଧାୟକ ପାଞ୍ଚ ବର୍ଷ ଭିତରେ ପାଞ୍ଚଶ' ମହଣ ବଦ୍‌ନାମି ପଙ୍କରେ ପୋତି ହୋଇପଡ଼ିଥିଲେ । ବିଧାୟକ ମହାଶୟ କୂଅ, ପୋଖରୀ, ରାସ୍ତାଘାଟ, ବନ୍ଧବାଡ଼, ଏପରିକି ଗରିବଗୁରୁବାଙ୍କ ଭତ୍ତାରୁ କୁଆଡ଼େ ପଣି ଆଦାୟ କରୁଥିଲେ । ଦାମୀ ଗାଡ଼ିରେ କେବଳ ନିର୍ବାଚନମଣ୍ଡଳୀ ଗସ୍ତ କରୁଥିଲେ, ତା' ନୁହେଁ, ଗାଁ ଗାଁରେ ଟୋକା ଡାହାଳ ବି ପୋଷିଥିଲେ । କିନ୍ତୁ ହାରିଯିବା ଭୟରେ ସେ ପ୍ରସ୍ତୁତ କରିଥିଲେ ଏକ ଅଭିନବ ଖସଡ଼ା । ନଈ ଆରପାରି ଦୁର୍ଗମ ଅଞ୍ଚଳରେ ବୁଥ୍ କ୍ୟାପ୍‌ଚରିଂ । ତିରିଶଟି ବୁଥ୍‌ରୁ ଷାଠିଏ ପ୍ରତିଶତ ଭୋଅଟ୍ ମିଳିଗଲେ ତାଙ୍କର ଜିତାପଟ୍ ନିଶ୍ଚିତ ବୋଲି ସେ ହିସାବ କରି ଜାଣିପାରିଥିଲେ । ତେଣୁ ବେକାର ଯୁବକମାନଙ୍କୁ ସେ କରିଥିଲେ ହାତବାରିସି । ଅନ୍ୟ ଅଞ୍ଚଳରୁ କିଛି ପହେଲ୍‌ମାନଙ୍କୁ ଭଡ଼ାରେ ମଧ୍ୟ ଆଣିଥିଲେ । ନିମାଇଁ ଦାସ ଏସବୁର କୂଳକିନାରା ପାଆନ୍ତେ କିପରି ?

ଟୋକାମାନଙ୍କ ମନା ସିନା ସେ ମାନିଲେ ନାହିଁ, ହେଲେ, ଜଣେ ପହେଲ୍‌ମାନଜାତୀୟ ଭଡ଼ାଟିଆ ତାଙ୍କ ହାତଧରି ଅଟକାଇଦେଲା । ତହୁଁ ଦାସଙ୍କୁ ସମ୍ଭାଳେ କିଏ ? ତାଙ୍କ ରାଗ ତ ପଞ୍ଚମକୁ ଉଠିଗଲା । ବଙ୍କୁଲିବାଡ଼ି ସାହାଯ୍ୟରେ ପହେଲମାନ୍‌ର ବେକକୁ ଟାଣି ସେ ତଳେ ପକାଇଦେଲେ । ତା'ପରେ ଦେହମୁଣ୍ଡରେ କଷିଗଲେ ପାହାର ଉପରେ ପାହାର । ଡାହାଳମାନେ ଛତ୍ରଭଙ୍ଗ ଦେଲେ । ଗୁଣ୍ଡ ହୋଇଗଲେ ଗାଁ ମାଇପେ, ପିଲାକବିଲା । ସତୁରି ବର୍ଷର ଗୋଟେ ବୁଢ଼ାର ହିମ୍ମତ ଦେଖି ତାଜୁବ ହେଲେ ବୁଢ଼ା ଟୋକା, ସ୍ତ୍ରୀଲୋକ । ଦାସେ ନିଜେ ଭୋଅଟ୍ ଦେଲେ, ଅନ୍ୟମାନଙ୍କୁ ଭୋଅଟ୍ ଦିଆ କରାଇଲେ ।

ପୁରୁଣା ବିଧାୟକ ଆଉ ବିଧାନସଭା ମୁହଁ ଦେଖିଲେ ନାହିଁ । ହେଲେ, ନୂଆ ବିଧାୟକ କୋଉ ବା ଦାସଙ୍କୁ ପଚାରିଲେ ? ବରଂ ଦାସଙ୍କ ନାଁରେ ଫୌଜଦାରୀ ମୋକଦ୍ଦମା ହୋଇଥିବା କଥା ପରେ ଜଣାପଡ଼ିଲା । ଘନଘନ ଡାକରା ଆସିଲା ଥାନାରୁ । ମାମଲା ଗଡ଼ିଲା ବେଶ୍ କିଛିଦିନ । ତା'ପରେ କ'ଣ ହେଲା କେଜାଣି, ଦାସେ ଆଉ ଫାଣ୍ଡିକୁ ଦୌଡ଼ିବା ଦେଖାଗଲା ନାହିଁ । ଜନସ୍ମୃତିରୁ ବି ସେ ଘଟଣାର ଛାପ ଲିଭିଗଲା ।

ମୁହଁ ଅନ୍ଧାରରେ ଗାଁ'ର ବୟସ୍କ ଓ ବିଜ୍ଞଜନମାନେ ଦଶ ବର୍ଷ ତଳର ସେହି ଘଟଣା ଓ ଅଗତ୍ୟା ଦାସଙ୍କ ଥାନା ଗମନ ମଧ୍ୟରେ ଏକ ସୂକ୍ଷ୍ମ ସମ୍ବନ୍ଧ ଥିବା ଅନୁମାନ କରୁଥିଲେ । ତେବେ, ସଞ୍ଜସଞ୍ଜିଆ କିଏ ବା କାହିଁକି ଥାନାକୁ ଯିବାପାଇଁ ଭରସିବ ? କାହାକୁ ବା ଅଛପା ପୁଲିସଙ୍କ ଗୁଣ– ବିନାମେଘେ ସୃଜିପାରନ୍ତି କୁଳୀଶ । ତେବେ ଜଣେଅଧେ ସଦୟ ଓ ସହୃଦୟ ଗ୍ରାମବାସୀ ଦାସଙ୍କ ପୁଅକୁ ଫୋନ୍ ମାଧ୍ୟମରେ ସେ କଥା ଜଣା କରାଇଲେ ।

ଦାସଙ୍କ ପୁଅ, ରାତାରାତି ଗାଡ଼ି ଚଢ଼ି, ସକାଳୁ ଆସି ଥାନାରେ ହାଜର ହେଲେ । ଥାନା ହତାରେ ସେତେବେଳକୁ ଘୋର ନିଶୀଥ । କେବଳ ବୁଲାକୁକୁରମାନଙ୍କ ପ୍ରେମାଳାପ । ବାପାଙ୍କୁ ଥାନା ମୁକାମରେ ଦେଖିବାକୁ ପାଇଲେ ନାହିଁ ବିଚରା ଅଧ୍ୟାପକ । ନିୟମିତ ବ୍ୟବଧାନରେ ଚା' ସେବନ କରି ଥାନାର ବଡ଼ବାବୁଙ୍କୁ ଅପେକ୍ଷା କରି ରହିଲେ । ତେବେ, ଅନ୍ୟଦିନ ତୁଳନାରେ ସେଦିନ ସହଳ ଥାନାରେ ପହଞ୍ଚିଲେ ବଡ଼ବାବୁ । ବଡ଼ବାବୁଙ୍କ ଶ୍ରୀଛାମୁରେ ବିନୀତ ମୁଦ୍ରାରେ ଠିଆହୋଇ ଅଧ୍ୟାପକ ଦାସ କହିଲେ, '' ଆଜ୍ଞା, ମୋ ବାପା ନିମାଇଁ ଦାସ ଅଶୀବର୍ଷର ବୁଢ଼ା । ସେ କି ଦୋଷ କଲେ ଯେ ଆପଣଙ୍କ ସିପାହି ତାଙ୍କୁ ଗତ ରାତିରୁ ବାନ୍ଧିଆଣିଛନ୍ତି ? ଥାନା ହାଜତରେ ତ ସେ ଦିଶୁ ନାହାନ୍ତି । ଆପଣ କେଉଁଠି ତାଙ୍କୁ ଲୁଚେଇ ରଖିଛନ୍ତି, କିଏ ଜାଣେ ?'' ଏତିକିରେ ବଡ଼ବାବୁଙ୍କ ବଡ଼ପଣରେ ଯେମିତି କଳଙ୍କ ଲାଗିଗଲା । ତାଙ୍କ ଚାହାଣି, ଚମକ ସବୁ ବଦଳିଗଲା ଏକାଥରକେ । ପୁଣି ତାଙ୍କ ଈଷତ୍ ନାଲିଆଖିଯୋଡ଼ିକ ରକ୍ତଜବାର ରୂପ ନେଲା । ପ୍ରଜାପାଟକମାନେ ପ୍ରାର୍ଥନା ନ କରି ପ୍ରଶ୍ନ କରିବା କେବେଠାରୁ ଶିଖିଲେ ବୋଲି ସେ ନିଜକୁ ପଚାରିଲେ ଓ ତା'ପରେ ଗର୍ଜିଲେ, ''ତୁମ ବାପା ଗୋଟେ ହ୍ୟାବିଚୁଆଲ୍ ଅଫେଣ୍ଡର୍ । ତାଙ୍କ ନାଁରେ ହଜାରେ କେସ୍ । ମେଳିବାନ୍ଧିବା, ଦଙ୍ଗା କରିବା, ଏମ୍.ଏଲ୍.ଏ., ମନ୍ତ୍ରୀଙ୍କୁ ଗାଳିଦେବା, କଲେକ୍ଟରଙ୍କୁ ଅପମାନିତ କରିବା, ଆଇନ ଭାଙ୍ଗିବା, ରିଲିଫ୍ ଲୁଟିବା, ଏପରିକି ଇଲେକ୍‌ସନ୍ ପ୍ରୋସେସ୍‌ରେ ବାଧା ଉପୁଜାଇବା, କେଉଁ ଅଭିଯୋଗ ନାହିଁ ଯେ ତୁମ ବାପା ନାଁରେ ?'' ଅଧ୍ୟାପକ ଦାସ କାନରେ ହାତ ଦେଇଥା'ନ୍ତେ । କିନ୍ତୁ ତାଙ୍କ କ୍ଳାନ୍ତ ହାତ ଦୁଇଟି କାନ ପର୍ଯ୍ୟନ୍ତ ଉତ୍‌ଥିତ ହେବାକୁ କୁଣ୍ଠିତ ହେଲେ ଯେମିତି !

ବଡ଼ବାବୁ କିନ୍ତୁ କହିଚାଲିଲେ, ''ଆଜି ଏଠି ଅଧଡଜନେ ମନ୍ତ୍ରୀଙ୍କର ପ୍ରୋଗ୍ରାମ୍ । ତୁମ ବାପାଙ୍କୁ ମୁଁ ଛାଡ଼ିଦେଇ..'' ବଡ଼ବାବୁଙ୍କ କଥା ସରି ନ ଥିଲା, ସେ ତରବର ହୋଇ ଚେୟାରରୁ ଉଠିଗଲେ ।



# ସଂପର୍କ

ଝରଣା-ନୂଆବୋଉ କାହିଁକି ବିଷଖାଇ ମଲେ, ସେ ପ୍ରଶ୍ନ ଜମାରୁ ମୋ ମନକୁ ଆସି ନ ଥିଲା ସେତେବେଳେ । ସଂସାରର ଜଟିଳ କଥା ବୁଝିଲା ପରି ବୟସ ମୋର ବା କୋଉ ହୋଇଥିଲା ? ମୁଁ ପଞ୍ଚମ କି ଷଷ୍ଠ ଶ୍ରେଣୀରେ ପଢୁଥିଲି ବୋଧେ । କିନ୍ତୁ ମୋର ଠିକ୍ ମନେଅଛି ଯେ ଗୋଟେ ଖରାଦିନିଆ ଉପରଓଳିରେ ହିଁ ଝରଣା-ନୂଆବୋଉ ମରିଥିଲେ ।

ଖରାଦିନେ ସକାଳୁଆ ସ୍କୁଲ ହେଉଥିଲା ଓ ଦଶଟା କି ସାଢ଼େଦଶଟା ବେଳକୁ ଆମେ ସ୍କୁଲ ପିଲାମାନେ ଆସି ଘରେ ହାଜର୍ ହୋଇଯାଉଥିଲୁ । ଖରାଦିନ ଆମ ଗାଁ ପାଇଁ ଯେତିକି ଭଲ, ସେତିକି ଖରାପ ମଧ୍ଯ ଥିଲା । ଆମ ଘରପଛ ବାଡ଼ିରେ ଗୋଟିଏ ବଡ଼ ପୋଖରୀ ଥିଲା ଓ ପୋଖରୀ ଦି' ପାଖରେ ଥିଲା କରଞ୍ଜ ବରଜ । ଖରାଦିନେ କରଞ୍ଜଫୁଲ ତ ଫୁଟୁଥିଲା; କିନ୍ତୁ କରଞ୍ଜ ଗଛମୂଳରେ ବିଛୁରି ହୋଇ ପଡୁଥିବା କୁଢ଼ କୁଢ଼ କରଞ୍ଜଫୁଲ ଭାରି ସୁନ୍ଦର ଦିଶୁଥିଲା । ଦି'ପହରିଆ ଆମ୍ବ ଗଛକୁ ବାଟୁଳିମାରି ବା ଢେଲା ଫିଙ୍ଗି ଆମ୍ବ ଝଡ଼େଇବା ନ ହେଲେ ଟିଣବାଡ଼େଇ ମାଙ୍କଡ଼ ତଡ଼ିବା ଥିଲା ଆମର ନିତିଦିନିଆ କାମ । ମୁଁ ପ୍ରାୟତଃ ଖରାବେଳେ ବୁଢ଼ୀମା' ପାଖରେ ଶୋଉଥିଲି ଓ ବୁଢ଼ୀମା' ଶୋଉ ଶୋଉ ଘୁଙ୍ଗୁଡ଼ି ମାରୁଥିଲା । ତେଣୁ ଖରାବେଳଟା ଆମ୍ବବଗିଚା ବା ପୋଖରୀହୁଡ଼ାରେ ସାଙ୍ଗମାନଙ୍କ ସହ ବିତେଇବା ମୋପାଇଁ ଭାରି ସହଜ ଥିଲା ।

ଆମ ଗାଆଁର ଖରାଦିନ ବି ଗୋଟେ ବଡ଼ ଅସୁବିଧାକୁ ବାଟ କଢ଼େଇ ଆଣୁଥିଲା । ଗାଆଁ ଚାରିପାଖ ବିଲବାଡ଼ି, ବର୍ଷାଦିନ ପରି ପଚର ପଚର ହଉଥିଲା ବୈଶାଖ ମାସରେ । ପ୍ରଥମରୁ ଆମ ଗାଆଁରେ ଉଠା ଜଳସେଚନ ବ୍ୟବସ୍ଥାଟିଏ ଥିଲା । କୃଷି ଅଫିସରମାନେ ଗାଆଁ ମଣ୍ଡପ ପାଖରେ କେତେଥର ସଭା କରିବା ଓ ଅଧିକ ଅମଳକ୍ଷମ ଧାନ ବିଷୟରେ ସିନେମା ଦେଖେଇବା କଥା ମୁଁ ଭୁଲି ନାହିଁ । ତାଇଚୁଙ୍ଗ ଚାଷକରି ସାର ପକେଇଲେ ଜମି ପଥର ପାଲଟିଯିବ ବୋଲି ସେତେବେଳେ ଭାରି ଆଲୋଚନା ହଉଥିଲା ଗାଆଁରେ । ପୁଣି ଧାନ ସ୍ୱୟଂ ଲକ୍ଷ୍ମୀ ହୋଇଥିବାରୁ ସେଥିରେ ବିଷ ଓଷଦ ଦବା କଥାଟାକୁ ବୁଢ଼ାଲୋକମାନେ ଭାରି ନାପସନ୍ଦ କରୁଥିଲେ । ତଥାପି ଆମ ଗାଆଁରେ ହିଁ ପ୍ରଥମକରି ତାଇଚୁଙ୍ଗ ଚାଷ ଆରମ୍ଭ ହୋଇଥିଲା । ତେଣୁ ବିଲବାଡ଼ି ତ ପାଣିସରସର ହଉଥିଲା, ତା'ଛଡ଼ା ପଘା ଛିଡ଼େଇ କିଆରିରେ ପଶି ଧାନ ଖାଉଥିବା

ଗୋରୁଗାଈ କଦବା କେମିତି ଛଟପଟ ହେଇ ମରୁଥିଲେ । ବୁଲା କୁକୁରଗୁଡ଼ିକ ବିଷାକ୍ତପାଣି ପିଇ କ୍ରମାଗତଭାବରେ ମରୁଥିବାରୁ ଗାଆଁରେ କୁକୁର ସଂଖ୍ୟା କମିବାରେ ଲାଗିଥିଲା । କିନ୍ତୁ ସେହି ବିଷଓଷଦ ଯେ ମଣିଷ ଜୀବନକୁ ବି କାବୁ କରିବ, ଏକଥା ବୋଧେ କେହି କେବେ ଭାବି ନ ଥିଲେ ।

ପୋଖରୀଠାରୁ ଅଳ୍ପ ଦୂରରେ ଆମର ଗୋଟେ ଖୁବ୍ ବଡ଼ ଇଜିମାଲି ଖଳା ଥିଲା ଓ ସେଠି ପନ୍ଦରଟା କି କୋଡ଼ିଏଟା ପାଳ ବଦାଡ଼ି ବସୁଥିଲା । ଭୁଆ, ମକରା, ପାଗଳ, ଗେଣ୍ଡୁଆ ଓ ମୁଁ ଆମ୍ବ ଖାଇବା ପର୍ବ ସାରି ସେହି ପ୍ରଶସ୍ତ ଖଳାରେ ଲୁଚକାଳି ଖେଳି ଦୁଲମାଦଲ୍ କରୁଥିଲୁ । ଆମ ଖଳା ଯୋଉଠି ସରିଛି, ସେଠୁ ବଇଷମ ସାହିର ଆରମ୍ଭ । ବଇଷମ ସାହିରୁ ସେଦିନ ହଠାତ୍ ପାଟିତୁଣ୍ଡ ଶୁଭିବାରୁ ଆମେସବୁ ଖେଳ ଭାଙ୍ଗି ଅତର୍ଚ୍ଛା ସେହିଆଡ଼କୁ ଧାଇଁଲୁ । ବଇଷମ ସାହିରେ ଯାଇ ଦେଖୁ ତ ରାମବଡ଼ବାପାଙ୍କ ଘର ଆଗରେ ଅନେକ ଲୋକ ଜମିଛନ୍ତି । ତାଙ୍କ ବାଡ଼ିପଟରେ ଥିବା ଝରଣା-ନୂଆବୋଉଙ୍କ ଶୋଇବା-ଘରର ବନ୍ଧକବାଟ ତଡ଼ାଚାଲିଛି । ପିଲା-ମାଇପିଙ୍କ ଭିତରେ କାନ୍ଦବୋବାଳି ପଡ଼ିଛି । ମୁଁ ହଠାତ୍ କିଛି ବୁଝିପାରିଲି ନାହିଁ । ବନ୍ଧକବାଟ ତଡ଼ା ସରିଲା ପରେ କେହି ପୁରୁଷଲୋକ ସେ ଘର ଭିତରକୁ ପଶିଲେ ନାହିଁ । ରାମବଡ଼ବାପାଙ୍କ ବଡ଼ବୋହୂ ଯାହାଙ୍କୁ ଆମେ ଶାନ୍ତି-ନୂଆବୋଉ ବୋଲି ଡାକୁ, ସେ ଘର ଭିତରକୁ ପଶିଲେ ଓ ସେଠାରୁ ତାଙ୍କ ବାହୁନା ଶୁଭିଲା, ''ଏ ତୁ କ'ଣ କଲୁ ଲୋ ଝରା, ଶେଷକୁ ଜୀବନ ହାରିଦେଲୁ ।'' ଝରଣା-ନୂଆବୋଉ ବିଷଖାଇ ମରିଛନ୍ତି ବୋଲି ସେଇଠୁ ଯାଇ ଜଣାପଡ଼ିଲା ।

ବିଷଖାଇ କୌଣସି ଲୋକ ମରିବା ଘଟଣା ଆମ ଗାଆଁରେ ଆଗରୁ କେବେ ଘଟି ନ ଥିଲା । ପୁଣି ନୂଆ ଭୁଆସୁଣୀଟେ ବିଷଖାଇ ମରିବା ଘଟଣା ଆଖପାଖ ପାଞ୍ଚଖଣ୍ଡ ଗାଆଁରେ ଥିଲା ଅଜଣା ଅଶୁଣା । ମୂଳରୁ ଖରାଟିଆ ଚାଷ ସପକ୍ଷରେ ନ ଥିବା ଲୋକେ ପ୍ରଥମେ ତାଇଚୁଙ୍ଗ ଧାନର ଦୋଷ ଦେବାରେ ଲାଗିଲେ । ନରି ନାହାକ ଜ୍ୟୋତିଷେ ନାସ ଶୁଙ୍ଘୁ ଶୁଙ୍ଘୁ କହିଲେ, ''କଳିକାଳ, ଘୋର କଳିକାଳ । ମଣିଷ ଧାନ ଖାଉଥିଲା, ଏବେ ଦେଖ ଧାନ ମଣିଷ ଖାଇଲା । ଏଥର ନୂଆ ପାଞ୍ଜିରେ ଲେଖାଅଛି ଦେଶକୁ ଘୋର ବିପତ୍ତି ପଡ଼ିବ । ବହୁ ଧନଜୀବନ ଅବଶ୍ୟ କ୍ଷୟ ଯିବ । ରଣେ, ବଣେ, କବାଟକୋଣେ– ସବୁଠି ଖାଲି ମରଣର ସୁଅ ଛୁଟିବ । ସାଧୁ ସାବଧାନ ।'' ଗାଆଁ ମାଇନର ସ୍କୁଲ ମାଷ୍ଟର ଓ ଗ୍ରେନ୍‌ଗୋଲା ସେକ୍ରେଟାରୀ ପଞ୍ଚୁ ପ୍ରଧାନ ସେତେବେଳକୁ ବଇଷମ ସାହିରେ ଆସି ପହଞ୍ଚିଯାଇଥିଲେ । ''ଥାନାବାଲା ପ୍ରଥମେ ଆସିବେ । ଶବକୁ ପୋଷ୍ଟମର୍ଟମ୍‌ପାଇଁ ପଠାଯିବ, ତା'ପରେ ଯାଇ ଯୋଉ କଥା ।'' – ସେ କହିଲାବେଳକୁ ସାରା ଗାଆଁରେ ଗୋଟେ କୋକୁଆଭୟ ଖେଳିଗଲା । ୱାର୍ଡ଼ ମେମ୍ବର ଗୋଲୋକ ସାହୁ କିନ୍ତୁ ହିମ୍ମତ ଦେଲା, ''ଯାହା ହବ ଦେଖାଯିବ; ଭୟକରନା ।'' ପିଣ୍ଡାରେ ଝାଉଁଳିପଡ଼ିଲା ପରି ବସିଥିବା ରାମବଡ଼ବାପାଙ୍କୁ ବୁଝେଇଲା ଭଳି ସେ ପୁଣି କହିଲା, ''ଥାନାର ସାନବାବୁ ମୋର ଜଣାଶୁଣା, ଚିନ୍ତା କର ନାହିଁ ଦାସେ ।''

ଆମେ ପିଲାମାନେ ବଡ଼ମାନଙ୍କ ଆଲୋଚନା କିଛି ବୁଝୁଥିଲୁ, ଅନେକ କିଛି ବୁଝିପାରୁ ନ ଥିଲୁ । କିନ୍ତୁ ଆମକୁ ଲାଗୁଥିଲା ଗାଆଁ ମୁଣ୍ଡ ଉପରେ ଯେମିତି ଗୋଟେ ଚଡ଼କ ପଡ଼ିଛି । ସମସ୍ତଙ୍କ ମୁହଁରେ ଗୋଟେ ଥମ୍ ଥମ୍ ଭାବ ବାରି ହୋଇପଡୁଥିଲା । ଯୁଦ୍ଧ କି ମହାମାରୀ ପରି ଅଜଣା ଆତଙ୍କ ଭିତରେ ନିରୀହ ଗାଆଁଟା ଯେମିତି ଛଟପଟ ହେଉଥିଲା । ଆମ ଭିତରେ ସବା ବଡ଼ ଭୁଆ ଯେ କି ପଞ୍ଚମ ଶ୍ରେଣୀରେ ତିନି ଥର ଫେଲ୍ ହୋଇଥିଲା, ତାକୁ ଏଥିରୁ ଭାରି ମଜା ଲାଗୁଥିଲା । କିନ୍ତୁ ମୋ ପେଟ ଭିତରଟା ଖାଲି ଘାଣ୍ଟିଚକଟି ହେଉଥିଲା । ମନ ଥୟ ଧରୁ ନ ଥିଲା । ପୁଲିସ ଆସି ରାମବଡ଼ବାପା ଆଉ ତାଙ୍କ ବଡ଼ପୁଅ ସଦାନ୍ନାକୁ ବାନ୍ଧିନବ ବୋଲି କେହି କେହି କହୁଥିବାର ମୁଁ ଶୁଣିଲି । ମଣ୍ଡପଛକରେ ପାନଦୋକାନ କରିଥିବା ରଥ ମହାକୁଡ଼ କହୁଥିଲା– ରାମଦାସ ବଡ଼ବୋହୂକୁ ବି ଜିଅଲ୍ ହେଇଯିବ । ବାହାଘର ଦି'ବର୍ଷ ହେଇନି, ଭୁଆସୁଣୀଟା ବିଷଖାଇ ମଲା, ପୁଣି ତା' ଗେରସ୍ତ ଘରେ ନାହିଁ, ପୁଲିସ ସବୁଠୁଁ ବେଶି ସନ୍ଦେହ କରିବ ତା' ବଡ଼ଯାଆକୁ ।

ରାମବଡ଼ବାପାଙ୍କ ଦାଣ୍ଡରେ ଲୋକଗହଳି ବଢୁଥିଲା, ତେଣେ ମାଇପି ମହଲରେ ଚରିଯାଉଥିଲା ଗୋଟେ ଫୁସୁରୁଫାସର । ''ଝରଣା ବିଷ ଖାଇଛି ନା ତାକୁ ଶାନ୍ତି ବିଷ ପିଆଇଦେଇଛି, କିଏ ଜାଣେ ଲୋ ମା' । ଶାନ୍ତି କୋଉ ଭଲ କି ? ସଦାଠାରୁ ଦିଅର ଗଦାକୁ ତ ସେ ବେଶି ଭଲପାଏ । ମାଇପିମାନଙ୍କୁ ଭଗବାନ୍ ଚିହ୍ନିପାରନ୍ତି ନାହିଁ ପରା ।''

''କଥା ତା' ନୁହେଁ ଗୋ ଅପା, ଝରଣା ଦି'ମାସର ପେଟରେ ହେଇଥିଲା । ଗଦାଟା ତ ତିନି ଚାରିମାସ ହେଲା କଲିକତାରୁ ଆସି ନାହିଁ– ସେଥିପାଇଁ ପରା ଏତେ କଥା । ଶାନ୍ତି ଜାଣିପାରି ପଚାରିଲା– କ'ଣ କରିଛୁ ଲୋ ଝରା, ଖୋଲି କହୁନୁ । ଝରଣା କୁଆଡ଼େ କହିଲା, ''ତମ ଦିଅର ରାତିଅଧିଆ ଲୁଚିକରି ଆସିଥିଲା ଦେଇ । ତାଙ୍କୁ କୁଆଡ଼େ ପୁଲିସ ଖୋଜୁଥିଲା । ଆଟୁ ଉପରେ ଲୁଚିକରି ସେ ସପ୍ତାହେ ଖଣ୍ଡେ ଥିଲେ ଏଠି ।''

ଶାନ୍ତି ଏକଥାକୁ ପରତେ ଗଲା ନାହିଁ । କିନ୍ତୁ ତା' ବି ହୋଇ ନ ଥିବ କାହିଁକି ? ଗଦା ପରା କଲିକତାର ନକ୍ସଲ ହେଇଚିନା କ'ଣ ? କିନ୍ତୁ ଝରଣାର ସେ ଯୋଉ ଲେଖାଯୋଖା ମାମୁପୁଅ ଭାଇ ଆସେ ତା' ସାଙ୍ଗରେ ଝରଣାର କ'ଣ କମ୍ ହେଁ-ହେଁ, ଫେଁ-ଫେଁ କି ? ସେ ମଉନମୁହାଁ କ'ଣ କମ୍ କି ? ସିଏ ଯଦି ଆଉ କାହା ସାଙ୍ଗରେ ନ ଥିଲା ତା' ଗେରସ୍ତ ଫେରିବାଯାଏ ତକେଇଲାନି ? କୋଉଠି କିଛି ଗୋଟେ ନ ଥିଲେ, କିଏ କ'ଣ ଜୀବନ ହାରିଦବ ! ନିଜ ଜୀବନ କାହାକୁ କ'ଣ ପିତା ଲାଗେ ? ହଉ ହଉ, ହାକିମହୁକୁମାଙ୍କ ପାଖରେ ବଳେ ସବୁ ସତ ବାହାରିପଡ଼ିବ । କି ନିଉଛୁଣା ଯୁଗ ହେଲା ଲୋ– ଝରଣା ଶବକୁ ଲଙ୍ଗଳା ଫୁଙ୍ଗୁଳା କରି କୁଆଡ଼େ ପୁଲିସ ଦେଖିବ; ଗାଆଁ ଦାଣ୍ଡରେ ଆଉ ବାଟ ଚାଲିହବନା । ବଇଷମ ଗୋସେଇଁ ଘରେ ଯଦି ଏମିତି ସବୁ ପାପ ଘଟିବ, ବସୁଧା ଫାଟି ଦି'ଫଡ଼ା ନ ହବ କାହିଁକି ?

ଗାଆଁ ମାଇପି ମେଳର କଥାସବୁ ମୋ କାନରେ ଏମିତି ବାଜୁଥିଲା । ମୁଁ କିନ୍ତୁ ସେସବୁର କିଛି କୂଳକିନାରା ପାଉ ନ ଥିଲି ।

ବେଳ ରତରତ ହେଉଥାଏ, ମୋଟରସାଇକେଲ୍ ଚଢ଼ି ଗାଆଁଦାଣ୍ଡରେ ଆସି ପହଞ୍ଚିଗଲା ନିଶୁଆ ଥାନାବାବୁ । ହଟୋ...ହଟୋ...ଭାଗୋ...ଭାଗୋ, କହିକହିକା ଗାଆଁ ଚଉକିଆ ଦାମ ଗୋଛେଇତ ଲୋକଙ୍କୁ ଆଡ଼ କରୁଥିଲା । ଜୋତା ମଚ ମଚ କରି ଆଗକୁ ଚାଲୁଥିଲେ ଥାନାବାବୁ, ତାଙ୍କ ପଛେ ପଛେ ଧାଉଁଥିଲା ୱାର୍ଡ଼ମେମ୍ବର ଗୋଲୋକ ସାହୁ । ଥାନାବାବୁ ରାମବଡ଼ବାପାଙ୍କ ଘର ଭିତରେ ପଶିଲା ଓ ଅନେକ ସମୟ ଧରି ଭିତରେ ନାନା ଆଲୋଚନା ଚାଲିଲା । ରାମବଡ଼ବାପାଙ୍କଠାରୁ ଥାନାବାବୁ ମୋଟା ମାଲ୍ ଝଡ଼ଉଥିବ ବୋଲି କଥା ଉଠିଲା । ''ଗାଆଁ ମେଳି ଥିଲେ ପୁଲିସବାଲାଙ୍କୁ କିଏ ପଚାରିଥାନ୍ତା ହୋ- ଏତେବେଳକୁ ଶବ ସତ୍କାର ସରନ୍ତାଣି !'' – କହୁଥିଲେ ୱାର୍ଡ଼ମେମ୍ବର ଭୋଟରେ ହାରିଥିବା ଜଗା ମହାନ୍ତି । ଭୋଟ ଯୋଗୁଁ ତ ଗାଆଁରେ ଫାଟ ବୋଲି ଆଗକୁହା ଗଙ୍ଗା ବାରିକ ମୁହେଁ ମୁହେଁ ଜବାବ ଦବାରୁ ଜଗା ମହାନ୍ତି ତୁନିପଡ଼ିଲା । ଆଉ କିଏ କ'ଣ କହୁଥିଲେ ମୁଁ ସବୁ ଶୁଣିପାରୁ ନ ଥିଲି, ଶୁଣୁଥିଲେ ବି ବୁଝିପାରୁ ନ ଥିଲି ।

ସଞ୍ଜସଞ୍ଜିଆ ଗେଟ୍ ବଜାରରୁ ମକ୍‌ବୁଲ ମିଆଁର ରିକ୍ସା ଆସି ପହଞ୍ଚିଲା । ଝରଣା ନୂଆବୋଉ ଶବକୁ ହେଁସରେ ଗୁଡ଼ାଯାଇ ରିକ୍ସାରେ ଲଦାଗଲା । ମକବୁଲର ରିକ୍ସା ପଛେ ପଛେ ସାଇକେଲ୍ ଛୁଟେଇଲା ଦାମ ଗୋଛେଇତ । ରାମବଡ଼ବାପା, ସଦାନ୍ନା ଓ ୱାର୍ଡ଼ମେମ୍ବର ଗୋଲୋକ ସାହୁ ବସ୍‌ରେ ଭଦ୍ରକ ଯିବାକୁ ବାହାରିଲେ । ଥାନାବାବୁର ମୋଟରସାଇକେଲ୍ ଫଟ୍ ଫଟ୍ ହେଲା । ଲୋକଗହିଳ କ୍ରମଶଃ କମିଲା ଓ ମୁଁ ଘରକୁ ଫେରିଆସିଲି । ସେତେବେଳକୁ ମୁହଁଅନ୍ଧାର ।

ମୁଁ ଘର ପାଖରେ ପହଞ୍ଚିଲାବେଳକୁ ବୁଢ଼ୀମା' ପିଣ୍ଡାରେ ବସି ତା' ଟିକି ହେମଦସ୍ତାରେ ପାନ କୁଟୁଥିଲା ଓ କହୁଥିଲା, ''ଚଣ୍ଡାଳୁଣୀ କ'ଣ କଲା ଲୋ, ଦି'ଦି'ଟା ଜୀବନକୁ ମାରିଦେଲା । ସାତ ଜନମ ଯା' ତାକୁ ଆଉ ମଣିଷ ଜନମ ମିଳିବ ନା ? ନର୍କରେ ବାସ ପାଇବନି ସେ ପୋଡ଼ାମୁହାଁ ।'' ଝରଣା-ନୂଆବୋଉ ପ୍ରତି ବୁଢ଼ୀମା'ର ଏ ଗାଳି ଭିତରେ ଯେମିତି କାହିଁ କେତେ ବହଳର ଦରଦ ଜମିରହିଥିଲା । ମୋତେ ଦେଖି କହିଲା–''ଚୁଣ୍ଟି କିରେ, କୁଆଡ଼େ ଥିଲୁ ଏତେବେଳଯାଏ' ? ଏତେ ବକଟେ ପିଲା ହବୁନି, ବଡ଼ ବଡ଼ ଲୋକ, ପୁଲିସ ଦାରୋଗା, ହାକିମହୁକୁମାଙ୍କ ମେଳରେ କ'ଣ କରୁଥିଲୁ ?'' ତା'ପରେ ମୋ ବୋଉକୁ ଡାକପକେଇଲା, ''ଏ ଆଲୋ ପଇଡ଼ାଝିଅ, ଚୁଣ୍ଟ ଉପରକୁ ଟିକେ ଗଙ୍ଗାଜଳ ଛାଟିଦେ ତ । ଏ ବଜ୍ଜାତ୍ ସବୁ ଘଣ୍ଟାଗୋଳା କରିଦବ ଘରେ ପଶି ।''

ସେଦିନ ମୁଁ କ'ଣ ଖାଇଲି, କେତେବେଳେ ଶୋଇଲି, ମୋର କିଛି ମନେ ନାହିଁ । କିନ୍ତୁ ରାତିସାରା ଖାଲି ଝରଣା ନୂଆବୋଉଙ୍କ ଚେହେରା ମୋ ନିଦୁଆ ଆଖିଆଗରେ ଟହଲୁଥିଲା ଓ ମୋତେ କାନ୍ଦ ମାଡୁଥିଲା । ଝରଣା-ନୂଆବୋଉ ମୋତେ ଭାରି ଭଲପାଉଥିଲେ କି ନା ? ସେ ଯଦି ସତରେ ମୋତେ ଭଲପାଉ ନ ଥିଲେ, ତା'ହେଲେ ଭୁଆ, ପାଗଳ ଓ ଗେଣ୍ଡୁଆ କାହାରିକି ନ ଡାକି ମୋତେ କାହିଁକି ଡାକୁଥିଲେ ତାଙ୍କ ପାଖକୁ ? ଆଉ ତାଙ୍କ ପାଖରେ ପହଞ୍ଚିଗଲେ ପ୍ରଥମେ ସେ ତାଙ୍କ କାନିରେ ମୋ ମୁହଁ ପୋଛିଦେଇ ପାଉଡ଼ର ମାଖିଦଉଥିଲେ । ମୋ ମୁଣ୍ଡ କୁଣ୍ଡେଇଦଉଥିଲେ ଓ ବେଳେବେଳେ ଯେତେ ନାହିଁ କଲେ ବି ଆଖିରେ ଦି'ଧାର କଜ୍ଜଳ ଲଗେଇଦଉଥିଲେ । ତା'ପରେ ମୋତେ ଭାରି ଗେହ୍ଲା କରୁଥିଲେ, କେତେବେଳେ କେମିତି ଚୁମା ଦଉଥିଲେ ବି । ଝରଣା-ନୂଆବୋଉ ଚୁମା ଦେଲାବେଳେ ମୋତେ ଭାରି ଲାଜମାଡୁଥିଲା । ମୁଁ ଭାବୁଥିଲି ଇଂରାଜୀ ପଢ଼ିଲିଣି ବୋଲି ନୂଆବୋଉଙ୍କୁ ବୋଧେ ଜଣା ନାହିଁ । ମୋତେ ସେ ଏତେ ପିଲା ବୋଲି ଭାବୁଛନ୍ତି ଯେ କୋଳରେ ଜାକି ଚୁମା ଦଉଛନ୍ତି । କିନ୍ତୁ ସେ କୋଳକରି ଚୁମାଦେଲେ ସତରେ ମୋତେ ଭାରି ଭଲ ଲାଗୁଥିଲା, କାରଣ ତାଙ୍କ ଦେହରୁ ସବୁବେଳେ ଗୋଟେ ମଧୁର ବାସ୍ନା ବାହାରୁଥିଲା । ଗଦାନ୍ନା କଲିକତାରୁ ଆଣୁଥିବା ବଢ଼ିଆ ସାବୁନ୍ ସେ ପ୍ରତିଦିନ ଲଗେଇହଉଥିଲେ ତ । ତା'ଛଡ଼ା ଗଦାନ୍ନା କଲିକତା ବାହୁଡ଼ିଯିବାର ବହୁଦିନ ପର୍ଯ୍ୟନ୍ତ ତାଙ୍କ ବାକ୍ସରେ ରଖିଥିବା କଲିକତି ଖଜୁରିକୋଳି ଗୋଟେ ଯୋଡ଼େ ନିଶ୍ଚେ ମୋତେ ସେ ଖାଇବାକୁ ଦଉଥିଲେ ।

ଝରଣା-ନୂଆବୋଉ ଅଧିକାଂଶ ସମୟରେ କହୁଥିଲେ, ''ଆରେ ଚୁଣ୍ଟ, ତୋତେ ସବୁବେଳେ କାହିଁକି ମୁଁ ଡକେଇ ପଠଉଥିବି ? ଏବେ ତ ତୋର ସକାଳୁଆ ସ୍କୁଲ । ତୁ ଖରାବେଳେ ଆମ ଘରକୁ ଚାଲିଆସିବୁ, ମୋ ପାଖରେ ଶୋଇବୁ । ମୁଁ ତୋତେ ନୂଆ ନୂଆ ଗପ କହିବି । ଆସିଲାବେଳେ ତମଘରୁ ତୋ ବୋଉଙ୍କୁ କହି ଖଣ୍ଡେ ଦି'ଖଣ୍ଡ ବହି ନେଇଆସିବୁ– ମୁଁ ପଢ଼ିସାରି ଫେରେଇଦେବି ।''

ତାଙ୍କ କଥା ମାନି ମୁଁ ମଝିରେ ମଝିରେ ତାଙ୍କ ପାଖକୁ ଯାଉଥିଲି । ଖୁଲଣାସୁନ୍ଦରୀ, ରଘୁଅରକ୍ଷିତ, ଛାନ୍ଦରତ୍ନାକର, କଣାମାମୁ ଆଦି ବହିସବୁ ଆମ ଘରୁ ନେଇ ତାଙ୍କୁ ଦଉଥିଲି । କିନ୍ତୁ ଆମ୍ବ ପାଚିଲା ହେଲା ସମୟକୁ ଝରଣା-ନୂଆବୋଉଙ୍କ ଅପେକ୍ଷା ପୋଖରୀହୁଡ଼ା ମୋତେ ବେଶି ଟାଣୁଥିଲା । କିନ୍ତୁ ଏମିତି ଯିବାଆସିବା ଭିତରେ ଝରଣା-ନୂଆବୋଉ ମୋତେ ବେଶି ବେଶି ଭଲ ଲାଗିଲେ । ମୁଁ ବେଳେବେଳେ ଭାବୁଥିଲି, ସେ ଯଦି ମୋ ବୋଉ ହୋଇଯାଆନ୍ତେ ମୁଁ ତାଙ୍କ ପାଖରେ ସବୁବେଳେ ରହନ୍ତି । ଏମିତି ଭାବିବାର ସବୁଠାରୁ ବଡ଼ କାରଣ ଥିଲା, ଘରେ ରହିବା ଭିତରେ ମୋ ବୋଉ ସବୁବେଳେ ପଢ଼ିବାପାଇଁ ମୋତେ ତାଗିଦା କରୁଥିଲା– ବିଶେଷକରି ଅଙ୍କ କଷିବାପାଇଁ ବାଧ୍ୟ କରୁଥିଲା ଏବଂ ଅଙ୍କ ବହି ଖୋଲିଲେ ମୋତେ ଏକପ୍ରକାର ଜର ଆସିଯାଉଥିଲା ।

ମୁଁ ସ୍କୁଲରୁ ଫେରିଲାବେଳକୁ ଝରଣା-ନୂଆବୋଉ ପ୍ରାୟ ଗାଧୋଉଥାନ୍ତି ତାଙ୍କ ବାଡ଼ି ପୋଖରୀରେ । ବେଳେ ବେଳେ ସେ ଗାଧୋଇବା ସମୟରେ ଯାଇ ମୁଁ ସେଠି ପହଞ୍ଚିଯାଉଥିଲି । ଗାଧୁଆତୁଠରେ ସେ ଭାରି ଭଲ ଦିଶନ୍ତି । ମୁଁ ତାଙ୍କ ପାଖରେ ଯାଇ ଠିଆ ହୁଏ । ସାବୁନ୍ ଲଗଉଥିବା ତାଙ୍କ ପାଦକୁ ଚାହେଁ । ତାଙ୍କ ହାତରେ ଚୁଡ଼ି ଝମଝମ ହଉଥାଏ, ମଲ୍ଲୀମାଳଟିଏ ପରି ଲାଖିରହିଥାଏ ପାଦର ପାଉଁଜି । ସେ ମୋତେ ଡାକି ସାବୁନ୍ ଲଗେଇ ଗାଧେଇ ଦିଅନ୍ତି ଦିନେ ଦିନେ । ସେଠୁ ଗାଧୋଇ ଫେରିଲାପରେ ମୁଁ ମୋ ଦେହକୁ ବାରମ୍ବାର ଶୁଙ୍ଘୁଥିଲି । ସେ ଦିନଟାସାରା ଖାଲି ଝରଣା-ନୂଆବୋଉଙ୍କ କଥା ମୋର ମନେପଡୁଥିଲା ଏବଂ ମୁଁ ଭାବୁଥିଲି, ଗଦାନ୍ନା ସିନା କାଳିଆ ଭୁଷୁଣ୍ଡାଟାଏ, ହେଲେ ଝରଣା-ନୂଆବୋଉ ପରି ଏତେ ସୁନ୍ଦରୀ ସ୍ତ୍ରୀଲୋକଟେ ଆମ ମୁଲକରେ ନ ଥିବେ ।

ସକାଳୁ ଉଠିଲା ବେଳକୁ ଝରଣା-ନୂଆବୋଉ ମରିଥିବା କଥା ମୋର ମନେ ନ ଥିଲା । କିନ୍ତୁ ଭଦ୍ରକରୁ ଶବ ଫେରି ନ ଥିବା କଥା ବାପା ବୋଉ କୁହାକୁହି ହଉଥିଲେ । ମୋ ଆଖି ଆଗରେ ପୁଣି ଝରଣା-ନୂଆବୋଉର ଚେହେରା ଝଲମଲ ହେଲା । ମୁଁ ସ୍କୁଲକୁ ଯିବା ନାଁ ଧରିଲି ନାହିଁ । ବଇଷମ ସାହି ଆଡ଼େ ଯାଇ ଦି' ଘେରା ବୁଲିଆସିଲି । ଆମେ ଯେତେବେଳେ ସ୍କୁଲରୁ ଫେରୁ ଓ ସେଇ ଯୋଉବେଳେ ଝରଣା-ନୂଆବୋଉ ତାଙ୍କ ସଫା ଦେହକୁ ଘଷି ମାଜି ଗାଧୋଉଥା'ନ୍ତି ସେହି ବେଳକୁ ଶବ ଆସି ପହଞ୍ଚିଲା ଗାଆଁ ଦାଣ୍ଡରେ । ଗଦାନ୍ନା କଲିକତାରୁ ଆସିବ କ'ଣ, ତାକୁ ଖବର ବି ଦିଆଯାଇପାରୁ ନ ଥିଲା । ସେ ଖିଦିରପୁର ଡକ୍‌ରେ ନାଁକୁ ମାତ୍ର ଚାକିରି କରିଥିଲା ସିନା, ହେଲେ କଲିକତାର ନକ୍ସଲ ଆନ୍ଦୋଳନରେ ସାମିଲ ହେଇ କୁଆଡ଼େ ବୋଲି କୁଆଡ଼େ ବୁଲୁଥିଲା ଯେ ତା' ପତ୍ତା ସୁଦ୍ଧା ମିଳୁ ନ ଥିଲା । ମଶାଣିକୁ ଶବ ନିଆଗଲାବେଳେ ପୁଣି କାନ୍ଦବୋବାଳି ପଡ଼ିଲା । ଆମ ପରି ପିଲାମାନଙ୍କୁ ମଶାଣିକୁ ଯିବାପାଇଁ ବାରଣ କରାଗଲା । କିନ୍ତୁ ଆମ ପୋଖରୀହୁଡ଼ାରୁ ସିଧା ଚାହିଁଲେ ବଇଷମଘର ମଶାଣି ଦିଶେ । ମୁଁ ସେହି ପୋଖରୀହୁଡ଼ାରେ ଠିଆହୋଇ ଝରଣା ନୂଆବୋଉର ଚିତା ଦେଖିଥିଲି ଓ ଦେଖୁ ଦେଖୁ କାନ୍ଦି ପକେଇଥିଲି ।

ଏ ଘଟଣାର ବେଶ୍ କିଛିଦିନ ପର୍ଯ୍ୟନ୍ତ ଝରଣା ନୂଆବୋଉ ବିଷୟରେ ନାନା କଥା ଶୁଣିବାକୁ ମିଳୁଥିଲା ଓ ସେସବୁ ମୋତେ ମୋଟେ ଭଲ ଲାଗୁ ନ ଥିଲା । ମଝିରେ ଥରେ ଗଦାନ୍ନା କୁଆଡ଼େ ଗାଆଁକୁ ଆସିଥିଲା ରାତି ଅଧରେ ଓ ତହିଁଆର ଦିନ ରାତିରେ ପୁଣି ଉଭାନ୍ ହୋଇଯାଇଥିଲା । ଆଗରୁ ଯେତେବେଳେ ଗଦାନ୍ନା କଲିକତାରୁ ଆସୁଥିଲା, ଗାଆଁ ଦାଣ୍ଡରେ ନିଶମୋଡ଼ି ନିଶ୍ଚେ ଦି'ଫେରା ବୁଲୁଥିଲା । ଆମପରି ପିଲାମାନଙ୍କୁ ତା'ହାତ-କେତେ ଟାଣ ଦେଖଉଥିଲେ । ଲାଲ ସଲାମ୍,

ସର୍ବହରା ପରି ଆମ ହେଜ ହଉ ନ ଥିବା ଶବ୍ଦମାନ ଶୁଣଉଥିଲା । ବୁଢ଼ାମାନଙ୍କୁ କଲିକତାର ବଜାର ଭାଉ, ଲୋକ ଭିଡ଼ ଓ ଚୋରି ଡକେଇତି କଥା ବଖାଣୁଥିଲା । ଗଦାନ୍ନା ଆସିଥିଲା ବୋଲି ଆମେ ଖବର ପାଇଥିଲୁ ଯାହା ।

× × × ×

ଝରଣା-ନୂଆବୋଉ ମରିବା ଯା' ଭିତରେ ଅନେକ ଦିନ ହୋଇଯାଇଥିଲା- ତେଣୁ ଗାଆଁରେ ସେ ବିଷୟରେ କେବେ କିଛି ଆଲୋଚନା ଆଉ ହଉ ନ ଥିଲା । କିନ୍ତୁ ଗଦାନ୍ନା ବିଷୟରେ ନୂଆ ନୂଆ କଥାସବୁ ଶୁଣିବାକୁ ମିଳୁଥିଲା । ଆମ ଗାଆଁର ପହଲିଦାଦା ଜଗଦ୍ଦଳର ଚଟକଳରେ କାମ କରୁଥିଲେ । ସେ ସେଠିକାର ଶ୍ରମିକ ସର୍ଦ୍ଦାର ଓ ଜଣେ ଟାଣୁଆ କମ୍ୟୁନିଷ୍ଟ ନେତା । କଲିକତାରେ ନକ୍ସଲ ଆନ୍ଦୋଳନ ଧିମେଇଯାଇଥିବାରୁ ଗଦାନ୍ନା ମାଲକାନ୍‌ଗିରି କିମ୍ବା କାକିନଡ଼ା ପଳେଇଯାଇଥିବା କଥା ମୁଁ ତାଙ୍କଠାରୁ ଶୁଣିଥିଲି । କିନ୍ତୁ ଆମ ଗାଆଁପାଖ ପିଲା ତଥା କଲେଜରେ ମୋର ସହପାଠୀ ବାଦଲ ଥରେ ବସ୍‌ଷ୍ଟାଣ୍ଡରେ ଦେଖାହେଇ କହୁଥିଲା, ''ତମ ଗାଆଁ ଗଦା ଦାସ ଜଣେ ବିଧବା ବଙ୍ଗାଳୀ ସ୍ତ୍ରୀଲୋକକୁ ଦ୍ୱିତୀୟ ହେଇଛି ଓ ମାଲଦାରେ ଗୋଟେ ହୋଟେଲ ଖୋଲିଛି ।'' କିନ୍ତୁ ଅଳ୍ପଦିନ ତଳେ ଗଦାନ୍ନା ବିଷୟରେ ଗୋଟେ ନୂଆ ତଥ୍ୟ ମିଳିଥିଲା ମଣି ସାହୁଠାରୁ । ଗଙ୍ଗା-ଗୟା ତୀର୍ଥରେ ଯାଇଥିବା ମଣି ସାହୁ ବୁଢ଼ା ହରିଦ୍ୱାର ପାଖରେ ଗୋଟେ ବାବାଜିକୁ ଦେଖିଥିଲା ଯେ ତା' ଚେହେରା ଅବିକଳ ଗଦାନ୍ନା ପରି । ମଣି ସାହୁ ବୁଢ଼ା ସେହି ବାବାଜି ପାଖରେ ଅନେକ ସମୟ ଅଟକିଥିଲା । ବାବାଜିଟି କିନ୍ତୁ ମୁହଁ ଖୋଲି ନ ଥିଲା । ବୁଢ଼ା ସେଠୁ ଖଣ୍ଡେ ବାଟଯାଇ ପଛରୁ ଫେରି ଚାହିଁଲାରୁ ବାବାଜି ଆଖିରୁ ଲୁହ ଗଡୁଥିବା ଦେଖିଲା । ବାବାଜି ଯେ ଗଦା ଦାସ ତା'ର ଆଉ ସନ୍ଦେହ ରହିଲା ନାହିଁ । ସେ ତୀର୍ଥରୁ ଫେରିଲାପରେ କଥାଟା ଗାଆଁସାରା ପ୍ରଘଟ ହେଇଥିଲା ଓ ବେଶ୍ କିଛିଦିନଯାଏ ଗାଆଁକୁ ଉଷୁମ ରଖିଥିଲା । ଥରେ ପୂଜା ଛୁଟିରେ ଗାଆଁକୁ ଯିବା ଅବସରରେ ମୋ କାନରେ ସେକଥା ପଡ଼ିଥିଲା ।

ମୁଁ କିନ୍ତୁ ପଢ଼ାପଢ଼ିରେ ବ୍ୟସ୍ତ ରହି ଖୁବ୍ କମ୍ ଗାଆଁକୁ ଆସୁଥିଲି ଓ ଝରଣା ନୂଆବୋଉ, ଗଦାନ୍ନା କଥା କ୍ରମେ ଭୁଲିଯାଉଥିଲି । କିନ୍ତୁ ବାଣୀବିହାରରେ ରାଜନୀତି ବିଜ୍ଞାନ ପଢ଼ିଲାବେଳେ ନକ୍ସଲ ଆନ୍ଦୋଳନ ବିଷୟରେ ଅଧିକ କଥା ଜାଣିବାକୁ ପାଇଲି । ଝରଣା-ନୂଆବୋଉ ଯୋଉ ସମୟରେ ମରିଥିଲେ, ସେହି ସମୟରେହିଁ ପଶ୍ଚିମବଙ୍ଗରେ ଧୁମ୍‌ଧାମ୍ ନକ୍ସଲ ଆନ୍ଦୋଳନ ଚାଲିଥିଲା । ଚାରୁ ମଜୁମ୍‌ଦାର୍, କାହ୍ନୁ ସାନ୍ୟାଲ୍ ଓ ନାଗଭୂଷଣ ପଟ୍ଟନାୟକ ସେହି ଆନ୍ଦୋଳନର ମଙ୍ଗ ଧରିଥିଲେ । କଲିକତାରେ ଶ୍ରମିକ ଥିବା ଗଦାନ୍ନା ନକ୍ସଲ ଆନ୍ଦୋଳନରେ ସାମିଲ୍ ହବା ସତ ହୋଇଥିବ ବୋଲି ମୋର ହୃଦ୍‌ବୋଧ ହେଲା ।

କିନ୍ତୁ ଝରଣା-ନୂଆବୋଉଙ୍କ ମରିବା ରହସ୍ୟ ତଥାପି ମୋ ଆଗରେ ପ୍ରଶ୍ନବାଚୀଟେ ହୋଇ ଝୁଲୁଥିଲା । ସେତେବେଳେ ତାଙ୍କ ନାଆଁରେ ଯୋଉ ସବୁ ପାପ କଥା କୁହାଯାଉଥିଲା ତା'ର ଅର୍ଥ ବୁଝିଲା ପରେ ମୁଁ କାହିଁରେ କେତେ କଷ୍ଟ ପାଇଥିଲି । କିନ୍ତୁ ସେତେବେଳର ଗୋଟେ ଘଟଣା ମୋ ମନକୁ ଭାରି ଉଖୁରଉଥିଲା । ଝରଣା-ନୂଆବୋଉ ମରିବାର ଦି'ମାସ ଖଣ୍ଡେ ପୂର୍ବରୁ ଦିନେ ଦି'ପହରେ ତାଙ୍କ ଘରକୁ ମୁଁ ଯାଇଥିଲି । ସେଦିନ ତାଙ୍କ ଶୋଇବାଘର କବାଟ ବନ୍ଦ ଥିଲା । ମୁଁ ଆଶ୍ଚର୍ଯ୍ୟ ହେଲି । ଦିନରେ କବାଟ ବନ୍ଦକରି ତ ନୂଆବୋଉ ଶୁଅନ୍ତି ନାହିଁ । ତା'ପରେ ମୁଁ ଧୀରେ ଧୀରେ ତାଙ୍କ କବାଟ ବାଡ଼େଇ ଡାକିଲି, ''ନୂଆବୋଉ, ନୂଆବୋଉ, ମୁଁ ଚୁଣ୍ଡ, କବାଟ ଖୋଲନା ।'' କିନ୍ତୁ ଘର ଭିତରୁ କିଛି ଜବାବ ଆସିଲା ନାହିଁ । ପ୍ରାୟ ମିନିଟିଏ ପରେ ମୁଁ ପୁଣି କବାଟ ଠକ୍ ଠକ୍ କଲି । ତା'ପରେ ଯାଇ ସେ କବାଟ ଖୋଲିଲେ । ମୋତେ ଦେଖି ଅପ୍ରସ୍ତୁତ ହୋଇପଡ଼ିଲେ ଯେମିତି ! କହିଲେ, ''ଆଜି ମୋ ଦେହ ଭଲ ନାହିଁରେ, ଚୁଣ୍ଡ ।'' କିନ୍ତୁ ତାଙ୍କ ଦେହ ସେମିତି ଖରାପ ଥିଲା ପରି ମୋତେ ଲାଗୁ ନ ଥିଲା । ତାଙ୍କ ଘର ଭିତରକୁ ପଶୁ ପଶୁ, ''ଆଉ ବେଳେ ଆସିବି ତମେ ଶୋଇପଡ଼ ନୂଆବୋଉ,'' କହି ମୁଁ ଫେରିଆସିଲି । ସେଦିନ ତାଙ୍କ ଶୋଇବାଘରେ ଗୋଟେ ଭିନ୍ନ ଗନ୍ଧ ମୋ ନାକରେ ବାଜିଥିବା ଏବେ ବି ମୋର ମନେପଡୁଥିଲା ଏବଂ ମୋର ବିଶ୍ୱାସ, ଆମ ଅଞ୍ଚଳରେ ସେତେବେଳେ ଚାଲି ନ ଥିବା କୌଣସି ସିଗାରେଟ୍‌ର ଗନ୍ଧ ଛଡ଼ା ତାହା ଅନ୍ୟ କିଛି ହୋଇ ନ ପାରେ । ଆଉ ଗଦାନନ୍ଦ ସିଗାରେଟ୍ ଖାଇବା କଥା କୋଉ ବା ମୋତେ ଅଛପା ଥିଲା ? ଝରଣା-ନୂଆବୋଉଙ୍କ ଘର ଆଟୁ ଉପରେ ହଉ କି ଖଟତଳେ ହଉ, ସେଦିନ କ'ଣ ଗଦାନନ୍ଦ ଲୁଚି ନ ଥିଲା ?

ଏବେ ବେଳେ ବେଳେ ମୋର ଇଚ୍ଛା ହଉଥିଲା, ଗାଆଁ ଦାଣ୍ଡରେ ବଡ଼ପାଟି କରି କହିବାକୁ, ''ମୋ ଝରଣା-ନୂଆବୋଉ ଭାରି ଭଲ, ଖୁବ୍ ଭଲ, ତମମାନଙ୍କଠାରୁ ଢେର ଭଲ । ତମେ ଯାହାସବୁ କହିଛ, ମିଛ କହିଛ ।'' କିନ୍ତୁ ଏତେଦିନ ପରେ ଗାଆଁ ଦାଣ୍ଡର ଧୂଳିଧୂମାଳରେ ପୋତିପଡ଼ିଥିବା ସେ ପୋଥିକୁ ଖୋଳିତାଡ଼ି ବାହାର କରିବାର ପ୍ରାସଙ୍ଗିକତା ମୁଁ ଉପଲବ୍ଧି କରୁ ନ ଥିଲି । ପୁଣି ବୟସ୍କ ପର୍ଯ୍ୟାୟକୁ ଉତ୍ତୀର୍ଣ୍ଣ ହୋଇଥିବାରୁ ସେମିତି କହିବାପାଇଁ ସାହସ ବି ବାନ୍ଧିପାରୁ ନ ଥିଲି । କିନ୍ତୁ ଝରଣା ନୂଆବୋଉଙ୍କ ସ୍ମୃତି ଯେ ଆଜି ବି ମୋ ଭିତରେ ଅନ୍ତରଙ୍ଗ କ୍ଷତଟିଏ ହୋଇ ରହିଯାଇଛି ସେକଥା ଭାବିଲାକ୍ଷଣି ମୁଁ ବିହ୍ୱଳିତ ହୋଇପଡୁଥିଲି ।



# ଶୂନ୍ୟସଂହିତା

ବଡ଼ବାବୁର ମୌଖିକ ହୁକୁମନାମା ସରିଲାବେଳକୁ ବନାର ମୁହଁଟା ଆମ୍ବିଳା ପଡ଼ିଗଲା । ସେ ମନେ ମନେ କହିହେଲା– 'ଶଳା ହାକିମ ତିନିଦିନିଆ ଟୁର୍‌ରେ ଯିବ ବୋଲି ବନା କ'ଣ ତା' ପିଲା-ମାଇପଙ୍କୁ ଜଗିବସିବ ?' କିନ୍ତୁ ଉପରକୁ ମୁହଁ ଖୋଲିଲା ନାହିଁ । ସେ ଜାଣେ, ବଡ଼ବାବୁଟା ହାକିମକୁ ପକେଟ୍‌ରେ ପୂରେଇସାରିଲାଣି– ଏଣୁତେଣୁ ହାକିମ କାନରେ ଫୋଡ଼ି କ'ଣ ନା କ'ଣ କରିଦବ । ଆଉ ହାକିମମାନେ ତ ଆଖି ଥାଉ ଥାଉ ଅନ୍ଧ, ଯୁଆଡ଼େ ମନ ସିଆଡ଼େ ମାଡ଼ିଯିବେ । ବଡ଼ବାବୁ ପରେ ଅବଶ୍ୟ ତାକୁ ବୁଝେଇଲା ଭଳି କହିଲା, ଦେଖ ବନା, ତୋ ପିଲାଛୁଆ ତ ଗାଆଁରେ । ରାତି ହେଲେ ତୁ ଅଫିସ୍ ଟେବୁଲରେ ଘୁଙ୍ଗୁଡ଼ି ମାରୁଛୁ । ଦିନେ ଅଧେ ନ ହେଲେ ସାର୍‌ଙ୍କ ବୈଠକଖାନାର କାର୍ପେଟ ଉପରେ ଶୋଇବୁ– ତୋତେ ଫରକ କ'ଣ ପଡ଼ିବ ? ମନୁଆର ତ ସକାଳ ଆଠରୁ ରାତି ଆଠ ଡ୍ୟୁଟି । ତା' ବେମାରିଆଣୀ ସ୍ତ୍ରୀଟାକୁ ଛାଡ଼ି ସେ କେମିତି ରହିପାରିବ କହ ତ ? ବନା ନାହିଁ କଲା ନାହିଁ । ଶନିବାର ହୋଇଥିଲେ ସେ ବଡ଼ବାବୁ କ'ଣ ଖୋଦ୍ ହାକିମ କଥା ବି ରଖି ନ ଥାନ୍ତା । ଅଫିସ୍ ଛୁଟିହବା ଆଗରୁ ତାଙ୍କଆଡ଼ିକା ବସ୍‌ରେ ଟିକେଟ୍ କାଟିଥାନ୍ତା ।

ଅଫିସ୍ ବନ୍ଦହେଲା ପରେ ଆଲ୍‌ମିରା ସନ୍ଧିରୁ ଷ୍ଟୋଭ୍ କାଢ଼ିଲା ବନା ଓ ଚା'ବନେଇ ପିଇଲା । ଆଇଁଷଖିଆ ବାର ହୋଇଥିବାରୁ ମାଂସଟିକେ କରି ଖାଇବାକୁ ତା'ର ଇଚ୍ଛା ଥିଲା । ଦିନରେ ହୋଟେଲଖିଆ ତାକୁ ପୋଷାଏ ନାହିଁ– ରାତିରେ ରୋଷେଇକରି ସେ ମନମୁତାବକ ଖାଏ । କିନ୍ତୁ କାଳେ ଡେରିହୋଇଯିବ ଭାବି ସେ ଆଉ ରୋଷେଇ କଲା ନାହିଁ । ହାକିମମାନଙ୍କ ନାଲିଆଖି ଅପେକ୍ଷା ତାଙ୍କ ଅବନ୍ଧା କୁକୁର ଆଉ ମୋଟା ମାଡାମ୍‌ଙ୍କୁ ବନାର ପ୍ରାଣେ ଡର !

ଆଠଟା ବାଜିବା ପୂର୍ବରୁ ବନା ପହଞ୍ଚିଗଲା ହାକିମଙ୍କ ବଙ୍ଗଳାରେ । ନୂଆ ହାକିମଙ୍କ ବଙ୍ଗଳାକୁ ଇଏ ଥିଲା ତା'ର ପହିଲି ଆସିବା । ସେ ଯାହା ଭାବି ଭାବି ଆସିଥିଲା ଗେଟ୍ ଖୋଲିବାକ୍ଷଣି ତାହାହିଁ ହେଲା । ଚାଖଣ୍ଡେ ଉଚ୍ଚର ସେ ଲୋମବାଲୁବାଲୁ ଧଳା କୁକୁରଟା ସିଂହଠାଣିରେ ଠିଆହୋଇ ଗର୍ଜିଉଠିଲା । ବନାର ଏକାବେଳେ ପିଳେହିପାଣି । ମନୁଆ ଯାହାହେଉ ଠିକ୍‌ବେଳରେ ଅନ୍ଦରମହଲରୁ ଧାଇଁଆସିଲା । କୁକୁରକୁ ତୁନି କରେଇଲା, ଜଞ୍ଜିର ବାନ୍ଧିଦେଲା ତା' ବେକରେ । ବନା ଗେଟ୍ ବନ୍ଦକରି ଭିତରେ ପଶିଲା । ମନୁଆ ଅନ୍ଦରମହଲକୁ ଏଇ ଗଲା ଏଇ ଆସିଲା ଯେମିତି ! ତା'ପରେ ବାଉଣ୍ଡରୀ କାନ୍ଥରେ

ଡେରାହୋଇଥିବା ତା' ସାଇକେଲ୍ ଧରି ରାସ୍ତାରେ କୁଆଡ଼େ ହଜିଗଲା । କଥା ପଦେ ବି କହିଲା ନାହିଁ । ବୁଢ଼ା ତା' ଆସିବାକୁ ଚାହିଁବସିଥିଲା ଜାଣ ।

ବନା ଜାଫ୍ରି ବନ୍ଦକରି ବାରଣ୍ଡାରେ ଠିଆହୋଇ ରହିଲା । କ'ଣ କରିବ ନ କରିବ ଭାବୁଛି, ପର୍ଦା ଖୋଲି ଉଭାହେଲେ ମାଡାମ୍ । ପତଳା ନାଇଟ୍ ଗାଉନ୍ । ଅନ୍ୟ ହାକିମଙ୍କ ସ୍ତ୍ରୀ ପରି ସେତେ ମୋଟା ଜଣାପଡୁ ନ ଥିଲେ ଅବଶ୍ୟ । ବନା କିନ୍ତୁ ତାଙ୍କ ମୁହଁକୁ ସିଧା ଚାହିଁପାରୁ ନ ଥିଲା ।

– ତମ ନାଁ ? ଭାରି କଅଁଳ ଅଥଚ ଟାଇଁ ଟାଇଁ କଥା ।

– ମୋ ନାଁ ବାନାମ୍ବର ମହାକୁଡ଼, ଅଫିସ୍ ପିଅନ । ବନା କହିଲା ଓ ଛେପ ଢୋକିଲା ।

'ଡ୍ରଇଁ ରୁମ୍‌ରେ ବସ୍, ସେ କହିଲେ ଓ ଚାଲିଗଲେ ।

ବନା ତାଙ୍କ ଫେରିବା ଚାଲିକୁ ଚାହିଁରହିଲା । ଦି'ଧାଡ଼ି ପଦ୍ମଫୁଲ ଫୁଟିଗଲା କି ଆଉ ! ବନା ଶିହରିତ ହେଲା । ସେ ଚାଲିଯିବା ପରେ ବି ମୃଦୁ ପଦ୍ମଗନ୍ଧ ପହଁରୁଥିଲା ପବନରେ । ସେତେବେଳକୁ ଟୋପାଟୋପା ବର୍ଷା ମାଟିକୁ ମହକାଇଦେଉଥିଲା । ବନାକୁ ହଠାତ୍ ତାଙ୍କ ଗାଆଁ ଦାଣ୍ଡ ହାତଠାରିଲା ଯେମିତି । ମାଟିର ମହକ ସବୁଠି ସମାନ, ଗାଆଁରେ ହଉ କି ସହରରେ । ବନା ଡ୍ରଇଁରୁମ୍ ଭିତରକୁ ପଶିଲା ଓ ସୋଫାରେ ନ ବସି କାର୍ପେଟ୍ ଉପରେ ଚେକାମାଡ଼ି ବସିପଡ଼ିଲା ।

ବାହାରେ ବର୍ଷା ବଢୁଥିଲା । ବର୍ଷାଭିଜା ପବନ ଧସେଇ ପଶୁଥିଲା ଡ୍ରଇଁରୁମ୍ ଭିତରକୁ । ଶୀତେଇ ଉଠୁଥିଲା ବନାର ଦେହ । ଡ୍ରଇଁରୁମ୍ କାନ୍ଥରେ ଝୁଲୁଥିବା ଗୋଟେଯୋଡ଼େ ୱାଲ୍ ହେଙ୍ଗିଙ୍ଗ୍ ଆଡ଼କୁ ସେ ଦୃଷ୍ଟି ଫିଙ୍ଗିଲା । ମଡର୍ଣ୍ଣ ଆର୍ଟର ସେ ଧାର ଧାରେ ନାହିଁ, ତାକୁ ତେଣୁ ସେଗୁଡ଼ିକ ସେମିତି ଭଲ ଲାଗିଲା ନାହିଁ । କିନ୍ତୁ କାଚ ଆଲମିରା ଭିତରେ ଥିବା ଗୋଟେ ଫଟୋଷ୍ଟାଣ୍ଡ ଆଡ଼କୁ ତା' ଦୃଷ୍ଟି ଲମ୍ବିଗଲା ଆପେ ଆପେ । ସେଇଟି ଥିଲା ସାର୍ ଓ ମାଡାମ୍‌ଙ୍କର ଯୁଗଳ ଫଟୋ । ବନା ନିରେଖି ଚାହିଁଲା ଫଟୋକୁ । ପଦ୍ମଫୁଲ ଫୁଟେଇ ଚାଲିଯାଉଥିବା ପାଦ ଦୁଇଟିକୁ ସିନା ସେ ଦେଖିଥିଲା, ହେଲେ ଦେଖିପାରି ନ ଥିଲା ମାଡାମ୍‌ଙ୍କ ମୁହଁକୁ । ଭାରି ସୁନ୍ଦର ମୁହଁଟେ ମାଡାମ୍‌ଙ୍କର, ଫଟୋ ଆଡ଼କୁ ଚାହିଁରହି ବନା ନିଜକୁ ନିଜେ କହିଲା । କିନ୍ତୁ ସେ ମୁହଁଟା ତାକୁ ଭାରି ଚିହ୍ନା ଲାଗିଲା । ଆଲମିରା ପାଖକୁ ସେ ଉଠିଯିବ ବୋଲି ଭାବୁଥିଲା, ଅଥଚ ସେଠିକି ଯିବାପାଇଁ ତା'ର ସାହସ ହେଉ ନ ଥିଲା ।

ବନା ଚାରିଆଡ଼କୁ ଚାହିଁଲା କନ କନ ହୋଇ । କାନପାରିଲା, କୋଉଠୁ କିଛି ପାଦଶବ୍ଦ ଶୁଭୁ ନାହିଁ ତ ? ତା'ପରେ ସେ ଧୀରେ ଧୀରେ ଆଲମିରା ପାଖକୁ ଗଲା ଓ ମାଡାମ୍‌ଙ୍କ ଫଟୋ ଦେଖି ଚମକିପଡ଼ିଲା । ଅବିକଳ ସେହି ସଜଫୁଟା ଫୁଲପରି ମୁହଁ ।

ମେଘଢଙ୍କା ଆକାଶ ପରି ବହଳ କେଶ, ସ୍ୱପ୍ନଭାରରେ ନଇଁପଡ଼ିଥିବା ଆଖିପତା । ବନ୍ଧୁଲି ଅଧରରେ ଚେନାଏ ହସର ମଳୟ ! ବନାର ସମଗ୍ର ସତ୍ତା ହଜିଗଲା ଯେମିତି ଏକ ଅନନ୍ୟ ସ୍ମୃତିର କୃଷ୍ଣ ଗହ୍ୱରରେ ।

ସେବେଳକୁ ବନା ଆଉ କଲେଜ ଯାଉ ନ ଥିଲା । ଦି'ଦି'ଥର ଯୁକ୍ତ ଦୁଇ ପରୀକ୍ଷାରେ ଫେଲ ହେଲା ପରେ ନା ତା'ର ପରୀକ୍ଷା ଦେବାପାଇଁ ଧୈର୍ଯ୍ୟ ଥିଲା ନା ତା'ର ଦମ୍ ଥିଲା ପରୀକ୍ଷା ଫିସ୍ ଦବାପାଇଁ । ବନା ପୋଥିରେ ଡୋର ବନ୍ଧାହେଲା । ଅଧିକ ପଢ଼ିଥିଲେ ସେ କୋଉ ବା ଗୋଟେ ହାକିମ ହୋଇଯାଇଥାଆନ୍ତା ! ବା' କହିଲା, ଗୋରୁ ମଇଁଷି ଦେଖାବୁଝା କର । ବିଲବାଡ଼ିକି ଅନା । ବନା କିନ୍ତୁ ମୂଳରୁ ଫୁଲାଫାଙ୍କିଆ । ବା' କଥା ତା' ମରମରେ ଭେଦିଲା ନାହିଁ । ଆମ୍ବତୋଟାରେ ବାଗୁଡ଼ିଖେଳ ଭଲ ତ ସିଏ ଭଲ । ତା' ଡୁବିତବଲା ଠିକ୍ ତ, ତା' ମନମିଞ୍ଜାସ ଠିକ୍ । ଘରେ ତେଲ ନ ଥିଲେ କି ଲୁଣ ନ ଥିଲେ ତା'ର ଯାଏ କେତେ ଆସେ କେତେ ?

ବନାର ହାବଭାବରେ ତା' ବା' ଖପ୍‌ପା ହଉଥିଲା ସିନା ମୁହଁଖୋଲି କିଛି କହିପାରୁ ନ ଥିଲା । ବେଳେ ବେଳେ ଯାହା ବିଳିବିଳେଇ ହଉଥିଲା- ମୋ ଅନ୍ତେ ତୋ' ପାଟିକୁ କେମିତି ଗୁଣ୍ଡା ଯିବରେ ଅକାଳକୁଷ୍ମାଣ୍ଡ ? ବନା କିନ୍ତୁ ବା' କଥାକୁ ଏ କାନରେ ପୂରେଇ ସେ କାନରେ ବାହାର କରିଦଉଥିଲା । ବା' କଥା ତା' ପାଇଁ ପାଣିର ଗାର ଯେମିତି ! ତେବେ ବହୁ କାକୁତି ମିନତି ପରେ ସେ ନାଗୁଆବାଲାଙ୍କ ଘରେ ଦୁଧ ପହଞ୍ଚେଇ ଦେଉଥିଲା, କେତେବେଳେ କେମିତି ବିଲକୁ ଯାଇ ମୂଲିଆ ମକୁରିଆଙ୍କ ଉପରେ ହାକିମାତି ଦେଖଉଥିଲା ।

ମାଷ୍ଟ୍ରଙ୍କ ଘରେ ଅଧକେଜିଏ, ଗୋସେଇଁଙ୍କ ଘରେ ପାଏ ଆଉ ବାବୁଘରେ କେଜିଏ ଦୁଧ ପହଞ୍ଚେଇଦବା ଥିଲା ବନାର ନିତିଦିନିଆ କାମ । ତା'ପରେ ସାରାଦିନ ସେ ଗାଆଁ ଛକରେ ଆସ୍ଥାନ ଜମଉଥିଲା । ସଞ୍ଜହେଲେ ଆଖଡ଼ା ଘରେ ତବଲା ବଜଉଥିଲା । ଅଧ ରାତିକୁ ଘରକୁ ଫେରି ମାଡ଼ିଆ ଢଙ୍କା ହୋଇ ରହିଥିବା ଶୁଖିଲା ଭାତ ଓ ଥଣ୍ଡା ତରକାରିକୁ ମିନିଟକରେ ଗେଫିଦେଇ ଦାଣ୍ଡପିଣ୍ଡାରେ ସପପାରି ଗଡ଼ିଯାଉଥିଲା ।

ଦିନେ ସକାଳେ ବାବୁଘରେ ଦୁଧ ପହଞ୍ଚାଇବାକୁ ଗଲାବେଳେ ପ୍ରଥମ କରି ବନା ଗୋଟେ ଝିଅକୁ ଦେଖିଲା । ବାବୁଘର ବୁଢ଼ାବୁଢ଼ୀ ଗାଆଁରେ ରହୁଥିଲେ ସିନା, ତାଙ୍କ ପୁଅବୋହୂମାନେ କୋଉ ଦୂର ସହରରେ ଚାକିରିବାକିରି କରୁଥିଲେ । ଝିଅଟି ତାଙ୍କ ନାତୁଣୀ ହୋଇଥିବ ବୋଲି ସେ ଅନୁମାନ କଲା ଓ ଝିଅଟି ବିଷୟରେ କୌଣସି ଆଗ୍ରହ ଦେଖେଇଲା ନାହିଁ । ତା'ପରଦିନ ଗଲାବେଳକୁ ଝିଅଟି କିନ୍ତୁ ଅନେକ କଥା ପଚାରିଲା ବନାକୁ । କୋଉଠୁ ସେ ଜାଣିଲା କେଜାଣି ବନା ତବଲା ବଜାଏ ବୋଲି । ଝିଅଟି ଯେମିତି ସୁନ୍ଦର, ସେମିତି ସ୍ମାର୍ଟ । ଗୀତନାଚରେ ତା'ର ଭାରି ଆଗ୍ରହ ଥିଲା ଭଳି ଲାଗୁଥିଲା ।

–ଇଏ ମୋ ନାତୁଣୀ ଲିଜା– ଝିଅର ଝିଅ । ଭଲ ଗୀତ ଗାଏ । ତୁ ବେଳେ ବେଳେ ଆସି ତବଲା ବଜେଇଲେ ସେ ଗୀତ ଗାଆନ୍ତା । – ବୁଢ଼ାବାବୁ କହିଲେ । ବନା ଯେମିତି ଆକାଶରୁ ଖସିପଡ଼ିଲା । କହିଲା ଉପରଓଳିକୁ ଆସିବ ବୋଲି ।

ସକାଳୁ ଉପରଓଳି ପର୍ଯ୍ୟନ୍ତ ଭାରି ଅନ୍ୟମନସ୍କ ରହିଲା ବନା । ସେଦିନ ଆଉ ଛକକୁ ଯାଇ ଗପ ଜମେଇବା କଥା ତା'ର ମନେପଡ଼ିଲା ନାହିଁ । ସେ ତା' ତବଲାକୁ ବାରମ୍ବାର ସଜାଡ଼ିଲା ଓ ମଝିରେ ମଝିରେ ଟୁଂ ଟାଂ କଲା । ଖରାବେଳଟା ସାରା ସେ ଖାଲି ଲିଜାର ଚେହେରା ମନେପକେଇଲା ଓ ଏଣୁତେଣୁ କଥାସବୁ ଭାବିହେଲା । କେମିତି ଟିକେ ଖରା ଲେଉଟିଲେ ସେ ଯାଇ ବାବୁଘରେ ପହଞ୍ଚିବ ।

ଖରାର ଧାସ କମିଆସୁଥିଲା । ଆମ୍ବକଷି ବାସ୍ନାରେ ମତୁଆଲା ହଉଥିଲା ପବନ । ବନା ବାହାରିଲା ବାବୁଘର ଆଡ଼େ– ଗୋଟେ ହାତରେ ଡୁବି, ଆର ହାତରେ ତବଲା । ଲିଜା ଯେମିତି ତା' ଆସିବାକୁ ଚାହିଁବସିଥିଲା । – ବାଟ କଢ଼େଇନେଲା ଉପରମହଲାକୁ । ବାବୁଘର ଉପରମହଲାକୁ ସେ ଆଗରୁ କେବେ ବି ଆସି ନ ଥିଲା । ଚୂନସୁରୁକିର ପୁରୁଣାକାଳିଆ ଘର । ଗାଆଁର ବୁଢ଼ାବୁଢ଼ୀଏ ବାବୁଘରକୁ ଏବେ ବି କଚେରି ବୋଲି କହନ୍ତି । ସବୁ ଜମିଦାର ଉଆସପରି ବାବୁଘର ଅଗଣା ଥିଲା ଅରମାରେ ଭରପୂର । ବହୁଦିନରୁ ଚୂନ ଧଉଳା ହୋଇ ନ ଥିବାରୁ ଅପରିଚ୍ଛନ୍ନ ଲାଗୁଥିଲା ଘରର କାନ୍ଥ । କିନ୍ତୁ ଉପରମହଲାରେ ଲିଜା ରହୁଥିବା କୋଠରିଟି ଥିଲା ପରିଷ୍କାର ଓ ସୁସଜ୍ଜିତ ।

ଲିଜା ହାତରେ ହାର୍‌ମୋନିଅମ୍ ଓ କଣ୍ଠରେ ଗୀତର ଲହରୀ । ବନା ଡୁବି ତବଲା ବଜେଇଲା ଗୀତ ତାଳରେ । ଖରାଦିନିଆ ଉହଡହ ଅପରାହ୍ନ ଯେମିତି ଭିଜିଯାଉଥିଲା ସୁଲଳିତ ସଙ୍ଗୀତ ବର୍ଷାରେ । ବନାର ଧାରଣା ଥିଲା ଲିଜା ନୂଆକରି ଗୀତ ବୋଲିବା ଆରମ୍ଭ କରୁଥିବ । ବାବୁଘର ଲୋକଙ୍କ ପରି ହୁଏତ ଅଧିକ ଦେଖେଇହଉଥିବ । କିନ୍ତୁ ଲିଜା ଯେ ଥିଲା ପୋଖତ କଳାକାର ! ବନା ଆଶ୍ଚର୍ଯ୍ୟ ହେଲା । ଲିଜାର ପ୍ରଚଣ୍ଡ ପ୍ରତିଭା ନିକଟରେ ନିଜକୁ ଅସହାୟ ମନେକଲା ।

ଗୀତର ଆସର ଏଣିକି ପ୍ରାୟ ପ୍ରତି ଅପରାହ୍ନରେ ଜମୁଥିଲା । କେବେ କେମିତି ନିଜେ ବୁଢ଼ାବାବୁ ଆସି ପହଞ୍ଚିଯାଉଥିଲେ ଗୀତ ଶୁଣିବାପାଇଁ । ଏବେ ନିଛାଟିଆ ଖରାବେଳ ବନାପାଇଁ ସବୁଠୁ କୋମଳ ମୁହୂର୍ତ୍ତ ପାଲଟିଯାଇଥିଲା ।

ବାବୁଘର ଉଆସରେ ସଙ୍ଗୀତ ଆସର କ୍ରମେ ତମାମ୍ ଗାଆଁରେ ଚର୍ଚ୍ଚାର ବଳୟ ସୃଷ୍ଟି କରିଥିଲା । କିନ୍ତୁ ବନାର ଚେତନା ବଳୟ ସଙ୍କୁଚିତ ହୋଇ ବାବୁଘର ଉଆସ ଭିତରେ ଆବଦ୍ଧ ହୋଇଯାଇଥିଲା । ସେ ଘରକଥା କିଛି ବୁଝୁ ନ ଥିଲା କି ଛକବଜାରରେ ଆଗପରି ଆସ୍ଥାନ ଜମଉ ନ ଥିଲା ।

ସେଦିନ ଖରାବେଳେ ବନା ବାବୁଘରେ ପହଞ୍ଚିଲାବେଳକୁ ସାରା ଉଆସଟା ଖାଁ ଖାଁ ଲାଗୁଥିଲା । ଅଭ୍ୟାସବଶତଃ ବନା ଟାଣିହୋଇଗଲା ଉପରମହଲାକୁ ।

ଲିଜା ହାରମୋନିଅମ୍ ସଜାଡୁଥିଲା ବୋଧେ– ବନାକୁ ଦେଖି ସେ ଭାରି ଖୁସିହୋଇଗଲା । କହିଲା– ଅଙ୍କଲ୍ ଆଣ୍ଟି ଆଜି ଗୋଟେ କାମରେ ସହରକୁ ଯାଇଛନ୍ତି, ସଞ୍ଜବେଳକୁ ଫେରିଆସିବେ । ଏକୁଟିଆ ମୋତେ ଭାରି ବୋର୍ ଲାଗୁଥିଲା– ତମେ ଯାହାହେଉ ଠିକ୍ ସମୟରେ ଆସିଗଲ । ସେଦିନ ଲିଜାର ଗୀତ ଅନ୍ୟ ସବୁଦିନଠାରୁ କାହିଁକି କେଜାଣି ଅଧିକ ଭଲ ଲାଗୁଥିଲା । ଭଙ୍ଗା ଉଆସ, ଖରାରେ ଭିଜୁଥିବା ଗଛବୃଛ, ଫସଲ ନ ଥିବା ଟାଙ୍ଗରା କ୍ଷେତସବୁ ଯେମିତି ମୂର୍ଚ୍ଛା ହୋଇଯାଉଥିଲେ ଗୀତର ମୂର୍ଚ୍ଛନାରେ । ଲିଜା ଲାଗୁଥିଲା ଭାରି ବେପରୱା ।

ଲିଜା କଣ୍ଠର ରାଗିଣୀ ଆଉ ମେଘମଲ୍ଲାର ରଚିଲା ନାହିଁ ତ ! କଳାମେଘରେ ଅକସ୍ମାତ୍ ଭରିଗଲା ଆକାଶର ହିଆ । ଗୋଟେ ଆସନ୍ନ ଝଡ଼ର ସୂଚନା ଦେଇ ନିରବିଗଲା ପୃଥିବୀ । ଲିଜାର ଗୀତ ବନ୍ଦ ହୋଇଗଲା । ସ୍ଥିର ହୋଇଗଲା ଡୁବି ତବଲା ଉପରେ ଆଘାତ ଦଉଥିବା ବନାର ଅସ୍ଥିର ହାତ । କିନ୍ତୁ ଅସ୍ଥିର ହୋଇପଡ଼ିଲେ ଗଛଲତା, ଭୟଙ୍କର ଦିଶିଲା ଦିଗ୍‌ବଳୟ । ବନା ଓ ଲିଜା ଦୁହେଁ ମିଶି ଘରର ଝର୍କା ବନ୍ଦ କରିଦେଲେ । ବର୍ଷା ସାଙ୍ଗରେ ବତାସ ଘନେଇଆସିଲା । ଖରାଦିନେ ଅବଶ୍ୟ ଏମିତି ଅକସ୍ମାତ୍ ବର୍ଷାବତାସ ଅସ୍ୱାଭାବିକ ନୁହେଁ । ବନା ଭାବୁଥିଲା ତଳକୁ ଯାଇ ବର୍ଷାରେ ଭିଜିବ, ଆମ୍ବ ଗୋଟେଇବ– କିନ୍ତୁ ଭୟଭୀତ ହୋଇପଡୁଥିଲା ଲିଜା ।

ବାହାରେ ଡାଳପତ୍ର ଭାଙ୍ଗିପଡୁଥିବାରୁ ଶବ୍ଦ ପ୍ରଖର ହେଉଥିଲା । ଘରଭିତରକୁ ଯେମିତି ଧସେଇ ପଶୁଥିଲା ବର୍ଷାମିଶା ବତାସ । ଘରର ଗୋଟେ କୋଣରେ ଚୁପ୍‌ଚାପ୍ ଠିଆ ହୋଇଥିଲା ଲିଜା । ହଠାତ୍ ଗୋଟେ ପ୍ରଚଣ୍ଡ ଘଡ଼ଘଡ଼ି ଶବ୍ଦ ଥରେଇଦେଲା ଘରକୁ । ଲିଜା ଦୌଡ଼ିଯାଇ ବନାକୁ ଭିଡ଼ିଧରିଲା । ସେତେବେଳକୁ ସେ ଗୋଟାପଣେ ଥରୁଥିଲା । ବନା କ୍ରମଶଃ ତରଳିଯାଉଥିଲା ବରଫଖଣ୍ଡ ପରି । ଲିଜା ଦେହର ସ୍ପର୍ଶ ତାକୁ ଅଥୟ କରୁଥିଲେ ବି ସେ ବିଧ୍ୱସ୍ତ ହୋଇଯାଉଥିଲା ନିଜ ଭିତରେ । ସେ ନିଜକୁ ସମ୍ଭାଳି ପାରିଲା ନାହିଁ । ଲିଜାର ଭିଡ଼ିଧରିଥିବା ହାତକୁ ଛାଟିଦେଇ ସେ ବର୍ଷା-ବତାସ ଭିତରେ କୁଆଡ଼େ ଉଭାନ୍ ହୋଇଗଲା ।

ତା'ପରଠାରୁ ସେ କେବେ ବି ବାବୁଘର ଉଆସ ମାଡ଼ି ନ ଥିଲା । କିନ୍ତୁ ସେଦିନର ସେହି ପହିଲି ଶିହରଣର ନିଆରା ଅନୁଭବ ଅନେକଦିନ ପର୍ଯ୍ୟନ୍ତ ଜମାଟ ବାନ୍ଧିଥିଲା ତା' ମନଭିତରେ ।

ଆକାଶରେ ସେଦିନ ମେଘ ତଥାପି ଜମାଟ ବାନ୍ଧିଥିଲା, କିନ୍ତୁ ବର୍ଷା ଛାଡ଼ି ଯାଇଥିଲା । ଥଣ୍ଡାପବନ ଆଉଁଶି ଦେଉଥିଲା ବନାର ଆଖିପତା । ମୁଲାୟମ୍ କାର୍ପେଟ୍ ଉପରେ ସେ ଢୁଳେଇପଡ଼ିଥିଲା । ବାନାମ୍ବର, ବାନାମ୍ବର– ମୃଦୁ ଡାକରେ ସେ ତଟସ୍ଥ ହେଲା । ମାଡାମ୍ ଡାକୁଥିଲେ ଖାଇବାପାଇଁ । ବନା ହଁ କି ନା କିଛି କହିଲା ନାହିଁ । ତାଙ୍କ ପଛେ ପଛେ ଗଲା । ଡାଇନିଙ୍ଗ୍ ଟେବୁଲ ଉପରେ ଥୁଆହୋଇଥିଲା ରୁଟି, ତରକାରି

ଆଉ ଗୋଟେ ପ୍ଲେଟ୍‌ରେ କିଛି ଫଳ । ଡାଇନିଙ୍ଗ୍ ଚେୟାରରେ ବସିବାକୁ ବନା କୁଣ୍ଠିତ ହେଲା । ମାଡାମ୍ କିନ୍ତୁ ଚେୟାରରେ ବସିବାକୁ ବାଧ୍ୟକଲେ । ବନା ଚୁପ୍‌ଚାପ୍ ରୁଟି ଚୋବେଇଲା । ଅଳ୍ପ ଦୂରରେ ଠିଆହୋଇଥିଲେ ମାଡାମ୍ ।

ବେଶ୍ କିଛି ସମୟ ପରେ ମାଡାମ୍ ପାଟି ଖୋଲିଲେ । ପଚାରିଲେ– ତମେ କେବେଠାରୁ ଏଠି ଚାକିରି କଲଣି ? ପିଲାପିଲି କ'ଣ ? ରହୁଛ କୋଉଠି ?

ବନା ସେମିତି ପ୍ଲେଟ୍‌ରେ ମୁହଁଗୁଞ୍ଜି ଏକାସ୍ୱରରେ କହିଲା– ଗାଆଁରେ ରହୁଥିବା ତା' ସ୍ତ୍ରୀ ଓ ମେଟ୍ରିକ୍ ପଢୁଥିବା ପୁଅଝିଅମାନଙ୍କ ବିଷୟରେ । ଦଶ ବର୍ଷ ହେଲା ପିଅନ ଚାକିରିରେ ଭର୍ତ୍ତି ହୋଇ ଅଫିସ୍‌ରେ ଶୋଉଥିବା କଥା ବି କହିବାକୁ ଭୁଲିଲା ନାହିଁ । ମାଡାମଙ୍କ ପିଲାପିଲିଙ୍କ ବିଷୟରେ ପଚାରିବାକୁ ତା'ର ଭାରି ଇଚ୍ଛା ହଉଥିଲା, ଅଥଚ ସେ କିଛି ପଚାରିପାରୁ ନ ଥିଲା । ଶୂନଶାନ ନୀରବ ଘରକୁ ଦେଖି ତା'ର ମନେହେଉଥିଲା ଯେମିତି ପିଲାପିଲି କେହି ଘରେ ନାହାନ୍ତି । ପଚାରିବ କି ପଚାରିବ ନାହିଁ ଭାବୁଭାବୁ ସେ ପଚାରିଦେଲା– ଆପଣଙ୍କ ବିଷୟରେ ତ କିଛି କହିଲେ ନାହିଁ । ଏହି କଥାପଦକରେ ମାଡାମ୍‌ଙ୍କ ମୁହଁରେ ଖେଳୁଥିବା ହସର ଧାରଟି କୁଆଡ଼େ ଉଭେଇଗଲା ଯେମିତି ! କଳାମେଘର ଛାଇ ଅବା ଢାଙ୍କିଦେଲା ତାଙ୍କ ଗୋରା ଦେହକୁ । ସେ ହସିବାକୁ ଚେଷ୍ଟା କରି ବି ହସିପାରୁ ନ ଥିଲେ ।

ବନା ପ୍ରଶ୍ନର ଉତ୍ତର ଅବଶ୍ୟ ସେ ଦେଲେ– ତାଙ୍କର କୁଆଡ଼େ ପିଲାପିଲି ହବାର ନାହିଁ– ବାବୁଙ୍କଠି କ'ଣ ଅସୁବିଧା ଅଛି । ବନା ଜିଭ କାମୁଡ଼ି ପକାଇଲା । ଡାକ୍ତର ପରାମର୍ଶ ପରେ ସବୁକଥା ମାଡାମ୍ ଗୋପନ ରଖିଛନ୍ତି ବୋଲି ବି କହିଲେ । ବନାର ମନ ଓଦା ହୋଇଗଲା । ଭଗବାନ୍ ସବୁ ସୁଖ ଭିତରେ ଏମିତି ଦୁଃଖ କାହିଁକି ଖଞ୍ଜି ଦେଇଥାନ୍ତି କେଜାଣି– ବନା ନିଜକୁ ପ୍ରଶ୍ନ କରୁଥିଲା । ଯେଉଁଠି ପିଲାମାନେ କେଡ଼େ ଅୟସରେ ବଢ଼ିପାରନ୍ତେ ସେଠି ଗହଳଚହଳ ଶୂନ୍ୟ, ଅଥଚ ଅଭାବ ଅସୁବିଧା ଭିତରେ ପୁଅଝିଅଙ୍କର ଲମ୍ବାଧାଡ଼ି । ତା'ର ଯେମିତି ପୁଅ ପରେ ଲାଗ୍ ଲାଗ୍ ଦି'ଦି'ଟା ଝିଅ ଜନ୍ମ କଲା ତା' ସ୍ତ୍ରୀ । ପିଅନ ଚାକିରିରେ ସେ କେମିତି ସମ୍ଭାଳନ୍ତା ବଡ଼ ସଂସାରକୁ ? କାହାକୁ କିଛି ନ କହି ସେ ତେଣୁ ହଠାତ୍ ଦିନେ ଡାକ୍ତରଖାନାରେ ପହଞ୍ଚିଗଲା ଓ ଅପରେସନ୍ ହୋଇପଡ଼ିଲା । ଅଥଚ ଅଭିଆଡ଼ୀ ବେଳର ସେ ବେପରୱା ଲିଜା ସବୁ ଥିବା ଭିତରେ ବି କେଡ଼େ ନିଃସ୍ୱ ସତେ !

ବନା ଖାଇସାରିବା ପର୍ଯ୍ୟନ୍ତ ମାଡାମ୍ ଡାଇନିଂ ଟେବୁଲ ପାଖରେ ଠିଆହୋଇ ରହିଥିଲେ । ସେତେବେଳକୁ ରାତି ଢେର ବଢ଼ିଯାଇଥିଲା ଓ ଛାଡ଼ିଯାଇଥିବା ବର୍ଷା ପୁଣି ଘୁମୁରୁଥିଲା । ବନା ଚୁପ୍‌ଚାପ୍ ଫେରିଆସୁଥିଲା ଡ୍ରଇଁରୁମ୍‌କୁ ।

'ତମେ କ'ଣ ଆଗପରି ଡରକୁଳା ହୋଇରହିଛ' ବୋଲି ମାଡାମ୍ ପଚାରିଲା ବେଳକୁ ବନା ପନ୍ଦରବର୍ଷ ତଳକୁ ଫେରିଯାଇଥିଲା ।



# ଜନ୍ମଦିନ

'ତମେ ଆଜି ଖୁବ୍ ସ୍ମାର୍ଟ୍ ଲାଗୁଛ, ହ୍ୟାଣ୍ଡ୍‌ସମ୍ ବି'– ପ୍ରିୟମ୍ବଦାଙ୍କର ଏମନ୍ତ ପ୍ରିୟବାକ୍ୟରେ ପୁଲକିତ ହୁଅନ୍ତି ସିନା, ଆଶ୍ଚର୍ଯ୍ୟ ହୁଅନ୍ତି ନାହିଁ ସୁଶୋଭନ । ପ୍ରିୟମ୍ବଦାଙ୍କ ସହ ଅଳ୍ପଦିନର ସଂପର୍କ ଗୋଟେ ଆଫେୟାର୍ସରେ ପରିଣତ ହୋଇସାରିଛି ବୋଲି ଇତି ମଧ୍ୟରେ ତାଙ୍କର ହୃଦ୍‌ବୋଧ ହୋଇସାରିଥିଲା । ପ୍ରାତଃଭ୍ରମଣରୁ ପରିଚୟ, ପରିଚୟରୁ ପ୍ରିୟତା, ପୁଣି ପ୍ରିୟତାରୁ ପ୍ରେମ । ଏପରି ଘଟଣାଚକ୍ରରେ କିଛି ବୈଚିତ୍ର୍ୟ ନ ଥିଲା । କିନ୍ତୁ ବୈଚିତ୍ର୍ୟ ହେଲା ବୟସରେ । ରିଟାୟାର୍‌ମେଣ୍ଟ୍ ପରେ ପ୍ରେମ ପୁଣି ଜଣେ ସମବୟସ୍କା ମହିଳାଙ୍କ ସହ ! ଛାତ୍ର ଜୀବନରୁ ପ୍ରେମ ବ୍ୟାପାରରେ ଅନଭିଜ୍ଞ ଓ ଅସଂପୃକ୍ତ ମଣିଷଟି ଜେଜେ ହୋଇସାରିବାପରେ କାହା ପ୍ରେମରେ ପଡ଼ିବା କ'ଣ ଏକ ଅସ୍ୱାଭାବିକ କଥା ନୁହେଁ ? ଏମିତି ପ୍ରଶ୍ନଟିଏ ଅବଶ୍ୟ ନିଜ ଉପରକୁ ଫିଙ୍ଗୁଥିଲେ ସୁଶୋଭନ । କିନ୍ତୁ ଉତ୍ତର ଖୋଜିବାପାଇଁ ସେ ପ୍ରୟାସ ବି କରୁ ନ ଥିଲେ କେବେ ।

ଆପଣ 'ତୁମେ' ରେ ରୂପାନ୍ତରିତ ହେବାପାଇଁ ଖୁବ୍ କମ୍ ସମୟ ଲାଗିଥିଲା ପ୍ରିୟମ୍ବଦାଙ୍କୁ । ଅଥଚ ବିଳମ୍ବରେ 'ତୁମେ' ଶବ୍ଦଟି ଝରିଥିଲା ସୁଶୋଭନଙ୍କ ଓଠରୁ । କିନ୍ତୁ ସୁଶୋଭନଙ୍କ 'ତୁମେ' କେଉଁ ଅଜଣା ଫୁଲଗନ୍ଧରେ କେଜାଣି ମୋହିତ କରିଥିଲା ପ୍ରିୟମ୍ବଦାଙ୍କୁ । ଗହଳି ଗହଗହ ପାର୍କରେ ସେ ସୁଶୋଭନଙ୍କ ହାତ ଧରି ଏକପ୍ରକାର ଦୌଡ଼ିବା ଆରମ୍ଭ କରିଥିଲେ ।

ସହରର ବିସ୍ତୀର୍ଣ୍ଣ ପାର୍କରେ ପ୍ରାତଃଭ୍ରମଣ ପ୍ରଥମରୁ ଭାରି ବିରକ୍ତିକର ମନେ ହୋଇଥିଲା ସୁଶୋଭନଙ୍କୁ । ରାଜ୍ୟର ବିଭିନ୍ନ ପ୍ରମୁଖ ସହରରେ ସେ ବ୍ୟାଙ୍କ୍ ଅଫିସର ଭାବରେ ଅବସ୍ଥାପିତ ହୋଇଥିଲେ । କିନ୍ତୁ ଯେଉଁ ସହରରେ ସେ କେବେ ବି କାର୍ଯ୍ୟ କରି ନ ଥିଲେ, ସେହି ସହରରେ ଏକ ବଡ଼ କମ୍ପାନୀର ଅର୍ଥ-ପରାମର୍ଶଦାତା ଭାବରେ ନିଯୁକ୍ତ ହେଲେ ଅବସର ପରେ । ସେବା-ନିବୃତ୍ତ ହେବାର ଅଳ୍ପ କେତେ ଦିନ ଅନ୍ତେ ଖବରକାଗଜର ଏକ ବିଜ୍ଞପ୍ତି ତାଙ୍କ ନଜରରେ ପଡ଼ିଥିଲା । କୁତୂହଳୀ ହୋଇ ସେ କମ୍ପାନୀ କର୍ତ୍ତୃପକ୍ଷଙ୍କ ନିକଟକୁ ଆବେଦନପତ୍ରଟିଏ ମେଲ୍ କରିଦେଇଥିଲେ । ତା'ର ଦୁଇ ମାସ ପର୍ଯ୍ୟନ୍ତ ନୋ କରେସ୍‌ପଣ୍ଡେନ୍‌ସ୍ । ହଠାତ୍ ଦିନେ ମେଲ୍ ଖୋଲି ଦେଖିଲାବେଳକୁ ଦୁଇ ବର୍ଷ ପାଇଁ ସେ କମ୍ପାନୀର ଅର୍ଥ ପରାମର୍ଶଦାତା ନିଯୁକ୍ତ ।

ଚାକିରି ଜୀବନର ଶେଷ ଦଶନ୍ଧି ବିତିଥିବା ସୁଶୋଭନଙ୍କ ପ୍ରିୟ ରାଜଧାନୀ ସହରଠାରୁ କମ୍ପାନୀ ଦପ୍ତର ଥିଲା ପ୍ରାୟ ଦୁଇ ଶହ କିଲୋମିଟର ଦୂର । ତେଣୁ କମ୍ପାନୀରେ ଯୋଗଦେବେ ନା ନାହିଁ, ବିଷୟରେ ପ୍ରଥମରୁ ଦ୍ୱନ୍ଦ୍ୱ ଉପୁଜିଥିଲା ତାଙ୍କ ମନରେ । ତାଙ୍କ ଆର୍ଥିକ ସ୍ଥିତି ଥିଲା ସୁଦୃଢ଼, ନିଜେ ଥିଲେ ସୁସ୍ଥସବଳ । ମନ୍ଦ ନ ଥିଲା ପ୍ରିୟତମା ପତ୍ନୀ

ଶ୍ରୀଜୟାଙ୍କ ସ୍ୱାସ୍ଥ୍ୟ । ଝିଅ ହ୍ୱାଇଁ ରହୁଥିଲେ ୟୁରୋପରେ । ଦୁଇଜଣ ଯାକ ସଫ୍‌ଟୱେର୍ ଇଞ୍ଜିନିୟର । ପୁଅ ଆଲାଏଡ୍ ଅଫିସର୍ । ରେଳବାଇର ଉଚ୍ଚ ହାକିମ, ବୋହୂ କିନ୍ତୁ ହାଉସ୍‌ୱାଇଫ୍ । ସେମାନଙ୍କର କିଛି ସମସ୍ୟା ନ ଥିଲା । କିନ୍ତୁ ଝିଅଜୋଇଁଙ୍କର ସମସ୍ୟା ରହୁଥିଲା ସବୁବେଳେ । ଦୁଇଜଣଯାକ ଚାକିରି କଲେ ଅବସ୍ଥା ଯାହା ହୁଏ । ବିଶେଷକରି ଝିଅର ଏବେ ଆଡ୍‌ଭାନ୍ସଡ୍ ଷ୍ଟେଜ୍ । ଯତ୍ନ ନେବ କିଏ ? ତା' ଶାଶୂ ଅତ୍ୟନ୍ତ ବୟସ୍କା ମରହଟ୍ଟୀ ବୁଢ଼ୀ । ତେଣୁ ତା' ମା' ୟୁରୋପ ଆସୁ ବୋଲି ଝିଅ ଜିଦ୍ କଲା । ତାକୁ ନା କହିବାକୁ ସାହସ ନ ଥିଲା ସୁଶୋଭନଙ୍କର । ସେ ଭାରି ଗେହ୍ଲୀ, ପୁଣି ଡ୍ୟାଡିଜ୍ ଡଟର୍ ।

ସୁଶୋଭନ ଚିନ୍ତା କଲେ ଅର୍ଥପାଇଁ ନ ହେଲେ ବି ବୋର୍‌ଡମ୍‌ଠାରୁ ଦୂରେଇ ରହିବାପାଇଁ ଚାକିରିଟିଏ ଲୋଡ଼ା । ଶ୍ରୀଜୟାଙ୍କର ଏଥିକୁ ଆପତ୍ତି ନ ଥିଲା । ପୁଅବୋହୂ, ଝିଅ ଜୋଇଁ, ଏପରିକି କେତେକ ସାଙ୍ଗସାଥୀଙ୍କ ମତ ଥିଲା ଅନୁକୂଳ । ସମସ୍ତେ ଜାଣିଥିଲେ, ସୁଶୋଭନଙ୍କ ପରି ଜଣେ ୱାର୍କହଲିକ୍ ମଣିଷ ପାଇଁ କାମ ବିନା ଜୀବନ ଦୁର୍ବିଷହ ହୋଇପଡ଼ିବ ।

ସତରେ ମାତ୍ର ତିନି ମାସର ଚାକିରିବିହୀନ ଜୀବନ ସୁଶୋଭନଙ୍କପାଇଁ ଥିଲା ବଡ଼ ଯନ୍ତ୍ରଣାଦାୟକ । ସକାଳ ନ'ରୁ ଘରୁ ବାହାରି ରାତି ନ'ପରେ ଘରେ ପହଞ୍ଚିବା ଥିଲା ତାଙ୍କର ଦୈନନ୍ଦିନ ଅଭ୍ୟାସ । ଅବସର ପରେ ସିନେମା, ସିରିଅଲ୍, ଖବରକାଗଜ, ମ୍ୟାଗାଜିନ୍, ଟିଭି ନ୍ୟୁଜ୍ କେହି ବି ତାଙ୍କ ସମୟର ଦୈର୍ଘ୍ୟକୁ ହ୍ରାସ କରିପାରୁ ନ ଥିଲେ । ତିନି ମାସ ଭିତରେ କୌଣସି କାରଣ ନ ଥାଇ ସେ ପ୍ରାୟ ତିରିଶ ଥର ଝଗଡ଼ା କରିସାରିଥିଲେ ଶ୍ରୀଜୟାଙ୍କ ସହ । ବିନା କାରଣରେ ଗୋଟେ ଚିଡ଼ିଚିଡ଼ା ଭାବ ତାଙ୍କୁ ବିବଶ କରିଥିଲା ଏବଂ ସଦା ହସ ହସ ତାଙ୍କ ମୁହଁରେ ଉଦାସପଣ ଛାଇ ରହିଥିଲା ଶୀତ ସଞ୍ଜର କୁହୁଡ଼ିଘେରା ଆକାଶ ପରି । ସୁଶୋଭନ ଏ ବିଷୟରେ ନିଜେ ମଧ୍ୟ ସଚେତନ ଥିଲେ ଏବଂ ମୁକ୍ତିର ବାଟ ଖୋଜୁଥିଲେ ମନେ ମନେ ।

ସୁତରାଂ ଶ୍ରୀଜୟାଙ୍କୁ ଇଣ୍ଟରନ୍ୟାସନାଲ୍ ଫ୍ଲାଇଟ୍‌ରେ ବସାଇବା ପରଦିନ ନୂଆ କରି ଏହି ସହରକୁ ଆସିଥିଲେ ସୁଶୋଭନ । କାର୍ଯ୍ୟରେ ଯୋଗଦେବା ଦିନ ହିଁ ତାଙ୍କୁ ମିଳିଥିଲା କମ୍ପାନୀର ଏକ ସୁସଜ୍ଜିତ ବାସଭବନ । କିନ୍ତୁ ସହର ଉପକଣ୍ଠରେ ଅବସ୍ଥିତ ବହୁ କୋଠରି ବିଶିଷ୍ଟ ଭବନଟି ଏକ ନିର୍ଜନ ଦ୍ୱୀପ ପରି ତାଙ୍କୁ ପ୍ରଥମରୁ ମନେ ହୋଇଥିଲା । ଅତି ଭୟାନକ । ଡାକ୍ତରୀ ପରାମର୍ଶ ଯେତେ ନୁହେଁ, ଏହି ନିର୍ଜନତା ତାଙ୍କୁ ପ୍ରାତଃଭ୍ରମଣପାଇଁ ଅଧିକ ପ୍ରଚୋଦିତ କରିଥିଲା ।

ପ୍ରାତଃଭ୍ରମଣର ସେହି ପହିଲି ଦିନସବୁ ମନେପଡ଼ିଲେ ସୁଶୋଭନ ଶିହରିତ ହୁଅନ୍ତି । ମିଛିମିଛିକା ଅଭିମାନରେ ପ୍ରିୟମ୍ବଦା କହନ୍ତି, ଦେଖ, ପ୍ରେମଟା ପ୍ରଥମେ ତୁମଆଡୁ ଆରମ୍ଭ ହୋଇଛି । ସୁଶୋଭନ କିନ୍ତୁ କଥା କାଟିବାରେ ପଟୁ । ପ୍ରିୟମ୍ବଦାଙ୍କୁ ତାଙ୍କ ପ୍ରତ୍ୟୁତ୍ତର ବଡ଼ ତୀକ୍ଷଣ– 'ପ୍ରଥମ ଦେଖାରେ ପ୍ରଥମେ ହସିଥିଲା କିଏ ? ତୁମେ ନା ମୁଁ ?' ଏତିକି କଥାରେ ଅସମ୍ଭବ ଭାବରେ ଲାଜେଇ ଯାଆନ୍ତି ପ୍ରିୟମ୍ବଦା । ତାଙ୍କର ସେ ଈଷତ୍‌ନାଲି ଲାଜରା ମୁହଁଟି ସେତେବେଳେ ଭଲ ଲାଗେ, ଖୁବ୍ ଭଲ ଲାଗେ ସୁଶୋଭନଙ୍କୁ ।

ପ୍ରିୟମ୍ବଦା ପାର୍କରେ ପାଦଦେଲାକ୍ଷଣି ଯେମିତି ଅଦିନ ମଳୟରେ ବିଭୋର ହୁଏ ଚଉପାଶ । ତାଙ୍କ ପାଉଁଜିର ମୃଦୁ ନିକ୍ୱଣରେ ସ୍ତବ୍ଧ ହୁଏ କାକଳି । ପୁଣି ତାଙ୍କ ଲାବଣ୍ୟରେ ଚିହିଁକିପଡ଼େ ଅବା ସକାଳର କଅଁଳ ଖରା ।

ଗତକାଲି ପାର୍କ୍‌ରେ ପ୍ରିୟମ୍ବଦାଙ୍କ ଅନୁପସ୍ଥିତି ଚୋରେଇ ନେଇଥିଲା ଅଶିଣ ସକାଳଠୁ ସବୁତକ ସୁନାଖରା । ଚୋରେଇ ନେଇଥିଲା ଗଛମାନଙ୍କଠାରୁ ସବୁଜ ସ୍ୱପ୍ନ, ଫୁଲମାନଙ୍କଠାରୁ ରଙ୍ଗ, ପୁଣି ପବନଠାରୁ ହିଲ୍ଲୋଳ । ଆକାଶ ସତେ ଖଣ୍ଡଖଣ୍ଡ ହୋଇ ଖସିପଡୁଥିଲା ସୁଶୋଭନଙ୍କ ମୁଣ୍ଡ ଉପରେ । ତାଙ୍କ ଛାତି ଭିତରେ ମୁହୁର୍ମୁହୁଃ ସଂଘଟିତ ନିଃଶବ୍ଦ ବିସ୍ଫୋରଣକୁ କୌଣସି ପ୍ରକାରେ ସେ ସହିଯାଉଥିଲେ ।

ପ୍ରିୟମ୍ବଦାଙ୍କ ଭ୍ରାମ୍ୟଭାଷ ବନ୍ଦ ଥିଲା ।

ପାର୍କ୍‌ର ଏକ ପରିତ୍ୟକ୍ତ ସିମେଣ୍ଟ୍ ଚଉକି ଉପରେ ବସିରହିଥିଲେ ସୁଶୋଭନ, ସକାଳ ଦିନ ହେବା ଯାଏ । ତା'ପରେ ଘର, ଘରୁ ଅଫିସ, ଅଫିସ୍‌ରୁ ଘର, ଘରୁ ବଜାର, ବଜାରରୁ ଘର । ପ୍ରିୟମ୍ବଦାଙ୍କ ସହିତ କଥାବାର୍ତ୍ତା ତଥାପି ସମ୍ଭବ ନ ଥିଲା । ପ୍ରିୟମ୍ବଦାଙ୍କ ଠିକଣା ବି ଜଣା ନ ଥିଲା ସୁଶୋଭନଙ୍କୁ । ଅବଶ୍ୟ ସେହି ସହରରେ ଥିବା ଏକମାତ୍ର କଲେଜର ଆଖପାଖ ଅଞ୍ଚଳରେ ରହୁଥିଲେ ପ୍ରିୟମ୍ବଦା । ଏତକ ଛଡ଼ା ଅନ୍ୟ କିଛି ତାଙ୍କ ବିଷୟରେ ଜାଣି ନ ଥିଲେ ସୁଶୋଭନ । ଛୋଟ ଏକ ସହରରେ ଜଣେ ମହିଳାଙ୍କ ଠିକଣା ଖୋଜି ବୁଲିବା, ଏପରି ଏକ ଦୁଃସାହସର ଅଧିକାରୀ କେବେ ବି ନ ଥିଲେ ସୁଶୋଭନ ।

ପ୍ରିୟମ୍ବଦାଙ୍କ ପ୍ରିୟ ସମ୍ଭାଷଣରେ କିନ୍ତୁ ଅନୁରଣିତ ହୋଇଥିଲା ତହିଁ ପରଦିନର ସକାଳ । ସନ୍ଧ୍ୟାରେ ତାଙ୍କ ଘରକୁ ଯିବାପାଇଁ ଅନୁରୋଧ ଥିଲା । ମଧ୍ୟ ଥିଲା ଘରର ଅବସ୍ଥିତି ବିଷୟରେ ସଂକ୍ଷିପ୍ତ ସୂଚନା ।

କେବେ କୌଣସି ସନ୍ଧ୍ୟାକୁ ଏତେ ଉତ୍କଣ୍ଠାର ସହିତ ଅପେକ୍ଷା କରିଥିବା କଥା ମନେ ପଡୁ ନ ଥିଲା ସୁଶୋଭନଙ୍କର ।

ଅନୁଚ୍ଚ ପାହାଡ଼ ପରିବେଷ୍ଟିତ ସେହି ସୁନ୍ଦର ଉପତ୍ୟକା ସହରଟିକୁ ଅଧିକ ସୁନ୍ଦର କରିବାପାଇଁ ବିଜୁଳିବତିମାନେ ଉଦ୍ୟତ ହେଲାବେଳକୁ ସୁଶୋଭନ କାର୍ ଷ୍ଟାର୍ଟ କରିସାରିଥିଲେ ଏବଂ ନିର୍ଭୁଲ ଠିକଣାରେ ପହଞ୍ଚିଥିଲେ ମିନିଟ କେତୋଟି ମଧ୍ୟରେ । ମୌନତାରେ ମୁଖର ସେହି ଘରଟି ଥିଲା ପରିପାଟୀରେ ଆଧୁନିକ, ସାଜସଜ୍ଜାରେ ସାବଲୀଳ, ଅଥଚ ସଂଭ୍ରାନ୍ତ ।

ଘର ଭିତରକୁ ପ୍ରିୟମ୍ବଦାଙ୍କ ଆମନ୍ତ୍ରଣ ଥିଲା ଅବା ମଧୁରତମ ସଙ୍ଗୀତର ନିଃଶବ୍ଦ ମୂର୍ଚ୍ଛନା ।

ଚା' ପୂର୍ବରୁ ଆରମ୍ଭ ହେଲା ଆଳାପ । ଉପକ୍ରମ ଥିଲା ବିଷୟବିହୀନ । ମଝିରେ ବୈଠକୀରୁ ହଠାତ୍ ଉଠିଗଲେ ପ୍ରିୟମ୍ବଦା ଏବଂ ଗୋଟେ ସଫେଦ ପ୍ଲେଟ୍‌ରେ ଚକୋଲେଟ୍ ରଙ୍ଗର କେକ୍‌ରୁ କେତେ ଖଣ୍ଡ ବହନ କରି ଫେରିଆସିଲେ ଯଥାଶୀଘ୍ର । କହିଲେ, ‘‘ଆଜି ପଲ୍ଲବଙ୍କର ଜନ୍ମଦିନ । ମୁଁ ନିଜ ହାତରେ କେକ୍ ପ୍ରସ୍ତୁତ କରିଛି ।

ପ୍ଲିଜ୍ ଖାଅନା, ଖୁବ୍ ଭଲ ଲାଗିବ ।' ସୁଶୋଭନ ଅପ୍ରସ୍ତୁତ ବୋଧ କଲେ । କିଏ ପଲ୍ଲବ ? ସେ କ'ଣ ହୁଅନ୍ତି ପ୍ରିୟମ୍ବଦାଙ୍କର ? କାହାନ୍ତି ସେ ? ଘର ଭିତରେ, ବାହାରେ ତ' ଏକମାତ୍ର ନାରୀର ବିଚରଣ, ଉଚ୍ଚାରଣ ।

ସୁଶୋଭନଙ୍କ ମୁହଁସାରା ଜିଜ୍ଞାସାର ପ୍ରଲେପ ପଡ଼ିବାକୁ କିନ୍ତୁ ଡେରି ଲାଗିଲା ନାହିଁ ପ୍ରିୟମ୍ବଦାଙ୍କୁ । ତା'ପରେ ସେ ଗପିଚାଲିଲେ ପଲ୍ଲବଙ୍କ ବିଷୟରେ, ନନ୍‌ଷ୍ଟପ୍ ।

ପଲ୍ଲବ ତାଙ୍କର ସହପାଠୀ, କଲେଜରେ, ୟୁନିଭରସିଟିରେ ବି । ତାଙ୍କ ସହ ଆତ୍ମୀୟତା କଲେଜରୁ । ମେଧାବୀ ଛାତ୍ର, ହାଣ୍ଡସମ୍ ଚେହେରା, ସ୍ପୋର୍ଟସ୍ ପର୍ସନାଲିଟି । ପୁଣି ସୁନ୍ଦର ସ୍ୱାସ୍ଥ୍ୟପାଇଁ ସେ 'କଲେଜ-ଶ୍ରୀ' ଘୋଷିତ ହେଲାପରେ କଲେଜ୍ କହିଲେ କିଛିଦିନପାଇଁ ପଲ୍ଲବଙ୍କୁ ହିଁ ବୁଝାଉଥିଲା । ତାଙ୍କ ପଛରେ ତେଣୁ କଲେଜ ଝିଅମାନଙ୍କର ଲାଗୁଥିଲା ଲମ୍ବାଧାଡ଼ି । କିନ୍ତୁ ସୌଭାଗ୍ୟବତୀମାନଙ୍କ ତାଲିକାରେ ପ୍ରିୟମ୍ବଦା ହିଁ ଥିଲେ ସବା ଉପରେ । ସେ ନିଜକୁ ସୁନ୍ଦରୀ ମନେ କରୁଥିଲେ ହେଁ ଅସାମାନ୍ୟ ରୂପବତୀ ବୋଲି କେବେ ବି ଗଣା ହେଉ ନ ଥିଲେ କଲେଜ ବା ୟୁନିଭର୍‌ସିଟି କ୍ୟାମ୍ପସ୍‌ରେ । ତେଣୁ ପଲ୍ଲବଙ୍କ ପରି ସ୍ମାର୍ଟ୍ ଆଣ୍ଡ୍ ହ୍ୟାଣ୍ଡସମ୍ ବୟ୍‌ର ପ୍ରେମିକା ଭାବରେ ସେ ଥିଲେ କୋଟି-ବ୍ରହ୍ମାଣ୍ଡ-ସୁନ୍ଦରୀମନ୍ୟ ଅନେକଙ୍କ ଈର୍ଷାର କେନ୍ଦ୍ରବିନ୍ଦୁ ।

ତେବେ ପାଞ୍ଚବର୍ଷ ପଢ଼ା ଉତ୍ତାରୁ ପଲ୍ଲବ କ୍ୟାମ୍ପସ୍ ଛାଡ଼ିଥିଲେ । ଜଏନ୍ କରିଥିଲେ ଏୟାରଫୋର୍ସ୍‌ରେ । ଆକାଶରେ ଉଡ଼ିବାପାଇଁ ଆବାଲ୍ୟ ତାଙ୍କ ମନରେ ଥିଲା ଅଦମ୍ୟ ନିଶା । ପଲ୍ଲବଙ୍କ ମନକଥା ଆଉ କେହି ଜାଣୁ ବା ନ ଜାଣୁ, ପ୍ରିୟମ୍ବଦା ଜାଣିଥିଲେ ଅନେକ ଦିନରୁ । ପକ୍ଷୀମାନଙ୍କର କୂଜନ ଅପେକ୍ଷା ସେମାନଙ୍କ ଊର୍ଦ୍ଧ୍ୱ ଉଡ଼ାଣ ଅଧିକ ପୁଲକିତ କରୁଥିଲା ପଲ୍ଲବଙ୍କୁ । ସେ ମାଟିକୁ ଯେତେ ଭଲ ପାଉଥିଲେ, ତା' ଠାରୁ କେତେ ଅଧିକ ଭଲ ପାଉଥିଲେ ମହାକାଶକୁ । ଦିଗଦିଗନ୍ତର ସବୁଜିମାରେ ସେ ମଗ୍ନ ହେଉଥିଲେ ନିଶ୍ଚୟ, କିନ୍ତୁ ତହୁଁ ବଳି ଆତ୍ମହରା ହେଉଥିଲେ ଅନ୍ତରୀକ୍ଷବ୍ୟାପୀ ମେଘମାନଙ୍କ ବେଗ-ବିଳାସରେ ।

ପଲ୍ଲବଙ୍କ ସହ ପ୍ରିୟମ୍ବଦାଙ୍କ ପ୍ରୀତି ଥିଲା ଅଭେଦ, ବ୍ୟାପିଥିଲା ମାଟିରୁ ଆକାଶ ପର୍ଯ୍ୟନ୍ତ । ବିମାନ ଚାଳନାର ତାଲିମ ବିଷୟରେ ସେ ଟିକିନିଖି କଥା ସବୁ ଲେଖୁଥିଲେ ତାଙ୍କ ଚିଠିରେ । କେଉଁଠୁ ସେ ଏତେ ସମୟ ପାଆନ୍ତି କେଜାଣି ? ଆଶ୍ଚର୍ଯ୍ୟ ହେଉଥିଲେ ପ୍ରିୟମ୍ବଦା । ସାରାଦିନ ତାଲିମର ଘନଘଟା, ତା' ସାଙ୍ଗକୁ ସାମରିକ ଶୃଙ୍ଖଳାର ଶୃଙ୍ଖଳ । ତା' ଭିତରେ ସୁନ୍ଦର ହସ୍ତାକ୍ଷରରେ ଭରପୂର ଚିଠି, ପୁଣି ଚିଠି ଭର୍ତ୍ତି ପ୍ରବଣତା । ଅବଶ୍ୟ ସେହିଦିନର ଚିଠିଗୁଡ଼ିକ ପ୍ରେମର ପୁଲକ ଅପେକ୍ଷା ଉଡ଼ାଣର ଶିହରଣରେ ଥିଲେ ସିକ୍ତ ।

ପଲ୍ଲବଙ୍କ ପ୍ରୋବେଶନ୍ ସରି ନ ଥିଲା, ପ୍ରିୟମ୍ବଦା ଆଡ୍‌ହକ୍‌ରେ ଅଧ୍ୟାପିକା ଚାକିରି ପାଇଲେ ଦୂର ଏକ ସୀମାନ୍ତ ସହରରେ । ତାଙ୍କ ଛାତ୍ରୀ ଜୀବନର ପ୍ରେମକାହାଣୀ ସେ ନୂଆ ନିଯୁକ୍ତିପ୍ରାପ୍ତ କଲେଜ୍‌କୁ ସଂକ୍ରମିତ ହେଲା ଅବିଳମ୍ବେ । ତାଙ୍କ ଘରେ, ଗାଁରେ, ସାଇପଡ଼ିଶାରେ ବ୍ୟାପିଲା ସେକଥା । କାହାଣୀରେ କଳ୍ପନା, କଳ୍ପନାରେ

ରଙ୍ଗ– ଏମିତି ତାଙ୍କ ପ୍ରେମ ବ୍ୟାପାର ଏକ ଆଞ୍ଚଳିକ ଆଖ୍ୟାୟିକାରେ ପରିଣତ ହେଲା । ପ୍ରେମପ୍ରେମରେ ବିରୋଧୀ ଥିଲେ ନନାବୋଉ, ପୂରାପୂରି ଅରାଜି ଥିଲେ ବାହାଘରପାଇଁ ।

ପ୍ରିୟମ୍ବଦାଙ୍କ ଘର ଥିଲା ଚୂନଛଡ଼ା ରକ୍ଷଣଶୀଳତାର ଭଙ୍ଗା ଉଆସ । ଶାସନୀ ବ୍ରାହ୍ମଣ ପରିବାର, ଶାସ୍ତ୍ରାନୁଯାୟୀ ଆଚାର, ବିଚାର, ବେଭାର । ତାଙ୍କ ନନା ଆଖପାଖ ଦଶମୌଜାର ନାମଜାଦା ସଂସ୍କୃତ ପଣ୍ଡିତ, ବେଦବିତ୍ । ମାତ୍ର ପ୍ରିୟମ୍ବଦାଙ୍କ ପ୍ରେମ ବ୍ୟାପାର ତାଙ୍କ କାନରେ ପଡ଼ିଲାକ୍ଷଣି ସେ ଭ୍ରୂକୁଞ୍ଚନ କରିଥିଲେ, କିନ୍ତୁ ଝିଅର ପ୍ରେମିକ ପଲ୍ଲବ ପଟ୍ଟନାୟକ କରଣ ନୁହେଁ, ଖ୍ରୀଷ୍ଟାନ୍ ବୋଲି ଜାଣିଲାକ୍ଷଣି ସେ କୁଆଡ଼େ ସଂଜ୍ଞାହୀନ ଅବସ୍ଥାରୁ ଅଳ୍ପକେ ବର୍ତ୍ତି ଯାଇଥିଲେ । ଝିଅ ଅଜାତିରେ ବାହାହେଲେ ସେ ମହୋଦଧିରେ ପ୍ରାଣ ବିସର୍ଜନ କରିବେ ବୋଲି ବୋଉ ଜରିଆରେ ଧମକ ଦେଇଥିଲେ । ବାପଝିଅଙ୍କ ଜିଦ୍‌ର ଯୂପକାଠିରେ ବୋଉ ଦିଶୁଥିଲା ଛେଳିପରି ନିରୀହ, କାକୁସ୍ଥ ।

ପଲ୍ଲବଙ୍କୁ ବିବାହ କରିବା ସିଦ୍ଧାନ୍ତରେ ଅଟଳ ଥିଲେ ପ୍ରିୟମ୍ବଦା । ଗୋଟେ ପ୍ରଗତିଶୀଳ ଛାତ୍ର ସଂଗଠନ ସହିତ ସଂପୃକ୍ତି ଯୋଗୁଁ ସେ ଥିଲେ ଜାତି ଧର୍ମ ଆଦି ସଂକୀର୍ଣ୍ଣ ବିବେଚନାର ଊର୍ଦ୍ଧ୍ୱରେ । ଅଧ୍ୟାପିକା ହେଲା ପରେ ଘରକୁ ଯିବା ପ୍ରାୟ ବନ୍ଦ କରିଦେଇଥିଲେ, ଯଦିଓ ଘରପାଇଁ; ଓ ସାନଭାଇର ପାଠପଢ଼ାପାଇଁ ଅଲଗା ମନିଅର୍ଡ଼ର ସେ ନିୟମିତ ପଠାଇବାକୁ ଭୁଲୁ ନ ଥିଲେ ।

ବିବାହ ସଂପର୍କରେ ଉଦାର ମତ ପୋଷଣ କରୁଥିଲେ ପଲ୍ଲବଙ୍କ ପରିବାର । ମନ୍ଦିର ବା ଗିର୍ଜାରେ ବିବାହ କରିବା ଅପେକ୍ଷା କୋର୍ଟ ମ୍ୟାରେଜ୍‌କୁ ଅଧିକ ପସନ୍ଦ କରୁଥିଲେ ପଲ୍ଲବ । ପସନ୍ଦ କରୁଥିଲେ ଏକ ବନ୍ଧୁମିଳନର ଆୟୋଜନ କରିବାପାଇଁ ଭଲ ଗୋଟେ ହୋଟେଲ୍ ବା ରେସର୍ଟରେ । କିନ୍ତୁ ତାଙ୍କର ପ୍ରୋବେଶନ୍ ତଥାପି ସରି ନ ଥିବାରୁ ବିବାହ ତାରିଖ ଘୁଞ୍ଚିଘୁଞ୍ଚି ଯାଉଥିଲା ।

ପ୍ରଗଲ୍‌ଭା ପ୍ରିୟମ୍ବଦାଙ୍କ କଣ୍ଠରେ ହଠାତ୍ ଭିଜାମାଟିର ଆର୍ଦ୍ରତା ।

ସେତେବେଳକୁ ସଞ୍ଜ ଗଡ଼ିଗଲାଣି । ରାସ୍ତା କଡ଼ର ବିଜୁଳିବତିମାନେ ନିଷ୍ପ୍ରଭ । ସୁଶୋଭନ ଲକ୍ଷ୍ୟ କଲେ ପ୍ରିୟମ୍ବଦାଙ୍କ ଘର ସାମ୍ନାରେ ଜହ୍ନ-ଆଲୁଅର ଝଡ଼ । ଏମିତି ଜହ୍ନରାତିମାନଙ୍କରେ ବୁଢ଼ୀମା' କୋଳରେ ରାଜାଝିଅର ପ୍ରେମ କଥା ଶୁଣୁଥିବା ଅବୋଧ ଶିଶୁଟେ ସେ ପାଲଟିଗଲେ ତତ୍‌କ୍ଷଣାତ୍ ଏବଂ କହିପକାଇଲେ 'ତା' ପରେ' ... ।

ନିଜକୁ ସ୍ୱାଭାବିକ କରିବାପାଇଁ ହୁଏତ ପ୍ରିୟମ୍ବଦା ଘର ଭିତରକୁ ପଶିଗଲେ ଏବଂ କିଛି ହାଲକା ଖାଦ୍ୟ ସହିତ ଫେରିଆସିଲେ । କହିଲେ, 'ଡିନର୍ ଡେରି ଅଛି । ଏଥିରୁ ଟିକେ ପାଟିରେ ଦିଅ, ଭଲ ଲାଗିବ ।' ସୁଶୋଭନ ଯନ୍ତ୍ରବତ୍ ଅନୁପାଳନ କଲେ ପ୍ରିୟମ୍ବଦାଙ୍କ ଅନୁରୋଧ ।

ଘୁଞ୍ଚୁ ଘୁଞ୍ଚୁ ସବୁଦିନପାଇଁ ଘୁଞ୍ଚିଗଲା । ବିବାହ ତାରିଖ– କହୁ କହୁ କାନ୍ଦି ପକେଇଲେ ପ୍ରିୟମ୍ବଦା । ନିଜକୁ ପୁଣି ସାନ୍ତ୍ୱନା ଦେଲେ, ଆଖିରୁ ଲୁହ ପୋଛିଲେ । ବଖାଣିଲେ

ପଲ୍ଲବଙ୍କ କଥା– ସମରାଭ୍ୟାସ ଥିଲା ପଲ୍ଲବଙ୍କ ପ୍ରବେଶନ୍‌ର ଅନ୍ତିମ ପର୍ଯ୍ୟାୟ । ଯୁବ-ପାଇଲଟ୍‌ମାନେ ହେଲିକପ୍ଟର୍ ଉଡ଼ାଉଥିଲେ ଆକାଶରେ । ଚିତ୍ତାକର୍ଷକ ସମରାଭ୍ୟାସ ଦୃଶ୍ୟକୁ ଉପଭୋଗ କରୁଥିଲେ ଆକାଶବାହିନୀର ପଦସ୍ଥ ପଦାଧିକାରୀମାନେ । ହଠାତ୍ ଗୋଟଏ ହେଲିକପ୍ଟର୍ ଉର୍ଦ୍ଧ୍ୱରୁ ଉର୍ଦ୍ଧ୍ୱକୁ, ଆକାଶରୁ ମହାକାଶକୁ ଉଡ଼ିଯାଉଥିବା ଦେଖିପାରିଲେ ସମସ୍ତେ । ତା'ପରେ ପାହାଡ଼, ମେଘ, ଆକାଶ– ସବୁ ଏକାକାର । ଅନନ୍ତ ନୀଳିମାରେ ନିଶ୍ଚିହ୍ନ ହେଲିକପ୍ଟର୍‌ଟି ଆଉ ଫେରିଲା ନାହିଁ । ପଲ୍ଲବ ସେହି ଦିନରୁ ନୀଳନଭର ନକ୍ଷତ୍ର !

ପ୍ରିୟମ୍ୱଦାଙ୍କ ଆଖିରେ ସେତେବେଳେ ଶ୍ରାବଣର ଏଲିଜି । ସୁଶୋଭନ ଭାବୁଥିଲେ ପ୍ରିୟମ୍ୱଦାଙ୍କ ଆଖିରୁ ଲୁହତକ ପୋଛିଦେବେ ବୋଲି । କିନ୍ତୁ ସେ ସେଥିରୁ ନିବୃତ୍ତ ରହିଲେ ।

ରାତି ବୟସ୍କା ହେଉଥିଲା ।

ପ୍ରିୟମ୍ୱଦାଙ୍କ କହିବା ବନ୍ଦ ହେଉ ନ ଥିଲା ।

'ସୁଶୋଭନ, ତୁମେ ପଲ୍ଲବଙ୍କ ଫଟୋ ଦେଖିବ ?'

'ତୁମେ ଦେଖିବାକୁ ଠିକ୍ ତାଙ୍କ ପରି ।'

'ପାର୍କରେ ମୁଁ ତୁମକୁ ପ୍ରଥମେ ଦେଖିଲି ପଛଆଡୁ । ବିଶ୍ୱାସ କର, ପଛଆଡୁ ତ ତୁମେ ଦିଶୁଥିଲ ଅବିକଳ ପଲ୍ଲବଙ୍କ ପରି । ମୁଁ ସେଦିନ ଧାଇଁଯାଇ ତୁମକୁ ସାମ୍ନାରୁ ଦେଖିଲି । କିନ୍ତୁ ଦେଖିଲି ନାହିଁ ତୁମ ମୁହଁ ଆଉ ତାଙ୍କ ମୁହଁ ଭିତରେ କିଛି ବି ପାର୍ଥକ୍ୟ । ମୁଁ ଭାବିଲି ବୋଧହୁଏ ପୃଥିବୀ ଫାଟିଯିବ ଏବଂ ମୁଁ ତା' ଭିତରେ ବିଲୀନ ହୋଇଯିବି । କିନ୍ତୁ ନା, ସେମିତି କିଛି ହେଲା ନାହିଁ । ବରଂ ତୁମ ମୁହଁକୁ ଚାହିଁଦେଲାକ୍ଷଣି ତିରିଶବର୍ଷ ତଳର କୁଆଁରୀପଣ ମୋତେ ଘାରିଲା ।'

ପ୍ରିୟମ୍ୱଦା ଇତିମଧ୍ୟରେ ପାଲଟି ଯାଇଥିଲେ ଅବା ଉଚ୍ଛଳ ଜଳଧି ।

'ମନେପଡୁଛି ପ୍ରଥମ ଦେଖାରେ ମୁଁ କେମିତି ହସି ଦେଇଥିଲି । ହସିବିନି କାହିଁ କେତେଦିନ ପରେ ଗୋଟେ ଆତ୍ମୀୟ ମୁହଁକୁ ଦେଖି ।'

ସୁଶୋଭନ, ତାଙ୍କ ହାତ ପରି ତୁମ ହାତ ବହୁତ ଲମ୍ବା, ଯାହାକୁ କହନ୍ତି ଆଜାନୁଲମ୍ବିତ । ଆଉ ତୁମ ଦୁହିଁଙ୍କ ଚାଲି ଏକାପରି– ରାଜକୀୟ । ତୁମ ଠାଣି ବି ତାଙ୍କ ଠାଣିପରି-ସିଂହ ଠାଣି । ଆଃ...କଥାବାର୍ତ୍ତାରେ ପୁଣି ଏତେ ସାମଞ୍ଜସ୍ୟ– ତମ କଥା ଠିକ୍ ତାଙ୍କ କଥା ପରି, ଭାରି ମିଠା ।

ସୁଶୋଭନ ଉଠି ଠିଆହେଲେ, ଜହ୍ନକୁ ଚାହିଁଲେ, ଚାହିଁଲେ ପ୍ରିୟମ୍ୱଦାଙ୍କୁ । ମ୍ଳାନ ଆଲୁଅରେ ଝଟକୁଥିଲା ପ୍ରିୟମ୍ୱଦାଙ୍କ ମୁହଁ, ଜହ୍ନପରି ।

ତାଙ୍କର ବି ଆଜି ଜନ୍ମଦିନ ବୋଲି କହିବେ କହିବେ ହୋଇ ସୁଶୋଭନ କିଛି କହିଲେ ନାହିଁ ।



# ଗାନ୍ଧୀବଟ

ଉଣେଇଶଶହ ଏକୋଇଶ ମସିହା ଜୁଲାଇ ମାସ ଦୁଇ ତାରିଖର ନରମ ସକାଳ । ମେଘଭର୍ତ୍ତି ଆକାଶ । ସବୁଜ ସ୍ୱପ୍ନରେ ବିଭୋର ମାଟି । ସକାଳୁ ସକାଳୁ ପୁଣି ଅସ୍ରାଏ ବର୍ଷା ଉଛୁଳା ବୈତରଣୀର ଢେଉକୁ ଚୁମିଗଲା ଯେମିତି ! ଭରା ନଈ ଛାତିରେ ଫୁଟି ଉଠିଲା ହଠାତ୍ ଅଜସ୍ର ନୀଳ କଇଁର ଶିହରଣ ।

ଚାନ୍ଦବାଲି ଘାଟ ଲୋକାରଣ୍ୟ । ବର୍ଷାକୁ ଖାତିର ନାହିଁ କାହାର । ନଈଆଡ଼କୁ ଆଗେଇ ଚାଲିଥିଲା ବଡ଼ ଗୋଟେ ପଟୁଆର, ସାଙ୍ଗରେ ସଂକୀର୍ତ୍ତନ ଦଳଟାଏ । ମୃଦଙ୍ଗର ମୃଦୁ ନିନାଦ ଓ କରତାଳର ତାଳେ ତାଳେ ସୁଲଳିତ ସଙ୍ଗୀତ ଝରୁଥିଲା କେତେଜଣ ଗାୟକଙ୍କ କଣ୍ଠରୁ । ସବା ଆଗରେ ଉଦ୍ଦଣ୍ଡ ନୃତ୍ୟକରି ଆଗେଇ ଚାଲିଥିଲେ ଜଣେ ଯୁବ-ସନ୍ନ୍ୟାସୀ । ଶ୍ୟାମଘନ ତନୁ, ସୌମ୍ୟକାନ୍ତି । ବକ୍ଷଚୁମ୍ବୀ ଶ୍ମଶ୍ରୁ । ତେଜୋଦୀପ୍ତ ମୁଖମଣ୍ଡଳ ।

କିଏ ଏହି ସନ୍ନ୍ୟାସୀ ? ଅଦୂରରେ ଠିଆ ହୋଇ ଦୃଶ୍ୟଟିକୁ ଆକଣ୍ଠ ପାନ କରୁଥିବା ସ୍ଥାନୀୟ ପ୍ରାଥମିକ ବିଦ୍ୟାଳୟର ଅବସରପ୍ରାପ୍ତ ହେଡ୍‌ପଣ୍ଡିତ ହାଡ଼ିବନ୍ଧୁ ସେନାପତି ନିଜକୁ ପ୍ରଶ୍ନ କରୁଥିଲେ । ଇତିହାସରେ ରୁଚି ରଖୁଥିବା ହେଡ୍‌ପଣ୍ଡିତ ମହାଶୟଙ୍କର ମନେ ପଡୁଥିଲା ନବଦ୍ୱୀପରୁ ନୀଳାଚଳ ଯାତ୍ରା କରୁଥିବା ଚୈତନ୍ୟ ମହାପ୍ରଭୁଙ୍କ କଥା । ଚୈତନ୍ୟ ଗୋସେଇଁ ଏମିତି ନାଚି ନାଚି ପରା ପୁରୀ ପଥରେ ଧାଉଁଥିଲେ । 'ହରେକୃଷ୍ଣ ହରେକୃଷ୍ଣ, କୃଷ୍ଣ କୃଷ୍ଣ ହରେ ହରେ..' ନାମ ସଂକୀର୍ତ୍ତନ କରି ନାଚୁ ନାଚୁ ମଝିରେ ମଝିରେ କୁଆଡ଼େ ସେ ମୂର୍ଚ୍ଛା ହୋଇଯାଉଥିଲେ । ଏ ଯୁବ-ସନ୍ନ୍ୟାସୀ ଜଣକ ସେମିତି... ହେଡ୍‌ପଣ୍ଡିତ ମହାଶୟ ଆଉ ତେଣିକି ଭାବିଲେ ନାହିଁ । ସଙ୍ଗୀତର ମୂର୍ଚ୍ଛନାକୁ କାନେଇଲେ ଅତି ନିବିଡ଼ ଭାବରେ ;

'ମହାତ୍ମା ମୋହନଦାସ
ଦ୍ୱାରକାପୁରରେ ବାସ
ଦ୍ୱାପର ଦ୍ୱାରକା ଦ୍ୱୀପ
କୃଷ୍ଣ ଲୀଳାମୟରେ,
ଅଧମ ତାରଣ ହରି
ଗାନ୍ଧୀ ରୂପେ ଅବତରି
ବିନାଶିବା ପାଇଁ ବିଜେ
ଦୁଃଖୀ ଦୁଃଖ ଚୟ ହେ...

ହେଡ଼୍‌ପଣ୍ଡିତ ମହାଶୟ ଗୀତଟି ଶୁଣିବାପରେ ଭିତରେ ଭିତରେ କହିଲେ, 'ଓଃ...ଏମାନେ ଗାନ୍ଧୀ ମହାତ୍ମାଙ୍କ କଥା କହୁଛନ୍ତି ।' ଏମିତି ଭାବୁ ଭାବୁ ନିଜ ଅଜାଣତରେ ସେ ପଟୁଆର ଭିତରକୁ ପଶି ଯାଇଥିଲେ । ସେତେବେଳକୁ ବର୍ଷା ଛାଡ଼ି ଯାଇଥିଲା । ମେଘାଛନ୍ନ ଆକାଶର କେଉଁ ଫାଟ ଭିତରୁ ଉକୁଟି ଉଠୁଥିଲା ସୂର୍ଯ୍ୟଙ୍କର ଉଜ୍ଜ୍ୱଳ ଚେହେରା ।

ପଟୁଆର ଭିତରେ ଅନେକ ଚିହ୍ନା ମୁହଁ ଦେଖିଲେ ହେଡ଼୍‌ପଣ୍ଡିତ ମହାଶୟ । ରାଧାଶ୍ୟାମ ନାୟକ ଓ ସନ୍ଥଚରଣ ବେହେରାଙ୍କୁ ସେ ଭଲ ଭାବରେ ଜାଣନ୍ତି । ରାଧାଶ୍ୟାମ ନାୟକ ଚାନ୍ଦବାଲି ସ୍ୱରାଜ୍ୟ ଆଶ୍ରମ କଥା ବୁଝନ୍ତି; ମତୋ ସ୍ୱରାଜ୍ୟ ଆଶ୍ରମ କଥା ବୁଝନ୍ତି; ମତୋ ସ୍ୱରାଜ୍ୟ ଆଶ୍ରମ ଥାଏ ସନ୍ଥ ବେହେରାଙ୍କ ଦାୟିତ୍ୱରେ । ଅନ୍ୟଜଣେ ଯୁବକକୁ ଦୋଦୋଚିହ୍ନା କଲେ ସେ । କେଉଁଠି ଦେଖିଛନ୍ତି ଏମିତି ଚେହେରାର ଯୁବକ ଜଣକୁ । ମନେ ପକାଇଲେ ମାଷ୍ଟ୍ରେ । ଭାବିହେଲେ ଘଡ଼ିଏ ଦି'ଘଡ଼ି । ଠିକ୍ ପଣାସଂକ୍ରାନ୍ତି ପୂର୍ବରୁ ହେବ ବୋଧହୁଏ । ମତୋ କଚେରି ପଡ଼ିଆରେ ସଭା ହେଉଥିଲା । ଦୁଇ ଜଣ ଯୁବକ ସଭାରେ ଭାଷଣ ଦେଲେ । ଜଣେ ହେଲେ ମହତାବ । ତାଙ୍କ ସାଙ୍ଗରେ ଥିଲେ ଏହି ବାବୁଜଣକ । ଗୀତ ଗାଉଥିଲେ । ହଁ...ହଁ....ମନେପଡ଼ିଲା-- ତାଙ୍କ ନାମ ବାଞ୍ଛାନିଧି ମହାନ୍ତି । ସେ ଇରମର ଲୋକ । କବି । ଏମାନେ ସମସ୍ତେ ଗାନ୍ଧିଜୀଙ୍କ ଚେଲା ପରା !

ନୌକା ଆଡ଼କୁ ପାଦ ବଢ଼ାଉଥିଲେ ଯୁବ-ସନ୍ନ୍ୟାସୀ । 'ବଢ଼ାଇଦେଲେ ପୟର, ଭାବଗ୍ରାହୀ ରଘୁବୀର' ଗୀତଟି କାହିଁକି କେଜାଣି ମନେ ପଡ଼ିଗଲା ହେଡ଼୍ ପଣ୍ଡିତଙ୍କର । ସନ୍ନ୍ୟାସୀ ଓ ତାଙ୍କର ଅନୁଗାମୀ କେତେଜଣଙ୍କୁ ନୌକାରେ ବସାଇ ଫେରୁଥିଲେ ବାଞ୍ଛାନିଧି ଓ ଅନ୍ୟମାନେ । ସନ୍ନ୍ୟାସୀ ଜଣକ କିଏ ବୋଲି ମାଷ୍ଟ୍ରେ ପଚାରିଲେ ବାଞ୍ଛାନିଧିଙ୍କୁ । 'ସେ ପରା ବାବାଜି ରାମଦାସ', ବାଞ୍ଛାନିଧି ଉତ୍ତର ଦେଲେ । ହେଡ଼୍‌ପଣ୍ଡିତ ମହାଶୟ ଆଉ ଥରେ ସନ୍ନ୍ୟାସୀଙ୍କୁ ଦେଖିବାର ମୋହ ସମ୍ବରଣ କରିପାରିଲେ ନାହିଁ । ଗହଳି ଭିତରୁ ବାହାରି ନଈ ଆଡ଼କୁ ନିରେଖିଲେ । କାହିଁ କେତେ ଦୂରକୁ ଚାଲିଯାଇଥିବା ନୌକାଟି ଦିଶୁଥିଲା ଗୋଟେ କାଗଜଡଙ୍ଗାର ଚପଳତା ପରି ।

କାଗଜଡଙ୍ଗା ଓ ଚପଳ କୈଶୋରର ସ୍ମୃତି ସତରେ ଅଥୟ କରୁଥିଲା ବାବାଜି ରାମଦାସଙ୍କୁ । ପିଲାବେଳୁ କାହିଁକି କେଜାଣି ପାଣି-କାଦୁଅରେ ସରସର ହେବାପାଇଁ ତାଙ୍କୁ ସୁଖ ଲାଗୁଥିଲା । ଚାଟଶାଳୀକୁ ନ ଯାଇ ବର୍ଷାଦିନେ ଗାଁ ନୟନଯୋରିରେ କାଗଜଡଙ୍ଗା ଭସାଉଥିଲେ ସେ ଦିନ-ତମାମ । ସେହି ପିଲାଦିନ ଆଉ କ'ଣ ଖୋଜିଲେ ମିଳିବ ? ସ୍ମୃତିରୁ ସେସବୁ ତ କେବେ ବି ଲିଭିବାର ନୁହଁ । ନିଜ ବାପା-ମା'ଙ୍କର ଝାପସା ଚେହେରା କେବେ କେବେ ଚହଲି ଯାଉଥିଲା ତାଙ୍କ

ମନ ଗହନରେ । ସେ ବ୍ୟଥିତ ହେଉଥିଲେ । ବାଲ୍ୟ କାଳରୁ ସେ ହୁଏତ ହରାଇଥିଲେ ତାଙ୍କର ଆତ୍ମୀୟମାନଙ୍କୁ । ନ ହେଲେ ଛାୟାଛନ୍ନ ଅତୀତ ଭିତରୁ ଅନ୍ତରଙ୍ଗ ମୁହଁ ଯୋଡ଼ାକ କ'ଣ ଏତେ ଅସ୍ପଷ୍ଟ ଦିଶନ୍ତା ?

ରାମଦାସଙ୍କର ଘର ଅଦୂର ଗଡ଼ଜାତ ମୁଲକ ତିଗିରିଆରେ । କିନ୍ତୁ ମନେରଖିଲାପରି ବୟସ ହେବାଠାରୁ ସେ ଥିଲେ ଆଠଗଡ଼ରେ । ସେଠାକାର ଚାଟଶାଳୀ କଥା ତାଙ୍କର ବେଶ୍ ମନେପଡ଼େ; ମନେପଡ଼େ ଲଣ୍ଡାମୁଣ୍ଡିଆ ଅବଧାନଙ୍କ କଥା – ତାଙ୍କ ମାଦଳପରାୟ ପେଟ, ମାଖୁନା ମୁହଁ । ଅ ଆ ଠାରୁ ଓଡ଼ାଙ୍କ, ଫେଡ଼ାଙ୍କ ପୁଣି ଲୀଳାବତୀ ସୂତ୍ର ଓ ଅମରକୋଷ ଯାଏ ସବୁ ଥାଏ ତାଙ୍କ ଜିଭ ଅଗରେ । ଶ୍ଳୋକଟାଏ ସବୁ ଚାଟଙ୍କୁ ସେ ଗିଳାନ୍ତି ପୁଣି ଦୁଇଗଣ୍ଡା ବେତ ମାଡ଼ ଜରିଆରେ ତାକୁ ଆଦାୟ କରନ୍ତି–'ମାତା ମେ ପାର୍ବତୀ ଦେବୀ, ପିତାଦେବ ମହେଶ୍ୱରଃ... ଶ୍ଳୋକଟି ଘୋଷିବାର ଅନେକ ଦିନ ପର୍ଯ୍ୟନ୍ତ ତା'ର ଅର୍ଥ ବୁଝି ନ ଥିଲେ ରାମଦାସ ।

ଚାଟଶାଳୀ ପାଠ ସରିବାପରେ ଥରେ ସେ ଜଣେ ଡଉଲଡାଉଲ ସାଧୁଙ୍କୁ ଦେଖିଲେ । ସାଧୁ ଚାଲିଥିଲେ ଗାଁ-ମୁଣ୍ଡରେ । ଜଟାଜୂଟଧାରୀ ଅଧଲଙ୍ଗଳା ବାବାଜିଙ୍କୁ ଦେଖି ମନର କୁତୂହଳ ଚପାଇପାରିଲେ ନାହିଁ ବାଳକ ରାମ ଦାସ । ଚାଲିଲେ ତାଙ୍କ ପଛେ ପଛେ । ଅବଶ୍ୟ ସାଧୁବାବାଙ୍କ ଅଜାଣତରେ । ସଞ୍ଜ ହେବା ପୂର୍ବରୁ ସାଧୁ ପହଞ୍ଚିଲେ ଗୋଟେ ଅନୁଚ୍ଚ ପାହାଡ଼ର ପାଦଦେଶରେ । ଜାଗାଟା ଘଞ୍ଚ ଗଛବୃଛରେ ପରିପୂର୍ଣ୍ଣ, ତା' ଭିତରେ ଛୋଟ ଆଶ୍ରମଟାଏ । ସାଧୁବାବା ବାଳକଟିଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲେ । ପଚାରିଲେ, 'ତୁମ୍ଭେ ଏଠାକୁ କିପରି ଓ କାହିଁକି ଆସିଲ ଅବୋଧ ବାଳକ ? ତୁମ୍ଭ ଅବର୍ତ୍ତମାନରେ ତୁମ୍ଭ ପିତାମାତାଙ୍କର ଅବସ୍ଥା କ'ଣ ହେଉଥିବ ଅନୁମାନ କରିପାରୁଛ ତ ? କିନ୍ତୁ ରାମଦାସ ନିଜ ପିତାମାତାଙ୍କୁ ବହୁ ଆଗରୁ ହରାଇସାରିଛି ବୋଲି ଜାଣିବାପରେ ସାଧୁବାବା ଆଶ୍ୱସ୍ତ ହେଲେ । ରାମଦାସ ତାଙ୍କର ଚେ଼ଲା ହୋଇ ରହିଲେ ଦୀର୍ଘଦିନ ।

ଅବଧାନଙ୍କ ଶ୍ଳୋକଟି ସଞ୍ଜସକାଳେ ସାଧୁବାବା ଗୁଣୁଗୁଣଉଥିବା ଶୁଣିଲେ ରାମ ଦାସ । ଚାହିଁଲେ ତା'ର ଅର୍ଥ ବୁଝିବାକୁ । ଶ୍ଳୋକଟିର ବ୍ୟାଖ୍ୟା କଲେ ସାଧୁବାବା । ପୁଣି ତାଙ୍କ ଉପଦେଶକ୍ରମେ ଶିବ ପାର୍ବତୀ ପାଲଟିଗଲେ ରାମଦାସଙ୍କ ପିତାମାତା ।

ଏହି ସମୟରେ ମହାତ୍ମା ଗାନ୍ଧୀ ଅସହଯୋଗ ଆନ୍ଦୋଳନର ଡାକରା ଦେଲେ । ତାଙ୍କର ସେ ଆହ୍ୱାନ ଭୀରୁ ଭାରତର ପୁରପଲ୍ଲୀରେ ଗୁଞ୍ଜରିତ ହେଲା । ସାଧୁବାବା କହିଲେ, 'ବତ୍ସ ରାମଦାସ, ଏ ଗିରି-ଗୁହା ପରିତ୍ୟାଗ କର, ଭାରତବର୍ଷର ଆକାଶରେ ନୂତନ ସୂର୍ଯ୍ୟ ଉଦୟ ହେଲେଣି । ସେହି ସୂର୍ଯ୍ୟଙ୍କୁ ପ୍ରଣାମ କର । ବନ୍ଦିନୀ ମା'ର ବନ୍ଧନ ଫିଟାଅ । ଦେଶସେବାରେ ନିଜକୁ ଉତ୍ସର୍ଗ କର ।'

ତା' ପରଦିନ ସକାଳୁ ରାମ ଦାସ ଆଉ ଆଶ୍ରମରେ ନ ଥିଲେ, ଥିଲେ ଜନାକୀର୍ଣ୍ଣ କେଉଁ ଜନପଦରେ । ମହାତ୍ମା ଗାନ୍ଧୀଙ୍କର କଟକ ଆସିବା କଥା ବାବାଜି ରାମଦାସଙ୍କ କାନରେ ବାଜିଲା । ଗାନ୍ଧିଜୀ ପ୍ରଥମ କରି ଓଡ଼ିଶା ଭୂଇଁରେ ପାଦ ଦେବେ । କମ୍ ବଡ଼ କଥା କି ! ବାବାଜି ଦୁଇଦିନ ଆଗରୁ ଆସି କଟକରେ ହାଜର ହେଲେ ।

ସେଦିନ ଥିଲା ଉଣେଇଶଶହ ଏକୋଇଶ ମସିହା ମାର୍ଚ୍ଚ ମାସ ତେଇଶ ତାରିଖ । ଦୋଳ ପୂର୍ଣ୍ଣିମା । କଟକ ରେଳ ଷ୍ଟେସନରେ ନାହିଁ ନ ଥିବା ଭିଡ଼ । ହାଓଡ଼ାରୁ ଆସୁଥିବା ଗାଡ଼ିକୁ ଅପେକ୍ଷା । ଆସିବେ ଗାନ୍ଧୀ-ମହାତ୍ମା । ଅଭିଶପ୍ତା ଅହଲ୍ୟା ପରି ପାଷାଣୀ ପାଲଟିଥିଲା ଓଡ଼ିଶା ମୁଲକ । ତାରିବେ ବାରବେନି ପୁରସାର ମୋହନପୁଂସ ।

ପୂର୍ବ ଦିଗରୁ ଫଗୁଣର ଫଗୁ ମେଞ୍ଚାଏ ଯେମିତି ବିଞ୍ଚି ହୋଇପଡ଼ିଲା । ଅନେକ ଦିନ ପରେ ପଳାସ, ରଙ୍ଗଣୀ ଓ ପାଳଧୁଆ ଗଛଡାଳରେ ପାଦ ଭରା ଦେଇ ନୂଆ ସକାଳଟେ ଅବା ଓହ୍ଲାଉଥିଲା କଟକ ମାଟିରେ । ମନ୍ଦମଳୟର ନିଃଶବ୍ଦ ସଙ୍ଗୀତରେ ବାରିହୋଇପଡୁଥିଲା ଅଭିବାଦନର ମହାର୍ଘ ଲାଳିତ୍ୟ । ରେଳଗାଡ଼ି ଅଟକିଲା କଟକ ଷ୍ଟେସନରେ । ଭୂଇଁରେ ପାଦ ଥାପିଲେ ଗାନ୍ଧୀ-ମହାତ୍ମା । ଖଦଡ଼ ଧୋତି ଓ କୁର୍ତ୍ତା, ମୁଣ୍ଡରେ ଟୋପି । ପଛେ ପଛେ ଧଳା ଶାଢ଼ି ପରିହିତା ମା' କସ୍ତୁରବା । ପାଖରେ ବାଳକ ଦେବଦାସ ।

ଗାନ୍ଧିଜୀଙ୍କ ଉପରେ ଦୃଷ୍ଟି ପଡ଼ିଲାକ୍ଷଣି ଭୂଇଁରୁ ଦି'ହାତ ଉପରକୁ କୁଦିପଡ଼ିଲେ ରାମଦାସ ବାବାଜି, କହିଉଠିଲେ, 'ମହାତ୍ମା ଗାନ୍ଧୀ କି ଜୟ ।' ସମବେତ ଜନତାଙ୍କ କଣ୍ଠରୁ ଶୁଭିଲା ଜୟଜୟକାର । ଶଙ୍ଖଧ୍ୱନି, ସଂକୀର୍ତ୍ତନ, ଓଁକାର ଓ ଜୟଜୟକାର ସବୁ ଯେମିତି ମିଶିଗଲା ଶବ୍ଦମୟ ଅସୀମ ଆକାଶରେ । କଟକର ଗଳି ଉପଗଳି, ତୋରଣ ପରେ ତୋରଣ ପାରିହୋଇ ଗାନ୍ଧିଜୀ ଯାଇ ପହଞ୍ଚିଲେ ସ୍ୱରାଜ୍ୟ ଆଶ୍ରମରେ ।

ସଞ୍ଜରେ ଉଚ୍ଛୁଳିଲା କାଠଯୋଡ଼ି । ଲକ୍ଷେ ଜନତାର ସମାବେଶ । କାଠଯୋଡ଼ି ବାଲି ଉପରେ ସଭାମଞ୍ଚ । ମଞ୍ଚ ମଝିରେ ଉଚ୍ଚା ଚଉକିରେ ବସିଲେ ଯାଇ ଗାନ୍ଧୀ-ମହାତ୍ମା । ପାଖରେ କସ୍ତୁରବା । ଖାଲି ମଞ୍ଚରେ ପାଦମାଡ଼ି ବସିଲେ ବାବୁ ଗୋପବନ୍ଧୁ ଦାସ । ଗୋପବନ୍ଧୁ ପହିଲେ ସ୍ୱାଗତ ଭାଷଣ ଦେଇ କହିଲେ, 'ଯେଉଁ ରାଜ୍ୟକୁ ପାଣ୍ଡବମାନେ ଯାଇ ନ ଥିଲେ, ତାକୁ ଅପାଣ୍ଡୁଆ ରାଜ୍ୟ କୁହାଯାଉଥିଲା । ସେମିତି ଗାନ୍ଧୀ ଓଡ଼ିଶା ଆସି ନ ଥିଲେ, ଆମ୍ଭେମାନେ ଅଗାନ୍ଧୀ ଉତ୍କଳ ବଦନାମଟି ମୁଣ୍ଡେଇଥାନ୍ତେ ।' କରତାଳିରେ ଚଳଚଞ୍ଚଳ ହେଲା ସଭାସ୍ଥଳ । ମହାତ୍ମାଗାନ୍ଧୀ କହିବା ଆରମ୍ଭ କଲାବେଳେ ସବୁଠି ସୂଚୀଭେଦି ନୀରବତା । ସରକାରୀ ପଦପଦବୀ ବର୍ଜନ କର, ବିଲାତି ବସନ ବର୍ଜନ କର, କୋର୍ଟ-କଚେରି ବର୍ଜନ କର, ସ୍କୁଲ-କଲେଜ ବର୍ଜନ କର ବୋଲି ମହାତ୍ମା ଗାନ୍ଧୀ କହୁଥିଲାବେଳେ ରାମଦାସ ବାବାଜି ଉନ୍ମାଦପ୍ରାୟ ନାଚି ଯାଉଥିଲେ ନଈବାଲି ଉପରେ । ଶେଷରେ ଗାନ୍ଧୀ କହିଲେ ବିଲାତି ଭାଷା ବର୍ଜନ କର,

ତେବେ ଯାଇ ସ୍ୱରାଜ୍ୟ ପାଇଁ ବାଟ ଫିଟିବ । ଭିଡ଼ ଭିତରୁ ରାମଦାସ ବାବାଜି ତଣ୍ଟି ଫଟାଇ ଗର୍ଜିଲେ, 'ମହାତ୍ମା ଗାନ୍ଧୀ କି ଜୟ, ଭାରତମାତା କି ଜୟ' ।

ଦୁଇଦିନ ପରେ ଗାନ୍ଧିଜୀ ଭଦ୍ରକରେ ପହଞ୍ଚିଲେ । ଗାନ୍ଧିଜୀଙ୍କ ପିଛା ଛାଡ଼ିଲେ ନାହିଁ ରାମଦାସ ବାବାଜି । ଉବୁଟୁବୁ ଜନତାଙ୍କ ମେଳରେ ଭାଷଣ ଦେଇ ସେଦିନ ଗାନ୍ଧିଜୀ କହିଲେ, 'ଇଏ୍ ସଲତନତ୍ ମେଁ ସୈତାନିୟତ୍ ଆଗୈ ।' ଭଦ୍ରକର ମେଦିନୀ କମ୍ପିଲା ଆନନ୍ଦ ନାଦରେ । ସେହିଦିନଠାରୁ ରାମଦାସ ବାବାଜି ସତରେ ଉନ୍ମାଦ ପାଲଟିଗଲେ । ଭୁଲିଗଲେ ସାଧୁବାବାଙ୍କୁ । ଗାନ୍ଧୀ ବାବାଙ୍କ ଚେଲା ବନିଗଲେ । 'ମାତା ମେ ପାର୍ବତୀ ଦେବୀ, ପିତା ଦେବ ମହେଶ୍ୱରଃ' ବୋଲି ଆଉ କହିଲେ ନାହିଁ । କହିଲେ 'ଭାରତ ମୋର ମାତା ଆଉ ପିତା' । 'ସ୍ୱରାଜ୍ୟ ହିଁ ମୋର ପିତା ।' ଭାରତ ମାତା କି ଜୟ, ମାହାତ୍ମା ଗାନ୍ଧୀ କି ଜୟ... ଏହି ଦୃପ୍ତ ନିନାଦରେ ଅନ୍ୟମନସ୍କତାରୁ ଓହରି ଆସିଲେ ବାବାଜି ରାମଦାସ । ନୌକା କୂଳରେ ଲାଗୁଥିଲା । ବିସ୍ତୀର୍ଣ୍ଣଶାଳୀ କେଦାର, ତମାଳ, ତାଳ ଓ ହେନ୍ତାଳବଣର ସବୁଜିମାରେ ଚହଟୁଥିଲା କନିକା । ପ୍ରଥମ ଦେଖାରେ କନିକା ପ୍ରେମରେ ଯେମିତି ପଡ଼ିଗଲେ ସେ । କନିକା ମାଟି ପ୍ରତି ଏକ ତୀବ୍ର ଆକର୍ଷଣ ତାଙ୍କୁ କାବୁ କଲା । ସେ ଆବିଷ୍ଟ ହୋଇପଡ଼ିଲେ ମାଟି ମୋହରେ ।

ବର୍ଷଟିଏ ତଳେ କେଡ଼େ ଶ୍ରୀହୀନ ଦିଶୁ ନ ଥିବ କନିକାର ଦିଗଦିଗନ୍ତ । କନିକା ତ କାଳେ କାଳେ ତଟିନୀସଙ୍କୁଳା । ମହୋଦଧିରେ ଲୀନ ହେବାପାଇଁ ନଦୀମାନେ ଏଠି ଶତଧା-ବିଭକ୍ତ । ପୁଣି କୂଳ ଲଘିଂବାରେ ସୁନିପୁଣା । ବନ୍ୟା ପରେ ବନ୍ୟା କ୍ଷେତରୁ ଚୋରେଇ ନେଇଥିଲା ସବୁ ସବୁଜ ସମ୍ବଳ । ନିଃସ୍ୱ ହୋଇଯାଇଥିଲେ ରୟତକୁଳ । ଅନ୍ନ ନ ଥିଲା କି ନ ଥିଲା ବାସ, ନ ଥିଲା ପୁଣି ବସନ, ବାସନ । ଅଥଚ ମୁକ୍ତି ନ ଥିଲା କରଭାରରୁ । କେବଳ କନିକା ନୁହେଁ, ସାରା ଓଡ଼ିଶା ଥିଲା ଦୁର୍ଭିକ୍ଷ ପୀଡ଼ିତ । ଅନାହାର, ଅଳ୍ପାହାରରେ ଶଢ଼ୁଥିଲେ ଲୋକମାନେ । ଏ ସବୁ ଦୁଃଖର ଅବସାନ ଯେ ସ୍ୱରାଜ୍ୟରେ.... ଏହା ଠିକ୍ ବୁଝିଥିଲେ ବାବାଜି ରାମଦାସ । ଆଉ ବୁଝିଥିଲେ ବୋଲି ତ କାଠଯୋଡ଼ି ବାଲିଠାରୁ ବ୍ରାହ୍ମଣୀ ବାଲି ପୁଣି ଧର୍ମଶାଳାରୁ କେନ୍ଦ୍ରାପଡ଼ା ପର୍ଯ୍ୟନ୍ତ ସବୁଠି ସେ ସଭା କରିଚାଲିଥିଲେ । ପଞ୍ଚବିଧ ବର୍ଜନର ଅର୍ଥ ବୁଝାଉଥିଲେ ଲୋକମାନଙ୍କୁ । ଅଫିମ, ଗଞ୍ଜେଇ, ମଦ, ତାଡି ସାଙ୍ଗକୁ ଭୀରୁପଣ ଛାଡ଼ିବାପାଇଁ ମତାଉଥିଲେ ସମସ୍ତଙ୍କୁ ଗାଁ ଗାଁ ବୁଲି । କହୁଥିଲେ ଗାନ୍ଧିଜୀଙ୍କ କୁଟିଖାଅ, କାଟି ପିନ୍ଧ କଥା । ଏ ସବୁର ସାରାଂଶ ତ ସ୍ୱରାଜ୍ୟ ।

କନିକା ଯାଇ ସେଠି ଅସହଯୋଗର ବାର୍ତ୍ତା ପ୍ରଚାର କରିବାପାଇଁ ବାବାଜି ରାମଦାସଙ୍କ ମନ ଅଥୟ ହେଉଥିଲା କାହିଁ କେତେ ଦିନରୁ । ବ୍ୟସ୍ତତା ଭିତରେ ଥାଇ ସେ ଆସିପାରୁ ନ ଥିଲେ । ଅଗତ୍ୟା ପଟୁଆରର ସବା ଆଗରେ ଚାଲିଥିଲେ ସେ କନିକାଗଡ଼ ଜିଣିଲା ପରି ।

କନିକା ଯେ ମେଳିଆ ଇଲାକା, ଏକଥା ଅଗୋଚର ନ ଥିଲା ରାମଦାସ ବାବାଜିଙ୍କୁ । କନିକାର ରାଜରାସ୍ତାରେ ଚାଲିଥିବାବେଳେ କନିକାର ସେହି ବିସ୍ମୃତପ୍ରାୟ ଇତିହାସର କିଛି ଅସ୍ପଷ୍ଟ ଝଲକ ନାଚି ଉଠୁଥିଲା ତାଙ୍କ ଆଖି ସାମ୍ନାରେ ।

୧୮୧୭ ମସିହାରେ କନିକାର ଦୁର୍ଦ୍ଧର୍ଷ ପାଇକମାନେ ମେଳି କରିଥିଲେ । ତାଙ୍କ ମେଳିରେ କଟକ ଡିଭିଜନ ପଡ୍ଡୁଥିଲା ଉଠୁଥିଲା । ସଦାନନ୍ଦ ପୂର୍ବାନନ୍ଦ ସାମନ୍ତରା, ସଦାଶିବ ମହାପଶାୟତ, ବିଦ୍ୟାଧର ମହାପଶାୟତ ଓ ନରସିଂହ ଶ୍ରୀଧର ନାୟକ ଥିଲେ ଏହି ମେଳିର ମୁଖିଆ । ବଣ ନିଆଁପରି ମେଳି ଏଠି ଲିଭୁଥିଲେ ସେଠି ଜଳୁଥିଲା ତ ସେଠି ଲିଭୁଥିଲେ ଜଳୁଥିଲା ପୁଣି କେଉଁଠି । ମେଳି ପୁଣି ସଂଗଠିତ ହୋଇଥିଲା ୧୮୭୨ ମସିହାରେ । ନିକଟରେ ଅର୍ଥାତ୍ ୧୯୦୬ ମସିହାରେ ପୁଣି ଆରମ୍ଭ ହୋଇଯାଇଥିଲା କନିକାର ପ୍ରଜାମେଳି । ଏଥର ମେଳିର ନେତୃତ୍ୱ ନେଇଥିଲେ ଦୀନବନ୍ଧୁ ଖଣ୍ଡାୟତରାୟ । ତା'ପରଠାରୁ ପ୍ରାୟ ପନ୍ଦର ବର୍ଷଧରି ମେଳି କରି ନ ଥିଲେ କନିକାର ପ୍ରଜାମାନେ । ଏବେ କିନ୍ତୁ ପ୍ରଜାକୁଳର ଅବସାଦ ଅସନ୍ତୋଷରେ ରୂପାନ୍ତରିତ ହୋଇଥିଲା ଧୀରେ ଧୀରେ । କନିକାର ମାଟି, ପାଣି, ପବନରେ ମେଳିର ରଙ୍ଗ କ୍ରମେ ଜମାଟ ବାନ୍ଧୁଥିଲା । କନିକାର ପୁରୁଣା କ୍ଷତକୁ ଉଖାରିବା ପାଇଁ ଯେମିତି ପଟୁଆର ଭିଆଇଥିଲେ ରାମଦାସ ବାବାଜି । ମନେ ମନେ ଭାବୁଥିଲେ, କୁହୁଳୁଥିବା ନିଆଁକୁ ସେ ଚିଆଁଇ ଦେବେ, ନିଆଁଖୁଣ୍ଟାପରି । ବାସ୍ ସେତିକି ।

ସଂକୀର୍ତ୍ତନ ଶୋଭାଯାତ୍ରା ଯେଉଁଠି ସରିଲା, ସେ ଗାଁର ନାଁ ଗଁଜା । ସକାଳୁ ସକାଳୁ ସେଠି ଲୋକେ ଥାଟପଟାଳି ଭାଙ୍ଗୁଥିଲେ । ସକାଳଓଳି ଏତେ ଲୋକ ଭିଡ଼ ହେବ ବୋଲି ଭାବି ନ ଥିଲେ ବାବାଜି ରାମଦାସ । ସହଜେ ତ ମେଘୁଆ ପାଗ । ଉଚ୍ଛୁଳା ଲୋକ ଦେଖି ତାଙ୍କ ମନ ବି ଉଚ୍ଛୁଳିଲା । ସେ ଆରମ୍ଭ କରିଦେଲେ ଚିରାଚରିତ ଢଙ୍ଗରେ ତାଙ୍କ ଅଗ୍ନିବର୍ଷୀ ଭାଷଣ–'ଭାଇମାନେ, ଏ ଗାନ୍ଧିଜୀଙ୍କ ଅରଟ ଚକ୍ର ହେଉଛି ସୁଦର୍ଶନ ଚକ୍ର, ଏହାରି ବଳରେ ଗୋରାଙ୍କ ଶାସନ ଲୋପ ପାଇବ । ବ୍ରିଟିଶ ସରକାର ସୈତାନ ସରକାର । ରାଜା-ଜମିଦାର, ଦାରୋଗା-ଦିପୋଟି – ଏ ସମସ୍ତେ ଫିରିଙ୍ଗି ଶାସନର ଅଙ୍ଗ । ଆମେ ରାଜା-ଜମିଦାରଙ୍କୁ ମାନିବା ନାଇଁ । ଦାରୋଗା-ଦିପୋଟିଙ୍କୁ ଡରିବା ନାହିଁ । ଖଜଣା ପାଉଣା ପଇଠ କରିବା ନାହିଁ । ଗତ ବର୍ଷ ବନ୍ୟାରେ ଫସଲ ଯାଇଛି, ଏଥର ଫସଲପାଇଁ କେତେ କଷ୍ଟରେ ବିହନ ଗଉଣିଏ, ଦି' ଗଉଣି ଯୋଗାଡ଼ କରିଛନ୍ତି ଚାଷୀଭାଇମାନେ । କେଉଁଠୁ ଆଣି ଖଜଣା ଦେବା ।' ତା'ପରେ ସମବେତ କରତାଳିରେ ସଭାସ୍ଥଳ କମ୍ପିଉଠିଲା ।

ଜୁଲାଇ, ଅଗଷ୍ଟ ଓ ସେପ୍ଟେମ୍ବର – ତିନି ମାସ କାଳ ରାମଦାସ ବାବାଜୀ କନିକା ଅଞ୍ଚଳରେ ଘୂରି ବୁଲିରେ । ମଝିରେ ଥରେ ଅଧେ କଟକ ଫେରିଥିଲେ ଯାହା । ତାଙ୍କ ସାଙ୍ଗରେ କେତେବେଳେ ଯଦୁମଣି ମଙ୍ଗରାଜ, ଏକ୍ରାମ୍ ରସୁଲ ଥିଲେ ତ କେତେବେଳେ

ଥିଲେ ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟ ଓ ମଧୁସୂଦନ ପଟ୍ଟନାୟକ । ଥିଲେ ମଧ ଭାଗୀରଥି ମହାପାତ୍ର ଓ ସରଳାଦେବୀ । କାଳିକାପୁର, ଆୟତନ, ଓଳାଭର, ଘଡ଼ିମାଳ ପୁଣି ଭିତରକନିକା–ଗାଁରୁ ଗାଁ ବୁଲି ଚାଲିଥିଲେ ବାବାଜି ରାମଦାସ । ଯେଉଁଠି ସେ ଭାଷଣ ଦେଉଥିଲେ, ସେଠି ଲୋକମାନଙ୍କ ଶିରା-ପ୍ରଶିରାରେ ନିଆଁ ଲାଗି ଯାଉଥିଲା । ସେମାନେ ତାତି ପାଉଥିଲେ, ମାତି ଯାଉଥିଲେ । ଗାନ୍ଧୀ ମହାତ୍ମା କି ଜୟଧ୍ୱନିରେ ଗଗନ ପବନ କମ୍ପୁଥିଲା । ରାଜଦ୍ରୋହର ହାଓ୍ୱାରେ କମ୍ପିଉଠୁଥିଲା କନିକାର ହିଆ ।

ମଳୟକୁ ପ୍ରଭଞ୍ଜନରେ ପରିଣତ କରିବାର କଳା ଜଣାଥିଲା ବାବାଜି ରାମଦାସଙ୍କୁ ।

ମେଳି ସର୍ଦ୍ଦାର ଦୀନବନ୍ଧୁ ଖଣ୍ଡାୟତରାୟ ସହଯୋଗର ହାତ ବଢ଼ାଇଥିଲେ । ରାଜକର୍ମକୁ ପାଦରେ ଦଳିଦେଲେ ଉପେନ୍ଦ୍ର ସୁବୁଦ୍ଧିରାୟ । ରାଜା ପରିଚାଳିତ ସ୍କୁଲର ଶିକ୍ଷକତା ଛାଡ଼ିଲେ ଜୟରାମ ରାୟ । ଦ୍ୱାରିକାନାଥ ମହାପାତ୍ର ତା' ପୂର୍ବରୁ ମାଷ୍ଟର ଚାକିରି ଛାଡ଼ି ସାରିଥିଲେ ।

ବାବାଜି ରାମଦାସ ମନେ ମନେ ଖୁବ୍ ଖୁସି ହେଲେ– କନିକାର ଅସହଯୋଗର ପ୍ରଭାବ ବେଶ୍ ଗଭୀରକୁ ଯାଉଛି ।

ସେପ୍ଟେମ୍ବର ମାସ ୧୭ ତାରିଖ । କଣ୍ଟାପଡ଼ାରେ ସାଧାରଣ ସଭା । ଆରମ୍ଭରୁ ବାବାଜି ରାମଦାସ କହିଲେ, 'ଛାତ୍ରଛାତ୍ରୀଗଣ, ତୁରନ୍ତ ବିଦ୍ୟାଳୟ ବର୍ଜନ କର । ରାଜାଙ୍କଦ୍ୱାରା ପରିଚାଳିତ ଅନୁଷ୍ଠାନରେ ଶିକ୍ଷାଲାଭ କଲେ ସ୍ୱରାଜ୍ୟ ଆସିପାରିବ ନାହିଁ ।' ଏକାଦଶ ଶ୍ରେଣୀର ଆଗୁଆ ଚାଟ ଭଗବାନ ଦୀକ୍ଷିତ ମନରେ ରାମଦାସଙ୍କ ଉଦାତ୍ତ ଆହ୍ୱାନ ରେଖାପାତ କଲା । ସେ ଛାତ୍ରମାନଙ୍କୁ ଏକତ୍ର କରି କନିକା ସ୍କୁଲରୁ ବାହାରି ଆସିଲା । ହେଡ୍ ମାଷ୍ଟରଙ୍କ ମନା ମାନିଲା ନାହିଁ ।

ଛାତ୍ରମାନଙ୍କ ଶୋଭାଯାତ୍ରାରେ କମ୍ପୁଥିଲା କଣ୍ଟାପଡ଼ା । ଭଗବାନ ଦୀକ୍ଷିତ ଓ ଉଦୟକର ମିଶ୍ର ଶୋଭାଯାତ୍ରାର ଆଗରେ ଚାଲିଥିଲେ ଓ ଗାଉଥିଲେ ;

'ଭାଇରେ ଆଜି ଆସିଛି ଦିନ
ରାମ ରାଇଜର ଆସିଛି ଦିନ....'

ଅନ୍ୟ ଛାତ୍ରମାନେ ସମବେତ କଣ୍ଠରେ ପାଦ ପୂରଣ କରୁଥିଲେ–

'ବିଲାତି ବସନ କର ଦହନ
ବିଲାତି ବସନ କର ଦହନ'

କଣ୍ଟାପଡ଼ାର ଆବାଳବୃଦ୍ଧବନିତାଙ୍କ ମନରେ ସୃଷ୍ଟି ହୋଇଥିଲା ଅପୂର୍ବ ଉନ୍ମାଦନା । ଅଦୂର ରାଜବାଟୀର କର୍ମଚାରୀମାନେ କାନଉଥିଲେ ସେହି ନୂଆ ଯୁଗର ମାର୍ମିକ ମୂର୍ଚ୍ଛନାକୁ । ରାଜାଙ୍କ ଆୟତରେ ପୋଷିତ ସେମାନଙ୍କ ଦେହ ଥିଲା ରାଜାଙ୍କ ପ୍ରତି ଅନୁଗତ, ହେଲେ ମନ ଲମ୍ଭିଯାଉଥିଲା ସ୍ୱରାଜ୍ୟର ଅଭିନବ ଦିଗନ୍ତ ଆଡ଼କୁ ।

ୟା'ଭିତରେ ସଭାସ୍ଥଳ ଦୋଳ ମେଲଣ ପାଲଟିସାରିଥିଲା ।

ରାମଦାସ ବାବାଜି ସମବେତ ଜନତାକୁ ପ୍ରଣାମ ଜଣାଇ ଆଉ ଥରେ କହିଲେ, ''ବନ୍ଧୁଗଣ ! ଜାଣିଲେଣି ତ କଲିକତାରେ ଓଡ଼ିଆ କୁଲିଙ୍କ କରାମତି । ସେମାନେ ବିଦେଶୀଲୁଗାର ମୋଟ ବୋହିବାକୁ ମନାକରିଦେଲେ ମୁହେଁ ମୁହେଁ । ଆଉ ପୁରୀ ପଣ୍ଡାମାନେ ? ମହାପ୍ରଭୁଙ୍କ ପାଖରେ ବିଦେଶୀ ବସନ ଲାଗିକରିବାକୁ ବାରଣ କଲେ । ଓଡ଼ିଶାରେ ସବୁ ସହରରେ ବିଦେଶୀ ଲୁଗା ପୋଡ଼ା ଚାଲିଛି ।'' ରାମଦାସଙ୍କ ଭାଷଣ ସରି ନ ଥିଲା, ଉପେନ୍ଦ୍ର ସୁବୁଦ୍ଧିରାୟ ବିଦେଶୀ ଲୁଗା କେତେଖଣ୍ଡ ଆଣି ସେଠାରେ ଗଦାଇଦେଲେ । ତହିଁରେ ଅଗ୍ନିସଂଯୋଗ କଲେ ଜୟରାମ ରାୟ ।

ଛାତ୍ରମାନଙ୍କ କଣ୍ଠରୁ ଧ୍ୱନି ଫୁଟୁଥିଲା ଗୁଳି ପରି– 'ବିଲାତି ବସନ କର ଦହନ... ବିଲାତି ବସନ କର ଦହନ...' ଊର୍ଦ୍ଧ୍ୱକୁ ଦୁଇ ବାହୁ ଟେକି ନାଚିବାକୁ ଆରମ୍ଭ କଲେ ବାବାଜି ରାମଦାସ । ତାଙ୍କ ନାଚିବା ଆଉ ବନ୍ଦ ହେଲା ନାହିଁ । ସଭାସମିତି, ବନ୍ଦ ହେଲା ନାହିଁ ଗାନ୍ଧୀ ସଂକୀର୍ତ୍ତନ ଅବା ସ୍ୱରାଜ୍ୟ ଯଜ୍ଞ ।

ବର୍ଷାଦିନେ ବି କନିକାର ଗାଁ ଗାଁ ନିଆଁ ଜଳିଲା । ରାଜ-କର୍ମଚାରୀମାନେ ଅଜଣା ଭୟରେ ହେଉଥିଲେ ଆତଙ୍କିତ । ରାଜାଙ୍କ ଆଖିରୁ ନିଦ ଚୋରେଇ ନେଉଥିଲା ଅଶାନ୍ତି ଓ ଆଶଙ୍କା । କଟକର ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ଏସ୍.ପି.ଙ୍କ ଭିତରେ ଭାଳେଣି ପଡ଼ିଥିଲା– ଉପରୁ ଚାପ ପଡ଼ିଲାଣି, କିପରି ସମ୍ଭାଳିବେ ସେମାନେ ଏ ବଣ ନିଆଁକୁ ?

ବିତିଗଲା ଆହୁରି ଦୁଇ ସପ୍ତାହ । ଶରତ ଋତୁର ନିର୍ମେଘ ଆକାଶ, କାଚକେନ୍ଦୁ ପାଣି ଓ କାଶତଣ୍ଡୀ ଫୁଲ କନିକାର କମନୀୟ କାନ୍ତିକୁ କଲା ଆହୁରି କମନୀୟ ।

ସେପ୍ଟେମ୍ବର ମାସ ଉଣେଇଶ ତାରିଖ । ଅଶିଣ ସକାଳ, ଢଳଢଳ ଶିଶିର ବିନ୍ଦୁରେ ନିଜ ସୁନା ମୁହଁ ଦେଖି ଲାଜେଇ ଯାଉଥିଲା ଯେମିତି !

କଣ୍ଟାପଡ଼ା ପଡ଼ିଆରେ ସ୍ୱରାଜ୍ୟ ଯଜ୍ଞ ଆରମ୍ଭ ହୋଇଥିଲା । ସଂକୀର୍ତ୍ତନ ମଣ୍ଡଳୀ ଗାଇଚାଲିଥିଲେ –

'ଅରଟ ଅସ୍ତ୍ରର ବଳେ
ସ୍ୱରାଜ୍ୟ ଲଭିବା ହେଳେ... ।'

କ୍ରମେ କ୍ରମେ ପୂରି ଉଠିଥିଲା ପଡ଼ିଆ । ରାମଦାସ ବାବାଜି କହିଲେ, 'ଭାଇମାନେ, ଘରେ ଘରେ ଅରଟରେ ସୂତାକାଟ । ଅରଟ ହିଁ ଆଣିବ ସ୍ୱରାଜ୍ୟ । ଆମକୁ ଶୋଷଣ କରିଥିବା ଏ ସୈତାନ ସରକାରକୁ ତଡ଼ିବାକୁ ହେବ । ଏ ସରକାରକୁ ଡରନ୍ତୁ ନାହିଁ ।' 'ଆଚ୍ଛା ଭଗବାନ୍ ଶ୍ରୀକୃଷ୍ଣ କେଉଁଠି ଜନ୍ମ ଗ୍ରହଣ କରିଥିଲେ ?' ରାମଦାସ ବାବାଜି ସ୍କୁଲ ଶିକ୍ଷକ ପରି ପଚାରିଲେ ସମବେତ ଜନତାଙ୍କୁ । ଜନତାଙ୍କ ଆଡୁ ଉତ୍ତର ଆସିଲା, 'କଂସର ବନ୍ଦିଶାଳାରେ ଜନ୍ମିଥିଲେ ଶ୍ରୀକୃଷ୍ଣ ।' 'ତା'ହେଲେ

ଆମେ ବନ୍ଦିଶାଳାକୁ ଡରିବା କାହିଁକି ?' ଏତକ ରାମଦାସ ବାବାଜି କହିସାରିଛନ୍ତି କି ନାହିଁ, ସମବେତ ଜନତା ଭିତରୁ ଶୁଭିଲା, 'ଡରିବା ନାହିଁ, ଡରିବା ନାହିଁ ।' ତହୁଁ ରାମଦାସ ବାବାଜି ଇଙ୍ଗିତ ଦେଲେ, ଏହି ମୋ ସାମ୍ନାରେ ଯେଉଁ ବରଗଛ, ସେହି ବରଗଛ ଡାଳରେ ସ୍ୱରାଜ୍ୟ ପତାକା ଉଡ଼ିବ ।

ଦୁଇ ଜଣ ଯୁବକ ତତ୍‌କ୍ଷଣାତ୍ ବରଗଛକୁ ଚଢ଼ିଗଲେ ଓ ଟଙ୍ଗାଇଦେଲେ ସ୍ୱରାଜ୍ୟ ପତାକା । ଶୁଭ୍ର ଆକାଶର ଅନନ୍ତ ନୀଳିମା ତଳେ ଫରଫର ହୋଇ ସ୍ୱରାଜ୍ୟ ପତାକା ଉଡୁଥିଲାବେଳେ, ରାମଦାସ କହିଲେ, ଆଜିଠାରୁ ଏହି ବରଗଛର ନାଁ ହେଲା 'ଗାନ୍ଧୀବଟ' । ଜନତାଙ୍କ କରତାଳିରେ କଣ୍ଟାପଡ଼ାର ଛାତି ଦୁଲୁକି ଉଠିଲା । ସଂକୀର୍ତ୍ତନ ମଣ୍ଡଳୀର ସ୍ୱର ହେଲା ଉଚ୍ଚାଟ ।

'ଅରଟ ଅସ୍ତ୍ରର ବଳେ, ସ୍ୱରାଜ୍ୟ ଲଭିବା ହେଳେ...' ଏହି ଉଚ୍ଚାଟ ସଙ୍ଗୀତ ଭିତରେ ପୋଲିସ୍ ଗାଡ଼ିର କୁହାଟ କାହାରି କାନରେ ପଡ଼ି ନ ଥିଲା । ଲାଲ୍ ପଗଡ଼ିଧାରୀ ପୋଲିସମାନେ ମୁହୂର୍ତ୍ତକ ମଧ୍ୟରେ ଓହ୍ଲାଇ ପଡ଼ିଲେ ଗାଡ଼ି ଭିତରୁ । ବେଢ଼ିଗଲେ ଅଧା ପଡ଼ିଆ । ରାମଦାସ ବାବାଜିଙ୍କୁ ଚାହିଁ କେନ୍ଦ୍ରାପଡ଼ାର ସର୍କଲ ଇନ୍‌ସପେକ୍ଟର ଅଫ୍ ପୋଲିସ କହିଲେ, 'ୟୁ ଆର୍ ଅଣ୍ଡର ଆରେଷ୍ଟ ।' ସମବେତ ଜନତା କ୍ଷଣିକପାଇଁ ସ୍ତବ୍ଧ ହୋଇଗଲେ । ମଧ୍ୟାହ୍ନର ତୋଫା ଖରାରେ ଝଲମଲ ହେଉଥିଲା ରାମଦାସ ବାବାଜିଙ୍କ ମୁହଁ । ସେ ଅବିଚଳିତ ଭାବରେ ଚାଲିଲେ ପୋଲିସ ଗାଡ଼ି ପାଖକୁ । ଚାଲୁ ଚାଲୁ ମୁହଁ ଫେରାଇଲେ ଲୋକମାନଙ୍କ ଆଡ଼କୁ ଓ କହିଲେ, 'ମୋର ସୌଭାଗ୍ୟ, ମୁଁ ଭାରତମାତାଙ୍କ ମୁକ୍ତି ପାଇଁ ମନ୍ଦିରକୁ ଯାଉଛି । ଏ ଦେଶରେ ଯେତେ ବନ୍ଦିଶାଳା ଅଛି, ସେସବୁ ସଂଗ୍ରାମୀମାନଙ୍କପାଇଁ ଦେବସ୍ଥଳୀ ।'

ଛମୁକାର ଅସହଯୋଗ ଆନ୍ଦୋଳନ ବିଷୟରେ ଟିକିନିଖି ଖବର ରଖୁଥିବା ସେନାପତି ମାଷ୍ଟ୍ରେ ରାମଦାସ ବାବାଜି ଆରେଷ୍ଟ ହେବାକଥା ଶୁଣି ହଠାତ୍ ଜିଭ କାମୁଡ଼ି ପକାଇଲେ । ଭାବିଲେ, ରାମଦାସ ବାବାଜିର ନା ଘର ଅଛି ନା ଅଛି ସଂସାର । ସେ ଅଘରିଆ । ଅନିକେତ । ତେଣୁ ଭଗବାନ୍‌ଙ୍କର ଭାରି ପ୍ରିୟ । ତାକୁ ବାନ୍ଧିନେଲେ କିବା ବାହାଦୁରି ? ଏ ଘୋର କଳିକାଳ । ସରକାରର ଆଉ ବେଳା ଭଲ ନାହିଁ ।

ବନ୍ଦୀ ଥିଲାବେଳେ ଦିନେ ରାତି ପାହାନ୍ତାରେ ରାମଦାସ ବାବାଜି ସ୍ୱପ୍ନ ଦେଖିଥିଲେ । ସ୍ୱପ୍ନଟା ଥିଲା ଭାରି ଅଜବ – ଭାରତବର୍ଷର ଯେତେ ସବୁ ବରଗଛ, ରାତି ପାହିଲା ବେଳକୁ 'ଗାନ୍ଧୀବଟ'ରେ ରୂପାନ୍ତରିତ ହୋଇଯାଇଛି । ଗଛଡାଳରେ ଫରଫର ହୋଇ ଉଡୁଛି ସ୍ୱରାଜ୍ୟ ପତାକା । ଚାଉଁକରି ତାଙ୍କ ନିଦ ଭାଙ୍ଗିଗଲା । ନିଦ ବାଉଳାରେ ସେ କାରାକୋଠରି ଭିତରେ ନାଚିବାକୁ ଲାଗିଲେ । ଜଗୁଆଳି ପୋଲିସ ଦୁଇଜଣ ଧଡ଼ପଡ଼ ହୋଇ ଉଠିଲେ ଓ କୁହାକୁହି ହେଲେ ନିଜ ଭିତରେ—

ଏ ବାବାଜିଟା କେବଳ ଭଣ୍ଡ ନୁହଁ, ବାଇଆ ମଧ୍ୟ । ନ ହେଲେ ରାତି ପାହାନ୍ତାଟାରେ ଏମିତି କ'ଣ ନିଲଠାଙ୍କ ପରି ନାଚନ୍ତା ? ରାମଦାସ ବାବାଜି କିନ୍ତୁ ଭାବୁଥିଲେ, ଏ ରାତିର ପାହାନ୍ତା କେବଳ ନୁହେଁ, ଏ ପରାଧୀନତାର ପାହାନ୍ତା ପ୍ରହର, ସ୍ୱରାଜ୍ୟର ସୂର୍ଯ୍ୟ ଉଇଁବା ଆଉ ଡେରି ନାହିଁ । ସେ ପୁଣି ଉଦ୍ଦଣ୍ଡ ନୃତ୍ୟରେ ମତ୍ତ ହେଲେ ।

× × ×

ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସ ପ୍ରଫେସର ଡକ୍ଟର ଜୟସିଂହଙ୍କଠାରୁ ଗପଟି ଶୁଣିସାରିଲାପରେ 'ପୁଣେ-ଗାନ୍ଧୀ ଷ୍ଟଡିଜ୍'ର ଛାତ୍ରୀ ବିନୀତା ବେହେ୍ର ପଚାରିଲେ, 'ସାର୍, ଦେଶ ସ୍ୱାଧୀନ ହେଲା ପରେ ରାମଦାସ ବାବାଜି କଲେ କ'ଣ ?'

'ପରାଧୀନ ଭାରତରେ ତ ରାମଦାସଙ୍କ ବିଷୟରେ କେହି ଖୋଜଖବର ରଖି ନ ଥିଲେ, ସ୍ୱାଧୀନ ଭାରତରେ ତାଙ୍କୁ କିଏ ବା କାହିଁକି ଲୋଡ଼ନ୍ତା ?' ଗୋଟେ ସୁଦୀର୍ଘ ନିରବତା ପରେ ଉତ୍ତର ଦେଲେ ପ୍ରଫେସର ।

ବିନୀତାଙ୍କ ମନର କୌତୂହଳ କିନ୍ତୁ କମୁ ନ ଥିଲା । ସେହି 'ଗାନ୍ଧୀବଟ' ଟି ଏବେ କିପରି ଅଛି ବୋଲି ସେ ଜାଣିବାକୁ ଚାହୁଁଥିଲା । ବିନୀତାର ଅନୁସନ୍ଧିତ୍ସା ଜାଣିବା ପରେ ପ୍ରଫେସରଙ୍କ ଓଠରୁ ଦି'ଧାର ହସ ଝରିପଡ଼ିଲା ଅଦିନିଆ କୁଆପଥର ପରି । 'ସ୍ୱାଧୀନତା ପରେ 'ଗାନ୍ଧୀବଟ'ଟି ଭୋଟ ଭିକାରିମାନଙ୍କର ସାମୟିକ ଆଶ୍ରୟସ୍ଥଳ ପାଲଟିଥିଲା । 'ଗାନ୍ଧୀବଟ' ତଳେ ଭୋଟ୍-ଭିକ୍ଷା କରିବା ପରି ସହଜ ପନ୍ଥା ଆଉ କିଛି ଥିଲା କି ସ୍ୱାଧୀନ ଭାରତର ଭାଗ୍ୟବିଧାତାମାନଙ୍କ ପାଇଁ । ପରେ ପରେ ସେହି ବଟବୃକ୍ଷର ଛାୟାତଳେ ଭୋଟ୍‌କୁ କେନ୍ଦ୍ରକରି ଠେଙ୍ଗା, ଢେଲା ଓ ପରେ ପରେ ଖଣ୍ଡା ଆଦି ଶସ୍ତ୍ରର ବହୁଳ ବ୍ୟବହାର ହୋଇ ଅନେକ କର୍ମୀଙ୍କର ସ୍ୱର୍ଗବାସ ଘଟିଥିଲା ।' ପ୍ରଫେସର ନାଟକୀୟ ଭାବରେ କାହାଣୀଟି ବର୍ଣ୍ଣନା କରୁଥିଲାବେଳେ ବିନୀତା ଉତ୍କଣ୍ଠିତା ହୋଇ ପଚାରିଲା, 'ତା'ପରେ... ।' ପ୍ରଫେସର୍ କହିଲେ, 'ଜଣେ ଯୁବ ଜିଲ୍ଲାପାଳ କିଛିଦିନପାଇଁ 'ଗାନ୍ଧୀବଟ' ଅଞ୍ଚଳରେ ନିଷେଧାଜ୍ଞା ଜାରିକରି ସଭାସମିତିକୁ ବାରଣ କରିଥିଲେ ।'

'ତା'ପରେ ?' ବିନୀତା ଅଝଟିଆ କିଶୋରୀଟିଏ ପରି ଗପ ଶୁଣିବାକୁ ଯେମିତି ଅଳି କରୁଥିଲା ପ୍ରଫେସରଙ୍କ ପାଖରେ । ତା'ପରେ ଆଉ କ'ଣ ? ସେହି ଐତିହାସିକ ବଟବୃକ୍ଷଟି ଗୋଟେ ଭୟାବହ ଝଡ଼ରେ ନିଶ୍ଚିହ୍ନ ହୋଇଗଲାଣି ଢେର୍‌ଦିନ ତଳୁ ।' ପ୍ରଫେସରଙ୍କ କଥା ସରିଲା ବେଳକୁ ବିନୀତା ଆଖିରେ ଯେମିତି ବହଳ ନିଦ ଘୋଟି ଆସିଥିଲା ପହିଲି-ଆଷାଢ଼ର ମେଘପରି !



# ଧୂଳିଫୁଲର ମହକ

ପ୍ରିୟମ୍ବଦା କଥା ସବୁବେଳେ ଏମିତି, ଭାରି ରୋକ୍‌ଠୋକ୍, ଅପ୍ରିୟ ମଧ୍ୟ ।

ଏହି ଯେମିତି ସୁମନ୍ୟୁ ଗାଁ ପ୍ରସଙ୍ଗରେ ଉଠାଇଲେ ପ୍ରିୟମ୍ବଦାଙ୍କ ସୁନାନାକ ଅଗରେ ମହଣେ ଓଜନର ରାଗ ଝୁଲିପଡ଼େ, ତାଙ୍କ ଆୟତାଖି ଆରକ୍ତ ପାଲଟେ । ସେ କହନ୍ତି, ''କାହିଁକି ସବୁବେଳେ ଗାଁ-ଗାଁ ହେଉଛ, ଇଣ୍ଡିଆ ଇଣ୍ଡିଆ ଭଜୁଛ ! ଛୋଟ ପିଲାଟାକୁ ଧରି ଗାଁରେ ମୁଁ ସାତ ଦିନ କ'ଣ, ସାତ ମିନିଟ୍ ବି ରହିପାରିବି ନାହିଁ । ତୁମ ଗାଁ ତ ଯେଉଁ ଗାଁ ନା ?''

''ତୁମ ଗାଁରେ କ'ଣ ଅଛି ?'' ପ୍ରିୟମ୍ବଦା ଛିଗୁଲାନ୍ତି । ''ତୁମ ଗାଁ କହିଲେ, ଖାଲି ଖାଲଖମା, ବିଲବଣ, ଗାଁ ରାସ୍ତା କହିଲେ, ଗୋଟେ ଖଣ୍ଡିଆଖାବରା ଚେହେରା; ପୁଣି ଗାଁ ଦାଣ୍ଡ କହିଲେ, କାଦୁଅସରସର ଖୋଲାମେଲା ଗୋଟେ ଆୟତକ୍ଷେତ୍ର । ତୁମ ଗାଁରେ ବିଜୁଳି ଅଛି ? ଥାଇ ନ ଥିଲା ପରି । ମିଞ୍ଜିମିଞ୍ଜି ଆଲୁଅ, ପୁରୁଣାକାଳିଆ ଲଣ୍ଠନଠୁଁ ହୀନ । ନା, ଫ୍ୟାନ ନା ଏ.ସି. ।''

''ଆଉ ତୁମ ଗାଁ ନଈ ? ମଲା ସାପ ପରି ପଡ଼ି ରହିଥାଏ ଖରାଦିନେ । ଆଉ ଶ୍ରାବଣ ଆସିଲେ, ମର୍କଟୀ ଯେମିତି ରମ୍ଭା । ତୁମର ସମସ୍ତେ ସେହି ନଈରେ ଗାଧାଅ । ନଈପାଣି ପିଅ । ତୁମ ନଳକୂପ ଅଚଳ; ଆଉ କ'ଣ କରନ୍ତ ?

ତୁମ ଗାଁ'ରେ ମୋର ସେହି ଦୁଇତିନିମାସ କେମିତି କଟିଛି କେଜାଣି !

ପ୍ରିୟମ୍ବଦା ଜନ୍ମରୁ ସହରରେ ବଢ଼ିଛନ୍ତି; ଗାଁ ତାଙ୍କପାଇଁ ବୁଢ଼ୀ ଅସୁରୁଣୀ ଗପ, ନ ହେଲେ ଗୋଟେ ଦୁଃସ୍ୱପ୍ନ ।

ସୁମନ୍ୟୁ ପ୍ରିୟମ୍ବଦାଙ୍କୁ ସହ୍ୟ କରନ୍ତି; କିନ୍ତୁ ଗାଁକୁ ଭୁଲିପାରନ୍ତି ନାହିଁ । ବାହାଘରକୁ ବର୍ଷଟିଏ ବିତି ନ ଥିବ, ଅଥଚ ସେ ଆମେରିକା ଚାଲିଆସିବେ, ଏକଥା ଭୁଲ୍‌ରେ ବି ଭାବି ନ ଥିଲେ ସୁମନ୍ୟୁ । ତାଙ୍କର ଧାରଣା ଥିଲା, ସେ ଆହୁରି ଦୁଇଚାରି ବର୍ଷ ଏମିତି ମୁମ୍ବାଇରେ ନ ହେଲେ ବାଙ୍ଗାଲୁରୁରେ ଘୂରିବେ । ତା' ପରେ ଯାଇ ଯେଉଁ କଥା । ହେଲେ, ଅକସ୍ମାତ୍ ଏଡ଼େ ବଡ଼ ଅଫର୍‌କୁ ସେ କେମିତି ବା ଏଡ଼ାଇ ପାରିଥା'ନ୍ତେ ? ସୁତରାଂ ସେ ପ୍ରିୟମ୍ବଦାଙ୍କୁ ସାଥିରେ ଧରି ଆମେରିକା ଚାଲିଆସିଲେ । ବାପାବୋଉଙ୍କ ସହ ଫୋନ୍‌ରେ ଯାହା କଥାବାର୍ତ୍ତା । ମୁମ୍ବାଇରୁ ଗାଁ'କୁ ଯାଇ ପୁଣି ଫେରିବାପାଇଁ ତାଙ୍କ

ହାତରେ ସମୟ ନ ଥିଲା । ଅବଶ୍ୟ ବାପା-ବୋଉଙ୍କର ଏଥିରେ ଆପତ୍ତି ନ ଥିଲା ଜମା । ଆମେରିକାରୁ କ'ଣ ଏମିତି ଥରକୁଥର ଆସିହେବ ଯେ ପ୍ରିୟମ୍ବଦାଙ୍କୁ କିଛିଦିନ ପାଇଁ ଗାଁ'ରେ ଛାଡ଼ିଥିଲେ ଚଳିଥା'ନ୍ତା ! ଅବଶ୍ୟ ସେତେବେଳକୁ ପ୍ରିୟମ୍ବଦା କନ୍‌ସିଭ କରିଥିବା କଥା ସୁମନ୍ୟୁଙ୍କୁ ଜଣା ନ ଥିଲା ।

ପ୍ରୀତମ୍‌ର ଜନ୍ମ ତେଣୁ ନିଉୟର୍କ ସହରରେ ।

ପ୍ରୀତମ୍‌କୁ କେତେ ବର୍ଷ ହେବ ? ଯାହା ବି ହେଉ, ସେ ବେଶ୍ ଡଉଲଡାଉଲ, ତୋଫା ଗୋରା । ଶୀତପ୍ରଧାନ ଦେଶର ଜଳବାୟୁ ମାଫିକ୍ ତା' ଚେହେରା ।

ଗୋଟେ ଦୀର୍ଘ ଛୁଟିରେ ଇଣ୍ଡିଆକୁ ଫେରିବାପାଇଁ ଖୁବ୍ ଇଚ୍ଛା ହୁଏ ସୁମନ୍ୟୁଙ୍କର । ବେଳେବେଳେ ସପ୍ତାହାନ୍ତ ଅଳସ ଦିନମାନଙ୍କରେ ତାଙ୍କର ଭାରି ମନେପଡ଼େ ଗାଁ କଥା, ବାପାବୋଉଙ୍କ କଥା । ନଈକୂଳିଆ ତାଙ୍କ ଗାଁର ଭୂଗୋଳ ତାଙ୍କୁ ଅଥୟ କରେ । ମୁମ୍ବାଇରେ ଥିଲାବେଳେ ଯେମିତି, ଏବେ ବି ସେମିତି ଗାଁ ତାଙ୍କୁ ଘାରେ ।

କେମିତି ବହୁରୂପୀ ତାଙ୍କ ଗାଁର ଚେହେରା ! ଋତୁ ବଦଳେ ନା ଗାଁ ବଦଳେ ! ବୁଝି ବି ବୁଝିପାରନ୍ତି ନାହିଁ ସୁମନ୍ୟୁ ।

ଖରାଦିନର ଲମ୍ବା ଦ୍ୱିପ୍ରହରବେଳେ ହାବୁକା ହାବୁକା ଧୂଳିମିଶା ପବନ କେତେବେଳେ ଆକ୍ତାମାକ୍ତା କରିଦିଏ ତ ପହିଲି ଆଷାଢ଼ର ପହିଲି ବର୍ଷାରେ ମହକିତ ମାଟିଗନ୍ଧ ବିହ୍ୱଳିତ କରେ ତାଙ୍କ କିଶୋରମନକୁ । ଶ୍ରାବଣର ମେଘମାନେ ଓହଳିଥାନ୍ତି ଆକାଶରୁ ମାଟି ପର୍ଯ୍ୟନ୍ତ । ଗାଁ' ଦାଣ୍ଡରେ ମନ ଖୋଲି ନାଚୁଥାଏ ବର୍ଷା, ଗାଁ-ଗୋହିରିର ଚବରଚବର ପାଣିରେ ଶୁଭୁଥାଏ କେଉଁ ଅବୁଝା ସଙ୍ଗୀତର ସ୍ୱର । ପୁଣି କେତେବେଳେ ପାଚିଲା ଧାନକ୍ଷେତର ବୁକୁ ଥରାଇ ମାଡ଼ିଆସେ ଶୀତ । ଚାହିଁଲାବେଳକୁ ଶୀତ ତ ନ ଥାଏ, ଆମ୍ବ ବଉଳର ବାସ୍ନାରେ ପୁଲକି ଉଠୁଥାଏ ଗାଁ'ର ଛାତି ।

ନିଉୟର୍କ ସହରର ଅଟ୍ଟାଳିକାର ଅରଣ୍ୟ ଭିତରେ ବାଟବଣା ହୋଇ ଗାଁକୁ ଝୁରନ୍ତି ସୁମନ୍ୟୁ । ଗାଁ'ପରି, ଅବସର ନେଇସାରିଥିବା ବାପାଙ୍କ କ୍ଲାନ୍ତ ମୁହଁ ତାଙ୍କ ଆଖି ସାମ୍ନାରେ ଭାସିଉଠି ପୁଣି ଉଭେଇଯାଏ । ବେଳେବେଳେ ପବନ ଅବା ବହିଆଣେ ବୋଉର ଭାଷା ଓ ଅଜାଡ଼ି ଦିଏ ତାଙ୍କ କାନ ପାଖରେ ।

ଦୂରଭାଷ କେବେ ଆତ୍ମୀୟତାର ମାଧ୍ୟମ ହୋଇପାରେ ନାହିଁ ସୁମନ୍ୟୁଙ୍କପାଇଁ ।

ହଠାତ୍ ଦିନେ ପ୍ରିୟମ୍ବଦାଙ୍କୁ ଚମକାଇ ଦେଇ ଭାରତ ଫେରିବାକୁ ବାହାରିଲେ ସୁମନ୍ୟୁ । ଗାଁ'ରେ ମାସକର ରହଣି । ଯିବାଆସିବା ତିନୋଟିଯାକ ଟିକେଟ୍ କନ୍‌ଫର୍ମଡ୍ ।

ଭାରତ ଫେରିବାକୁ କିନ୍ତୁ ମଙ୍ଗିଲେ ନାହିଁ ପ୍ରିୟମ୍ବଦା । ବିରକ୍ତିକୁ ମନ ଭିତରେ ଚାପିରଖିଲେ ସୁମନ୍ୟୁ- ଭାବିଲେ, ପ୍ରିୟମ୍ବଦାଙ୍କ ଯୁକ୍ତି ସଂପୂର୍ଣ୍ଣ ଅବାନ୍ତର ନୁହେଁ ।

ବର୍ଷକର ପିଲାପାଇଁ ଜଳବାୟୁର ଆକସ୍ମିକ ପରିବର୍ତ୍ତନ, ଦୀର୍ଘ ବିମାନଯାତ୍ରା, ହୁଏତ ଅନୁକୂଳ ନୁହେଁ । ସେ କିନ୍ତୁ ନିଜ ଜିଦ୍‌ରେ ଅଟଳ ରହିଲେ । ଏକା ଆସିଲେ ଭାରତ । ଗାଁ'ରେ ରହିଲେ ବେଶ୍ କିଛିଦିନ । ସେହି କେତେଦିନ ସେ ଗାଁ'ରୁ ସହରକୁ ଗୋଡ଼ କାଢ଼ି ନାହାନ୍ତି । ଶାଗପଖାଳ ଖାଇସାରି ଛୋଟପିଲାଟେ ପରି ମୁହଁ ପୋଛୁଛନ୍ତି ବୋଉର ଲୁଗା କାନିରେ । ଢେର୍ ରାତିପର୍ଯ୍ୟନ୍ତ ସାଙ୍ଗମାନଙ୍କ ସହ ନଈବାଲିରେ ବସି ଜହ୍ନ ଦେଖିଛନ୍ତି, ଗାଁ ମଣ୍ଡପରେ ତାସ୍ ଖେଳିଛନ୍ତି, ନଈରେ ପହଁରିଛନ୍ତି ।

ତା'ପରେ ଯେଉଁ ଆସିଲେ ଯେ ଆସିଲେ ନିଉୟର୍କ, ଆଉ ଗାଁ' ମାଟି ମାଡ଼ି ନାହାନ୍ତି ସୁମନ୍ୟୁ । ୟା' ଭିତରେ ବିତିଗଲାଣି ଚାରି ବର୍ଷ । ହଁ, ଚାରି ବର୍ଷ ନିଶ୍ଚୟ ହେବ । ପ୍ରୀତମ୍‌କୁ ଯେ ପାଞ୍ଚବର୍ଷ ପୂରିଲାଣି । ପ୍ଲେ ସ୍କୁଲ ପରେ ତା'ର କେ.ଜି.ରେ ନାମ ଲେଖା ସରିଛି । ସୁମନ୍ୟୁ କମ୍ପାନୀ କାମରେ ନିଉୟର୍କରୁ ଲଣ୍ଡନ, ପ୍ୟାରିସ୍‌ରୁ ବର୍ଲିନ୍ ଘୂରିବୁଲୁଛନ୍ତି । ଫ୍ଲାଟ୍ କିଣିଛନ୍ତି ନିଉୟର୍କ ନଗରୀର ଉପକଣ୍ଠରେ । ଗାଁ'ଠାରୁ ସେ ଯେମିତି କାହିଁ କେତେ ଯୋଜନ ଦୂରେଇଯାଇଛନ୍ତି । ସମୟ ପାଇ ନାହାନ୍ତି ଘରକଥା ଭାବିବାକୁ । କେତେବେଳେ କେମିତି ଫୋନ୍‌ରେ ଯାହା କଥାବାର୍ତ୍ତା । ସଂପର୍କ ତା'ରି ଭିତରେ ସୀମିତ ।

ଏବେ ଆସିଥିଲା ବୋଉର ଫୋନ୍ । ମାତ୍ର କେଇପଦ କଥା ସେ କହିଲା । ତା' କଥାଗୁଡ଼ାକ ଲାଗୁଥିଲା ଓଦାଓଦା । ସବୁ ଭଲ ବୋଲି କହିଲା ଯେ, ହେଲେ ବାପାଙ୍କ ଦେହ ଭଲ ନ ଥିବା କଥା କହି ବି କହିଲା ନାହିଁ । ବୋଉ ତ ସବୁଦିନେ ଏମିତି । ନିଜ ଇଲାକାର ଦୁଃଖ ସେ ନିଜେ ସହିଯିବ ସିନା, କାହା ଆଗରେ ମୁହଁ ଖୋଲିବ ନାହିଁ । ବାପାଙ୍କ ଦେହ ସଂପର୍କରେ ତା'ର ପଦକ କଥା କିନ୍ତୁ ସୁମନ୍ୟୁଙ୍କ ସମଗ୍ର ସତ୍ତାକୁ ଦୋହଲାଇଦେବାପାଇଁ ଥିଲା ଯଥେଷ୍ଟ । ସେ ଅଫିସ୍‌ରେ କାମ କରିପାରିଲେ ନାହିଁ । ଟୁର୍‌ରେ ଯିବାକୁ ତାଙ୍କ ମନ ବଳିଲା ନାହିଁ । ଘରେ ବି ମନ ଲାଗିଲା ନାହିଁ । ବୋଉର ଶିରାଳ ହାତ ଯେମିତି ତାଙ୍କ ଆଡ଼କୁ ଲମ୍ବିଆସି ଡାକୁଥିଲା ଆ' ଆ' ବୋଲି । ବାପାଙ୍କ ଓଠର ନିରବତାରେ ଯେମିତି ପୃଥିବୀଯାକର କବିତା ନେସି ହୋଇଥିଲା । ନଈକୂଳିଆ ତାଙ୍କ ଛୋଟ ଗାଁ'ଟିର ଆଖିରେ ଯେମିତି ଭରିରହିଥିଲା ଅନ୍ତହୀନ୍ ପ୍ରତୀକ୍ଷାର ପ୍ରାବୃଟ ।

କେତେ ଦିନ, କେତେ ରାତି ପୁଣି ଅନ୍ୟମନସ୍କତାରେ ବିତିଲା କେଜାଣି ? ଭାରତ ଫେରିବାପାଇଁ ସୁମନ୍ୟୁଙ୍କ ମନ ଉଚ୍ଛନ୍ନ ହେଲା । ପ୍ରିୟମ୍ବଦାଙ୍କୁ ନିଜ ସିଦ୍ଧାନ୍ତ ସେ ଜଣାଇଦେଲେ ।

ପ୍ରିୟମ୍ବଦା କିନ୍ତୁ ସେହି ପୁରୁଣା କଥାକୁ ଦୋହରାଇଲେ । କହିଲେ, 'ତୁମେ ତ ନିଉୟର୍କରୁ ସିଧା ଯିବ ଗାଁ'କୁ । ଦିଲ୍ଲୀ ବା ମୁମ୍ବାଇରେ ଦିନଟିଏ ବି ରହିବ ନାହିଁ । ଭୁବନେଶ୍ୱରରେ ଆମ ଘରେ ଘଣ୍ଟାଏ ରହିଲେ ତୁମକୁ ଅଣନିଃଶ୍ୱାସୀ ଲାଗିବ । ଆମ କଥା ଯାହାହେଉ, ପ୍ରୀତମ୍ କ'ଣ ଗାଁ'ରେ ମାସଟିଏ ରହିପାରିବ ?''

''କାହିଁକି ନୁହେଁ ?'' ଓଲଟା ପ୍ରଶ୍ନ କଲେ ସୁମନ୍ୟୁ ।

''ଗୋଟେ ଡଷ୍ଟ ଫ୍ରି କ୍ଲାଇମେଟ୍‌ରୁ ଧୂଳିଧୂମାଳଭର୍ତ୍ତି ପରିବେଶ । କେତେବେଳେ ଖରା ତ ଖରା, ମୁଣ୍ଡଫଟା ଖରା । ବେଳବୁଡ଼ାଣିକୁ କଳାହାଣ୍ଡିଆ ମେଘ ସାଙ୍ଗକୁ କାଳବୈଶାଖୀ । ଏସବୁ କ'ଣ ପ୍ରୀତମ୍‌କୁ ସୁହାଇବ ? ଗାଁ'ରେ ତୁମର ସେ ମାଟି ଘରେ ସେ ରହିବ କେମିତି ? ଖାଇବ କ'ଣ ? ପ୍ୟାକେଟ୍ ଖାଦ୍ୟରେ ତ ସେ ଅଭ୍ୟସ୍ତ । ଭାତ, ଡାଲି ତୁମ ଗାଁ ନଈମାଛ- ଏସବୁ କ'ଣ ତା' ଦେହରେ ଯିବ ! ତୁମ କାଳିଗାଈ କ୍ଷୀର ଯେତେ ମିଠା ବୋଲି ତୁମେ କହିଲେ ବି ନିଉୟର୍କ ପାଶ୍ଚରାଇଜ୍‌ଡ ମିଲ୍‌କ ସହ କ'ଣ ତୁଳନୀୟ । ନା ବାବା ନା, ତୁମେ ଗାଁ ନାଁ ଧର ନାହିଁ ।'' ପ୍ରିୟମ୍ବଦା ନିଜ ଜିଦ୍‌କୁ ଆବୋରି ରହିଥିଲେ ।

ପ୍ରିୟମ୍ବଦାଙ୍କର ଅନେକ କଥା ରଖନ୍ତି ସୁମନ୍ୟୁ । ପ୍ରାୟ କେଉଁ କଥାରେ ତାଙ୍କର ନା ନ ଥାଏ । କିନ୍ତୁ ଘରକଥା ପଡ଼ିଲେ ସେ କେବଳ ଭାବପ୍ରବଣ ହୋଇପଡ଼ନ୍ତି ନାହିଁ, ଅସମ୍ଭବ ଭାବରେ ଜିଦ୍‌ଖୋର ହୋଇପଡ଼ନ୍ତି ମଧ୍ୟ । ଏଥର ସୁମନ୍ୟୁଙ୍କ ଜିଦ୍ ଥର୍ମୋମିଟର ଉପରେ ହାଇ ଟେମ୍ପରେଚର୍‌ର ରେକର୍ଡ ପରି ପାଲଟିଲା ଉଦ୍‌ବେଗଜନକ ।

ଶାନ୍ତ-ସ୍ୱଭାବର ସୁମନ୍ୟୁ ଯେ ଜଳନ୍ତା ବ୍ଲାଷ୍ଟ୍‌ଫର୍ଣ୍ଣେସ୍‌ରେ ରୂପାନ୍ତରିତ ହୋଇପାରନ୍ତି, ଏହା ପ୍ରିୟମ୍ବଦା କଳ୍ପନା କରିପାରୁ ନ ଥିଲେ । କଳନା କରିପାରୁ ନ ଥିଲେ ତାଙ୍କ ନଷ୍ଟାଲ୍‌ଜିଆର ନିବିଡ଼ତା । ମର୍ତ୍ତ୍ୟର ଅମରାବତୀକୁ ନିମିଷକେ ପାଦରେ ଏଡ଼େଇ ଦେଇପାରୁଥିବା ତାଙ୍କ ପ୍ରେମିକା ପତିଙ୍କ ଚେହେରା ଅକସ୍ମାତ୍ ରହସ୍ୟ ଘନ ମନେହେଲା ପ୍ରିୟମ୍ବଦାଙ୍କୁ । ସେ କେବଳ ଚମକିପଡ଼ିଲେ ନାହିଁ, ଶଙ୍କିଗଲେ ମଧ୍ୟ ।

ଆଉଥରେ ନା କହିବାପାଇଁ ନିଜ ଭିତରେ ସାହସ ବାନ୍ଧିପାରିଲେ ନାହିଁ ପ୍ରିୟମ୍ବଦା ।

ନିଉୟର୍କରୁ ନୂଆଦିଲ୍ଲୀ । ଦିଲ୍ଲୀରେ ରହଣି ମାତ୍ର ଦିନଟିଏ । ପରଦିନ ସକାଳୁ ସକାଳୁ ଭୁବନେଶ୍ୱର । ପ୍ରିୟମ୍ବଦାଙ୍କ ଘରେ ବିତିଲା କେଇଘଣ୍ଟା ମାତ୍ର । ତା'ପରେ ଗାଁ' ଆଡ଼କୁ ମୁହାଁଇଲା ତାଙ୍କ ଭଡ଼ାଗାଡ଼ି ।

ଗାଁ'ର ରାସ୍ତା ଏବେ କାହିଁ କେତେ ବଦଳିଯାଇଥିଲା- ଚଉଡ଼ା, କଂକ୍ରିଟ୍ । ଗାଁ ଦାଣ୍ଡରେ ଗାଡ଼ି ପହଞ୍ଚିଲାବେଳକୁ ନଈକୂଳ ଆଡୁ ଧୀରେ ମାଡ଼ି ମାଡ଼ି ଆସୁଥିଲା କଅଁଳ ଅନ୍ଧାର । ଚଢ଼େଇମାନଙ୍କ ଘରବାହୁଡ଼ା କିଚିରିମିଚିରି ଦାଣ୍ଡଘାଟକୁ କରିଥିଲା ସଙ୍ଗୀତମୁଖର । ତାଙ୍କ ସମ୍ଭ୍ରାନ୍ତ ମାଟିଘରର ତାଳଗଛ ପ୍ରାୟ ମଥାନ ଯେମିତି ସଞ୍ଜ ଆକାଶକୁ ଛୁଇଁବାର ଆସ୍ପର୍ଦ୍ଧାରେ ମଗ୍ନ । ଆକାଶରୁ ଝରିପଡୁଥିବା ବିନ୍ଦୁ ବିନ୍ଦୁ ଲାଲରଙ୍ଗର ଦାଣ୍ଡଧୂଳିକୁ ଅବିରରେ ପରିଣତ କରିଥିଲା ଅବା !

ଦାଣ୍ଡ ପିଣ୍ଡାରୁ ଓହ୍ଲାଇଲେ ବାପା । ବୟସ ତାଙ୍କ ସଳଖ ଚାଲିକୁ ଚାପିପାରୁ ନ ଥିଲା । ତୁଳସୀଚଉଁରା ମୂଳରେ ବୋଉ ହାତରେ ସଞ୍ଜବତି । ପଡ଼ିଶାଘରର ନୂଆବୋହୂ ଫୁଙ୍କୁଥିଲା ଶୁଭଶଙ୍ଖ ।

ସୁମନ୍ୟୁ ଲକ୍ଷ୍ୟକଲେ, ଗାଁ'ରେ ପହଞ୍ଚିଲାପରେ ତାଙ୍କ ପରି ପ୍ରୀତମ୍ ମଧ୍ୟ ପୁଲକିତ । ତାଙ୍କ ଦେଖାଦେଖିରେ ସେ ବାପାଙ୍କର ପାଦ ଛୁଇଁଲା । ସୁମନ୍ୟୁ ଭାବିଲେ, ମଣିଷର ସଂସ୍କାର କେବଳ ପରିବେଶରେ ନ ଥାଏ, ଥାଏ ମଧ୍ୟ ଜିନ୍‌ରେ ।

ପ୍ରିୟମ୍ବଦାଙ୍କ ମୁହଁଫୁଲା ଥମୁ ନ ଥିଲା ।

କେଉଁ ମରହଟ୍ଟା ଅମଳର ପଲଙ୍କ ମ୍ୟୁଜିୟମ୍‌ରେ ରହିବା କଥା, ଯାହା କିନ୍ତୁ ସୁମନ୍ୟୁଙ୍କ ଶୋଇବାଘରକୁ ଅଧା ଆବୋରି ପଡ଼ି ରହିଥିଲା । ଆଟୁ ଓରାରେ ବନ୍ଧା ଫ୍ୟାନ୍‌ଟି ନିଜ ମର୍ଜିରେ ଚାଲୁଥିଲା, କେବେକେବେ ଘୁମେଇପଡୁଥିଲା ମଧ୍ୟ । ଝର୍କା ଦେଇ କେତେବେଳେ ଦମକାଏ ଥଣ୍ଡା ପବନ ଘର ଭିତରକୁ ଧସେଇ ପଶୁଥିଲା ଓ କେତେବେଳେ ବର୍ଷା ଛିଟାର ଅନୁପ୍ରବେଶରେ ମଛି ହେଉଥିଲା ଘରଭିତର । ସୁମନ୍ୟୁଙ୍କ ସାଙ୍ଗରେ ପ୍ରୀତମ ବି କେମିତି କେଜାଣି ନିଘୋଡ଼ ନିଦରେ ଶୋଇରହୁଥିଲା ସକାଳ, ଦିନ ହେବାଯାଏ ? ସାରାରାତି କର ଲେଉଟାଲେଉଟି କରି ନିଜକୁ ଏମିତି ପ୍ରଶ୍ନ କରୁଥିଲେ ପ୍ରିୟମ୍ବଦା ଏବଂ ଦୈବାତ୍ ରାତି ପାହାନ୍ତାକୁ ତାଙ୍କ ଆଖି ଲାଗିଯିବାବେଳେ ସେ ଏଣୁତେଣୁ ନାନା ସ୍ୱପ୍ନ ଦେଖି ବାଉଳି ହେଉଥିଲେ ।

ଦିନ କେତୋଟି ଭିତରେ ପ୍ରୀତମ୍‌ର ଅଜବ ବ୍ୟବହାର ପ୍ରିୟମ୍ବଦାଙ୍କୁ ବ୍ୟଥିତ କରୁଥିଲା । ସୁମନ୍ୟୁଙ୍କ ସାଙ୍ଗରେ ନଈକୂଳକୁ ବୁଲିଯିବା, ସକାଳୁ ସକାଳୁ ଗାଈଦୁହାଁ ଦେଖିବାପାଇଁ ଗୋବରଭର୍ତ୍ତି ଗୁହାଳ ଭିରତକୁ ପଶିବା ବା ଗାଁ' ପିଲାଙ୍କ ଗହଣରେ ଗଛ ଚଢ଼ିବାର ପ୍ରୟାସ କରିବା । ସେ ତାଙ୍କ ଆକଟ ଜମା ମାନୁ ନ ଥିଲା । ସଦ୍ୟ ପଞ୍ଜୁରିମୁକ୍ତ ଚଢ଼େଇ ପରି ଇତସ୍ତତଃ ଘୂରିବୁଲିବାର ନିଶା ଯେମିତି ତାକୁ ଘାରିଥିଲା । ପ୍ରିୟମ୍ବଦା କିଛି କହିଲେ ସୁମନ୍ୟୁ ଖାଲି ହସି ଦେଉଥିଲେ । ଆଉ ଜେଜେବାପା ନାତିର ହିରୋଗିରି ପାଇଁ ତା' ପିଠି ଥାପୁଡ଼ାଇଥିଲେ ତ ଜେଜେମା' ତା'ର ପିଠା ଖିରିଖିଆ ଅଭ୍ୟାସ କରାଇ ସାରିଥିଲେ । ପ୍ରିୟମ୍ବଦା, ନା କିଛି କହିପାରୁଥିଲେ, ନା ସହିପାରୁଥିଲେ ।

ପ୍ରିୟମ୍ବଦାଙ୍କର ଚିନ୍ତା ଥିଲା ନୁଇନ୍-ଡଷ୍ଟ ଆଉ ଡଷ୍ଟ୍ । ପ୍ରୀତମ୍‌ର ଡଷ୍ଟ୍ ଆଲର୍ଜି । ଗୋଟେ ଡଷ୍ଟ ଫ୍ରି କ୍ଲାଇମେଟ୍‌ରେ ବଢ଼ିଆସିଥିବା ପ୍ରୀତମ୍ ଗାଁ'ର ଧୂଆଁ, ଧୂଳି, ବର୍ଷା ଓ ବତାସକୁ ଏତେଟା ଏକ୍ସପୋଜ୍‌ଡ୍ ହେବା କ'ଣ ଠିକ୍ ?

ବେଳେବେଳେ ଛୋଟଛୋଟ ଧୂଳିଝଡ଼ ଭଉଁରି ଖେଳୁଥିଲା ଗାଁ ଦାଣ୍ଡରେ । ବେଳ ଗଡ଼ାଣିକୁ ଆକାଶରେ ଖଣ୍ଡେ ଦୁଇଖଣ୍ଡ ଓ ପରେ ପରେ ଅଗଣିତ ମେଘର ପଟୁଆର ।

ଟୋପା ଟୋପା ବର୍ଷା – ଏଇ ଅଛି, ଏଇ ନାହିଁ । ଏ ଭିତରେ ଥରେଦୁଇଥର କୁଢ଼କୁଢ଼ କୁଆପଥର ଅଜାଡ଼ି ହୋଇପଡ଼ିଲାଣି ଶୂନ୍ୟରୁ ।

ପ୍ରୀତମ୍‌ର ସ୍ୱାସ୍ଥ୍ୟ ପ୍ରତି କିନ୍ତୁ କାହାରି ନିଘା ନ ଥିଲା ।

ପ୍ରିୟମ୍ବଦା ମନେମନେ ଦିନ ଗଣୁଥିଲେ । ନିଉୟର୍କ ଫେରିବାର ତିଥି ଘୁଞ୍ଚିଘୁଞ୍ଚି ଯାଉଥିଲା ଯେମିତି । ତାଙ୍କୁ ଲାଗୁଥିଲା, ଦିନରାତିମାନେ ଚାଲିବା ଭୁଲିଯାଇଛନ୍ତି ।

ସେଦିନ ଦିପ୍ରହର ଖିଆପିଆ ପରେ ହଠାତ୍ ପ୍ରିୟମ୍ବଦାଙ୍କ ଆଖିପତା ଭାରୀଭାରୀ ଲାଗିଲା । ଏଇ କେତେଦିନ ହେବ କ୍ରମାଗତ ଅନିଦ୍ରା ହୁଏତ ଏପରି କ୍ଳାନ୍ତିର ହେତୁ ହୋଇଥାଇପାରେ । ସେ ଚାହୁଁ ଚାହୁଁ ପଲଙ୍କ ଉପରେ ବିଛେଇ ହୋଇପଡ଼ିଲେ । କିନ୍ତୁ କିଛି ସମୟ ପରେ ହଠାତ୍ ତାଙ୍କ ନିଦ ଭାଙ୍ଗିଗଲା । ଘର ଭିତରଟା ମନେହେଲା ଖୁବ୍ ଅନ୍ଧାରିଆ । ଘଡ଼ଘଡ଼ିର ମୁହୁର୍ମୁହୁଃ ଶବ୍ଦ କ୍ରମଶଃ ମିଳେଇଯାଉଥିଲା ମହାଶୂନ୍ୟରେ । ଉଠିଲାକ୍ଷଣି ପ୍ରିୟମ୍ବଦା ପ୍ରଥମେ ପ୍ରୀତମ୍‌କୁ ଖୋଜିଲେ । ଦିନବେଳା ପ୍ରୀତମ୍ କେଉଁଠି ବା ମିଳନ୍ତା ଘର ଭିତରେ !

ପ୍ରିୟମ୍ବଦା ଅତର୍କ୍କା ଦାଣ୍ଡଦୁଆର ଟପିଲେ ।

ଆକାଶରେ ବିକ୍ଷିପ୍ତ ମେଘ । ମେଘ ଫାଙ୍କରୁ ଝଲକା ଖରା ଆକାଶର କେତେକାଂଶକୁ କରିଥାଏ ଉଦ୍‌ଭାସିତ । ପ୍ରିୟମ୍ବଦା ଲକ୍ଷ୍ୟକଲେ, ବରକୋଳିଆ ଟୋପା ଟପ୍‌ଟପ୍ କରୁଛି ଏଠିସେଠି; ଦାଣ୍ଡସାରା ଫୁଟିଯାଉଛି ଅସଂଖ୍ୟ ଧୂଳିଫୁଲ । ଅଧାଭିଜା ପ୍ରୀତମ୍ କେତେବେଳେ ଧୂଳିଫୁଲ ସାଉଁଟିବା ପାଇଁ ନଇଁପଡୁଛି ତ କେତେବେଳେ ମେଘ ଓ ଖରାର ଲୁଚକାଳି ଖେଳ ଭିତରେ ଆମ୍ବହରା ହୋଇପଡୁଛି । ସୁମନ୍ୟୁଙ୍କର ଦେଖା ନାହିଁ, ଘରେ କି ବାହାରେ ।

ପ୍ରିୟମ୍ବଦା ଚିଡ଼ିଉଠିଲେ । ପ୍ରୀତମ୍‌ର କାନ ଧରି ଘର ଭିତରକୁ ଭିଡ଼ିଆଣିବା ପାଇଁ ସେ ଯାଇ ଠିଆହେଲେ ଦାଣ୍ଡ ମଝିରେ । କେତେ ଟୋପା ବର୍ଷା ବିନ୍ଦୁ ତାଙ୍କ ଲଲାଟ, ନାସା ଓ ବକ୍ଷୋଜରେ ପଡ଼ି ବିଦୀର୍ଣ୍ଣ ହେବା ଭିତରେ ବେଶ୍ ଭିଜିଯାଇଥିଲେ ପ୍ରିୟମ୍ବଦା । ପହିଲି ମେଘ ସାଙ୍ଗକୁ ମାଟିଗନ୍ଧ ତାଙ୍କୁ କେମିତି ଗୋଟେ ବିହ୍ୱଳ ଇନ୍ଦ୍ରଜାଲ ଭିତରକୁ ଟାଣିନେଇଥିଲା ।

ଧୂଳିଫୁଲର ଆକର୍ଷଣରେ ପ୍ରମତ୍ତପ୍ରାୟ ପ୍ରୀତମ୍‌କୁ ପ୍ରିୟମ୍ବଦା କିଛି କହିପାରିଲେ ନାହିଁ– ଖାଲି ଟିକେ ହସିଦେଲେ ଯାହା !



# ଉହାଡ଼

ବଡ଼ି ସକାଳୁ ଭଦ୍ରକ ଦେବାନୀ ଅଦାଲତର ରାତି ଜଗୁଆଳି ଦିଲ୍‌ଦାର୍ ମିଆଁ ନିଦବାଉଳାରେ ଯେଉଁ ଝାପ୍‌ସା ଦୃଶ୍ୟଟି ଦେଖିଲା, ସେଥିରେ ତା' ଦିରାକ୍ ଦିଲ୍ ହୁଏତ ଦି'ଫାଳ ହୋଇଯାଇଥାନ୍ତା । କିନ୍ତୁ କୁହୁଡ଼ିର ମୃଦୁ ଆସ୍ତରଣ ଯୋଗୁଁ ହେଉ ଅଥବା ଗତରାତିର ଦେଶୀ ମଦର କରାମତି କମି ନ ଥିବା କାରଣରୁ ହେଉ, ସେହି ଅଭାବନୀୟ ଦୃଶ୍ୟଟିର ଅର୍ଥ ହଠାତ୍ ମିଆଁ ବୁଝିପାରିଲା ନାହିଁ । ମୁଣ୍ଡ ଝାଡ଼ି ଅବଶିଷ୍ଟ ନିଶା ଓ ନିଦକୁ ଫିଙ୍ଗାଫିଙ୍ଗି କରିବା ଉତ୍ତାରେ, ନିଜର କ୍ଳାନ୍ତ ଆଖିପତାକୁ ଯଥାସମ୍ଭବ ବିସ୍ଫାରିତ କରି ସେ ଦୃଶ୍ୟଟିକୁ ପୁନଶ୍ଚ ନିବିଡ଼ ଭାବରେ ନିରେଖିଲା ।

୧୯୩୦ ମସିହା ଜାନୁଆରୀ ମାସ ଛବିଶ ତାରିଖର ସକାଳ; ଛନଛନିଆ । ତୁହାକୁ ତୁହା ଶୀତୁଆ ବାଆ ପୁଣି ନୁଆଁଣିଆ ବାଦଲ ପରି ଭାସମାନ କୁହୁଡ଼ି । ତଥାପି ଫର୍ଚ୍ଚା ଦିଶୁଥାଏ ଚଉପାଶ । ଈଷତ୍ ଲାଲ୍ ଓ ଗାଢ଼ ନୀଳ ରଙ୍ଗରେ ଫେଣ୍ଟାଫେଣ୍ଟି ବିଚିତ୍ରବର୍ଣ୍ଣା ଆକାଶ ତଳେ ଫରଫର ହୋଇ ଉଡୁଥିଲା ପତାକାଟିଏ । ବାଉଳୁଚି ହେଲାପରି ହଠାତ୍ ଚିତ୍କାର କରିଉଠିଲା ଦିଲ୍‌ଦାର ମିଆଁ–''ୟେ ତୋ ଅଂଗ୍ରେଜ ହୁକୁମତ୍ କା ନିଶାନ୍ ନହିଁ ହୈ । ଆଜାଦି କି ନିଶାନ୍ କୌନ୍ ବଦତ୍ମିଜ୍ ଲହରାୟା ଅଦାଲତ୍ କେ କୋଠିପର୍ ।'' ଦୁଇ କଦମ୍‌ରେ ହିମାଳୟକୁ ଛୁଇଁବା ପରିମିତ କୁଦାମାରି ଦିଲ୍‌ଦାର ମିଆଁ ଅଦାଲତ ଛାତ ଉପରକୁ ଉଠିଗଲା ।

ଅଦାଲତ ଚାରିକଡ଼ରେ ସେତେବେଳକୁ ଲୋକେ ଥାଟପଟାଳି ଭାଙ୍ଗିଲେଣି । ଶୀତଳ ପବନରେ ସକାଳ ସୂର୍ଯ୍ୟର ରକ୍ତିମ ଆଭା ନେଇ ଉଡୁଥିଲା ତ୍ରିରଙ୍ଗା ପତାକା । ପୁଣି ପରାକ୍ରମୀ ବ୍ରିଟିଶ୍ ସାମ୍ରାଜ୍ୟର ପ୍ରତୀକ ଦେବାନୀ ଅଦାଲତର ଛାତ ଉପରେ । ସେହି ଅନନ୍ୟ ଦୃଶ୍ୟଟି ଶିହରିତ କରୁଥିଲା ଆବାଳବୃଦ୍ଧବନିତାଙ୍କୁ । ବିକ୍ଷିପ୍ତ ଜନସମାବେଶର ପୁଣି ଏକ ବିପୁଳ ଅଂଶ ଥିଲା ଛାତ୍ର ମଣ୍ଡଳୀ । ଅଦାଲତ ପାଟେରିକୁ ଲାଗି ଭଦ୍ରକ ହାଇସ୍କୁଲ । ଛାତ୍ରାବାସରେ ଛାତ୍ରଙ୍କ ସଂଖ୍ୟା ଊଣା ନ ଥିଲା । କେହି ଜଣେ ଛାତ୍ର ହଠାତ୍ ନିଜ ଶିରାଳ ହାତକୁ ଉପରକୁ ଟେକି କହିଉଠିଲା, 'ଭାରତ ମାତା କି', ଅନ୍ୟ ଛାତ୍ରମାନଙ୍କ ସମବେତ କଣ୍ଠରୁ ତା'ର ଉତ୍ତର ଶୁଭିଲା, 'ଜୟ' । ବୟସ୍କମାନଙ୍କ ତୁଣ୍ଡ ବି ଉଚ୍ଚାଟ ହେଲା । ଅଦୂରରୁ ଦୃଶ୍ୟଟିକୁ ଲକ୍ଷ୍ୟ କରୁଥିବା ଅବଗୁଣ୍ଠନବତୀ ମହିଳାମାନେ ହୁଳହୁଳୀ ଦେଲେ । କାହାରି କାହାରି ଘରୁ ଶୁଭିଲା ଶଙ୍ଖଧ୍ୱନି ।

ଭଦ୍ରକରେ ଏ ଦୃଶ୍ୟଟି ଥିଲା ଅଭିନବ, କିନ୍ତୁ ଅପ୍ରତ୍ୟାଶିତ ନୁହେଁ ।

ସେତେବେଳକୁ ଦେଶ ସ୍ୱାଧୀନ ହେବା ଢେର ଡେରି ଥାଏ । କିନ୍ତୁ ସାରା ଭାରତର ଗଗନ ପବନରେ ସ୍ୱାଧୀନତାର ହିଲ୍ଲୋଳ ବେଶ୍ ବାରି ହୋଇପଡୁଥାଏ । ଜାତୀୟ କଂଗ୍ରେସର କଲିକତା ଅଧିବେଶନଠାରୁ ପୂର୍ଣ୍ଣ ସ୍ୱରାଜ୍ୟର ସ୍ୱର ଅସ୍ପଷ୍ଟ ହେଲେ ବି ଅଶ୍ରୁତ ନ ଥିଲା । ଡୋମିନିଅନ ଷ୍ଟାଟସ ପ୍ରସ୍ତାବକୁ ତରୁଣ ବିପ୍ଲବୀମାନେ ଖୋଲାଖୋଲି ଭାବରେ ବିରୋଧ କରୁଥିଲେ । କଂଗ୍ରେସର ପ୍ରଗତିଶୀଳ ନେତା ଜବାହରଲାଲ ନେହରୁ ଓ ସୁଭାଷ ଚନ୍ଦ୍ର ବୋଷ ଥିଲେ ପୂର୍ଣ୍ଣ ସ୍ୱରାଜ୍ୟର ସପକ୍ଷବାଦୀ । ୧୯୨୯ ମସିହା ଡିସେମ୍ବର ମାସରେ ଲାହୋର ଅଧିବେଶନରେ ପୂର୍ଣ୍ଣ ସ୍ୱରାଜ୍ୟ, କଂଗ୍ରେସର ଲକ୍ଷ୍ୟ ବୋଲି ଆନୁଷ୍ଠାନିକ ଭାବରେ ଘୋଷଣା କରାଗଲା । ସେହି ମାସ ଅର୍ଥାତ୍ ଡିସେମ୍ବର ମାସ ୩୧ ତାରିଖ ମଧ୍ୟରାତ୍ରିରେ ଜବାହରଲାଲ ରାବି ନଦୀ କୂଳରେ ତ୍ରିରଙ୍ଗା ପତାକା ଉତ୍ତୋଳନ କଲେ । କେବଳ ସେତିକି ନୁହେଁ, ୧୯୩୦ ମସିହା ଜାନୁଆରୀ ମାସ ଛବିଶ ତାରିଖ ଦିନ ସାରା ଦେଶରେ ସ୍ୱାଧୀନତାର ସଂକଳ୍ପ ଗ୍ରହଣ କରାଯିବାପାଇଁ ସ୍ଥିର ହୋଇଥିଲା ମଧ୍ୟ । ପରେ ପରେ ସମଗ୍ର ଭାରତବର୍ଷ ସ୍ୱାଧୀନତାର ସ୍ୱପ୍ନରେ ବିଭୋର ହୋଇପଡ଼ିଲା ।

ଲାହୋରର ସେହି ସ୍ୱାଧୀନମନସ୍କତା ଅବିଳମ୍ବେ ଗୁଞ୍ଜରିତ ହେଲା ସାଳନ୍ଦୀ ଅବବାହିକାରେ ।

ଭଦ୍ରକର ଗଳି ଉପଗଳି, ଗାଁ-ଗଣ୍ଡା ସବୁଠି ଛୁଟିଲା ଜନତାର ସୁଅ । ଆଗେ ଆଗେ କବି ବାଞ୍ଛାନିଧି । ପଛରେ ଯୁବକ ଓ ଛାତ୍ରମାନଙ୍କର ଭବ୍ୟ ପଟୁଆର । କବିଙ୍କ କଣ୍ଠରୁ ଝରି ପଡୁଥିଲା ସ୍ୱାଧୀନ ଭାରତର ଆବାହନୀ;

"ଗାଅ ସ୍ୱାଧୀନ ଭାରତ, ସ୍ୱାଧୀନ ଭାରତ,
ସ୍ୱାଧୀନ, ସ୍ୱାଧୀନ, ସ୍ୱାଧୀନରେ,
ଗାଏ ସାଗର, ଭୂଧର ଅମ୍ବର ଚୁମ୍ବିତ
ଭାଲ ହିମାଳୟ ଗିରିବର କମ୍ପିତ,
ସ୍ୱାଧୀନ, ସ୍ୱାଧୀନ, ସ୍ୱାଧୀନରେ ।"

ଜାନୁଆରୀ ଛବିଶ ତାରିଖ ଦିନ ଭାରତବାସୀ ଯିଏ ଯେମନ୍ତେ ସ୍ୱାଧୀନତାର ସଂକଳ୍ପ ଗ୍ରହଣ କଲେ । କିନ୍ତୁ ଭଦ୍ରକ ଅଦାଲତର କୋଠା ଉପରୁ ୟୁନିଅନ୍ ଜ୍ୟାକ୍ ହଟାଇ କିଏ ସେହି ଇନ୍‌କିଲାବୀ ଯିଏ ତ୍ରିରଙ୍ଗା ବାନା ଉଡ଼ାଇଦେଲା ? କାହାର ଏଡ଼େ ହିମ୍ମତ ? ସକାଳୁ ଦେଖିବାବେଳକୁ ଇଂରେଜଙ୍କ ସ୍ୱର୍ଦ୍ଧିତ ପତାକା ଭୂଇଁରେ ଲୋଟୁଛି, କୋଠା ଉପରେ ଉଡୁଛି ପ୍ୟାରା ତ୍ରିରଙ୍ଗା । ଦିଲ୍‌ଦାର୍ ମିଆଁ ଏସବୁ କାମର ଟେର୍ ପାଇପାରି ନ ଥିଲା ।

ଲୋକେ କହିଲେ, ଏ ଭଦ୍ରକ ହାଇସ୍କୁଲ ପିଲାଙ୍କ କାମ ହୋଇଥିବ । କେହି ପିଲା ରାତିରୁ ଉଠି ଦିଲ୍‌ଦାର୍ ମିଆଁର ଘୁଙ୍ଗୁଡ଼ି ବାରି ରାତେରାତ କାମ ବଢ଼େଇ ହଷ୍ଟେଲକୁ ବାହୁଡ଼ି ଯାଇଥିବ । ବୟସ୍କ ଲୋକମାନଙ୍କର କାମ ଏ ନୁହେଁ । କିନ୍ତୁ କିଏ ସେହି ବୀର ବାଳକ ? କିଏ ଏପରି ସାହସିକ କାମରେ ହାତ ଦେଲା ? ସମସ୍ତଙ୍କ ମନରେ ସେହି ପ୍ରଶ୍ନ; ସେହି ଉତ୍କଣ୍ଠା । ହଠାତ୍ କିନ୍ତୁ କେହି ତା'ର ସନ୍ଧାନ ପାଇଲେ ନାହିଁ । ଅଜ୍ଞାତ ପିଲାଟିକୁ ଅବଶ୍ୟ ତାରିଫ କଲେ ଖୁବ୍ ।

ପରେ ପରେ ତୁଣ୍ଡରୁ ତୁଣ୍ଡ ହୋଇ ସହସ୍ର କୋଶ ବ୍ୟାପିଗଲା ଗୋଟିଏ କଥା– ଏ କାମ ନୀଳମଣି କରିଥିବ ।

ନୀଳମଣି ସେତେବେଳେ ଭଦ୍ରକ ହାଇସ୍କୁଲର ଛାତ୍ର । ଛାତ୍ର ଜୀବନରୁ ରାଜନୀତି ଓ ସମାଜସେବା ପ୍ରତି ତାଙ୍କର ରୁଚି ଥିଲା ଅପ୍ରମିତ । ସଭାସମିତିରେ ଭାଷଣ ଦେବାରେ ସେ ପୁଣି ଥିଲେ ଆଗୁଆ । ହରେକୃଷ୍ଣ ମହତାବ, ଗୋକୁଳାନନ୍ଦ ମହାନ୍ତି ଓ ମହମ୍ମଦ ହନିଫ ପ୍ରମୁଖଙ୍କଦ୍ୱାରା ପ୍ରଭାବିତ ହୋଇ ସ୍ୱାଧୀନତା ସଂଗ୍ରାମ ସହିତ ପିଲାବେଳୁ ସେ ଜଡ଼ିତ ହୋଇଥିଲେ ।

ଗୁପ୍ତରେ କଂଗ୍ରେସର ପ୍ରଚାରପତ୍ର ବାଣ୍ଟିବା ଦାୟିତ୍ୱ ନ୍ୟସ୍ତ ଥିଲା ନୀଳମଣିଙ୍କ ଉପରେ । ସ୍କୁଲ ଛାତ୍ର ହୋଇଥିବାରୁ ପୋଲିସ ଆଖିରୁ ଦୂରେଇ ରହି ଏସବୁ କାମ କରିବା ଥିଲା ଆପାତତଃ ସହଜସାଧ୍ୟ । କିନ୍ତୁ ଖୁବ୍‌ଶୀଘ୍ର ତାଙ୍କର ରାଜନୀତିକ କାର୍ଯ୍ୟକଳାପ ବିଷୟରେ ଭଦ୍ରକ ସହରରେ ଚର୍ଚ୍ଚା ଆରମ୍ଭ ହୋଇଗଲା । ଛୋଟ ପିଲାଟିର ସଂଗ୍ରାମୀ ମନୋବୃତ୍ତି ଅନେକଙ୍କୁ କଲା ମୁଗ୍ଧ, କାହାକୁ ପୁଣି ହତଚକିତ । ବୟସ୍କ କଂଗ୍ରେସ କର୍ମୀ କେତେଜଣ ତାଙ୍କୁ ଟିକି ବିପ୍ଳବୀ ବୋଲି ଡାକି ବେଶ୍ ଉତ୍ସାହିତ କଲେ ।

ଅଦାଲତ କୋଠା ଉପରେ ତ୍ରିରଙ୍ଗା ପତାକା ଉଡ଼ାଣ ନୀଳମଣିର ଦୁଃସାହସିକତା ଛଡ଼ା ଅନ୍ୟ କାହାର ହୋଇଥିବ ବୋଲି କେହି କ'ଣ ବିଶ୍ୱାସ କରନ୍ତେ ?

ପୋଲିସ କାନକୁ କଥା ଗଲା । ତହୁଁ ଆରମ୍ଭ ହୋଇଗଲା ଖୋଳତାଡ଼ । ପଚରା ଉଚୁରା । ଦାରୋଗା ଦି'ଜଣ ଯାଇ ଜେରା କଲେ ନୀଳମଣିଙ୍କୁ ।

– ତୁମ ନାମ ?

– ନୀଳମଣି ରାଉତରାୟ ।

– ପିତାଙ୍କ ନାମ ?

– ଚନ୍ଦ୍ରଶେଖର ରାଉତରାୟ ।

– ମୁକାମ ?

– ମୁକୁନ୍ଦପୁର ।

– ତୁମେ ଅଦାଲତ କୋଠିରେ ପତାକା ଉଡ଼େଇଲ କାହିଁକି ?

– ମୁଁ ପତାକା ଉଡ଼ାଇ ନାହିଁ ।

– ତା'ର ପ୍ରମାଣ ?

– ମୁଁ ଭଦ୍ରକ ହାଇସ୍କୁଲ ଛାତ୍ରାବାସର ଅନ୍ତେବାସୀ ନୁହେଁ । ହେଡ୍‌ମାଷ୍ଟରଙ୍କୁ ପଚାରି ବୁଝନ୍ତୁ । ନାରାୟଣ ଚନ୍ଦ୍ର ହାଇସ୍କୁଲ ଛାତ୍ରାବାସରେ ମୁଁ ରହେ । ଅଧରାତିରେ ମୁଁ କ'ଣ ଦୁଇ ମାଇଲ ବାଟ ଚାଲିଆସିଲି ଏକା ଏକା ? ପୁଣି ଏ ଯେଉଁ କିଟିକିଟା ଅନ୍ଧାର । ମଝିରେ ନଈ; ନଈକୂଳରେ ଦୁଇଟା ମଶାଣି, ଗୋଟେ କବର ସ୍ଥାନ ।

ପୋଲିସ୍ ତାଜୁବ ହେଲେ । ପିଲାଟିର ଯୁକ୍ତି ଅକାଟ୍ୟ । ଅନ୍ୟ କୌଣସି ଆନୁଷଙ୍ଗିକ ପ୍ରମାଣ ମଧ୍ୟ ମିଳିଲା ନାହିଁ । ମାମଲା ସେଇଠୁ ତୁଟିଲା ।

କିନ୍ତୁ ସହରଯାକର ସବୁତକ ସାବାସି ଅଜାଡ଼ି ହୋଇପଡ଼ିଲା ନୀଳମଣିଙ୍କ ଉପରେ– ଆହାଃ... କେଡ଼େ ସାହସ ଏଡ଼େଟିକେ ପିଲାର । ଇଂରେଜଙ୍କ ପତାକା ଉତାରି ଦେଲା କୋଠାରୁ । ପୁଣି ତ୍ରିରଙ୍ଗା ଉଡ଼ାଇଦେଲା ନିଃସଂକୋଚରେ । କେହି ପୁଣି କହିଲେ ନୀଳମଣି କେବଳ ସାହସୀ ନୁହେଁ, ଚତୁର ମଧ୍ୟ । ଦାରୋଗା ଦିପୋଟୀଙ୍କୁ କେମିତି ବୋକା ବନାଇଦେଲା ଦେଖୁନ !

ପିଲାଦିନର ସେହି ଅନ୍ତରଙ୍ଗ ସ୍ମୃତି ବେଳେବେଳେ ଧସେଇପଶେ ନୀଳମଣିଙ୍କ ମନ ଗହନକୁ । ବ୍ୟସ୍ତବିବ୍ରତ କରେ ତାଙ୍କୁ । ସେ ଯେଉଁ ପ୍ରଶଂସାର ଭାଜନ ନୁହନ୍ତି, ତା'ର ଅଧିକାରୀ ତାଙ୍କୁ କରିଦିଆଗଲା ଅଯଥାରେ । ଅଦାଲତ କୋଠା ଉପରେ ସେ ତ ଜାତୀୟ ପତାକା ଉଡ଼ାଇ ନ ଥିଲେ । ହେଲେ ସ୍ୱଦେଶ ପ୍ରୀତିର ନିଦର୍ଶନ ସ୍ୱରୂପ ସେହି କାର୍ଯ୍ୟଟି କରିଥିଲା କିଏ । ନିଜକୁ ସେ ପ୍ରଶ୍ନ କରନ୍ତି ବେଳେବେଳେ, ଆପାତତଃ ନିରୋଳା ମୁହୂର୍ତ୍ତରେ ।

କିନ୍ତୁ ନିରୋଳା ମୁହୂର୍ତ୍ତ ଖୁବ୍ କମ୍ ଜୁଟେ ନୀଳମଣିଙ୍କ ଭାଗ୍ୟରେ । ଛାତ୍ର ଜୀବନରୁ ସେ ଯେଉଁ ରାଜନୀତିରେ ପଶିଥିଲେ ସେଥିରୁ ମୁକୁଳିପାରି ନାହାନ୍ତି କେବେ । ସ୍ୱାଧୀନ ଭାରତରେ ଉପମନ୍ତ୍ରୀରୁ ମୁଖ୍ୟମନ୍ତ୍ରୀ– କାହିଁ କେତେ ଦୂର ପଥ ସେ ଅତିକ୍ରମ କରିଛନ୍ତି । ବହୁ ରାଜନୀତିକ ଉତ୍‌ଥାନ ପତନର ସାମ୍ନାସାମ୍ନି ହୋଇଛନ୍ତି । ତା' ଭିତରେ ବି ପଛକୁ ଫେରି ଚାହିଁବାର ଅନୁରାଗ ତାଙ୍କୁ କେବେ କେମିତି ଘାରେ ଏବଂ ପଛକୁ ଫେରି ଚାହିଁବାକ୍ଷଣି ତାଙ୍କୁ ସେଦିନର ସେହି ନିଗୁଡ଼ା ଘଟଣା ଓ ତା'ର ଅଜଣା ବିପ୍ଳବୀଟିର ରହସ୍ୟମୟତା ଆଚ୍ଛନ୍ନ କରେ ।

ପ୍ରଲମ୍ବିତ ସେହି ରହସ୍ୟମୟତାକୁ ଭେଦ କରିବାପାଇଁ ନୀଳମଣି ଯେ ଚେଷ୍ଟା କରି ନ ଥିଲେ, ତା' ନୁହେଁ । ସେ ଘରୋଇ ବିଭାଗର ମନ୍ତ୍ରୀ ଥିଲାବେଳେ ଥରେ ରାଜ୍ୟ

ପୋଲିସର ଗୁଇନ୍ଦା ମୁଖ୍ୟଙ୍କୁ ଡାକି ବ୍ରିଟିଶ ଅମଳର ସେ ଘଟଣାଟିକୁ ପୁରୁଣା ଫାଇଲ ତଳୁ ଖୋଜି ବାହାର କରିବାପାଇଁ ମୌଖିକ ନିର୍ଦ୍ଦେଶ ଦେଇଥିଲେ । ପୋଲିସ ହେଡ୍‌କ୍ୱାର୍ଟର୍ସ ରେକର୍ଡ ରୁମ୍‌ରୁ ପରାଧୀନ ଭାରତର ଅନେକ ଗୁରୁତ୍ୱପୂର୍ଣ୍ଣ ଦସ୍ତାବିଜ ବାହାର କରାଯାଇ ତନ୍ନ ତନ୍ନ କରି ଯାଞ୍ଚ କରାଗଲା । ହେଲେ ୧୯୩୦ ଜାନୁଆରୀ ଛବିଶର ସେହି ଛୋଟ ଅଥଚ ଅଭୁଲା ଗାଥାର ନାୟକଟି ବିଷୟରେ କୌଣସି ସନ୍ଧାନ ମିଳି ନ ଥିଲା । ନିରାଶ ହୋଇଥିଲେ ନୀଳମଣି । ତଥାପି ତାଙ୍କ ଅନୁସନ୍ଧିତ୍ସୁ ଦରଦୀ ମନରୁ ସେ ଛାପ ଲିଭୁ ନ ଥିଲା ।

ଗତ ଶତାବ୍ଦୀର ଶେଷ ଦଶକରେ ବର୍ଷୀୟାନ୍ ନୀଳମଣି ସକ୍ରିୟ ରାଜନୀତିରୁ ଅବସର ଗ୍ରହଣ କଲେ । ନିରୁଦ୍‌ବିଗ୍ନ ସଞ୍ଜ ସକାଳ ଓ ଅଳସ ଅପରାହ୍ନର ପ୍ରାଚୁର୍ଯ୍ୟ ତାଙ୍କୁ କିଛି ଲେଖାଲେଖି କରିବାପାଇଁ ଅନୁପ୍ରେରିତ କଲା । ନିଜ ସୁଦୀର୍ଘ ସଂଗ୍ରାମୀ ଜୀବନର ତିକ୍ତମଧୁର ସ୍ମୃତିକୁ ଆଧାର କରି ଆତ୍ମକଥା ଲେଖିବାପାଇଁ ସେ ମନ ସ୍ଥିର କଲେ । ସେତେବେଳେ ଭଦ୍ରକ ହାଇସ୍କୁଲର ସ୍ମୃତି ପୁଣି ତାଙ୍କୁ ଘାରିଲା । ନୀଳମଣିଙ୍କ ପୁରୁଣା ସହପାଠୀମାନଙ୍କ ଭିତରୁ ଅନେକେ ସେତେବେଳକୁ ଆଉ ଇହଧାମରେ ନ ଥିଲେ । ଯେଉଁ କେତେଜଣ ଜୀବିତ ଥିଲେ ଏବଂ ଯେଉଁମାନଙ୍କ ସହିତ ତାଙ୍କର ସଂପର୍କ ଅବ୍ୟାହତ ରହିଥିଲା, ସେମାନଙ୍କୁ ସେ ସ୍ମରଣ କଲେ ବାରମ୍ବାର । ଅଦାଲତ କୋଠା ଉପରେ କିଏ ସେଦିନ ଉଡ଼େଇଥିଲା ମୁକ୍ତିନିଶାଣ । ତା'ର ସନ୍ଧାନ ନେବାପାଇଁ ସେ ବନ୍ଧୁମାନଙ୍କୁ ଏକପ୍ରକାର ନେହୁରା ହେଲେ । ନ ହେଲେ ସ୍ମୃତିଲିଖନ ଯେ ଅଧୁରା ରହିଯିବ ?

ବେଶ୍ କିଛିଦିନ ପରେ ନୀଳମଣି ଯେଉଁ ସମ୍ବାଦ ପାଇଲେ, ସେଥିରେ ସେ ଯେତିକି ବିସ୍ମୟାଭିଭୂତ ନ ହେଲେ ତହୁଁବଳି ହେଲେ ଦ୍ରବୀଭୂତ । 'ସୁଧାକର । ଆଁ... ସୁଧାକର ମିଶ୍ର... ଯିଏ ରେଳବାଇରେ ଚାକିରି କରିଥିଲା ? ରିଟାୟାର୍ଡ କରିସାରିଛି । ସେହି ସୁଧାକର ?' ସୁଧାକରକୁ ସାମ୍ନାରେ ପାଇଥିଲେ ସେ ହୁଏତ ତାକୁ ଗାଢ଼ ଆଶ୍ଳେଷରେ ବାନ୍ଧି ରଖିଥାନ୍ତେ ଚିରକାଳ ।

ସୁଧାକର କେଡ଼େ ସୁଧାର ନ ଥିଲା ସତେ ! ନୀଳମଣି ପ୍ରଗାଢ଼ ଭାବରେ ମନେ ପକାଉଥିଲେ ସେଦିନର ଅନ୍ତରଙ୍ଗ ସହପାଠୀକୁ । ଭାରି ଚୁପଚାପ ଥିଲା ସେ । ଶ୍ରେଣୀରେ ମନୋଯୋଗୀ, ପାଠରେ ଅଗ୍ରଣୀ । କିନ୍ତୁ ଦେଶର ରାଜନୀତିକ ଖବର ଟବର ସବୁ ଥିଲା ତା' ନଖଦର୍ପଣରେ । ତା'ର ନୀରବତା ଭିତରେ ଯେମିତି ଲୁଚି ରହିଥିଲା ଗୋଟେ ପ୍ରଭଞ୍ଜନର ପ୍ରବଣତା । ନୀଳମଣି ଅବା ସେହି ନୀରବ ଝଡ଼କୁ ଆବିଷ୍କାର କରୁଥିଲେ ଗୋଟେ କଳ୍ପାନ୍ତ ପରେ ।

ଅଗତ୍ୟା ନୀଳମଣି ନିଜ ଅଜାଣତରେ ଉପରମହଲା 'ଷ୍ଟଡିରୁମ୍' ଭିତରେ ଇତସ୍ତତଃ ଘୂରି ବୁଲୁଥିଲେ । ସୁଧାକରର ସେଦିନର ସାହସ ପୁଣି ତହୁଁ ବଳି ତା'ର ନୀରବତା– ତରଳୁଥିବା ଖଣ୍ଡେ ବରଫରେ ତାଙ୍କୁ ରୂପାନ୍ତରିତ କରିସାରିଥିଲା । ନୀଳମଣିଙ୍କର ମନେପଡୁଥିଲା ତାଙ୍କ ଲମ୍ୱା ରାଜନୀତିକ ଜୀବନର ପର୍ଦାପଛର କଥା । ସ୍ୱାଧୀନ ଭାରତର ନେତାଙ୍କଠାରୁ ଜନତାଙ୍କ ପର୍ଯ୍ୟନ୍ତ ସମସ୍ତେ କେମିତି କହୁଥିଲେ ଖାଲି, 'ଦିଅ', 'ଦିଅ' । ନେତା କେମିତି କହୁଥିଲେ– ଆମକୁ ଟିକଟ ଦିଅ; ଭୋଟ ଦିଅ; ମନ୍ତ୍ରୀପଦ ଦିଅ; ଗାଡ଼ିଘୋଡ଼ା, ବଙ୍ଗଳା, ସ୍ୟାଲୁଟ, ସାଇରନ ସବୁ ଦିଅ; ଆମେ ନାହିଁ ନ ଥିବା ତ୍ୟାଗ କରିଛୁ, ଆମକୁ ଭୋଗ ଦିଅ; ଆମେ ଖଦି ପିନ୍ଧୁଥିଲୁ, ଆମକୁ ଗଦି ଦିଅ । ଜନତା କହୁଥିଲେ– ଆମକୁ ରୋଟି, କପଡ଼ା, ମକାନ୍ ଦିଅ; ବାଟ ଦିଅ, ଘାଟ ଦିଅ, ବିଜୁଳି ପାଣି ସଡ଼କ ଦିଅ; ମାଗଣାରେ ଶିକ୍ଷା ଦୀକ୍ଷା ଦିଅ । ପୁଣି ତଥାକଥିତ ସ୍ୱାଧୀନତା ସଂଗ୍ରାମୀମାନେ ଦାବି କରୁଥିଲେ– ଦିଅ ଦିଅ ଆମକୁ ଭତ୍ତା ଦିଅ; ପ୍ରଶସ୍ତିପତ୍ର ଦିଅ; ଉତ୍ତରୀୟ ଦିଅ, ମାନ ଦିଅ, ସମ୍ମାନ ଦିଅ; ସମ୍ବର୍ଦ୍ଧନା ଦିଅ; ଅଙ୍ଗବସ୍ତ୍ର ଦିଅ; ଫୁଲମାଳ ପୁଣି ଫଳକ ଦିଅ । ସୁଧାକର କିନ୍ତୁ ଏଡ଼େବଡ଼ କାମଟେ କଲା, ଅଥଚ ମୁହଁ ଖୋଲି କହିଲା ନାହିଁ କାହାରି ଆଗରେ । ନିଜକୁ ନାୟକ ବୋଲି ଦାବି କଲା ନାହିଁ । ବାହାବା ନେବାକୁ ଆଗଭର ହେଲା ନାହିଁ । ଆଟୋପରେ ପଟୁଆର ଆଗରେ ଆସି ଠିଆ ହେଲା ନାହିଁ । ମାଗିବା ତ ଦୂରର କଥା ।

ଅଖ୍ୟାତ ସହପାଠୀ ସୁଧାକର ପ୍ରତି ଭକ୍ତିରେ ମୁଣ୍ଡ ନଇଁ ଆସୁଥିଲା ନୀଳମଣିଙ୍କର । 'ଷ୍ଟଡିରୁମ୍'ର ଝର୍କା ଖୋଲି ଅପରାହ୍ନର ସୂର୍ଯ୍ୟଙ୍କୁ ଅନେକ ସମୟଧରି ସେ ଚାହିଁରହିଲେ । ବିମୁଗ୍ଧ ହେଲେ ବୋଧହୁଏ ସ୍ତିମିତ ସୂର୍ଯ୍ୟଙ୍କର କମନୀୟ କଷାୟ କାନ୍ତିରେ । ତା'ପରେ ଟେବୁଲ ପାଖକୁ ଫେରିଆସିଲେ ଏବଂ ନିଜ ସ୍ମୃତିଲିପିର ନୂଆ ଏକ ଅଧ୍ୟାୟ ଲେଖିବା ଆରମ୍ଭ କଲେ... ''ଏ ଘଟଣାର ଅନେକ ବର୍ଷ ପରେ ମୁଁ ସନ୍ଧାନ ପାଇଥିଲି ଯେ ସେତେବେଳର ମୋର ଜଣେ ସହପାଠୀ ଶ୍ରୀ ସୁଧାକର ମିଶ୍ର ଦେବାନୀ ଅଦାଲତ ଉପରେ ତ୍ରିରଙ୍ଗା ପତାକା ଉଡ଼ାଇଥିଲେ ବୋଲି; ମାତ୍ର ସେ ଆଜିପର୍ଯ୍ୟନ୍ତ ମୋତେ କିଛି କହି ନାହାନ୍ତି । ××× ଲୋକଲୋଚନର ଅଲକ୍ଷ୍ୟରେ କୌଣସି ସ୍ୱାର୍ଥ ପ୍ରତ୍ୟାଶା ନ ରଖି ବହୁ ଦେଶପ୍ରେମୀ ନାନା ଭାବରେ ମାତୃଭୂମି ପାଇଁ ମର୍ମସ୍ପର୍ଶୀ ଅବଦାନ ରଖିଯାଇଛନ୍ତି... ।''



# ଝାପ୍‌ସା ଆଲୁଅ

ଭଦ୍ର-ମହିଳାଙ୍କୁ ଦେଖିଲାକ୍ଷଣି ଚିହ୍ନିକି ପଡ଼ିଲେ ସୁରଞ୍ଜନ । ଇଏ ତ ଦୀପା, ହଁ, ଦୀପା ଛଡ଼ା ଇଏ ଆଉ କେହି ହୋଇପାରେ କି ? ସୁରଞ୍ଜନ ସ୍ୱଗତୋକ୍ତି କଲେ । କେଇ ଫରଲଙ୍ଗ୍ ଦୂରରୁ ଶୀତୁଆ ଅପରାହ୍ଣର ମହଳ ଆଲୁଅରେ ଦୀପା ଦିଶୁଥିଲା ମୃଣ୍ମୟୀ ଅପ୍‌ସରାଟିଏ ଯେମିତି ! ଏଇ ବୋଧେ ହସୁଛି ଦୀପା । ମଲ୍ଲୀ ମହ୍ଲାରର ଭ୍ରମ ! ଏଇ ଯେ ହସିଲାବେଳେ ତା' ଗାଲରେ ଭଉଁରି ଖେଳୁଛି । ବାଁ ଗାଲର ସେ ଦୁଷ୍ଟ ବ୍ରଣଚିହ୍ନ ସେମିତି ଅଛି । ଓଃ ସେହି ମେଘିଳ ଆକାଶ ପରି ଆଖି, ଓଠରେ ରକ୍ତଜବା ! ଗହନ କେଶ ତା'ର ନିତମ୍ବ-ସ୍ପର୍ଶୀ । ନୀଳ ନାଏଗ୍ରା । ଇଏ ଦୀପା । ଦୀପାନ୍ୱିତା ଦାସ । ଏକଦା ମନସ୍ତତ୍ତ୍ୱର ଛାତ୍ରୀ । ୧୯୮୦ ମସିହାର କଲେଜ କୁଇନ୍ ।

ସମୟ ଅଟକିଯାଇଛି କି ଦୀପାର ପଦ୍ମପାଦର ଛିଟାରେ !

ମୁହୂର୍ତ୍ତକ ମଧ୍ୟରେ ଭଦ୍ରମହିଳାଙ୍କ ସାମ୍ନାରେ ପହଞ୍ଚିଗଲେ ସୁରଞ୍ଜନ ।

'ତୁମେ ?' ସୁରଞ୍ଜନଙ୍କ ପ୍ରଶ୍ନରେ ତଥାପି ଥିଲା ଅଳନ୍ଧୁର ପ୍ରଲେପ ।

'ଦୀପା, ତୁମ ସହପାଠିନୀ', ଅନୁରାଗର ରାଗିଣୀସିକ୍ତ ଉତ୍ତର । କଣ୍ଠରେ ଥରେ ବସନ୍ତ ବିରାଜିଲେ ବୋଧହୁଏ ଆଉ ଫେରିଯାଏ ନାହିଁ (?), ସୁରଞ୍ଜନ ନିଜକୁ ପ୍ରଶ୍ନ କଲେ । ଗୋଟେ ଚିରସ୍ରୋତା ନଦୀର ନାମ ଦୀପାନ୍ୱିତା, ସେ ଭାବୁଭାବୁ ଅନ୍ୟମନସ୍କ ହୋଇପଡ଼ିଲେ । ଅନେକ ଦିନ ପରେ ଅବା ନିଜ ଭିତରେ ଅନୁଭବ କଲେ ଲକ୍ଷେ ଭାର କଦମ୍ବର ଶିହରଣ !

ଗୋଧୂଳି ଲଗ୍ନରେ, ଟାଟାନଗରୀର ଜୁବିଲି ପାର୍କରେ ଚାଳିଶ ବର୍ଷ ପରେ ଦୀପାନ୍ୱିତା । ଏହା କିପରି ଏକ ସଂଯୋଗ ? ଦୀପା ଯେମିତି ସୁରଞ୍ଜନଙ୍କ ମନକଥା ପଢ଼ିନେଲା । କହିଲା, ମୋତେ ଏଠି ଦେଖି ଆଶ୍ଚର୍ଯ୍ୟ ହେଉଛ ନା । ଏଠି ତମକୁ ଦେଖି ମୁଁ ଯେ ଆଶ୍ଚର୍ଯ୍ୟ ହେଉ ନାହିଁ, ତୁମେ ସେମିତି ଭାବିବା ବି ଠିକ୍ ନୁହେଁ । ତେବେ ଦୀପା ତତ୍‌କ୍ଷଣାତ୍ ସବୁ ରହସ୍ୟର ପେଡ଼ି ଖୋଲିଦେଲା । ଗପିଲା, ଟାଟା ନଗରୀରେ ସେ ପୁଅ ପାଖରେ ରହେ । ପୁଅ ଆଇ.ଟି. ପ୍ରଫେସନାଲ । ବାହା ହେଇନି । ତା' ପାଇଁ କନ୍ୟା ଖୋଜା ଚାଲିଛି । ତିନିବର୍ଷ ତଳେ ହଠାତ୍ ତା' ବାପା ଚାଲିଗଲେ ଗୋଟେ ରୋଡ୍ ଆକ୍ସିଡେଣ୍ଟରେ । ମୁମ୍ବାଇରେ । ସେ ମୁମ୍ବାଇରେ ଥିଲେ

ରିଜର୍ଭ ବ୍ୟାଙ୍କ ଅଫିସର । ତାଙ୍କ ଯିବା ପରଠୁଁ ଦୀପାକୁ ଏକଲାପଣ ଖୁବ୍ ବାଧୁଥିଲା । ମୁମ୍ବାଇ ମହାନଗରୀରେ କିଏ ବା କାହାର ? ପୁଅର ଏକା ଜିଦ୍, ମା' ତୁମେ ମୋ' ପାଖରେ ରୁହ । ପୁଅ କଥା ଆଭଏଡ୍ କରିପାରିଲା ନାହିଁ ଦୀପା । ତେଣୁ ଦୁଇ ବର୍ଷ ହେଲା ଏହି ସହରରେ । ମୁମ୍ବାଇରୁ ଢେର ଧୀରେ ଧୀରେ କଟିଗଲାଣି । ଭୁବନେଶ୍ୱରରେ କିଛି ନାହିଁ । ଗାଁ ଜମିବାଡ଼ିର ହିସାବ ନାହିଁ । ସାହିପଡ଼ିଶାଙ୍କ ସହିତ ସମ୍ପର୍କ ନାହିଁ । ଅଗତ୍ୟା ପୁଅ ପାଇଁ ଭଲ ଓଡ଼ିଆ ଝିଅଟେ ମିଳିବା ମୁସ୍କିଲ ।

ବୟସ୍କା ହେଲା ପରେ ଦୀପା ପ୍ରଗଲ୍‌ଭା ହୋଇଯାଇଛି । କଲେଜ ବେଳେ ଥିଲା ଭାରି ଚୁପ୍‌ଚାପ୍, ଇଣ୍ଟ୍ରୋଭର୍ଟ । ସୁରଞ୍ଜନ ମନେମନେ ହସିଲେ ।

ପ୍ରଥମେ କେବେ କେଉଁଠି ଭେଟ ହୋଇଥିଲା ଦୀପା ସହିତ ମନେ ନାହିଁ ସୁରଞ୍ଜନଙ୍କର । ମନେ ନାହିଁ କେଉଁଠି ହସ ଦିଆନିଆ ହୋଇଥିଲା, ବନ୍ଧା ହୋଇଥିଲା ନୀରବତା; ପୁଣି ନୀରବତା ରୂପ ନେଇଥିଲା ଶବ୍ଦର । କିନ୍ତୁ ଏତିକି ମନେଅଛି ଯେ ଦୀପା ସହ ଦେଖାହେଲା କ୍ଷଣି ଅଦିନରେ ମଳୟ ବହେ, ମର୍ମରରେ ମୁଖରିତ ହୁଏ ଚଉପାଶ । ଫୁଲ ଓ ପ୍ରଜାପତିମାନଙ୍କର ଗୋଟେ ନିଆରା ସାମ୍ରାଜ୍ୟ ପାଲଟିଯାଏ ଟାଙ୍ଗରା କଲେଜ କ୍ୟାମ୍ପସ୍ । ମନେଅଛି ଦୀପା ଦେହର ବାସ୍ନା, ତା' ଅଳ୍ପ କଥାର ଭିଜାଭିଜା ଜହ୍ନରାତି । ମନେଅଛି ପୁଣି ସୁରଞ୍ଜନଙ୍କର, ଦୀପା କଲେଜ୍ କୁଇନ୍ ମୁକୁଟ ପିନ୍ଧିଲାବେଳେ ସେ ହୋଇଥିଲେ କଲେଜର ଲିଟେରାରି ଚାମ୍ପିୟନ୍ । ଅଧ୍ୟାପକ, ଅଧ୍ୟାପିକାମାନେ ସୁରଞ୍ଜନଙ୍କ ଭିତରେ ଗୋଟେ ଉଜ୍ଜ୍ୱଳ ସମ୍ଭାବନା ଦେଖୁଥିଲେ ଏବଂ ସହପାଠୀମାନେ ସେବେଠାରୁ ଡାକୁଥିଲେ ମିଷ୍ଟର କଲେକ୍ଟର । କିନ୍ତୁ ସେ ସେପରି କିଛି ହେଲେ ନାହିଁ । ଖାମଖିଆଲି ଭାବରେ ସର୍ବଭାରତୀୟ ପରୀକ୍ଷା ସବୁରେ ବସିଲେ । ସମସ୍ତଙ୍କୁ ନିରାଶ କଲେ । ନିଜକୁ ଭଣ୍ଡିଲେ । ଶେଷରେ 'ସେଲ୍'ରେ ଭର୍ତ୍ତି ହୋଇଗଲେ । ଇସ୍ପାତ ନଗରୀ ଟାଟାରେ ତାଙ୍କ ଚାକିରି ଆରମ୍ଭ ଓ ଶେଷ ।

ସୁରଞ୍ଜନ କହିଲେ, ଝାଡ଼ଖଣ୍ଡ ବର୍ତ୍ତମାନ ମୋ' ରାଜ୍ୟ । ପୁଅବୋହୂଙ୍କର ଚାକିରି ଗୋଟିଏ କମ୍ପାନୀରେ, ଏହି ଟାଟାନଗରୀରେ । ବୋହୂଟି ବିହାରବାଲୀ । ଆମେ ସମସ୍ତେ ଏଠି ଏଷ୍ଟାବ୍ଲିଶଡ । ଭୁବନେଶ୍ୱରରେ ଘରଟେ ଅଛି । ଭଡ଼ା ଆସେ । ଶ୍ରୀମତୀ ଏବେ ଝିଅ ପାଖରେ, ନ୍ୟୁୟର୍କରେ । ଝିଅର ପିଲା ହବ । ଆଜିକାଲି ଜୀବନ ଏମିତି । ସବୁ ଅଛି, କିଛି ନାହିଁ । କେତେ ହୋ-ହାଲ୍ଲା, କିନ୍ତୁ ବିଜନତାର ଶେଷ ନାହିଁ । ବିଜୁଳି ଆଲୁଅ ସଞ୍ଜର ସଂକେତ ଦେଲା ।

ଫେରିଯିବାକୁ ତରବର ହେଉଥିଲା ଦୀପା । ସଞ୍ଜର ଭିଡ଼ ରାସ୍ତାରେ ସେ କୁଆଡ଼େ ଭଲ ଡ୍ରାଇଭିଂ କରିପାରେ ନାହିଁ । ସୁରଞ୍ଜନ କହିଲେ, ମୁଁ ବି ସେମିତି ।

ସବୁ ବିଦ୍ୟା ଜଣା, କେଉଁଥିରେ କିନ୍ତୁ ପାରଙ୍ଗମତା ନାହିଁ । ତେବେ ମାତ୍ର ମିନିଟିଏ ସମୟ ନେବି– ପଚାରିବାରେ ଦ୍ୱିଧା ନାହିଁ ଯେ ମୋତେ ହଷ୍ଟେଲ ଆସିବାକୁ କହି ସେଦିନ ଦେଇଥିବା ସମୟ ପୂର୍ବରୁ ତୁମେ ଚାଲିଗଲ କେମିତି ? ସେଦିନ ଥିଲା ପୁଣି କଲେଜରେ ତୁମର ଶେଷଦିନ । ଅପେକ୍ଷା କରିପାରିଲ ନାହିଁ ?

– ମୋତେ ନେବା ପାଇଁ ବାପା ନିଜେ ଆସିବେ ବୋଲି ମୁଁ ଭାବି ନ ଥିଲି । ପୁରୁଣାକାଳିଆ ହେଡ୍‌ମାଷ୍ଟର ସେ । ନିର୍ଦ୍ଦେଶ ଦେଇ ଜାଣନ୍ତି, କିଛି ଶୁଣନ୍ତି ନାହିଁ । ବିଳମ୍ବ ଶବ୍ଦଟି ତାଙ୍କ ଡିକ୍ସନାରିରେ ନ ଥାଏ ।

– ମୁଁ କିନ୍ତୁ ତୁମକୁ ଅନେକ ଖୋଜିଲି । କୃଷ୍ଣଚୂଡ଼ାକୁ ତୁମ କଥା ପଚାରିଲି ଯେ ସେ ଈର୍ଷାରେ ଆହୁରି ଲାଲ୍ ପଡ଼ିଗଲା ଅବା ! ଆକାଶ, ବତାସ, ଜଳ– ସମସ୍ତେ ମୋତେ ଦେଖି ନ ଦେଖିଲା ପରି ହେଲେ । ଚଢ଼େଇମାନେ ବି ଗୀତ ଗାଇବା ବନ୍ଦ କରିଦେଲେ । ଆଉ ତୁମ ସାଙ୍ଗମାନେ ? ତାଙ୍କୁ ତୁମ ଠିକଣା ମାଗିଲି ଯେ, ପାଇଲି ଚଟୁଳ ହସର ଫାଜଲାମି !

– ମୁଁ ବି ଘରକୁ ଫେରିଲାବେଳେ ତୁମ କଥା ହିଁ ଭାବିଭାବି ଫେରୁଥିଲି । ବାପା ଥରେ ଅଧେ ମୋ' ଅନ୍ୟମନସ୍କତା ପଢ଼ି ନେଲେ । କ'ଣ ସବୁ ଭାବୁଛୁ ? – ପଚାରିଲେ । ପରୀକ୍ଷା କଥା ଭାବୁଛି ବୋଲି ମୁଁ ଚଟାପଟ୍ ମିଛ କହିଲି । ଘରେ ପହଞ୍ଚିଲା ପରେ ମୁଁ ତୁମକୁ କେତେ ଖୋଜିଛି । କିନ୍ତୁ ତୁମ ସୀମା ସିନା ଆକାଶ, ମୋର ଯେ ଅଗଣା !

– ମୋର କିନ୍ତୁ ସେଦିନ ତୁମକୁ ଗୋଟେ କଥା କହିବାର ଥିଲା ।

– ମୋର ବି !

– ତା'ହେଲେ କହୁନ !

– ନା, ତୁମେ ଆଗ କୁହ !

– ନା, ନା, ତୁମେ ଆଗ !

ଦୀପାର ଜିଦ୍ ଆଗରେ ସବୁବେଳେ ହାରି ଯାଉଥିଲେ ସୁରଞ୍ଜନ । ଏବେ ପୁଣି ହାରିଗଲେ । କହିଲେ, 'ଆଇ ଲଭ୍ ୟୁ' କହିବାକୁ ଯାଇଥିଲି ତୁମ ପାଖକୁ ।

ଦୀପା ମୁହଁରେ ମେଞ୍ଚେ ଅବିର ବୋଳି ହୋଇଗଲା କି ? ଝାପ୍‌ସା ଆଲୁଅରେ କିଛି କିନ୍ତୁ ଦିଶୁ ନ ଥିଲା ।



# ଗୋଟେ ଘରପୋଡ଼ିର ଦୃଶ୍ୟ

ଗଙ୍ଗନଗର ଗଳିରେ ଗଲାବେଳେ ସୁମନ୍ୟୁଙ୍କ ସ୍କୁଟର୍‌ର ବେଗ ଆପେ ଆପେ କମି କମି ଯାଏ ଏବଂ ପାଞ୍ଚ ନମ୍ବର କ୍ୱାର୍ଟର୍ସ ସାମ୍ନାରେ ନିଜ ଅଜାଣତରେ ଅଟକି ରହେ । କ୍ୱାର୍ଟର୍ସଟିର ହତା ଭିତରେ ଥିବା ଚମ୍ପାଗଛକୁ ସେ ମନଭରି ଦେଖନ୍ତି, ପୁଲକିତ ହୁଅନ୍ତି । ସେହି ଗଛରେ ବାରମାସୀ ଚମ୍ପା ଫୁଟେ । କ୍ୱାର୍ଟର୍ସ ଆଡ଼େ ସେ ପୁଣି ଆଖି ପହଁରାନ୍ତି । ଗେଟ୍ ଖୋଲି ଭିତରକୁ ପଶିଯିବାପାଇଁ ତାଙ୍କର ଭାରି ଇଚ୍ଛା ହୁଏ । ବେଳେବେଳେ ପାଦ ଆକଟ ମାନେ ନାହିଁ ।

ସୁମନ୍ୟୁ ଏପର୍ଯ୍ୟନ୍ତ ଜିଇଥିବା ଜୀବନର ଅଧାକାଳ ବିତିଛି ସେହି ସରକାରୀ ଘରେ । ଘରଟି ପ୍ରତି ଥିବା ଅଦମ୍ୟ ମୋହକୁ ସେ ଏତେଶୀଘ୍ର ଏଡ଼େଇ ପାରନ୍ତେ କେମିତି ? ଅଧ୍ୟାପନାରୁ ଅବସର ନେବାର ଅବଧି ଦଶନ୍ଧି ଡେଇଁଲାଣି । ଏହି ଦଶବର୍ଷ ଭିତରେ ଅଧ୍ୟାପନାର କେତେ ସ୍ମୃତି ହୁଏତ ମରିହଜି ଯାଇଛି ଅଥଚ ଗଙ୍ଗନଗର ସରକାରୀ ଘରଠୁ ସେ ଦଶ ମିନିଟ୍ ପାଇଁ ଦୂରେଇ ରହିପାରି ନାହାନ୍ତି ।

ଭବାନୀପାଟଣା କଲେଜରୁ ଅଧ୍ୟାପକ ଜୀବନ ଆରମ୍ଭ କରିଥିଲେ ସୁମନ୍ୟୁ । ଆଡ୍‌ହକ୍ ନିଯୁକ୍ତି । ବାଣୀବିହାରରୁ ସେ ସିଧା ଯାଇଥିଲେ ଭବାନୀପାଟଣା । ସେଠି ବର୍ଷେ ଅଧେ ଚାକିରି । ପି.ଏସ୍.ସି. ପାଇଲା ପରେ ତାଙ୍କର ବଦଳି ହୋଇଥିଲା ବାରିପଦା ଏମ୍.ପି.ସି. କଲେଜକୁ । ବାରିପଦାରେ ତାଙ୍କର ବାହାଘର ଶୈଳଙ୍କ ସହ । ଶୈଳ ତାଙ୍କର ପ୍ରିୟତମା ଛାତ୍ରୀ, ସୁନ୍ଦରୀ, ସୁକୁମାରୀ । ସେକାଳର ସେ ପୁଣି ଛାତ୍ର ୟୁନିଅନ୍‌ର ସଭାନେତ୍ରୀ, କଲେଜ କ୍ୟାମ୍ପସର ପ୍ରଭଞ୍ଜନା- ଶୈଳସୁତା ସାମନ୍ତରାୟ ।

ପ୍ରଭଞ୍ଜନା କିନ୍ତୁ ପାଲଟିଥିଲା ଦଲକାଏ ମୃଦୁମଳୟ ସୁମନ୍ୟୁଙ୍କ ଆନୁକୂଲ୍ୟରେ ।

ଶୈଳ କନ୍‌ସିଭ କଲା ପରେ ଯାଇ ବଦଳି ନିଶା ଘାରିଲା ସୁମନ୍ୟୁଙ୍କୁ । କଟକ ବା ଭୁବନେଶ୍ୱର ଆସିବାପାଇଁ ସେ ବ୍ୟାକୁଳ ହେଲେ । ତେବେ ତାଙ୍କ ମାଉସୀପୁଅ ଭାଇର ଶଳା ଇତିମଧ୍ୟରେ ବିଧାୟକ ହୋଇ ନ ଥିଲେ ବଦଳି ଫଦଳି ହୁଏତ ଦିଲ୍ଲୀକା ଲଡ୍ଡୁ ହୋଇ ରହିଯାଇଥାନ୍ତା । ଯୁବ ବିଧାୟକଙ୍କ ଟାଣ ବାଣରେ ସେ ଏକାମାଡ଼କେ ଏମ୍.ପି.ସି.ରୁ ବି.ଜେ.ବି. । ପୁଣି ମାସକ ଭିତରେ ସରକାରୀ ଘର, ଗଙ୍ଗନଗର ପରି ଅତି ବଡ଼ ହାକିମମାନଙ୍କ ନିବାସାଞ୍ଚଳରେ ।

ଅଧିକାଂଶ ସରକାରୀ ଘର ଛେଉଣ୍ଡ ପରି ବିକଳ ସ୍ୱଭାବର । ଛାତରୁ ପାଣି ଗଳୁଥାଏ କେଉଁଠି ତ ଆଉ କେଉଁଠି କାନ୍ଥରେ ଅସଂଖ୍ୟ ମାନଚିତ୍ର ଅଙ୍କିତ ହୋଇଥାଏ । ବନ୍ଧୁର ଚଟାଣ ସାଙ୍ଗକୁ ଟାଙ୍ଗରା ଅଗଣା କୌଣସି କୌଣସି ସରକାରୀ ଘରକୁ ବୈଧବ୍ୟ ବିରାଗରେ ମଳିନ କରିଥାନ୍ତି । ସୁମନ୍ୟୁଙ୍କ ତଜ୍ଜାତୀୟ ଘରଟି ଶୈଳଙ୍କ ହାତର କାଉଁରି ଛୁଆଁରେ କିନ୍ତୁ ପୁନର୍ଜନ୍ମ ଲଭିଥିଲା । ଘରକୁ ସଫାସୁତରା ରଖିବାରେ କେହି ସରି ହେବେ ନାହିଁ ଶୈଳଙ୍କର । ବିନା ଚାକର-ବାକରରେ ଘରଟି ଥାଏ ସଦାସଫେଦ, ପରିଚ୍ଛନ୍ନ ।

ଘର ଆଗରେ ଛୋଟମୋଟ ବଗିଚାଟିଏ ନ ଥିଲେ ସେ ବା କି ଘର ?

ବଗିଚାଟିଏ ତିଆରି କରିବାପାଇଁ ସୁମନ୍ୟୁଙ୍କ ଅପେକ୍ଷା ଅଧିକ ଆଗ୍ରହ ଥିଲା ଶୈଳଙ୍କର । ଟାଣଟୁଣ ବଜେଟ୍‌ରେ ପୁଣି ବଗିଚା ବିଳାସ ! କିନ୍ତୁ କିଛି ଗୋଟେ କରିବାପାଇଁ ଶୈଳଙ୍କ ମନରେ ଝୁଙ୍କ ପଶିଲେ, ସେଥିରୁ ସେ ମୁକୁଳି ପାରନ୍ତି ନାହିଁ । ଶୈଳଙ୍କ ପାଇଁ ହିଁ ଅରସିକ ପଦାର୍ଥବିଜ୍ଞାନୀ ସୁମନ୍ୟୁ ବଗିଚା ପ୍ରତି ଆକୃଷ୍ଟ ହୋଇଥିଲେ । ଜଣେ ମାଳୀର ସହାୟତାରେ ଶୈଳଙ୍କ ରୁଚି ମୁତାବକ ବଗିଚାଟାଏ ଗଢ଼ିଉଠିଲା କ୍ୱାର୍ଟର୍ସ ସାମ୍ନାରେ । ନାନା କିସମର ଦେଶୀ ବିଦେଶୀ ଫୁଲଗଛ, ଛୋଟ ଅଥଚ ସୁନ୍ଦର ଲନ୍ ପରିତ୍ୟକ୍ତ ପ୍ରାୟ ସରକାରୀ ଘରର ଶୋଭା ବହୁଗୁଣିତ କଲା । ଶୋଇବା ଘର ଦକ୍ଷିଣରେ ଝର୍କା, ମୁକ୍ତ ଦକ୍ଷିଣା ପବନର ଗତିପଥ । ସେଠାରେ ମଲ୍ଲୀମାଳତୀର ସମାହାର । ବଗିଚା କାମରେ ନିଜେ ଲାଗିଯାନ୍ତି ଶୈଳ, ତାଙ୍କ ଦେଖାଦେଖିରେ ସୁମନ୍ୟୁ । ମାଳୀ ନ ଆସିଲେ ଚିନ୍ତା ନ ଥିଲା ।

ତାର ବାଡ଼କୁ ଲାଗି ଗୋଟେ କଲମି ଆମ୍ବଗଛ ଲଗାଇଥିଲେ ସୁମନ୍ୟୁ । ବର୍ଷ କେତୋଟି ଭିତରେ ଗଛଟି ବଉଳିଲା, ଫଳିଲା । ଓଃ... କି ମିଠା ସେ ଆମ୍ବ । ଆମ୍ବଗଛର ଅଳ୍ପ ଦୂରରେ ଗୋଟେ ଚମ୍ପା ଗଛ ଲଗାଇଲେ ଶୈଳ । ଚମ୍ପା ମହକ ପ୍ରତି ଶୈଳଙ୍କର ଆକର୍ଷଣ ଅହେତୁକ । ତାଙ୍କ ଦେଖାଦେଖିରେ ଚମ୍ପାଗଛଟି ପ୍ରତି ସୁମନ୍ୟୁଙ୍କ ଅନୁରାଗର ବି ସୀମା ରହିଲା ନାହିଁ । ପତ୍ରଫୁଲରେ ଭରା ଚମ୍ପାଗଛଟି ସହିତ ଶୈଳଙ୍କର ଅପୂର୍ବ ସାମଞ୍ଜସ୍ୟ ଥିବା କ୍ରମଶଃ ଅନୁଭବ କଲେ ସୁମନ୍ୟୁ । ଅନେକ ସମୟରେ ସେ ଚମ୍ପାଗଛଟିକୁ ଚାହିଁରହନ୍ତି ସନ୍ତୁଷ୍ଟ ନୟନରେ । ତା' ଦେହରେ ଦେହ ବଜାନ୍ତି ଜାଣିଜାଣି । ବେଳେବେଳେ ଗଛଟି ସହ କଥାହୁଅନ୍ତି ଯେମିତି ! ଭିଡ଼ିଧରନ୍ତି ଅବା ତାକୁ ନିବିଡ଼ତାରେ କେବେ କେଉଁ ଅଳସ ଅପରାହ୍ଣର ନିରୋଳା ମୁହୂର୍ତ୍ତରେ ।

ସେହି ସରକାରୀ ଘର ଭିତରେ ବଡ଼ଝିଅର ଦରୋଟି ଉଚ୍ଚାରଣ, ହସକାନ୍ଦ, ଅଳିଅର୍ଦଳି ଶିଳାଲିପି ହୋଇ ରହିଛି । ସେଦିନର ଛୋଟ ଛୋଟ ଦୁଃଖସବୁ ଏବେ ଭାରି

ମିଠାଲାଗେ । ମା'ହବାର ପହିଲି ଅନୁଭୂତିରେ ଯେମିତି ଶିହରିତ ହୋଇଥିଲେ ଶୈଳ, ସମଭାବରେ ଆକ୍ରାମାକ୍ରା ହୋଇଥିଲେ ଯନ୍ତ୍ରଣାର ଦୀର୍ଘ ସୁଡ଼ଙ୍ଗରେ । ଯନ୍ତ୍ରଣାଦଗ୍ଧ ଶୈଳଙ୍କୁ କ୍ୟାପିଟାଲ ହସ୍ପିଟାଲ ବୋହିନବାର ସ୍ମୃତି ଏବେବି ସଜୀବ ସୁମନ୍ୟୁଙ୍କ ସ୍ମୃତିରେ । ହସ୍ପିଟାଲ କ୍ୟାବିନ୍‌ରେ ପାଖାପାଖି ସପ୍ତାହେବ୍ୟାପୀ ଯନ୍ତ୍ରଣା । ପ୍ରସୂତିବିଜ୍ଞାନ ସେତେବେଳେ ସେହି ଅବସ୍ଥାରେ ଥିଲା । ତେବେ ଟିକିଝିଅକୁ ସାଥିରେ ଧରି ହସ୍ପିଟାଲ୍‌ରୁ ଘରକୁ ଫେରିବାର ଯେଉଁ ଉଚ୍ଛଳ ଅନୁଭବ, ତାହା ଏକ ଚିରନ୍ତନ ଉଚ୍ଛ୍ୱାସ ।

ଆଜିକାଲିଠାରୁ ଝିଅମାନେ ସେତେବେଳେ ଥିଲେ ଅଧିକ ଅଲୋଡ଼ା । ଝିଅଟିଏ ଅର୍ଥାତ୍ ଗୋଟେ ଅନାବଶ୍ୟକ ଅର୍ଥବୋଝ । ବୋଉର କିନ୍ତୁ ମତ ଥିଲା ଓଲଟା । ପ୍ରଥମ ସନ୍ତାନଟି ଝିଅ ମାନେ ଘରକୁ ଲକ୍ଷ୍ମୀଙ୍କର ଆଗମନ । ତମମାନଙ୍କ ଭାଗ୍ୟ ବଦଳିବା ବେଳ ଆସିଗଲା ଜାଣ ବୋଲି ବୋଉ ହିଁ ଆଶ୍ୱାସନା ଦେଇଥିଲା ।

ସେହି ଛୋଟ ସରକାରୀ ଘର ଅଗଣାରେ ତା'ର ଧୂଳି ଖେଳ । ସେଇଠି ସେ ପଡ଼ିଉଠି ଚାଲି ଶିଖିଛି । ସେହି ଘରେ ସେ ବୋଉବାପା କହିବା ଶିଖିଛି, କେବେ କାନ୍ଦିକାନ୍ଦି ମୁହଁ ଫୁଲେଇଛି ତ କେବେ ହସିହସି ବେଦମ୍ ହୋଇଛି । ସେଇଠି ତା' ପାଠପଢ଼ାର ଆରମ୍ଭ, ସେଇଠି ପୁଣି ତା' ଗୀତଶିଖା । ଶୈଳ ତାକୁ କୋଳରେ ଧରି କେତେ ନାନାବାୟା ଗୀତ ଗାଇଛନ୍ତି, ଶୁଣାଇଛନ୍ତି କେତେ ମନମତାଣିଆ କଥାକାହାଣୀ ।

ପୁଅ ଜନ୍ମହେଲା ବେଳକୁ ଆଉ ଆଗ ଉଲ୍ଲାସ ନ ଥିଲା । ତଥାପି ଖୁବ୍ ଜାକଜମକରେ ପାଳନ କରାଯାଇଥିଲା ତା' ଏକୋଇଶା ପୂଜା । ସେତେବେଳକୁ ଭୁବନେଶ୍ୱରର ବୁଦ୍ଧିଜୀବୀ, ଛାତ୍ର, ଅଭିଭାବକ ମହଲରେ ସୁପରିଚିତ ହୋଇଯାଇଥିଲେ ସୁମନ୍ୟୁ । ବଡ଼ବଡ଼ ହାକିମମାନଙ୍କ ପିଲାମାନେ ତାଙ୍କ ପାଖରେ ପାଠ ପଢୁଥିଲେ, କେହିକେହି ବି ତାଙ୍କ ଘରକୁ ଆସୁଥିଲେ ପାଠ ବୁଝିବାପାଇଁ । ପଦାର୍ଥବିଜ୍ଞାନର ଜଟିଳ ତତ୍ତ୍ୱକୁ ସାବଲୀଳ ଭାବରେ ବୁଝାଇବାରେ ସେ ଥିଲେ ଅଗ୍ରଣୀ ଅଧ୍ୟାପକ ।

ଭୁବନେଶ୍ୱରରେ ରହୁରହୁ ସେ ରହିଗଲେ ଅବଶିଷ୍ଟ ଚାକିରି କାଳ । ଖଡ଼ାବଡ଼ି ଥୋଡ଼-ଥୋଡ଼ ବଡ଼ି ଖଡ଼ା ପରି ବିଜେବି, ରମାଦେବୀ, ରାଜଧାନୀ – ରାଜଧାନୀ, ରମାଦେବୀ, ବିଜେବି । ମଝିରେ ଥରେ ଅବଶ୍ୟ ସେ ରେଭେନ୍ସାକୁ ବଦଳି ହୋଇଥିଲେ । କିନ୍ତୁ ଛାଡ଼ି ନ ଥିଲେ ଗଙ୍ଗନଗର ଘର । ଟ୍ରେନ୍‌ରେ ଯିବାଆସିବା କରିଥିଲେ ସେହି କେତେ ଦିନ – ପାଖାପାଖି ଦୁଇ ବର୍ଷ । ତା'ପରେ ସେ ଆଉ କେଉଁଠିକୁ କେବେ ବଦଳି ହୋଇ ନାହାନ୍ତି । ପ୍ରମୋଶନ ହେଲା, ସେ ଭାଇସ୍ ପ୍ରିନ୍ସିପାଲ୍ ହେଲେ । ରହିଲେ ସେହି ବିଜେବିରେ, ଅବଶ୍ୟ ବିଜେବି ସାନ୍ଧ୍ୟ-କଲେଜରେ ।

ଚାକିରିର ଶେଷ କେତେବର୍ଷ ସିନା ସେ ସ୍ୱଚ୍ଛଳ ଜୀବନଯାପନ କରୁଥିଲେ, କିନ୍ତୁ ପହିଲି ଦିନଗୁଡ଼ିକର ଅସୁବିଧା, ଅନଟନ ସବୁ ଶୁଖିଆସୁଥିବା କ୍ଷତପରି ଏବେ ବି ଉଖୁରେଇ ହୁଅନ୍ତି । ପିଲାମାନଙ୍କର ପାଠପଢ଼ା, ବାହାବ୍ରତ, ବୋଉର ବେମାରି, ଧାର-ଉଧାର, ସେଟଲ୍‌ମେଣ୍ଟ ନାଁରେ ଗାଁ ଜମିର ଜାଲିଆତି, ଭାଇଭଗାରିଙ୍କ ମାଲିମୋକଦ୍ଦମା, ଏମିତି ସବୁ ଦନ୍ଦଗଞ୍ଜର ତାଲିକା ଲମ୍ବା । ସେସବୁର ମୂକସାକ୍ଷୀ ସେହି ଘର, ତା'ର କାନ୍ଥ, ଚଟାଣ, ଚୌକାଠ ପୁଣି ଅଗଣା । ସେହି ଘରେ ପୁଣି ଝିଅ ମଙ୍ଗୁଳା, ଯୋଡ଼ି ନାଗରାର ନିନାଦ, ପୁଅର ବରବେଶ ତ ବୋହୂର ଗୃହପ୍ରବେଶ, ଏଡ଼େ ଟିକେ ଘରେ କେଡ଼େ ବଡ଼ ବଡ଼ ଘଟଣାସବୁ ଘଟିଛି । ଘର ତାକୁ ଆପଣେଇଛି । ସହିଛି ସମସ୍ତଙ୍କ ଅଝଟ, ଅଭିମାନ ।

ଝିଅ ପାଇଁ ବରଖୋଜା, ପୁଅର ବେକାରି ବେଳର କଥା କିଛି ବି ଭୁଲି ନାହାନ୍ତି ସୁମନ୍ୟୁ । ସେହି ଘର, ସେହି ଖଟ, କେତେ ରାତି ଉଜାଗର, କେତେ ଦୁଶ୍ଚିନ୍ତା, କେତେ ଦୁଃସ୍ୱପ୍ନ । ବୋଉର ଖୁଁ ଖୁଁ କାଶ ସାରାରାତି, ବେ କୀ ପାଖ ଛୋଟ ଘରଟିରେ । ତଥାପି ପ୍ରତିଟି ସକାଳ ଆସେ ନୂଆ ଚେହେରାରେ । ଶୈଳଙ୍କ ହସହସ ମୁହଁ, ଚମ୍ପା ଗଛର ପରିପୂର୍ଣ୍ଣତା, ଫୁଲଭର୍ତ୍ତି ବଗିଚା, ସୁନା ସକାଳର ଚମକ, ଏସବୁ ଭିତରେ ରାତିର ଦୁଶ୍ଚିନ୍ତା ରାତି ପରି ପାହି ଯାଏ । ପିଲାମାନଙ୍କ କୋଳାହଳର କାକଳିରେ ଯେଡ଼େ ଭୀଷଣ ହୁଅନ୍ତୁ ନା କାହିଁକି ଦୁଃଖମାନେ ଦଣ୍ଡେ ନରମି ଯାଆନ୍ତି ।

ଖରାଦିନେ ରାତି ଅଧ ପର୍ଯ୍ୟନ୍ତ କେବେକେବେ ଅବୋଲକରା ହେଉଥାଏ ନିଦ । ମଲ୍ଲୀମହକର ବତାସ ବହୁଥାଏ ଝର୍କାଫାଙ୍କରୁ । ଧାରେ ଜହ୍ନଆଲୁଅରେ ଝାପ୍‌ସା ଆଲୋକିତ ଶୈଳଙ୍କ ଘନକେଶରାଶି ଭରାନଈର ଭ୍ରମ ସୃଷ୍ଟି କରୁଥାଏ । ସୁମନ୍ୟୁ ଫେରିଯାନ୍ତି କୋଡ଼ିଏ ବର୍ଷ ତଳକୁ । ଶୈଳଙ୍କ ମସୃଣ କପାଳ ଛୁଇଁବାପାଇଁ ତାଙ୍କ ମନ ବଳେ । କିନ୍ତୁ କାହିଁକି କେଜାଣି ତାଙ୍କୁ ଲାଜଲାଜ ଲାଗେ । ଅନ୍ୟ କୋଠରିରେ ବଢ଼ିଲା ପୁଅଝିଅ, ରୋଗିଣା ମା' । କିନ୍ତୁ ତାଙ୍କର ମନେହୁଏ ଶୈଳ ଯେମିତି ଶୋଇ ନାହାନ୍ତି ଏବଂ ତାଙ୍କଠାରୁ ଶୈଳଙ୍କ ଦୂରତା ଧୀରେ କମି କମି ଯାଉଛି ।

ସେହି ଘରଟିର ପାଖ ମାଡ଼ିଲେ ଏମିତି ଅପାସୋରା ଦିନସବୁ ଉଭା ହୁଅନ୍ତି ନୂଆହୋଇ । ମହଣେ ମଲ୍ଲୀମହକରେ ତାଙ୍କ ହୁଗୁଳା ଦେହରେ ଶିହରଣ ଜାଗେ । ଚମ୍ପାଫୁଲ ବାସ୍ନାରେ ସେ ଅବା ବାଟ ହୁଡ଼ନ୍ତି !

ବିକଳାଙ୍ଗ ଯେମିତି ଏବେ ସେ ଘର, ଫସଲକଟା କ୍ଷେତପରି ଫିକାପଣରେ ଉବୁଟୁବୁ । ଉଜୁଡ଼ିଗଲାଣି କେବେଠାରୁ ସବୁଜ ଲନ୍, ରଙ୍ଗବେରଙ୍ଗର ଫୁଲଗଛ, ଏବେ କାନ୍ଥବାଡ଼ରେ ସ୍ଲୋଗାନ, ଧଉଳା ହୋଇ ନାହିଁ ଘରଟି କେତେ ଦିନୁଁ ।

ଘରୁ ବିଦାହେଲା ବେଳେ ପିଲାଟିଏ ପରି କାନ୍ଦି ପକାଇଥିଲେ ସୁମନ୍ୟୁ ସେଦିନ । ଝିଅ ଶାଶୂଘରକୁ ଗଲା ବେଳେ ବା ବୋଉ ସ୍ୱର୍ଗବାସୀ ହେଲାବେଳେ ବି ଏତେ ଅମାନିଆ ହୋଇ ନ ଥିଲା ତାଙ୍କ ଆଖିଲୁହ । ତେବେ ତାଙ୍କ ମୁର୍ଚ୍ଛନା ଦି'ଗଡ଼ ପ୍ରାୟ ହୋଇଯାଇଥିଲା, ସେ ଯେତେବେଳେ ଜାଣିଲେ ଯେ ତାଙ୍କ ପରେ ଘରଟି ଗୋଟେ ସାମାଜିକ ସଙ୍ଗଠନକୁ ଦିଆଯାଉଛି । ସଙ୍ଗଠନ ନାଁରେ ସରକାରୀ ଘର ହାତେଇବା କେଉଁ ବା ବଡ଼ କଥା ରାଜଧାନୀରେ ! କିନ୍ତୁ ତାଙ୍କ ପ୍ରିୟ ଘରଟି ଅପ୍ରିୟଜନଙ୍କ କବ୍‌ଜାକୁ ଚାଲିଯିବା କଥାଟାକୁ ସେ ବା କିପରି ସହଜରେ ଗ୍ରହଣ କରିପାରିଥାନ୍ତେ ! ସମସ୍ତେ କ'ଣ ଘରର ଯତ୍ନନେଇ ପାରନ୍ତି !

ଅବସରର ଅବ୍ୟବହିତ ପୂର୍ବରୁ ଏକ ସମ୍ଭ୍ରାନ୍ତ ଆପାର୍ଟମେଣ୍ଟରେ ଗୋଟେ ତିନି କୋଠରି ବିଶିଷ୍ଟ ଘର କିଣି ସାରିଥିଲେ ସୁମନ୍ୟୁ । ଚାକିରି ଜୀବନର ଶେଷ ଆଡ଼କୁ ତାଙ୍କ ଆର୍ଥିକ ଅବସ୍ଥାରେ ଅଭୂତପୂର୍ବ ପରିବର୍ତ୍ତନ ଆସିଥିଲା । ପିଲାମାନଙ୍କ ପାଠପଢ଼ା, ବୋଉର ବେମାରଆମାର ଓ ମାଲିମୋକଦ୍ଦମାର ଯେ କେବଳ ଅନ୍ତ ଘଟିଥିଲା ତା' ନୁହେଁ, ୟୁ.ଜି.ସି. ଦରମା ହାର ସାଙ୍ଗକୁ ବେତନ କମିସନଙ୍କ ଉଦାରତା ଓ ବିଦେଶୀ କମ୍ପାନୀରେ ପୁଅର ନିଯୁକ୍ତି ତାଙ୍କ ସ୍ୱଚ୍ଛଳତାକୁ ସ୍ୱାଚ୍ଛନ୍ଦ୍ୟରେ ବଦଳାଇ ଦେଇଥିଲା । ରାଜଧାନୀର ହୃତ୍‌ପିଣ୍ଡ ଉପରେ ସିନା ସଦର୍ପ ଠିଆ ହୋଇଥିଲା ଆପାର୍ଟମେଣ୍ଟ, ହେଲେ ତାଙ୍କର ବୋଲି ଘରଟି ଅଗଣିତ ଖୋପମଧ୍ୟରୁ ଥିଲା ଅନ୍ୟତମ । ଜାଗା କିଣି ଘର କରିବାର ବିକଳ୍ପ ଅବଶ୍ୟ ଥିଲା ତାଙ୍କ ପାଖରେ । କିନ୍ତୁ ଜମିର ମାଲିକାନା ସମ୍ପର୍କିତ ଆଶଙ୍କା ଏବଂ ଘରତିଆରି ବିଷୟରେ ଅନଭିଜ୍ଞତା ତାଙ୍କୁ ବିକଳ୍ପ ବିଚାରରୁ କ୍ଷାନ୍ତ କରିଥିଲା । ସୁତରାଂ ସେ ଆପାର୍ଟମେଣ୍ଟ ଘରେ ଯାଇ ରହିଲେ । କିନ୍ତୁ ତାହା କଦାପି ଗଙ୍ଗନଗର ସରକାରୀ ଘର ସହିତ ତୁଳନୀୟ ନ ଥିଲା ।

ଚମ୍ପା ଚନ୍ଦନ କଥା ଦୂରେ ଥାଉ ଟଗର ଗଛ ବା ତୁଳସୀ ଚାରାଟାଏ ଲଗାଇବା ପାଇଁ ଆପାର୍ଟମେଣ୍ଟରେ କୌଣସି ସୁବିଧା ନ ଥିଲା । ପନିପରିବା ସାଙ୍ଗକୁ ପୂଜାପାଇଁ ଫୁଲକିଣା ଦୈନନ୍ଦିନ କାମରେ ପରିଣତ ହୋଇଥିଲା । ମଲ୍ଲୀମାଳତୀ ବା ଆମ୍ବବଉଳ ବାସ୍ନା ସେଠି ସାତସପନ । ଆପାର୍ଟମେଣ୍ଟ ଆଗରେ ଥିବା କ୍ରୋଟେନ୍‌ଜାତୀୟ କୋଡ଼ୋଟି ଗଛ ଜଣେ ଅପରିପକ୍ୱ ଶିଳ୍ପୀର ଚିତ୍ରାଙ୍କନ ପରି ବେଖାପ ମନେ ହେଉଥିଲା ସୁମନ୍ୟୁଙ୍କୁ, ଶୈଳଙ୍କୁ ବି ।

ଆପାର୍ଟମେଣ୍ଟ ଜୀବନ ଧୀରେ ଧୀରେ ଦେହସୁହା ହୋଇଯାଉଥିଲେ ବି ଗଙ୍ଗନଗର ଆଡ଼େ ବୁଲିଯିବାପାଇଁ ଅଧିକାଂଶ ସମୟରେ ବାହାନା ଖୋଜନ୍ତି ସୁମନ୍ୟୁ । ଆଜିକାଲି ଆଉ ତାଙ୍କୁ ସ୍କୁଟର ଚଳାଇବାକୁ ପଡୁ ନାହିଁ । ଶୈଳଙ୍କ ସହ ନୂଆବୋହୂ ପରି ଘରକୁ ଆସିଥିବା ସ୍କୁଟରଟିକୁ ସେ ସହଧର୍ମିଣୀ ପରି ସଯତ୍ନ ପୋଷିଥିଲେ

ଚାକିରି ସରିବାଯାଏ । ମଝିରେ ଥରେ ଅଧେ ଶୈଳ କହିଥିବେ ନୂଆ ସ୍କୁଟରଟିଏ କିଣିବାପାଇଁ । 'ସ୍କୁଟର୍‌ଟି ସହିତ ତୁମର କାହିଁକି ଏ ସଉତୁଣୀଭାବ' ବୋଲି କହି ସେମନ୍ତ ପ୍ରସଙ୍ଗ କାହିଁ କେତେଥର ଏଡ଼େଇ ଯାଇଥିବେ ସୁମନ୍ୟୁ । କିନ୍ତୁ ନୂଆ ଘରେ ରହିବାର ପ୍ରାୟ ବର୍ଷଟିଏ ଭିତରେ ତାଙ୍କ ପାଇଁ ଏକ ସୁନ୍ଦର କାର୍ ଅପେକ୍ଷା କରିଥିଲା ଆପାର୍ଟମେଣ୍ଟ ପ୍ରାଙ୍ଗଣରେ । ଏସବୁ ମା'-ପୁଅଙ୍କର କାରସାଦି ବୋଲି ସେ ପରେ ଜାଣିଥିଲେ । ତେବେ ଅତିକ୍ରାନ୍ତ ବୟସରେ ଯାନଚାଳନାଜନିତ ପରୀକ୍ଷାନିରୀକ୍ଷାରେ ନ ପଶି ସେ ଏକ ଠିକାଚାଳକ ନିଯୁକ୍ତ କଲେ । ଆଜ୍ଞାବହ ଚାଳକ କର୍ତ୍ତୃକ ତାଙ୍କର ରାଜଧାନୀ କାହିଁକି, ରାଜ୍ୟ ଭ୍ରମଣରେ ବି ଅସୁବିଧା ହୋଇ ନାହିଁ ।

ଏବେ କେବେଠୁଁ ଆଉ ସେ ଗଙ୍ଗନଗର ରାସ୍ତା ମାଡ଼ି ନାହାନ୍ତି । ସୁମନ୍ୟୁ ନିଜକୁ ନିଜେ ପ୍ରଶ୍ନ କରନ୍ତି ଏବଂ ପ୍ରଶ୍ନର ଉତ୍ତର ସ୍ୱରୂପ ହସିଦିଅନ୍ତି । ମ୍ଲାନ ହସ ।

ମଝିରେ ପ୍ରାୟ ଚାରି ମାସ ସୁମନ୍ୟୁ ଗଙ୍ଗନଗର ଘର ଦେଖି ନ ଥିଲେ । ନ ଥିଲେ ତ ଭୁବନେଶ୍ୱରରେ, ପୁଅବୋହୂଙ୍କ ପାଖରେ ଥିଲେ, ପ୍ରବାସରେ । ତାଙ୍କ ପାଇଁ ବିଦେଶଯାତ୍ରା ନୂଆ ନୁହେଁ । ଲଣ୍ଡନରେ ଥିଲେ ବର୍ଷଟିଏ, ପିଏଚ୍.ଡି. କାମରେ । ଜାପାନ, ମଧ୍ୟପ୍ରାଚ୍ୟ ଯାଇଛନ୍ତି ସେମିନାରରେ ଯୋଗଦେବାପାଇଁ । ହେଲେ ଶୈଳ କେବେ ଭାରତ ବାହାରକୁ ଗୋଡ଼ କାଢ଼ି ନ ଥିଲେ । ପୁଅ, ବୋହୂଙ୍କର ଏକା ଜିଦ୍– ନ୍ୟୁୟର୍କ ଆସ । ଶୈଳଙ୍କୁ ସାଥିରେ ନେଇ ସେ ନ୍ୟୁୟର୍କ ଗଲେ ଯେ ଦି'ମାସ ଜାଗାରେ ଚାରିମାସ ରହିଗଲେ । ଭୁବନେଶ୍ୱର ଫେରିଆସି ଆପାର୍ଟମେଣ୍ଟରେ ପାଦ ଦେଉଦେଉ ତାଙ୍କର ମନେହେଲା ଗଙ୍ଗନଗର ଘର ଯେମିତି ତାଙ୍କୁ ହାତଠାରି ଡାକୁଛି ଆଉ କହୁଛି, 'ଏତେଦିନ ହେଲା କେଉଁଠି ଥିଲ ? ମୋ କଥା ମନେପଡୁନି କି ?' ଓଦା କଣ୍ଠରେ ତା'ର ଲଳିତ ରାଗିଣୀ ।

ସୁଦୀର୍ଘ ବିମାନଯାତ୍ରାର କ୍ଳାନ୍ତି ମୁହୂର୍ତ୍ତକରେ ପାସୋରିଦେଲେ ସୁମନ୍ୟୁ । ଏମ୍.ପି.ସି. କଲେଜର ନୂଆନୂଆ ପ୍ରେମକଥା ତାଙ୍କର ମନେ ପଡ଼ିଲା । ମନେ ପଡ଼ିଲା ପୁଣି ଶୈଳଙ୍କ ସହ ବିତିଥିବା ପ୍ରେମମୟ ଦିନସବୁ, ଗଙ୍ଗନଗରର ସେହି ସରକାରୀ ଘରେ । ସେ ଅଥୟ ହେଲେ ଗଙ୍ଗନଗର ଆଡ଼େ ବୁଲିଯିବାପାଇଁ ତତ୍‌କ୍ଷଣାତ୍ । କିନ୍ତୁ ରାତି ହୋଇଥିଲା ବିଳମ୍ବିତ । ନିଜ ଚପଳତାକୁ ସେ ଚାପିଦେଲେ ନିଜ ଭିତରେ ।

ତହିଁପରଦିନ ସକାଳ ଥିଲା ଧୁମ୍ ମିଠା, କଲେଜବେଳର ଶୈଳଙ୍କ ପରି ।

ପ୍ରାତଃଭ୍ରମଣ ଓ ଚା'ପର୍ବ ପରେ ସୁମନ୍ୟୁ ଗାଡ଼ିରେ ବସିଲେ । ଇଙ୍ଗିତ-ଅଭିଜ୍ଞ ଚାଳକ ମିନିଟ୍ କେତୋଟି ମଧ୍ୟରେ ଗଙ୍ଗନଗରର ପାଞ୍ଚନମ୍ବର ଘର ଆଗରେ କାର୍ ଲଗାଇଦେଲା ।

ଘରଟିର ଚେହେରା ଦେଖି ଚିହିଁକି ପଡ଼ିଲେ ସୁମନ୍ୟୁ । ପୋର୍ଟିକୋର ଛାତ ଅଧା ଛିଡ଼ିପଡ଼ି ଗୋଟେ ବିରୂପ ତ୍ରିଭୁଜର ରୂପ ଧାରଣ କରିଛି । ପ୍ଲାଷ୍ଟର ଝଡ଼ା କାନ୍ଥରେ ଏଠି ସେଠି ଫାଟ– ଗୋଟେ କଙ୍କାଳର ବିକୃତି । ଉଇମାନଙ୍କ ନିରବ ଦଂଶନରେ ମୃତପ୍ରାୟ କବାଟ ଓ ଚୌକାଠ । ଘରଭିତରଟା ଯେ ଯାବତୀୟ କୀଟପତଙ୍ଗ ଓ ସରୀସୃପମାନଙ୍କ ଅଭୟାରଣ୍ୟ ପାଲଟିଥିବ, ଏଥିରେ ଆଉ ସନ୍ଦେହ ନ ଥିଲା ସୁମନ୍ୟୁଙ୍କର । କଲମି ଆମ୍ବଗଛଟି ୟା'ଭିତରେ ମରିସାରିଛି କେବେଠାରୁ । ବନ୍ଧ୍ୟାତ୍ୱରେ ମ୍ରିୟମାଣ ଚମ୍ପାଗଛ । ପକ୍ଷାଘାତଗ୍ରସ୍ତ ଘରଟିର ଦେହମୁଣ୍ଡ ଆଉଁଶି ଦେବାକୁ ଇଚ୍ଛା ହେଉଥିଲା ସୁମନ୍ୟୁଙ୍କର । ଇଚ୍ଛା ହେଉଥିଲା ଆହା ପଦେ କହିବାପାଇଁ । ଏବେଳରେ ତା'ର ବା ଆଉ ସାହା କିଏ ଅଛି ?

ସୁମନ୍ୟୁ ସେପର୍ଯ୍ୟନ୍ତ ଲକ୍ଷ୍ୟ କରି ନ ଥିଲେ ଯେ ଫାଟକରେ ଝୁଲୁଛି କୌଣସି ନ୍ୟାୟାଳୟର ମୋହରଯୁକ୍ତ ଏକ ନିଷେଧାଜ୍ଞା । ଅନ୍ଧାର ରାତିରେ ଭୂତ ଦେଖି ଅତର୍କ୍କି ପଛକୁ ଦୌଡ଼ିଲା ପରି ସେ କାର୍ ଭିତରକୁ ପଶିଗଲେ ଏବଂ ଡୋର୍ ବନ୍ଦ କରିଦେଲେ ।

କାହିଁକି କେଜାଣି ପିଲାଦିନେ ଦେଖିଥିବା ଗୋଟେ ଘରପୋଡ଼ିର ଦୃଶ୍ୟ ତାଙ୍କ ଆଖିଆଗରେ ବାରମ୍ବାର ନାଚି ଉଠୁଥିଲା ଏବଂ ସେ ସେହି ଭୟାବହତାରୁ ନିଜକୁ ମୁକ୍ତ କରିପାରୁ ନ ଥିଲେ ।



# ଷ୍ଟାଚ୍ୟୁ

ସେହିକ୍ଷଣି ସେହିଠାରେ ଅଟକିଗଲା ଗାଡ଼ି । ଶ୍ରୀକୁମାରଙ୍କ ଇଙ୍ଗିତ ଥିଲା ଆଦେଶ ପରି ଅଲଂଘ୍ୟ । ଆଜ୍ଞାବହ ଡ୍ରାଇଭର୍‌କୁ ବୋଲମନା ଗାଡ଼ି । ଇଞ୍ଚେ ଆଗକୁ ବା ପଛକୁ ଗଡ଼ନ୍ତା କେମିତି !

ଜିପ୍‌ରୁ ଓହ୍ଲେଇଲେ ଶ୍ରୀକୁମାର ।

ଜାଗାଟା ଯେ ଗୋଟେ ଗାଁର ଆରମ୍ଭ, ଏଥିରେ ତାଙ୍କର ସନ୍ଦେହ ନ ଥିଲା । ନଈବନ୍ଧ ହିଁ ରାସ୍ତା, ମୋର୍‌ମରୁ ପିଚୁକୁ ଉତ୍ତୀର୍ଣ୍ଣ ହୋଇଥିବ ଅଳ୍ପଦିନ ତଳେ । ରାସ୍ତାର ବାଁରେ ଗାଁ, ଡାହାଣ ପାଖରେ ନଈ । 'ଏଇ ତା'ହେଲେ ସେ ସୁକୁମାରୀ ନଈ ଚିତ୍ରା', ସେ ସ୍ୱଗତୋକ୍ତି କଲେ । ନଈଟି ମନେହେଲା ତାଙ୍କୁ ଭାରି ଛଳଛଳ, ଛଇଳୀ ପରି । ନଈ କୂଳରେ ଲଗାଲଗି ହୋଇ ବାରଟି ଦେଉଳ–ବାର ଦେଉଳୀ । ନିଜ ଅଜାଣତରେ ଶ୍ରୀକୁମାରଙ୍କର ହାତ କପାଳ ଛୁଇଁଲା ।

ଗାଁ ଆଡ଼କୁ ଚାଲି ଚାଲି ଗଲେ ଶ୍ରୀକୁମାର । ଗାଁଟା ଗୋଟେ ସବୁଜ–ସମୁଦ୍ର !

ବୈଶାଖର ଉତ୍ତର ମଧ୍ୟାହ୍ନ ହଠାତ୍ କୋମଳ ମନେହେଲା । କେତେ ଖଣ୍ଡ ଭସା ବଉଦ ସୂର୍ଯ୍ୟର କିୟଦଂଶକୁ ଢାଙ୍କିବାରେ ବ୍ୟସ୍ତ ଥିଲେ । ଛାଇ ପଡ଼ିଥିଲା ଗାଁ ଉପରେ । ମେଘ ଫାଙ୍କରୁ ଉଦ୍‌ଗତ ରଜତ ଖରାରେ ଚିକ୍‌ଚିକ୍ କରୁଥିଲା ଚିତ୍ରାର ଜଳ । ଦୂର ଘୁମନ୍ତ ପାହାଡ଼ ଦିଗ୍‌ବଳୟ ସନ୍ଧିରୁ ବେଳେବେଳେ ଫିଟି ପଡୁଥିଲା ତ ବେଳେବେଳେ ବିଲୀନ ହୋଇଯାଉଥିଲା ଆକାଶର ଅନନ୍ତ ନୀଳିମାରେ ।

ଦିଗନ୍ତବିସ୍ତାରୀ ଧାନକ୍ଷେତର ଫର୍ଦ ଉପରେ କେଉଁ ଦେବଶିଳ୍ପୀର ଦିବ୍ୟ ଚିତ୍ରାଙ୍କନ ପରି ପ୍ରତିଭାତ ହେଉଥିଲା ସେଠାକାର ସାମଗ୍ରିକ ଦୃଶ୍ୟ ।

ନଈବନ୍ଧ ପରେ ଗାଁ ଗୋହିରି । ଆଗେ ଆଗେ ଚାଲିଥିଲେ ଶ୍ରୀକୁମାର, ପଛେ ପଛେ ସାଥିରେ ଆସିଥିବା ଜଣୈକ କନିଷ୍ଠ ହାକିମ ।

ଚିତ୍ରାନଦୀ ଅବବାହିକାର ଏହି ସମୃଦ୍ଧ ଜନପଦରେ ମଣ୍ଡଳ ଅଧିକାରୀ ଭାବରେ ଗତ ସପ୍ତାହରେ ମାତ୍ର ଯୋଗ ଦେଇଛନ୍ତି ଶ୍ରୀକୁମାର । ତେବେ ସପ୍ତାହସାରା ସେ ଘୂରିବୁଲିଛନ୍ତି ତାଙ୍କ ମଣ୍ଡଳ ସରହଦର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ । ଭୂଗୋଳକୁ ନ ନିରେଖିଲେ ସେ ବିକାଶର ମଙ୍ଗ ଧରିବେ କିପରି ? ପୁଣି ନୂଆ ଚାକିରି, ଅନୁଭବର ଅଭାବ ।

ଗତ ସାତ ଦିନ ଭିତରେ ସତର ଖଣ୍ଡ ଗାଁ ବୁଲିସାରିଥିବେ ଶ୍ରୀକୁମାର । ହେଲେ ଏହି ଗାଁ ଉପକଣ୍ଠରେ ପହଞ୍ଚିଲାକ୍ଷଣି ତାଙ୍କ ଛାତି ଭିତରେ ଏକ ତଡ଼ିତ୍ ପ୍ରବାହ ଖେଳିଗଲା ଅକସ୍ମାତ୍ । ସେ କିଛି ଭାବିବା ପୂର୍ବରୁ ଗାଡ଼ି ବନ୍ଦ ପାଇଁ ନିର୍ଦ୍ଦେଶ ଦେବା ମୁଦ୍ରାରେ ରୂପାନ୍ତରିତ ହୋଇସାରିଥିଲା ତାଙ୍କ ଡାହାଣ ହାତ । ଗାଡ଼ି ଅଟକିଲାପରେ ସେ ଯେମିତି ଟାଣି ହୋଇଯାଉଥିଲେ ଗାଁ ଭିତରକୁ ।

ଗାଁ ଦାଣ୍ଡରେ ଆଗକୁ ଚାଲିଥିଲେ ଶ୍ରୀକୁମାର । ଏହି ଗାଁଟି ଅନ୍ୟ ଗାଁଗୁଡ଼ିକଠାରୁ କୌଣସି ଗୁଣରେ ନିଆରା ନ ଥିଲା । ଉତ୍ତର ଉପାନ୍ତ ଗାଁଗୁଡ଼ିକର ଚେହେରା ପ୍ରାୟ ଏକାପରି । ଦି'ପାଖରେ ଘର, ଗୋଟିଗୋଟିକିଆ । ଘର ଆଗରେ ହତା, ଫୁଲଫଳଭର୍ତ୍ତି ଛୋଟକାଟର ବଗିଚା । ଘର ପଛରେ ପୋଖରୀ–କ୍ଷୁଦ୍ର, ବୃହତ୍ ବା ନାତିବୃହତ୍ । ମତ୍ସ୍ୟମୟ । ଗାଁ ଦାଣ୍ଡ କେଉଁଠି ଧୂଳିଧୂସରିତ ତ ଆଉ କେଉଁଠି କଂକ୍ରିଟ୍ ଚଟାଣ-ମଣ୍ଡିତ ।

ଦାଣ୍ଡଧୂଳିର ଛୋଟ ଛୋଟ ଧୂମାଳ ବେଳେବେଳେ ଆକ୍ରାମାକ୍ରା କରୁଥିଲା ଶ୍ରୀକୁମାରଙ୍କୁ । ସେ କେଉଁ ତୁଳସୀ ଚଉଁରା ପାଖରେ ଟିକେ ଅଟକି ଯାଉଥିଲେ ତ ଆଉ କେଉଁଠି ଖତ-ଗୋବରର ଆଘ୍ରାଣ ତାଙ୍କୁ ଆପଣାର ଲାଗୁଥିଲା । ଅଦୂର ତାଳବଣ ମଥାନରେ ବାୟା ଚଢ଼େଇର ବସା ଦୋହଲିବାର ଦୃଶ୍ୟ ତାଙ୍କୁ ବିମୋହିତ କରୁଥିଲା । ବିମୋହିତ କରୁଥିଲା ପୁଣି କିଆକେତକୀର ବାସ୍ନା, ମଲ୍ଲୀମାଳତୀର ମହମହ ମହକ ।

ଗାଁ ରାସ୍ତା ଯେଉଁଠି ଅଣ୍ଟା ଭାଙ୍ଗି ଦକ୍ଷିଣମୁହାଁ ହୋଇଛି, ଠିକ୍ ସେହିଠାରେ ଏକ ସୁଦୃଶ୍ୟ ଫାଟକ ସଦର୍ପ ଠିଆ ହୋଇଥିଲା, ଗ୍ରାମ୍ୟ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ଅସ୍ମିତା ଭାବରେ । ଶ୍ରୀକୁମାର ବିଦ୍ୟାଳୟ ଆଡ଼କୁ ଯନ୍ତ୍ରବତ୍ ପାଦ ବଢ଼ାଇଲେ । ନବାଗତ ମଣ୍ଡଳ ଅଧିକାରୀଙ୍କୁ ବିଦ୍ୟାଳୟର ହେଡ୍‌ମାଷ୍ଟରଙ୍କ ସହିତ ପରିଚୟ କରାଇଦେଲେ କନିଷ୍ଠ ହାକିମ । ବୟସ୍କ ହେଡ୍‌ମାଷ୍ଟର୍ ମହୋଦୟ ଯୁବ-ଅଧିକାରୀଙ୍କୁ ଯଥାମାନ୍ୟ ପ୍ରଦାନପୂର୍ବକ ଅଫିସ୍ ଗୃହକୁ ପାଛୋଟି ନେଲେ ।

ତୁଣ୍ଡବାଇଦ ମାଧ୍ୟମରେ ପଞ୍ଚାୟତର ସେହି ସଦର ଗାଁକୁ ମଣ୍ଡଳ ଅଧିକାରୀଙ୍କ ଅଚାନକ ଗସ୍ତ ବିଷୟରେ ଗାଁ ଲୋକ ଜାଣିସାରିଥିଲେ । ଇତିମଧ୍ୟରେ ସରପଞ୍ଚ ମହାଶୟ ପଞ୍ଚାୟତ ସେକ୍ରେଟାରି, ଡଜନେ କର୍ମୀ ତଥା ସ୍ଥାନୀୟ ଠିକାଦାରଙ୍କ ସହ ବିଦ୍ୟାଳୟ ପ୍ରାଙ୍ଗଣରେ ପହଞ୍ଚି ଯାଇଥିଲେ । ଶ୍ରୀକୁମାରଙ୍କୁ ଅଡୁଆ ଅଡୁଆ ଲାଗୁଥିଲା ସେମାନଙ୍କର ଅପ୍ରତ୍ୟାଶିତ ଉପସ୍ଥିତି । ପଦେ ଅଧେ କଥାବାର୍ତ୍ତା ପରେ ହେଡ୍‌ମାଷ୍ଟରଙ୍କ ଆନୁକୂଲ୍ୟରେ ଶ୍ରେଣୀଗୃହ ପରିଦର୍ଶନରେ ସେ ବାହାରିପଡ଼ିଲେ ।

ହେଡ୍‌ମାଷ୍ଟ୍ରେ ଭିତରେ ଭିତରେ ଆତଙ୍କିତ ହେଉଥିଲେ । ଶିକ୍ଷକମାନଙ୍କର ଉପସ୍ଥିତି ପ୍ରସଙ୍ଗ ଉଠାଇଲେ, ସେ କି ଉତ୍ତର ଦେବେ ଅଧିକାରୀଙ୍କୁ ! ସର୍ବବରିଷ୍ଠ ସହକାରୀ ଶିକ୍ଷକ ତ କେବେ ବିଦ୍ୟାଳୟ ପାଖ ପଶନ୍ତି ନାହିଁ । ସେ ଏମ୍.ଏଲ୍.ଏ.ଙ୍କ ଖାସ୍ ଲୋକ; ତାଙ୍କ ପାଖେ ପାଖେ ଥା'ନ୍ତି ବର୍ଷକରେ ବାର ମାସ । କିନ୍ତୁ ଆଉ ପ୍ରକାରେ ଆତଙ୍କ ଘାରିଥିଲା ଠିକାଦାରବାବୁଙ୍କୁ । ଖେଳପଡ଼ିଆର ଉନ୍ନତୀକରଣପାଇଁ କେତେ ଟଙ୍କା ବିନିଯୋଗ ହୋଇଛି ବୋଲି ପ୍ରଶ୍ନବାଣଟି ତାଙ୍କୁ ଭେଦିବ କି ? ସେସବୁ ଟଙ୍କା ତ ଭାଗବଣ୍ଟୁରାରେ ଯାଇଛି ।

ଶ୍ରୀକୁମାର ଲକ୍ଷ୍ୟ କଲେ ଅଫିସ୍ ଓ ତତ୍‌ସଂଲଗ୍ନ କୋଠରିଟିକୁ ବାଦ୍ ଦେଲେ ଅନ୍ୟ ଶ୍ରେଣୀ କୋଠରିଗୁଡ଼ିକର ଅବସ୍ଥା ଅତ୍ୟନ୍ତ ଶୋଚନୀୟ । ମାଟିକାନ୍ଥ, ଚାଳଘର । ସେହିପରି ଏକ କୋଠରି ଭିତରକୁ ସେ ଛାଏଁ ପଶିଗଲେ । ପିଲାମାନଙ୍କ କୋଳାହଳରେ କମ୍ପୁଥିବା କୋଠରିଟି ତାଙ୍କୁ ମନେହେଲା ଭାରି ଆତ୍ମୀୟ, ଖୁବ୍ ପରିଚିତ । ସେ ପାଠ ପଢୁଥିବା ବିଦ୍ୟାଳୟର ଛବି ତାଙ୍କ ଆଖି ସାମ୍ନାରେ ଭାସି ଉଠି ପୁଣି କେଉଁଆଡ଼େ ଉଭେଇ ଯାଉଥିଲା । ଅଥଚ ଏହି ବିଦ୍ୟାଳୟ ଓ ତା'ର ଭଙ୍ଗା କାନ୍ଥ, ଝର୍କା, କବାଟ କେମିତି ଗୋଟେ ପ୍ରବଣତା ସୃଷ୍ଟି କରୁଥିଲେ ତାଙ୍କ ଭିତରେ । ପିଲାମାନଙ୍କୁ ସେ ଭଲମନ୍ଦ ପଚାରିବେ କ'ଣ, ତାଙ୍କର ତ ଇଚ୍ଛା ହେଉଥିଲା ସେମାନଙ୍କ ଗହଣରେ ସେ କେଉଁଠି ବସିପଡ଼ନ୍ତେ କି ? ବସିବେ କ'ଣ, ସେ ସତରେ ଯେମିତି ହାଫ୍‌ପ୍ୟାଣ୍ଟପିନ୍ଧା ପିଲାଟେ ପରି ଲଙ୍ଗ୍‌ବେଞ୍ଚର ଗୋଟେ କୋଣରେ ବସି ପଣକିଆ ଘୋଷୁଛନ୍ତି ବା ଝର୍କା ଫାଙ୍କରୁ ଗଛ ଚଢୁଥିବା ଗୋଟେ କୁନି ମାଙ୍କଡ଼କୁ ଦେଖି ଫିକ୍ କରି ହସି ଦେଉଛନ୍ତି ଅଥବା ବିଜ୍ଞାନ ପଢ଼ା ସମୟରେ ଚିତ୍ରାଙ୍କନ କରି ନହକା ବେତ ପାହାର ଖାଉଛନ୍ତି– ଏମିତି ତାଙ୍କୁ ମନେ ହେଉଥିଲା । ମନେ ହେଉଥିଲା, ତାଙ୍କ ଧଳା ଜାମାରେ ସ୍ୟାହି ଦି'ଟୋପା ପଡ଼ିଯାଇଛି କି ଆଉ, ଯେଉଁଥିପାଇଁ ସାଙ୍ଗଝିଅମାନେ ହସି ହସି ଗଡ଼ିଯାଉଛନ୍ତି !

ହେଡ୍‌ମାଷ୍ଟ୍ରଙ୍କ ନିଃଶବ୍ଦ ନିର୍ଦ୍ଦେଶରେ ଶ୍ରେଣୀଗୃହର କୋଳାହଳ ବନ୍ଦ ହୋଇଗଲା । ମଳୟ ଓ ମର୍ମର ଯୁଗପତ୍ ସ୍ତବ୍ଧ ହୋଇଗଲେ କି ଆଉ ! ଅହେତୁକ ଦୁଃଖରେ ଆଉଟୁ ପାଉଟୁ ହେଲେ ଶ୍ରୀକୁମାର । ଅନ୍ୟ ଏକ କୋଠରିକୁ ଯିବାପାଇଁ ସେ ଉଦ୍ୟତ ହେଲେ । ହଠାତ୍ ଛୁଟି ଘଣ୍ଟାର ପ୍ରଲମ୍ବିତ ନିନାଦ ଏବଂ ପିଲାମାନଙ୍କ ଉତ୍‌ଫୁଲ୍ଲ ହର୍ଷଧ୍ୱନିର ବିସ୍ଫୋରଣରେ ସେ ପୁଣି ହେଲେ ଆତ୍ମବିସ୍ମୃତ । ବିଦ୍ୟାଳୟ ପ୍ରାଙ୍ଗଣରେ ସେତେବେଳେ ମୁକ୍ତ ବିହଙ୍ଗମମାନଙ୍କର ଘରବାହୁଡ଼ା କଳରବ । କାନ୍ଧରେ ବସ୍ତାନି ଝୁଲାଇ ଦୌଡ଼ାଦୌଡ଼ି କରୁଥିବା ପିଲାମାନଙ୍କ ଭିତରେ ନିଜକୁ ଖୋଜୁଥିଲେ ଶ୍ରୀକୁମାର । କିନ୍ତୁ ଅନେକ ପୁରାତନ ଓ ଝାପ୍‌ସା ଦୃଶ୍ୟଦୃଶ୍ୟାନ୍ତର ଭିତରେ ସେ ବିବଶ ହୋଇପଡୁଥିଲେ ।

ହେଡ୍‌ମାଷ୍ଟ୍ରେ କିଛି କହିଲେ ବୋଧହୁଏ । କୁଜ୍‌ଝଟିକାଗ୍ରସ୍ତ ଏକ ସ୍ମୃତି-ସାମ୍ରାଜ୍ୟରୁ ଛିଟିକି ଆସିଲେ ଶ୍ରୀକୁମାର । ପଇଡ଼ ସେବନ ଓ ଖୁବ୍ ସଂକ୍ଷିପ୍ତ ବାର୍ତ୍ତାଳାପ ପରେ ସେ ବିଦ୍ୟାଳୟ ଫାଟକ ପାରିହେଲେ । ପୁଣି ନୀରବ ପଦଯାତ୍ରା ଗାଁ-ଦାଣ୍ଡରେ । ସେ କେଉଁ ଆଡ଼କୁ ଯାଉଛନ୍ତି, କାହିଁକି ଯାଉଛନ୍ତି, ନିଜେ କିଛି ବି ବୁଝିପାରୁ ନ ଥିଲେ । ଜାଣିପାରୁ ନ ଥିଲେ ଅନୁଗାମୀ ଅଧସ୍ତନ ଅଧିକାରୀ ଏବଂ ସୌଜନ୍ୟମୁଗ୍ଧ ହେଡ୍‌ମାଷ୍ଟରଙ୍କ ଉପସ୍ଥିତି ସଂପର୍କରେ ।

କେତେ ଦୀର୍ଘ ଏ ଗ୍ରାମପଥ ! ଦୂର ଦିଗ୍‌ବଳୟରେ ତା'ର ପରିସମାପ୍ତି ।

ନା, ସେ ପାଦେ ଆଉ ଆଗେଇ ପାରିଲେ ନାହିଁ । ଗୋଟେ ପରିତ୍ୟକ୍ତପ୍ରାୟ ଘର ସାମ୍ନାରେ ଠିଆ ହୋଇଗଲେ ଖୁଣ୍ଟ ପରି !

ଘରଟିର ଉଚ୍ଚା ମଥାନରେ ଲହଡ଼ି ଭାଙ୍ଗୁଥିଲା ଅପରାହ୍ଣର ମହଳ ଖରା । ସଳଖ କାନ୍ଥ ଦେହରେ ଅସ୍ପଷ୍ଟ ଝୋଟି ଚିହ୍ନ । ଚଉଡ଼ା ଚୌକାଠରେ ଲତା-ବିଲତାର ଛିଟା, ପୁଣି ଯାଉଁଳି କବାଟରେ ବିବିଧ ଚିତ୍ରର ସମ୍ଭାର । ଘର ସାମ୍ନାରେ ବଉଳ ଗଛ, ପ୍ରସ୍ତର ପ୍ରତିମା ପରି ଲାସ୍ୟମୟୀ । ସମଗ୍ର ପରିବେଶଟି ଶ୍ରୀକୁମାରଙ୍କୁ ମନେହେଲା ଛାୟାଚ୍ଛନ୍ନ ଜହ୍ନରାତି ପରି ଭାରି ଚିହ୍ନା ଚିହ୍ନା ଅଥଚ ଅଚିହ୍ନା । କାହିଁ କେଉଁ କାଳରୁ ଯେମିତି ଏ ଘର ସହିତ ତାଙ୍କର ଅପାର ଆତ୍ମୀୟତା, ବଉଳଗଛଟି ସହ ପ୍ରୀତି ଅପ୍ରମିତ । ଏପରି ଦୃଶ୍ୟ ସହିତ ସେ ତ ଆବାଲ୍ୟରୁ ପରିଚିତ !

ବଉଳ ଗଛ ମୂଳରେ ଯାଇ ଠିଆହେଲେ ଶ୍ରୀକୁମାର । କାହାର ନିବିଡ଼ ଆଶ୍ଳେଷରେ ସେ ଅବା ଆବିଷ୍ଟ ହୋଇଯାଉଥିଲେ । ଅଥଳ ସମୁଦ୍ରରେ ଆକ୍ତାମାକ୍ତା ହୋଇ ଯେମିତି ଖୋଜୁଥିଲେ କାହିଁ କେବେଠୁଁ ଛାଡ଼ି ଆସିଥିବା କେଉଁ ପ୍ରବାଳ ଦ୍ୱୀପକୁ ।

କେହି ରହୁ ନ ଥିବା ଗୋଟେ ବନ୍ଦ ଘର ପାଖରେ କାହିଁକି ହଠାତ୍ ଅଟକିଗଲେ ନୂଆ ହାକିମ ? ଘରଟି ପ୍ରତି ତାଙ୍କ ମନରେ କାହିଁକି ଏତେ ଯେ ଦରଦ ? ହାକିମଙ୍କ ବ୍ୟବହାରରେ ଅସଙ୍ଗତିର ଲକ୍ଷଣ ଲକ୍ଷ୍ୟ କରୁଥିଲେ ପୁରୁଖା ହେଡ୍‌ମାଷ୍ଟ୍ରେ । ସ୍କୁଲ ପରିଦର୍ଶନ ବେଳେ ସେମିତି ଅତ୍ୟଧିକ ଅନ୍ୟମନସ୍କ ହୋଇପଡ଼ିବା, କାନ୍ଥବାଡ଼, ଝର୍କା କବାଟ ଆଡ଼କୁ କ'ଣ ଗୋଟେ ଖୋଜିଲା ଖୋଜିଲା ଆଖିରେ ଚାହିଁବା, ଛୁଟି ପରେ ଘରକୁ ଫେରୁଥିବା ପିଲାମାନଙ୍କର ଉଚ୍ଛୁଳା ସୁଅ ଭିତରକୁ ପଶିଯିବା ଆଦି ଘଟନା ହେଡ୍‌ମାଷ୍ଟର୍‌ଙ୍କୁ ପିଲାଳିଆମି ମନେ ହୋଇଥିଲା । ଏସବୁ କ'ଣ ହାକିମୋଚିତ ବ୍ୟବହାର ? ହେଡ୍‌ମାଷ୍ଟ୍ରେ ନିଜକୁ ପଚାରୁଥିଲେ; ପୁଣି ଭାବୁଥିଲେ, ହାକିମ ଜଣକ ହୁଏତ ଆବଶ୍ୟକତା ଠାରୁ ଖୁବ୍ ବେଶି ଭାବପ୍ରବଣ, ନଚେତ ଆଡ଼ବାୟା ପ୍ରକୃତିର । ତେବେ ବନ୍ଦ ଘରଟି ବିଷୟରେ ସେ କିଛି କହିବେ କହିବେ ହେଉଥିଲେ,

ଅଥଚ କହିପାରୁ ନ ଥିଲେ । ବେଶ୍ କିଛି ସମୟ ଅପେକ୍ଷା କଲା ପରେ ସେ ଆଉ ସମ୍ଭଳା ପଡ଼ିଲେ ନାହିଁ । ଖଣ୍ଟିକାଶ, କାଶ ଆଦି ଉପକ୍ରମଣିକା ଉତ୍ତାରୁ ନାଟକୀୟ ଢଙ୍ଗରେ କହିଲେ, 'ସାର୍, ଏ ବନ୍ଦ ଘରର କବାଟ ଝରକା କେବେ ଖୋଲିବ କ'ଣ କହିହେବ ?' ଅପ୍ରସ୍ତୁତ ଶ୍ରୀକୁମାର ହେଡ୍‌ମାଷ୍ଟରଙ୍କ ଆଡ଼କୁ ଚାହିଁଲେ– ବିସ୍ଫାରିତ ଆଖି ଦୁଇଟିରେ ତାଙ୍କର ଢଳଢଳ ଜିଜ୍ଞାସାର ନଦୀ, ଉପନଦୀ ।

ତହୁଁ ହେଡ୍‌ମାଷ୍ଟ୍ରେ ବଖାଣିଲେ ଘରର ବୃତ୍ତାନ୍ତ; ଅନେକ ଦିନ ତଳେ ଶାରଦୀୟ ଝଡ଼ର ତାଣ୍ଡବରେ ବିଧ୍ୱସ୍ତ ହୋଇଥିଲା ଏ ଅଞ୍ଚଳ । ଆକାଶକୁ ଛୁଇଁବାପାଇଁ ଆସ୍ପର୍ଦ୍ଧାପ୍ରମତ୍ତ ଡେଙ୍ଗା ଡେଙ୍ଗା ତାଳଗଛ, ବରଓସ୍ତ ପରି ମହୀରୁହ ମୃତ ସୈନିକ ପ୍ରାୟ ଭୂଇଁରେ ଲୋଟିଥିଲେ । ଚାଳଘରମାନେ ବିକୃତ ପିଞ୍ଜରା ଭିତରେ ନିଜ ନିଜର ପରିଚୟ ଖୋଜୁଥିଲେ ତ ବିସ୍ତୀର୍ଣ୍ଣ ଧାନକ୍ଷେତସବୁ ବାଲିଗ୍ରାସରେ ମରୁଭୂମିର ଭ୍ରମ ସୃଷ୍ଟି କରୁଥିଲେ । ଝଡ଼, ବର୍ଷା ଓ ବଢ଼ିର ବିଭୀଷିକା ପରେ ମହାମାରୀ, ପରେ ପରେ ଅକାଳର କରାଳ ଛାୟା । ଥିଲାବାଲା ଘରର ଲୋକମାନେ ଅର୍ଦ୍ଧାହାର, ଅନାହାରରେ ଦିନ କାଟିଲେ; ମୂଲିଆ-ମଜୁରିଆମାନେ ଦାଦନ ଖଟିବାପାଇଁ ଦେଶାନ୍ତରୀ ହେଲେ ଏବଂ ସର୍ବାଧିକ କଷଣରେ ଥିଲେ ମଧ୍ୟବର୍ତ୍ତୀ ପରିବାରମାନେ– ଘାସକୁ ମୋଟ, ଗଛକୁ ଛୋଟ । ଘରେ ଦାନା ନ ଥିବାରୁ ବାହାରେ ମୂଲ ଲାଗିବା ମନା, ଦାଦନ ଯିବା ତ ଦୂରର କଥା । ଲଗଉଥିବା ଲୋକଟି ଲାଗିବ କିପରି ?

ଏ ଘରର ଖାଉନ୍ଦ ସନାତନ ସେତେବେଳେ ଯୁବକ, ନଈକୂଳିଆ କେତେ ଏକର ଚାଷଜମିର ଅଧିପତି, ଏକାଧିକ ଆମ୍ବତୋଟା, ଜଳାଶୟ, ବଗାଏତର ମାଲିକ । ଘରେ ତା'ର ନୂଆ ଭୁଆସୁଣୀ; ବାପା ମା' ତ ବାଲୁତ ବେଳୁ ସ୍ୱର୍ଗରେ । ଅଧାପାଠୁଆ ସନାତନ କିନ୍ତୁ ଜୀବନଯୁଦ୍ଧର ପୋଖତ ଯବାନ୍ । ତା' ସାହସକୁ ସରି କିଏ ଏ ଖଣ୍ଡମଣ୍ଡଳରେ ? ନୂଆ ବୋହୂଟାକୁ ଏତେବଡ଼ ଘରଟାରେ ଏକା ଛାଡ଼ି ପଡ଼ୋଶୀ ପ୍ରଦେଶକୁ ଗଲା ବେପାର କରି । ହାତରେ ନ ଥିଲା ଟଙ୍କା, ଥିଲା ଛୋଟ ଗହଣା ଗଣ୍ଠୁଲିଟିଏ ।

ସନାତନ କ'ଣ କରୁଥିଲା ଦୂର ସହରରେ, ଗାଁରେ କାହାକୁ ଜଣା ନ ଥିଲା । ଜଣା ନ ଥିଲା ବି ଖୋଦ୍ ତା' ସ୍ତ୍ରୀକୁ । ଉଡ଼ା ଖବର ଉଡୁଥିଲା ଗାଁର ଦାଣ୍ଡଘାଟରେ– ସନାତନର ବଡ଼ 'ଖାବାର' ଦୋକାନ ବଡ଼ ସହରର ବଡ଼ ପୋଲ୍ ପାଖରେ; ଦିନକୁ ବିକ୍ରି ଟଙ୍କା ହଜାରେ । ଆଉ କାହା ତୁଣ୍ଡରେ ସନାତନ ଛୋଟ ଗୋଟେ ଚା' ଦୋକାନର ମାଲିକ; ଗରାଖ ହାଉଯାଉ ତା' ଚାରିପାଖେ । ପୁଣି ଆଉ କାହାରି କାହାରି କଥାରେ ସେ କୁଆଡ଼େ ଦଶ ପଚାଶ ବସ୍ତିର ନେତା; ଗୁଣ୍ଡାଗର୍ଦ୍ଦିର ସର୍ଦ୍ଦାର !

ଦୁଇ ତିନି ମାସ ପରେ ଗାଁକୁ ଫେରିଥିଲା ସନାତନ । ସେତେବେଳେ ଯେତକୁ ସତ ତା' ଚେହେରାରେ ଝଟକୁଥିଲା ଗୋଟେ ସେନାପତିର ସଂଭ୍ରାନ୍ତି । ବଲମ ପରି

ଧାରୁଆ ନାକ ତଳେ ମୋଟା ନିଶ, ମୁଣ୍ଡରେ ଛୋଟ ଛୋଟ ବାଳ, ମୁଗୁନି ପଥର ପରି ଛାତି । କୁସ୍ତିକସରତ ବିନା ମାସ କେତେଟାରେ କି ଏମିତି ବଦଳିଯିବ ଜଣକର ଚେହେରା । ଗାଁରେ ପାଖାପାଖି ମାସେ ରହିଲା ସନାତନ । ତା' ଭିତରେ ସେ ତା' ଘରର ଚେହେରାକୁ ପୂରା ବଦଳେଇଦେଲା ନିଜ ଚେହେରା ପରି ! ଚାଳଛପର ହେଲେ ବି ସେ କାଳ ହିସାବରେ ଘରଟି ଥିଲା ଖୁବ୍ ନାମୀଦାମୀ- ଏକ ଧନାଢ଼୍ୟ ପରିବାରର ପ୍ରତୀକ ।

କିଛି ଦିନ ପରେ ସନାତନର ଆଉ ଦେଖା ମିଳିଲା ନାହିଁ ଗାଁରେ । ସେତେବେଳକୁ ପ୍ରାୟ ଶୁଖି ଯାଇଥିଲା ବନ୍ୟାବାତ୍ୟାର ଘା, ଗାଁର ଦେହମୁଣ୍ଡରୁ । ସନାତନର ସ୍ତ୍ରୀ ମୂଲିଆ ଲଗେଇ ଜମିରୁ ବାଲି କଢ଼େଇଲା, ନଈକୂଳିଆ ଜମି ପୁଣି ହେଲା ଚାଷଯୋଗ୍ୟ । ନୂଆ ବୋହୂଟାର ସାହସ କିଛି ମନ୍ଦ ନ ଥିଲା । ଏତେବଡ଼ ଘରଟାରେ ସେ କେବଳ ଏକା ରହୁଥିଲା ତା'ନୁହେଁ, ବିଲବାଡ଼ି, ଚାଷବାସ, ଗଛମାଛ–କେଉଁଟିକୁ ବୁଝିବାକୁ ସେ ଭୁଲୁ ନ ଥିଲା କେବେ !

ଦିନେ କିନ୍ତୁ ଆଉ ପ୍ରକାରେ ବନ୍ୟା ଆସିଲା ଗାଁ ଦାଣ୍ଡରେ, ଶେଷ ଶୀତର ଏକ କୋହଲା ଅପରାହ୍ଣରେ । ପୋଲିସ୍ ଗାଡ଼ିରେ ସନାତନର ଶବ । ଗାଁ ମୁଣ୍ଡରେ ଦୁଃସମ୍ବାଦଟି ପହଞ୍ଚିଗଲାକ୍ଷଣି ଆକାଶ, ବତାସ,ଜଳ–ସବୁ ଯେମିତି ସ୍ଥିର ହୋଇଗଲେ । କିନ୍ତୁ ଅସ୍ଥିର ହୋଇପଡ଼ିଲେ ଗାଁ ଲୋକେ । ଥାନା ବଡ଼ବାବୁ ବୁଝେଇଲେ ଯେ ସଡ଼କ ଦୁର୍ଘଟଣାରେ ସନାତନର ମୃତ୍ୟୁ ଘଟିଛି । ଲୋକେ ସେ କଥାକୁ ପରତେ ଗଲେ ନାହିଁ । ଥାନାବାବୁ ପୋଷ୍ଟ ମର୍ଟମ୍ ରିପୋର୍ଟ ଦେଖାଇଲେ, ପଡ଼ୋଶୀ ପ୍ରଦେଶର ପୋଲିସ୍‌ବାବୁଙ୍କ କଥା ନିଜ ଭାଷାରେ କହି ବୁଝାଇଲେ । ତଥାପି ହୋ-ହାଲ୍ଲା, ହଇଚଇ ଥମିଲା ନାହିଁ । ତେବେ ସରପଞ୍ଚ, ଓ୍ୱାର୍ଡମେମ୍ବର ଝାଳନାଳ ହୋଇ ଅଶାନ୍ତ ଜନତାଙ୍କୁ ଶାନ୍ତ କଲା ପରେ ଯାଇ ଶବଦାହର ଆୟୋଜନ କରାଗଲା ।

ସନାତନର ସ୍ତ୍ରୀ ସ୍ୱାମୀର ଆକସ୍ମିକ ମୃତ୍ୟୁ ଖବର ପାଇବାକ୍ଷଣି ସଂଜ୍ଞାହୀନା ହୋଇପଡ଼ିବ ବୋଲି ଗାଁ ମାଇପିଙ୍କ ଆଶଙ୍କା ମିଛ ହେଲା । ସନାତନ ସ୍ତ୍ରୀର କରୁଣ କାନ୍ଦଣାରେ ଯେ ମେଦିନୀ ନ କମ୍ପିଲା ତା' ନୁହେଁ; ତା' ବି ନୁହେଁ ଯେ ତା' ବୁକୁଫଟା କୋହରେ ତମାମ ଆକାଶ ମେଘାଛନ୍ନ ହେଲା ନାହିଁ । କିନ୍ତୁ ତା' ହାତରୁ ଚୁଡ଼ି ଭଙ୍ଗାଗଲା ବେଳେ ବା ତା' ସୁନ୍ଥାରୁ ସିନ୍ଦୂର ପୋଛି ଦିଆଗଲାବେଳେ ମଧ୍ୟ ସେ ଜୀବନକୁ ଯୁଝିବାର ସଂକଳ୍ପରେ ଦୃଢ଼ ଥିଲା । ଏହାଁର କାରଣ ଅବଶ୍ୟ ପରେ ଜଣାଗଲା– ସେତେବେଳେ ସନାତନ ସ୍ତ୍ରୀଙ୍କର ଗର୍ଭରେ ଥିବା ଆଲୋକର ଏକ ଐଶ୍ୱର୍ଯ୍ୟ ବିଶ୍ୱର ବିସ୍ମୟ ଦେଖିବାପାଇଁ ଅଳି କରୁଥିଲା ।

ସେହି ଐଶ୍ୱର୍ଯ୍ୟ ମୁଠାକ ଯେତେବେଳେ ମାଟିର ସଙ୍ଗୀତ ପାଲଟିଲା, ସନାତନର ସ୍ତ୍ରୀ ସତ୍ୟବ୍ରତର ବୋଉ ଭାବରେ ନୂଆ ପରିଚୟ ପାଇଲା । କିନ୍ତୁ ଆଜି ମଧ୍ୟ ଏ ଘର ଗାଁର ମୁରବି, ମୁଖିଆଙ୍କଠାରୁ ପିଲା, ମାଇପିଙ୍କ ପର୍ଯ୍ୟନ୍ତ ସଭିଙ୍କ ତୁଣ୍ଡରେ - ସନାତନର ଘର ।

ଗୋଧୂଳିର କ୍ଷୀଣ ଆଲୋକରେ ଅସ୍ପଷ୍ଟ ଦିଶୁଥିଲା ସନାତନର ଘର–ରଙ୍ଗଛଡ଼ା, କାକୁସ୍ଥ ।

ହେଡ୍‌ମାଷ୍ଟ୍ରେ ଛେପ ଢୋକିଢୋକି ବାହାନାରେ କିଛି ସମୟ ନୀରବ ରହିଲେ । ଭାବିଲେ, ଆଗତପ୍ରାୟ ଅନ୍ଧାର ହେତୁ ଅଧିକାରୀ ମହୋଦୟ ମହକୁମା ବାହୁଡ଼ିବାକୁ ବ୍ୟସ୍ତ ହେଉଥିବେ ବୋଧହୁଏ । କିନ୍ତୁ ଶ୍ରୀକୁମାରଙ୍କ ମୁହଁରୁ ଲିଭି ନ ଥିଲା ଉତ୍କଣ୍ଠାର ଛାପ । ସେ ଯେମିତି ସ୍ଥାନକାଳର ଆୟତ୍ତରେ ନ ଥିଲେ ।

ତା'ପରେ କାହାଣୀର ଅବଶିଷ୍ଟାଂଶ ବର୍ଣ୍ଣନା କଲେ ହେଡ୍‌ମାଷ୍ଟ୍ରେ ।

ଗାଉଁଲି ବୋହୂଟିର ଧୈର୍ଯ୍ୟ ଓ ବୁଦ୍ଧିର ତୁଳନା ନ ଥିଲା । ସନାତନର ସ୍ମୃତି ତାକୁ ଅଥୟ କଲା କି ନାହିଁ କିଏ ବା ଜାଣେ ! କିନ୍ତୁ ଜନ୍ମ ପୂର୍ବରୁ ବାପାକୁ ହରେଇଥିବା ପିଲାଟିକୁ ମଣିଷ କରିବାପାଇଁ ସେ ମୂଳରୁ ଲଢ଼େଇ ଆରମ୍ଭ କରିଦେଲା । ଘର, ବାହାର– ସବୁକୁ ସମ୍ଭାଳିବାପାଇଁ ତା'ପାଖରେ ଥିଲା ପ୍ରଚୁର ସାହସ ଓ ସାମର୍ଥ୍ୟ ।

''ସତ୍ୟବ୍ରତ ପଞ୍ଚମ ଶ୍ରେଣୀରେ ପଢୁଥିଲାବେଳେ ମୁଁ ଏହି ଗାଁ ସ୍କୁଲରେ ସହକାରୀ ଶିକ୍ଷକ ଭାବରେ ଯୋଗ ଦେଇଥିଲି,'' ହେଡ୍‌ମାଷ୍ଟରଙ୍କ ବାଷ୍ପାକୁଳ କଣ୍ଠରେ ଥିଲା କାରୁଣ୍ୟର ବହଳ ପ୍ରଲେପ । ଶ୍ରୀକୁମାର କିନ୍ତୁ କାହାଣୀମନସ୍କତାରୁ ଉତ୍ତୀର୍ଣ୍ଣ ହୋଇ ନ ଥିଲେ ।

'ସତ୍ୟବ୍ରତ ଦେଖିବାକୁ ଭାରି ଡଉଲଡାଉଲ', ହେଡ୍‌ମାଷ୍ଟ୍ରେ କହିଲେ । 'କିନ୍ତୁ ଟିକେ ଡଲ୍' ବୋଲି ପୁଣି କଥା ଯୋଡ଼ିଲେ । ଡଲ୍ ମାନେ ଯେ ସତ୍ୟବ୍ରତ ନିର୍ବୋଧ ବା ମାନସିକ ଭାବରେ ଅନଗ୍ରସର ଥିଲା ତା' ନୁହେଁ, ତା' ଚେହେରାରେ ଗୋଟେ ଉଦାସଭାବ ସବୁବେଳେ ବାରି ହୋଇପଡୁଥିଲା । ତା' ଟିକି ଟିକି ପାଦ ଦୁଇଟି ଭୂଇଁରେ ଥିଲେ ବି ମନଟି ତା'ର ଯେମିତି ସବୁବେଳେ କେଉଁ ଦୂର ଆକାଶରେ ଘୂରି ବୁଲୁଥିଲା । ସେ ଫୁଲ ଓ ପ୍ରଜାପତିମାନଙ୍କୁ ଦେଖି ଯେତିକି ପୁଲକିତ ହେଉ ନ ଥିଲା, ତହୁଁ ବଳି ମଗ୍ନ ହେଉଥିଲା ତାରକାଖଚିତ ଅନ୍ତରୀକ୍ଷର ରହସ୍ୟମୟତାରେ । ଆକାଶରେ ଅସଂଖ୍ୟ ତାରାମାନଙ୍କ ମଧ୍ୟରୁ ତା' ବାପା ପାଲଟିଥିବା ତାରା ନିକଟକୁ ଯିବାପାଇଁ ସେ କୁଆଡ଼େ ତା' ବୋଉ ପାଖରେ ଖୁବ୍ ଅଝଟ କରୁଥିଲା । ତେବେ ସ୍କୁଲର ମାଟି ମାଡ଼ିଲା ପରେ ତା'ର ସେ ଅଝଟ ଆଉ ନ ଥିଲେ ବି ସମୁଦ୍ର, ଆକାଶ, ମେଘ ଓ ଇନ୍ଦ୍ରଧନୁ ଆଦି ବିଷୟରେ ତା' ମନ ଭିତରେ ନାନା ପ୍ରଶ୍ନ ଉଙ୍କି ମାରୁଥିଲା । ତେଣୁ ଗଣିତ, ସାହିତ୍ୟ ଆଦି ପାଠ ପ୍ରତି ସେ ଥିଲା ବିମୁଖ, ଏପରିକି ପୃଥିବୀ ପ୍ରତି ନିରାସକ୍ତ ।

ଭଲ ଛାତ୍ର କଦାପି ନ ଥିଲା ସତ୍ୟବ୍ରତ । କିନ୍ତୁ ତାହା ପାଖରେ ଅଛପା ନ ଥିଲା ତା'ର ନିର୍ଲିପ୍ତପଣ ।

ବର୍ଷକର ବର୍ଷାଋତୁର କଥା । ସେଦିନ ଥିଲା ରବିବାର ବା ସେହିପରି କୌଣସି ଛୁଟିଦିନ । ସକାଳ ଓଳି ସାଙ୍ଗସାଥୀମାନଙ୍କ ସହିତ ଧୁମ୍ ଖେଳାଖେଳି କରିଥିଲା ସତ୍ୟବ୍ରତ । ବର୍ଷାରେ ଭିଜିଥିଲା, ବର୍ଷାପାଣିରେ କାଗଜଡଙ୍ଗା ଭସେଇଥିଲା । କାଦୁଅ ସରସର ଗାଁ ଦାଣ୍ଡରେ ଥରେ ଅଧେ ପଡ଼ି ଉଠି ଧାଇଁଥିଲା ।

ବର୍ଷା ଦିନର ଖରାବେଳ ତ ଖୁବ୍ ଲମ୍ବା । ସତ୍ୟବ୍ରତର ବୋଉ ଶୋଇଉଠି ଦେଖିଲାବେଳକୁ ତଥାପି ସଞ୍ଜ ନଇଁ ନାହିଁ । କିନ୍ତୁ ସତ୍ୟବ୍ରତ ନାହିଁ ଘରେ । ସାଙ୍ଗମେଳରେ ଖେଳକୁଦରେ ମାତିଥିବ ଭାବି ସେ ଆଉ ପୁଅର ଖୋଜଖବର ନେଲା ନାହିଁ । ସଞ୍ଜ ହେଲା । ମୁହଁ ଅନ୍ଧାରରେ ଗାଁ ମଳିନ ଦିଶିଲା । ଅଥଚ ସତ୍ୟବ୍ରତ ଘରକୁ ଫେରିଲା ନାହିଁ । ତା'ପରେ ଯାଇ ତା' ବୋଉର ଚେତା ପଶିଲା ଏବଂ ପୁଅକୁ ବାହୁନୁ ବାହୁନୁ ତା' ଚେତା ହଜିଲା ।

ରାସ୍ତାଘାଟ, ଗଳିକନ୍ଦି, ନଈନାଳ–ସବୁଆଡ଼କୁ ଖେଦିଗଲେ ଗାଁ ଲୋକେ । ସତ୍ୟବ୍ରତର କିନ୍ତୁ ପତ୍ତା ମିଳିଲା ନାହିଁ । ସଞ୍ଜ ଗଡ଼ାଣିକୁ କାହା ମୁଣ୍ଡରେ ବୁଦ୍ଧି ପଶିଲା କେଜାଣି, ଏହି ଘର ପଛରେ ଥିବା ପୋଖରୀହୁଡ଼ାରେ ଟର୍ଚ୍ଚ ବତିର ସୁଅ ଛୁଟିଲା । ଦେଖିଲାବେଳକୁ ପୋଖରୀ ମଝିରେ ଭାସୁଛି ସତ୍ୟବ୍ରତ; ସତ୍ୟବ୍ରତ ନୁହେଁ ତ, ତା' ଶବ ।

ସେହିଦିନଠୁଁ ସତ୍ୟବ୍ରତ ବୋଉର ମୁଣ୍ଡ କାମ କରି ନାହିଁ କି ତୁଣ୍ଡ ଖୋଲି ନାହିଁ । ଗତ ସନ ତା'ର କାଳ ହୋଇଯାଇଛି ।

ତେବେ ପୋଖରୀକୁ ଡେଇଁ ନା ପୋଖରୀରେ ପଡ଼ି ସତ୍ୟବ୍ରତର ମୃତ୍ୟୁ ହେଲା, ତାହା ଆଜି ପର୍ଯ୍ୟନ୍ତ ରହସ୍ୟ ହୋଇ ରହିଯାଇଛି ।

ହେଡ୍‌ମାଷ୍ଟ୍ରଙ୍କ କଥା ନ ସରୁଣୁ ଶ୍ରୀକୁମାର କହିଉଠିଲେ, "ଜାମୁକୋଳି ଗଛ ମଥାନରେ ଚଢ଼ି କୋଳି ତୋଳୁ ତୋଳୁ ଗୋଟେ ସୁନ୍ଦର ଚଢ଼େଇର ମାୟାରେ ପଡ଼ିଗଲା ପିଲାଟି । ତାକୁ ଧରିବ ବୋଲି ଡାଳରୁ ଡାଳକୁ ଡେଉଁ ଡେଉଁ ହଠାତ୍ ତା' ଗୋଡ଼ ଖସିଗଲା ଯେ ଉଛୁଳା ପୋଖରୀ ମଝିରେ ସେ ଗଳିପଡ଼ିଲା ।"

ସଞ୍ଜୁଆ ପବନର ଫାଜିଲାମି ଶ୍ରୀକୁମାରଙ୍କ ଶବ୍ଦସବୁକୁ କେଉଁଆଡ଼େ ଉଡ଼େଇ ନେଲା । କେଜାଣି ହେଡ୍‌ମାଷ୍ଟ୍ରେ କିଛି ଶୁଣି ନ ପାରି ପୁନର୍ବାର କାନ ଡେରିଲେ । ଶ୍ରୀକୁମାର କିନ୍ତୁ ନିଜ କଥା ଦୋହରେଇଲେ ନାହିଁ ।

କନିଷ୍ଠ ଅଧିକାରୀଙ୍କ ଜିପ୍‌ଟି ସନାତନର ଘର ପାଖରେ ପହଞ୍ଚି ସାରିଥିଲା । ଶ୍ରୀକୁମାର ଅତର୍କ୍କ ଯାଇ ଜିପ୍‌ରେ ବସିପଡ଼ିଲେ ଏବଂ ବସୁ ବସୁ ଯେମିତି ଗୋଟେ ଷ୍ଟାଚ୍ୟୁ ପାଲଟିଗଲେ ।



# ମକରା ମାଝୀର ପ୍ରେମ କଥା

ମକରା ମାଝୀ ମନେମନେ ଢେର ଖୋଜୁଥିଲା ସନା ମହାନ୍ତିକୁ । ଦି' ହାଟପାଳି ଗଲା, ତା'ର ଦେଖା ନ ଥିଲା ବୁଧବାର ହାଟରେ । ଫି ହାଟପାଳି ତ ସେ ଆସେ, ରଘୁ ସାହୁ ଚା'-ଦୋକାନରେ ବସେ । ତା' ଚାରିପାଖରେ ଭଣଭଣ ହେଉଥାନ୍ତି ଲୋକବାକ । ସେ ମୁଣ୍ଡ ହଲେଇ କଥା ହୁଏ, ମୋଟା ସୁନା ଚେନ୍‌ଟା ନାଚୁଥାଏ ତା' ବେକରେ । ସନା ମହାନ୍ତି ଠିକାଦାର, ଖୁବ୍ ପଇସାବାଲା । ତାକୁ ନ ଚିହ୍ନେ କିଏ ? ସେ ଲୋକ ଯୋଗାଡ଼ କରେ, ବାହାର ଦେଶକୁ କାମ ପାଇଁ ପଠାଏ । ଯା' ଦରକାର ବେଳେ ମଜବୁତିଆ ଟୋକାଥିବା ଘରକୁ ଆଗଦୁରା ପଇସା ଦିଏ ।

ସନା ମହାନ୍ତିକୁ ମକରା ଭଲ ପାଏ ନାହିଁ । ଶାଲା ଫିସାଦିଆଟା ! କହେ ଗୋଟେ ପ୍ରକାରେ, କରେ ଆରେକ । ଏବେ ମକରାର ଗରଜ ତା'ପାଖରେ । ନ ଯିବ କେମିତି ତା' ପାଖକୁ ?

ମକରା ଦେଖିବା ଆଗରୁ ସନା ମହାନ୍ତିର କଟାସିଆ ଆଖି ପଡ଼ିଗଲା ତା' ଉପରେ । ସେ କୁହାଟ ଛାଡ଼ିଲା, "ମକରା, କେମିତି ଅଛୁ ?" ମକରା 'ଓ' କଲା, ପାଖକୁ ଯାଇ ଓଳଗି ହେଲା । ଯାହା କହିବା କଥା କିନ୍ତୁ କହିବ କହିବ ହେଇ କହି ପାରିଲା ନାହିଁ ।

ମକରା ମାଝୀ ଯିମିତି ଦୋଛକିରେ ଠିଆ ହେଇଚି ଏଇ କେତେଦିନ ହବ । ଦାଦନ ଯିବାକୁ ତା'ର ଇଚ୍ଛା ନାହିଁ, ଦାଦନ ନ ଯାଇ ସେ ରହିପାରୁଚି ବା କାହିଁ ? ଘରେ ମା' ବୁଢ଼ୀ, ତା'ଅଣ୍ଟାରେ ଆଉ ବଳ କାହିଁ ଯେ ଖଟିବ, କମେଇବ । ତା' ବୟସ ବେଳେ ତ ସେ ଖଟିଖଟି ମାଟି ହେଇଯାଇଚି । ବା'କୁ ସେ ପୋଷୁଥିଲା । ବା'ର କି ଦିନ କି ରାତି ବିତୁଥିଲା ନିଶାପାଣିରେ । ପିଇ ପିଇ ମରିଗଲା ବା' । ବା' ମଲା ପରେ ବି ତାକୁ ଫୁରୁସତ୍ ନ ଥିଲା । ତା' ଖଟଣିରୁ ମକରା ଭେଣ୍ଡିଆ ହେଲା । ତଥାପି ବୁଢ଼ୀ ଠୁକୁରୁଠାକର କରୁଥିଲା । ଏବେ ବିଛଣା ଧରିଚି । ବୁଢ଼ୀଟାକୁ କତରାରେ ପକେଇ ଦେଇ କେଉଁ ଦୂର ମୁଲକକୁ ଯିବାପାଇଁ ଇଚ୍ଛା ହେଉ ନାହିଁ ତା'ର । ପୁଣି ଶୁକ୍ରୀ ପ୍ରତି ତା' ମୁହାଁସ କାହିଁରେ କେତେ ! ତା' ପେଟରେ ଦିଁ'ମାସର ଛୁଆ ।

ସାରାଦିନ ଖଟିଖଟି ଘରକୁ ଫେରିଲେ, ଶୁକ୍ରୀର ଦି' ପଦ କଥାରେ ମକରା ଦିହର ବଥାଦରଜ କୁଆଡ଼େ ଉଭେଇଯାଏ । ଶୁକ୍ରୀର ହସ ପରି ଆଉ କାହା ହସ ହବ । ତା' କଳା ଦିହ ତ ଗୋଟେ ଜଙ୍ଗଲୀ ରାତି । ତା' ଆଖିରେ ଆଖିଏ କଥା । ପୁଣି ଘର ହଉ କି

ବାହାର, କେଉଁ କାମରେ ତା'ର ହେଳା ନ ଥାଏ । ତା' ହାତରନ୍ଧା କି ଭାରି ସୁଆଦିଆ । ଏଣୁତେଣୁ ଯାହା ରାନ୍ଧିଦେଲେ ପେଟ ଭରିଯାଏ, ଭରିଯାଏ ମନ ।

ଶୁକ୍ରୀଠାରୁ ଦିନେ ଓଳିଏ ଦୂରେଇ ଯିବାକୁ ମକରାର ମନ ବଳେ ନାହିଁ । ତା' ବା' କି ମା' କାହାକୁ ନ ପଚାରି, ଧାଙ୍ଗଡ଼ୀ ଘରୁ ସିଧା ମକରା ସାଙ୍ଗରେ ଚାଲି ଆସିଥିଲା ଶୁକ୍ରୀ । ଦି' ବରଷ ତଳେ । କେତେ ଧାଙ୍ଗଡ଼ା ତା' ପଛରେ ପଡ଼ିଥିଲେ । ତା' ସାଥିରେ ଚଇତି ପୁନେଇଁ ରାତିଟାଯାକ ନାଚୁଥିଲେ । ଫିସ ଫିସ କଥା ହେଉଥିଲେ । ତାକୁ ମନ ମାଗୁଥିଲେ । ଶୁକ୍ରୀ କିନ୍ତୁ ମନ ଦେଇଥିଲା ମକରାକୁ । ମକରା ସାଙ୍ଗରେ ସାରା ଜୀବନ ବିତେଇବାକୁ ପଣ କରିଥିଲା । ଦିନେ ଅନ୍ଧାର ରାତିରେ ଶୂନଶାନ ବଣୁଆ ରାସ୍ତାରେ, ସେ ମକରା ସାଙ୍ଗରେ ଚାଲିଆସିଲା ତାଙ୍କ ଘରକୁ । ସେମାନେ ସ୍ୱାମୀସ୍ତ୍ରୀ ହୋଇ ସଂସାର ବସେଇଲେ ।

କିଛି ଦିନ ପରେ ଅବଶ୍ୟ ଛେଳି, କୁକୁଡ଼ା ଓ ହାଣ୍ଡିଆପାଇଁ ନଗଦ ଦେଇ ମକରା ସାହିଭାଇଙ୍କୁ ତୁଷ୍ଟ କଲା । ତହୁଁ ତା' ବାହାଘର ଉପରେ ତାଙ୍କ ଜାତିଭାଇଙ୍କ ମୋହର ଲାଗିଲା ।

ସେହିଦିନରୁ ଯେଉଁ କରଜ ଗଡୁଚି ଯେ ଗଡୁଚି, ଶୁଝା ସରୁ ନାହିଁ । ଗାଁ ଡିଲର ଧନୀ ମହାକୁଡ଼ ପାଖରେ ବନ୍ଧା ପଡ଼ିଛି ରେସନ୍ କାର୍ଡ଼ । ତେଣୁ ଟଙ୍କାକିଆ ଚାଉଳ ସେ ଆଉ ଦେଉ ନାହିଁ । ସେସବୁ କଟୁଚି କଳନ୍ତରରେ । ରାସ୍ତା ମରାମତି, ପୋଖରୀ ଖୋଳା, ପଥର ଭଙ୍ଗା କାମରୁ ମିଳୁଥିବା ମଜୁରି ଟଙ୍କାରେ ଘର ଚଳୁଥିଲା । ସେଥିରୁ ବି କିଛିକିଛି ନଉଥିଲା ମହାକୁଡ଼ । ନିଶାପାଣି ବାବଦ ବାକିବୁକର ବି ଢେର । ମଦନ ଶୁଣ୍ଢି ହାଣ୍ଡିଆ ଦବାକୁ ମନା କଲାଣି । ପିଛିଲା ପଇସା ଶୁଝିବାକୁ ତା'ର ତାଗିଦ୍, ନାଲି ଆଖି ।

ଏବେ ଆଉ ହାତକୁ କାମ ନାହିଁ । ଜଙ୍ଗଲର ଛାତି ଚିରି ରାସ୍ତା ଫିଟିଲାଣି ଆର ଗାଁକୁ । ପଥରଭଙ୍ଗା କାମ ଆଉ ନାହିଁ । ଦି'ଦି'ଟା ପୋଖରୀ ଖୋଳା ସରିଛି । ଜଙ୍ଗଲରୁ କାଠ କାଟିବା ମନାହେଇଛି । ଗାର୍ଡ଼ ଜଗିଛନ୍ତି ରାତିଦିନ । ଶାଳପତ୍ର ସାଉଁଟାରୁ କେତେ ବା ପଇସା ମିଳିବ ? ସେଥିରେ କ'ଣ ତିନିପେଟକୁ ଦାନା ଅଣ୍ଟିବ ?

ଏ ସନ ପୁଣି ଇନ୍ଦ୍ରର କୋପଦୃଷ୍ଟି ମାଟି ଉପରେ । ଆକାଶ ସାଫ୍ । ଆଷାଢ଼ ଆରମ୍ଭରୁ ପାହାଡ଼ ଉହାଡ଼ରୁ କଳା ବାଦଲର ସୁଅ ଛୁଟେ । କଚଡ଼ା ବର୍ଷାରେ ଭିଜେ ଜଙ୍ଗଲ, ପାହାଡ଼, ମାଟି । ପାହାଡ଼ ତଳେ ତା' ବା' ଆବାଦିଥିବା ଜମିରେ ମକରା ଧାନ ବୁଣେ । ଏବେ କିନ୍ତୁ ଜମି ଫାଟି ଆଁ କରିଚି । ଚାଷ ନାହିଁ । ପର ବିଲରେ କାମକଲେ ଭଲ ଦି'ପଇସା ମୂଲ ମିଳେ । ଏଥର ସବୁ ଥପ୍ । ଦିନ ଦିନ ଧରି ଚୁଲିକୁ ନିଆଁ ଯାଉ ନାହିଁ । ଗଣ୍ଡେ ଛ'ଟା କୁକୁଡ଼ା ବିକା ସରିଲାଣି । ଛେଳି ବିକା ଟଙ୍କା ଶୁକ୍ରୀର ଶାଢ଼ିକିଣାରେ ଯାଇଛି । ଆଗପଛ– ସବୁ ଅନ୍ଧାର । ଦାଦନ ଛଡ଼ା ବାଟ କାହିଁ ?

ତଥାପି ଦି'ପାଦ ଆଗକୁ ଯାଇ ଦେଢ଼ପାଦ ପଛକୁ ଫେରୁଥିଲା ମକରା । ସନା ମହାନ୍ତିର ମୁହଁଟା ତାକୁ ବେଳେବେଳେ ଭୂତ ପରି ଦିଶେ । ସେ ଭୟ ପାଇଯାଏ । ବାଘଭାଲୁଙ୍କୁ ବିଶ୍ୱାସ କରିହବ, କିନ୍ତୁ ମହାନ୍ତିକୁ ନୁହେଁ । ପୁଣି ଗାଁ ଠାରୁ କେତେଦୂର ଅଜଣା ରାଇଜ କଥା ଚିନ୍ତା କରି ତା' ଦିହ ଶୀତେଇ ଉଠୁଥିଲା । ଶୁକ୍ରୀକୁ ଛାଡ଼ି ଯିବା କଥା ଭାବିଲାକ୍ଷଣି ତା' ଛାତିରେ ଯେମିତି ଲାଗି ଯାଉଥିଲା ନିଆଁ । ବୁଢ଼ୀର ଅବସ୍ଥା ତାକୁ କିଛି ଠିକ୍ ଲାଗୁ ନ ଥିଲା ।

ମକରାକୁ କିଏ ପରା କହିଲା, ତୁ ଯାଇ ସରପଞ୍ଚକୁ ଦେଖାକର । କାଳେ ଆଗକୁ କାମଦାମ ମିଳିବ । ଯଦି ଏଠି କାମଧନ୍ଦା ମିଳିଯାଏ, ଦୂର ଦେଶକୁ ଯିବା କି ଦରକାର ? ନିଜ ଗାଁ, ନିଜ ମାଟି, ନିଜ ମା', ମାଇପ, ସାହିପଡ଼ିଶାଙ୍କ ପରି ଆଉ କିଏ ହବ କି ? ମକରା ମଗଜକୁ କଥାଟା ଛୁଇଁଲା । ତହୁଁ ସେ ଧାଇଁଲା ସରପଞ୍ଚ ଘରକୁ । ସରପଞ୍ଚ ମାଇପିଟା । ତା' ସ୍ୱାମୀ ସବୁକଥା ବୁଝାଶୁଝା କରେ । ମକରା ତାକୁ ଭେଟିଲା, କାମଦାମ କଥା ପଚାରିଲା । ସେତେବେଳେ ସରପଞ୍ଚ ସ୍ୱାମୀ ଦୀନା ନାଇକ ଖଟିଆରେ ଦରଶୁଆ ହେଇ ଫିକା ଟାଣୁଥିଲା । ଲୋକଟା ପିକାଟଣାରେ ଇମିତି ମଜ୍ଜିଥିଲା ଯେ ମକରା କଥା ତା' କାନରେ ପଶୁଥିଲା କି ନାହିଁ କେଜାଣି ? ପିକାଟଣା ସରିଲା ପରେ ସେ ଗାରଡ଼େଇକି ମକରାକୁ ଚାହିଁଲା । ତା' ଆଖି ଦି'ଟା ସେତେବେଳେ କି ଆଉ ରଡ଼ନିଆଁ । ତା'ପରେ ଜିଜ୍ଞାସିଲା, ଆରେ ଶଳେ, ତମକୁ ଆଉ କେତେ କାମ ଦିଆଯିବ । ପଥର ଭାଙ୍ଗି ପଇସା ଗୋଟେଇଲ, ମାଟି କାଟି ପଇସା ଖାଇଲ, ଟଙ୍କାକରେ ଚାଉଳ ପାଇଲ, ତମ ପାଇଁ ଆଉ କ'ଣ କରିବ ସର୍କାର । ଯୋଉ ଦିନ ଯାହା କମେଇବ, ତାକୁ ସେହିଦିନ ତ ନିଶାପାଣିରେ ଉଡ଼େଇବ । ସରପଞ୍ଚ କି ବି.ଡି.ଓ. ସବୁବେଳେ କ'ଣ ତମ ପିଠିରେ ପଡ଼ିବେ ? ଯାଃ...ଶଳା ।'' ନାଇକ ଏମିତି କହୁ କହୁ ଘର ଭିତରକୁ ପଶିଗଲା । କାନମୁଣ୍ଡ ଆଉଁଶି ମକରା ସେଠୁ ଲେଉଟି ଆସିଲା ।

ଯୋଗକୁ ବାଟରେ ଦେଖାହେଲା ପୁରୁଣା ସରପଞ୍ଚ ରାଧୁ ବେହେରା ସାଙ୍ଗରେ । ମକରା ରାସ୍ତାକଡ଼ରେ ଠିଆ ହେଇ ତାକୁ ଦୁଃଖ ଜଣେଇଲା । ବେହେରା ମୁରୁକିହସା ଦେଇ କହିଲା, ''ନ ଜାଣି ନ ଶୁଣି, ଡକେଇତ ମାଇପକୁ ଭୋଅଟ ଦେଲ । ଏବେ ମଜା ପାଅ।'' ଗଳା ଖଙ୍କାରି କଥା ଯୋଡ଼ିଲା ପୁଣି, ''ମେସିନ୍ ସବୁ କାମ କଲା । ନାଇକ, ମାଇପ ନାଁରେ ପଣି ଖାଇଲା । ଆଉ କାମଦାମ ମିଳିବ ନାହିଁରେ ପୁଅ । ପଳା..ପଳା, ଗାଁ ଛାଡ଼ି ପଳା ।''

ସତରେ ଗାଁ ଛାଡ଼ି ପଳେଇବାପାଇଁ ମକରା ମନଟାଣ କଲା । ସେଦିନ ହାଟବାରି ଥିବାରୁ ସେ ସେହି ବାଟେ ବାଟେ ହାଟକୁ ଗଲା । କିନ୍ତୁ ରଘୁ ସାହୁ ଦୋକାନରେ ସନା ମହାନ୍ତିକି ଦେଖିଲା ନାହିଁ । ସେଠୁ ତା'ର ଭାଳେଣି ପଡ଼ିଲା । ସେ ହାଟ ସାରା ଘୂରିବୁଲିଲା, ଯିଏ ଟିକେ ମୋଟାମୋଟା ଚେହେରା ତାକୁ ସନା ମହାନ୍ତି ବୋଲି

ଭାବିଲା । ବେଳ ଗଡ଼ାଣିକୁ ଯାଇ ସେ ରଘୁ ସାହୁକୁ ପଚାରିଲା, "ସନା ମହାନ୍ତି ଆଜି ଆସିବ ନାହିଁ କି ? ରଘୁ ସାହୁ କହିଲା, 'ମହାନ୍ତି ଆସିବ ନିଶ୍ଚୟ । ହେଲେ ଡେରି ହବ । ଆଜିକାଲି ସେ ଠିକାଦାରି ସାଙ୍ଗରେ ରାଜନୀତି କରୁଚି । ଏମ୍.ଏଲ୍.ଏ.ର ପାଖଲୋକ । ରହ ଦେଖିବୁ, ମହାନ୍ତି ଆଉ ଶାର୍ଟପ୍ୟାଣ୍ଟ ନ ପିନ୍ଧି କେମିତି ଟ୍ରାଉଜର, ପଞ୍ଜାବି ପିନ୍ଧି ମୁରୁକି ମୁରୁକି ହସୁଚି । ଆଗ ଭୋଅଟ ବେଳକୁ ଟିକଟ କିଣିଦବ ବୋଲି କହୁଚି ।"

ହାଟ ଭାଙ୍ଗିବା ଉପରେ । ସଞ୍ଜସଞ୍ଜିଆକୁ ସନା ମହାନ୍ତି ଓହ୍ଲାଇଲା କାର୍‌ରୁ । ସତକୁ ସତ ନୂଆ ରୂପଭେକ । ଏମ୍.ଏଲ୍.ଏ. ଭଳି ସେ ଦିଶୁଥିଲା । ମହାନ୍ତି ବସୁବସୁ ମକରା କହିଲା, "ଆଜ୍ଞା, ଦାଦନ ଯିବାକୁ ରାଜି । ହେଲେ ଘର ଚଳିବାପାଇଁ ଆଉ କିଛି ପଇସା ଦରକାର । ସନା ମହାନ୍ତି ମୁଣ୍ଡ ହଲେଇଲା, ହସିଲା, ସଫା ହସ । ମହାନ୍ତି ହଁ କହୁଛି କି ନା କହୁଛି ମକରା ବିନ୍ଦୁବିସର୍ଗ ବୁଝିପାରିଲା ନାହିଁ ।

ସନା ମହାନ୍ତି କଥା ରଖିଲା । ମକରା ଦାଦନ ଯିବା ଦି'ଦିନ ଆଗରୁ ତା' ପୋଷାଟୋକା ଦି'ଜଣ ଆସି ଦଶଟା ଶହେ ଟଙ୍କିଆ ନୋଟ୍ ବଢ଼େଇଦେଲେ ମକରା ହାତକୁ । କହିଲେ, "ଏ ଟଙ୍କା ଏଡ଼୍‌ଭାନ୍ସ ।" ଆଉ ଶହେ ଟଙ୍କିଆଟାଏ ଦେଇ କହିଲେ, "ରେଳ ଷ୍ଟେସନ୍‌ରେ ପହଞ୍ଚିବାପାଇଁ ଏ ହେଲା ଗାଡ଼ି ଭଡ଼ା । ସେଠୁ ଖର୍ଚ୍ଚବାର୍ଚ୍ଚ କଥା ବୁଝିବାପାଇଁ ଆମ ଲୋକ ଅଛନ୍ତି ।" ଦି'ଜଣଙ୍କ ଭିତରୁ ଅଧିକ ଫିନ୍‌ଫିନିଆ ଟୋକା କହିଲା, "ମହାନ୍ତି ସାର୍ କହିଚନ୍ତି, ତୁ ଗାଁରେ ନ ରହିଲେ କ'ଣ ହେଲା, ତୋ ଘରସଂସାର ଭଲମନ୍ଦ କଥା ସେ ବୁଝିବେ ।" ଆଉ ବାବୁଟି କଥା ଲମ୍ବେଇଲା," ମକରା, ତୁ ଦାଦନରୁ ମୋଟା ଟଙ୍କା ଧରି ଫେରିବୁ । ଏଠି କୋଠାବାଡ଼ି କରି ଆରାମରେ ରହିବୁ ।"

ଏସବୁ କଥା ଶୁଣିବାପାଇଁ ମକରାର ଜମା ଇଚ୍ଛା ନ ଥିଲା । ବରଂ ସନା ମହାନ୍ତିର ଟଙ୍କା ହାତରେ ଧରିଲାକ୍ଷଣି ତା' ଛାତି ଭିତରେ କିଏ ଯିମିତି ମୁଗୁର ପିଟିଦେଲା । ଶୁକ୍ରୀର ନୂଆ ମେଘ ପରି ମୁହଁ ତାକୁ ଚାରିଆଡୁ ଘେରିଲା । ମା' କାନ୍ଦଣା ତା' କାନରେ କେନ୍ଦରା ବଜାଇଲା ।

ମକରା ଆଗରୁ ରେଳଗାଡ଼ିରେ ବସି ନ ଥିଲା । ତାଙ୍କ ଆଡ଼େ ରେଳଗାଡ଼ି ଚାଲେ ନାହିଁ । ସେ କିନ୍ତୁ ରେଳଗାଡ଼ି ଥରେ ଦେଖିଥିଲା ଯାହା କଟକରେ । ଏତେଗୁଡ଼ାକ ରେଳଗାଡ଼ି ପହିଲେ ସେ କଟକରେ ହିଁ ଦେଖିଥିଲା । ରେଳଗାଡ଼ିରେ ବସିବାରୁ ତାକୁ ଭାରି ଭଲ ଲାଗିଲା । ପରେ କିନ୍ତୁ ମନେମନେ ସେ ଖୁବ୍ ଚିଡ଼ିଗଲା । ଗାଡ଼ିରେ ଦେଢ଼ ଦି'ଦିନ ଧରି ବସିବାରୁ ତା' ଗୋଡ଼-ହାତ ଅବଶ ଲାଗୁଥିଲା । ଲୋକଭିଡ଼ ଭିତରେ ସେ ପିକାଖଣ୍ଡେ ବି ଟାଣିପାରୁ ନ ଥିଲା,ରେଳ ଡବା ଭିତରେ ହାଣ୍ଡିଆ ଥିଲା ସାତସପନ ।

ଅନ୍ୟମାନଙ୍କ ସାଙ୍ଗରେ ମକରା ଯୋଉ ଜାଗାରେ ଓହ୍ଲେଇଲା, ସେଠିକା ଭାଷା ସେ କିଛି ବୁଝିପାରିଲା ନାହିଁ । ଏଡ଼େ ଚଉଡ଼ା ନଈଟାକୁ ଦେଖି ସେ ମହାନ୍ତିର ସୁପରଭାଇଜର୍‌କୁ ପଚାରିଲା' "ଏଇଟା କ'ଣ ମହାନଦୀ" ? ସୁପରଭାଇଜର୍

ହସିଲା । କହିଲା, ''ଆରେ, ବେକୁବ୍, ଏ ରାଜ୍ୟ ଓଡ଼ିଶା ନୁହେଁ । ଏଇଟା ତେଲଙ୍ଗାଙ୍କ ଦେଶ । ଏ ନଈ ନାଁ ଗୋଦାବରୀ । ନଈ ମଝିରେ ଏଠି ବନ୍ଧ ତିଆରି ଚାଲିଚି । କାମ ଯାହାକୁ ଯେତେ । ଟଙ୍କା ପବନରେ ଉଡୁଚି । ଧରିପାରିଲେ ହେଲା ।'' ଉଡ଼ିଯାଉଥିବା ଟଙ୍କାକୁ ନିଶ୍ଚେ ସେ ଧରିବ, ନିଜ ପାଇଁ ନୁହେଁ, ଖାସ୍ ଶୁକ୍ରୀ ପାଇଁ– ମକରା ମନେମନେ ଖୁସିହେଲା ।

ନଈକୂଳରେ ଯିମିତି ଗାଁ ବସିଚି । ଘର ଗଣି ହବ ନାହିଁ । ନୁଆଁଣିଆ ଘର । ଛଣ ତ କେଉଁଠି ତାଳବରଡ଼ାର ଛପର । କେଉଁଠି କେଉଁଠି ପଡ଼ିଛି ରଙ୍ଗଟିଣ ନ ହେଲେ ଖପରଲି । ସୁପରଭାଇଜର୍ ଧାଡ଼ିଏ ଘର ଦେଖେଇ କହିଲା, ''ତମେମାନେ ଏହି ଘରେ ରହ । ଦିନେ ଅଧେ ପାଖ ହୋଟେଲକୁ ଯାଇ ଖିଆପିଆ କର । ପରେ ହାଣ୍ଡିକରେଇ କିଣି ରୋଷେଇବାସ କରିବ । ଚଳିବାପାଇଁ ତମକୁ କିଛି ଟଙ୍କା ଦିଆଯିବ । ମୋଟା ଟଙ୍କା ନେଇ ଦେଶକୁ ଫେରିବ । ବେଶି ଟଙ୍କା ମାଗିବ ନାହିଁ । ଯଦି ନିଶାପାଣିରେ ପଇସା ଉଡ଼େଇବ, ଘରକୁ କ'ଣ ନେଇ ଫେରିବ ?'' ସୁପରଭାଇଜର୍ କଥା ମକରା ମନକୁ ପାଇଲା । ସତ କଥା ତ । ମକରା ନିଜକୁ ବୁଝେଇଲା । ଦି'ପଇସା ନ ରଖିଲେ ସେ ଶୁକ୍ରୀକୁ କେମିତି ମୁହଁ ଦେଖେଇବ ? ଶୁକ୍ରୀପେଟରେ ଥିବା ଛୁଆଟା ଦୁନିଆକୁ ଆସିଲେ, ତା'ର ହେପାଜତ ପାଇଁ ତ ପଇସା ଲୋଡ଼ା । ପଇସା ଲୋଡ଼ା ମା'ର ଓଷଦପାଇଁ, ମାଝୀ କି ଦିସାରୀର ତୁଟୁକାପାଇଁ । ସବୁଠାରୁ ବେଶି ଟଙ୍କା ଦରକାର ଘର ତିଆରିପାଇଁ । ନୂଆ ଘରଖଣ୍ଡେ ତୋଳିଦେବ ବୋଲି ସେ ତ ଶୁକ୍ରୀକୁ କଥା ଦେଇଚି ।

ମକରା ଜାଣେ, ତାଙ୍କ ଗାଁର ଅନେକ ଲୋକଙ୍କ ଘର ପକ୍କା ହେଇଚି ସରକାରୀ ଟଙ୍କାରେ । ହେଲେ ତା'ର ଘର ନାହିଁ । ମକରା ଘରଟେ ପାଇଁ କ'ଣ କମ୍ ଦୌଡ଼ାଦୌଡ଼ି କରିଚି । ମେମ୍ବର, ସରପଞ୍ଚ, ଗ୍ରାମସେବକ– କାହାକୁ ବା ସେ ନେହୁରା ନ ହେଇଚି ? ହେଲେ ଫଳ ଶୂନ । ସମସ୍ତେ ହଁ ହାଁ ମାରିଲେ, କେହି ଘରଖଣ୍ଡେ ଦେଲେ ନାହିଁ । କହିଲେ କ'ଣ ନା ତୋତେ ଥରେ ଘର ଦିଆ ହେଇଚି, ଆଉ ଦିଆଯିବ ନାହିଁ । ମକରାର ଅକଲ ଗୁଡୁମ୍ । ଘର ତ ସେ ପାଇ ନାହିଁ, ଘର ପାଇଁ ଟଙ୍କା ଆଣି ନାହିଁ । ସେ ଘର ପାଇଚି ବୋଲି ବାବୁମାନେ କହୁଛନ୍ତି କିପରି ? ବୁଝିଲାବେଳକୁ ତା' ନାଁରେ ଘର ମଞ୍ଜୁର କରି ବାବୁ ଓ ନେତାଏ ମିଶି ପଇସା ଖାଇଯାଇଚନ୍ତି । କେହି କେହି କହିଲେ, ''ସରକାରକୁ ଆପତ୍ତି ଜଣା । ଦରଖାସ୍ତ ଖଣ୍ଡେ ଲେଖା କରି କଲେକ୍ଟରଙ୍କ ପାଖକୁ ପଠେଇ ଦେ । ଏମାନଙ୍କ ଫିସାଦି ଧରା ପଡ଼ିଯିବ ।'' ଆଉ ଥୋକେ କହିଲେ, '' ମକରା, ତୁ ସେଥିରେ ମୁଣ୍ଡ ପୂରାନାରେ । ସରପଞ୍ଚ ତ ଏମ୍.ଏଲ୍.ଏ.ର ଖାସ୍ ଲୋକ । ଆଉ ଏମ୍.ଏଲ୍.ଏ. ତ ଖୋଦ୍ ସରକାର ।''

ସରକାର ନ ଦେଲା ନାହିଁ, ସେ ଖଟିବ, ପଇସା ଅର୍ଜିବ ଘର କରିବ । ଶୁକ୍ରୀକି ଦେଇଥିବା କଥା ରଖିବ । ମକରା ନୁଆଁଣିଆ ବଖରା ଭିତରେ ପଶୁପଶୁ ଭାବିଲା ।

ନଈକୂଳରେ ସକାଳ କେତେବେଳେ ସଞ୍ଜ ହୁଏ, କେହି ଜାଣିପାରନ୍ତି ନାହିଁ । ମକରା ବି । ରାତି ପାହାନ୍ତାରୁ ଉଠି ସେ ରୋଷେଇବାସ କରେ । ଭାତ, ଡାଲମା । କେବେ କେମିତି ଟମାଟୋ ଖଟା । ଆଉ ଅଧିକ କିଛି ରାନ୍ଧିବାକୁ ଫୁରୁସତ୍ କାହିଁ । ତା'ପରେ ସେ କାମକୁ ବାହାରିଯାଏ ଯେ ଯାଏ ଫେରିଲା ବେଳକୁ ମୁହଁ ଅନ୍ଧାର । ତାଳଗଛ ପ୍ରମାଣର ଉଚ୍ଚା ବନ୍ଧ । ମାଟି କାମ କରନ୍ତି ହଜାର ହଜାର ଲୋକ । ମକରା ତାଙ୍କ ଭିତରୁ ଜଣେ । କେହି କାହାକୁ ଚିହ୍ନନ୍ତି ନାହିଁ । କିଏ କେଉଁ ରାଇଜରୁ ଆସିଚନ୍ତି କାହାକୁ ବା ଜଣା । ପୁଣି ଖାଇବା, ପିନ୍ଧିବା ଢଙ୍ଗ ରଙ୍ଗ ଅଲଗା, ଅଲଗା ରୂପଭେକ ।

ଦିନକର କାମ ସରିଲା ଉତ୍ତାରୁ କି ସ୍ତ୍ରୀ କି ପୁରୁଷ – ସମସ୍ତେ ଦିଶନ୍ତି ଭୂତ ପରି– ମାଟି ସଲବଲ ଦିହମୁଣ୍ଡ । ବରଷାପାଣି ପରି ଦିହରୁ ନିଗୁଡୁଥାଏ ଝାଳ । ଲାଗେ ଯିମିତି ଚମତଳ ହାଡ଼ସବୁ ଗୁଣ୍ଡ ହେଇଯାଇଚି । ତଥାପି କାମକୁ ଡର ନ ଥାଏ ମକରାର । କାମ କରି କରି ତା'ହାତ ତ ଲୁହା ପାଲଟି ଯାଇଛି । କେଉଁ କାମ ବା ତାକୁ ଡରାଇ ପାରିବ । କାମ ସରିଲାପରେ ନଈରେ ସେ ବୁଡ଼ ମାରେ । ଦିହ ମାଜେ । କଳା ମୁଗୁନି ପଥର ପରି ତା'ଦିହ ଘଷିମାଜି ହେଲା ପରେ ଆହୁରି ଚହଟେ । ବେଳେବେଳେ ନଈକି ଦେଖି ସେ ଚିହିଁକିପଡ଼େ । ନଈଟାଯାକର ଜଳ ଯିମିତି ରକତ ଟଳମଳ । ଲହୁଲୁହାଣ ବି ଆକାଶ । ନଈ ଉପରମୁଣ୍ଡ ପାହାଡ଼ ଖୋଲରେ ସେତିକିବେଳେ ସୂରୁଯ ଜଳୁଥାଏ ଥଣ୍ଡାନିଆଁ ପରି । ମକରା ସେହି ଆଡ଼କୁ ଦଣ୍ଡେ ଚାହେଁ । ତାଙ୍କ ଗାଁ କଥା ତା'ର ମନେପଡ଼େ । ତାଙ୍କ ଗାଁରେ ବି ନାଲି ସୂରୁଯ ଏଇମିତି ଉଏଁ ପାହାଡ଼ ସନ୍ଧିରୁ, ପୁଣି ଆକାଶରେ ନାଲି ଲହଡ଼ି ଭାଙ୍ଗି ସାମନା ପାହାଡ଼ ସନ୍ଧିରେ ହଜିଯାଏ ସଞ୍ଜକୁ ।

ମକରା ପାଇଁ ସେହିସବୁ ସଞ୍ଜସକାଳ କେଡ଼େ ନିଜର ସତେ ! ଶୁକ୍ରୀ ସହିତ ଭେଟ ହେଇଥିବ ସିମିତି କେତେ ସକାଳ ବା ସଞ୍ଜରେ । ସେ ତଳକୁ ମୁହଁ ପୋତି ଚାଲେ, ବେଳେବେଳେ ପଛକୁ ଚାହିଁଦିଏ । ସେତେବେଳେ ତା'ଓଠରେ ଲାଗି ରହିଥାଏ ହସ ଖାଲି ହସ । ଶୁକ୍ରୀ ବିନା କଥାରେ କେତେ କଥା କହେ । ପଛକଥା ମକରା ଛାତିରେ ଝରଣା ହେଇ ବହିଯାଏ । ଗାଁ-ଗଣ୍ଡା, ମା'-ଖୁଡ଼ୀ, ସାଙ୍ଗସାଥୀ ସମସ୍ତେ ମନେପଡ଼ନ୍ତି । ଶୁକ୍ରୀ ତ ଛାଇ ପରି ପାଖେ ପାଖେ ଥାଏ, ବେଳେବେଳେ ବୋହୂବୋହୂକା ଖେଳେ । କେବେ କେମିତି ତା' ହସ ଭାସିଆସେ ପବନରେ । ପରଦେଶ ମେଘ ବି ଗାଁ ମେଘ ପରି ଦିଶେ । ଚିହ୍ନା ଚିହ୍ନା । ମେଘ ହାତରେ ଆଉ ବେଉରା ପଠାଏ କି ଶୁକ୍ରୀ !

କାମ ଜାଗାରେ ହାଣ୍ଡିଆ ମିଳେ ନାହିଁ, ମିଳେ କିନ୍ତୁ ନାନା କିସମର ମଦ–ଦେଶୀ, ବିଦେଶୀ । ପହିଲୁ ପହିଲୁ ମକରାର ମୁଣ୍ଡ ବିଗିଡ଼ି ଯାଇଥିଲା । ହାଣ୍ଡିଆପାଇଁ ସେ ପାଗଳ ହେଇଯାଇଥିଲା । ହେଲେ ସେ ନାଗା ରେଡ୍ଡୀ ତାକୁ ନୂଆ ନିଶାପାଣିର ଠିକଣା ବତେଇଦେଲା । ଠିକଣା କେବଳ ବତେଇଥିଲା କି, ସାଙ୍ଗ ହେଲା ବି । ପିଆପିଇରେ ସେ ଓସ୍ତାଦ । ଅନ୍ୟର ମନକଥା ବୁଝିବାରେ ପୋଖତ । କାମରୁ ଫେରିଲା ପରେ ମକରା କ'ଣ ଖୋଜୁଚି, କାହିଁକି ବାୟା ହେଉଚି, ସେ ଦେଖିଦେଲାକ୍ଷଣି ଜାଣିପାରିଲା ।

ପୁରୁଖା ନିଶାଡ଼ି, ଜୁଆଡ଼ି ବି ? କାମ କରେ ନାହିଁ, ଦାମ କରିବା ତା' କାମ । ସେ ଠିକାଦାର ନୁହେଁ, ସୁପରଭାଇଜର୍ ନୁହେଁ, ଦାଲୁବାଲା ବି ନୁହେଁ । କିଛି ନୁହେଁ, କିନ୍ତୁ ସବୁକିଛି । ପ୍ରଥମେ ସେ ମକରାକୁ ମଦ ପିଆଇଲା, ଏବେ ମକରା ପଇସାରେ ମଦ ପିଉଚି, ଖାଉଚି ବି ? ନାଗା ରେଡ୍‌ଡୀର ଘରଦ୍ୱାର ନାହିଁ । ପିଲାକବିଲା ନାହାନ୍ତି । ମାଟି ତା' ବିଛଣା ତ ଆକାଶ ତା' ଛାତ । ତା'ପରି ଉପକାରୀ ଲୋକ ଦେଖି ବି ନାହିଁ ମକରା ।

ଆଜିକାଲି ମହାନ୍ତି ସୁପର୍‌ଭାଇଜର ଆଉ ଦେଖାଯାଉ ନ ଥିଲା । ସେ ବୋଧେ ଫେରିଯାଇଥିବ ଦେଶକୁ । ଏବେ ଯେଉଁ ଲୋକଟି ହପ୍ତାଦିଏ, ତାକୁ ଡାକନ୍ତି ରାଓଗାରୁ ବୋଲି । ତେଲେଙ୍ଗା ଯଦି ବା, ତା'ର କିନ୍ତୁ ମିଶାମିଶି କଥା । କିଛି ବୁଝି ହୁଏ, ଅନେକଟା ସମଝ ବାହାରେ । ସେ କାହାରି କଥା ଶୁଣେ ନାହିଁ । ତା' କାଗଜ-ଖାତା ଭଲ ତ ସିଏ ଭଲ । ମକରା ତା'ଆଗରେ ଆପତ୍ତି କରେ, ''ଏତେ କମ୍ ପଇସା କାହିଁକି ? ମହାନ୍ତି ତ କହିଥିଲା ବହୁତ ପଇସା ମିଳିବ ବୋଲି ! ମା'-ମାଇପଙ୍କ ପାଇଁ ତ ସେ ଦାଦନକୁ ଆଇଚି, ଏତିକି ପଇସାରେ ଖାଇବ କ'ଣ, ସଞ୍ଚିବ କ'ଣ ?'' ରାଓଗାରୁ କିଛି ବୁଝେ କି ନ ବୁଝେ କେଜାଣି ? ଖାତାରେ ସଇ ନିଏ, ପଇସା ଦିଏ । ତା' ମୁହଁକୁ କିଏ ଯିମିତି ସିଲେଇ କରିଚି । ସବୁବେଳେ ପାଟିବନ୍ଦ, ଆଖି ଲାଲ୍‌ଲାଲ୍ । ମକରା ଭାବେ, ମହାନ୍ତିର ଲୋକ ଆଜି ନ ହେଲେ କାଲି ଆସିବ । ଏକାବେଳକେ ବାକି ପଇସା ପଇଠ କରିବ । ସେ ମୋଟା ଟଙ୍କା ନେଇ ଘରକୁ ଯିବ । ସତରେ କେଡ଼େ ଖୁସି ନ ହବ ଶୁକ୍ରୀ ! ତା'ପେଟରେ ଝିଅ କି ପୁଅ ଅଛି, କିଏ କହିବ ? ଯିଏ ବି ଥାଉ, ଭଲରେ ଭଲରେ ମାଟିରେ ପଡୁ । ସେତେବେଳକୁ ସେ ତ ଗାଁକୁ ଯାଇସାରିଥିବ ।

ରାତିରେ ଆଉ ରୋଷେଇ କରୁନି ମକରା । ହୋଟେଲରେ ଖାଉଚି । ନଈ କୂଳେ କୂଳେ ତଳମୁଣ୍ଡକୁ ଅଧ ମାଇଲିଏ ଗଲେ ଗୋଟେ ଝୁମ୍ପୁଡ଼ି ଘର । ସେଠି ଭାତ, ରୁଟି, ଦୋଷା ମିଳେ । ମିଳେନି କିନ୍ତୁ ମାଛ କି ମାଉଁସ । ନାଗା କିନ୍ତୁ ବରାଦ କଲେ କେଉଁଠୁ କେଜାଣି କଷାକୁକୁଡ଼ା ମାଂସ ଆସିଯାଏ । ପଛପଟକୁ ଗଲେ ଅନ୍ଧାରିଆ ଘର, ବୋତଲ ବୋତଲ ମଦ । ମକରାର ଗିଲାସେକୁ ନାଗାର ତିନି ଗିଲାସ । ଢେର ରାତିଯାଏ ପିଆପିଇ ଚାଲେ । ଫେରିଲାବେଳକୁ ବାଟଘାଟ, ଖାଲଖମା ଦିଶେ ନାହିଁ । କିନ୍ତୁ ଶୁକ୍ରୀ ମୁହଁ ଦିଶିଯାଏ । ଭାରି ମନେ ପଡ଼େ ତା'କଥା । ମନେପଡ଼େ ତା'ରାଗରୁଷା, ତା'ବେଣୀ ତା'ଚାହାଣି । ମକରା ଶୁକ୍ରୀ, ଶୁକ୍ରୀ ବୋଲି ସୁର ଲମ୍ବାଏ । ବେସୁରା ସୁର । ଅନ୍ଧାର ରାତିର ଛାତି ଥରିଉଠେ । ନାଗା ପଚାରେ, ''ଶୁକ୍ରୀ କିଏ କି ରେ ?'' ମକରା ନାଗା ଗାଲରେ ମିଠା ଚାପୁଡ଼ାଟାଏ ମାରି କହେ, ''ଶୁକ୍ରୀ ମୋ ମା-ଇ-ପ... । ନାଗା ହସେ । ତା' ହସରେ ବିଜୁଳି ଝଟକେ, ଅନ୍ଧାରରାତି ଚେଇଁଉଠେ ।

ଇମିତିକା ଅନ୍ଧାର ରାତିରେ ଥରେ ନାଗା ନେଇ ମକରାକୁ ପହଞ୍ଚେଇଥିଲା ଗୋଟେ ନୁଆଁଣିଆ ତାଳବରଡ଼ା ଛପରଘର ଆଗରେ । ପଛକୁ ପଛ ଆଉ କେତେ ଘର ବି ଲୁଚିଥିଲେ ରାତି କଳାପଣତରେ । ମକରା ପଚାରିଥିଲା, ''ନାଗାଭାଇ,

ଖିଆ ସରିଲା, ପିଆ ସରିଲା, ଏଠି ପୁଣି କ'ଣ ?'' ନାଗାରେଡ୍‌ଡୀ ଯାହା କହିଲା ତା'ର ମାନେ ହେଲା, ''ଆରେ ମକରା, ତୁ ତ ଭେଣ୍ଡାଟାଏ, ମାଇପ ଛାଡ଼ି ଆଇଚୁ ଗାଁରେ । ଏଠି ମାଇପ ପରି ମାଇପ ମିଳନ୍ତି ।'' ମକରା ଚିତ୍କାର କରି ସେଠୁ ଲେଉଟିଲା । ନାଗା ଛିଗୁଲେଇଲା, ''ଅଣପୁରୁଷା କିରେ ?''

ଥରେ ଦି'ଥର, ଦିନେ ଦି'ଦିନ ସିନା ଗୋଡ଼ ଛାଟିଲା ମକରା, ହେଲେ ଦି'ହପ୍ତା ନ ପୂରୁଣୁ ସେ ନାଗା ବସେଇଥିବା ଅଠାକାଠିରେ ପଡ଼ି ଛଟପଟ ହେଲା । ଚାଳଘର, ଅନ୍ଧାର, ଡିବିରି ଆଲୁଅ, ଅଧୁଆଡ଼ୀ ମାଈ- ଏସବୁ ବାଦ୍ ତାକୁ ଆଉ ଦୁନିଆ ଦିଶିଲା ନାହିଁ । ନିତି ରାତିରେ ସେହି କାଳୀ, ପାତେଳୀ ମାଈ ପାଲଟୁଥିଲା ନଈ । ଗଣ୍ଡ କୁହୁକରେ ବୁଡ଼ି ମରୁଥିଲା ମକରା ।

କିଛି ଦିନ ଅନ୍ତେ ମକରାକୁ ଲାଗିଲା, ତା' ଦିହ ହୁଗୁଳି ଯାଉଚି ଯିମିତି । ପାହାଡ଼ ଚଢୁଥିବା ଗୋଡ଼ ଦି'ଟା ବନ୍ଧ ଉପରକୁ ଉଠିବାକୁ ଅଟମଟ । କେହି କେହି କହିଲେଣି, ''କୋରଡ଼ ଭିତରକୁ ପଶି ପଶି ଯାଉଚି ତୋ ଆଖିରେ, ମକରା । ତୋ ଛାତିହାଡ଼ ପଦାକୁ ଉକୁଟିଲାଣି ।'' ତା' ଦେହମୁଣ୍ଡ କିଛି ହେଇଗଲା କି ଆଉ ? ନିଜକୁ ପଚାରେ ମକରା, ଭିତରେ ଭିତରେ ଆତୁର ହୁଏ । ଦାରୁ ଆଉ ଦାରୀର ପାଖ ଆଉ ପଶିବ ନାହିଁ ବୋଲି ନିତି ସକାଳୁ ହଲପ କରେ ! କିନ୍ତୁ ସଞ୍ଜକୁ ସେ କଥା ତା'ର ମନେ ରହେ ନାହିଁ । ସେ ନାଗାରେଡ୍‌ଡୀ ପାଖରେ କି କିମିଆ ଥାଏ କେଜାଣି ମକରା ତା'ପିଛା ଛାଡ଼େ ନାହିଁ । ତା'କଥାରେ ସୁନାପିଲାପରି ହଁ ମାରେ । ତା' ସାଙ୍ଗରେ ମଦ ପିଏ, ମାତାଲ ହୁଏ । ଦାରୀ ସାହିରେ ରାତି ପାହାନ୍ତି ଯାଏ ପଡ଼ିଥାଏ ।

ନା ମା' ନା ଗାଁ କିଛି ଆଉ ମନେ ପଡ଼େ ନାହିଁ ମକରାର । ଶୁକ୍ରୀର ଚେହେରା ବି ଝାପ୍‌ସା । ଦିନ କେତେଟା ଭିତରେ ଯିମିତି ପଛକଥା ସବୁ ଧୂଆଁଳିଆ, ମେଘ ଘେରା ପାହାଡ଼ ପରି ।

ନାଗା ରେଡ୍‌ଡୀ କଥାରେ ମଝିରେ ମଝିରେ ଡାକ୍ତର ପାଖକୁ ଯାଏ ମକରା । ମକରାର ବେମାର ଖାମାର କଥା ଡାକ୍ତରକୁ ବୁଝାଏ ନାଗା । ମକରା କଥା କାହୁଁ ବୁଝନ୍ତା ତେଲେଙ୍ଗା ଡାକ୍ତର । ନାଗାକୁ କିନ୍ତୁ ବହୁ ଭାଷା ଜଣା । ସେ ସାରା ଭାରତ ବୁଲିଚି ବୋଲି କହେ । ଓଡ଼ିଶାରେ ବି ତା'ର କିଛିଦିନ କଟିଚି । ତା' ଗାଁ ପରା ମଞ୍ଜୁଷାରେ, ଗଞ୍ଜାମ ପାଖାପାଖି । ତା' ଲେଖାଯୋଖା ଲୋକ ଅଛନ୍ତି ଖେମୁଣ୍ଡିରେ । ସେ ମକରା କଥା କେବଳ ଡାକ୍ତରଙ୍କୁ କୁହେ ନାହିଁ, ଡାକ୍ତରଙ୍କ କଥା ମକରାକୁ ବୁଝାଏ । ଇଚ୍ଛା ନ ଥିଲେ ବି ମକରା ଓଷଦ ଖାଏ । ଓଷଦ ଖାଇବାର କିଛଦିନ ଯାଏ ତାକୁ ବେଶ୍ ଭଲ ଲାଗେ । ସେ ଡାକ୍ତରଙ୍କୁ ଭଗବାନ୍ ଭାବେ । ନାଗା ରେଡ୍‌ଡୀ କିନ୍ତୁ କହେ, ''ଡାକ୍ତରଗୁଡ଼ାକ ଖୁବ୍ ଅଖାଡୁଆ ଲୋକ । ନିଜେ ମଦ ପିଇବେ ଅନ୍ୟମାନଙ୍କୁ ମନା କରିବେ । ତାଙ୍କର ଜଣକା ଦଶେଛ'ଟା ମାଇପ, କିନ୍ତୁ ରୋଗୀଙ୍କୁ କହିବେ ସୁନାପିଲା

ହୁଅ ।'' ଇମିତି ସବୁ କଥା ହଉହଉ ମକରା ଓ ନାଗା ବହେ ହସନ୍ତି । ହସିହସି ନଈ ସୁଅକୁ ବି ଚୁପ୍ କରିଦିଅନ୍ତି । ଦାରୁ ପିଅନ୍ତି, ଦାରୀ ସାହିରେ ପଶନ୍ତି ।

ତଥାପି ମକରାର ବେଳେବେଳେ ଇଚ୍ଛାହୁଏ ଫେରିଯିବାପାଇଁ ଗାଁକୁ । ମା'କୁ ଟିକେ ଦେଖନ୍ତା, ଶୁକ୍ରୀକୁ କେତେ କଥା କହନ୍ତା । ସେମାନେ ଢେର ରାତି ପର୍ଯ୍ୟନ୍ତ ଗପସପ କରନ୍ତେ । ସାଙ୍ଗ ହେଇ ଜଙ୍ଗଲକୁ ଯାଆନ୍ତେ । ମକରା ଗଛ ଚଢ଼ନ୍ତା ତ ଶୁକ୍ରୀ ପତର ଗୋଟାନ୍ତା । ସଞ୍ଜରେ ସେ ମହୁଲି ନିଶାରେ ମସଗୁଲ ହୁଅନ୍ତା । ରାତିରେ ଶୁକ୍ରୀ କାନିରେ ମୁହଁ ଢାକି ଶୁଅନ୍ତା । ଇମିତି ଭାବୁ ଭାବୁ ମକରା ପେଟେ ମଦ ପିଇଦିଏ । ତା'ପରେ ଭୁଲିଯାଏ ସବୁ କଥା । ନାଗାକୁ ଘରକୁ ଫେରିଯିବା କଥା କହିଲେ ସେ ମୁହଁ ମୋଡ଼େ ।

ଏଇ କେତେଦିନ ହବ ନାଗାରେଡ୍ଡୀ ଗାଁକୁ ଯାଇଥିବାରୁ ମକରାକୁ କିଛି ଭଲ ଲାଗୁ ନ ଥିଲା । ହଠାତ୍ ସେଦିନ ଆସି ମହାନ୍ତିର ସୁପରଭାଇଜର୍ ପହଞ୍ଚିଗଲା ବନ୍ଧ ପାଖରେ । ସେତେବେଳକୁ ବେଳ ରତରତ । ଆଲୁଅ ନାହିଁ କି ଅନ୍ଧାର ନାହିଁ । ମକରା ପିଠିରେ ହାତ ଥାପୁଡ଼େଇ ସେ ପଚାରିଲା, ''କେମିତି ଅଛୁ ମକରା !'' ମକରା ଚିହିଁକିପଡ଼ି ଉତ୍ତର ଦେଲା, ''ଭଲ, ଏତେଦିନ ପରେ ମହାନ୍ତିର ଆମ କଥା ମନେ ପଡ଼ିଲା ।'' ସୁପରଭାଇଜର୍ କହିଲା, 'ମକରା, ତୋ ଭଲମନ୍ଦରେ ମହାନ୍ତି ଠିଆ ହେଇଚି ଜାଣିଥା' । ତୋ ମା' ଆଉ ସଂସାରରେ ନାହିଁ । କିନ୍ତୁ ତୋର ପୁଅଟିଏ ହୋଇଛି । ଭଲ ଅଛି ।'' ହସିବ ନା କାନ୍ଦିବ ମକରା କିଛି ବୁଝି ପାରିଲା ନାହିଁ । ଚାହିଁଲା ନଈକି, ଚାହିଁଲା ପାଉଁଶିଆ ଦୂର ପାହାଡ଼କୁ । ତା'ଆଖିରେ ସେତେବେଳେ ଆଖିଏ ନଈପାଣି, ଓଠରେ କିନ୍ତୁ ଉଛୁଳା ନଈ ।

ମେଘ ଓଲରା ଆକାଶକୁ ପୁଣି ଚାହିଁଲା ମକରା । ମେଘ ଆଉ ସମ୍ଭଳା ହବ ନାହିଁ କିଛି ଦିନ ପରେ । ନଈର ପେଟ ଫୁଲିବ । ମାଟି କାମ ଆଉ କ'ଣ ଚାଲିବ । ସୁପର୍‌ଭାଇଜର୍ ମକରାର ମନକଥା କହିଲେ, ''ଚାଲ ମକରା, ମୋ ସାଙ୍ଗରେ । ଗାଁକୁ ଯିବା । ଶୁକ୍ରୀ ତୋତେ ଡକେଇଛି । ମହାନ୍ତି ହିସାବ କରି ତୋପାଇଁ ପଇସା ରଖିଛି । ଦବ । ତୋ ମା'କୁ ବି କିଛି ପଇସା ଆଗରୁ ଦେଇଛି । ସେ ଆଉ ଲୋକବାକ ପଠାପଠି କାମ କରୁ ନାହିଁରେ ମକରା । ପଲିଟିକ୍ସରେ ମାତିଛି । ଫୁଲ୍ ପଲିଟିକ୍ସ । ଟିକଟ ପାଇବ ଏଥର । ଭୋଅଟରେ ଲଢ଼ିବ । ତୋତେ ସାଙ୍ଗରେ ଧରି ତମ ଆଦିବାସୀ ଗାଁଗଣ୍ଡାରେ ବୁଲିବ । ପଇସା ଉଠେଇବ । ତୁ ହାତ ପତେଇବା ଦରକାର ନାହିଁ । ନଗଦନାରାୟଣ ରଖିବାପାଇଁ ତୋ ପକେଟ ନିଅଣ୍ଟ ହେବ ।''

ମକରାର ଗୋଡ଼ ତଳେ ଲାଗିଲା ନାହିଁ । ନାଗା ରେଡ୍ଡୀ, ରାଓଗାରୁ, ନଈପଠା, ନୁଆଁଣିଆ ଚାଳଘର– କିଏ କେଉଁଆଡ଼େ ଉଡ଼ିଗଲେ ଯେମିତି ନିମିଷକେ, ବାଆବତାସରେ ।

× × ×

ମକରା ଘରେ ପହଞ୍ଚିଲାବେଳକୁ ସଞ୍ଜ ଗଡ଼ିଗଲାଣି । ରେଳଗାଡ଼ିରେ କଟିଲା ତା'ର ଦେଢ଼ଦିନ, ଓଳିଏ ବସରେ । ରେଳଗାଡ଼ି ସିନା ଦୌଡୁଥିଲା, ହେଲେ ତାଙ୍କ ଗାଁ ବସ୍ ଧକଉଥିଲା ଘାଟି ରାସ୍ତାରେ । ମକରା ମନେମନେ ଉଡ଼ିଲେ କି ହବ ? ବସ୍‌ଟା ପୁଣି ପୁରୁଣା, ଦଦରା । ତା' ସାଙ୍ଗକୁ ମଝିରେ ମଝିରେ ନାହିଁ ନ ଥିବା ବର୍ଷା । ବସ୍ ପହଞ୍ଚିଲା ବେଳକୁ ଗାଁ ପାଖ ବଜାର ଶୂନ୍‌ଶାନ୍ । ସେଠୁ ପାଦଚଲା ରାସ୍ତା ଦି'ମାଇଲ୍ । କିନ୍ତୁ ଦି'ପାହୁଣ୍ଡରେ ଯିମିତି ଦାଣ୍ଡଦୁଆର ଆଗରେ ପହଞ୍ଚିଗଲା ମକରା । ବାହାରେ ଠିଆହେଇ ଗେଲ କଲା ଭଳି ଡାକିଲା, "ଆଲୋ ଶୁକ୍ରୀ, ଶୁକ୍ରୀଲୋ... ।" କବାଟ କିନ୍ତୁ ଖୋଲିଲା ନାହିଁ । ମେଘପବନ ଦାଉ ସାଜିଲା । ମକରା ଜୋର୍‌ରେ ପାଟିକଲା, "ଶୁକ୍ରୀ– ଶୁକ୍ରୀ ଲୋ..ଓ.. ।" ଜୋର୍‌ରେ ଆହୁରି ଜୋର୍‌ରେ । କବାଟ ଫିଟାଇଲା ଶୁକ୍ରୀ । ମକରା ତୁଣ୍ଡରେ ଆଉ ରକା ନ ଥିଲା । ଶୁକ୍ରୀ ଚାହିଁପାରୁ ନ ଥିଲା ମକରା ମୁହଁକୁ । କେତେବେଳକେ ସେମାନେ ଘର ଭିତରେ ପଶିଲେ ।

ଚାଖଣ୍ଡେ ପରାଏ ପିଲାକୁ ମକରା ହାତରେ ଧରାଇଲା ଶୁକ୍ରୀ । କହିଲା, "ନେ ତୋ ପୁଅକୁ । କଥା ଦେଇଥିଲି ପୁଅ ଦେବି ବୋଲି । ଦେଲି । ତୁ ଝିଅ ଖୋଜୁଥିଲୁ ।" ବକଟେ ପିଲାକୁ ହାତରେ ଧରି ମକରା ଭାବୁଥିଲା ଆଦିବାସୀ ଛୁଆ ବଢ଼ିଗଲେ ବଳେ ତା' ଦିହ ପଥର ହେଇଯିବ । ସେ ହାତମୁଠାରେ ଡଙ୍ଗର ଭାଙ୍ଗିବ, ତୀର ମାରି ଆକାଶରୁ ଖସେଇଦବ ସୂର୍ଯ୍ୟଚନ୍ଦ୍ର । ଶୁଖିଶୁଖି ଆସୁଥିବା ମକରାର ଓଦା ମଇଳା ଜାମା ପୁଣି ଓଦା ହୋଇଗଲା । ପୁଅ ମୂତ ତା' ମୁହଁରେ ପଡ଼ିଲା । ଥୁ ଥୁ କଲା ମକରା । କାନ୍ଥବାଡ଼କୁ ଚାହିଁ ମୁରୁକି ମୁରୁକି ହସିଲା ଶୁକ୍ରୀ ।

ବୋକଚା ଖୋଲିଲା ମକରା । ପୁଅ ପାଇଁ ସେ ଆଣିଥିଲା ଜାମାପ୍ୟାଣ୍ଟ, ଶୁକ୍ରୀ ପାଇଁ ନାଲି ଶାଢ଼ି, ନାଲି ଚୁଡ଼ି । ରାତି ବଢୁଥିଲା, ବଢୁଥିଲା ବର୍ଷା । ଶୁକ୍ରୀ ଶିରାବଣ ବରଷା ପରି ବାତୁଳୀ ପାଲଟୁଥିଲା । ଗାଁଗଣ୍ଡା, ପାହାଡ଼ ଡଙ୍ଗର ଯେତେବେଳେ ଘୁମେଇଲେ, ବର୍ଷା ବେଶି ବେଶି ଫୁଲେଇହେଲା । ଶୁକ୍ରୀ ଲାଗି ଲାଗି ଆସିଲା ମକରା ପାଖକୁ ଆହୁରି ପାଖକୁ, ଖୁବ୍ ପାଖକୁ । ମକରାର ଯାଉଁଳି କବାଟ ଛାତିରେ ଶୁକ୍ରୀ ଜଡ଼ି ହେଲା ବେଳେ, ମକରାକୁ ଲାଗିଲା ଶୁକ୍ରୀର ଦିହ ଦିହ ନୁହେଁ ତ ନିଆଁଧାସ ଯିମିତି !

ମକରାର ଶକ୍ତ ଧକ୍‌କାରେ ଘରର ଗୋଟେ କୋଣକୁ ଛିଟିକିପଡ଼ିଲା ଶୁକ୍ରୀ । ଶୁକ୍ରୀ କିଛି ବୁଝିବା ଆଗରୁ ମକରା କେଉଁଆଡ଼େ ଉଭାନ୍ ହେଇଯାଇଥିଲା ।

ମକରାର ବାଟ ଓଗାଳି ପାରୁ ନ ଥିଲା କଳାରାତି । ତାକୁ ପଛରୁ ଟାଣିଓଟାରି ପାରୁ ନ ଥିଲା କଳାମେଘ । ଶୁକ୍ରୀର ଦିହ କି କୋହ କିଛି ବି ଘାରୁ ନ ଥିଲା ତାକୁ । ନାଗା ରେଡ୍‌ଡୀ କହିଥିବା ତେଲେଙ୍ଗା ଡାକ୍ତର କଥା ତା' କାନରେ ହାତୁଡ଼ି ପିଟୁଥିଲା । ଡାକ୍ତରର ମନା ସେ ନ ମାନିବ କିମିତି ? ଜାଣୁଜାଣୁ କ'ଣ ତା' ଶୁକ୍ରୀ ଦିହକୁ ମରଣ ଦବ ।



# ଟ୍ରାପ୍

ନ ଆକାରେ ନା, ସେଥିରୁ ତିଳେ ମଧ୍ୟ ପଛକୁ ଘୁଞ୍ଚି ନ ଥିଲେ ସତ୍ୟସୁନ୍ଦର । ଛାତ୍ରଛାତ୍ରୀମାନଙ୍କୁ ସାରାଜୀବନ ସେ ଗଣିତ, ସାହିତ୍ୟ ସାଙ୍ଗକୁ ନୀତିକଥା ଶିଖାଇଆସିଲେ । ଆଉ ଅବସର ପରେ ରାଜନୀତିରେ ପଶିବେ ? ଅସମ୍ଭବ । ରାଜନୀତିକୁ ସେ ବେଶ୍ ଅଦୂରରୁ ଦେଖିଆସୁଛନ୍ତି, ଗତ କେତେ ଦଶନ୍ଧି ଧରି । ଯେତେ ଦେଖୁଛନ୍ତି, ରାଜନୀତି ତାଙ୍କୁ ସେତେ ନୂଆ ନୂଆ ଲାଗୁଛି । ରାଜନୀତିର ସେହି ରୂପ କେଡ଼େ ବୀଭତ୍ସ ଓ ବିକଟାଳ । ରାଜନୀତି ନାଁ ଶୁଣିଲେ ତେଣୁ ତାଙ୍କ ନାକ ସ୍ୱତଃ ଟେକି ହୋଇଯାଏ ଶୂନ୍ୟକୁ । ବୁଢ଼ାକାଳେ ସେହି ରାଜନୀତି । ନା ବାବା, ନା । ତାଙ୍କୁ ପୁଣି ଦୁନିଆ ଜାଣେ, ଜଣେ ନିରପେକ୍ଷ, ନିର୍ଲିପ୍ତ ବ୍ୟକ୍ତି ଭାବରେ । ଜୀବନ ଆଉ ପାଏ ବାକି ଅଛି କି ନାହିଁ, ଗୋଟିଏ ନିର୍ଦ୍ଦିଷ୍ଟ ଦଳର ଛତାତଳେ ସେ ଠିଆହେବେ କେମିତି ?

ଅବସର ପରେ କିନ୍ତୁ ସମୟ ଯେମିତି ପ୍ରିୟ ଶତ୍ରୁଟେ ପରି ଠିଆହେଉଥିଲା ସତ୍ୟସୁନ୍ଦରଙ୍କ ଆଗରେ, ନା ଯୁଝୁଥିଲା, ନା ବାଟ ଛାଡୁଥିଲା । ଦିନ ଲାଗୁଥିଲା ତାଙ୍କୁ ଖୁବ୍ ଲମ୍ବା, ନିଦ ଭାଙ୍ଗିବାର ଅନେକ ସମୟ ପର୍ଯ୍ୟନ୍ତ ଘୁଞ୍ଚୁ ନ ଥିଲା ରାତିର ଅନ୍ଧାର । ପଢ଼ିବା, ପଢ଼ାଇବା, ପିଲାମାନଙ୍କ ଭାଗ୍ୟଭବିଷ୍ୟତ ନିର୍ଦ୍ଧାରଣ କରିବାରେ ବିତିଗଲା ଦୀର୍ଘ ଚାଳିଶ ବର୍ଷ । ଜଣାପଡ଼ି ନ ଥିଲା ସମୟର ଗତି । ଏବେ କିନ୍ତୁ ସମୟ ସ୍ଥାଣୁ ତାଙ୍କ ପାଇଁ ।

ଗୋଟିଏ ଅନୁଷ୍ଠାନରେ କେମିତି କଟିଲା ଗୋଟିଏ ଯୁଗ ? ସେ ନିଜେ ବୁଝିପାରନ୍ତି ନାହିଁ । ଯେଉଁଠି ତାଙ୍କର ଚାକିରି ଆରମ୍ଭ, ସେଇଠି ଶେଷ । ଶତ ଶତାବ୍ଦୀର ସତୁରି ଦଶକରେ ସେ ଇଂରାଜୀରେ ପୋଷ୍ଟଗ୍ରାଜୁଏଟ୍ । କିନ୍ତୁ ବାପାଙ୍କ କଥାରେ ସେ ହେଲେ ଗାଁ ହାଇସ୍କୁଲର ହେଡ୍‌ମାଷ୍ଟର । ନା କମ୍ପିଟିଟିଭ୍ ପରୀକ୍ଷା ଦେଲେ, ନା ଅଧ୍ୟାପକ ହେବାପାଇଁ ମନ ବଳାଇଲେ ।

ସତ୍ୟସୁନ୍ଦରଙ୍କ ବାପା ଥିଲେ ସ୍ୱାଧୀନତା ସଂଗ୍ରାମୀ, ସେକାଳର ଆଦର୍ଶ ମଣିଷ । ପାଠ ପଢୁଥିବା ସମୟରେ ସେ ଥରେ ଦେଖିଥିଲେ ଗାନ୍ଧିଜୀଙ୍କୁ କେଉଁ ଗୋଟେ ସଭାରେ । ତା' ପରଠୁଁ ସେ ପାଠ ପଢ଼ା ଛାଡ଼ିଲେ, ଗାନ୍ଧୀ ଗାନ୍ଧୀ ହୋଇ ସ୍ୱାଧୀନତା ସଂଗ୍ରାମରେ ମାତିଲେ । ଦେଶ ସ୍ୱାଧୀନ ହେଲାପରେ କିନ୍ତୁ ସେ ରାଜନୀତି ପାଖ ମାଡ଼ିଲେ ନାହିଁ ।

ଗାନ୍ଧିଜୀଙ୍କ ରଚନାତ୍ମକ କାର୍ଯ୍ୟ ତାଙ୍କୁ ଆକୃଷ୍ଟ କରିଥିଲା । ସର୍ବୋଦୟ କାମରେ ସେ ନିଜକୁ ସାମିଲ କରିଥିଲେ । ତାଙ୍କର ସ୍ୱପ୍ନ ଥିଲା ନିଜ ଗାଁ'ରେ ହାଇସ୍କୁଲଟିଏ ଗଢ଼ିବା । ତିନି ପାଖରେ ନଈ, ମଝିରେ ଏକ ବିସ୍ତୀର୍ଣ୍ଣ ଟାପୁ, ସେଇଟି ତାଙ୍କ ଗାଁ, ଲୋକମୁଖରେ ଭେଡ଼ା, ତଳମାଳ । ବର୍ଷରେ ଆଠମାସ ନଈପାଣି ଢୁକୁ ଢୁକୁ । କାଦୁଅ ସରସର ରାସ୍ତା, ତିନିଥର ନଈ ପାରିହେଲେ ଆସିହୁଏ ଟାପୁ ବାହାରକୁ । କଟକ ସହରର କେତେ ପାଖରେ, ଅଥଚ କାହିଁ କେତେ ଦୂରରେ । ସେତେବେଳେ ନଈ ଉପରେ ପୋଲ ତିଆରି ଥିଲା ସ୍ୱପ୍ନଠାରୁ ଆହୁରି ଦୁରନ୍ତ ଏକ ପରିକଳ୍ପନା ।

ବାପା କହୁଥିଲେ, ଗାନ୍ଧୀ କହିଛନ୍ତି, ଶିକ୍ଷା ବିନା ସ୍ୱରାଜ୍ୟ ଅର୍ଥହୀନ । ପିଲାଏ ପାଠ ନ ପଢ଼ିଲେ ବାଟ ହୁଡ଼ିବେ । ସେମାନେ ବାଟ ହୁଡ଼ିଲେ ଦେଶ ଗଢ଼ିବ କିଏ ? ସନ୍ତସନ୍ତିଆ ନଈପଠାରେ ତେଣୁ ସ୍କୁଲ ଗଢ଼ାଯିବା ସ୍ଥିର ହେଲା । ହେଲେ, ତିନିଟା ନଈପାରି ହୋଇ କିଏ କାହିଁକି ଆସିବ ଭଲା ଏ ବନ୍ୟାଞ୍ଚଳକୁ ମାଷ୍ଟର ହୋଇ । କେହି କୁଆଡ଼େ ମଙ୍ଗିଲେ ନାହିଁ ।

ବାପା କିନ୍ତୁ ନଛୋଡ଼ବନ୍ଦା । କହିଲେ, ସତ୍ୟ ସ୍କୁଲ ଗଢ଼ିବ, ପିଲାମାନଙ୍କୁ ମଣିଷ କରିବ । ତାଙ୍କ କଥା ବେଦର ଗାର । ସେ ଗାରକୁ ଟପିବାର ଜୁ' ନ ଥିଲା ସତ୍ୟସୁନ୍ଦରଙ୍କର । ବାପା ତ ତାଙ୍କୁ ଅକୈଶୋର ବୁଝାଉଥିଲେ, ନେବାରେ ନୁହେଁ, ଦେବାରେ ଥାଏ ଜୀବନରେ ଅପାର ଆନନ୍ଦ । ସୂର୍ଯ୍ୟ, ଚନ୍ଦ୍ର, ତାରା, ନଦୀ, ସମୁଦ୍ର, ମାଟି, ମେଘ– ଏମାନେ ଦିଅନ୍ତି, ନେବାପାଇଁ ହାତ ପତାନ୍ତି ନାହିଁ । ସେମିତି ଦେଶକୁ ନିଜ ସାଧମତେ ଦେବାପାଇଁ କହିଥିଲେ ଗାନ୍ଧୀମହାତ୍ମା; ସେ କେବେ ନେବାର ପକ୍ଷପାତୀ ନ ଥିଲେ । ଗାନ୍ଧିଜୀଙ୍କ ବିଷୟରେ ଏମିତି କେତେ କଥା କହୁଥିଲେ ବାପା । କହୁଥିଲେ ମଧ, ସତ୍ୟ ହିଁ ସୁନ୍ଦର ବୋଲି ଗାନ୍ଧୀ କହୁଥିଲେ ବରାବର । ସତରେ ସତ୍ୟଠାରୁ ଅଧିକ ସୁନ୍ଦର କ'ଣ ଅଛି ସଂସାରରେ । ସେଥିପାଇଁ ତ ବାପା ତାଙ୍କ ନାଁ ରଖିଥିଲେ ସତ୍ୟସୁନ୍ଦର ।

ବାପାଙ୍କ କଥାରୁ କେବେ ବି ବିଚ୍ୟୁତ ହୋଇ ନାହାନ୍ତି ସେ । ସ୍କୁଲ ପାଇଁ ଘରସଂସାର ସବୁକୁ ଅଣଦେଖା କରିଛନ୍ତି । ଅବଶ୍ୟ ତାଙ୍କ ପୁଅଯୋଡ଼ିକ ବେଶ୍ ମେଧାବୀ ଥିବାରୁ ନିଜ ଉଦ୍ୟମରେ ଆଗକୁ ଯାଇଛନ୍ତି । କିନ୍ତୁ ଅଞ୍ଚଳସାରା ପିଲାମାନଙ୍କପାଇଁ ସେ ସ୍ୱପ୍ନ ଦେଖିଛନ୍ତି । ସେମାନଙ୍କୁ ଗଢ଼ିବାରେ ସାମାନ୍ୟ ହେଳା କରି ନାହାନ୍ତି । ଯେଉଁ ଅଞ୍ଚଳ ଅପାଣ୍ଠୁଆ ମୁଲକ ଭାବରେ ଜଣାଶୁଣା ଥିଲା, ସେଠାକାର ଶହ ଶହ ଛାତ୍ରଛାତ୍ରୀ ସମାଜର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ହୋଇଛନ୍ତି । ସେକଥା ଭାବି ଅନେକ ସମୟରେ ସେ ପରମ ସନ୍ତୋଷ ଲାଭ କରନ୍ତି । ସନ୍ତୋଷଠାରୁ ବଡ଼ ପ୍ରାପ୍ତି ଆଉ କ'ଣ ଅଛି ଜୀବନରେ ।

କିଛି ପାଇବାକୁ ଚାହିଁ ନ ଥିଲେ ବି ସେ ଅନେକ କିଛି ପାଇଛନ୍ତି ଜୀବନରେ । ବାଟରେ ଚାଲିଗଲେ ତାଙ୍କ ଧୂଳି-ଧୂସରିତ ପାଦ ତଳେ ଅଜାଡ଼ି ହୋଇପଡ଼େ ଅଜସ୍ର ଦଣ୍ଡବତ । ବୟସ୍କ ଓ ପ୍ରତିଷ୍ଠିତ ତାଙ୍କ ଛାତ୍ରଛାତ୍ରୀମାନେ ଏବେ ମଧ ତାଙ୍କ ସାମ୍ନାରେ କଥା କହିବାକୁ ଶଙ୍କାବୋଧ କରନ୍ତି । ଛାତ୍ରଛାତ୍ରୀମାନଙ୍କ ଅଭିଭାବକମାନେ ବି ତାଙ୍କ ନାଁ ଧରି ଡାକନ୍ତି ନାହିଁ, କହନ୍ତି ହେଡ୍‌ମାଷ୍ଟ୍ରେ ବୋଲି ! ଏକ ବିସ୍ତାରିତ ଜୀବନ ତାଙ୍କର । ସେ ପୁଣି କେମିତି ସଙ୍କୁଚିତ ହୋଇଯିବେ ? ଗୋଟିଏ ଦଳର ଧ୍ୱଜା ଧରିବେ । ଶୁଆପରି ପୋଷିହେବେ ଏକ ନିର୍ଦ୍ଦିଷ୍ଟ ଆଦର୍ଶର କଥା ?

ସୁତରାଂ ଏକଦା ତାଙ୍କର ଶ୍ରଦ୍ଧେୟ ଛାତ୍ର ଥିବା ଏବର ପ୍ରଜାପାର୍ଟିର ଆଗଧାଡ଼ିର ନେତା ବିମଳେନ୍ଦୁର ସବିନୟ ଅନୁରୋଧକୁ ସେ ବାରମ୍ବାର ପ୍ରତ୍ୟାଖ୍ୟାନ କରିଛନ୍ତି । କହିଛନ୍ତି ଗମ୍ଭୀର ଅଥଚ ସ୍ନେହବୋଳା ଭାଷାରେ, ''ବାବୁ; ମୋତେ ଆଉ ସେ ମାୟାଜାଲ ଭିତରକୁ ଟାଣ ନା ।''

।। ଦୁଇ ।।

କିନ୍ତୁ ବିମଳେନ୍ଦୁ ବା କେଉଁ ଛାଡ଼ିବା ଲୋକ ? ସତ୍ୟସୁନ୍ଦର ସବୁବେଳେ କହିଆସିଥିବା 'ମିକ୍ ଆଣ୍ଡ୍ ମିକ୍ ଦ ଡୋର୍ ଶାଲ୍ ଓପନ୍' କଥାଟିକୁ ସେ ତାଙ୍କ ପ୍ରିୟ ସାର୍‌ଙ୍କ ପ୍ରତି ପ୍ରୟୋଗ କରିବାକୁ ଆଦୌ ନିବୃତ୍ତ ହେଉ ନ ଥିଲେ । ଆଶା କରୁଥିଲେ, ଇଚ୍ଛାଶକ୍ତି ବଳରେ ଲୁହାର କବାଟ ବା ପାଦର ଶିକୁଳି ଛାଏଁ ଫିଟିଯିବା ଅସମ୍ଭବ ନୁହେଁ । ଗଭୀର ଆତ୍ମପ୍ରତ୍ୟୟ ବଳରେ କୁଆଡ଼େ ନୀଳ ନଭର ନକ୍ଷତ୍ରମାନେ ଫୁଲ ହୋଇ ଝରିପଡ଼ନ୍ତି ମାଟି ଉପରେ । ସତ୍ୟସାର୍‌ଙ୍କ୍ ନା, ହଁ'ରେ ପରିଣତ ନ ହେବ କାହିଁକି ? ତେବେ ତାଙ୍କ 'ନା' ଶବ୍ଦ ଧୀରେ ଧୀରେ ତୀବ୍ରତା ହରାଉଥିବା ସେ ଅନୁଭବ କରୁଥିଲେ ।

ଛାତ୍ରଭାବରେ ମେଧାବୀ ନ ଥିଲେ ବି ବିଚକ୍ଷଣ ଥିଲେ ବିମଳେନ୍ଦୁ । ତାଙ୍କ ପ୍ରତ୍ୟୁତ୍ପନ୍ନମତିତାକୁ ଖୋଦ୍ ହେଡ୍‌ମାଷ୍ଟ୍ରେ ଭାରି ପ୍ରଶଂସା କରୁଥିଲେ । ପ୍ରଶଂସା କରୁଥିଲେ ସ୍କୁଲର ସାମୂହିକ କାର୍ଯ୍ୟରେ ତା'ର ଆଗ୍ରହ ଓ ଅଂଶଗ୍ରହଣପାଇଁ । କଲେଜରେ ବି ସେମିତି ସେ ପାଠ ଅପେକ୍ଷା ଶାଠରେ ବେଶି ନାଁ କଲେ । ସାଧାରଣ ଭାବରେ ବି.ଏସ୍‌ସି. ପାସ୍ କଲାପରେ କିନ୍ତୁ ସେ ଆଉ ଉଚ୍ଚଶିକ୍ଷା ପାଇଁ ମନ ନ ବଳାଇ ସିଧା ଜନଜୀବନରେ ପ୍ରବେଶ କଲେ । ତାଙ୍କ ଅଞ୍ଚଳର ନଦୀବନ୍ଧ ସଂପର୍କିତ ଏକ ଜନ-ଆନ୍ଦୋଳନରୁ ସେ ପ୍ରଜାପାର୍ଟିର ପ୍ରବୀଣ ନେତା ତଥା ସେତେବେଳର ଜଣେ ଟାଣୁଆ ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ସେହି ନେତାଙ୍କ ପ୍ରେରଣାରେ ସେ ହୋଇଥିଲେ ପ୍ରଜାପାର୍ଟିର ଆନୁଷ୍ଠାନିକ ସଦସ୍ୟ । ତରୁଣ ବୟସରେ ପଞ୍ଚାୟତ ସମିତିର

ଅଧ୍ୟକ୍ଷ ହେବାର ସୌଭାଗ୍ୟ ମଧ୍ୟ ଲାଭ କରିଥିଲେ । ସେହିଦିନରୁ ଅଞ୍ଚଳବାସୀଙ୍କର ସେ ପ୍ରିୟପାତ୍ର ହୋଇ ରହିଛନ୍ତି । କର୍ମଠ ତଥା ପାରିବା ନେତା ଭାବରେ ତାଙ୍କର ନାଁ ରହୁଛି ସାରା ଜିଲ୍ଲାରେ । ବର୍ଷକ ତଳୁ ସେ ପୁଣି ପ୍ରଜାପାର୍ଟିର ରାଜ୍ୟ ସଂପାଦକ ଭାବରେ କାର୍ଯ୍ୟ କରିଆସୁଛନ୍ତି । ଗତଥର ବିଧାୟକ ପଦ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରି ହାରିଯାଇଥିଲେ ବି ତାଙ୍କ ଜନପ୍ରିୟତାରେ କେବେ ଧୂଳିମଳି ଲାଗି ନାହିଁ ।

ଆଗାମୀ ନିର୍ବାଚନ ଆଉ ଖୁବ୍ ବେଶି ବିଳମ୍ବ ନ ଥିଲା । ପ୍ରାକ୍-ନିର୍ବାଚନୀ ଶିହରଣ ଅନୁଭୂତ ହେବାକୁ ଲାଗିଥିଲା ଗାଁ-ଗଣ୍ଡାରେ । ହାଟବାଟରେ ବଜାର ଦର, ଫସଲହାନି, ବିଜୁଳି ବିଭ୍ରାଟ ଅପେକ୍ଷା ଦଳୀୟ ପ୍ରାର୍ଥୀମାନଙ୍କ ସମ୍ଭାବ୍ୟ ତାଲିକା ଚର୍ଚ୍ଚାର ମୁଖଶାଳା ପାଲଟିଥିଲା ।

ଏବର ଦଳର ହାଇକମାଣ୍ଡ ଗୁରୁଦାୟିତ୍ୱ ସମର୍ପିଥିଲେ ବିମଳେନ୍ଦୁଙ୍କୁ । ଓଡ଼ିଶାର ଉତ୍ତରଭାଗ ନିର୍ବାଚନମଣ୍ଡଳୀଗୁଡ଼ିକର ପ୍ରାର୍ଥୀ ଚୟନ ତଥା ନିର୍ବାଚନୀ ନଈପାରିର ଭାର ଥିଲା ତାଙ୍କରି କାନ୍ଧରେ ।

ଗତ ଦୁଇଟିଯାକ ସାଧାରଣ ନିର୍ବାଚନରେ ପ୍ରଜାପାର୍ଟିର ଶୋଚନୀୟ ପରାଜୟ ଦଳର ନେତାମାନଙ୍କପାଇଁ ଜୀବନ-ମରଣ ସମସ୍ୟା ଠିଆକରାଇଥିଲା । ତୃତୀୟ ନିର୍ବାଚନଟି ହାତଛଡ଼ା ହୋଇଗଲେ ଦଳର ସ୍ଥିତି ଉପରେ ପ୍ରଶ୍ନଚିହ୍ନ ଲାଗିଯିବ ବୋଲି ନେତାଏ ଆଶଙ୍କା କରୁଥିଲେ । ଗତ ଦଶବର୍ଷ ଭିତରେ ଅନେକ କର୍ମୀ ତ ଦଳ ଛାଡ଼ି ସାରିଥିଲେ ; ଅବଶିଷ୍ଟ କର୍ମୀଙ୍କର ମନୋବଳ ଆଉ ଆଗପରି ଦୃଢ଼ ନ ଥିଲା । ସେମାନଙ୍କ ମଧ୍ୟରୁ କେତେକ ପୁଣି ଦଳ ବଦଳାଇବାକୁ ଗୋଡ଼ କାଢ଼ି ବସିଥିଲେ । କ୍ଷମତା ନ ଥିବା ଦଳ ଶୁଖିଯାଇଥିବା ନଈଟିଏ ପରି । ତୀରବାସୀ ଓ ତୀରତରୁ –ସମସ୍ତଙ୍କପାଇଁ ସେ ଅଲୋଡ଼ା ଯେମିତି ! ପ୍ରଜାପାର୍ଟିର ଅବସ୍ଥା ଥିଲା ତଦ୍ରୂପ ।

ବିମଳେନ୍ଦୁ ତେଣୁ ପଣ କରିଥିଲେ ଯେନତେନ ପ୍ରକାରେଣ ଏଥର ଦଳକୁ ଜିତାଇବାକୁ ପଡ଼ିବ, ବିଶେଷକରି ତାଙ୍କ ଉପରେ ନ୍ୟସ୍ତ ଥବା ନିର୍ବାଚନମଣ୍ଡଳୀଗୁଡ଼ିକରେ ଏବଂ ସର୍ବୋପରି ତାଙ୍କ ନିଜ ନିର୍ବାଚନମଣ୍ଡଳୀରେ । କାହିଁକି କେଜାଣି ବିମଳେନ୍ଦୁଙ୍କ ଅଭିଜ୍ଞ ମନ କହୁଥିଲା ଏଥରର ନିର୍ବାଚନ ଆଗପରି ଦଗାଦେଇପାରିବ ନାହିଁ । ଦେଶର ସମ୍ପତ୍ତିକୁ ନିଜର ପ୍ରଗତିପାଇଁ ଆପଣାଇଥିବା ସେବକ ଦଳର ନେତାମାନେ ଗାଁ-ଗଣ୍ଡାକୁ ଆଉ ପଶିପାରୁ ନାହାନ୍ତି । ତାଙ୍କ କର୍ମୀମାନେ ଲୁଟ୍‌ର ପୟଗମ୍ବର ସାଜିଛନ୍ତି । ଆଉ ତାଙ୍କ ନେତାମାନେ ତ କାଳେ କାଳେ ରତ୍ନାକର । ତେଣୁ ସେବକ

ଦଳମୁଖ୍ୟଙ୍କ ଅକ୍ଷତ ଚେହେରା ଆଉ ଭରା ବୈତରଣୀ ପାରି କରିବାକୁ ସକ୍ଷମ ହେବ ନାହିଁ । ଅପରନ୍ତୁ ତାଙ୍କ ପ୍ରଜାପାର୍ଟିର ବିଜୟ ଏଥର ବିସ୍ମୟ ସୃଷ୍ଟି କରିବ ।

କେଉଁ କାଳେ କଲେଜରେ ରସାୟନ ଶାସ୍ତ୍ର ପଢ଼ିଥିଲେ ବିମଳେନ୍ଦୁ, ଏବେ କିନ୍ତୁ ସେ ରାଜନୈତିକ ରସାୟନର ବିଶାରଦ । ରାଜନୀତିରେ ଗଣିତ ଅପେକ୍ଷା ରସାୟନର ଗୁରୁତ୍ୱ ଅଧିକ ଆଜିକାଲି । ହାଣ୍ଡିକ ଭାତରୁ ଗୋଟିଏ ଚିପିଲା ପରି ସମସ୍ତଙ୍କ ଅଜାଣତରେ ଛୋଟକାଟିଆ ସର୍ଭେଟିଏ ସେ କରାଉଥିଲେ ନିଜ ନିର୍ବାଚନମଣ୍ଡଳୀରେ । ତେବେ ସର୍ଭେର ନିଷ୍କର୍ଷ ତାଙ୍କୁ ନିରାଶ କରି ନାହିଁ; ବରଂ ଅନେକ ଅଜଣା ତଥ୍ୟ ଓ ସମ୍ଭାବନାର ଦ୍ୱାର ଖୋଲିଦେଇଛି ।

ଏଠାକାର ବୃଦ୍ଧ ବିଧାୟକ ଯେ ଜରଦ୍‌ଗବର ଅବତାର, ଏହା ସର୍ବଜନବିଦିତ । କିନ୍ତୁ ସର୍ଭେର ଭବିଷ୍ୟଦ୍‌ବାଣୀ ଥିଲା ଆହୁରି ରୋମାଞ୍ଚକର- ଏଥର ଦଳମାଳ କୁଳବୃଦ୍ଧ ଟିକେଟ ନ ପାଇବା ନିଶ୍ଚିତ । ତେବେ ସେବକ ଦଳର ପ୍ରାର୍ଥୀ କିଏ ? ସର୍ଭେର ସୂଚନାମତେ, ସେ ଆଉ କେହି ନୁହନ୍ତି, ରାଜ୍ୟର ଏକ ନମ୍ବର ଶିଳ୍ପପତି, ଏକାଧିକ ଖଣିର ଲିଜ୍‌ଧାରୀ ତଥା ବିଦେଶୀ ମଦିରାର ଅଧିକୃତ ବିତରକଙ୍କ ଅଲିଅଳ ମଧ୍ୟମ ଦୁଲାଳ । ସେହି ଭଦ୍ରବ୍ୟକ୍ତି ତ ନାଲି ନୋଟ୍‌ରେ ବାଟ ଚାଲନ୍ତି । ଏଥର ନିର୍ବାଚନବେଳେ ଶ୍ରାବଣର ବର୍ଷା ପରି ନୋଟ୍‌ମାନେ ବର୍ଷିବେ ତ୍ରିକୋଣଭୂମିରେ । କିନ୍ତୁ ତାଙ୍କ ବିଜୟ ସୁନିଶ୍ଚିତ ନୁହେଁ । ସୁନିଶ୍ଚିତ ନୁହେଁ, ସେଥିପାଇଁ ଯେ ସେ ମାଟି ପାଣି ପବନର ମଣିଷ ନୁହନ୍ତି ବୋଲି କାହାକୁ ଅଜଣା ନାହିଁ । ପୁଣି ମୂଲିଆ ମୋର୍ଚ୍ଚାର ଆଖିଦୃଶିଆ ଭୋଟ୍ ଏହି ଯୁବଶିଳ୍ପୀଙ୍କ ସପକ୍ଷରେ ଯିବ ନାହିଁ । ସର୍ଭେ ଆହୁରି କହିଛି, ପ୍ରଜାପାର୍ଟିର ପାରମ୍ପରିକ ଭୋଟ୍ ବ୍ୟାଙ୍କ୍ ଅକ୍ଷୁଣ୍ଣ ରହିଛି । କିନ୍ତୁ ତାହା ପ୍ରାର୍ଥୀଙ୍କର ବିଜୟପାଇଁ ଯଥେଷ୍ଟ ନୁହେଁ । ଅନ୍ୟ ଭାଷାରେ ନିରପେକ୍ଷ ଭୋଟ୍ ଯେଉଁଆଡ଼େ ଯିବ, ସେହି ଦଳର ପ୍ରାର୍ଥୀ ହେବେ ବିଜୟବିମଣ୍ଡିତ ।

ସର୍ଭେ ରିପୋର୍ଟକୁ ତନ୍ନ ତନ୍ନ କରି ପଢ଼ିଥିଲେ ବିମଳେନ୍ଦୁ ଏବଂ ନିର୍ଦ୍ଦିଷ୍ଟ ଭାବରେ ତା'ର ତର୍ଜମା କରିଥିଲେ ବାରମ୍ବାର । ହେଲେ, ହଠାତ୍ କିଛି କୂଳକିନାରା ସେ ପାଇଲେ ନାହିଁ । କେତେ ଚିନ୍ତା, କେତେ ଦୁଶ୍ଚିନ୍ତା, କେତେ ଅନ୍ୱୟ, କେତେ ପ୍ରତ୍ୟନ୍ୱୟ ଭିତରେ ବିତିଲା ତାଙ୍କର କିଛିଦିନ । ହଠାତ୍ ଦିନେ ସକାଳୁ ଆର୍କିମିଡିସଙ୍କ ପରି ସେ 'ୟୁରେକା', 'ୟୁରେକା' ସ୍ୱଗତୋକ୍ତି କରି ଉଲଗ୍ନପରାୟ ଦୌଡ଼ିବାକୁ ଲାଗିଲେ । ତାଙ୍କ ଦୌଡ଼ର ମଞ୍ଜିଲ୍ ଥିଲା ସତ୍ୟସୁନ୍ଦର ସାମନ୍ତରା'ଙ୍କ ଘର ।

ଶତକଡ଼ା ଶହେ ନିରପେକ୍ଷ ଭୋଟ୍ ପାଇବାର ସାମର୍ଥ୍ୟ ସତ୍ୟସାର୍‌ଙ୍କ ଛଡ଼ା ଆଉ କାହାର ବା ଅଛି ଏ ଅଞ୍ଚଳରେ । ବିମଳେନ୍ଦୁଙ୍କ ଓଠରେ ଧୀରେ ସ୍ମିତ ହସ ଲାଖିରହିଥିଲା ନିଜ ଅଲକ୍ଷ୍ୟରେ ।

।। ତିନି ।।

ସେ ହଁ କରି ନାହାନ୍ତି, ବରଂ 'ହଁ' ଶବ୍ଦଟି ଓଠ ସନ୍ଧିରୁ ଅକସ୍ମାତ୍ ଡେଇଁପଡ଼ିଛି ବିମଳେନ୍ଦୁର ଅବନତ ଅଙ୍ଗୁଳିକୁ, ଭାବିହେଉଥିଲେ ସତ୍ୟସୁନ୍ଦର । ଭାବିହେଉଥିଲେ, ସେ ଯେମିତି ଭୁଲ୍‌ଟାଏ କରିବସିଛନ୍ତି କେଉଁ ଏକ ଅସତର୍କ ମୁହୂର୍ତ୍ତରେ । ତାଙ୍କ ସଫା କାମିଜରେ ଲାଗିସାରିଛି ଅଲିଭା ଦାଗ, ପ୍ରଜାପାର୍ଟିର ମୋହର । ସେ ଆଉ ସମସ୍ତଙ୍କର ହୋଇ ରହି ନାହାନ୍ତି, ପାଲଟିଛନ୍ତି ଗୋଟେ ଦଳ ହାତର ସଖୀକଣ୍ଢେଇ । ସେକଥା ସେ ମୂଳରୁ କହିଆସୁଥିଲେ ବିମଳେନ୍ଦୁଙ୍କୁ । କିନ୍ତୁ ଗାନ୍ଧୀ-ଗୋପବନ୍ଧୁଙ୍କ ଉଦାହରଣ ଦେଇ,ପାର୍ଟିଭୁକ୍ତ ହେବା ସପକ୍ଷରେ ବଳିଷ୍ଠ ଯୁକ୍ତି ବାଢ଼ିଥିଲା ସେ । ବିଶ୍ୱର ସବୁ ମନୀଷୀ ଦଳଭୁକ୍ତ । ସୁଭାଷ ହୁଅନ୍ତୁ କି ହୁଅନ୍ତୁ ଷ୍ଟାଲିନ୍, ଆବ୍ରାହମ୍ ହୁଅନ୍ତୁ କି ଆରାଫତ୍ – ଏମାନେ ସମସ୍ତେ ଥିଲେ ଦଳୀୟ ନେତା । କିନ୍ତୁ ନିଜ କାମ ଓ ଆଦର୍ଶ ପାଇଁ ହୋଇଥିଲେ ସର୍ବଜନାଦୃତ, ବିଶ୍ୱବନ୍ଦ୍ୟ । ଦଳ ଏକ ସାଧନ ମାତ୍ର; ଧ୍ୟେୟ ସେବା ।

ବିମଳେନ୍ଦୁର କଥନଶୈଳୀରେ ଚକିତ ହୋଇଥିଲେ ସତ୍ୟସୁନ୍ଦର । ଶ୍ରେଣୀଗୃହରେ ପ୍ରାୟତଃ ପଛଧାଡ଼ିରେ ବସୁଥିବା ଏବଂ କୌଣସି କି ପ୍ରଶ୍ନର ଉତ୍ତର ଦେଲାବେଳେ ଥଙ୍ଗମଙ୍ଗ ହେଉଥିବା ପିଲାଟି ବାକ୍‌ପଟୁତା ହାସଲ କରିଛି ରାଜନୀତିରେ ଫସି । ବିଶ୍ୱ ରାଜନୀତିର ଇତିହାସ ଯେମିତି ତା' ନଖଦର୍ପଣରେ । ଅନ୍ୟକୁ ବଶୀଭୂତ କରିବାର କଳାକୌଶଳ ସେ ଶିଖିଲା କେବେଠୁଁ । ଆଃ... କି ଦୃଢ଼ତା ତା' ବକ୍ତବ୍ୟରେ ଓ ବ୍ୟକ୍ତିତ୍ୱରେ, କେତେ ପ୍ରଗାଢ଼ ତା'ର ଆତ୍ମବିଶ୍ୱାସ । ଯା' ଭିତରେ ବିମଳେନ୍ଦୁର ଯେମିତି ଘଟାନ୍ତର ହୋଇଛି ।

କେତେଥର ସେ କହିଥିବ, ସାର୍, ଆପଣମାନଙ୍କ ପରି ବିଦ୍ୱାନ୍, ବିବେକୀ ମଣିଷମାନେ ରାଜନୀତିକୁ ନ ଆସିଲେ ରାଜନୀତିର ଗତିପଥ ବଦଳିବ କେମିତି ? ରାଜନୀତି କ'ଣ ସବୁକାଳେ ରାମ ରାଉତ ବା ଦାମଦାସର ହସ୍ତମୁଦିମାହାଲ୍ ହୋଇ ରହିଥିବ ।

ବିମଳେନ୍ଦୁର ଯୁକ୍ତି ଆଡ଼କୁ ବେଳେବେଳେ ଆଉଜି ଯାଉଥିଲେ ସତ୍ୟସୁନ୍ଦର । ସେ ହଁ ନା ମଝିର ଏକ ବିନ୍ଦୁରେ ଠିଆ ହୋଇ ନିଜକୁ ଅସହାୟ ମଣୁଥିଲେ । କେବେ କେମିତି କୌଣସି ନିରବ ମୁହୂର୍ତ୍ତରେ ବିମଳେନ୍ଦୁର କଥା ତାଙ୍କ ମନକୁ ମୁହୁର୍ମୁହୁଃ ଆନ୍ଦୋଳିତ କରୁଥିଲା । ସେ ଅଥୟ ହୋଇପଡୁଥିଲେ । ଅନ୍ୟମନସ୍କତା ତାଙ୍କୁ ଘାରୁଥିଲା, ଆଚ୍ଛନ୍ନ କରୁଥିଲା ଦ୍ୱିଧା ।

ତେବେ ଶେଷଥର ଯେବେ ବିମଳେନ୍ଦୁ ଆସିଥିଲା ତାଙ୍କ ଘରକୁ, ସତ୍ୟସୁନ୍ଦର ନିଜ ଭିତରେ ଥିବା ଶିଷ୍ୟଭାବକୁ ପ୍ରଥମ କରି ଆବିଷ୍କାର କରିଥିଲେ । ସେ ଖାଲି ଶୁଣୁଥିଲେ ବିମଳେନ୍ଦୁଙ୍କୁ, ପ୍ରଶ୍ନ କରିପାରୁ ନ ଥିଲେ ।

କହିଚାଲିଥିଲା ବିମଳେନ୍ଦୁ, ''ସାର୍, ଆପଣ କେତେ ସ୍ୱପ୍ନ ଦେଖିଥିଲେ ଜୀବନରେ ତାହା ପୁଣି ନିଜ ପାଇଁ ନୁହେଁ, ଅନ୍ୟମାନଙ୍କପାଇଁ । ଆପଣଙ୍କ ସ୍ୱପ୍ନସବୁ କ'ଣ ସାକାର ହୋଇଛି ? ଅବଶ୍ୟ ଆପଣ ଅଗଣିତ ଛାତ୍ରଛାତ୍ରୀଙ୍କୁ ମଣିଷ କରିଛନ୍ତି, ଆମ ଅନ୍ଧାରି ମୁଲକକୁ ଜ୍ଞାନାରୁଣରେ ଆଲୋକିତ କରିଛନ୍ତି । କିନ୍ତୁ ଆପଣଙ୍କ ସ୍ୱପ୍ନ ତ ସେତିକିରେ ସୀମିତ ନୁହେଁ, ନା କ'ଣ ସାର୍ ?'' ମଝିରେ ମଝିରେ ସେ ଏମିତି ପ୍ରଶ୍ନ ଫିଙ୍ଗି ନିଜେ ପୁଣି ତା'ର ଉତ୍ତର ଦେଉଥିଲା, ''ଦୁଃଖୀ ମଣିଷର ଆଖିରୁ ଲୁହ ପୋଛିବାପାଇଁ ସ୍ୱପ୍ନ ଦେଖିଥିଲେ ଆପଣଙ୍କ ଗାନ୍ଧିବାଦୀ ବାପା । ସେ ସ୍ୱପ୍ନ ଆପଣ ତାଙ୍କଠାରୁ ପାଇଛନ୍ତି ଉତ୍ତରାଧିକାର ସୂତ୍ରରେ । ଏବେ ଆପଣଙ୍କ ହାତରେ ପ୍ରଚୁର ସମୟ । ଆପଣ ବୟସ୍କ, କିନ୍ତୁ ବୃଦ୍ଧ ନୁହନ୍ତି । ଈଶ୍ୱରଙ୍କ ଆଶୀର୍ବାଦରେ ଆପଣ ନିରାମୟ ଶରୀରର ଅଧିକାରୀ । ଜନସେବା ପାଇଁ କାହିଁକି ନିଜକୁ ସମର୍ପିତ ନ କରିବେ ?''

ବିମଳେନ୍ଦୁର କଥାର କିମିଆରେ ମୋହଗ୍ରସ୍ତ ହୋଇପଡୁଥିଲେ ସତ୍ୟସୁନ୍ଦର । ଅଥଚ ଭାବୁଥିଲେ କହିଦେବେ, ''ବାବୁ ବିମଳେନ୍ଦୁ, ଆମ ସ୍ୱପ୍ନ କିପରି ସାକାର ହେବ ? କିଏ ଆମ କଥା ଶୁଣିବ ? ଆଜିର ସମୟ ବଡ଼ ବିଚିତ୍ର । ଏଠି କ'ଣ କେହି କାହାକୁ ଶୁଣନ୍ତି ?'' କିନ୍ତୁ ସେ କିଛି କହିବା ପୂର୍ବରୁ ବିମଳେନ୍ଦୁ ଯେମିତି ତାଙ୍କ ମନକଥା ସବୁ ପଢ଼ିଦେଲା । କହିଲା, ''ସାର୍, ଆପଣ ବିଧାୟକ ହେଲେ ରାଜ୍ୟ ପାଇଁ ଆଇନ ପ୍ରଣୟନ କରିବେ, ବିକାଶର ନୀତି-ନିର୍ଦ୍ଧାରଣ କରିବେ, ଦାରିଦ୍ର୍ୟମୋଚନ ହେଉ କି ହେଉ ଶିକ୍ଷାବିକାଶ, ସେଥିପାଇଁ ଯୋଜନା ପ୍ରସ୍ତୁତ କରିବେ ? ପୁଣି ସେହିସବୁ ଯୋଜନାର ରୂପାୟନ ପାଇଁ ବଡ଼ ବଡ଼ ହାକିମମାନେ ଆପଣଙ୍କ ଅନୁରୋଧକୁ ଆଜ୍ଞାମଣି କାମରେ ଲାଗିବେ । ଦରିଦ୍ରସେବା ଅପେକ୍ଷା ଦାରିଦ୍ର୍ୟ ଦୂରୀକରଣ ବଡ଼ କଥା ନୁହେଁ କି ସାର୍ ?''

ତେବେ ଶେଷରେ ଯେଉଁ କଥା କେତେପଦ ସତ୍ୟସୁନ୍ଦରଙ୍କୁ ସବୁଠୁଁ ବେଶି ପ୍ରଭାବିତ କରିଥିଲା । ବିମଳେନ୍ଦୁର ଏକ ନାଟକୀୟ ପ୍ରବଚନ, ''ସାର୍, ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ପାଣ୍ଡବ ପକ୍ଷଭୁକ୍ତ ହୋଇ ନ ଥିଲେ ଧର୍ମ ସଂସ୍ଥାପନା କ'ଣ ସମ୍ଭବ ହୋଇଥା'ନ୍ତା ?''

ସତ୍ୟସୁନ୍ଦର ଅନୁଭବ କରୁଥିଲେ, ସେ ସତରେ ହାରିଯାଇଛନ୍ତି, ନିରସ୍ତ୍ର ହୋଇଛନ୍ତି ବିମଳେନ୍ଦୁର ବାକ୍ୟବାଣରେ । ସେଥିପାଇଁ ତାଙ୍କ ମନରେ ଅବଶ୍ୟ ଆଉ ଅଧିକ ଅନୁଶୋଚନା ନ ଥିଲା । ଶିଷ୍ୟଠାରୁ ଗୁରୁ ପରାଜିତ ହେବା କେଉଁ ବା ନୂଆ କଥା ?

।। ଚାରି ।।

କିନ୍ତୁ ଖୁବ୍ କମ୍ ଦିନ ଭିତରେ ନୂଆ ଘଟଣାଟିଏ ଘଟିଲା ରାଜ୍ୟରେ । ବିଧାନସଭାର ଅବଧି ପୂରିବା ଆଗରୁ ମୁଖ୍ୟମନ୍ତ୍ରୀ ଇସ୍ତଫା ଦେଇ ନିର୍ବାଚନୀ ନାଟ ପାଇଁ ଶଙ୍ଖ ଫୁଙ୍କିଦେଲେ ।

ତା'ପରଠାରୁ ବିମଳେନ୍ଦୁଙ୍କ ବ୍ୟସ୍ତତାର ଆଉ ସୀମା ରହିଲା ନାହିଁ । ରାଜଧାନୀରେ ଘନଘନ ବୈଠକ ସାଙ୍ଗକୁ ଦଳର ହାଇକମାଣ୍ଡଙ୍କ ଦିଲ୍ଲୀ ଡାକରା । ତାଙ୍କ ମୁଣ୍ଡରେ ପୁଣି ଚଉଠେ ଓଡ଼ିଶାର ଗୁରୁଦାୟିତ୍ୱ । ତା' ଭିତରେ ବି ସେ ନିଜ ନିର୍ବାଚନମଣ୍ଡଳୀ କଥା ଭୁଲୁ ନ ଥିଲେ । ଜଣେ ବିଶ୍ୱସ୍ତ ଡ୍ରାଇଭର, ତହୁଁ ବଳି ବିଶ୍ୱସ୍ତ ଦୁଇଜଣ ଯୁବକର୍ମୀଙ୍କ ସହ ସେ ପୁରୁଣା ଗାଡ଼ିଟିଏ ପଠାଇଦେଲେ ସତ୍ୟସାର୍‌ଙ୍କ ପାଖକୁ । ଫୋନ୍‌ରେ କଥାହେଲେ, "ଆଉ ଡେରିକଲେ ହେବ ନାହିଁ ସାର୍, ଏରିଆ ବୁଲିବା ଆରମ୍ଭ କରିଦିଅନ୍ତୁ । ଆପଣ ପ୍ରଜାପାର୍ଟିର ବିଧାୟକ ପ୍ରାର୍ଥୀ ବୋଲି ଢୁଣ୍ଡବାଇଦ ମାଧ୍ୟମରେ ସହସ୍ର କୋଣକୁ ବ୍ୟାପିସାରିଛି । ସାହିବସ୍ତିରେ ଆପଣଙ୍କୁ ସ୍ୱାଗତପାଇଁ କର୍ମୀ ପ୍ରସ୍ତୁତ । ଅନ୍ୟ ଦଳର ପ୍ରାର୍ଥୀମାନେ ସମରସଜ୍ଜା କରିବା ପୂର୍ବରୁ ଆପଣ ଦୁଆରେ ଦୁଆରେ ବୁଲନ୍ତୁ, କାହା ପିଣ୍ଡାରେ ତ କାହା ଚଉପାଢ଼ିରେ ବସି ଗପ ଜମାନ୍ତୁ । ବୁଢ଼ାବୁଢ଼ୀଙ୍କୁ ଭଲମନ୍ଦ ପଚାରନ୍ତୁ, ଗାଁ କ୍ଲବ୍‌କୁ ଯାଇ ଯୁବକମାନଙ୍କ ସହିତ ସାଥୀ, ସହପାଠୀ ପରି ମିଶିଯାଆନ୍ତୁ ।"

ନିର୍ବାଚନ ତାରିଖ ଘୋଷଣା ହେଲାକ୍ଷଣି ରାଜ୍ୟର ପୁରପଲ୍ଲୀରେ ଋତୁବସନ୍ତର ଭ୍ରମ ସୃଷ୍ଟି ହେଲା । କାନ୍ଥବାଡ଼ ପଲ୍ଲବିତ ହେଲେ ରଙ୍ଗବେରଙ୍ଗ ପୋଷ୍ଟର୍‌ରେ । ନିର୍ବାଚନୀ ସଙ୍ଗୀତର ହିଲ୍ଲୋଳରେ ଶିହରିତ ହେଲେ ଦିଗଦିଗନ୍ତ ।

ନିର୍ବାଚନ ଷ୍ଟ୍ରାଟେଜି ପ୍ରସ୍ତୁତିରେ ତେଣେ ମଗ୍ନ ହେଲେ ବିମଳେନ୍ଦୁ । ସତ୍ୟସାର୍‌ଙ୍କ ଜାଣତରେ ଯେତେ ନୁହେଁ, ତାଙ୍କ ଅଜାଣତରେ ତା'ଠାରୁ ଅଧିକ କାର୍ଯ୍ୟ କରାଯିବା ଆବଶ୍ୟକ ବୋଲି ସେ ଅନୁଭବ କରୁଥିଲେ । ସେ ଜାଣିଥିଲେ, ଯୁବକର୍ମୀମାନଙ୍କ ଔଦ୍ଧତ୍ୟ ସାର୍‌ଙ୍କୁ ଭଲ ଲାଗିବ ନାହିଁ, ସାର୍‌ଙ୍କ ନୀତିବାଣୀକୁ ମାନିବେ ନାହିଁ କର୍ମୀମାନେ । ତେଣୁ ସାର୍ ତାଙ୍କ ବାଟରେ ଏବଂ ସେମାନଙ୍କ ବାଟରେ ଯିବା ବ୍ୟବସ୍ଥା କରାଯିବା ଜରୁରୀ । ନ ହେଲେ ଉଦ୍ୟୋଗପତି ପୁଅ ଲାଭ ମାରିନେବେ ।

ସେବକ ଦଳର ପ୍ରାର୍ଥୀପତ୍ର ଦାଖଲ ପରେ ହିଁ ତାଙ୍କ ଦଳ ତରଫରୁ ପ୍ରାର୍ଥୀପତ୍ର ଦାଖଲ କରାଯିବ ବୋଲି ସ୍ଥିର କଲେ ବିମଳେନ୍ଦୁ । ସେମାନଙ୍କ ଧନ ଓ ଜନବଳକୁ ମୂଳରୁ ପ୍ରତିହତ ନ କଲେ ଲୋକେ ସେପଟକୁ ବାଟ କାଟିବେ । ସେ ପୁନଶ୍ଚ ସ୍ଥିର କଲେ ଯେ, ବିଶାଳ ର୍‍ୟାଲି ଆୟୋଜନ କରାଯିବ ପ୍ରଜାପାର୍ଟି ତରଫରୁ, ସେବକ ଦଳକୁ ଟକ୍‌କର ଦେଲାପରି । ସର୍ବନିମ୍ନ ଦଶ ହଜାର ଲୋକଙ୍କର ସମାବେଶ ନ ହେଲେ, କଚେରିହତା ପୂରିଲା ପୂରିଲା ଲାଗିବ ନାହିଁ, ରାସ୍ତାଘାଟ ଉଛୁଳିବ ନାହିଁ । ସବୁଥର ପରି ଏଥର ବି ଗାନ୍ଧୀ ପଡ଼ିଆରୁ ର୍‍ୟାଲି ବାହାରିବ । କିନ୍ତୁ ସେଠାରେ ଖିଆପିଆ କରାଯିବ ନାହିଁ । ସହର ଉପକଣ୍ଠ ରାମତାର୍ ମାରୁଆଡ଼ି ଫାର୍ମ ହାଉସ୍‌ରେ ଭୋଜି ଆୟୋଜନ କରାଯିବ । ଶତାଧିକ ଛେଳି ମୁଣ୍ଡ କଟିବ ସେହି ଫାର୍ମ୍ ହାଉସ୍ ପଛ ପୋଖରୀହୁଡ଼ାରେ ।

ସେଠୁ ଖାଇପିଇ, ହେକୁଟି ମାରି କର୍ମୀ ଓ ଜନତା ଆସି ପହଞ୍ଚିବେ ଗାନ୍ଧୀ ପଡ଼ିଆରେ । ସତ୍ୟସାର୍‌ଙ୍କୁ ଖାଲି ଭାତ, ଡାଲ୍‌ମା କଥା କୁହାଯିବ । କୁହାଯିବ ନାହିଁ ଗାଡ଼ିଘୋଡ଼ା ଆୟୋଜନ କଥା । ଲୋକେ ନିଜ ଖର୍ଚ୍ଚରେ ଆସୁଛନ୍ତି ବୋଲି ତାଙ୍କୁ ପ୍ରସଙ୍ଗକ୍ରମେ ଅବଗତ କରାଯିବ । ନ ହେଲେ ବୁଢ଼ାର ମୁଣ୍ଡ ବିଗିଡ଼ିଯିବ ଯେ !

ତେବେ ବିମଳେନ୍ଦୁଙ୍କ ମୁଣ୍ଡ ବିଗିଡ଼ିଗଲା, ସେ ଯେତେବେଳେ ବିଶ୍ୱସ୍ତ ସୂତ୍ରରୁ ଖବର ପାଇଲେ ଯେ, ବିପକ୍ଷଙ୍କ ତରଫରୁ ବେଜାୟ ବାତାବରଣର ଆୟୋଜନ କରାଯାଉଛି । କିନ୍ତୁ ସାର୍‌ଙ୍କୁ ସେମିତି ବୁଝାଇହେବ ଯେ ତାଙ୍କ ର୍‍ୟାଲିରେ ବି ବାଜାବାଣ ଅବଶ୍ୟମ୍ଭାବୀ ? ସେ ତ ଆଜନ୍ମ ଗାନ୍ଧୀବାଦୀ, ଆଟୋପ, ଆଡ଼ମ୍ବର ଓ ବ୍ୟୟବହୁଳତାର ଘୋର ବିରୋଧୀ ।

ବିମଳେନ୍ଦୁଙ୍କ ତୀକ୍ଷ୍ଣ ଧୀମତ୍ତା ନିକଟରେ ଅବଶ୍ୟ ଅଚିରେ ହାର୍ ମାନିଲା ସମସ୍ୟାଟି । ସମାଜର ସବା ତଳ ପାହାଚର ଲୋକମାନେ ତ ବାଜା ବଜାନ୍ତି, ବାଣ ଫୁଟାନ୍ତି । ପାର୍ଟି ଫଣ୍ଡରୁ ଦି' ପଇସା ତାଙ୍କ ପକେଟକୁ ଗଲେ ସାର୍‌ଙ୍କର ଆପତ୍ତି ରହିବ କାହିଁକି ?. ନାଚ, ଗୀତ, ବାଜାବାଜଣା– ଏସବୁ ତ ଲୋକକଳା । ସାର୍‌ଙ୍କର ପୁଣି ଲୋକକଳା ପ୍ରତି ଢେର୍ ଆଦର । ସେ କାହିଁକି ମନା କରିବେ ଏସବୁ । ତେବେ କଥାଟିକୁ ତାଙ୍କ ପାଖରେ ଠିକ୍ ସମୟରେ, ଠିକ୍ ଢଙ୍ଗରେ ଉପସ୍ଥାପିତ କରାଗଲେ ହେଲା ।

ବିମଳେନ୍ଦୁ କିନ୍ତୁ ବେଳେବେଳେ ବ୍ୟଥିତ ହେଉଥିଲେ ମନେ ମନେ । ନିଜକୁ ଦୋଷୀ ମଣୁଥିଲେ ମଧ୍ୟ । ସତ୍ୟସାର୍‌ଙ୍କ ସହିତ ତାଙ୍କୁ ଯାହା ଛଳ କରିବାକୁ ପଡୁଛି ! କିନ୍ତୁ ସେ ଯେ ନାଚାର । କେମିତି ବା ସାର୍‌ଙ୍କୁ କହିହେବ ଯେ ଛଳ ହିଁ ରାଜନୀତିର ବଳ । ଯେତେ କହିଲେ ବି ସେ କ'ଣ ଘେନା କରିବେ ଯେ ସତ୍ୟ, ଅହିଂସା ଆଦି ଯେତେ ନୀତି ଗାନ୍ଧିଜୀଙ୍କ ସହିତ ହିଁ ସହିଦ ହୋଇସାରିଛନ୍ତି ଏ ମାଟିରେ ।

ଆଜିକାଲି ଗାଁ-ଗାଁରେ ଭୋଜିଭାତ ନ ହେଲେ କି ଭୋଟର୍ ମଙ୍ଗିବେ ? ଯୁବକ ସଂଘଗୁଡ଼ିକୁ ବଲ୍ ବ୍ୟାଟ୍ ନ ଦେଲେ ସେମାନେ କି ତଣ୍ଟି ଫଟାଇ ସ୍ଲୋଗାନ୍ ଦେବେ ? ଭୋଟ୍ ପୂର୍ବଦିନ ରାତିରେ ଦର କଷାକଷି ନ କଲେ କି ଭୋଟର୍‌ମାନେ ଘରୁ ବାହାରିବେ ? ସାର୍‌ଙ୍କ ଅଗଣିତ ଛାତ୍ରଛାତ୍ରୀଙ୍କ 'କ୍ଲାସ୍' ଭୋଟ୍ ସିନା ତାଙ୍କ ବିଜୟ ନିର୍ଦ୍ଧାରଣ କରିବ, ହେଲେ ସାହିବସ୍ତିରେ 'ମାସ୍' ଭୋଟ୍ ନ ମିଳିଲେ ଅମାନତ ଉଡ଼ିଯିବା ଅସମ୍ଭବ ନୁହେଁ । ଏକଥା ସାର୍‌ଙ୍କୁ କହି ହେବ କି ? କହିହେବ କି ତାଙ୍କ ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀ ଓଡ଼ିଶାର ସୁନ୍ଦରୀ ଅଭିନେତ୍ରୀମାନଙ୍କୁ ଆଣି ସଭା କରାଇବା କଥା ସତ ହେଲେ ପ୍ରଜାପାର୍ଟି କେତୋଟି ଦକ୍ଷିଣୀ ପରୀ ଆଣି ଯୁବ-ଭୋଟରମାନଙ୍କୁ ଉନ୍ମାଦ କରାଇବାକୁ ପଛାଇବ ନାହିଁ ।

।। ପାଞ୍ଚ ।।

ଦିନରାତି ଏକାକାର ହୋଇସାରିଥିଲା ସତ୍ୟସୁନ୍ଦରଙ୍କ ପାଇଁ । ସେଟ୍ ପ୍ରଚାରରେ ସେ ସଂପୂର୍ଣ୍ଣ ମଜ୍ଜି ଯାଇଥିଲେ । ପ୍ରାର୍ଥୀପତ୍ର ଦାଖଲ ଦିନର ସଫଳତାରେ ସେ କେବଳ ଆଚମ୍ବିତ ହୋଇ ନ ଥିଲେ, ଅଭିଭୂତ ହୋଇଥିଲେ ମଧ୍ୟ । ବିମଳେନ୍ଦୁର କଥା ଅକ୍ଷରେ ଅକ୍ଷରେ ସତ ହେଲା । ଏହାପୂର୍ବରୁ ଯେତେ ନିର୍ବାଚନୀ ପଟୁଆର କରାଯାଇଛି, ସେସବୁ ତୁଳନାରେ ତାଙ୍କ ପଟୁଆର କୁଆଡ଼େ ଥିଲା ସବୁଠୁଁ ବିଶାଳ । ସତ ହୋଇଥିବ, ଏକଥା ନିଶ୍ଚୟ । ପୁଣି ବିମଳେନ୍ଦୁ କହିବା ଅନୁସାରେ ବିପକ୍ଷ ସେବକ ଦଳର ସମାବେଶ ପାଇଁ ଲୋକେ ବୁହାହୋଇ ଆସିଥିଲେ; କିନ୍ତୁ ଲୋକମାନଙ୍କ ସ୍ୱତଃସ୍ଫୂର୍ତ୍ତ ଯୋଗଦାନ ଥିଲା ତାଙ୍କ ଶୋଭାଯାତ୍ରାରେ । ସେହି ପ୍ରଥମ ଶୋଭାଯାତ୍ରାର ସଫଳତା ବିଜୟର ଅଟଳ ସଂକେତ ବୋଲି ଲୋକେ କୁହାକୁହି ହେଉଛନ୍ତି । ତେବେ ପୁରୁଖା କର୍ମୀମାନଙ୍କ ମତରେ ସେହି ଟେମ୍ପୋ ଶେଷପର୍ଯ୍ୟନ୍ତ ବଜାୟ ରଖାଯିବା ଦରକାର । 'ଟେମ୍ପୋ'ରେ ଥରେ ଭଟ୍ଟା ପଡ଼ିଗଲେ ଗଣିତ ଓଲଟିଯାଏ ।

ତାଙ୍କ ନିର୍ବାଚନୀ ସଭାମାନଙ୍କରେ କ୍ରମେ ଶ୍ରୋତା ସଂଖ୍ୟା ବଢୁଥିବା ସତ୍ୟସୁନ୍ଦର ଲକ୍ଷ୍ୟ କରୁଥିଲେ । ପ୍ରଥମେ ପ୍ରଥମେ ସେ ସାମାଜିକ ମୂଲ୍ୟବୋଧ, ଆଦର୍ଶ ରାଜନୀତି ଆଦି ବିଷୟରେ ଲମ୍ବା ଭାଷଣ ଦେଉଥିଲେ । କିନ୍ତୁ ଲୋକମାନଙ୍କ ଭିତରେ ବିଶେଷ ଆଗ୍ରହ ଥବା ସେ ଅନୁଭବ କରୁ ନ ଥିଲେ । ବିମଳେନ୍ଦୁର ପରାମର୍ଶକ୍ରମେ ସେ ଭାଷଣ ପ୍ରସଙ୍ଗରେ ବିରୋଧୀମାନଙ୍କ ପ୍ରତି କିଛିଟା କଟୁ ମନ୍ତବ୍ୟ ଦେଇସାରିଛନ୍ତି । ମନ୍ତ୍ରୀମାନଙ୍କ ଦୁର୍ନୀତି, ଶାସକମାନଙ୍କ ଶଠତା ବିଷୟରେ ବି ଟିପ୍ପଣୀ ଦେଇଛନ୍ତି । ଟିପ୍ପଣୀ ରଖିଛନ୍ତି ପୁଣି ଶାସକ ସେବକ ଦଳର ଅପାରଗତା ଓ ଅପରିଣାମଦର୍ଶିତା ବିଷୟରେ । ଏପରି ବକ୍ତବ୍ୟ ସମୟରେ ଜନରୋଳ ଓ କରତାଳିରେ ମେଦିନୀ କମ୍ପୁଥିବା ସେ ପ୍ରତ୍ୟକ୍ଷ କରିଛନ୍ତି । ଇଚ୍ଛା ନ ଥିଲେ ବି ସେ ଆଉ ଏତାଦୃଶ ବକ୍ତବ୍ୟରୁ କ୍ଷାନ୍ତ ହୋଇପାରୁ ନାହାନ୍ତି । କାହା ପ୍ରତି ଅଙ୍ଗୁଳିନିର୍ଦ୍ଦେଶ ବା କାହାର କୁତ୍ସାରଟନା ତାଙ୍କ ସ୍ୱଭାବ ବିପରୀତ ହେଲେ ମଧ୍ୟ ନିଜ ଜିହ୍ୱା ଆଉ ଯେମିତି ତାଙ୍କ ଆୟତ୍ତରେ ନ ଥିଲା । ତଥାପି ସେ ନିଜକୁ ସାନ୍ତ୍ୱନା ଦେଉଥିଲେ, ରଣଭୂଇଁରେ ଠିଆହୋଇ ଶରନିକ୍ଷେପରେ କାର୍ପଣ୍ୟ ଶୋଭନୀୟ ନୁହେଁ କଦାପି । ଗାନ୍ଧୀ-ମହାତ୍ମା ତ ପୁଣି ବ୍ରିଟିଶ୍ ସରକାରକୁ 'ସଇତାନ୍' ବୋଲି କହିଥିଲେ ।

କେତେ କେତେ ପ୍ରତିଶ୍ରୁତି ପୁଣି ଆଜିକାଲି ତାଙ୍କ ମୁହଁରୁ ସ୍ୱତଃ ଝରିପଡୁଥିଲା । ବେକାର ଯୁବକମାନଙ୍କ ପ୍ରଶ୍ନର ଉତ୍ତର ଦେଲାବେଳେ ପର୍ଯ୍ୟାପ୍ତ ନିଯୁକ୍ତି ସୁଯୋଗ କଥା ସେ କହୁକହୁ କହିଦେଇଥିଲେ । ଜଳସେଚନ ଓ ଶସ୍ୟର ସହାୟକ ମୂଲ୍ୟ କଥା କହିପକାଇଥିଲେ କୃଷକ

ସମାବେଶରେ । ପକ୍କା ସଡ଼କ, ପିଇବା ପାଣି, ବିଜୁଳି ସଂଯୋଗ କଥା ତ ସେ ପ୍ରାୟ ସବୁ ସଭାରେ କହିଚାଲିଥିଲେ । ଖେଳପଡ଼ିଆର ପ୍ରଶସ୍ତିକରଣ, ପୋଲ ନିର୍ମାଣ, ଭତ୍ତା ରାଶି ବୃଦ୍ଧି, ଏପରିକି ମନ୍ଦିର, ମସ୍‌ଜିଦ୍ ମରାମତି ଆଦି କଥା ସେ କହୁକହୁ କହିଦେଉଥିଲେ ସଭାସମିତିରେ, ବାଟଘାଟେ ବି । ଅବଶ୍ୟ ତାଙ୍କ ଦଳର ବଡ଼ ବଡ଼ ନେତାମାନେ ଏପରି କହିବାପାଇଁ, ଉଚ୍ଚସ୍ତରୀୟ ପାର୍ଟି ବୈଠକ ପରେ ନିର୍ଦ୍ଦେଶ ଦେଇଥିଲେ ପ୍ରାର୍ଥୀମାନଙ୍କୁ । ବିମଳେନ୍ଦୁ ବି ସେକଥା ଚାଲିଥିଲା ଫୁଙ୍କି ତାଙ୍କ କାନରେ ସର୍ବଦା । ସମସ୍ତ ପ୍ରତିଶ୍ରୁତି ପୂର୍ତ୍ତି ବିଷୟରେ ସନ୍ଦିହାନ ଥିଲେ ବି ସ୍ୱପ୍ନ ଦେଖିବା ସ୍ୱପ୍ନ ଦେଖାଇବା ମଣିଷର ସହଜାତ ବୋଲି ବିଚାରି ସନ୍ତୁଷ୍ଟ ହେବାକୁ ବାଧ ହେଉଥିଲେ ସତ୍ୟସୁନ୍ଦର ।

ତେବେ ନିଜ କଥା ଓ କାମକୁ ପରଖିବା ପାଇଁ ଆଉ ସମୟ ନ ଥିଲା ତାଙ୍କ ପାଖରେ, ସମୟ ନ ଥିଲା ନିଜକୁ ସଂଶ୍ଲେଷଣ କରିବାପାଇଁ । କିନ୍ତୁ ବେଳେବେଳେ ତାଙ୍କର ମନେହେଉଥିଲା, ଆଗପରି ସେ ଯେମିତି ଆଉ ନୀତି-ଅନୀତିର ଭେଦ ବାରିପାରୁ ନାହାନ୍ତି । ସମାଜର ବ୍ୟତିକ୍ରମ ଯାହାସବୁ ତାଙ୍କ ନଜରରେ ସହଜରେ ଆଗରୁ ଧରାପଡୁଥିଲା, ସେସବୁ ଅବା କ୍ରମେ ଆଖିସୁହା ହୋଇଗଲାଣି ! ବଧିରିଆ ପଡ଼ିଗଲାଣି ତାଙ୍କ ସ୍ପର୍ଶକାତର ମନ ।

ଏଇ ଯେମିତି, କେତେଦିନ ହେଲା ସେ ଗୋଟେ ଦାମୀ ଗାଡ଼ି ଚଢ଼ି ଏରିଆ ବୁଲୁଛନ୍ତି । ସେ ଗାଡ଼ି ପାର୍ଟି ନୁହେଁ, ତାଙ୍କ ପାରିଲା ପିଲାମାନେ ଯୋଗାଡ଼ କରିଛନ୍ତି ବୋଲି କୁହାଯିବାରୁ ସେ ତୁନି ପଡ଼ିଛନ୍ତି । ଅବଶ୍ୟ ନୂଆ ଗାଡ଼ି ଯୋଗୁଁ ସେ ପାଞ୍ଚ ଜାଗାରେ ପଚିଶ ଗାଁ ବୁଲି ପାରୁଛନ୍ତି । ସଭ୍ୟତାର ସଦ୍ୟତମ ଅବଦାନକୁ ସେ ଅସ୍ୱୀକାର କରିବେ କାହିଁକି ? ଜନପ୍ରତିନିଧିର ଦୃଷ୍ଟିଭଙ୍ଗୀ ଉଦାର ଓ ଆଧୁନିକ ହେବା ବାଞ୍ଛିତ ନୁହେଁ କି ?

॥ ଛଅ ॥

ବାଞ୍ଛିତ ସମୟସୀମାର ଅବସାନ ଘଟିସାରିଥିଲା । ଅବଶ୍ୟ ଅବସାନ ଘଟି ନ ଥିଲା ଉତ୍କଣ୍ଠାର । ଅପେକ୍ଷା ଥିଲା ଭୋଟ୍ ଗଣିତ ଓ ଫଳାଫଳକୁ । ବିମଳେନ୍ଦୁଙ୍କ ଗଣିତ ଓ ଗଣନା- ଉଭୟ ଥିଲେ ନିଶ୍ଚିତ ବିଜୟର ନିକଟବର୍ତ୍ତୀ । ବୁଥ୍ ସ୍ତରର କର୍ମୀମାନଙ୍କଠାରୁ ଉତ୍ସାହଜନକ ସମ୍ବାଦ ମିଳୁଥିଲା । ସମ୍ବାଦ ମିଳୁଥିଲା ଯେ ବିପକ୍ଷ ଶିବିରରେ ନୈରାଶ୍ୟର ଛାୟା ଘନୀଭୂତ ହୋଇଛି ।

କର୍ମୀମାନଙ୍କ ରିପୋର୍ଟ ଉପରେ ବିମଳେନ୍ଦୁଙ୍କ ଆସ୍ଥା ଥିଲା ଅପ୍ରମିତ । ବିଶେଷତଃ ଭୋଟ୍ ପୂର୍ବଦିନ ରାତିରେ ତାଙ୍କ କର୍ମୀମାନେ ଶିକାରେ ଶିକା ହୋଇପାରିଛନ୍ତି ।

ପୁଞ୍ଜିପତି ପୁଅର ବାହୁ ଓ ଅର୍ଥବଳକୁ ସାହସର ସହିତ ସାମ୍ନା କରିଛନ୍ତି । ଭୋଟ୍ ପ୍ରଚାରର ଶେଷଦିନଠାରୁ ନିର୍ବାଚନ ଆୟୋଗଙ୍କ ନିର୍ଦ୍ଦେଶନାମାକୁ ସମ୍ମାନ ଜଣାଇ ଆଉ ଏରିଆକୁ ନ ଯିବାପାଇଁ ସେ କହିଥିଲେ ସତ୍ୟସାର୍‌ଙ୍କୁ । ତଦନୁଯାୟୀ ସାର୍‌ଙ୍କର ସମୟ କଟିଥିଲା ଘରେ ବିଶ୍ରାମ ନେବାରେ । ସୁତରାଂ କର୍ମୀମାନଙ୍କ ଅବାଧ କାରବାରର ସେ ବାଧକ ହୋଇ ନାହାନ୍ତି । ତେଣୁ ପାର୍ଟିପକ୍ଷ ଓ ନିରପେକ୍ଷ– ଉଭୟ କିସମର ଭୋଟ୍ ସାର୍‌ଙ୍କ ଆଡ଼କୁ ଯାଇଥିବା ନିଶ୍ଚିତ । ଅନ୍ୟ ନିର୍ବାଚନମଣ୍ଡଳୀଗୁଡ଼ିକରୁ ମଧ୍ୟ ପ୍ରତ୍ୟାଶିତ ତଥ୍ୟ ହସ୍ତଗତ ହେଉଥିଲା ।

ରାମତାର୍ ଅଗ୍ରୱାଲର ନିକାଞ୍ଚନ ଫାର୍ମ ହାଉସ୍‌ରେ ଅସୀମ ଆଳାପ ଓ ଲଘୁ ଆହାର ଭିତରେ ରାତି ବୟସ୍କ ହେଉଥିଲା । ସାଙ୍ଗରେ ଥିଲେ ମାତ୍ର କେତେଜଣ ଅତି ଆତ୍ମୀୟ ସହକର୍ମୀ । ଆଳାପ ଆହାରର ଉଷ୍ମତା ଭିତରେ ଜଣେ ବନ୍ଧୁ କହିପକାଇଲେ, ‘‘ଏଥର ନିର୍ବାଚନରେ ସବୁ ବଦଳିବ । ହେଲେ, ଆମ ଭାଗ୍ୟ ବଦଳିବ ତ ?’’

‘‘ଠିକାଦାରୀ, ଡିଲର୍‌ଗିରି ଆଦିର ଗୂଢ଼ କଥା ଏ ନୂଆ ଗାନ୍ଧୀବୁଢ଼ା ବୁଝିଲେ ସିନା ଯାହା’’, ଅନ୍ୟ ଜଣେ ଯୋଗକଲେ । ଅର୍ଦ୍ଧନିହିତ ବିମଳେନ୍ଦୁ ଯେତିକି ଚେତିଲେ, ସେଥିରେ ସେ ମନେ ମନେ ବେଦମ୍ ହସିଲେ । ହସିଲେ ତାଙ୍କ ପରିପକ୍ୱ ସହକର୍ମୀମାନଙ୍କ ଅପରିପକ୍ୱ ଆଶଙ୍କାପାଇଁ ।

‘‘ଆରେ, ବୁଢ଼ା ତ ଟ୍ରାପ୍ ହୋଇସାରିଛି’’, ସେ ନିଜକୁ ନିଜେ କହିଲେ ଏବଂ ଅନେକଦିନ ପରେ ‘ବ୍ଲାକ୍ ଡଗ୍’ର ଠିପି ଖୋଲିଲେ ।



# ମୁଗ୍ଧ ଗୋଧୂଳି

ଆସିବା ଦିନ ହିଁ ଫେରିଯିବାକୁ ବାହାରିଥିଲେ ଅନୁରାଧା । କିନ୍ତୁ କୃଷ୍ଣକୁମାରଙ୍କର ଏକା ଜିଦ୍, ''ତୁମେ ଯାଇପାରିବ ନାହିଁ ।'' ତାଙ୍କ ଆକଟରେ ଥିଲା ପ୍ରଗାଢ଼ ଆତ୍ମୀୟତା । ''ଏମିତି ଅବସ୍ଥାରେ କେହି କ'ଣ ଘରକୁ ଫେରେ ?'' କୃଷ୍ଣକୁମାରଙ୍କ ପ୍ରଶ୍ନର ଉତ୍ତର ନ ଥିଲା ଅନୁରାଧାଙ୍କ ପାଖରେ ।

ଦୀର୍ଘ ଅସୁସ୍ଥତା ପରେ କଟକ ଆସିଥିଲେ ଅନୁରାଧା । ଫୋନ୍ କରି ଆଗରୁ ଜଣାଇଥିଲେ କୃଷ୍ଣକୁମାରଙ୍କୁ । ବାରିପଦାରୁ ଆସୁଥିବା ନିର୍ଦ୍ଦିଷ୍ଟ ଟ୍ରେନକୁ ଅପେକ୍ଷା କରିଥିଲେ କୃଷ୍ଣକୁମାର କଟକ ରେଳ ଷ୍ଟେସନ୍‌ରେ । ବେଶ୍ କେତେବର୍ଷ ହେବ ଦେଖାସାକ୍ଷାତ ହୋଇ ନ ଥିଲେ ବି ରୁଗ୍‌ଣା ଅନୁରାଧାଙ୍କୁ ଚିହ୍ନିବାରେ ତାଙ୍କର କୌଣସି ଅସୁବିଧା ହୋଇ ନ ଥିଲା । ନିଜ କାର୍‌ରେ ଅନୁରାଧାଙ୍କୁ ବସାଇ ସେ ସିଧା ଯାଇଥିଲେ ମେଡିସିନ୍ ସ୍ପେସିଆଲିଷ୍ଟ ଡାକ୍ତର ପରିଜାଙ୍କ ପାଖକୁ । ଜଣେ ପୁରାତନ ଛାତ୍ରର ବାପା ଡାକ୍ତର ପରିଜା ତାଙ୍କର ବହୁଦିନରୁ ଜଣାଶୁଣା ।

ଡାକ୍ତର ପରିଜା ରୋଗୀ ଦେଖୁ ଦେଖୁ ହିଁ ରୋଗ ଚିହ୍ନି ପାରିଥିଲେ । ବ୍ୟୟବହୁଳ ଅଯଥା ପରୀକ୍ଷା-ନିରୀକ୍ଷାର ସେ ପକ୍ଷପାତୀ ନୁହନ୍ତି । ତାଙ୍କର ପରାମର୍ଶ ଥିଲା ସ୍ପଷ୍ଟ 'ମାନସିକ ପ୍ରସନ୍ନତା ଏ ରୋଗର ମହୌଷଧି' । ଗୋଟେ ଯୋଡ଼େ ବଟିକା ସେବନପାଇଁ ସେ ଅବଶ୍ୟ ପ୍ରେସ୍‌କ୍ରାଇବ୍ କରିଥିଲେ । କିନ୍ତୁ କହିଥିଲେ, 'ମର୍ଣ୍ଣିଙ୍ଗ୍‌ୱାକ୍ ଇଜ୍ ଏ ମଷ୍ଟ୍ ।' କହିଥିଲେ ପୁଣି, ପନ୍ଦର ଦିନ ପରେ ସେ ଆଉ ଥରେ ପେସେଣ୍ଟ୍‌କୁ ଦେଖିବେ ।

ପରିଜାଙ୍କ ପରାମର୍ଶ ଥିଲା କୃଷ୍ଣକୁମାରଙ୍କ ଜିଦ୍‌ର କାରଣ । ସେହି ଅନ୍ତରଙ୍ଗ ଜିଦ୍‌ର ଏରୁଣ୍ଡି ଡେଇଁପାରି ନ ଥିଲେ ଅନୁରାଧା ।

କିନ୍ତୁ ଅନୁରାଧାଙ୍କ ଆଖିରେ ଆଖିଏ ସନ୍ତର୍ପଣ ଦେଖିପାରୁଥିଲେ କୃଷ୍ଣକୁମାର । ପଢ଼ିପାରୁଥିଲେ ତାଙ୍କ ମୁହଁରେ 'ହଁ, ନା'ର ବର୍ଣ୍ଣବୋଧ । ବୁଝିପାରୁଥିଲେ ମଧ୍ୟ ତାଙ୍କ ମନଭିତ୍ତି ଅନ୍ତର୍ଦ୍ୱନ୍ଦ୍ୱର ଉଦ୍‌ବେଳନ । ତଥାପି ସେ ତାଙ୍କୁ ଅଟକାଇଲେ । ବାଧ୍ୟ କଲେ ରହିବାପାଇଁ ତାଙ୍କ ଘରେ, କଟକର ମହାନଦୀ ଆପାର୍ଟମେଣ୍ଟ୍‌ରେ ।

ମହାନଦୀ ଆପାର୍ଟମେଣ୍ଟ୍‌ର ମଝି ମହଲାର ତିନି ବଖୁରିଆ ଘରଟି ଏବେ ତାଙ୍କର ପ୍ରିୟ ନିବାସ ସ୍ଥଳ । ଅନେକ ଦିନ ତଳେ, ସେ ରେଭେନ୍ସାରେ ଅଧ୍ୟାପନା

କରୁଥିବା ସମୟରେ କିଣିଥିଲେ ଘରଟି । ସେତେବେଳେ ଓଡ଼ିଶାରେ ଆପାର୍ଟମେଣ୍ଟ୍ କନ୍‌ସେପ୍‌ଟ୍‌ଟି ଥିଲା ସମ୍ପୂର୍ଣ୍ଣ ନୂଆ । ଶୂନ୍ୟରେ ଘର କରି ରହିବା କଥାଟାକୁ ହଠାତ୍ କେହି ଗ୍ରହଣ କରିପାରୁ ନ ଥିଲେ ହୁଏତ । ପିଏଚ୍.ଡି. ପାଇଁ ବିଦେଶର ଏକ ବିଶ୍ୱବିଦ୍ୟାଳୟରେ କିଛିଦିନ ଅଧ୍ୟୟନ କରିଥିବା କୃଷ୍ଣକୁମାର ଥିଲେ ଏହାର ବ୍ୟତିକ୍ରମ । ସୁତରାଂ ସତୀର୍ଥମାନଙ୍କ ବ୍ୟଙ୍ଗବିଦ୍ରୂପ ସତ୍ତ୍ୱେ ସେ ଆପାର୍ଟମେଣ୍ଟରେ ଘରଟିଏ କିଣିବାପାଇଁ ଆଗଭର ହୋଇଥିଲେ । ଅଗତ୍ୟା ବାର୍ଦ୍ଧକ୍ୟର ନିଃସଙ୍ଗ ଜୀବନଯାତ୍ରାରେ ଆପାର୍ଟମେଣ୍ଟ୍‌ର ଉପଯୋଗିତା ସେ ମର୍ମେ ମର୍ମେ ଅନୁଭବ କରୁଥିଲେ ଏବଂ ନିଜ ସାଂସାରିକ ବୁଦ୍ଧିକୁ ନିଜେ ପ୍ରଶଂସା ହିଁ ପ୍ରଶଂସା କରୁଥିଲେ ।

ପନ୍ଦର ବର୍ଷ ବିତିଲାଣି ଏହି ଆପାର୍ଟମେଣ୍ଟ୍‌ରେ ଅଥଚ ମନେ ହେଉଛି ଏଇ ଯେମିତି କାଲିର କଥା । ନୂଆକରି ସେ ଆସିଥା'ନ୍ତି ନିଜ ଘରକୁ । ମନୋରମାଙ୍କୁ ମାସେ ସମୟ ଲାଗିଥିଲା ଘର ସଜାଇବାପାଇଁ । ସୋଫା କେଉଁଠି ପଡ଼ିବ, କେଉଁଠି ରହିବ ଫୁଲଦାନି, କେଉଁ ୱାଲ୍‌ହେଙ୍ଗର୍ କେଉଁଠି ଲାଗିବ, ଶୋଇବାଘରର କେଉଁ ପାଖରେ ପଡ଼ିବ ପଲଙ୍କ, ଷ୍ଟଡି ରୁମ୍‌ରେ ଆଲମାରି କେଉଁଠି ରଖାଯିବ, କେଉଁ ବହି କେଉଁ ର୍‌ୟାକ୍‌ରେ ରହିବ ଇତ୍ୟାଦି ଇତ୍ୟାଦି । ମନୋରମାଙ୍କ ଆସ୍‌ଥେଟିକ୍ ସେନ୍‌ସର ପଟାନ୍ତର ନାହିଁ । ଘର ସଜାଇବା ହେଉ ବା ହେଉ ରୋଷେଇ କରିବା, ତାଙ୍କ ହାତଟି ଯେମିତି ଗୋଟେ ଅଦ୍ଭୁତ ଯାଦୁଖଡ଼ି । ସେ ହାତ ଲାଗିଲେ ମାମୁଲି ଚିଜଟିଏ ବି ସୁନ୍ଦର ସାମଗ୍ରୀର ରୂପ ନିଏ ।

ମନୋରମା ନିଜେ ଥିଲେ ଗୋଟେ ସୌନ୍ଦର୍ଯ୍ୟର ପେଡ଼ି । କୃଷ୍ଣକୁମାରଙ୍କର ମନେପଡ଼େ ନୂଆ ନୂଆ ଅଧ୍ୟାପନା ସମୟର କଥା । ଭାରି ମନୋଜ୍ଞ ସେସବୁ ସ୍ମୃତି, ଖୁବ୍ ନିବିଡ଼ । ତାଙ୍କର ପ୍ରଥମ କ୍ଲାସ୍ ଇସ୍ପାତ କଲେଜରେ, ତାହା ପୁଣି ଅନର୍ସ କ୍ଲାସ୍ । ଜେ.ଏନ୍.ୟୁ.ରେ ପାଠପଢ଼ା ସରିଛି କି ନାହିଁ ସେ ପାଇଥିଲେ ଆଡ୍‌ହକ୍ ନିଯୁକ୍ତି ରାଉରକେଲାରେ । କ୍ଲାସ୍ ଭିତରେ ପଶୁ ପଶୁ ଗୋଟେ ମୃଦୁ ଭୂମିକମ୍ପରେ ଚହଲିଗଲା ତାଙ୍କ ଦେହ ଓ ମନର ଚୌହଦି । ବାଟବଣା ଜହ୍ନଟିଏ ଯେମିତି ପଶିଆସିଛି କ୍ଲାସରୁମ୍ ଭିତରକୁ । ସେହି ପ୍ରଥମ କ୍ଲାସ୍‌ଟି ପାଲଟିଥିଲା ତାଙ୍କ ଜୀବନର ଅଭୁଲା ଅଧ୍ୟାୟ ।

ଜହ୍ନର ସ୍ନିଗ୍ଧତାରେ ସେ ଭିଜୁଥିଲେ ପ୍ରତିଦିନ । ମନୋରମା ନାମ୍ନୀ ସେହି ନୀଳଜହ୍ନ ଆବୋରି ଥିଲା ତାଙ୍କ ତମାମ ହୃଦୟ । ସବୁ କୁହା ଓ ପ୍ରତିରୋଧକୁ ପ୍ରତିହତ କରିଥିଲେ କୃଷ୍ଣକୁମାର । ହେଡ୍‌ମାଷ୍ଟର ବାପାଙ୍କ ଅନୁଶାସନକୁ ଅବଜ୍ଞା କରିଥିଲେ । ଏପରିକି ବୋଉର କୋହକୁ ଫିଙ୍ଗିଦେଇଥିଲେ ଦୂରକୁ ଭଙ୍ଗା ଖେଳନାଟେ ପରି । ଭାଙ୍ଗିଥିଲେ ଧର୍ମୀୟ ଭାବପ୍ରବଣତାର ଲୁହା ପାଚେରି । ଖ୍ରୀଷ୍ଟବାଳା ମନୋରମାଙ୍କୁ ସେ କୋର୍ଟ୍-ମ୍ୟାରେଜ୍ କରିଥିଲେ, ଯାହା ସେ ସମୟରେ ଥିଲା ଏକ ବିରଳ ଘଟଣା ।

ସେହି ମନୋରମା ଏବେ ସତକୁ ସତ କେଉଁ ଅଜଣା ତିଥିର ଜହ୍ନ । ମାଟିର ମୋହ ତୁଟାଇ ସେ ଫୁର୍‌କିନା ଉଡ଼ିଗଲେ ଏକା ଏକା । ଅବସର ନେବା ବର୍ଷଟିଏ ବି ବିତି ନାହିଁ, ମନୋରମାଙ୍କ ମନ ହଠାତ୍ ଗୋଟେ କାଚଘର ପରି ଭାଙ୍ଗି ଚୂର୍‌ମାର୍ ହୋଇଗଲା ଯେମିତି ! ମହମ ପରି ତରଳିଗଲା ତାଙ୍କ ଦେହ । ଦିନ କେତେଟା ଭିତରେ ସେ କଙ୍କାଳର ରୂପ ନେଲେ । ଡାକ୍ତରମାନେ ହାତ ଟେକିଦେଲେ ଶୂନ୍ୟକୁ, ବିଧାତା ବାଟ କଢ଼ାଇନେଲା ମହାଶୂନ୍ୟକୁ ।

ମନ ପୋଡ଼ିଗଲେ ଦେହ ପୋଡ଼ିଯାଏ ବୋଲି ପ୍ରଥମ କରି ଅନୁଭବ କଲେ କୃଷ୍ଣକୁମାର । ତାଙ୍କର ଏକମାତ୍ର ଝିଅ, ମନୋରମାଙ୍କଠାରୁ କାହିଁ କେତେ ଗୁଣ ଅଧିକ ସୁନ୍ଦର, ଧୂଳିମାଟିର ଅପ୍‌ସରା, ନବନୀତା ଅନ୍ତଃସତ୍ତ୍ୱା ହୋଇଥିଲା ବିବାହ ପୂର୍ବରୁ । ଏହି ସକ୍‌କୁ ସିନା ସମ୍ଭାଳି ନେଇଥିଲେ କୃଷ୍ଣକୁମାର, ଅନୁରାଧା କିନ୍ତୁ ଜିଅନ୍ତା ଜଳିଯାଇଥିଲେ ଅଜଳା ଜୁଇରେ ।

ନବନୀତାର ଭାଗ୍ୟ ବିଡ଼ମ୍ବିତ ନୁହେଁ ବୋଲି ଜାଣିପାରି ନ ଥିଲେ ମନୋରମା । ତା' ପ୍ରେମିକ ତା'ର ସ୍ୱାମୀ ପାଲଟିଲା ପରବର୍ତ୍ତୀ ସମୟରେ । ସେମାନେ କାନାଡ଼ାରେ ଅବସ୍ଥାପିତ । ଦାମ୍ପତ୍ୟ ସୁଖରେ ଉଚ୍ଛଳ ତାଙ୍କ ଜୀବନ ନଈ ।

ମନୋରମାଙ୍କ ଅବର୍ତ୍ତମାନରେ ଏକ ଦୁର୍ବିଷହ ଜୀବନ ବଞ୍ଚୁଥିଲେ କୃଷ୍ଣକୁମାର । ବାହାଘର ପରଠାରୁ ତ ସେ ପାଲଟିଥିଲେ ଏକ ଛିନ୍ନମୂଳ । ନିଜ ଯୌଥ ପରିବାର, ସାହିପଡ଼ିଶା, ବନ୍ଧୁବାନ୍ଧବ – କାହା ସାଙ୍ଗରେ ତାଙ୍କର ସମ୍ପର୍କ ନ ଥିଲା । ଗାଁ-ଗଣ୍ଡା, ଧୂଆଁଧୂଳି, ଜହ୍ନିଫୁଲ, ଜହ୍ନରାତି – ଏସବୁ ଥିଲା ତାଙ୍କ ପାଇଁ ଏକ ଗତାୟୁ ଜୀବନର ଅସ୍ପଷ୍ଟ ଫସିଲ । ତେବେ ମନୋରମାଙ୍କ ସହ ଯୁଗଳ-ଯାତ୍ରାର ଗୀତିମୟତା ଭିତରେ ଅତୀତ ମନେ ହୋଇଥିଲା ଅପାଙ୍‌କ୍ତେୟ । ଏବେ କିନ୍ତୁ ତାଙ୍କୁ ଖୁବ୍ ଘାରେ ନିଃସଙ୍ଗତା । ମନେହୁଏ, ସେ ଯେମିତି ପାହାନ୍ତି ଆକାଶର ତାରା, ଅନନ୍ତ ଅନ୍ତରୀକ୍ଷର ଏକ ନଗଣ୍ୟ ବିନ୍ଦୁ ।

ନବନୀତା ବି ଥାଇ ନ ଥିଲା ପରି । କଟକରୁ କାନାଡ଼ା ବେଶି ଦୂର ନୁହେଁ ଆଜିର ଦିନଯାପନ ମାନଦଣ୍ଡରେ । କିନ୍ତୁ ଉଭୟ ନବନୀତା ଓ ତା' ସ୍ୱାମୀ ଯେ ଗୋଟେ ବଡ଼ କମ୍ପାନୀର ଚବିଶଘଣ୍ଟିଆ ରୋବଟ୍ । ପୁଣି କୈଶୋର ଛୁଇଁଥିବା ନାତିର ପାଠପଢ଼ା, ତିନିବର୍ଷିଆ କାନାଡ଼ିଆନ୍ ନାତୁଣୀର ଅଳିଅର୍ଦ୍ଦଳି ! ସ୍ୱର୍ଗରେ ବସା ବାନ୍ଧିଲେ ବି ସଂସାର ମାୟାରୁ କ'ଣ ନିସ୍ତାର ଥାଏ ? ଏକୁଟିଆ ବୁଢ଼ାବାପ ପାଖରେ ଦିନଟିଏ ବିତେଇବାପାଇଁ ନବନୀତା ହାତରେ ସମୟ ନାହିଁ ।

ସେ ଅବଶ୍ୟ ଖୁବ୍ ସମ୍ବେଦନଶୀଳା । କେତେବେଳେ ଫୋନ୍‌ରେ ତ କେତେବେଳେ ସ୍କାଇପ୍‌ରେ ଗପେ । 'ବାପା, କେତେ ଝଡ଼ିଗଲଣି' ବୋଲି କଣ୍ଠ ଓଦା କରି କହେ । କହେ, ଦେହର ଯତ୍ନ ନେବା କଥା, ତା' ବୋଉ ପରି କଡ଼ା ଭାଷାରେ । କେତେବେଳେ କେମିତି କଥା ହୁଏ ନାତିଟୋକା । ସେ କଟକିଆ ହୋଇ ରହିଛି, କଟକୀ ଓଡ଼ିଆ କହେ । ଖୁସି ହୁଅନ୍ତି କୃଷ୍ଣକୁମାର ।

କିନ୍ତୁ ସେସବୁ ତ ଡେଙ୍ଗା ତାଳଗଛର ବରଡ଼ା, ନାଁକୁ ଛାଇ ।

ପ୍ରୌଢ଼ ଚାକରଟି ବରଗଛର ଓହଳ ପରି ଢେରା କରିଥାଏ କାନ୍ଧକୁ । ବିଛଣା ଛାଡ଼ିଲାକ୍ଷଣି ଚା' ପରଷେ ତ ପ୍ରାତଃଭ୍ରମଣରୁ ଫେରିବା ପୂର୍ବରୁ ସାରିଥାଏ ଜଳଖିଆ ପ୍ରସ୍ତୁତି । ହାଟବଜାରଠାରୁ ଲୁଗାପଟା ସଜାଡ଼ି ରଖିବା ପର୍ଯ୍ୟନ୍ତ କୌଣସି କାମରେ ତା'ର ହେଳା ନ ଥାଏ । ଜଣକର ଯତ୍ନ ନେଉଥିବା ମଣିଷଟି ଦୁଇଜଣଙ୍କର ଯତ୍ନ ନେବାକୁ କୁଣ୍ଠିତ ହେବ କାହିଁକି ? ଅନୁରାଧା ତେଣୁ ତାଙ୍କ ଘରେ କିଛିଦିନ ରହିବାରେ ଅସୁବିଧା ନାହିଁ । ଫାଙ୍କା ପଡ଼ିଛି ଦୁଇଟି କୋଠରି, ପ୍ରତିଟି କୋଠରି ପୁଣି ବାତାନୁକୂଳିତ, ବାଥ୍‌ରୁମ୍-ସଂଯୁକ୍ତ ।

ଅନୁରାଧା ଗୋଟିଏ କୋଠରି ଆପଣାଇ ସାରିଥିଲେ ।

ତହିଁ ପରଦିନର ଗତାନୁଗତିକ ସକାଳ ନୂଆ ଲାଗୁଥିଲା କୃଷ୍ଣକୁମାରଙ୍କୁ । ତା' କପ୍‌ର ଉଷ୍ମତାରେ ସେ ଏକ ସ୍ଫୂର୍ତ୍ତିର ଗନ୍ଧ ବାରିପାରୁଥିଲେ । କଟକର କୋଳାହଳ ଯେମିତି ରୂପାନ୍ତରିତ ହୋଇଥିଲା କାକଳିରେ । ଶୀତ ସକାଳର ନରମ ଦେହରେ ଅବା ପ୍ୟାରିସ୍ ପର୍‌ଫ୍ୟୁମ୍‌ର ସ୍ପ୍ରେ । ପ୍ରାତଃଭ୍ରମଣରେ ବାହାରୁଥିଲେ କୃଷ୍ଣକୁମାର । ସାଙ୍ଗରେ ଅନୁରାଧା, ସାଲୱାର ପଞ୍ଜାବି ପରିହିତା ।

ସକାଳ ପରି ସତେଜ ଲାଗୁଥିଲେ ଅନୁରାଧା ।

ବନ୍ଧୁପତ୍ନୀ ଅନୁରାଧା କୃଷ୍ଣକୁମାରଙ୍କ ସହକର୍ମୀ ମଧ୍ୟ ଥିଲେ, ଜି.ଏମ୍. କଲେଜରେ । ଆଗରୁ ସେମିତି ତାଙ୍କ ସହ ପରିଚୟ ନ ଥିଲା ଯଦିଓ ସେ ମଧ୍ୟ ଥିଲେ ଅର୍ଥନୀତିର ଅଧ୍ୟାପିକା । ଜି.ଏମ୍. କଲେଜରେ ଯୋଗ ଦେବାର ସପ୍ତାହକ ମଧ୍ୟରେ କଲେଜର ପ୍ରାୟ ସବୁ ସହକର୍ମୀଙ୍କର ସେ ଦୃଷ୍ଟି ଆକର୍ଷଣ କରିଥିଲେ । ମନୋରମାଙ୍କ ପରି ନ ହେଲେ ବି ସେ ଥିଲେ ସୁନ୍ଦରୀ, ତନ୍ୱୀ । ତେବେ ତାଙ୍କ ସୋଫିଷ୍ଟିକେସନ୍‌ର ତୁଳନା ନ ଥିଲା । ସେତେବେଳେ ଅଧ୍ୟାପକମାନେ ସାଇକେଲ୍ ବା ଖୁବ୍ ବେଶିରେ ସ୍କୁଟର୍‌ରେ କଲେଜ ଆସୁଥିବାବେଳେ ଅନୁରାଧା ଓହ୍ଲାଉଥିଲେ ଏକ ଦାମୀ କାର୍‌ରୁ ଏବଂ ସେ କଲେଜ କମନ୍‌ରୁମ୍‌ରେ ପହଞ୍ଚିବାମାତ୍ରେ ଏକ ମୃଦୁ ଅଥଚ ଆକର୍ଷଣୀୟ ସୁଗନ୍ଧରେ ବିଭୋର ହେଉଥିଲା ସମଗ୍ର ବାତାବରଣ । ପୁଣି ତାଙ୍କ ଲିପ୍‌ଷ୍ଟିକ୍ ମଖା ନାଲି ଓଠରୁ 'ହେଲୋ' ସହ ସମାନ୍ତରାଳ ଭାବରେ ଝରି ପଡୁଥିଲା ଶୁଭ୍ର ହସର ମୁଠାଏ ମଲ୍ଲୀଫୁଲ ।

ଅନୁରାଧା ଯେ ସହପାଠୀ ସମରେନ୍ଦ୍ରଙ୍କର ସହଧର୍ମିଣୀ, କୃଷ୍ଣକୁମାର ସେ କଥା ଜାଣିପାରି ନ ଥିଲେ ବେଶ୍ କେତେଦିନ ପର୍ଯ୍ୟନ୍ତ । ତାଙ୍କ ସମୟର ଉଦ୍ଭିଦ ବିଜ୍ଞାନର କୃତୀ ଛାତ୍ର ସମରେନ୍ଦ୍ର ଅଲ୍ ଇଣ୍ଡିଆ ଫରେଷ୍ଟ ସର୍ଭିସେସ୍‌ରେ ଯୋଗ ଦେଇଥିବା ସେ ଅବଶ୍ୟ ଜାଣିଥିଲେ । ଜାଣିଥିଲେ ପୁଣି ସେ ଓଡ଼ିଶା କ୍ୟାଡର୍ ପାଇଥିବା କଥା । କିନ୍ତୁ ସେ ଯେ ସମ୍ବଲପୁର ବନଖଣ୍ଡର ଡିଭିଜନାଲ୍ ଫରେଷ୍ଟ ଅଫିସର୍, ଅନୁରାଧାଙ୍କ ସହିତ ପାରିବାରିକ ଆଳାପ-ଆଲୋଚନା ପୂର୍ବରୁ ଜାଣି ନ ଥିଲେ କୃଷ୍ଣକୁମାର । ପୂର୍ବ ପରିଚିତିର ଦ୍ୱାର ଖୋଲିବାପରେ ଉଭୟ ପରିବାର ନିବିଡ଼ ବନ୍ଧନରେ ବାନ୍ଧି ହୋଇଯାଇଥିଲେ ।

କ୍ୱଚିତ୍ ଗୋଟେ ସପ୍ତାହାନ୍ତ ଏମିତି ବିତେ, ଯେତେବେଳେ ଉଭୟ ପରିବାର ଏକାଠି ନ ହୁଅନ୍ତି । ପ୍ରାୟ ସବୁ ରବିବାର ବିତେ ସମରେନ୍ଦ୍ରଙ୍କ ସରକାରୀ ବଙ୍ଗଳାରେ ଅଥବା କୃଷ୍ଣକୁମାରଙ୍କ କଲେଜ କ୍ୱାର୍ଟର୍ସରେ । ଯେଉଁଠି ଯେତେବେଳେ ଖିଆପିଆ ହେଲେ ବି ମନୋରମା ଓ ଅନୁରାଧା ରୋଷେଇ ଭାର ବାଣ୍ଟି ନିଅନ୍ତି ନିଜ ଭିତରେ । ଅନୁରାଧା ମାଛମାଂସ ରାନ୍ଧିବାରେ ଧୁରୀଣା । ବିଭିନ୍ନ କିସମର ପୋଡିଂ, କେକ୍ ଆଦି ପ୍ରସ୍ତୁତ କରିବାରେ ମନୋରମାଙ୍କ ହାତ ନିଆରା । ଖାଇବା, ପିଇବା, ଗପସପ ଏମିତି ଜମେ ଯେ ଦିନ ଯାଇ ରାତି ବୟସ୍କ ହୁଏ, ଅଥଚ କଥା ସରେ ନାହିଁ ।

ମାସରେ ଥରେ ଆଉଟିଂରେ ଯିବା ମଧ୍ୟ ଥିଲା ଏକ ଧରାବନ୍ଧା ରୁଟିନ୍ । ସମରେନ୍ଦ୍ରଙ୍କର ଗାଡ଼ିର ଅଭାବ ନ ଥାଏ । ପୁଣି ତାଙ୍କ ଆଦେଶରେ ଫରେଷ୍ଟ ଆଇ.ବି. ଘଷିମାଜି ହୋଇ ସେମାନଙ୍କ ଅପେକ୍ଷାରେ ଥାଏ । ଅପେକ୍ଷାରେ ଥା'ନ୍ତି ଅଧସ୍ତନ କର୍ମଚାରୀମାନେ ତାଙ୍କ ସାହେବ ଓ ସାହେବଙ୍କ ବନ୍ଧୁବର୍ଗଙ୍କୁ ପାଛୋଟିବାପାଇଁ । ଘଞ୍ଚ ଜଙ୍ଗଲର ବୁକୁ ଚିରି ଗାଡ଼ି ଚାଲେ । ଅଦୂରରୁ ହିଂସ୍ରଜନ୍ତୁମାନଙ୍କର ଚିତ୍କାର ଶୁଭେ । ବେଳେବେଳେ ବାଘ ଭାଲୁମାନଙ୍କର ସଦ୍ୟ ପଦଚିହ୍ନ ଚିହ୍ନାଇ ଦିଅନ୍ତି ସମରେନ୍ଦ୍ର । ଗହନ ବନର ସବୁଜିମା, ବଣ୍ୟ ଝରଣାର ଗୀତ, ଅଦୂର ପର୍ବତମାଳାର ନିରବଧି ନିରବତା ସେମାନଙ୍କୁ ବିମୋହିତ କରେ, ଦୁଇ ଅକବିଙ୍କ ମନର କବିପଣକୁ ଉଖୁରାଏ ।

ସେ ଦିନସବୁକୁ ଭୁଲିପାରନ୍ତି ନାହିଁ କୃଷ୍ଣକୁମାର । ଭୁଲିପାରନ୍ତି ନାହିଁ ସେତେବେଳେ ସ୍କୁଲ୍ ଯିବା ବୟସ ଛୁଇଁ ନ ଥିବା ନୀତାର ଦରୋଟି, ଅନୁରାଧାଙ୍କ ପୁତ୍ର ପ୍ରସବ ଏବଂ ସମରେନ୍ଦ୍ରଙ୍କ ବାପା ହବା ଗରିମାର ଶିହରଣ ।

ସମରେନ୍ଦ୍ରଙ୍କର ସମ୍ବଲପୁର ରହଣି କିନ୍ତୁ ଦୀର୍ଘ ନ ଥିଲା । ତିନି ବର୍ଷ ପୂରିବା ପୂର୍ବରୁ ସେ ସ୍ଥାନାନ୍ତରିତ ହେଲେ । ପରେ ପରେ ଅନୁରାଧା । କୃଷ୍ଣକୁମାର କିନ୍ତୁ ଢେର୍‌ଦିନ ରହିଲେ ସମ୍ବଲପୁରରେ । ଦୁଇ ପରିବାର ଭିତରେ ଥିବା ଆତ୍ମୀୟତା କେବେ ଦୂରତା ଆଗରେ ଝୁଙ୍କି ନ ଥିଲା । ମନୋରମା ଓ ଅନୁରାଧାଙ୍କ ମଧ୍ୟରେ

ଟେଲି-ବାର୍ତ୍ତାଳାପ ଲାଗି ରହିଥିଲା ବରାବର । ବ୍ୟସ୍ତତା ସତ୍ତ୍ୱେ ଫୋନ୍ କରିବାକୁ ଭୁଲୁ ନ ଥିଲେ ସମରେନ୍ଦ୍ର । ପୁଅକଥା ବେଶି ବେଶି ଗପୁଥିଲେ ଫୋନ୍‌ରେ, କେବେ କେମିତି ତାଙ୍କ ବୃତ୍ତିଗତ ଜଞ୍ଜାଳର କଥା । ପୁଅର ନାଁ ରଖିଥିଲେ ଅନୁସ୍ୱାର । ସେ ତ ଆଜନ୍ମ ଆଧୁନିକ ।

ପ୍ରାତଃଭ୍ରମଣରେ ଅନଭିଜ୍ଞା ଅନୁରାଧା ବୋଧହୁଏ ଝୁଣ୍ଟିପଡ଼ିଲେ । କୃଷ୍ଣକୁମାରଙ୍କ ଭିତରେ ତତ୍‌କ୍ଷଣାତ୍ ଗୋଟେ ନିଃଶବ୍ଦ ଅନୁକମ୍ପା ଲହଡ଼ି ଭାଙ୍ଗିଲା । ପ୍ରଥମେ ପ୍ରଥମେ ମୌନତା ଘାରିଥିଲା ଦୁହିଁଙ୍କୁ । ପରେ ପରେ ପଦେ ଅଧେ କଥାବାର୍ତ୍ତା । ସୀମିତ ଉଚ୍ଚାରଣ କ୍ରମଶଃ ଅସୀମ ଆଳାପକୁ ଉତ୍ତୀର୍ଣ୍ଣ ହେଉଥିଲା । ଝଲମଲ ଖରାରେ ଉଷୁମ ହେଉଥିଲା ପାର୍କର ପରିବେଶ । ଭିଡ଼ ମଧ୍ୟ ବଢୁଥିଲା । କଥା ଲହସ ଭିତରେ ଦୁଇଯୋଡ଼ା ପାଦ ଆପାର୍ଟମେଣ୍ଟ୍ ପରିସର ଛୁଇଁ ସାରିଥିଲା ।

କୃଷ୍ଣକୁମାର ଖବରକାଗଜ ଉପରେ ଆଖି ପହଁରାଉଥିଲେ । ତାଙ୍କର ହଠାତ୍ ମନେହେଲା କାଗଜଟି ଯେମିତି ଦଶବର୍ଷର ପୁରୁଣା । ଏହି ଅପାର୍ଟମେଣ୍ଟ୍‌ରେ ସେଦିନର ଏକ ନାତିଶୀତୋଷ୍ଣ ସକାଳ । ଖବରଟି ପଢ଼ିବାକ୍ଷଣି ଏକ ଷ୍ଟ୍ରୋକ୍‌ର ଯନ୍ତ୍ରଣା ସେ ଅନୁଭବ କରିଥିଲେ ଯଦିଓ ସେଥିରୁ ସେ ବର୍ତ୍ତିଯାଇଥିଲେ ଦୈବାତ୍ –'ସଡ଼କ ଦୁର୍ଘଟଣାରେ ଅବସରପ୍ରାପ୍ତ ଚିଫ୍ କଞ୍ଜରଭେଟର୍ ଅଫ୍ ଫରେଷ୍ଟ ସମରେନ୍ଦ୍ର ଦାସଙ୍କ ଅକାଳ ବିୟୋଗ' । ଆକାଶ, ବତାସ, ଜଳ ଯେମିତି ମୁହୂର୍ତ୍ତ କେତୋଟିପାଇଁ ସ୍ତବ୍ଧ ହୋଇଗଲା । ସିନେମା ପର୍ଦ୍ଦାର ସ୍ଥିରଚିତ୍ର ପରି ସ୍ଥାଣୁ ପାଲଟିଗଲେ କୃଷ୍ଣକୁମାର । ମନୋରମାଙ୍କ ଆଖି କୂଳ ଲଙ୍ଘିଲା ।

ଅଧଘଣ୍ଟାଏ ଭିତରେ କୃଷ୍ଣକୁମାର ପହଞ୍ଚିଥିଲେ ଭୁବନେଶ୍ୱରରେ, ସାଙ୍ଗରେ ମନୋରମା । ସେତେବେଳକୁ ସେ ଏକ ନୂଆ କାର୍‌ର ଅଧିକାରୀ ହୋଇସାରିଥିଲେ । ନୂଆ ଚାଳକ ହାତରେ ଗାଡ଼ି ବି ଉଡ଼ିପାରେ, ସେ ଅନୁଭବ ତାଙ୍କର ଆଗରୁ ନ ଥିଲା । ୟୁନିଟ୍–୯ ର ପରିଚିତ କ୍ୱାର୍ଟର୍ସଟି ତାଙ୍କୁ ଅପରିଚିତ ଲାଗିଥିଲା । ସମରେନ୍ଦ୍ରଙ୍କ ଅସାଡ଼ ଦେହ ଉପରୁ ଚାଦର ହଟେଇବାକୁ ସେ ଭରସି ନ ଥିଲେ, ଅନୁରାଧାଙ୍କ ମୁହଁକୁ ଚାହିଁବା ତ ଦୂରର କଥା ।

ସମରେନ୍ଦ୍ରଙ୍କ ମରଶରୀରକୁ ବାରିପଦା ନିଆଗଲା । ଭୁବନେଶ୍ୱରରେ ସମରେନ୍ଦ୍ରଙ୍କର ଘର ନ ଥିଲା । ଅବସର ପରେ ଏକ କର୍ପୋରେସନ୍‌ର ମୁଖ୍ୟ ଭାବରେ ପୁରୁଣା ସରକାରୀ କ୍ୱାର୍ଟର୍ସରେ ବିତୁଥିଲା ତାଙ୍କର ଅବଶିଷ୍ଟ ଜୀବନ । ସଚ୍ଚୋଟ ଅଫିସର ଭାବରେ ତାଙ୍କର ନାଁ ଥିଲା କିନ୍ତୁ ଖର୍ଚ୍ଚ କରିବାରେ ସେ ଥିଲେ ବେହିସାବୀ । ପତି-ପତ୍ନୀଙ୍କ ରୋଜଗାର ସତ୍ତ୍ୱେ ସେ ଖୁବ୍ ସ୍ୱଚ୍ଛଳ ନ ଥିଲେ । ପୁଣି ଅନୁସ୍ୱାରକୁ

ପଢ଼ାଉଥିଲେ କେମ୍ବ୍ରିଜ୍‌ରେ ଅଜସ୍ର ବ୍ୟୟ ବିନିମୟରେ । ଅବଶ୍ୟ ହୋମ୍ ଟାଉନ୍ ବାରିପଦାରେ ମନପସନ୍ଦର ଘରଟିଏ ତୋଳିଥିଲେ । ପୁଣି ନାନାଦି ଗଛଭର୍ତ୍ତି ବଗିଚାଟିଏ ଆବୋରି ଥିଲା ତାଙ୍କର ସେହି ପ୍ରିୟତମ ଘରଟିକୁ । ବାରିପଦାକୁ ସେ ଏତେ ଭଲ ପାଉଥିଲେ ଯେ ଓଡ଼ିଶାର ଅନ୍ୟ କୌଣସି ସ୍ଥାନ ଏପରିକି ତାଙ୍କର ଅର୍ଦ୍ଧେକ ଜୀବନ ବିତିଥିବା ସହର ଭୁବନେଶ୍ୱର ତାଙ୍କୁ ଭଲ ଲାଗୁ ନ ଥିଲା । କର୍ପୋରେସନ୍ ଦାୟିତ୍ୱରୁ ମୁକ୍ତ ହେବା ପରେ ବାରିପଦାରେ ରହିବାପାଇଁ ସେ ସ୍ଥିର କରିଥିଲେ ।

ସମରେନ୍ଦ୍ରଙ୍କ କୈଶୋରର ସ୍ମୃତି ବିଜଡ଼ିତ ସେହି ବାରିପଦା ସହରରେ ଅବସର ଜୀବନ ବିତାଉଥିଲେ ଅନୁରାଧା । କିନ୍ତୁ ଅପ୍ରତ୍ୟାଶିତ ପ୍ରଭଞ୍ଜନର କ୍ଷତଚିହ୍ନ ଲିଭୁ ନ ଥିଲା ତାଙ୍କ ଦେହ ଓ ମନରୁ ।

ଅଧ୍ୟୟନ ସାରି ଅନୁସ୍ୱାର ଗବେଷଣା କଲା ସେହି କେମ୍ବ୍ରିଜ୍‌ରେ । ପରେ ପରେ ପୁଣି ଅଧ୍ୟାପନା ଫିଜିକ୍ସ୍‌ରେ । ସେ କୁଆଡ଼େ ଫିଜିକ୍ସ୍‌ରୁ ନ୍ୟୁକ୍ଲିଅର୍ ଫିଜିକ୍ସ, ପୁଣି ନ୍ୟୁକ୍ଲିଅର୍ ଫିଜିକ୍ସ୍‌ରୁ ମେଟା-ଫିଜିକ୍ସ୍ –ଏମିତି ଘୂରିବୁଲୁଛି ଯେ ଘୂରିବୁଲୁଛି, ସଂସାର ସହିତ ତା'ର ସମ୍ପର୍କ ନାହିଁ କହିଲେ ଚଳେ । ନାଁକୁ ମାତ୍ର ବାହା ହୋଇଛି ୟୁରୋପୀୟ ଲଳନାଟିକୁ, ଯିଏ ଦର୍ଶନର ଅଧ୍ୟାପିକା । ଇସ୍ୟୁ ନାହିଁ । ଅନୁରାଧା କେତେଥର କହିଥିବେ, ଅନୁସ୍ୱାର ସୀମା–ସରହଦ ବୁଝେ ନାହିଁ । ଇଣ୍ଡିଆ, ଇଂଲଣ୍ଡ ତା'ପାଇଁ ଅର୍ଥହୀନ । ଗ୍ରହ-ନକ୍ଷତ୍ରମାନଙ୍କ ସହିତ ତା'ର କଥାବାର୍ତ୍ତା । ବୋହୂଟି ବି ମୋହଗ୍ରସ୍ତ ଥେସିସ୍, ଆଣ୍ଟିଥେସିସ୍‌ର ମାୟାବର୍ତ୍ତରେ । ଅନୁରାଧାଙ୍କ ପାଇଁ ସମରେନ୍ଦ୍ର ନୀଳ ନଈର ନକ୍ଷତ୍ର ହେଲେ, ଅନୁସ୍ୱାର କ୍ରମ ଅପସୃୟମାଣ ଏକ ଝାପ୍‌ସା ଦିଗ୍‌ବଳୟ ।

ଅନୁରାଧାଙ୍କ ଧୂସର ପୃଥିବୀରେ ଏକମାତ୍ର ଆହାପଦ ଥିଲେ କୃଷ୍ଣକୁମାର । ସେ ନିୟମିତ କଥା ହୁଅନ୍ତି ଅନୁରାଧାଙ୍କ ସହିତ । ଭଲମନ୍ଦ ପଚାରି ବୁଝନ୍ତି । କଟକ ଆଡ଼େ ବୁଲିଆସିବାପାଇଁ ଅନୁରୋଧ କରନ୍ତି । ଅନୁରାଧାଙ୍କ ଆଡୁ ବି ମଝିରେ ମଝିରେ ଫୋନ୍ ଆସେ । ଅଳ୍ପ କଥା କହନ୍ତି ସେ । ନିଜର ଛୋଟମୋଟ ଦୁଃଖ କଥା ସେ କେବେ ବଖାଣନ୍ତି ନାହିଁ । ଅପହଞ୍ଚ ତାଙ୍କ ସ୍ୱାଭିମାନର ତୁଙ୍ଗିମା ।

ଅନୁରାଧାଙ୍କ ଆଖିତଳର କଳାଦାଗ କେମିତି ଅପସରି ଯାଉଛି ସେମାନଙ୍କ ଅଲକ୍ଷ୍ୟରେ, ଲକ୍ଷ୍ୟ କରୁଥିଲେ କୃଷ୍ଣକୁମାର । ଲକ୍ଷ୍ୟ କରୁଥିଲେ ମଧ୍ୟ ଅଶିଣ ମେଘର ଛାଇ ପରି ଘୁଞ୍ଚି ଘୁଞ୍ଚି ଯାଉଥିବା ଅନୁରାଧାଙ୍କ ଅନ୍ୟମନସ୍କତା ।

ଆଜିକାଲି ସକାଳର ଚା' କପ୍ ଓହ୍ଲାଇ ଆସୁଥିଲା ଏକ ଅନ୍ତରଙ୍ଗ ଶିରାଳ ହାତରୁ । କୃଷ୍ଣକୁମାରଙ୍କ ପୂର୍ବରୁ ପ୍ରାତଃଭ୍ରମଣପାଇଁ ପ୍ରସ୍ତୁତ ହୋଇଯାଉଥିଲେ ଅନୁରାଧା । ପାର୍କରେ ସମୟ ବିତୁଥିଲା ସକାଳ ଦିନ ହେବା ଯାଏ । ଅନୁରାଧାଙ୍କ ସ୍ୱାସ୍ଥ୍ୟର ଦ୍ରୁତ

ଅଗ୍ରଗତି ବିଷୟରେ ସହାସ ବଦନରେ ସୂଚନା ଦେଉଥିଲେ ଡାକ୍ତର ପରିଜା । କୃଷ୍ଣକୁମାରଙ୍କ ମୁଣ୍ଡ ଆଉ ଆଗପରି ଭାରୀ ଭାରୀ ଲାଗୁ ନ ଥିଲା । ବ୍ଲଡ୍ ପ୍ରେସର୍ ବା ବ୍ଲଡ୍ ସୁଗାର୍ କେଉଁଟିର ବି ସ୍ଥିତି ଜାଣିବାକୁ ସେ ଆଉ ଆଗ୍ରହୀ ନ ଥିଲେ ।

ଘର ଭିତରର ଗପସପ ଭିତରେ ବାହାର ପୃଥିବୀ ସଙ୍କୁଚିତ ହୋଇଯାଉଥିଲା କୃଷ୍ଣକୁମାରଙ୍କ ପାଇଁ । ଆପାର୍ଟମେଣ୍ଟ୍ ସୋସାଇଟି, ପଡ଼ୋଶୀମାନଙ୍କ ଦୁଃଖସୁଖ ଏପରିକି ବନ୍ଧୁବର୍ଗଙ୍କ ସହିତ ବାର୍ତ୍ତାଳାପଠାରୁ ସେ ଦୂରେଇ ଯାଇଥିଲେ । ବେଳେବେଳେ ସେ ସନ୍ଧ୍ୟାରେ ବଜାର ବୁଲିଯାଉଥିଲେ ଅନୁରାଧାଙ୍କ ସହ । କାଠଯୋଡ଼ି ନଈବାଲିର ପଥର ଚଉକି ଉପରେ କାଟୁଥିଲେ ଫୁଲ ସଞ୍ଜବେଳ, କେତେବେଳେ ଶୀତୁଆ ପବନ ତ ଆଉ କେତେବେଳେ ବାଲିଝଡ଼ରେ ଆକ୍ରାମାକ୍ରା ହେଉଥିଲେ । ବେଳେବେଳେ ପୁଣି କେଉଁ କୋମଳ ଅପରାହ୍ନରେ ବାହାରି ଯାଉଥିଲେ କଟକ ବାହାରକୁ, ସର୍ଟ ଡ୍ରାଇଭ୍‌ରେ ।

ତେବେ କେବେ କେମିତି ଆପାର୍ଟମେଣ୍ଟ୍‌ର କାନ୍ଥବାଡ଼ରୁ କୃଷ୍ଣକୁମାର ଶୁଣିପାରୁଥିଲେ କିଛି କିଛି ଦୁର୍ବୋଧ୍ୟ ଗୁଞ୍ଜରଣ । ପବନର ଅଥୟ ରାଗିଣୀରୁ ମଧ୍ୟ ବୁଝି ହେଉଥିଲା କେତେ କଥା-ଅକଥାର ସ୍ୱରଲିପି । ମୁଗ୍ଧ ଗୋଧୂଳିର ରଙ୍ଗ ତୁଳନାରେ ସେସବୁ ଖୁବ୍ ଫିକା ମନେ ହେଉଥିଲେ କୃଷ୍ଣକୁମାରଙ୍କୁ । ସେ ତ ଗୁଜବ ପ୍ରତି ସଦା ଉଦାସୀନ ।

ଅନୁରାଧା ଆଗରୁ ଥରେ ଅଧେ ଯାହା ବାରିପଦା ଫେରିଯିବା କଥା ଉଠାଇଥିଲେ । ସେକଥା ବୋଧେ ସେ ଭୁଲିଗଲେଣି । ସମୟର ସରଣୀ ବି ଆଉ ଲମ୍ବା ଲାଗୁ ନାହିଁ କୃଷ୍ଣକୁମାରଙ୍କୁ । ବେଳେବେଳେ ନୀତାର ଫୋନ୍ ଆସୁଛି । ଅନୁରାଧାଙ୍କ କଟକ ରହଣି କଥା ସେ କହିବେ କହିବେ ହୋଇ କହିପାରି ନାହାନ୍ତି ।

ଦିନେ ଉପରବେଳା ଦରନିଦୁଆ ଆଖିରେ ବେଡ୍‌ରୁମ୍‌ର ଝର୍କା ଖୋଲିଲେ କୃଷ୍ଣକୁମାର । ଆକସ୍ମିକ ବିଜୁଳି କାଟ୍ ଅସହ୍ୟ ଥିଲା ତାଙ୍କ ପାଇଁ । କାହିଁ କେତେଦିନ ପରେ ସେ ଦେଖୁଥିଲେ ମହାନଦୀ ତୀରର ଗହଳ ତରୁଲତା । ଶୀତ ଆଉ ନ ଥିଲା । ଦଲକାଏ ଦକ୍ଷିଣାପବନ ଝର୍କା ସନ୍ଧିରୁ ଡେଇଁପଡ଼ି କେଉଁଆଡ଼େ ପୁଣି ଅନ୍ତର୍ଦ୍ଧାନ ହୋଇଗଲା ଅକସ୍ମାତ୍ ।

---

## କୃତି ଓ କୃତିତ୍ୱ

**ଗଳ୍ପ ଗ୍ରନ୍ଥ**

ଆଦ୍ୟ ଆଷାଢ଼

ଅନେକ ଦିନ ପରେ ବର୍ଷା

ଭାରି ମେଘରାତି

ଆଉ ଥରକୁ

ନୀଡ଼ ନିବିଡ଼

ଭରାନଈ

**ଉପନ୍ୟାସ**

ଗ୍ରାସ

**ପ୍ରବନ୍ଧ ପୁସ୍ତକ**

ଆଗନ୍ତୁକର ଆଖି

ଜଗନ୍ନାଥ ଓ ଜଗନ୍ନାଥ

**ସମ୍ପାଦନା**

କାହାଣୀ

**ପୁରସ୍କାର ଓ ସମ୍ମାନ**

ଝଙ୍କାର ଗଳ୍ପ ପୁରସ୍କାର

ଚନ୍ଦ୍ରଭାଗା କହ୍ନେଇ କଥା ସମ୍ମାନ

କାଦମ୍ବିନୀ ଗଳ୍ପ ପୁରସ୍କାର

ଚଲାପଥ ଗଳ୍ପ ପୁରସ୍କାର

ଧ୍ୱନିପ୍ରତିଧ୍ୱନି ସୁଚୟନ ଗଳ୍ପ ପୁରସ୍କାର

ଓ ଅନ୍ୟାନ୍ୟ

ସମକାଳୀନ ଓଡ଼ିଆ ସାହିତ୍ୟର ପାଠକୀୟ ପୃଥିବୀରେ ଶ୍ରୀ ବିଜୟ ନାୟକ ହେଉଛନ୍ତି ଏକ ସଶ୍ରଦ୍ଧ ଉଦାତ୍ତ ଉଚ୍ଚାରଣ । ଆଧୁନିକ ମଣିଷ ଜୀବନର ଜଟିଳ ବାହ୍ୟଭୂମି ଓ ଅନ୍ତର୍ଭୂମିର ସଂଘାତ, ଦ୍ୱନ୍ଦ୍ୱ, ବ୍ୟଥା ଓ କାରୁଣ୍ୟର ମାର୍ମିକ ମନସ୍ତାତ୍ତ୍ୱିକ ଅଭିବ୍ୟକ୍ତି ତାଙ୍କ କଥନିକାର ଶୈଳ୍ପିକ ନୈପୁଣ୍ୟର ପରିଚୟ ଦିଏ । ମଣିଷ ଏବଂ ମଣିଷପଣିଆ ଭିତରେ ଥିବା ବ୍ୟବଧାନକୁ ଉତ୍ତୀର୍ଣ୍ଣ କରିବାର ସକାରାତ୍ମକ କଳା ଏକ ଅଦ୍ଭୁତ ପାଠକାନୁଭବରେ ହୃଦୟକୁ ଅଭିଭୂତ କରେ । ଓଡ଼ିଆ ସଂସ୍କୃତିର ମନୋଭୂମିରେ ଦୃଢ଼ ରହି ବିଶ୍ୱଚେତନାର ଅନନ୍ତ ଆକାଶକୁ ବିସ୍ତାରିଯିବା ହିଁ ଏହି ଜୀବନବାଦୀ କଥାଶିଳ୍ପୀଙ୍କର ଦୃଷ୍ଟି ଓ ଦର୍ଶନ । ଓଡ଼ିଶାର ସାଧାରଣ ପାଠକ ମନରେ ସାହିତ୍ୟର ଏକ ସକାରାତ୍ମକ ସମ୍ପର୍କକୁ ନିବିଡ଼ କରିବା ଏହି ମାନବବାଦୀ ଗାଳ୍ପିକଙ୍କର ଚେତନାଧର୍ମିତାର ବୈଶିଷ୍ଟ୍ୟ । ରୁଚିଶୀଳ ଆବେଗ, ମନନଧର୍ମୀ ବ୍ୟାଖ୍ୟା ତାଙ୍କର ସମସ୍ତ କଥାଶିଳ୍ପର ସୃଷ୍ଟିଭୂମିକୁ ରସାଣିତ କରିଥାଏ । ଗଳ୍ପଗୁଡ଼ିକ ଗୋଟିଏ ଘଟଣା, ଚରିତ୍ର ଓ ମୂଲ୍ୟବୋଧକୁ ନେଇ ଜୀବନସତ୍ୟର ଅନ୍ୱେଷଣ କରୁ କରୁ ପାଠକକୁ ବିନ୍ଦୁରେ ସିନ୍ଧୁ ଦର୍ଶନ କରାଏ । ଚରିତ୍ରମାନେ ଗଳ୍ପ ଖୋଜନ୍ତି ନା ଗଳ୍ପ ଚରିତ୍ରମାନଙ୍କୁ ଖୋଜିଥାଏ, ତାହା ଆକଳନ କରିବା ଶ୍ରୀ ନାୟକଙ୍କ ଗଳ୍ପରୁ ସମ୍ଭବ ହୁଏ ନାହିଁ । ଏହା ଗାଳ୍ପିକଙ୍କର ନିଖୁଣ ପର୍ଯ୍ୟବେକ୍ଷଣର ପରିଚୟ ଦିଏ । ବାକ୍ୟ ଗଠନର କଳା ଓ ଶବ୍ଦ ଚୟନର ପାରଦର୍ଶିତା ତାଙ୍କ ଗଳ୍ପଗୁଡ଼ିକର ଘଟଣାପ୍ରବାହକୁ ନିଟୋଳ, ସହଜ ଓ ସ୍ୱାଭାବିକ କରିଥାଏ । ଜୀବନ ଓ ଜଗତର ସତ୍ୟ ପ୍ରକାଶରେ ଏହି ସୁପରିଚିତ ଗାଳ୍ପିକ ଯେପରି ଅକୁଣ୍ଠଚିତ୍ତ, ସେହିପରି ନିର୍ଭୟ । ଓଡ଼ିଆ କଥାଭାରତୀଙ୍କ ଭଣ୍ଡାରକୁ 'ଶ୍ରେଷ୍ଠ ଷାଠିଏ' ଗଳ୍ପଗ୍ରନ୍ଥ ଲେଖକଙ୍କର ଏକ ଅନବଦ୍ୟ କଥାଞ୍ଜଳି । ଗଳ୍ପଗ୍ରନ୍ଥର ନାମକରଣର ଯାଥାର୍ଥ୍ୟ ରହିଛି ବୋଲି ମୋର ହୃଦ୍‌ବୋଧ ହୋଉଛି । ତାଙ୍କର କଥାଯାତ୍ରା ଆୟୁଷ୍ମାନ୍ ଓ ଗୌରବମୟ ହେଉ କାମନା କରେ ।

–ପ୍ରତିଭା ରାୟ

କଥାର କୁହୁକରେ ପାଠକମାନଙ୍କ ଚିତ୍ତବିନୋଦନ କରିବା ତାଙ୍କ ଗଳ୍ପ ଲେଖାର ଲକ୍ଷ୍ୟ ନୁହେଁ । ଗାଁଗହଳର ଭାଗ୍ୟବିଡ଼ମ୍ବିତା ନାରୀ ଓ ଭାଗ୍ୟାନ୍ୱେଷୀ ପୁରୁଷ ଚରିତ୍ରର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ କରି ପାଠକମାନଙ୍କ ଚିନ୍ତା ଓ ଚେତନାକୁ ଆଲୋକିତ କରିବା ତାଙ୍କ ଗଳ୍ପଗୁଡ଼ିକର ମୁଖ୍ୟ ଆଭିମୁଖ୍ୟ ବୋଲି ପାଠକ ଅନୁଭବ କରେ । ସେଥିପାଇଁ ଏ ଗଳ୍ପ ସଂକଳନରେ ସନ୍ନିବିଷ୍ଟ ଅଧିକାଂଶ ଗଳ୍ପ କାହାଣୀ-କୈନ୍ଦ୍ରିକ ନୁହେଁ, ଚରିତ୍ର-ପ୍ରଧାନ ଆଖ୍ୟାନ ।

ଭିନ୍ନ ଭଙ୍ଗୀ, ଭିନ୍ନ ଭାବନାର ଏହି ଷାଠିଏଟି ଗଳ୍ପ ପାଇଁ ଷାଠିଏ ବର୍ଷ ବୟସରେ ପାଦ ରଖିଥିବା କଥାଶିଳ୍ପୀ ବିଜୟ ନାୟକ ନିଃସନ୍ଦେହରେ ସମକାଳୀନ ଓଡ଼ିଆ କଥା-ସାହିତ୍ୟରେ ଜଣେ ବ୍ୟତିକ୍ରମୀ ଗାଳ୍ପିକ ଭାବରେ ଚିହ୍ନିତ ହୋଇ ରହିବେ ।

–ବିଭୂତି ପଟ୍ଟନାୟକ

ହଜି ଯାଉଥିବା ଅନ୍ତରଙ୍ଗ ସମ୍ପର୍କର ସ୍ମୃତି ଫେରେ ଉଦାସ ମୁହୂର୍ତ୍ତରେ । ସତେ ଅବା ଏକ ଦୁରନ୍ତ ସୁରଭି, ଅପହଞ୍ଚ ମୂର୍ଚ୍ଛନା । ତାହା ପ୍ରତି ତୃଷିତ ହୃଦୟର ଆତୁରତା । ଆହୁରି ମଧ୍ୟ ଚୋଟ ସହିଥିବା ଦେହର ଅପରାଜେୟ ମାନସିକ ଦୃଢ଼ତା । ଉପସ୍ଥାପନା ଓ ଗଢ଼ଣ ଶିଳ୍ପରେ ବିସ୍ମୟକର ନୂତନତା । ଏସବୁ ଏବଂ ଆହୁରି ଅନେକର ସମଷ୍ଟି ପ୍ରମୁଖ ଗାଳ୍ପିକ ବିଜୟ ନାୟକଙ୍କ ସୃଷ୍ଟିସମ୍ଭାର । ତ୍ରୁଟିହୀନ ସମାଜରେ ସୁଖୀ ମଣିଷର ପରିକଳ୍ପନା କରୁଥିବା ଶ୍ରଦ୍ଧେୟ ସ୍ରଷ୍ଟା ଶ୍ରୀ ନାୟକ ।

–ରାମଚନ୍ଦ୍ର ବେହେରା

ଆଧୁନିକ କ୍ଷୁଦ୍ରଗଳ୍ପରେ କାହାଣୀପଣ ଯେତିକି ଗୁରୁତ୍ୱପୂର୍ଣ୍ଣ, ପରିବେଷଣ ଶୈଳୀ ମଧ୍ୟ ତେତେ ଭଳି ମହତ୍ତ୍ୱ ରଖେ । କ୍ଷୁଦ୍ରଗଳ୍ପର ଭାଷା ମୁଖ୍ୟତଃ ଶୈଳୀ-ଅନୁସାରୀ । ଏ ତିନୋଟି ଦିଗରୁ ବିବେଚନା କଲେ ବିଜୟ ନାୟକଙ୍କ ଗଳ୍ପଗୁଡ଼ିକ ପୁରୁଣା ନୂଆ ସବୁ ସମୟର ପାଠକ-ପାଠିକାଙ୍କୁ ବାନ୍ଧି ରଖିବାରେ ସମର୍ଥ । କଥାର ଛାଟ, ଛଟା ଓ ଛବିଳତା ତାଙ୍କର ଅଧିକାଂଶ ଗଳ୍ପକୁ ପ୍ରାଣବନ୍ତ କରେ ।

–ଦାଶ ବେନହୁର

ଶ୍ରୀ ବିଜୟ ନାୟକଙ୍କ ପ୍ରାୟ ପ୍ରତିଟି ଗଳ୍ପରେ ରହିଛି ସୁନ୍ଦର ଉପଭୋଗ୍ୟ କାହାଣୀ । ସେହି କାହାଣୀ ଉଦ୍ଭାସିତ ହୋଇଛି ଅସାମାନ୍ୟ ଛବିଳ ଭାଷାରେ, ସ୍ୱତଃସ୍ଫୂର୍ତ୍ତ ଶୈଳୀରେ ଓ ଅନୁଭବର ତୀବ୍ରତାରେ । କାହାଣୀଟି ଶେଷ ହୋଇଯାଏ, କିନ୍ତୁ ସ୍ୱରଟିଏ ଶୁଭୁଥାଏ ରହି ରହି, ଅବଚେତନାରେ ।

–ତରୁଣକାନ୍ତି ମିଶ୍ର



ବିଦ୍ୟାପୁରୀ

ବିଦ୍ୟାପୁରୀ

ବାଲୁବଜାର, କଟକ ୭୫୩୦୦୨

Email : contact@vidyapuri.com Website : www.vidyapuri.com

